

## ବାରିଷ୍ଟର ଗୋବିନ୍ଦ ଦାସ


ଏମ୍.ଏ.ଏଲ.ଏଲ.ବି.
Bar-at-law -
Lincoln's Inn, London
ସିନିୟର ଆଡଭୋକେଟ,
ସୁପ୍ରିମ୍ କୋର୍ଟରେ ଓକିଲାତି :
୧୯୬୮-୨୦୦୨
ଓଡ଼ିଶାର ଆଡଭୋକେଟ ଜେନେରାଲ:
୧୯୮୦-୧୯୮୨; ୧୯୯୮-୧୯୯୯


ଅନ୍ୟାନ୍ୟ ପୁସ୍ତକ :

| | |
|---|---|
| ଦେଶେ ଦେଶେ | ୧୯୬୩ |
| ଅମାବାସ୍ୟାର ଚନ୍ଦ୍ର | ୧୯୬୪ |
| ଢାଡକ | ୧୯୬୫ |
| ମିଶ୍ରରାଗ | ୧୯୬୫ |
| Justice in India | ୧୯୬୭ |
| ଲାସ୍ଯ | ୧୯୮୨ |
| ଭଗ୍ନାଂଶ | ୧୯୮୧ |
| ସୂର୍ଯ୍ୟାସ୍ତ | ୧୯୮୫ |
| Supreme Court in Quest of Identity | ୧୯୮୭; ୨୦୦୦ |
| ସାନ ଗୋଟିଏ ଜୀବନ | ୨୦୦୬ |

# ଏଇ ମୋ'ର ଦିଲ୍ଲୀ

ବାରିଷ୍ଟର ଗୋବିନ୍ଦ ଦାସ
ଶାନ୍ତି ଦାସ

ଓଡ଼ିଶା ବୁକ୍ ଷ୍ଟୋର

# ଏଇ ମୋ'ର ଦିଲ୍ଲୀ

ବାରିଷ୍ଟର ଗୋବିନ୍ଦ ଦାସ
ଶାନ୍ତି ଦାସ




ପ୍ରକାଶକ
ଶ୍ରୀ ବିଜୟ ଶଙ୍କର ପାତ୍ର
ଓଡିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ : ୨୦୧୨

ଛାପା ସଂଖ୍ୟା : ୫୦୦

ଅକ୍ଷର ସଜ୍ଜା :
ୟୁନିକର୍ଣ୍ଣ ଗ୍ରାଫିକ୍ସ, କଟକ-୧

ମୁଦ୍ରଣ
ଗୁରୁପ୍ରସନ୍ନ ପ୍ରେସ୍, କଟକ-୧

**AEI MO'RA DELHI**

*By*
**Barister Gobinda Das**
**Shanti Das**

*Published by*
Sri Bijoy Shankar Patra
**ORISSA BOOK STORE**
Binode Behari, Cuttack-753 002

**First Edition : 2012**

**Price : Rs. 325/-**
ISBN 81-7400-565-X

# କୃତଜ୍ଞତା

ସ୍ୱାମୀହରା, ପୁତ୍ରହରା ହୋଇ ଏକ ଅନ୍ଧାରି ମୁଲକରେ ରହିଯାଇଥିଲି। ରାସ୍ତା କର୍ଦ୍ଦମାକ୍ତ, ଅବସ୍ଥିତି ସନ୍ଦୀହାନ ଆଉ ଜୀବନ ଅଭିଶପ୍ତ। ଏଇ ଆବର୍ଜନାମୟ ଅବସ୍ଥାରୁ ଉଠାଇ ମତେ ଯେଉଁମାନେ ରାଜରାସ୍ତାର ବାଟ ଦେଖାଇଲେ, ସେମାନେ ଥିଲେ ମୋ' ପୁତୁରା, ଝିଆରି, ଝିଅ, ଜୋଇଁ, ନାତି ଆଉ ମୋ' ପରିବାର। ସେ କଥା ମନେ ପକାଇ ସେମାନଙ୍କ ପାଖରେ ମୋ'ର କୃତଜ୍ଞତା ଜଣାଉଛି।

ଆଉ ଥିଲେ ଦିଲ୍ଲୀର ଦୁଇଜଣ ମୋ'ର ପ୍ରିୟ ସଂପର୍କୀୟ। ଅତି ନିଜର। ସେମାନେ ମୋ' ଭିତରେ ଆତ୍ମବିଶ୍ୱାସ ସୃଷ୍ଟି କରାଇ ପଦେ ପଦେ ଉତ୍ସାହ ଓ ପ୍ରେରଣା ଦେଲେ। ରାଜିଭ ମେହେରୋତ୍ରା ଓ ମିନାକ୍ଷୀ ଗୋପୀନାଥଙ୍କ ଅବଦାନ ମଧ୍ୟ ମୁଁ ଭୁଲିପାରିବି ନାହିଁ।

ଜୀବନରେ ଆଉ ଜଣଙ୍କର ସମର୍ଥନ ଓ ସାହାଯ୍ୟ ଏଡାଇ ଦେବାର ନୁହେଁ। ସେ ତାଙ୍କର ସମୟ, ଧୈର୍ଯ୍ୟ ଓ ଜ୍ଞାନ ଉପଯୋଗ କରି ଏ ଲେଖାକୁ ସାବଲୀଳ ଓ ସ୍ୱଚ୍ଛ କରିବାରେ ସାହାଯ୍ୟ କଲେ। ସେ ଥିଲେ ପିୟୁଷ ପଟ୍ଟନାୟକ। ତାଙ୍କୁ କୃତଜ୍ଞତା ଜଣାଉଛି।

ପ୍ରସନ୍ନ ଦାଶ ପୁଅ ଭଳି ପଦେପଦେ ମନୋବଳ ଓ ଆଶ୍ୱାସନା ଦେଇ ମୋ ଅନ୍ତରର ଦୃଢ଼ତା ଗଢ଼ିଦେଲେ। ସତ୍ୟ ରାୟଙ୍କର ଦାନ ମଧ୍ୟ କିଛି କମ୍ ନୁହେଁ। ଏ ଦୁଇଜଣଙ୍କ ପାଖରେ ମୁଁ କୃତଜ୍ଞ।

''ଓଡ଼ିଶା ବୁକ୍ ଷ୍ଟୋର''ର ପ୍ରକାଶକ ଗୋବିନ୍ଦ ଚରଣ ପାତ୍ର ଓ ବିଜୟ ଶଙ୍କର ପାତ୍ର। ଗୋବିନ୍ଦବାବୁଙ୍କ ପ୍ରତି ତାଙ୍କର ସ୍ନେହ ଓ ମମତାପାଇଁ ଆପ୍ରାଣ ଚେଷ୍ଟା କରି ଗୋବିନ୍ଦବାବୁଙ୍କର ଅନ୍ୟାନ୍ୟ ପୁସ୍ତକ ପ୍ରକାଶନ ଭଳି ଏ ବହି ମଧ୍ୟ ପ୍ରକାଶ କରିବାରେ ସାହାଯ୍ୟ କରିଛନ୍ତି।

ଆଉ ଦିଲ୍ଲୀର ଖଣ୍ଡହର ସଭ୍ୟତା। ବାରବାର ଅନେକବାର ମତେ ତା' କୋଳକୁ ଟାଣି ନେଇଛି। ହୁଏତ ସେଠିକାର ଆକର୍ଷଣ ଅଦମ୍ୟନୀୟ। ଏହାର ଉଜୁଡା ସଭ୍ୟତାହିଁ ମୋ' ଜୀବନର ଶିକ୍ଷାକେନ୍ଦ୍ର। ଜୀବନ୍ତ କରିଛି ମୋର ଅଲୋଡ଼ା, ଅସଜଡ଼ା ଜୀବନକୁ। ଧନ୍ୟ ତୁ ଦିଲ୍ଲୀ। ତୋ' କୋଳରେ ମଥା ରଖି ଅତୀତର ମହାନୀୟତାକୁ ନେଇ ବର୍ତ୍ତମାନର ଗର୍ବ ଓ ସାହସ ଭରିଦେଇ ଆଗମୀ ଯୁଗକୁ ତୋଳି ଦେଉଛି ''ଏଇ ମୋ'ର ଦିଲ୍ଲୀ''।



profssmishra@gmail.com

# ଆଞ୍ଜୁଳାଏ ଅର୍ଘ୍ୟ

ସେତେବେଳେ ସଡ଼କଟିକୁ ଅନ୍ଧକାର ଘେରି ସାରିଲାଣି । ବାଟଟା ନିରୋଳା, ନିଛାଟିଆ । କେତେବେଳେ କେମିତି ଗୋଟାଏ ଗୋଟାଏ ରିକ୍ସା ସେ ବାଟେ ଯିବା ଆସିବା କରୁଥାନ୍ତି । ରିକ୍ସାବାଲାର ଘଣ୍ଟି ମଝିରେ ମଝିରେ ଶୁଭୁଥାଏ । ଛାଡ଼ି ଛାଡ଼ି କେତେଟା ବତୀଖୁଣ୍ଟ ସଡକ ଉପରକୁ ମିଞ୍ଜି ମିଞ୍ଜି ଆଲୁଅ ଛିଞ୍ଚୁଥାନ୍ତି । ଏଇଟା ସେ କାଳର କଟକ ବଡ଼ ଡାକ୍ତରଖାନାର ମଝି ସଡ଼କ । ରାତିରେ ଏକୁଟିଆ ଯିବାଆସିବା କରିବାବେଳେ ଭୟ ଲାଗେ । ସେଠି ଯେମିତି ବ୍ୟାଧୀ, ମୃତ୍ୟୁର ନିଃଶ୍ୱାସ ଖେଳି ବୁଲୁଥାଏ ।

ପଚାରି ପଚାରି ଉପର ମହଲାରେ ତାଙ୍କ କୋଠରୀରେ ପହଞ୍ଚିଲି । ଦୁଆର ମୁହଁରେ ସାନପରଦାଟିଏ ଝୁଲୁଥାଏ । ସେଠି ଜଣେ କିଏ ବସିଥିଲେ । ତାଙ୍କୁ ନିଜର ପରିଚୟ ଦେଇ କୋଠରୀ ଭିତରକୁ ପଶିଲି ।

ବିଛଣା ଉପରେ ଶୋଇଥାନ୍ତି । ମୁଣ୍ଡ ପାଖରେ ସାନ ଆଲୁଅ ବତୀଟିଏ । ଚାରିଆଡ଼େ ନିସ୍ତବ୍ଧ, ତାଙ୍କ ପାଖରେ ବିଛଣା କଡ଼ରେ କିଛି ସମୟ ଛିଡ଼ା ହେଲି । ଇଂଗୀତ ଦେଇ ଯେମିତି କହିଲେ, ମୁଣ୍ଡ ପାଖରେ ପାଖ ଚେୟାରରେ ବସନ୍ତୁ ।

କିଛି ମୁହୂର୍ତ୍ତ ବିତିଗଲା । ତାଙ୍କ ମୁହଁକୁ ଚାହିଁ ରହିଥାଏ । 'ଆପଣଙ୍କୁ ମୁଁ ଖବର ପଠାଇଥିଲି ଗୋଟାଏ ଜରୁରୀ କାମରେ । ମୋତେ ଟିକିଏ ସାହାଯ୍ୟକରିବେ ? ସ୍ୱର କ୍ଷୀଣ, ଚକ୍ଷୁ ଅର୍ଦ୍ଧନିମିଳିତ । ଶରୀର ଦୁର୍ବଳ । ଦେହ ଉପରେ ଧଳା ଆବରଣ, କଡ଼ରେ ପେନ୍ଥାଏ ଫୁଲ, ମୃଦୁ୍ୟ ଆଲୋକ, କୋଠରୀ ନିର୍ଜନ । ଶାନ୍ତ ପରିବେଶକୁ ଆହୁରି ଗମ୍ଭୀର କରିଦେଉଥାଏ । ଧୀରେ ଧୀରେ କହିଲେ, ମୋର ବେଳ ଆସିଗଲା । ଆପଣ ମୋର ଏ 'ମରୁତୀର୍ଥର' ଦାୟିତ୍ୱ ନେଇ ପାରିବେ ? କିଛି ସମୟ ଅପେକ୍ଷା କରି ଭାବି କହିଲି, ମୁଁ ଏତେଦୂରରେ ରହୁଛି । ମୋ ପକ୍ଷରେ ଏ ଦାୟିତ୍ୱ ସମ୍ଭାଳିବା ହୁଏତ ସମ୍ଭବ ହେବ ନାହିଁ । ସେ ଟିକେ ନିରାଶ ହେଲାପରି ମନେହେଲା । କହିଲି

ଏଥିପାଇଁ ମୋତେ କ୍ଷମା କରିବେ। ତା'ର କିଛି ଜବାବ ସେ ଦେଲେ ନାହିଁ। କହିଲେ, ତା'ହେଲେ ଏଥିପାଇଁ ଖଣ୍ଡେ ଖଣ୍ଡେ ଲେଖାପଠାନ୍ତୁ। ଏ ଅନୁରୋଧକୁ ନିଶ୍ଚୟ ରକ୍ଷା କରିବେ। ଯେପରି ଏଇଟି କ୍ରମାଗତ ବାହାରେ।

କହିପାରିଲି ନାହିଁ, ମୋ ପାଖରେ କୌଣସି ଲେଖା ସଂଗୃହିତ ହୋଇ କେବେହେଲେ କିଛି ନଥାଏ। କହିଲି 'ହଁ ପଠାଇବି'। ସେ ଟିକେ ନିଶ୍ଚିନ୍ତ ହେଲାପରି ଦିଶିଲେ। ମୁଁ ମନେ ମନେ ଭାବୁଥାଏ, ଏ ପ୍ରତିଶ୍ରୁତି ରଖିପାରିବି ତ ? ତାଙ୍କର ଏତେ ଆଶା, ଏତେ ବିଶ୍ୱାସ। ତାଙ୍କ 'ମରୁତୀର୍ଥ'ପାଇଁ ସାତ ଆଠଟା ଲେଖା ପଠାଇଥିଲି। ସେ ସବୁ ଛପା ହୋଇଥିଲା। ଏଇଠୁ, ଏଇ ମୋ'ର ଦିଲ୍ଲୀର ଆରମ୍ଭ।

ଅବଶେଷରେ ସମସ୍ତଙ୍କ ଭୟ ସତ ହେଲା। କାନସର ରୋଗରେ ଭୋଗୁଥିଲେ; କିଛିଦିନ ପରେ ସେ ଚାଲିଗଲେ। ଗୋଟିଏ ସୂକ୍ଷ୍ମ, ସୁନ୍ଦର ଆତ୍ମାର ଅବସାନ ଘଟିଲା।ତାଙ୍କ ପ୍ରତି ମୋର ପ୍ରତିଶ୍ରୁତିର ମଧ୍ୟ ସମାପ୍ତି ହେଲା। ଶେଷ ହେଲା 'ଏଇ ମୋ'ର ଦିଲ୍ଲୀ'। ସେ ରାତିରେ ଆଖିରେ ଲୁହ ଭରିଯାଇଥିଲା। ଦିଲ୍ଲୀ ରହିବାର ପ୍ରାୟ ତିରିଶ ବର୍ଷ ବିତିଗଲାଣି। ସେଥି ଭିତରୁ କଟକରେ ବି କିଛିଦିନ ଥିଲି। ବର୍ତ୍ତମାନ ଦିଲ୍ଲୀ ଛାଡ଼ି ଘରକୁ ଫେରିଯାଉଛି। ହୁଏତ ମୋ' ମାଟିର, ସେ ଗନ୍ଧର ଡାକରା। ପୁଣିଥରେ ଆରମ୍ଭ କଲି ଯେଉଁଠୁ ସେ ଛାଡ଼ି ଦେଇଯାଇଥିଲେ। ମୋତେ ଆଉ ଏଇ ମୋ'ର ଦିଲ୍ଲୀକୁ। ଏଥିଭିତରେ ଦିଲ୍ଲୀ କିଛି ବଦଳିଛି, ମୁଁ ବି, ଗୋଟିଏ ଦୃଷ୍ଟିରୁ ଟିକିଏଘନେଇ କରି ଦେଖିଲେ ସବୁ ସେମିତି ଅଛି। ସବୁ ଆଗପରି। କେତେଟା ସଡ଼କ କେତେଟା ଦପ୍ତର, କେତେଟା ଅଟ୍ଟାଳିକା- ଯାହା କିଛି ବଢ଼ିଛି। କାଳର ବିବର୍ତ୍ତନ ଭିତରେ ସମସ୍ତେ ସେହିପରି ସ୍ଥିର, ଶାଶ୍ୱତ ଅଛନ୍ତି। ଭିତରର ମଣିଷ ବି। ସେହିପରି ହୁଏତ ଥିଲେ, ସେଇପରି ହୁଏତ ରହିବେ। ସବୁ ଦୌଡ଼ା ଦୌଡ଼ିକେବଳ ସେଇ ଜାଗାରେ ରହିବାପାଇଁ।

ଦୀର୍ଘଦିନପରେ ଆଜି 'ଏଇ ମୋ'ର ଦିଲ୍ଲୀ'କୁ ସେଇ ମହିୟସୀ ମହିଳା, କବି ନଜରୁଲଙ୍କ ଉପାସିକା, ମରୁତୀର୍ଥର ସଂପାଦିକା, 'ଏଇ ମୋ'ର ଦିଲ୍ଲୀ'ର ଜନ୍ମଦାତ୍ରୀ ନଳିନୀ ଦେବୀ ରାଉତରାୟଙ୍କୁ ସମର୍ପଣ କରୁଛି। ପ୍ରଣତି ସହ। ତାଙ୍କରି ପାଦତଳେ ମୋର ଆଞ୍ଜୁଳିଏ ଶେଷ ଅର୍ଘ୍ୟ।



# ଏଇ ମୋ'ର ଦିଲ୍ଲୀ

ସବୁ ସହରର ଗୋଟାଏ ଗୋଟାଏ ନିଜସ୍ୱ ସତ୍ତା ଅଛି– ସେ ସତ୍ତା ଉପଯୁକ୍ତ ସମୟରେ ନିର୍ଦ୍ଦିଷ୍ଟ ରୂପ ନିଏ। କଲିକତାର ସଭ୍ୟତା, ମାନ୍ଦ୍ରାଜର ନମ୍ରତା, ବମ୍ବେର ଚାଞ୍ଚଲ୍ୟ ସେଇସବୁ ସହରମାନଙ୍କ ପାଇଁ ଏକ ଭିନ୍ନ ବାତାବରଣ ସୃଷ୍ଟି କରିଛି। ଏ ତିନୋଟି ସହର ଅପେକ୍ଷାକୃତ ନୂତନ।

କିନ୍ତୁ ଦିଲ୍ଲୀ ? ଏହାର ପୁରାତନ ସଭ୍ୟତାକୁ ନେଇ, ଇତିହାସକୁ ନେଇ ସେ ଅଦ୍ୱିତୀୟ। ଏହାର କ୍ଷମତା, ଔଦ୍ଧତ୍ୟ, ଅହଙ୍କାର, ଗର୍ବକୁ ଧରି ସେ ମୂର୍ତ୍ତିମନ୍ତ। ଏ ଔଦ୍ଧତ୍ୟକୁ ସହ୍ୟ କରି, ଏ ଖଣ୍ଡହର ସଭ୍ୟତାର ମୂଳଦୁଆ ଉପରେ ଭାରତର ଇତିହାସ ମୁଣ୍ଡଟେକି ଠିଆ ହୋଇଛି। ଗୋଟିଏ ସଭ୍ୟତାର ଉତ୍‌ଥାନ ପାଇଁ ଅନ୍ୟ ଗୋଟିଏ ସାମ୍ରାଜ୍ୟର ବା ସଭ୍ୟତାର ପତନ ଅବଶମ୍ଭାବୀ। ଐତିହାସିକ ପର୍ଯ୍ୟବେକ୍ଷିତ ଲେଖା କେବଳ ପେଶାଦାର ଲୋକଙ୍କର ଏକାନ୍ତ ନିଜସ୍ୱ। ପ୍ରତ୍ୟେକ ଯୁଗର କ୍ରମିକ ଇତିବୃତ୍ତି, ଅନେକ ଅନେକ ଅନୁଶାସନର ଛୋଟ ବଡ଼ ଖୋଦନ, ଜନଶ୍ରୁତି, ପରିବ୍ରାଜକମାନଙ୍କ ବର୍ଣ୍ଣନା, ସାହିତ୍ୟିକ ମାନଙ୍କର ସାମାଜିକ ଚିତ୍ରଣ, ଧର୍ମର ପ୍ରଭାବ, ସାମାଜିକ ଚେତନା– ସବୁର ମିଳିତ ବିଷୟବସ୍ତୁ ଉପରେ ଆଧାରିତ ସେ ଯୁଗର ଜୀବନଶୈଳୀର ବର୍ଣ୍ଣନାର ନାମହିଁ ଇତିହାସ। ପରଯୁଗରେ ଏ ହୁଏ କାହାଣୀ।

ଲକ୍ଷ ଲକ୍ଷ ଲୋକଙ୍କୁ କୋଳରେ ପୁରାଇ, ଗୁଡ଼ାଏ ପଥରରେ ତିଆରି ବିରାଟ ନଗରୀ ଦିଲ୍ଲୀ ହିନ୍ଦୁସ୍ଥାନର ମାମୁଲି ରାଜଧାନୀ ନୁହେଁ। ଦିଲ୍ଲୀ ତିନିହଜାର ବର୍ଷର ଭାରତ ଇତିହାସ ଓଠରେ ଅବୋଧ ଏକ ଅଟ୍ଟହାସ୍ୟ। ଅସଂଖ୍ୟ ସମ୍ରାଟ, ଅଜସ୍ର ସାମ୍ରାଜ୍ୟର ଉତ୍ଥାନ ପତନର ଶାନ୍ତ ନିର୍ବିକାର ସାକ୍ଷୀ।

ଏଠିକାର ସଡ଼କ ମାଟି ପିଚୁରେ ତିଆରି ନୁହେଁ– ଗର୍ବ ରକ୍ତରେ ଏହା ଗଢ଼ା। ଉଚ୍ଚ ଅଟ୍ଟାଳିକା, ସୁରମ୍ୟ ରଙ୍ଗଶାଳାର ତଳେ ତଳେ ଅସଂଖ୍ୟ ମହାରାଜାର ମୁକୁଟ ଓ ମସ୍ତକ। ଏଠିକାର ଆକାଶରେ ମୃଦୁ୍ୟବାୟୁ ବୁହେ ନାହିଁ, ଘୁରିବୁଲେ ଶତାବ୍ଦୀର କ୍ରନ୍ଦନ, ହା ହୁତାଶର ଘନ ଅନ୍ଧକାରର ଢେଉ। ଅକ୍ଷୟ ଏ ଦିଲ୍ଲୀ, ଅଜୟ ଏ ନଗରୀ। କେତେ ଅଭିମାନର ଶ୍ମଶାନ ଭୂଇଁ, କେତେ ଆକାଂକ୍ଷାର ବାଳସୂର୍ଯ୍ୟ।

ସୁଫି ସନ୍ଥର ଏ ଦିଲ୍ଲୀ ଦୁରସ୍ତ। ଧ୍ୱଂସ ହେଲା ଦ୍ୱାଦଶ ବାର। ପୁଣି ପାଇଲା ପୁନର୍ଜନ୍ମ। ଦିଲ୍ଲୀ ଗୋଟାଏ ନୁହେଁ, ସାତଟା ସହର ଓ ସଭ୍ୟତାର ସଂଗମ କ୍ଷେତ୍ର। ସମୟ ବକ୍ଷରେ ଏକ ଚିରନ୍ତନ ଘୂର୍ଣ୍ଣୀବାୟୁ। ଇତିହାସରେ ଏହାର ପଟାନ୍ତର ନାହିଁ। ମନୁଷ୍ୟ ପଦଯାତ୍ରାରେ ଏହା ଏକ ଚିରଞ୍ଜିବୀ ଶାଶ୍ୱତ ପାନ୍ଥଶାଳା। ଜନ୍ମ ଏହାର ଅସ୍ପଷ୍ଟ, ଭବିଷ୍ୟତ ଅଜ୍ଞାତ। ଦିଲ୍ଲୀ ସହର ନୁହେଁ ଏହା ଏକ ସ୍ୱପ୍ନ। କୃଷ୍ଣଙ୍କର ମୁହଁପରି– ସବୁ ଏକ ଆଉ ସେଥିପାଇଁ ଅଲଗା। ସମୁଦ୍ରର ଉତ୍ତାଳ ତରଙ୍ଗ ସହିତ ଉଲ୍ଲସିତ ଜୀବମାନେ ବାଲୁକା ଭୂଇଁ ଉପରେ ସାମାନ୍ୟ ପରଶ ଦେଇ ଫେରିଯାନ୍ତି ସେ ତରଙ୍ଗର ବିଦାୟୀ ଶୋଭାଯାତ୍ରାରେ, ଆଉ ଯେଉଁ କେତେଗୁଡ଼ିଏ ହତଭାଗ୍ୟ ଯାଇପାରନ୍ତି ନାହିଁ, ସେମାନଙ୍କର ପରିସମାପ୍ତି ଘଟେ– ବାଲୁକାର କ୍ଷୁଦ୍ର ଗର୍ଭ ମଧ୍ୟରେ, ନିଃସ୍ୱ, ଶ୍ୱାସହୀନ, ମାତ୍ର କିୟତକ୍ଷଣର ପ୍ରାଣାନ୍ତକ ପ୍ରଚେଷ୍ଟାରେ। ଦୂରେଇ ଯାଉଥାଏ ତରଙ୍ଗ, ହାତ ଟେକି ଚିତ୍କାର କରି ଜୀବ କହେ, ଫେରିଆସ, ନେଇଯାଅ ମତେ। ଏକ ଉଦ୍‌ବେଳିତ ରବରେ ଇତିହୁଏ ପ୍ରଶ୍ନ ଓ ତାର ଉତ୍ତର।

ଆହତ ସୈନିକର, ପଶ୍ଚାତଗାମୀ ସେନା ପ୍ରତି ସେଇ ଆକୁଳ ନିବେଦନ। ମହାଶୂନ୍ୟରୁ ନିର୍ଗତ କ୍ଷିପ୍ତ ସେଇ ପତିତ ତାରକା। ପ୍ରଥମ ମୁହୂର୍ତ୍ତରେ ନିବିଡ଼ ଶ୍ୱାସ, ରୁଦ୍ଧତା ପରେ ସାଲିସ ହୁଏ ଅବଶ୍ୟମ୍ଭାବି ସହିତ। ବନ୍ଧୁତା କଲେ, ଘନିଷ୍ଠତା ବଢ଼େ। ଗଢ଼ିଉଠେ ନିଶ୍ଚଳ ନିର୍ବିକାର ପୁରୁଷ। ଶିଥିଳ ହୋଇଆସେ ସ୍ନାୟୁ, ଆଶା ଓ ପ୍ରଚେଷ୍ଟା। ବିଗତ ଜୀବନ ହୋଇଉଠେ ମଳିନ। କିନ୍ତୁ କ'ଣ ନିରର୍ଥକ? ପୁଣି ଯୁକ୍ତି ବାଢ଼େ, ସାହସ ବାନ୍ଧେ, ଚିତ୍କାର କରେ, ସଂଘର୍ଷ କରେ। ପ୍ରଥମେ ନିରାଶ, ତା'ପରେ ଶାନ୍ତି, ପୁଣି ସଂଗ୍ରାମ। ଚକ ଘୁରିଘୁରି ବୁଲେ। ଏଇତ କୃଷ୍ଣର ସେ ସୁଦର୍ଶନ ଚକ୍ର– ଚିର ଘୂର୍ଣ୍ଣୀୟମାନ, ଚିର ଅଶାନ୍ତ ତାର ବାର୍ତ୍ତା।

ତୁମେ କହି ପାରିବନି ତୁମେ ଯମୁନା ପାଣିରେ ଗୋଡ଼ ଦେଇଛ? କହି ସାରିଲା ବେଳକୁ ଯମୁନାରେ ସେ ପାଣି ନାହିଁ। ଏଇ ଅନ୍ଧକାର ହେଉଛି– ଅଭିମାନ, କୃତକାର୍ଯ୍ୟତା– ଏଠି କୋମଳତାର ଢଳ ଢଳ ଚକ୍ଷୁ ନାହିଁ– ଏହାର ଦୃଷ୍ଟି ଦୁର୍ଦ୍ଦାନ୍ତ ଆଉ ପ୍ରଖର। ଏଠିକାର ଦେବୀ ଛିନ୍ନମସ୍ତା– ରକ୍ତଭରା, ଖର୍ପର ଧାରିଣୀ ମହାକାଳୀ। ଏଠିଖାୟାଲର ସୂକ୍ଷ୍ମ ଆଳାପ ନାହିଁ– ଅଛି ଡିସ୍କୋର ଉନ୍ମାଦ ସଂଗୀତ। ଦୁନିଆରେ ବଂଶୀ ବାଜେନାହିଁ– ବାଜେ ମୃଦଙ୍ଗ। ଏଇ ଦୁନିଆକୁ ଆସ।

ପରାଜୟର ପତାକା– ଶ୍ମଶାନର, କବର ଉପରେ ବା ଶୂନ୍ୟମନ୍ଦିରର ଚୂଳରେ ଉତ୍ତୋଳନ ହୁଏ, ଜୀବନର ପ୍ରାସାଦ ଉପରେ ନୁହେଁ।

କୃତକାର୍ଯ୍ୟତା ପାଦ– ସମାଜ ବକ୍ଷ ଉପରେ ଶୋଭାପାଏ। ପରାଜୟର ଆତ୍ମା ସମାଜର ପଦକୁ ଲେହନ କରେ। ବିପ୍ଳବର ଅବଗୁଣ୍ଠନରେ ନିଜର ଦୈନ୍ୟକୁ ଆଲୋଡ଼ନ କର ନାହିଁ।

ଏ ଯେଉଁ ସମାଜ ଦେଖୁଛ, ସେ ସବୁ ତ୍ୟାଗର ପିଣ୍ଡ ଉପରେ ସୃଷ୍ଟି ହୋଇଛି। ତୁଳସୀ ଦାସ, ମ୍ୟାଡ଼ାମ କ୍ୟୁରୀ କାହାରି ପ୍ରାଚୁର୍ଯ୍ୟ ନଥିଲା– ତ୍ୟାଗ ଉପରେ ସବୁ ସୃଷ୍ଟି ଗୌରବ ସବାର। ତୁମର ଏ ଉନ୍ମାଦ, ରଂଗୀନ ସମୃଦ୍ଧି ଭିତରେ ନିଷ୍ପ୍ରାଣ ହିଂସ୍ର କ୍ଷୁଦ୍ରତା ପରିପୃଷ୍ଟ ହୁଏ। ମନୁଷ୍ୟତା ନୁହେଁ, ସୃଷ୍ଟି ନୁହେଁ, ସଂସ୍କୃତି ନୁହେଁ। କେଉଁଠି ଦେଖୁଛ, କେଉଁ କଳା, କେଉଁ ସଂସ୍କୃତିର ପ୍ରାଚୁର୍ଯ୍ୟ ଉପରେ ଉଚ୍ଛୃଙ୍ଖଳତା ଗଢ଼ି ଉଠିଛି ? ଦିଲ୍ଲୀର କୃଶବିଦ୍ଧ ବକ୍ଷ ଉପରେ ଗୋଟାଏ କେବଳ ଚହଳ। ଗୋଟାଏ ଘୂର୍ଣ୍ଣିବାୟୁ। ଯମୁନାର ଅଗ୍ରଗାମୀ ଦିଗ୍‌ବଳୟ ଆଉ ଚିରନ୍ତନ ଦ୍ୱନ୍ଦ। ଏଠାରେ ହିଂସା, ବିଦ୍ରୋହ, କପଟତା, ଏଠିକାର ସୁଫି ସନ୍ଥ, ତାର ମିର୍ଜା ଗାଲିବ, ତାର ବାଈଜୀ, ବାହାଦୂର ଶାହ ସମସ୍ତେ ଓ ଆହୁରି ଅନେକ କିଛି– ସେଇ ଘୂର୍ଣ୍ଣିବାୟୁ ତଳେ।



# ଅସରନ୍ତି ଇତିହାସର ଗାଥା

ସବୁ ଖଣ୍ଡହରର ଛାତି ଚିରି ଅନେକ ଘଟଣା ଲୋକ ଲୋଚନକୁ ଆସିପାରିଛି । ହେଲେ ଅନେକ ଇତିବୃତ୍ତି ପୋତି ହୋଇରହିଛି ସେଇ ମାଟିଗଦା ଭିତରେ । ପିଢ଼ି ପରେ ପିଢ଼ି ହୁଏତ ଆହୁରି ଅନେକ ତଥ୍ୟ ସବୁ ଉନ୍ମୋଚିତ କରିବେ । ସେସବୁ ତଥ୍ୟ ହୁଏତ ହେବ ଆହୁରି ସୁନ୍ଦର, ଆହୁରି ଗାଢ଼ା, ଆହୁରି ରୋମାଞ୍ଚକର ।

କାହାଣୀ ସବୁ ହୃଦୟ ବିଦାରକ । ସବୁ ଘଟଣାର ଛାୟାଚିତ୍ର ମନରେ ଆଙ୍କି ହୋଇଯାଉଥାଏ । କିଛିଟା ଆଲୋଡ଼ନ କରେ ମନର ଗଭୀରତମ ପ୍ରଦେଶକୁ । ଦିଲ୍ଲୀକୁ ଯେତେଥର ଅନୁଭବ କରିଛି, ମନେହୁଏ କାହାକୁ ନିରୀହ ସାକ୍ଷୀ ରହି ଦିଲ୍ଲୀ ଯେମିତି ଉଚ୍ଚସ୍ୱରରେ ପଚାରୁଛି, ହେ ଅର୍ଜୁନ, କାହିଁ ତୋର ସେ ଗାଣ୍ଡିବ ? ହେ ପୃଥ୍ୱିରାଜ କାହିଁ ତୋର ସେ ଉଲଗ୍ନ ତରବାରୀ ? ହେ ନାଦିର ସାହା କାହିଁ ତୋର ସେ ତାଣ୍ଡବ ନୃତ୍ୟ ? ହେ ଇଂରେଜ କାହିଁ ତୋରସେ ଦମ୍ଭୋକ୍ତି 'ଇଂରେଜ ରାଜତ୍ୱରେ ସୂର୍ଯ୍ୟାସ୍ତ ହୁଏନି' । ଦିଲ୍ଲୀ ଆକାଶରେ ସ୍ୱଚ୍ଛ ସଂଗୀତର ନିରୋଳା ହିଲ୍ଲୋଳ । ଶାନ୍ତ ପରିବେଶ ଭିତରେ କେତେକ ନିଛୁକ ମମତା । କହୁଛି ଯାହା କରିବା ଲାଗି ଚାହୁଁଛ, ସେଇଟା ହୁଏତ ମନୁଷ୍ୟତା ନୁହେଁ । ମନୁଷ୍ୟତା ସାବ୍ୟସ୍ତ କରିବାପାଇଁ ଲୋଡ଼ା ଏକାନ୍ତ ଅଧିକାର । ଦିଲ୍ଲୀକୁ ତୁମେ ମନୁଷ୍ୟତାର ରଜ୍ଜୁରେ ବାନ୍ଧି ରଖିପାରିଲନି । ଅଭିଶପ୍ତ ତୋଗଲକାବାଦ ଏବେ ବି ଶୋଇ ରହିଛି । ସୁଦୀର୍ଘ ଅଞ୍ଚଳ । ବଣ ବୁଦା କିଛି ଥାଇଁ ବି ମରୁଭୂମି । ବସ୍ତି ନାହିଁ । ଜନବସତି ନାହିଁ । କିଛି ଅଂଶରେ ଅଧିକାର ପାତିଛନ୍ତି ଗୁର୍ଜରମାନେ । ଏଇଠି ବୁଲୁଛନ୍ତି ଗିୟାସୁଦ୍ଦିନ ତୋଗଲକ । ଅନୁରୋଧ କରୁଛନ୍ତି ନିଜାମୁଦ୍ଦିନ ଯାଲିଆଙ୍କୁ । କହୁଛନ୍ତି ଅଭିଶାପ ଦେଇ ଧ୍ୱଂସ କଲ ଏ ସହରକୁ । ଏବେ ହେଲେ ଦୟାକର । ଏହାରି କୋଳରେ ବର୍ତ୍ତମାନ ଦିଲ୍ଲୀର ବର୍ଦ୍ଧିଷ୍ଣୁ ଜନତା ପାଇପାରନ୍ତେ ଆଶ୍ରୟ । ହୁଏନ୍ତେ ସୁରକ୍ଷିତ ।

profssmishra@gmail.com

ଧନ୍ୟ ତୁମେ ହାମିଦାବେଗମ। ପରଦା ଅନ୍ତରାଳେ ଥାଇଁ ଏତେ ବଡ଼ ସୃଷ୍ଟି କଲ– ତୋଳିଲ ହୁମାୟୁନ ଟୁମ୍ବ। ପର୍ଶୟାନ କଳାକୃତି ତାଙ୍କଠାରେ। ତୁମର କିର୍ତ୍ତୀକୁ ଅନୁଧ୍ୟାନ କରି ଶାହାଜାହାଁ ତୋଳିଛିଲେ ତାଜମହଲ। ତୁମ ସୃଷ୍ଟି ହେଲା ଅକ୍ଷୟ।

ଫତେପୁର ସିକ୍ରି? ଆକବରଙ୍କ ଦମ୍ଭ ଓ ମନର ସାହସ ଦେଇ ଗଢ଼ା ଏ ସହର। ତାଙ୍କ ଗୁଜରାଟ ବିଜୟ ପରେ। ସିକ୍ରି ନାମ ସହିତ ଯୋଡ଼ିଲେ ଫତେପୁର– ଅର୍ଥ ବିଜୟ, ବିଜୟର ସହର। ଏ ବିଜୟର ପରିକାଷ୍ଠା ଆଜି ଭୂଲୁଣ୍ଠିତ।

ଯମୁନା ଫୁଲିଉଠିଛି ଗର୍ବରେ। ଏ ସହର, ଏ ସମ୍ରାଟଗଣଙ୍କର ଇତିହାସକୁ କୋଳରେ ଧରି। ନୀରବଚ୍ଛିନ୍ନ ଭାବରେ ଧୀର, ମନ୍ଥର ଗତିରେ ବୋହି ଚାଲିଛି– ଭାରତର ଯଶ, କ୍ଷମତା, ସାହସର ଇତିହାସର ସୌନ୍ଦର୍ଯ୍ୟକୁ ଧରି। କୃଷ୍ଣଙ୍କର ବଂଶୀବାଦନ ପରେ ଇଂରେଜର ତୋପର ଆବାଜକୁ ମୂର୍ତ୍ତିମନ୍ତ କରି। ଯମୁନା ତୁମେ ଚିରନମସ୍ୟା।

ଶାହାଜାହାଁ ତୁମେ କାନ୍ଦୁଛ? ରାଜକୋଷର ଗଚ୍ଛିତ ଧନରାଶିକୁ ବିଲୟ କଲ। ତୋଳିଲ ଶାହାଜାହାଁବାଦ। କାଳର କରାଳ କବଳରେ କବଳିତ ହେଲା ଲାଲ କିଲ୍ଲା– ପ୍ରାସାଦ, ଅଟ୍ଟାଳିକାକୁ ଧରି ଗଢ଼ିଉଠିଲା। କିନ୍ତୁ ପରିଣତ ହେଲା ଇଂରେଜଙ୍କର ମିଲିଟାରୀ ବ୍ୟାରେକ୍‌ରେ। ଧ୍ୱଂସ ପାଇଲା ତୁମର କଳାକୃତି, ତୁମର ମନର ଅଭିମାନ।

ଆଗ୍ରା ସହର। ପ୍ରତ୍ୟେକ ପଥର ଖଣ୍ଡରେ ଲେଖି ହୋଇଯାଇଛି ଦିଲ୍ଲୀ ଶାସକଗଣଙ୍କ କରୁଣ ଇତିହାସ। ଶାହାଜାହାଁଙ୍କ ଲୋତକାଶ୍ରୁ ମିଳେଇ ଯାଇଛି ଯମୁନା ଶାନ୍ତ ଲହରୀମାନଙ୍କରେ। ତାଙ୍କ ରୂପାୟିତ ପ୍ରେମକାହାଣୀ ଆଜି ମନମୁଗ୍ଧକାରୀ– ଜୀବନ୍ତ। ମନେହୁଏ ଆଜି ବି ଗର୍ଭବତୀ ମମତାଜ ତାଙ୍କ ଶେଷ ସନ୍ତାନ ଜନ୍ମ ପୂର୍ବରୁ ଶାହାଜାହାଁଙ୍କ ସହିତଚେସ୍ ଖେଳରେ ମାତିଛନ୍ତି। ଶାହାଜାହାଁ କହୁଛନ୍ତି ପ୍ରିୟେ– ଦେଖ ମୋର ପ୍ରେମର ଜୀବନ୍ତ ପ୍ରତିମା। ଯେଉଁ ମୁସେଲିୟମ ତୋଳିବାପାଇଁ ଅନୁରୋଧ କରିଥିଲ ତାରି ଅବିକଳ ପ୍ରତିମୂର୍ତ୍ତି। କ୍ରୁର ମାନବିକତା ଉପରେ ମୋର ପ୍ରେମର ବିଜୟକେତନ।

ସବୁ ହୁଏତ କେବଳ ଆରମ୍ଭ ମାତ୍ର, ବେଳେବେଳେ ହୁଏତ ଶେଷ ବି। ଯାହାପାଇଁ ଘଟିଗଲା ସିପାହୀ ବିଦ୍ରୋହ? କେଉଁ ବନ୍ଧୁକର ଟୋଟୋ ପାଇଁ ମଲା

ଘୁଙ୍ଘୁରିର ଚମତ୍‌କା ଛିଣ୍ଡିଲା। ସେ ବେଗମ? ଯାହାର ଇଶାରାରେ ମିରଟର ଲକ୍ଷସିପାହୀ ତୁଚ୍ଛ କଲେ ଜୀବନ। ସାରା ଦେଶରେ ବ୍ୟାପିଗଲା ଏ ବିଦ୍ରୋହ। ପରଦିନ ଦିଲ୍ଲୀ ଅକ୍ତିଆର କଲେ ଭାରତର ସିପାହୀ ଦଳ। ଦିଲ୍ଲୀର ନୂଆକିଲ୍ଲାଠୁ ଲମ୍ବିଥିଲା ସୁଡ଼ଙ୍ଗ। ଦୁର୍ଦ୍ଧର୍ଷ ଇଂରେଜଙ୍କ ଆଖି ଆଢୁଆଳରେ ବିଦ୍ରୋହ ଆୟୋଜନ ହେଲା। ରୁଟି ଭିତରେ ଖବର ଦିଆଗଲା ସିପାହୀମାନଙ୍କ ଭିତରେ। ରକ୍ତ ବୋହିଲା, ମଶାଲ ଜଳିଲା, ଥରି ଉଠିଲା ମେଦିନୀ, ଇତି ହେଲା ବିଦ୍ରୋହ। ପୋତି ହୋଇଗଲା ସୁଡ଼ଙ୍ଗ। ବେଗମଙ୍କ ଉପରେ କଳାପରଦା ଢାଙ୍କି ଦିଆଗଲା। ନିର୍ବାସିତ ହେଲେ ବାହାଦୂର ସାହା। ପିଚୁ ସଡକ ତଳେ ଶୋଇ ରହିଲା ପୂର୍ଣ୍ଣ ଭାରରତର ଅପୂର୍ଣ୍ଣ ଇତିହାସ। ସାକ୍ଷୀ ରହିଲେ ଭଙ୍ଗା ଗେରୁଆ ଖୁଣ୍ଟ ଓ କାଣ୍ଟନମେଣ୍ଟ। ନିଶ୍ଚଳତା ଭିତରେ ଶୁଭୁଛି ସେ ହସ– ବାହାଦୂର ଶାହାର ହସ। ହିନ୍ଦୁସ୍ଥାନର ମୁଁ ମହାରାଜା, ମୋର ସମାଧି ପାଇଁ ଦଶହାତ ଜମି ବି ପାଇଲି ନାହିଁ ହିନ୍ଦୁସ୍ଥାନରେ– ପାଇଲି ନାହିଁ ବ୍ରିଟିଶ ଅଧିକୃତ ରେଙ୍ଗୁନରେ– ବିଜୟର ହସ। ସେଇ ହସ ସଦ୍ୟଜାତ ଶିଶୁର ପ୍ରଥମ ପ୍ରଶ୍ନ ଓ ତାର ଚରମ ଉତ୍ତର। କାହିଁକି ମୁଁ? ଏହାରି ଚାରିପଟେ ଖେଳି ହୋଇ ରହିଛି ଗୁପ୍ତ ରହସ୍ୟ– ଭାରତର ଇତିହାସ। ଦିଲ୍ଲୀର ଜମାଟ ବାଂଧିଥିବା କାହାଣୀ।



# କିମ୍ବଦନ୍ତୀ

ବହୁ ପୁରୁଣା କାଳର କିମ୍ବଦନ୍ତୀ। ଦେବରାଜ ଇନ୍ଦ୍ର ଦେବସଭାର ଆୟୋଜନ କରିଥିଲେ। ଉଦ୍ଦେଶ୍ୟ ଥିଲା ଭୂମଣ୍ଡଳରେ ଏକ ଯଜ୍ଞସ୍ଥଳ ନିରୂପଣ କରିବେ। ସବୁ ଦେବାଦେବୀଙ୍କ ଗହଣରେ ଉପସ୍ଥିତ ଥିଲେ ଦେବଗୁରୁ ବୃହସ୍ପତି। ଇନ୍ଦ୍ରଦେବ ଯଜ୍ଞର ଆୟୋଜନ ପାଇଁ ଦେବଗୁରୁଙ୍କୁ ଏକ ଜାଗା ସ୍ଥିର କରିବାକୁ ଅନୁରୋଧ କଲେ। ବୃହସ୍ପତି ସ୍ଥିର କଲେ ଖାଣ୍ଡବ ବନ ବା ଇନ୍ଦ୍ରବନ। ଏ ସ୍ଥଳ ଯମୁନା ନଦୀର କୂଳରେ ଥିଲା। ଏ ନଦୀକୂଳରେ ଯେଉଁ ଘାଟଥିଲା ନାମ ଥିଲା ନିଗମବୋଧ ଘାଟ। ଏପରି ନାମକରଣର ଅର୍ଥ ମଧ୍ୟ ଅଛି। ବ୍ରହ୍ମା ଥରେ ବିସ୍ମୃତ ହେଲେ ବେଦ। ଏ ଘାଟରେ ବୁଡ଼ ପକାଇବା ସମୟରେ ତାଙ୍କର ଶ୍ରୁତ ହେଲା ବେଦର ଜ୍ଞାନ। ନିଗମର ଅନ୍ୟ ଅର୍ଥ ବେଦର ଜ୍ଞାନ। ସେଥିପାଇଁ ଏ ଘାଟର ନାମ ହେଲା ନିଗମବୋଧ ଘାଟ। ସେଇ ସ୍ଥଳରେ 'ଖାଣ୍ଡବୀ' ନାମରେ ଏକ ସୁନ୍ଦର ପ୍ରାସାଦ ତିଆରି କରିଥିଲେ। ଏହା ପରର ଇତିହାସ ଜଣା ନାହିଁ। ପୁନରାବୃତ୍ତି ହେଲା ଧୃତରାଷ୍ଟ୍ରଙ୍କ ସମୟରେ।

ପାଣ୍ଡବମାନେ ଜତୁଗୃହରୁ ଉଦ୍ଧାର ପାଇଲେ। ୧୨ ବର୍ଷର ବନବାସ ସମୟରେ ବ୍ରାହ୍ମଣରୂପରେ ଯାଇ ଉପସ୍ଥିତ ହେଲେ ରାଜା ଦ୍ରୁପଦଙ୍କ କନ୍ୟା ଦ୍ରୌପଦୀଙ୍କ ସ୍ୱୟଂମ୍ବର ସଭାରେ। ସର୍ତ୍ତଜିଣି ଲାଭକଲେ ଅଗ୍ନିସଂଭୂତା ଦ୍ରୌପଦୀଙ୍କୁ। ମାତ୍ର କୁନ୍ତିଙ୍କ ଆଦେଶରେ ବୈଦିକ ରୀତିରେ ସବୁ ଭାଇମାନେ ବିବାହକଲେ ଦୌପଦୀଙ୍କୁ।

ଏ ଖବର କୁରୁସଭା ତଳେ ପହଞ୍ଚିଲା। ଦ୍ରୌପଦୀଙ୍କ ସ୍ୱୟଂମ୍ବରକୁ ଯାଇଥିଲେ ମାନି ଦୁର୍ଯ୍ୟୋଧନ। ହାରିଯାଉଥିଲେ ସର୍ତ୍ତ। ରାଜା ଧୃତରାଷ୍ଟ୍ର ପୁତ୍ରଙ୍କ ହାରିବାକୁ ସହଜରେ ଗ୍ରହଣ କରିପାରି ନଥିଲେ। ପାଣ୍ଡବମାନଙ୍କର ହସ୍ତିନାପୁର ଆଗମନକୁ ମଧ୍ୟ ସ୍ୱୀକାର କରେ ପାରିନଥିଲେ।

କିନ୍ତୁ ନିରୁପାୟ। ପାଣ୍ଡୁପୁତ୍ରଙ୍କ ଅଧିକାରକୁ ମଧ୍ୟ ଅସ୍ୱୀକାର କରିପାରି ନଥିଲେ। ଅନ୍ୟମାନଙ୍କ ପରାମର୍ଶକ୍ରମେ ଅଧାରାଜ୍ୟ ଅର୍ପଣ କଲେ– ପ୍ରଦାନ କଲେ ଇନ୍ଦ୍ରପ୍ରସ୍ଥ। ଆଉ ଯୁଧିଷ୍ଠୀରଙ୍କୁ ଆର୍ଶିବାଦ ଦେଲେ, କହିଲେ ଆମ ପୂର୍ବପୁରୁଷ ପୁରୁରାଉସ, ବାହୁସ ଓ ଯଯାତି ଖାଣ୍ଡବବନ ବା ଇନ୍ଦ୍ରପ୍ରସ୍ଥରେ ଥାଇଁ ଆମ ରାଜ୍ୟକୁ ସମ୍ଭାଳିଥିଲେ।

କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ କୌଣସି ମନୋମାଳିନୀ ନ ଘଟେ, ସେଥିପାଇଁ ଏ ପ୍ରକାର ଆୟୋଜନ ଆପଣାଇ ନେଇଥିଲେ।

ଏଇ ଖାଣ୍ଡବ ବନ। ବିପଦ ସଂକୁଳ, ହିଂସ୍ରଜନ୍ତୁପୂର୍ଣ୍ଣ ଏଥିରେ କାହାକୁ ରାଇତି କରିବେ ଯୁଧିଷ୍ଠୀର।

ଅର୍ଜୁନ ଓ ଶ୍ରୀକୃଷ୍ଣଙ୍କର ମିଳିତ ଉଦ୍ୟମରେ ଅଗ୍ନିସଂଯୋଗ ହେଲା ଏଇ ଖାଣ୍ଡବ ବନରେ। ସର୍ପ ରାଜ ତକ୍ଷକ ଏଥିରୁ ଉଦ୍ଧାର ପାଇଥିଲେ। ଆଉ ଉଦ୍ଧାର ପାଇଥିଲେ ସାରଙ୍ଗ ପକ୍ଷୀର ଶାବକମାନେ।

ଭାରି ସଭାରେ ମହାରାଜ ଧୃତରାଷ୍ଟ୍ରଙ୍କ ସହ କୌରବ ଓ ପାଣ୍ଡବ ରାଜପୁତ୍ରମାନେ ସଭାସୀନ। ପୀତାମହ ଭୀଷ୍ମ, ମନ୍ତ୍ରୀ ବିଦୂର ଓ ଅନ୍ୟାନ୍ୟ ସଭାସଦ୍‌ଗଣ। ଅନ୍ଧ ସମ୍ରାଟ ଧୃତରାଷ୍ଟ୍ରଙ୍କର ଏକମାତ୍ର ଅନ୍ତରର ଉଦ୍ଦେଶ୍ୟ ଦୁର୍ଯ୍ୟୋଧନଙ୍କୁ ରାଜଗାଦି ପ୍ରଦାନ କରିବେ। ସହଯୋଗ କରୁଥାନ୍ତି ନିଜେ ଦୂର୍ଯ୍ୟୋଧନ ସଖା କର୍ଣ୍ଣ ଓ ମାତୁଳ ଶକୁନି। ଇଚ୍ଛା ପଣ୍ଡୁପୁତ୍ରମାନଙ୍କୁ ଦେଶାନ୍ତର କରିବେ। ସୂଚାଗ୍ରେ ପରିମାଣର ଭୂମି ମଧ୍ୟ ଦେବାକୁ ରାଜି ନଥିଲେ ଧୃତରାଷ୍ଟ୍ର। ମନମାରି ବସିଥାନ୍ତି ଯୁଧିଷ୍ଠିର ନିଜର ଭାତ୍ରାମାନଙ୍କ ସହ। ଦେଖୁଥାନ୍ତି କୌରବ ଭ୍ରାତାମାନଙ୍କର ବାହାସ୍ଫୋଟ। ଦୃଶ୍ୟ ହସ୍ତିନାପୁର ରାଜସଭାର। ଯୁଧିଷ୍ଠିରଙ୍କ ଦାବି ଥିଲା ନ'ଗଣ୍ଡି ଗ୍ରାମ। ଶେଷରେ ମଧ୍ୟସ୍ତି ହେଲେ ଶ୍ରୀକୃଷ୍ଣ ନିଜେ। ଫଳରେ ଇନ୍ଦ୍ରପ୍ରସ୍ଥ ପାଣ୍ଡବଙ୍କ ହାତକୁ ଆଉ ହସ୍ତିନାପୁର କୌରବଙ୍କ ହାତକୁ ଗଲା। କିଛି ପରିମାଣରେ ଶାନ୍ତି ପ୍ରତିଷ୍ଠା ହେଲା। ପାଣ୍ଡବଙ୍କୁ ଦିଆଯାଇଥିବା ସ୍ଥାନ ଥିଲା ବିପଦ ସଂକୁଳ। ସଖା କୃଷ୍ଣଙ୍କୁ ନେଇ ଇନ୍ଦ୍ରପ୍ରସ୍ଥରୁ ନାଗ ଓ ତକ୍ଷକ ସର୍ପମାନଙ୍କୁ ବିନାଶକରି ସେମାନଙ୍କର ଅଭିଶାପ ମୁଣ୍ଡ ଉପରେ ଟେକିନେଲେ। ପ୍ରାସାଦ ଗଢ଼ିଲେ– ଗଢ଼ିଲେ ଇନ୍ଦ୍ରପ୍ରସ୍ଥ। ଇନ୍ଦ୍ରଙ୍କ ଅମରାବତୀ ଅନୁକରଣରେ ତିଆରି କଲେ ନିଜର ପ୍ରାସାଦ। ପୃଥିବୀବାସୀ ଏହାକୁ ପ୍ରଂଶସା କଲେ। କହିଲେ ସ୍ୱର୍ଗର ଦ୍ୱିତୀୟ ରୂପ। ବୋଧହୁଏ ୧୫୦୦ ଖ୍ରୀ.ପୂ. ବେଳର ଘଟଣା। ଇନ୍ଦ୍ରପ୍ରସ୍ଥ ନଗର ଦିଲ୍ଲୀ ନଗର ବୋଲି କୁହାଯାଇ ନପାରେ। କିନ୍ତୁ ଆଖପାଖର ଅଂଚଳ ଯାହାସବୁ ମହାଭାରତରେ ଲେଖା ଅଛି, ଯଥା– ପାନିପଥ, ସୋନପଥ, ବାଗପଥ ଓ ତିପଥ। ଦିଲ୍ଲୀ ବୋଧେ ହୋଇପାରିଥାଏ ଇନ୍ଦ୍ରପତ୍। ତାହାହିଁ ଇନ୍ଦ୍ରପ୍ରସ୍ଥ ବା ପୁରୁଣା କିଲ୍ଲା।

ଆୟୋଜନ ହେଲା ଅଶ୍ୱମେଧ ଯଜ୍ଞ– ଯୁଧିଷ୍ଠିର ରାଜଗାଦିରେ ବସିବା ପରେ। ଭାଇମାନଙ୍କ ସହଯୋଗରେ ଦ୍ରୌପଦୀଙ୍କ ପ୍ରରୋଚନାରେ। ଯଜ୍ଞକର୍ମ ଆରମ୍ଭ ହେଲା, ଏଇ ନିଗମବୋଧ ଘାଟରେ। ନିଗମବୋଧ ଘାଟକୁ ଘେରି ଅନେକ ସ୍ମୃତିପୀଠ ମଧ୍ୟ ଘେରି ରହିଛି। ପାଣ୍ଡବମାନଙ୍କ ଇନ୍ଦ୍ରପ୍ରସ୍ଥକୁ ଦଖଲ କଲେ ମନ୍ତ୍ରୀ ବିଶ୍ରବା, ପାଣ୍ଡବ ଶେଷରାଜା କ୍ଷେମକୀଙ୍କୁ ହରାଇ ପ୍ରତିଷ୍ଠା କଲେ ଗୌତମ ବଂଶ। ଚାରିପଟେ ଅନେକ ପ୍ରସିଦ୍ଧ ସ୍ଥାନ। ଅତି ନିକଟରେ ରାଜଘାଟ। ଶାହାଜାହାଁଙ୍କ ଶାହାଜାହାଁବାଦର ପାଚେରୀ ପାଖରେ ଏ ଜାଗା ଅବସ୍ଥିତ। ଏଠି ଏକ ଜଗନ୍ନାଥ ମନ୍ଦିର ମଧ୍ୟ ଅଛି। ୧୯୪୮ରେ ଏହି ଘାଟରେ ମହାତ୍ମା ଗାନ୍ଧୀଙ୍କର ଶେଷକୃତ୍ୟ ସମ୍ପନ୍ନ ହେଲା। ଚାନ୍ଦନୀଚୌକର କଟାର ନାଳ ନିକଟରେ ବିଶ୍ୱେଶ୍ୱର ଶିବମନ୍ଦିର। ଏହାହିଁ ପୂର୍ବକାଳର ବିଦ୍ୟାପୁରୀ।

ପୂର୍ବଦିଗରେ ଯମୁନାର ସ୍ୱଚ୍ଛଧାରା ଓ ପଶ୍ଚିମରେ ଆରାବଲୀ ପର୍ବତ। ମଧ୍ୟ ସ୍ଥଳରେ ହରମୁରାରୀ– ରାଧା କୃଷ୍ଣଙ୍କ ମନ୍ଦିର। ଯୁଧିଷ୍ଠିର ଦିନେ ଭୋଜନ କରୁଥିଲେ। ଦେଖିଲେ ଗୋଟିଏ ମାଛି ତାଙ୍କ ଖାଦ୍ୟ ଉପରେ। ମାଛି ଦେଖି ଆଶଙ୍କା କଲେ କି ରାଜ୍ୟର ବିପଦ ଅବଶମ୍ଭାବି। ବିଚାର କଲେ ସମସ୍ତ ସଭାସଦ ଗଣଙ୍କ ସହ। ସମସ୍ତଙ୍କ ସମର୍ଥନରେ, ପରାମର୍ଶରେ ପରିତ୍ୟାଗ କଲେ ଇନ୍ଦ୍ରପ୍ରସ୍ଥ ଆଉ ଫେରିଗଲେ ହସ୍ତିନାପୁର। ଇନ୍ଦ୍ରପ୍ରସ୍ଥ ହେଲା ମୁକସାକ୍ଷୀ। ଇନ୍ଦ୍ରପ୍ରସ୍ଥ ଚାରିପଟେ ଅନେକ ମନ୍ଦିର। ହନୁମାନଜୀ, ଶିବଜୀ, ନୀଳଛତରୀ, ଯୋଗମାୟା, କାଲକାଜୀ, ବାଳଭୈରବ, ଦୁଧିଆ ଭୈରବ ଇତ୍ୟାଦି। ଭୃଗୁ ସଂହିତାର ମଧ୍ୟ ଏ ମନ୍ଦିରମାନଙ୍କର ଉଲ୍ଲେଖ ଅଛି।

ଇତିହାସକାର ବାରୁଣୀ ଏ କିଲ୍ଲା ସଂକ୍ରାନ୍ତରେ କୌଣସି ଉଲ୍ଲେଖ କରିନାହାନ୍ତି। କିନ୍ତୁ 'ଜାତକ' ସମୟରେ ଇନ୍ଦ୍ରପ୍ରସ୍ଥର ନାଁ ଅଧିକ ପ୍ରସିଦ୍ଧି ଲାଭ କରିଥିଲା ଆଉ ତା ସହିତ ମିଥିଳାର ମଧ୍ୟ। କାହିଁକି ଏହାର ଅବନତି ହେଲା ସେ ବିଷୟ କେହି ଲେଖିନାହାନ୍ତି। ବିଖ୍ୟାତ ହିନ୍ଦୁ କବି ଭଟ୍ଟଙ୍କ ଅନୁସାରେ ବିକ୍ରମାଦିତ୍ୟହିଁ ପାଣ୍ଡବ ବଂଶର ଶେଷ ରାଜା। କିନ୍ତୁ ତା ପରର କୌଣସି ଇତିହାସ ନାହିଁ। ଅନ୍ୟ ମତ ମଧ୍ୟ ଅଛି। ଜୟ ମହାକବି ଚାନ୍ଦବରଦାୟି ଲେଖିଚନ୍ତି ତୋମାର ବଂଶଜ ରାଜା ଚନ୍ଦ୍ରବଂଶୀ (ପାଣ୍ଡବଙ୍କ ବଂଶଜ) ଅନଙ୍ଗପାଳ– ପ୍ରଥମ ଇନ୍ଦ୍ରପ୍ରସ୍ଥକୁ ରାଜଧାନୀ କରିଥିଲେ ଅନେକ ବର୍ଷ ପରେ।

ପ୍ରସିଦ୍ଧ ରାଜାବଳୀ ଗ୍ରନ୍ଥରେ ଲେଖାଯାଇଛି ଭାରତର ଉତ୍ତର ଭାଗରୁ କୁମାୟୁଁ ପର୍ବତମାଳା ନିକଟରୁ ସୁଖବନ୍ତ ନାମକ ଜଣେ ରାଜା ୧୪ ବର୍ଷ ପର୍ଯ୍ୟନ୍ତ ଇନ୍ଦ୍ରପ୍ରସ୍ଥରେ ରାଜୁତି କରିଥିଲେ। ସୁଖବନ୍ତ ନିହତ ହେଲେ ଅନଙ୍ଗପାଳ ପ୍ରଥମଙ୍କ ଦ୍ୱାରା।

୧୫୩୦ରେ ହୁମାୟୁନ ଯେଉଁ ରାଜଧାନୀ ବସାଇଥିଲେ ତା' ନାଁ ମଧ୍ୟ ଥିଲା ଇନ୍ଦ୍ରପ୍ରସ୍ଥ। ୧୫୩୮ରେ ଶେରସାହ ମଧ୍ୟ ଏହାକୁ ରାଜଧାନୀ ରୂପେ ବ୍ୟବହାର କରି ଅନେକ ପରିବର୍ତ୍ତନ କରାଇଥିଲେ। ପରେ ହୁମାୟୁନ ଦ୍ୱିତୀୟବାର ଏ କିଲ୍ଲାକୁ ଦେଖିଲେ। ଆଉ ଗଢ଼ି ତୋଳିଲେ ନିଜର ଲାଇବ୍ରେରୀ ଓ ଜ୍ୟୋତିର୍ବିଦ୍ୟାର ଗବେଷଣା ସ୍ଥଳ। ନାମ ଦେଲେ ଦୀନପନାହ ଅର୍ଥ ଇନ୍ଦ୍ରପ୍ରସ୍ଥର ରକ୍ଷକ ଦୁର୍ଗ। ପ୍ରଥମ ବା ଦ୍ୱିତୀୟ ଶତାବ୍ଦୀରେ ଆଲେକଜାଣ୍ଡ୍ରିୟାର ଭୌଗଳିକ ଟଲେମି ତାଙ୍କ ଭାରତ ମାନଚିତ୍ରରେ 'ଦଇଦାଲା' ନାମରେ ଗୋଟେ ଜାଗାକୁ (ମଥୁରା ଓ ଥାନେଶ୍ୱର) ମଝିରେ ବୋଲି ଦର୍ଶାଇଥିଲେ। ଦଇଦାଲା ଶବ୍ଦର ଇନ୍ଦ୍ରପତ୍ ନାମର ସହିତ ସାମଞ୍ଜସ୍ୟ ନାହିଁ। ୪ର୍ଥ ଶତାବ୍ଦୀରେ ଆଲେକଜାଣ୍ଡରଙ୍କ ଆକ୍ରମଣ ସମୟରେ ମଧ୍ୟ ଏପରି କୌଣସି ତାଲମେଳ ଦେଖାଯାଏନି।

କନିଂହାମ ଅନେକ ପରମ୍ପରା ଅନୁଧ୍ୟାନ କରି ଜାଣିଲେ ଓ ତାରିକ-ଇ-ଫିରିସ୍ତାର ସଂପାଦକ ଫିରିସ୍ତାଙ୍କ ମତକୁ ଗ୍ରହଣ କରିନେଲେ। ସେଥିରୁ ଜଣାଯାଏ କି ରାଜା 'ଦିଲୁ' ବା 'ଧିଲୁ'ଙ୍କ ନାମାନୁସାରେ ଦିଲ୍ଲୀର ନାମକରଣ ହୋଇପାରିଥାଏ। ରାଜା 'ଧିଲୁ' ଦିଲ୍ଲୀରେ ବହୁତ ବର୍ଷ ରାଜ୍ୟଶାସନ କରିଥିଲେ। ଶେଷରେ କାମାୟୁଁର ଶାସକ ଶାକାଦିତ୍ୟଙ୍କ ଦ୍ୱାରା ପରାଜିତ ହୋଇ ମୃତ୍ୟୁବରଣ କଲେ। ଶାକ୍ୟଦିତ୍ୟ ଚଉଦବର୍ଷ ପର୍ଯ୍ୟନ୍ତ ରାଜଗାଦିରେ ବସିବା ପରେ ଶାକ୍ ଅବ୍ଦର ପ୍ରତିଷ୍ଠାତା ଥାଇଁ ଶାଲିବାହାନଙ୍କ ଦ୍ୱାରା ବିତାଡ଼ିତ ହେଲେ।

ଏ ଘଟଣା ବୋଧେ ଖ୍ରୀଷ୍ଟିୟାନ ଅବ୍ଦର ଅଢ଼ପୂର୍ବରୁ। ମୌର୍ଯ୍ୟବଂଶୀ ୩ୟ ରାଜା ଅଶୋକ ଏତେ କ୍ଷମତାଶାଳୀ ଥାଇଁ ମଧ୍ୟ [ପ୍ରାୟ (୨୭୩-୨୩୬ ଖ୍ରୀ.ପୂ.] ପାଟନା ବା ପାଟଳୀପୁତ୍ରକୁ ନିଜ ରାଜଧାନୀ କରିଥିଲେ। ଯେତେସବୁ ଅନୁଶାସନ, ଅନୁଶୀଳନ ପଥରରେ ଖୋଦେଇ କରି ଧର୍ମପ୍ରଚାର ପାଇଁ ରଖାଯାଇଛନ୍ତି ଦିଲ୍ଲୀରେ ଏପରି ସ୍ତମ୍ଭ ନାହିଁ। ଯଦିଓ ମିରଟ ଓ ଟୋପ୍ରା ପ୍ରଭୃତି ଦିଲ୍ଲୀର ଆଖ ପାଖ ଜାଗାରେ ଏପରି ସ୍ତୂପ ସବୁ ଦେଖାଯାଏ। ୨୯୦ରୁ ୬୫୫ ଖ୍ରୀ.ଅ. ମଧ୍ୟରେ ଚାଇନାର

ଭ୍ରମଣକାରୀମାନେ ମଧ୍ୟ ଦିଲ୍ଲୀ ବିଷୟରେ କିଛି କହିନାହାନ୍ତି। ଏପରିକି ହୁଏନ୍ସାଂ ମଧ୍ୟ। ମୌର୍ଯ୍ୟମାନଙ୍କ ଅମଳରେ ଦିଲ୍ଲୀ ରାଜ୍ୟର ପଶ୍ଚାତଭୂମି ରୂପେ ଗଣାହେଉଥିଲା। କିନ୍ତୁ ଗୁପ୍ତା ସାମ୍ରାଜ୍ୟରେ କେତେକ ସାମଗ୍ରୀ ପୁରୁଣା କିଲ୍ଲାରେ ହିଁ ଦେଖାଦେଇଛି। ଲୁହା ଖୁଣ୍ଟଟା ବୋଧେ ସେହିକାଗାର। ୩୮୦ରୁ ୪୧୩ ଖ୍ରୀ.ଅ. ମଧ୍ୟରେ ସେଠାରେ ଚନ୍ଦ୍ର ନାମକ ଜଣେ କ୍ଷମତାଶାଳୀ ରାଜା ରାଜୁତି କରିଥିଲେ। ସେ ସମ୍ରାଟ ଚନ୍ଦ୍ରଗୁପ୍ତ ଦ୍ୱିତୀୟ ହୋଇପାରନ୍ତି। ସେ ହୁଏତ ବିକ୍ରମାଦିତ୍ୟ ପଦବୀ ନେଇ ପାରିଥାନ୍ତି। ଏ ସମ୍ରାଟ ସମୁଦ୍ରଗୁପ୍ତଙ୍କ ସମସାମୟିକ ବୋଲି ମଧ୍ୟ ଗଣାଯାଇପାରନ୍ତି। ଯାହା ହେଲେବି ଲୁହାର ସ୍ତମ୍ଭର ମାଲିକାନା ସତ୍ୱ ଜାହିର ହୋଇପାରିନାହିଁ।

କିନ୍ତୁ ଏଇ ଖୁମ୍ବ ପରେ କୁତୁବକୁ ଅଣାଯାଇଥିଲା। ରାଜପୁତ ତୋମାର ବଂଶଜ ମହେନ୍ଦ୍ରପାଳ ଦିଲ୍ଲୀର ଇତିହାସ ପୁର୍ନଜୀବିତ କଲେ। ସେମାନେ ଦିଲ୍ଲୀକାକୁ ରାଜଧାନୀ କରେ। ସମୁଦ୍ର ପାଳ, ଜୟପାଳ ଓ ତାଙ୍କ ପୁତ୍ର ଅନଙ୍ଗପାଳ ପ୍ରଥମ ଚନ୍ଦ୍ରବଂଶୀ– ପାଣ୍ଡବଙ୍କ ବଂଶଧର ବୋଲି ମଧ୍ୟ କୁହାଯାଏ। ପ୍ରଥମରେ ସେହି ଇନ୍ଦ୍ରପ୍ରସ୍ଥ ବା ପୁରୁଣା କିଲ୍ଲାରେ ରାଜଧାନୀ ବସାଇଲେ। ସେହି ସମୟକୁ ମୁସଲମାନମାନଙ୍କ ଅତ୍ୟାଚାର ଲାଗି ରହିଥିଲା ଉତ୍ତର ଭାରତରେ– ମହମୁଦ ଗଜନୀଙ୍କ ଆକ୍ରମଣ ବି। ଭୟରେ ଥରଥର ହେଲେ ପ୍ରଜାକୁଳ। ହୁଏତ ସେଥିପାଇଁ ଅଡଗପୁର ସୁରଜକୁଣ୍ଡ ପାଖରେ ରାଜଧାନୀ ବନାଇବାର ଆୟୋଜନ କଲେ। ଅନଙ୍ଗପାଳଙ୍କ ଚିନ୍ତା ଦୂରହେଲା– ମହମୁଦ ଗଜନୀ ମୃତ୍ୟୁବରଣ କଲେ। ଆକ୍ରମଣରୁ ନିସ୍ତାର ପାଇଲେ ଅନଙ୍ଗପାଳ।

**ଲୁହାର ସ୍ତମ୍ଭ–**

ତ୍ରିକୋଣ ଭୂମି ଉପରେ ଅବସ୍ଥିତ ଏହି ଲୁହାସ୍ତମ୍ଭ– ଓ୍ୱାଜିରାବା. ତୋଗଲକବାଦ ଓ ମେହୋରଲ୍ଲୀ। ରାଜା ଅନଙ୍ଗପାଳ ଏ ଖୁମ୍ବକୁ ମେହେରୋଲୀରେ ବସାଇଥିଲେ। ଏଠି ୨୭ଟି ମନ୍ଦିର ତୋଳାଇଲେ। ଏ ମନ୍ଦିର ରାଜପୁତାନା ମନ୍ଦିର ଢଙ୍ଗରେ ତିଆରି ହୋଇଥିଲା। ଲୁହା ଖମ୍ବ ତ ସେଇ ଜାଗାରେ ଅଛି। କିନ୍ତୁ ମନ୍ଦିର ଭଙ୍ଗା ଯାଇ ତାର ସାମଗ୍ରୀରେ ମସଜିଦ୍ ତୋଳାଯାଇଛି। ଏଠାରେ ଥିଲା ଚୌଷଠଟି ଖୁମ୍ବ। ଏବେ ବି ମସ୍‌ଜିଦର ପଶ୍ଚିମ ଭାଗ ମନ୍ଦିରର ଏକ ଅଂଶ ବୋଲି ପ୍ରମାଣ ଅଛି। କିଲୋଖୁଡ଼ି ମଧ୍ୟ ଏକଦା ରାଜଧାନୀ ଥିଲା। ସ୍ତମ୍ଭ କିଲି ନାମରେ ମଧ୍ୟ ପରିଚିତ।

ମହାରାଜ ଅନଙ୍ଗପାଳ ଚିନ୍ତିତ। ସ୍ତମ୍ଭକୁ ଖୋଲାଇ ସ୍ଥାନାନ୍ତର କରିବେ ବୋଲି ପ୍ରତିଜ୍ଞା ନେଇଛନ୍ତି। କିନ୍ତୁ ମନରେ ଆସୁଥିଲା ବ୍ରାହ୍ମଣଙ୍କ ବକ୍ତବ୍ୟ। ବ୍ରାହ୍ମଣଙ୍କ ମନରେ ଏ ଖୁମ୍ବ ଶେଷନାଗର ମସ୍ତକ ଛୁଇଁଛି। ଶେଷନାଗ ସର୍ପ ମାନଙ୍କର ରାଜା ଆଉ ସେ ପୃଥିବୀର ଭାର ମୁଣ୍ଡରେ ବୋହି ଚାଲିଛନ୍ତି।

ବ୍ରାହ୍ମଣ ଉପଦେଶ ଦେଇଥିଲେ ସ୍ତମ୍ଭ ସିଧା କରି ଠିକ୍ ଭାବରେ ପୋତା ହେବା ଉଚିତ। ନହେଲେ ରାଜ୍ୟ ହେବ ଢିଲା– ଟଳମଟଳ। ଏ ଉକ୍ତିରେ ବିଶ୍ୱାସ କଲେ ନାହିଁ ମହାରାଜ। ନିଜ ଜିଦ୍‌ରେ ଅଟଳ ରହି ସ୍ତମ୍ଭ ଖୋଲାଇଲେ। ଖୋଳା କାର୍ଯ୍ୟ ସମ୍ପନ୍ନ ହେଲା। ଚକିତ ହେଲେ ମହାରାଜ ବିସ୍ମିତ ନେତ୍ରରେ ଚାହିଁ ରହିଲେ ପ୍ରଜାବୃନ୍ଦ। ଖୁମ୍ବର ଶେଷ ଭାଗରେ ରକ୍ତର ଦାଗ। ପୁଣି ଥରେ ଆଦେଶ ଦେଲେ 'ଖୁମ୍ବକୁ ତା' ନିଜ ଜାଗାରେ ପୋତି ଦିଆଯାଉ। କିନ୍ତୁ ଖୁମ୍ବ ଢିଲା ହୋଇ ରହିଗଲା। ଏ ପ୍ରବାଦ ଉପରେ ଏକ ଦୋହାଁ ଅଛି। ଲେଖାଅଛି; ''କିଲୀ ତୋ ଢିଲି ହୋ ଗଈ, ତୋମାର ଭେୟା ମତହୀନ। ରାଜାଙ୍କର ବ୍ରାହ୍ମଣଙ୍କ କଥାରେ ଅବିଶ୍ୱାସ ଫଳରେ କିଲି ଢିଲି ହୋଇଗଲା। 'ଢିଲି' ଶବ୍ଦର ଅପଭ୍ରଂଶ ହିଁ ଦିଲ୍ଲୀ ବୋଲି ବିଶ୍ୱାସ।

ଆହୁରି ବି ଲେଖାଅଛି ''ବ୍ୟାସ୍ ଇଗଜ୍ୟୋତି (ଜ୍ୟୋତିଷୀ) ଯୋ ବୋଲା ୟେ ବାତ ହୋନେ ବାଲି ହୈ ତୋମାର ତବ ଚୌହାନ ଔର ଥୋଡ଼େ ଦିନମେ ତୁରକ ପଠାନ''।

ମହମ୍ମଦ ଗଜନୀଙ୍କ ବାରବାର ଭାରତ ଆକ୍ରମଣରୁ ରକ୍ଷା ପାଇବା ପାଇଁ ଲାଲକୋଟ, ରାୟପିଥୋରା, ଅନଙ୍ଗପୁର, କିଲୋଖଡି ପ୍ରଭୃତି ସ୍ଥାନରେ ରାଜଧାନୀ ବନାଇଥିଲେ, ଏଇଟା ଚତୁର୍ଥ ଶତାବ୍ଦୀର କାହାଣୀ।

ଏ ଲୋହାର ସ୍ତମ୍ଭକୁ ଦୁଇଥର ନଷ୍ଟ କରିଦେବାର ପ୍ରୟାସ ମଧ୍ୟ କରାଯାଇଛି। ନାଦିର ସାହା ଏହାକୁ ଓପାଡ଼ି ଫୋପାଡ଼ି ଦେବାର ଇଚ୍ଛା କରିଥିଲେ। ସେ ବେଳରେ ଅତ୍ୟାଚାରୀ, ଧ୍ୱଂସକାରୀ ନାଦିରସାହାଙ୍କ ପକ୍ଷରେ ଏହା ତ ଅତି ସାମାନ୍ୟ କଥା। କିନ୍ତୁ ଏ କ'ଣ ? ମୂଲିଆମାନେ ଭାଂଗିବା ପ୍ରୟାସରେ ବ୍ୟସ୍ତ। ନହେଲେ ଜୀବନରୁ ମାରିଦେବାର ଧମକ ଦେଇଥିଲେ ନାଦିର ସାହ। କିନ୍ତୁ ଏ ସର୍ପ ବଂଶକୁ କି ଜବାବ ଏଇ ମୂଲିଆମାନେ ଦେଇଥାନ୍ତେ ? ସାପଙ୍କ ପ୍ରକୋପରେ ମୂଲିଆମାନେ କାମ ନ କରି ବାଧ୍ୟ ହେଲେ କାମ ବନ୍ଦ କରିବାପାଇଁ। ଏଇଟା ବୋଧେ ଖାଣ୍ଡବ ବନର ଏକ ଅଂଶ ଥିଲା। ମରହଟ୍ଟାଙ୍କ ପାଳି ପଡ଼ିଲା ଦ୍ୱିତୀୟଥର। ଦିଲ୍ଲୀ ସହର ହାତକୁ ଆଣିବାପରେ ଏ କୀର୍ତ୍ତିକୁ ଧ୍ୱଂସ କରିବା ପାଇଁ ଏଥିରେ ତୋପ ଖଞ୍ଜି ଦେଇଥିଲେ।

କିନ୍ତୁ ସବୁ ପ୍ରକୋପରୁ ବଂଚିଗଲା ଏ ଖୁମ୍ବ । ଏବେ ବି ଦଣ୍ଡାୟମାନ । 'ଲୋହେକେଲାଟ' ଓ କୁତୁବମିନାର ନିର୍ମାଣ ସଂକ୍ରାନ୍ତରେ ଅନେକ ଭିନ୍ନ ଭିନ୍ନ ମତ ପ୍ରକାଶ ହୁଏ ।

ମେହୋରଲୀର ମାୟାରାମଜୀ ନାମକ ଜଣେ ଶିକ୍ଷକ ଲୁହାର ସ୍ତମ୍ଭ ବିଷୟରେ କୁହନ୍ତି; ଆରମ୍ଭରୁ ଏ ଲାଟ ଏହିଠି ହିଁ ଥିଲା । ମାୟାରାମଜୀଙ୍କୁ ହୁଏତ ସ୍ୱପ୍ନ ହେଲା । ସ୍ୱପ୍ନରେ ଭାବିଲେ ଟୋଳିବା, ଉଖାଡିବା ଓ ପୁଣି ପୋତାହେବ ଲାଟ ଏ ନୁହେଁ । ଅନଙ୍ଗପାଲ ପ୍ରଥମ ଇନ୍ଦରପତରେ ରାଜଧାନୀ ବସାଇଥିଲେ । ତାଂକର କେହି ବଂଶଜ ଦରିଆ ପାଖରୁ ଦୂରକୁ ନେଇ ଏକ ପାହାଡି ଇଲାକା, ଅଡଗପୁରରେ ରାଜଧାନୀ ବସାଇଲେ । ପରେ ପୁଣି କିଲୋଖଡିରେ ରାଜଧାନୀ ବସାଇଲେ । ପରିଶେଷରେ ଶିକ୍ଷକ ମହାଶୟ ମତବ୍ୟକ୍ତ କଲେ କି କୈକବାଦ ଯେବେ କୀଲୋଖଡି ବସାଇଲେ, ସେ କୌଣସି ନୂଆ ସହର ବସାଉ ନଥିଲେ । ପୁରୁଣା ସହରରୁ ସାମଗ୍ରୀକୁ ନେଇ କିଲା ବସାଇଲେ । ପୁଣି ସେ କହିଲେ କି ତୋଗଲକାବାଦରେ ଆଗରୁ ସହର ଥିଲା କାରଣ ଏତେ ବଡ଼ ସହର ଦୁଇବର୍ଷରେ ତିଆରି ହେବାର ସମ୍ଭାବନା ନାହିଁ । ରାଜା ଚନ୍ଦ ଏହି ଲାଟ ବନାଇ ଏହିଠାରେ ହିଁ ଲଗାଇଥିଲେ । ସେ ଜଳାଶୟ ମଧ ବନାଇଲେ ଯାହାକୁ କୁହାଯାଉଥିଲା କ୍ଷୀରସାଗର । ଜଳାଶୟ ମଧ୍ୟରେ ଶେଷଶାୟୀ ବିଷ୍ଣୁ ଭଗବାନଙ୍କ ମନ୍ଦିର । ଏହି ସ୍ତମ୍ଭ ଉପରେ ମୂର୍ତ୍ତି ହୋଇପାରିଥାଏ ଯାହା ଶେଷଭାଗରେ ବ୍ରହ୍ମାଙ୍କ ମୂର୍ତ୍ତି ବିଦ୍ୟମାନ ଥିଲା । ମୁସଲମାନମାନେ ଦିଲ୍ଲୀକୁ କବଜା କରିନେଲେ । ସେହି ସମୟରେ 'ସୀରୀ'ରେ ପୃଥ୍ୱିରାଜଙ୍କ ଜଣେ ପୃଷ୍ଟପୋଷକ ରାଜ୍ୟ ପରିଚାଳନା କରୁଥିଲେ ।

ଖ୍ୱିରବୀ–

ଏ ରାଜା ଶୁଣିଲେ ବି ମୁସଲମାନମାନେ ମନ୍ଦିର ଭାଙ୍ଗୁଛନ୍ତି ଆଉ ମୂର୍ତ୍ତିସବୁ ନଷ୍ଟ କରୁଛନ୍ତି । ତାଙ୍କ ମନକୁ ଭାବନା ଆସିଲା କି ଏ ମୂର୍ତ୍ତିସବୁକୁ ଓ ମନ୍ଦିରକୁ ମଧ ମୁସଲମାନମାନେ ଭାଙ୍ଗିଦେବେ । ବିଶ୍ୱସ୍ତ ଲୋକଙ୍କୁ ଧରି ରାତାରାତି ମୂର୍ତ୍ତି ଧରି ଲୁଚି ଲୁଚି ଗାଁ ପରେ ଗାଁ ପାରିହେଲେ । ହୋଡଲ ଓ ପଲବ୍ଲ ମଝିରେ ଯମୁନା ନଈ ଧାରରେ କୌଣସି ଏକ ଗାଁରେ ପହଞ୍ଚିଲେ । ମୂର୍ତ୍ତି ବି ବହୁତ ଭାରି ଥିଲା । ନଦୀ ସେ ପାରିକୁ ଯିବା ସହଜ ନ ଥିଲା । ସେ ଜଙ୍ଗଲ ଭିତରକୁ ପଶିଯାଇଁ ମୂର୍ତ୍ତିକୁ ଲୁଚାଇଦେଲେ । ଘାଟରେ ଥିବା ବ୍ରାହ୍ମଣଙ୍କୁ କହିଲେ କି ଏ କଥା ସେ ଯେପରି ପ୍ରଘଟ ନ କରନ୍ତି । ଠିକ୍ ପରେ ପରେ ମୁସଲମାନମାନେ ପହଞ୍ଚିଲେ । ଘାଟ ଜଗୁଆଳିକୁ ପଚାରି ଜାଣିଲେ

କି ସେମାନେ ନଦୀ ପାର ହୋଇ ଆରପାରିକୁ ଚାଲିଗଲେଣି । ସେମାନେ ନିଷ୍ଠୁର ଭାବରେ ଘାଟବାଲାଙ୍କୁ ହାଣି ଦେଇ ଫେରିଗଲେ ।

ଏ ଗାଁର ନା ହେଲା ଖୀରବି । ଲୋକମାନେ ଭୂଲିଲେ ସେ ଗାଁକୁ । ଭୂଲିଲେ ସେ ମୂର୍ତ୍ତିକୁ । କାଳକ୍ରମେ ସେଇ ଗାଁର ଦୁଇଜଣ ବ୍ୟକ୍ତି ରାଘୋଦାସ ଓ ରାମଦାସ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ଦୁଃଖରେ ଦିନ କାଟୁଥିଲେ । ସେମାନେ ଜଗନ୍ନାଥ-ପୁରୀ ଯାଉଁ ପ୍ରାଣ ତ୍ୟାଗ କରିବାର ଯୋଜନା କଲେ । ଚାଲିବାର ଯୋଗ୍ୟତା ତ ନଥିଲା । କିଛି ବାଟ ଗଲାପରେ ସାକ୍ଷାତ ହେଲା ଜଣେ ବୃଦ୍ଧଙ୍କ ସହ । ବୃଦ୍ଧ ପ୍ରଶ୍ନ କଲେ । ଜାଣିଲେ ସେମାନଙ୍କର ଉଦ୍ଦେଶ୍ୟ । କହିଲେ ଏହିଠାରେ ତ ଜଗନ୍ନାଥପୁରୀ ଅଛି । ଯାଅ ଦେଖିବ ଯେଉଁ ଜାଗାରେ କାଳିଗାଈ ସ୍ୱତଃପ୍ରବୃତ ହୋଇ କ୍ଷୀରଦାନ କରୁଥି ସେ ହିଁ ଜଗନ୍ନାଥ । ଦୁଇଜଣ ଫେରିଗଲେ । ଜାଗା ଖୋଜି ବାହାର କରି ମୂର୍ତ୍ତିର ସ୍ଥାପନା କଲେ ଓ ମୁକ୍ତ ହେଲେ କୁଷ୍ଠ ରୋଗରୁ । ଏ କଥା ପ୍ରଚଳିତ ଅଛି । ବର୍ତ୍ତମାନ ସେ ଗାଁରେ ଏ ମୂର୍ତ୍ତିଅଛି । କେହି ତାକୁ କଳା ମୁଗୁନି ପଥରର ବୋଲି କହନ୍ତି ତ ଆଉ କେହି କହନ୍ତି ଅଷ୍ଟଧାତୁ ନିର୍ମିତ ।

**କୁତୁବମିନାର—**

ଶିକ୍ଷକ ମହୋଦୟଙ୍କ ମତରେ କୁତୁବମିନାରର ଇତିହାସ ମଧ୍ୟ ଅନ୍ୟ ଧରଣର । ତାଙ୍କ ମତରେ ଏ ମିନାର ନା ପୃଥ୍ୱୀରାଜ ତିଆରି କରିଛନ୍ତି ବା କୁତୁବୁଦ୍ଦୀନ ଆଇବାକ୍ । ଯଦି ପୃଥ୍ୱୀରାଜ ବନାଇଥାନ୍ତେ ତା'ହେଲେ ଚନ୍ଦବରଦାୟୀ ତା' ଉପରେ ଅଧିକାର ପାଡିଥାନ୍ତେ । ତା' ଛଡ଼ା ପୃଥ୍ୱୀରାଜ ତ ବିଳାସ ବ୍ୟସନରେ ମାତିଥିଲେ ତାଙ୍କର ବେଳ କେଉଁଠି ଥିଲା ଏସବୁ ବନାଇବା ପାଇଁ । ତାଙ୍କ ମତରେ ସେଠାରେ ଗୋଟେ 'ବେଧଶାଳା' ଥିଲା । ଯେଉଁ ଢଙ୍ଗରେ ଯନ୍ତର ମନ୍ତର ଗଢ଼ା ହୋଇଛି, ଯେଉଁଠି ତାରାମାନଙ୍କର ଚଳଣି ଦେଖାଯାଉଥିଲା । ସେଥିପାଇଁ ଜଳାଶୟ ମଧ୍ୟ ବନାଯାଉଥିଲା ଓ ସେହି ପାଣିରେ ଆକାଶର ଚିତ୍ର ଦେଖାଯାଉଥିଲା । ପ୍ରମାଣ ସ୍ୱରୂପ କୁହାଯାଏ—

୧. ମିନାରର ପ୍ରବେଶପଥ ଠିକ ଉତ୍ତରଦିଗରେ ଆଉ ରାତିରେ ଧ୍ରୁବତାରା ଠିକ୍ ତା' ସାମନାରେ ଦେଖାଦିଏ ।

୨. ଏ ମିନାରରେ ଯେଉଁ ଲାଲପଥର ଲାଗିଛି ତାହା କେବଳ ମିନାରର ସୁନ୍ଦରତା ପାଇଁ ତିଆରି ହୋଇଛି । ପଥରକୁ ପଥର ଲାଗି ରହିବା ପାଇଁ ଯେଉଁ ମସଲା ଲାଗିଥିଲା ଆଉ ଯେଉଁ ଲୁହାର ହୁକ୍ ଲାଗିଥିଲା । ତା' ଫଳରେ କିଛି ଏପଟ ସେପଟ ହୋଇଯାଇଛି ।

୩. ମୁସଲମାନମାନଙ୍କ ଯେତେସବୁ କୀର୍ତ୍ତି ତିଆରି ହୋଇଛି ସେସବୁ କାବେ (ମୁସଲମାନଙ୍କ ତୀର୍ଥ ସ୍ଥଳ) ଆଡକୁ ମୁହଁ ହୋଇଥାଏ ଏଥିରେ ସେପରି ନାହିଁ।

ମେହୋରଲ୍ଲୀ ନାମ ମଧ୍ୟ ମିହିରଙ୍କ ନାମ ଅନୁସାରେ ନାମିତ। (ମିହିର ଅର୍ଥ ସୂର୍ଯ୍ୟ)। ବିଖ୍ୟାତ ଜ୍ୟୋତିଷ ବରାହମିହିରଙ୍କ ନିର୍ଦ୍ଦେଶରେ ଏହା ଗଢ଼ା ହୋଇଛି। କୁତୁବ ନାମାର ଅର୍ଥ ଧ୍ରୁବତାରା। ଉପର ଲିଖିତ କାରଣରୁ ଏହା ହିନ୍ଦୁମାନଙ୍କର ବୋଲି କେହି କେହି ମତ ଦିଅନ୍ତି। ଦିନରେ ସୂର୍ଯ୍ୟଙ୍କ ଗତିକୁ ଆଧାରକରି ତାର ଛାଇ ଏ ମିନାର ଉପରେ ପଡ଼େ ଆଉ ସମୟ ଜାଣିବାପାଇଁ ସେଇଟାହିଁ ଉପାୟ। ଜୁନ ମାସ ୨୧ ତାରିଖ ଦି'ପହରେ (୧୨ଟା ବେଳେ) ଏ ଲୁହା ସ୍ତମ୍ଭର ଛାଇ ମିନାର ଭିତରେ ପଡେ। ଏଥିରୁ ତାର ଗଠନଶୈଳୀର ତାତ୍‌ପର୍ଯ୍ୟ ବୁଝିହୁଏ।

ବିହାରର ପ୍ରମୂଖ ଐତିହାସିକ ଡକ୍ଟର ଦେବସହାୟ। ତାଙ୍କ ମତରେ ଗୁପ୍ତବଂଶର ଶାସକ ସମୁଦ୍ରଗୁପ୍ତ ପ୍ରଥମରେ ଏହାକୁ ତୋଳାଇଥିଲେ। ଏ ମିନାରରେ ଥିବା ୨୭ଟି ଝରକା ମଧ୍ୟ ୨୭ଟି ନକ୍ଷତ୍ରଙ୍କର ପ୍ରତୀକ ବୋଲି କୁହାଯାଏ। ତାଙ୍କ ମତରେ ସେ ଦୃଢ଼। ସେ କହନ୍ତି ଲୁହାସ୍ତମ୍ଭ ତିଆରି ମିନାର ତିଆରି ସହ ସଂପୃକ୍ତ। ଆହୁରି ବି ଦାବି କରନ୍ତି କି ଯୁଧିଷ୍ଠିରଙ୍କ ବଂଶଜ ରାଜା ମଘବା ଏହାକୁ ତିଆରି କରିଥିଲେ। ଶିକ୍ଷକ ମହାଶୟଙ୍କ ମତ ଯେ ମୀନାର ତିଆରି ହେବା ସମୟରେ ଭାରତବର୍ଷରେ ମୁସଲମାନ ଶାସନ ମଧ୍ୟ ନଥିଲା। ଡକ୍ଟର ତ୍ରିବେଦଙ୍କ ମତରେ ଗୁଲାମ ବାଦଶାହ କୁତୁବୁଦ୍ଦୀନ ଆଇବାକ ଏହାକୁ ତିଆରି କରି ଅସପୂର୍ଣ୍ଣ ଅବସ୍ଥାରେ ମୃତ୍ୟୁବରଣ କରିଥିଲେ ଆଉ ପୂରଣ କରିଥିଲେ ଆଲଟାମସ। କିନ୍ତୁ ଏହା ଠିକ ନୁହେଁ କାରଣ ମୁସଲମାନମାନଙ୍କ ରାଜୁତି ପୂର୍ବରୁ ସେମାନେ ଏପରି କୀର୍ତ୍ତିସ୍ତମ୍ଭ ବନାଇ ନ ପାରିଥାନ୍ତି। ଆହୁରି କହନ୍ତି କି ୧୮୫୭ ପୂର୍ବରୁ ଇଂରେଜମାନେ ବି ଏହାକୁ ହିନ୍ଦୁମୀନାର ବୋଲି ମାନୁଥିଲେ। ସାର ସମ୍ଭବ ଅହମଦଙ୍କ ମତରେ ୪ର୍ଥ ଶତାବ୍ଦୀ ପୂର୍ବରୁ ଏହା ତିଆରି ହୋଇଥିଲା। କାରଣ ସ୍ୱରୂପ–

୧. ଅନଙ୍ଗ ପାଲ ସମ୍ଭବତଃ ୧୧୦୯ ଖ୍ରୀ.ଅ. ବେଳକୁ ଦିଲ୍ଲୀ ସ୍ଥାପନା କରିଥିଲେ।

୨. ଚୌହାନ ବଂଶୀ ରାଜା ଚତୁରସିଂହ ରାୟପିଥୋରାଙ୍କ ବଂଶଜ। ରାୟପିଥୋରାଙ୍କ ସମୟ ୧୧୫୧ ବୋଲି ଲେଖାଯାଇଛି।

୩. ଛ' ଲାଇନ ନାଗରୀ ଭାଷାରେ ଲେଖାଅଛି ୧୧୭୦ ବେଳକୁ ବୁନ୍ଦେଲେ ରାଜ ଚନ୍ଦେରୀଙ୍କର।

ମିନାର ଉପରେ ଲେଖାଥିବା ସଂସ୍କୃତ ଭାଷାରେ ଲେଖା–

୧. ଯାହାଙ୍କର ବାହୁରେ ତରବାରିର ଯଶ ଲେଖାଯାଇଛି, ଯିଏ ବଙ୍ଗଳାର ସମରଭୂମିରେ ସଂଗଠିତ ହୋଇ ଶତ୍ରୁଙ୍କୁ ବାରମ୍ବାର ପଛକୁ ହଟାଇଥିଲେ, ଯିଏ ସିନ୍ଧୁନଦୀର ସପ୍ତଶାଖା ନଦୀ ପାରହୋଇ ବଲ୍ଲୀରୋଙ୍କୁ ଜିତିଥିଲେ, ଯାହାଙ୍କର ଯଶକୀର୍ତ୍ତି ଦକ୍ଷିଣ ସମୁଦ୍ରରେ ଏବେ ଲହରୁଛି।

୨. ଖେଦରେ ଯିଏ ଏ ଲୋକ ତ୍ୟାଗକରି ସ୍ୱର୍ଗରେ ରାଜଭୋଗ କରୁଛନ୍ତି, ଯାହାଙ୍କର ମୂର୍ତ୍ତି ସ୍ୱର୍ଗରେ ପହଞ୍ଚିସାରିଛି, କିନ୍ତୁ ଯଶ ଏବେ ବି ପୃଥିବୀରେ ଖେଳି ଘୁରୁଛି, ଯିଏ ଶତ୍ରୁମାନଙ୍କୁ ଆମୂଳ ନଷ୍ଟ କରିଥିଲେ, ଯାହାଙ୍କର ବୀରତା ଜଙ୍ଗଲର ମହାଗ୍ନି ପରି ବର୍ତ୍ତମାନ ମଧ ଏ ପୃଥିବୀକୁ ଛାଡ଼ିବାକୁ ନାରାଜ।

୩. ନିଜ ବାହୁ ବଳରେ ପୃଥିବୀରେ ଏକଛତ୍ର ରାଜ ବହୁତ ବର୍ଷ ଧରି କରିଥିଲେ, ଯାହାଙ୍କର ମୁଖମଣ୍ଡଳ ପୂର୍ଣ୍ଣଚନ୍ଦ୍ର ଭଳି, ସେ ରାଜା ଚନ୍ଦ ବିଷ୍ଣୁ ଭକ୍ତିରେ ଦତ୍ତଚିତ୍ତ ହୋଇ ବିଷ୍ଣୁପଦ ଗିରି ଉପରେ ଭଗବାନ ବିଷ୍ଣୁଙ୍କର ଏ ବିଶାଳ ଧ୍ୱଜ ସ୍ଥାପିତ କଲେ।

ଏ ସବୁରୁ ଅନୁମାନ କରାଯାଏ କି ଏହି ସ୍ତମ୍ଭ ଏଠିକାର ହୋଇ ନ ପାରିଥାଏ। ହୁଏତ ଅନଙ୍ଗପାଳ, ଯିଏ ଦିଲ୍ଲୀ ନଗର ସ୍ଥାପନା କରିଥିଲେ ସେ ବିହାରରୁ ଏହାକୁ ଆଣି ପାରିଥାନ୍ତି। କିନ୍ତୁ ସନ୍ଦେହ ହୁଏ ଏତେବଡ଼ ଓଜନିଆ ଜିନିଷକୁ ଏତେ ଦୂରକୁ ଆଣିଲେ କିପରି? ତୋମାରି ବଂଶଜ ରାଜା ଜୟପାଳ, ଏହି ବଂଶର। ତାଙ୍କର ପୁତ୍ର ସମୁଦ୍ରପାଳ ଆଉ ସମୁଦ୍ରପାଳଙ୍କ ପୁତ୍ର ଅନଙ୍ଗପାଳ ପ୍ରଥମ। ଅନଙ୍ଗପାଳ ୧ମ, ଅନଙ୍ଗପାଳ ୨ୟ ଓ ଅନଙ୍ଗପାଳ ୩ୟ ଏମାନଙ୍କର ବଂଶଧର।

କୁତୁବ ପାଖରେ ଯେଉଁ ମସଜିଦ୍ ତିଆରି ହୋଇଛି ସେଠାରେ ଜୈନମାନଙ୍କର ପାର୍ଶ୍ୱନାଥ ମନ୍ଦିର ଥିଲା ବୋଲି କବି ଶ୍ରୀଧର ପାର୍ଶ୍ୱପୁରାଣରେ ଉଲ୍ଲେଖ କରିଛନ୍ତି। ଅନଙ୍ଗପାଳ ତୃତୀୟଙ୍କର ମନ୍ତ୍ରୀ ଅଗ୍ରୱାଲ ବଂଶଜ ସାହୁ ନଟଳ ଏହାକୁ ୧୧୩୨ରେ ଗଢ଼ିଥିଲେ। ଏ ମନ୍ଦିରର ହାତୀଦରଜା ଦୁଇପାଖରେ ଦୁଇଟି ହାତୀ ଥିଲେ– ଏବେ ବି ସେ ଦରଜା ଦୃଶ୍ୟମାନ।

ଅନଙ୍ଗପାଳ ତୃତୀୟ ପୁତ୍ରହୀନ ଥିଲେ। ଥିଲେ ଦୁଇ କନ୍ୟା। ବଡ଼କନ୍ୟା କନୌଜରାଜା ବିଜୟଚନ୍ଦ୍ରଙ୍କୁ ବିବାହ କରିଥିଲେ। ତାଙ୍କ ପୁତ୍ର ହେଲେ ଜୟଚନ୍ଦ୍ର। ଛୋଟକନ୍ୟା ବିବାହ କଲେ ଅଜମୀରର ରାଜା ବିଗ୍ରହରାଜଙ୍କୁ। ଜନ୍ମନେଲେ ପୃଥ୍ୱୀରାଜ। ଜୟଚନ୍ଦ୍ରଙ୍କ ଇଚ୍ଛା ବିରୁଦ୍ଧରେ ଅନଙ୍ଗପାଳ ପୃଥ୍ୱୀରାଜଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ। ରୁଷ୍ଟ ହେଲେ ଜୟଚନ୍ଦ୍ର। ସେଇ ରାଗ ରଖି ଜୟଚନ୍ଦ୍ର ମୁସଲମାନମାନଙ୍କ ସହିତ ମିଶି ଦେଶଦ୍ରୋହର ସୁତ୍ରପାତ କଲେ। ରାଜା ଜୟଚନ୍ଦ୍ରଙ୍କ କନ୍ୟା ସଂଯୁକ୍ତା। ଜୟଚନ୍ଦ୍ର ଆୟୋଜନ କଲେ ସ୍ୱୟଂମ୍ବର ସଂଯୁକ୍ତାଙ୍କ ପାଇଁ। ନିମନ୍ତ୍ରଣ ଜଣାଇଲେ ସବୁ ଦେଶର ରାଜନ୍ୟଗଣଙ୍କୁ। କିନ୍ତୁ ନିମନ୍ତ୍ରଣ ଜଣାଇଲେ ନାହିଁ ପୃଥ୍ୱୀରାଜଙ୍କୁ। ଅପମାନିତ ହେଲେ ପୃଥ୍ୱୀରାଜ। ଏଣେ ପ୍ରେମପାଗଳିନୀ ସଂଯୁକ୍ତା ବରଣ କରିସାରିଥିଲେ ପୃଥ୍ୱୀରାଜଙ୍କ ଆଗରୁ ଅନେକବାର ଦେଖା ସାକ୍ଷାତ ହୋଇଥିଲା। ସେଥିପାଇଁ ଅନେକ ଯୋଜନା ମଧ୍ୟ କରିଥିଲେ। ଏକମତ ହୋଇ ସଂଯୁକ୍ତା ଓ ପୃଥ୍ୱୀରାଜ ସ୍ୱୟଂସ୍ୱର ସଭାରେ ଉପସ୍ଥିତ ହେଲେ। ପ୍ରକାଶ୍ୟରେ ବରଣମାଳା ଧରି ସଭାରେ ପ୍ରବେଶ କଲେ ସଂଯୁକ୍ତା। ଆତ୍ମଗୋପନ କରି ପୃଥ୍ୱୀରାଜ ମଧ୍ୟ ସେ ସଭାରେ ଉପସ୍ଥିତ ଥିଲେ। ଭାରି ସଭାରୁ ସଂଯୁକ୍ତାଙ୍କୁ ଉଠାଇ ଆଣିଲେ। ଘୋଡା ଦଉଡାଇ ବାହାରିଗଲେ। ବିରୋଧ କରିବାର ସୁଯୋଗ ନଦେଇ। ଲଜ୍ଜିତ ହେଲେ ଜୟଚନ୍ଦ୍ର। ରାଗ ଓ ଅପମାନ ଦ୍ୱିଗୁଣିତ ହେଲା। ପୃଥ୍ୱୀରାଜ ଭୋଗବିଳାସରେ ମାତି ରହିଲେ। ତାଙ୍କର ନାଁ ଥିଲା ପ୍ରଜାଙ୍କ ପାଇଁ ଅନୁରାଗ ନା ଦେଶକୁ ରକ୍ଷା କରିବାର ଆଗ୍ରହ ନା ଦେଶ ଜୟ କରିବାର ଅଭିଳାଷ। ଲାହୋରର ତତ୍‌କାଳୀନ ମୁସଲମାନ ସୁବେଦାର ଶାହବୁଦ୍ଦୀନ ମହମ୍ମଦ ଘୋରୀ ଦିଲ୍ଲୀ ଉପରେ ଚଢ଼ାଉ କଲେ। ପୃଥ୍ୱୀରାଜଙ୍କର ଘୋର ପ୍ରତିରୋଧ ଫଳରେ ହାରିଲେ ଘୋରୀ। ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ। ପ୍ରାୟ ୧୧୯୩ ବେଳକୁ ମହମ୍ମଦ ଘୋରୀ ଜାଣିବାକୁ ପାଇଲେ କି ପୃଥ୍ୱୀରାଜ ଭୋଗବିଳାସରେ ମାତିଛନ୍ତି। ଅବସର ଦେଖି ଚଢ଼ାଉ କଲେ ପୁନର୍ବାର। ପୃଥ୍ୱୀରାଜ ସମର କ୍ଷେତ୍ରରେହିଁ ନିହତ ହେଲେ। ଏକତ୍ରୀତ ହୋଇପାରିଲେ ନାହିଁ ହିନ୍ଦୁରାଜାମାନେ। ଏଇ ଅନ୍ତଦ୍ୱନ୍ଦ୍ୱରୁ ମୁସଲମାନମାନଙ୍କ ଜୟଯାତ୍ରା ଘୋଷିତ ହେଲା ଭାରତଭୂମିରେ।

## ରାମାୟଣ ଓ ମହାଭାରତ

ଅନେକଦିନ ଆଗର କଥା। ରାମାୟଣ ଓ ମହାଭାରତରେ ଭାଗନେଇଥିବା ଦୁଇଟି ରାଜବଂଶ– ସୂର୍ଯ୍ୟବଂଶ ଓ ଚନ୍ଦ୍ରବଂଶୀ ମନୁଙ୍କଠାରୁ ଉଦ୍ଭବ। ଭାରତ ଛଡ଼ା

ଇଉରୋପ ଓ ଅନ୍ୟ ଦେଶମାନଙ୍କରେ ବହୁ ପୂର୍ବରୁ ଏହାର ପ୍ରଭାବ ପଡ଼ିସାରିଥିଲା। ସଂସ୍କୃତରେ ଲିଖିତ ଏହି ପୁରାଣମାନଙ୍କର ଗଭୀର ସଂପର୍କ ଥିଲା ଗ୍ରୀକ ଓ ଲାଟିନ ସହିତ। ଇଷ୍ଟ ଇଣ୍ଡିଆ କଂପାନୀ ଦ୍ୱାରା ନିଯୁକ୍ତ ମାଉଣ୍ଟଷ୍ଟୁଓ୍ୱାଟ ଏଲିନଷ୍ଟୋନ ଖାଇବର ପାଶ୍ ଓ ତାର ଆଖପାଖ ଅଂଚଳ ପରିଦର୍ଶନ ଓ ଅନୁସଂଧାନ କରିବାର ସୁଯୋଗ ପାଇଥିଲେ। ସେ 'ଭାରତ ଇତିହାସ' ନାମରେଏକ ବହି ଛପାଇଛନ୍ତି– ଲେଖିଛନ୍ତି– 'ମନୁ ସଂହିତାର ରଚୟିତା ମନୁ (ପରେ ହିନ୍ଦୁ ଆଇନ ପ୍ରଣୟନ କରିଛନ୍ତି)ଙ୍କ ମତରେ ମନୁସଂହିତାରେ, ବେଦରେ ବା ଅନ୍ୟ କୌଣସି ପୁସ୍ତକରେ ଆରାୟନମାନେ ଭାରତ ଛଡ଼ା ଅନ୍ୟ କେଉଁ ଦେଶରେ ରହିବାର ଲେଖା ନାହିଁ। ଏପରିକି ହିମାଳୟ ବ୍ୟତୀତ ପୁରାଣମାନଙ୍କର ଲେଖାରୁ ଅନ୍ୟ କୌଣସି ପର୍ବତର ମଧ୍ୟ ବର୍ଣ୍ଣନା ନାହିଁ।

ଭାରତରେ ସୃଷ୍ଟିହେଲା ଦୁଇଟି ଭାଷା। ସଂଘର୍ଷ ହେଲା କେବଳ ଭାଷାର ନୁହଁ ସଂଘର୍ଷ ହେଲା ଦୁଇ ଗୋଷ୍ଠୀର– ଦ୍ରାଭିଡିୟାନ ଓ ଆରାୟନ। ଯୁଦ୍ଧରେ ହଜାର ହଜାର ସଂଖ୍ୟାରେ ଦ୍ରାବିଡ଼ିୟମାନେ ମୃତ୍ୟୁବରଣ କଲେ। ଆରାୟାନମାନେ ଦ୍ରାବିଡ଼ିୟାନମାନଙ୍କର ରାଜ୍ୟ, ପ୍ରାସାଦ, ସହର ସବୁ ନଷ୍ଟ କରିଦେଲେ। ଆରାୟାନମାନେ ବ୍ରାହ୍ମଣ ଥିବାରୁ ତାଙ୍କର ଶତ୍ରୁମାନଙ୍କ ବିରୁଦ୍ଧରେ ମନ୍ତ୍ରଦ୍ୱାରା ଦେବାଦେବୀଙ୍କୁ ସନ୍ତୁଷ୍ଟ କରିବାର ସାହସ ମଧ୍ୟ କରିଥିଲେ। ସେଥିପାଇଁ ସେ ପରାଜିତ ଗୋଷ୍ଠୀକୁ 'ଦାସ' କରିଦେଲେ।

ଆରାୟନମାନେ ଭିନ୍ନ ଭିନ୍ନ ପରମ୍ପରାକୁ ସଂଗଠିତ ଭାବରେ ଏକାଠି କରି ଏକ ସୁପରିଚାଳିତ ଧାରାକୁ ପୁରାଣମାନଙ୍କରେ ବର୍ଣ୍ଣନା କଲେ। ମହାଭାରତ ଓ ରାମାୟଣ ଯୁଗରୁ ପରମ୍ପରାଗତ ଉତ୍ତରାଧିକାର ସୂତ୍ର ସମାଜରେ ପ୍ରବେଶ କରିଥିଲା। ମହାଭାରତ ଓ ରାମାୟଣ– ଦୁଇଟି ଯାକର ମୂଳ ଆଧାର ଥିଲା– 'ନିର୍ବାସନ'। ହୁଏତ ଏହା ଜରିଆରେ ଅଗମ୍ୟ, ନୋଧ ସ୍ଥାନକୁ ଅଧିକାର କରି ବୋଧଗମ୍ୟ କରିବା, ଏ ନିର୍ବାସନର ଉଦ୍ଦେଶ୍ୟ ଥାଇପାରେ। ସେମାନେ ନିର୍ବାସିତ ହୋଇ ଯାଉଥିଲେ ଜଙ୍ଗଲକୁ– ମରୁଭୂମିକୁ ନୁହେଁ। ଆଉ ପଶ୍ଚିମରୁ ପୂର୍ବ ଭାରତକୁ।

....ଖ୍ରୀ.ପୂ. ୫୨୦ରୁ ୩୨୦ ବେଳର କଥା। ଇରାନର ପର୍ସେପୋଲିସର ଥିଲା ପର୍ଶିୟାର ରାଜଧାନୀ। ଆଉ ରାଜାଥିଲେ ଡାଲିଅସ– ଏକ ବିରାଟ ସାମ୍ରାଜ୍ୟର ଅଧିକାରୀ। ଏଥିରେ ଯେଉଁ ଅନୁଶୀଳନ ଦେଖାଯାଏ ସେଥିରେ ହି(ନ)ଦୁ ନାମ

ଲେଖାଥିଲା। ହି(ନ)ନ୍ଦୁ ଏକ ନଦୀ। ସଂସ୍କୃତରେ କୁହାଯାଏ ସିନ୍ଧୁ। ସପ୍ତସିନ୍ଧୁର ଅର୍ଥ ସାତଟି ନଦୀ। ସାତଟି ନଦୀ ପ୍ରବାହିତ ହେଉଥିବା ରାଜ୍ୟକୁ ଆର୍ଯ୍ୟମାନେ ପଞ୍ଜାବ ନାମରେ ଅଭିହିତ କରିଥିଲେ। ପର୍ଶିୟାନ ସାହିତ୍ୟର ତାଳମେଳ ଥିଲା ସଂସ୍କୃତ ପରି। ଏଥିରେ ସିନ୍ଧୁ ହିନ୍ଦୁ ଭାବରେ ପ୍ରବେଶ କଲା। ଅପଭ୍ରଂଶ ହୋଇ ହିନ୍ଦୁରୁ ଇନ୍ଦୁ, ଇଣ୍ଡ ବା ଇଣ୍ଡିଆ ନାମରେ ପରିଣତ ହେଲା। ଏହି ଶବ୍ଦ ଲାଟିନ ଓ ଅନ୍ୟ ଇଉରୋପୀୟ ଶବ୍ଦ ସହ ଖେଳେଇ ହୋଇଗଲା। ଅନ୍ୟ ଦେଶରୁ ଭାରତରେ ସେନାପ୍ରବେଶ ଏକ ଚିରାଚରିତ ପ୍ରଥା ବୋଲି ଧରାଯାଏ।

ଆଲେକ୍‌ଜାଣ୍ଡରଙ୍କ ଠାରୁ ଆରମ୍ଭ କରି ମହମ୍ମଦ ଗଜନୀ, ତୈମୁରଲଙ୍କ ଠାରୁ ମୋଗଲ, ପର୍ଶିୟାର ନାଦିରସାହ, ଅବଦାଲି, ଇଂରେଜଙ୍କ ରବର୍ଟ କ୍ଲାଇବ– ସମସ୍ତଙ୍କର ଲକ୍ଷ୍ୟ ଏକ– ଭାରତକୁ ଲୁଣ୍ଠନ କରିବା।

ଖ୍ରୀ.ପୂ.୫୨୦ ବେଳର ଇରାନ ଅନୁଶୀଳନରୁ 'ହିନ୍ଦୁ' ନାଁର ପ୍ରକାଶ ପାଇବାର ଦେଖାଯାଇଛି। ଅନୁମାନ କରାଯାଏ ଏହା ଡାରିଏସଙ୍କ ସାମ୍ରାଜ୍ୟ ସହିତ ସଂପୃକ୍ତ। ଲେଖାରୁ ଜଣାଯାଏ 'ଗାଦାରା' ଶବ୍ଦରୁ 'ଗାନ୍ଧାରା' ଆସିପାରିଥାଏ। ଏପରି ରାଜ୍ୟର ନାମ ମଧ୍ୟ ସଂସ୍କୃତ ଓ ବୁଦ୍ଧଙ୍କ ଲେଖାରୁ ବାହାରେ। ଏ ଅଞ୍ଚଳ ପଶ୍ଚିମ ପଞ୍ଜାବରୁ ଉତ୍ତର–ପଶ୍ଚିମ ଫ୍ରଣ୍ଟିୟର ପ୍ରଦେଶ ଦେଇ କାବୁଲ ପର୍ଯ୍ୟନ୍ତ ବିସ୍ତୃତ। ହୁଏତ ତାହାହିଁ ଦକ୍ଷିଣ ଆଫଗାନିସ୍ଥାନ (କାନ୍ଧାହାର ବୋଧେ ଏକା ନାଁ)।

ଜେନୋଫନ ଓ ହିରୋଡୋଟସଙ୍କ ମତରେ ଗାନ୍ଧାର ସାଇରସଙ୍କ (ଡାରିଏସଙ୍କ ପୂର୍ବ ବଂଶଧର) ଅଧିକାରରେ ଥିଲା। ହୁଏତ ଷଷ୍ଠ ଶତାବ୍ଦୀ ବେଳକୁ ଏ ଅଞ୍ଚଳ ଆକ୍ରମଣ କରିଥିଲେ। ଏହା ଦେଶାନ୍ତର ନୁହେଁ ସ୍ୱଇଚ୍ଛାରେ ଅନ୍ୟଦେଶରୁ ଆସିବା। ବୋଧେ ରଥାଚାରୀଙ୍କର ବିଳମ୍ବିତ ଅନ୍ତର୍ଦାହ। ଅନ୍ତର୍ଦାହର ଆକ୍ରମଣ ଫଳରେ ସାଇରସଙ୍କର ରଥ ଉପରେ ହିଁ ମୃତ୍ୟୁ ହେଲା। ଶତ୍ରୁ ଥିଲେ ଡରବାଇକ୍ସ। ଡରଚାଇକ୍ସଙ୍କର ହିନ୍ଦୁ ଲୋକଙ୍କ ସହ ସଂପର୍କ ଥିଲା। ହିନ୍ଦୁମାନେ ଡରବାଇକ୍ସଙ୍କୁ ଯୁଦ୍ଧ–ହାତୀ ଯୋଗାଇ ଦେଉଥିଲେ ସେ ସମୟରେ। ପ୍ରାୟ ଦୁଇଶହ ଶତାବ୍ଦୀ ପରେ ଆଲେକ୍‌ଜାଣ୍ଡର ଦି ଗ୍ରେଟଙ୍କର ଏପରି ନଦୀ ପାର ହୋଇ ଯୁଦ୍ଧ କରିବାର ଇଚ୍ଛା ପ୍ରବଳ ହୋଇପାରିଥାଏ– ଆକେମେନଡିସଙ୍କ ପଦକ୍ଷେପକୁ ଅନୁସରଣ କରି ଦେଶ ଜୟ ଛଡ଼ା ଯୁଦ୍ଧ–ହାତୀ ହାସଲ କରିବା ତାଙ୍କର ଥିଲା ଅଭିପ୍ରାୟ।

ଆକେମେନଡିସଙ୍କ ଶାସନ ଭିତରେ ଡାରିଏସଙ୍କ ରାଜୁତି ସମୟରେ 'ହିନ୍ଦୁ'ର ହୁଏତ କୌଣସି ରେକର୍ଡ ନାହିଁ। ପରେ 'ସିନ୍ଧୁ'ର ନାମ ଇରାନର ରେକର୍ଡ ଭିତରକୁ ଆସିଛି। ଇରାନିଆନମାନଙ୍କର ବିଶ୍ୱାସ ଥିଲା କି ସିନ୍ଧୁ ନଦୀ ପାର ହୋଇ, ପଞ୍ଜାବ ଦେଇ, ରାଜସ୍ଥାନର ମରୁଭୂମି ଟପି ଗାଙ୍ଗେୟ ସମତଳ ଭୂମି ତଳକୁ ଏ ଦେଶକୁ ଘେରି ରହିଛି ସମୁଦ୍ର– ସାରା ବିଶ୍ୱର ଚତୁର୍ଦ୍ଦିଗରେ। ଆଉ ଏ ଦେଶରେ ଭରି ରହିଛି ଧନ, ରତ୍ନ, ସଂପଦ। ରାଜ୍ୟ ଲୋଭ ନ ଥିଲା– ଥିଲା ସଂପଦ ଲୁଟିନେବାର ଆନନ୍ଦ। ଶିଶୁ ଆଲେକ୍‌ଜାଣ୍ଡରଙ୍କ ମନରେ, ଶହେ ବର୍ଷର ପର୍ଶିୟାନ ଓ ଇରାନର ଇତିହାସ ଓ ତାର ଲୋକକଥା ସବୁ ଶୁଣି ବିଶ୍ୱାସ କରୁଥିଲେ 'ଇଣ୍ଡିଆ' ଗୋଟେ ସ୍ୱର୍ଣ୍ଣପ୍ରସୁ ଦେଶ।

ହେରୋଡୋଟସ୍ ଇନ୍ଦସ ବିଷୟରେ ଜାଣିଥିଲେ ତା' ପୁଣି ଲୋକପ୍ରବାଦରୁ। ଭିନ୍ନ ଭିନ୍ନ ମତରେ ସଂକ୍ଷିପ୍ତ ଧାରାରେ ହେରୋଡେଟସଙ୍କ ଇତିହାସ ଗ୍ରୀକ ଓ ମେସୋଡିନିଆରେ ଖେଳିଯାଇଥିଲା। ଏ ଇତିହାସ ପ୍ରଭାବ ପଡ଼ିଲା ଶିଶୁ ଆଲେକଜାଣ୍ଡରଙ୍କ ମନରେ। ଆକେମେନାଡିସରୁ ଭାରତର ସଂପର୍କ ଅନେକ ଭାବରେ ଆସିପାରିଥାଏ। ଭାରତୀୟ ସୈନ୍ୟମାନଙ୍କର ଓ ଆକେମେନାଡିସ ସାମ୍ରାଜ୍ୟର ସୈନ୍ୟମାନଙ୍କର ସଂପର୍କର ଆଦାନ ପ୍ରଦାନ ମଧ୍ୟ ଥିଲା– ଯାହାଫଳରେ ସଂସ୍କୃତ ଭାଷା ଏକ ମାଧ୍ୟମ ବୋଲି ଧରାଗଲା। ଏମାନଙ୍କୁ ଭାରତୀୟମାନେ ଯବନ ବୋଲି ସମ୍ବୋଧନ କରୁଥିଲେ।

ବର୍ତ୍ତମାନର ଇସଲାମାବାଦଠାରୁ ୩୦ କିଲୋମିଟର ଦୂରତାରେ ତକ୍ଷିଲା ସହର। ପଞ୍ଜାବରେ ସେତେବେଳେ ବାସଜମିପାଇଁ ଜଳର ସୁବିଧା ନଥିଲା। ଫଳରେ ସେଠାରେ ଗହମ, ଆଖୁ ଇତ୍ୟାଦି ଉତ୍ପାଦିତ ହେଉଥିଲା। ତକ୍ଷିଲା ଗୋଟାଏ ବଡ଼ ସହର। ଏଠି ଆଫଗାନିସ୍ଥାନରୁ ଖାଇବର ପାଶ୍ ଦେଇ ବ୍ୟବସାୟ– ଘୋଡା, ସୁନା, ମୂଲ୍ୟବାନ ପଥର ଓ ସୁନ୍ଦର କପଡ଼ାର ବ୍ୟବସାୟ ଖୁବ୍ ଭଲ ଭାବରେ ଚାଲିଥିଲା। ତକ୍ଷଶୀଳାର ଅଭିବୃଦ୍ଧି ପର୍ଶିୟାନ ଆକ୍ରମଣର ଫଳ। ହରପ୍ପାନଙ୍କ ତକ୍ଷିଲା ବାଟେ ପଶ୍ଚିମଦେଶର ବ୍ୟବସାୟ ଛଡ଼ା ଆସିଲା ଆରମାଇକ ଲେଖା। ଭାରତରେ ଏହାହିଁ ପ୍ରଥମ ଲେଖା। ଆକାମେଣ୍ଡିସ ଜଗତ ସହିତ ବ୍ୟବସାୟ ଫଳରେ କରଜରେ ବୁଡ଼ିଯାଇଥିଲା ଭାରତ।

ଅନେକ ଜନପଦ ଏଠାରେ ଥିଲା । ରାମାୟଣରେ ଲେଖାଛି ଭଗବାନ ରାମଙ୍କର ଜଣେ ଭାତଷ୍ପୃତ ତକ୍ଷିଲା ବସାଇଥିଲେ । ମହାଭାରତରେ ବି କଥିତ ଅଛି କି ପ୍ରକୃତପକ୍ଷରେ ତକ୍ଷଶୀଳାରେ ହିଁ ଭାରତଯୁଦ୍ଧ ବିଷୟରେ ପ୍ରଥମେ ଜଣାଗଲା । ଉତ୍ତର ଭାରତରେ ଏ ରାଜ୍ୟର ବେଶ୍ ଅଭିବୃଦ୍ଧି ଥିଲା । ସେଠାକୁ ଛାତ୍ରମାନେ ସଂସ୍କୃତ ଶିଖିବାକୁ ଆସୁଥିଲେ । ଖ୍ରୀ.ପୂ. ୩ୟ ଶତାବ୍ଦୀରେ କୌଟିଲ୍ୟହିଁ ଏହିଠାରେ ଜନ୍ମଗ୍ରହଣ କରିଥିଲେ । ପାଣିନୀ ବ୍ୟାକରଣ ମଧ ଏହିଠାରେ ହିଁ ଲେଖିଥିଲେ ।

ହିମାଳୟ ତଳେ ଥିବା ବିହାର ଓ ଉତ୍ତରପ୍ରଦେଶ ଦେଇ ଉତ୍ତରପଥରେ ତକ୍ଷିଲା ସହ ବ୍ୟବସାୟିକ ସଂପର୍କ ମଧ ଥିଲା । ଛୋଟ ନାଗପୁର ଜଙ୍ଗଲ ଓ ପ୍ରବାହିତ ଗଙ୍ଗାର ଜଳସ୍ରୋତ ନିକଟରେ ମଗଧ ରାଜ୍ୟ ଅବସ୍ଥିତ । ପାଟନା ଓ ଗୟାର ମଧବର୍ତ୍ତୀ ମଗଧ ରାଜ୍ୟ ସେତେବେଳେ ରାଜଗିରୀର ରାଜଧାନୀ ଥିଲା । ବର୍ତ୍ତମାନର ପାଟନା ଓ ଗୟା । ଏହିଠାରୁ ବୁଦ୍ଧ ଓ ମହାବୀରଙ୍କର ଇତିହାସ ସୃଷ୍ଟି ହୋଇଥିଲା । ଭିର ମାଉଣ୍ଡରୁ ମିଳିଥିବା କଣାଥିବା ମୁଦ୍ରାରୁ ଏହା ଜଣାଯାଏ । ଏଥିରେ ଆକାମେନିତ ଉଦ୍ୟମ ବେଶ ପ୍ରଶଂସନୀୟ । ଗାନ୍ଧାର ଓ ଇଣ୍ଡିଆ ଏହି ଆକାମେନିଡ଼ ରାଜକ୍ଷମତା ଅଧିନରେ ୪ର୍ଥ ଶତାବ୍ଦୀରେ ରହିଥିଲେ ।

ବୈଦିକ ଯୁଗ ପ୍ରାୟ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ଥିଲା । ରାଜ୍ୟ ଗଠନ, ସହରି ସଭ୍ୟତା ପ୍ରାୟ ୫ମ ଶତାବ୍ଦୀର ବୋଲି ଅନୁମାନ କରାଯାଏ । ମଗଧର ଅଭ୍ୟୁତ୍ଥାନ ଅଶୋକଙ୍କର ଶହେବର୍ଷ ପୂର୍ବର ବୋଲି ଦାବି କରାହୁଏ । ବଂଶାନୁଗଟ ପରମ୍ପରାର ଶାସନ ହୁଏତ ଯଥେଷ୍ଟ ପୂର୍ବରୁ ହୋଇଥିଲା– ଗୌତମ ବୁଦ୍ଧଙ୍କର ଜନ୍ମର ବହୁପୂର୍ବରୁ ।

ଖ୍ରୀଷ୍ଟିୟାନ ଯେପରି ଖ୍ରୀଷ୍ଟଜନ୍ମକୁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ବୋଲି ମାନିନେଇ ସେହି ସମୟର ପୂର୍ବବର୍ତ୍ତୀ ସମୟକୁ ଖ୍ରୀ.ପୂ. ଓ ପରବର୍ତ୍ତୀକୁ ଖ୍ରୀ.ଅ. ବୋଲି ଅବତାରଣା କଲେ, ବୁଦ୍ଧଙ୍କର 'ପରିନିର୍ମାଣ' ମଧ ସେହିପରି ଏକ ଘଟଣା ରୂପେ ଗଣାଯାଇ ସେହି ସମୟର ପୂର୍ବ ଓ ପରଠାରୁ ସମୟ ନିର୍ଦ୍ଧାରଣ ଯୋଜନା ହୋଇଥିଲା । ବୁଦ୍ଧଙ୍କର 'ପରିନିର୍ମାଣ'ର ସମୟ ନିର୍ଦ୍ଦିଷ୍ଟ ନୁହେଁ । କାରଣ ଶ୍ରୀଲଙ୍କା, ଚାଇନା ଇତ୍ୟାଦି ସହରମାନଙ୍କରେ 'ପରିନିର୍ମାଣ' ତାରିଖର ଭିନ୍ନତା ଦେଖାଯାଏ । ସବୁକୁ ବିଚାର କରି ଭାରତୀୟ ଇତିହାସ ବୁଦ୍ଧଙ୍କ ଜନ୍ମକୁ ଖ୍ରୀ.ପୂ. ୫୬୬-୩ ବୋଲି ଗ୍ରହଣ କରିନେଇଛି । ସେତେବେଳେ ଧର୍ମର ଧାରା, ସାମାଜିକ ଧାରା ଭିନ୍ନ ଥିଲା । ସଂସାର ତ୍ୟାଗ, ଆତ୍ମ-ତ୍ୟାଗ ଜୀବନର ଓ ସାମାଜିକ ପରମ୍ପରାର ଏକ ଅପରିହାର୍ଯ୍ୟ ଅଂଗ

ହୋଇଯାଇଥିଲା । ଅନ୍ୟ ଦିଗରେ ସାମାଜିକ ପରିବର୍ତ୍ତନ ହୋଇ ସଂପତ୍ତି ଓ କ୍ଷମତାର ଲୋଭ ବୃଦ୍ଧି ହୋଇ ରାଜ୍ୟ-ଗଠନ, ସହରି ସଭ୍ୟତା ଫଳରେ ସମାଜକୁ ଏକ ବିଭ୍ରାନ୍ତିକର ପରିସ୍ଥିତିରେ ପକାଇ ଦେଇଥିଲା ।

**ସିଦ୍ଧାର୍ଥ :**

ଏଇ ସମୟକୁ ଜନ୍ମନେଲେ ରାଜପୁତ୍ର ସିଦ୍ଧାର୍ଥ । ଶାକ୍ୟ-ରାଜ୍ୟ ଗଣ-ସଂଘର ଏକ ଅଂଶଥିଲା । କ୍ଷତ୍ରିୟ ରାଜପୁତ୍ର ସିଦ୍ଧାର୍ଥ କପିଳବସ୍ତୁ ରାଜଧାନୀର ରାଜପୁତ୍ର । କପିଳବସ୍ତୁ ଏତେ ନାମଜାଦା ସହର ନଥିଲା । ମଗଧର ଶାସନ ତଳେ ଲିଚାଭି ରାଜଧାନୀ ବୈଶାଳୀ, କୋଶଳର ରାଜଧାନୀ ଶ୍ରୀବସ୍ତୀ ବା ରାଜଗୀହ ଥିଲା । ଏସବୁ ଥିଲା ନାମଜାମା ସହର ।

ଇତିହାସ କୁହେ ସିଦ୍ଧାର୍ଥ ପିଲାଦିନରୁ ଥିଲେ ସଂସାର-ବୈରାଗୀ । ରୋଗୀ, ବୃଦ୍ଧ, ମୃତ୍ୟୁର ଚିତ୍ର ତାଙ୍କ ମନରେ ଦୃଢ ଆସନ ବସାଇଥିଲେ । ଶାକ୍ୟଦେବ ଅତି ଅଳ୍ପବୟସରୁ ବିବାହ ହେଲେ ଅନିନ୍ଦ୍ୟ ସୁନ୍ଦରୀ ରାଜକନ୍ୟା ସହିତ । ପୁତ୍ର ମଧ୍ୟ ଜାତ ହେଲା । ସଂସାରର ମୋହ ବଶ କରିପାରିଲାନି ବିତସ୍ପୃହ ରାଜକୁମାର ସିଦ୍ଧାର୍ଥଙ୍କୁ । ଗଭୀର ରାତିରେ ତ୍ୟାଗକଲେ ପୁତ୍ର ସ୍ତ୍ରୀଙ୍କୁ । ସ୍ତ୍ରୀ ପୁତ୍ର ତ୍ୟାଗକରି ଏସବୁ ସହର ମାନଙ୍କରେ ଘୁରି ବୁଲିଲେ ସିଦ୍ଧାର୍ଥ । ପ୍ରାୟ ଖ୍ରୀ.ପୂ. ୪୦୦ ବେଳକୁ ବୁଦ୍ଧଙ୍କର ମଗଧ ଅନୁପ୍ରବେଶ ସମୟରେ ମଗଧର ରାଜା ଥିଲେ ବିମ୍ବିସାର । ବଙ୍ଗଳାର ଅଙ୍ଗ ମଗଧ ରାଜ୍ୟର ପୂର୍ବଦିଗରେ ଅବସ୍ଥିତ । ଚମ୍ପା ଏହାର ରାଜଧାନୀ । ସେ ସମୟରେ ମଗଧରୁ ଜଳପଥରେ କଲିକତା ନିକଟସ୍ଥ ତାମ୍ରଲିପ୍ତ ବନ୍ଦର ଦେଇ ବଙ୍ଗୋପ ସାଗରକୁ ଯାଇହେଉଥାଏ । ଏ ବନ୍ଦର ଜରିଆରେ ରାଜା ବିମ୍ବିସାର ବର୍ମା ଓ ଶ୍ରୀଲଙ୍କାରେ ବ୍ୟବସାୟ ସୂତ୍ରରେ ବାନ୍ଧି ହୋଇଯାଇଥିଲେ । ଏଇ ସୁଯୋଗରେ ବିମ୍ବିସାର ମଗଧକୁ ଏକ କ୍ଷମତାଶୀଳ ରାଜ୍ୟରେ ପରିଣତ କରିପାରିଥିଲେ । ନିଜେ ବିବାହ ମଧ୍ୟ ବୁଝିବିଚାରି କରିଥିଲେ । ଫଳରେ କୋଶଳ, ଅବନ୍ତି, ତକ୍ଷଶୀଳା ଓ ଲାଚାଭିମାନଙ୍କ ସହ ସଂପର୍କ ରଖିଥିଲେ । ଯୁଦ୍ଧ ପାଇଁ ସବୁ ପ୍ରସ୍ତୁତ କରି ରଖିଥିଲେ– ଯଥା ହାତୀ ଓ ଧାତୁ । ଏକ ସୁସଂଗଠିତ ସେନାବାହିନୀର ମଧ୍ୟ ଅଧିକାରୀ ଥିଲେ । ସିଦ୍ଧାର୍ଥ ମଗଧରେ ପହଞ୍ଚିବା ପରେ ତାଙ୍କୁ ଉପଦେଶ ଦେଲେ, ବିମ୍ବିସାର ଆଗ୍ରହ ଦେଖାଇଲେ ଦାନ ଦେବାପାଇଁ ରାଜ୍ୟ, ସେନା, ଘୋଡା ହାତୀ ସବୁକିଛି । ଆଉ ବଦଳରେ ଚାହିଁଲେ କି ସେ କ୍ଷତ୍ରିୟ କର୍ମକ୍ଷେତ୍ରକୁ ଫେରିଆସନ୍ତୁ । କିନ୍ତୁ ପ୍ରସ୍ତାବ ଅଗ୍ରାହ୍ୟ କଲେ ସିଦ୍ଧାର୍ଥ । ପୁରୁଣାକାଳର

କାବ୍ୟ ବର୍ଣ୍ଣନା ଅନୁଯାୟୀ ସିଦ୍ଧାର୍ଥ ସ୍ଥାୟୀ, ଜୀବନକୁ ଆଦରି ନ ନେଇ ଏକ ଅନିର୍ଦ୍ଦିଷ୍ଟ, ଅନିଶ୍ଚିତ ପଥର ଯାତ୍ରୀ ହେବାକୁ ପସନ୍ଦ କଲେ। ବୁଦ୍ଧଗୟାରେ ପିପଳ ବୃକ୍ଷ ତଳେ ସାଧନା ଆରମ୍ଭ କଲେ। ସିଦ୍ଧି ଲାଭ କଲେ। ସିଦ୍ଧି ଲାଭ ପରେ ଗଲେ ବାଣାରାସୀ। ସାରନାଥର ହରିଣପାର୍କର ଜଙ୍ଗଲ ଭରା ପରିବେଶରେ ସେ ସାଧୁମାନଙ୍କ ମେଳରେ ୫ଜଣ ମିତ୍ରଙ୍କୁ ତାଙ୍କର ପ୍ରଥମ ଉପଦେଶ ପ୍ରଦାନ କଲେ। ଆସକ୍ତି ଓ ସନ୍ୟାସ ଦୁହିଁଙ୍କ ମିଳନର ଏକ ମଝିରାସ୍ତା (The Middle Way) ବାହାର କଲେ। ଏହି ତତ୍ତ୍ୱ ଉପରେ ତାଙ୍କର 'ଅଷ୍ଟପଥ'ର ଅବତାରଣା। ସେ ଧର୍ମର ତିନି ରାସ୍ତା ବାଛିନେଲେ (ବୁଦ୍ଧ, ଧର୍ମ ଓ ସଂଘ)। ଏହା ହେଲା ବୁଦ୍ଧଙ୍କର ଧର୍ମର ରାସ୍ତା। ବୁଦ୍ଧଙ୍କର ଧର୍ମର ରାସ୍ତା କୌଣସି ନୂଆ ରାସ୍ତାକୁ ନେଇଯାଇ ନାହିଁ। ଉପନିଷଦ୍‌ରୁ ମିଳିଥିବା ଶିକ୍ଷା– ପୁର୍ନଜନ୍ମରେ ବିଶ୍ୱାସ, ସେଇ ବୃତମାନଙ୍କ ମଧ୍ୟରୁ ନିଜକୁ ମୁକୁଳେଇବାର ରାସ୍ତା ଖୋଜିବା ଥିଲା ଏହାର ମୂଳମନ୍ତ୍ର। ବୁଦ୍ଧ ଦେଖାଇଲେ ଏଥିରୁ ମୁକୁଳିବାର ରାସ୍ତା। କହିଲେ ନିଜର ଆସକ୍ତି, ଆକାଂକ୍ଷା ହିଁ ଜୀବନରେ ଅଶାନ୍ତିର ମୂଳ କାରଣ। ଏହା ବିନାଶରେ ଅଶାନ୍ତିର ବିନାଶ।

ବୁଦ୍ଧତ୍ୱ ପ୍ରାପ୍ତିପରେ ବୁଦ୍ଧ ୪୦ ବର୍ଷ ବଞ୍ଚିଥିଲେ। ଘୁରି ବୁଲିଲେ ରାଜ୍ୟପରେ ରାଜ୍ୟ। ତାଙ୍କ ଶିକ୍ଷାରେ ଅନୁପ୍ରାଣିତ ହୋଇ କୋଶଳର ରାଜା ପ୍ରସନ୍ନଜିତ, ମଗଧର ବିମ୍ବିସାର ଇତ୍ୟାଦି ସେ ଧର୍ମପ୍ରତି ଆକୃଷ୍ଟ ହେଲେ। ଶାକ୍ୟ ରାଜ୍ୟକୁ ବୁଦ୍ଧ ନିଜ ଧର୍ମପ୍ରଚାର କରିପାରି ନଥିଲେ। ମୃତ୍ୟୁ ବେଳକୁ ତାଙ୍କ ଶିକ୍ଷାର ପ୍ରସାର ହୋଇସାରିଥିଲା।

**ଅଜାତଶତ୍ରୁ :**

ବୁଦ୍ଧଙ୍କ ମୃତ୍ୟୁ ପୂର୍ବରୁ ବିମ୍ବିସାର ମୃତ୍ୟୁବରଣ କରିସାରିଥିଲେ। ବିମ୍ବିସାରଙ୍କ ପରେ ପୁତ୍ର ଅଜାତଶତ୍ରୁ ମଗଧ ରାଜ୍ୟର ରାଜା ହେଲେ। ସେ ବୋଧହୁଏ ସିଂହାସନ ଜବରଦସ୍ତ ଛଡ଼ାଇ ନେଇଥିଲେ ପିତାଙ୍କଠୁ ବା ଭୋକ ଉପାସରେ ପିତାଙ୍କୁ ମରିବାକୁ ଛାଡ଼ି ଦେଇଥିଲେ। ରାଜଗାଦିରେ ବସିବାପରେ ଅଜାତଶତ୍ରୁଙ୍କର ଅନେକ ଶତ୍ରୁ ହୋଇଗଲେ। କୋଶଳ ସହିତ ମତାନ୍ତର ହେଲା। କୋଶଳ ରାଜା ପ୍ରସନ୍ନଜିତ ବିମ୍ବିସାରଙ୍କୁ କନ୍ୟା ପ୍ରଦାନ କରିବା ସମୟରେ ବାଣାରସୀରେ ଏକ ଜମି ଯୌତୁକ ସୂତ୍ରରେ ଦେଇଥିଲେ। ବିମ୍ବିସାରଙ୍କ ମୃତ୍ୟୁପରେ ତାଙ୍କ ସ୍ତ୍ରୀ ମଧ୍ୟ ଦୁଃଖରେ ମରିଗଲେ। ଫଳରେ ପ୍ରସନ୍ନଜିତ ସେ ଜମିକୁ ଫେରାଇନେବାକୁ ଚାହିଁଲେ। ଘଟଣାକ୍ରମେ ମୃତ୍ୟୁହେଲା ପ୍ରସନ୍ନଜିତଙ୍କର ପରେ ଅଜାତଶତ୍ରୁ କୋଶଳ ରାଜ୍ୟ ଅଧିକାର କଲେ।

ଲାଚାଭି– ଅନ୍ୟ ଏକ ଶତ୍ରୁ ତାଙ୍କ ବିରୁଦ୍ଧରେ ମଧ୍ୟ ଲଢ଼ିବାକୁ ପଡ଼ିଲା । ଲାଚାଭିମାନେ ସେତେବେଳକୁ ଶାକ୍ୟ ରାଜ୍ୟ ଅଧିକାର କରି ସାରିଥିଲେ । ଏସବୁ ଗଣ-ସଂଘ ଅଧିନରେ ଥିଲା । ବିମ୍ବିସାର ଥିବା ସମୟରେ ମଧ୍ୟ ମଗଧର ଲଚାଭି ମାନଙ୍କ ସହିତ ଯୁଦ୍ଧ ଲାଗି ରହିଥିଲା । ପ୍ରାୟ ୧୨ ବର୍ଷ । ଏଇ ସମୟକୁ ଆସିଲେ ସୁନ୍ଦରୀ ଆମ୍ରାପଲି । ସେ ରାଜକନ୍ୟା ନଥିଲେ– ଥିଲେ ଦରବାରର ନର୍ତ୍ତକୀ । ତାଙ୍କର ଅସାଧାରଣ ସୌନ୍ଦର୍ଯ୍ୟ ଓ ବୁଦ୍ଧିମତ୍ତା ବଳରେ ସେ ଗଣସଂଘର ସଂପତ୍ତି ଭାବରେ ଗଣାଯାଇଥିଲେ । ଥିଲେ ବୁଦ୍ଧଙ୍କର ସମର୍ଥନକାରୀ । ରାଜନୀତି କ୍ଷେତ୍ରରେ ମଧ୍ୟ ତାଙ୍କର ପ୍ରଭାବ ଅନେକ ଥିଲା । ବିଚକ୍ଷଣ ବୁଦ୍ଧି ଓ ସୁନ୍ଦରତା ପାଇଁ ସେ ଗଣ-ସଂଘର ପ୍ରଥମ ମହିଳା ମଧ୍ୟ ହୋଇଯାଇଥିଲେ । ବିମ୍ବିସାର ଆମ୍ରାପଲିଙ୍କ ସହିତ ବୈଶାଳୀରେ ପ୍ରାୟ ଗୋଟାଏ ସପ୍ତାହ ଲୁଚିକରି ରହିଥିଲେ । ଏ ବିଷୟ ଜଣାଯିବା ପରେ ଲାଚାଭିମାନଙ୍କର ମଗଧ ରାଜାଙ୍କ ଶତ୍ରୁ ହେଲେ । ସେଇ ଶତ୍ରୁତା ଫଳରେ ଅଜାତଶତ୍ରୁ ମଧ୍ୟ ବିଚ୍ଳିତ ହୋଇ ଯୁଦ୍ଧ କରିବାକୁ ବାଧ ହୋଇଥିଲେ । ଅଙ୍ଗ ରାଜ୍ୟର ଗଭର୍ଣ୍ଣର ଥିଲେ ଅଜାତଶତ୍ରୁଙ୍କର ଜଣେ ଭାଇ । ତାଙ୍କ ପାଖରେ ଏକ ମୂଲ୍ୟବାନ ହାର ମହଜୁଦ୍ ଥିଲା । ହାର ଅଜାତଶତ୍ରୁଙ୍କୁ ଫେରାଇବାପାଇଁ ସେ ନାମଙ୍ଗ ହେଲେ । ଏହାଛଡ଼ା ଏକ ମୂଲ୍ୟବାନ ହାତୀ ମଧ୍ୟ ସେ ଭାଇଙ୍କ ଅଧିନରେ ଥିଲା । ଏ ହାତୀ ଉପରେ ଅତର ମିଶା ପାଣି ରଖାଯାଇ ମଗଧ ହାବେଲୀର ସ୍ତ୍ରୀ ଲୋକମାନଙ୍କୁ ଛିଂଚିଦିଆଯାଉଥିଲା । ମଗଧର ରାଜା ଭାବରେ ଅଜାତଶତ୍ରୁହିଁ ହାର ଓ ହାତୀର ମାଲିକ ଥିଲେ । କିନ୍ତୁ ସେ ଭାଇ ଲାଚାଭିମାନଙ୍କର ସମର୍ଥନ ପାଇ ଏ ଦୁଇଟାଯାକ ଅଜାତଶତ୍ରୁଙ୍କୁ ଦେବାକୁ ମନା କରିଦେଲେ । ଫଳରେ ଶତ୍ରୁହେଲେ ଲଚାଭିମାନେ ।

ଏହାଛଡ଼ା ଆଉ ଏକ କାରଣ ମଧ୍ୟ ଥିଲା । ଲଚାଭିମାନଙ୍କ ଅଧିନରେ ଥିବା ଏକ ପାହାଡରୁ ସୁଗନ୍ଧଯୁକ୍ତ ମଲମ ନିର୍ଗତ ହୋଇଥିଲା । ସେ ପାହାଡ଼କୁ ଅଧିକାରକୁ ନେବାପାଇଁ ଦାବି କଲେ ଅଜାତଶତ୍ରୁ । ସବୁ ବିବାଦ ଏକାଠି ହୋଇ ଅନ୍ୟରୂପ ଧାରଣା କଲା । ଏସବୁ ସମସ୍ୟା ସଂପର୍କରେ ଅଜାତଶତ୍ରୁ ବୁଦ୍ଧଙ୍କର ଉପଦେଶ ନେଉଥିଲେ ।

ଅଜାତଶତ୍ରୁଙ୍କୁ ଏକ ହାତୀ ପିଠିରେ ବୀରବେଶର ମୂର୍ତ୍ତି, ସଂଗରେ ଅନେକ ସ୍ତ୍ରୀ ଥାଇ, ଖୋଦିତ ହୋଇଥିଲା । ଏହାହିଁ ଜଣେ ବୀର ସୈନିକର ପ୍ରଥମ ଐତିହାସିକ ମୂର୍ତ୍ତି । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ଭାରହୁକ୍ଠାରେ ଏହା ଶୋଭାପାଉଥିଲା । ବର୍ତ୍ତମାନ

ହୁଏତ କଲିକତା ମ୍ୟୁଜିୟମରେ ରଖାଯାଇଛି । ମୃତ୍ୟୁ ହେଲା ଅଜାତଶତ୍ରୁଙ୍କର ଖ୍ରୀ.ପୂ. ୩୮୦ରେ । ଅନେକ ବର୍ଷ ପରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଖ୍ରୀ.ପୂ. ୩୨୦ରେ ରାଜଗାଦିରେ ବସିଲେ । ମଧ୍ୟବର୍ତ୍ତି କାଳିନ ରାଜତ୍ୱ ରହିଲା ଗୁଣ୍ଡାମାନଙ୍କ ହାତରେ । ଏଇ ସମୟରେ ଶାସନ ଅନେକଥର ବଦଳିଲା ।

## ମହାପଦନନ୍ଦ

ମହାପଦନନ୍ଦଙ୍କର ରାଜତ୍ୱ ସେଇ ମଧ୍ୟବର୍ତ୍ତିକାଳିନ ସମୟ । ସେ କ୍ଷତ୍ରିୟ ବଂଶଜ ନଥିଲେ । ଥିଲେ ବାରିକ ପୁତ୍ର । ଖ୍ରୀ.ପୂ. ୩୨୬ ବେଳକୁ ନନ୍ଦ ଏକ ବହୁତ ବଡ଼ ରାଜ୍ୟର ଅଧିକାରୀ ଥିଲେ । ଗଙ୍ଗା ଉପତ୍ୟକାବର୍ତ୍ତୀ ସମସ୍ତ ଅଂଚଳ, ଓଡ଼ିଶା, ମଧ୍ୟ ଭାରତର କେତେକ ଅଂଶ ମଧ୍ୟ ତାଙ୍କ ଅଧିନରେ ଥିଲା । ଏତେ ବଡ଼ ଅଞ୍ଚଳକୁ ଜୟକରି ମହାପଦନନ୍ଦ ତାଙ୍କ ରାଜ୍ୟ ବିସ୍ତାର କରିଥିଲେ । ତାଙ୍କୁ 'ଛତ୍ରପତି ରାଜା' ବୋଲି ମଧ୍ୟ କୁହାଯାଉଥିଲା । ବୁଦ୍ଧଙ୍କ ଭାଷାରେ ସେ ଥିଲେ 'ସାରା ପୃଥିବୀର ମାଲିକ' । ଭାରତୀୟ ଐତିହାସିକମାନେ ନନ୍ଦଙ୍କୁ ଉତ୍ତର ଭାରତର ପ୍ରଥମ ବଡ଼ ସମ୍ରାଟ ବୋଲି ଗଣୁଥିଲେ । ଗଙ୍ଗାନଦୀ କୂଳରେ ଗୋଟାଏ ଗୁମ୍ଫା ଭିତରେ ଓ ବାଲି ତଳେ ତାଙ୍କର ଧନ ରତ୍ନ ସଂପତ୍ତି ସବୁ ପୋତା ହୋଇଥିଲା ବୋଲି ଅନୁମାନ । ନନ୍ଦ ସାମ୍ରାଜ୍ୟର ସେନାବାହିନୀ ମଧ୍ୟ ବୃହତ୍ତର । ୨୦୦,୦୦୦ ପଦାତିକ, ୨୦,୦୦୦ ଘୋଡ଼ାସବାର, ୪ଟି ଘୋଡା ଟାଣୁଥିବା ୨୦୦ ରଥ, ୬୦୦୦ ଯୁଦ୍ଧହାତୀ ତାଙ୍କ ସେନାବାହିନୀରେ ଥିଲେ । ଏ ସେନାବାହିନୀର ବିବରଣୀ ଶୁଣି ଗ୍ରୀକମାନଙ୍କର ହୃଦକମ୍ପ ଜାତ ହେଉଥିଲା ।

## ଆଲେକଜାଣ୍ଡର :

ଆଲେକଜାଣ୍ଡରଙ୍କର ଭାରତ ଆକ୍ରମଣ ଭାରତ ଇତିହାସ ଉପରେ କୌଣସି ବିଶେଷ ପ୍ରଭାବ ପକାଇ ପାରିନାହିଁ । ଆଲୋକଜାଣ୍ଡରଙ୍କ ମତରେ ଭାରତ ଅଭିଯାନ ଏକ ବିରାଟ ଅଭିଯାନ । କିନ୍ତୁ ସାଧାରଣତଃ ସେ କେବଳ ଛୋଟ ଛୋଟ ରାଜ୍ୟ ଜୟ କରିଥିଲେ । ଭାରତ ଭୂମିରେ ପ୍ରବେଶ କରିବାଟାହିଁ ତାଙ୍କର ପ୍ରକୃତ ଅଭିଯାନ ଥିଲା । ଆକାମେନିଡ଼ ସାମ୍ରାଜ୍ୟ ବିରୁଦ୍ଧରେ ସମର ଅଭିଯାନ କରିବା ହୁଏତ ତାଙ୍କ ବାପାଙ୍କର ଯୋଜନା ଥିଲା ।

## ଚନ୍ଦ୍ରଗୁପ୍ତ :

ଚନ୍ଦ୍ରଗୁପ୍ତ ପାଟଳୀପୁତ୍ର ଅଧିକାର କଲେ। ରାଜା ନନ୍ଦଙ୍କୁ ବିଦା କଲେ। ରାଜା ନନ୍ଦ ନିଜେ ନେଇପାରୁଥିବା କିଛି ସଂପତ୍ତି ଧରି ପଳାୟନ କଲେ। କୌଟିଲ୍ୟଙ୍କ ସହିତ ବନ୍ଧୁତାକରି ତାଙ୍କ ସହିତ ସବୁ ଭାଗ କରିବାରେ ଯୋଜନା କରିଥିଲେ କିନ୍ତୁ ପରେ କୌଟିଲ୍ୟଙ୍କୁ ବିଷ ଦେଇ ମାରିଦେଲେ। ଫଳରେ ସମସ୍ତ ସାମ୍ରାଜ୍ୟର ଚନ୍ଦ୍ରଗୁପ୍ତ ମୌର୍ଯ୍ୟହିଁ ଅଧିକାରୀ ହୋଇ ରହିଗଲେ। 'ଭାରତୀୟ ଜୁଲିୟସ ସିଜର' ବୋଲି ତାଙ୍କୁ ଅଭିହିତ କରାଯାଏ।

ଆଲେକଜାଣ୍ଡରଙ୍କ ଠାରୁ ପ୍ରେରଣା ପାଇ ଚନ୍ଦ୍ରଗୁପ୍ତଙ୍କର ମଧ ଏକ ସେନାବାହିନୀ ଗଢ଼ିବାପାଇଁ ଆଗ୍ରହ ଥିଲା। କିନ୍ତୁ ଆଲେକଜାଣ୍ଡରଙ୍କ ପରି ରାଜ୍ୟ ଜୟ କରିବାର ଆଗ୍ରହ ବା କ୍ଷମତା ନଥିଲା। ତାଙ୍କର ଥିଲା ବହୁତ ବଡ଼ ସାମ୍ରାଜ୍ୟ– ମୋଗଲ ସାମ୍ରାଜ୍ୟଠାରୁ ମଧ ବଡ଼। ଅନେକ ଶିଳାଲେଖରୁ ଜଣାଯାଏ କି ମୌର୍ଯ୍ୟ ସାମ୍ରାଜ୍ୟ ବଙ୍ଗୋପସାଗରରୁ ଆରବିୟାନ ସମୁଦ୍ର ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା। ନନ୍ଦଙ୍କୁ ସେ ସାମ୍ରାଜ୍ୟରୁ ବିତାଡିତ କରିବାହିଁ ଚନ୍ଦ୍ରଗୁପ୍ତଙ୍କର ଏକମାତ୍ର ଆରମ୍ଭ ଓ ଶେଷ ବିଜୟ ଥିଲା। ଏତେବଡ଼ ସାମ୍ରାଜ୍ୟକୁ 'ଏକ ଭାରତ' ସୁତ୍ରରେ ବାନ୍ଧିବାର ଉଦ୍ଦେଶ୍ୟ ନଥିଲା। କିନ୍ତୁ ଉଦ୍ଦେଶ୍ୟ ଥିଲା ନୌବାଣିଜ୍ୟ ଜରିଆରେ, କାଠ, ମସାଲା, ମୂଲ୍ୟବାନ ରତ୍ନ, ଖଣିଜପଦାର୍ଥ ଓ ହାତବୁଣା ଦ୍ରବ୍ୟ ସାହାଯ୍ୟରେ ଅନ୍ୟ ଦେଶ ସହିତ ବନ୍ଧୁତା ରଖିବା।

ଗ୍ରିସିକୋ-ରୋମାନ ସୁତ୍ରରୁ ଜଣାଯାଏ କି ଅନେକ ସଂଘର୍ଷ ପରେ ସେଲୁକସ-ନିକାଟର, ଆଲେକଜାଣ୍ଡରଙ୍କର ଜଣେ ସେନାଧକ୍ଷ, ଆଲେକଜାଣ୍ଡରଙ୍କ ସାମ୍ରାଜ୍ୟର ପୂର୍ବପଟ ଅଧିକାର କରିବା ପରେ ଭାରତ ଉପରେ ଖ୍ରୀ.ପୂ.୩୦୫ ବେଳକୁ ନଜର ପକାଇଲେ। ଚନ୍ଦ୍ରଗୁପ୍ତଙ୍କ ସେତେବେଳକୁ ପଞ୍ଜାବ ଅଧିକାର କରି ସାରିଥିଲେ। ସେଲୁକସ ଆଲେକଜାଣ୍ଡରଙ୍କ ପରି ଫେରିଯିବାକୁ ଚାହିଁଲେ। ହୁଏତ ସେଲୁକସ ଯୁଦ୍ଧରେ ପରାସ୍ତ ହୋଇପାରିଥାନ୍ତି। ଚନ୍ଦ୍ରଗୁପ୍ତଙ୍କ ସହିତ ସନ୍ଧି ହେଲା। ସନ୍ଧିରେ ଚନ୍ଦ୍ରଗୁପ୍ତ ୫୦୦ ଯୁଦ୍ଧହାତି ଉପହାର ଦେଲେ ଆଉ ଫେରିପାଇଲେ ପଞ୍ଜାବ ଓ ଗାନ୍ଧାର। ଏ ସନ୍ଧି ଫଳରେ ସେଲୁକସଙ୍କ କନ୍ୟାକୁ ବଧୂ ରୂପରେ ବରଣ କଲେ ଚନ୍ଦ୍ରଗୁପ୍ତ। ବନ୍ଧୁତ୍ୱକୁ ଆହୁରି ଦୃଢ କରିବାପାଇଁ ସେଲୁକସ ମୌର୍ଯ୍ୟ ଦରବାରକୁ ମେଘାସ୍ଥିନିସଙ୍କୁ ଦୂତ ହିସାବରେ ପଠାଇଲେ। ମେଘାସ୍ଥିନିସଙ୍କ ନିକଟରୁ ଯେତିକି

ଖବର ମିଳୁପାରୁଥିଲା ସ୍ୱଚ୍ଛ ହେଲେ ମଧ୍ୟ ତାହା ଖ୍ରୀ.ପୂ. ତୃତୀୟ ଓ ଚତୁର୍ଥ ଶତାବ୍ଦୀରେ ପୂର୍ବ ପଞ୍ଜାବ ଓ ଭାରତର ଇତିହାସ ପାଇଁ ଅନେକ ବେଶି।

ଚନ୍ଦ୍ରଗୁପ୍ତ ତାଙ୍କ ଉତ୍ତରାଧିକାରୀଙ୍କ ପାଇଁ ବଙ୍ଗଳାରୁ ଆଫଗାନିସ୍ଥାନ ଓ ଗୁଜରାଟ ପର୍ଯ୍ୟନ୍ତ ବିରାଟ ଭୂଖଣ୍ଡ ଛାଡ଼ିଯାଇଥିଲେ ହେଁ ଦାକ୍ଷିଣାତ୍ୟରେ କେତେ ରାଜ୍ୟର ବିସ୍ତୃତି ତାଙ୍କର ଥିଲା ତାହା ଜାଣିବା ମୁଷ୍କିଲ।

ସେ ରାଜ୍ୟଦାନ କରିସାରି କର୍ଣ୍ଣାଟକର ଜୈନ ସଂଗଠନକୁ ଚାଲିଯାଇଥିଲେ। ଶ୍ରୀବଣା ବେଲଗୋଲା ଗୋଟେ ଛୋଟ ସୁନ୍ଦର ସହର। ସେଠି ତାଙ୍କ ଶେଷ ପବିତ୍ର ଜୀବନ କଟାଇଥିଲେ। ଗୋମତେଶ୍ୱର ଜୈନ ସଂପ୍ରଦାୟର ଜଣେ ପ୍ରଧାନ ଶିକ୍ଷକ। କୋଡିଏ ମିଟର ଉଚ୍ଚତାର ବିଶିଷ୍ଟ ପ୍ରତିମୂର୍ତ୍ତି ଦକ୍ଷିଣ ଭାରତର। ଏ ମୂର୍ତ୍ତି ଚନ୍ଦ୍ରଗୁପ୍ତଙ୍କର। ଏପରି ମୂର୍ତ୍ତି, ଆଉ ଏତେ ଉଚ୍ଚତାର ମୂର୍ତ୍ତି ପୃଥିବୀର ବିରଳ। କିନ୍ତୁ ସେଇ ସହରର ଅପର ପାର୍ଶ୍ୱରେ ଚନ୍ଦ୍ରଗିରି ଅବସ୍ଥିତ। ଚନ୍ଦ୍ରଗୁପ୍ତ ସେହିଠାରେ ରହିଥିଲେ ଆଉ ଶେଷ ଜୀବନରେ ଆତ୍ମତ୍ୟାଗ ଜୀବନ ଯାପନ କରି ଦେହତ୍ୟାଗ ମଧ୍ୟ କରିଥିଲେ। ଖ୍ରୀ.ପୂ. ୨୯୭ରେ ଭଦ୍ରବାହୁ ନାମକ ଜଣେ ଜୈନମୁନି ଜାଣିପାରିଲେ କି ଚନ୍ଦ୍ରଗୁପ୍ତଙ୍କ ସାମ୍ରାଜ୍ୟର ସେଇ ଅଂଚଳ ଆଜି ଯାହା ବଂଗଳା ଓ ଉତ୍ତର ପ୍ରଦେଶ, ସେଠାରେ ଦୁର୍ଭିକ୍ଷ ପଡ଼ିଚ। ଏ ଖବର ପାଇ କେବଳ ସମ୍ରାଟ ଚନ୍ଦ୍ରଗୁପ୍ତ ନୁହଁନ୍ତି, ଜୈନଧର୍ମ ବିଶ୍ୱାସୀ ସଂପ୍ରଦାୟର ଅନେକ ଲୋକ ଦାକ୍ଷିଣାତ୍ୟକୁ ଚାଲିଗଲେ। ଅର୍ଥଶାସ୍ତ୍ରରେ ଏହାର ବର୍ଣ୍ଣନା ମଧ୍ୟ ଅଛି। ଶ୍ରାବଣ ବେଲଗୋଲରେ ଚନ୍ଦ୍ରଗୁପ୍ତ ଅନେକ ପୋଖରୀ, ମନ୍ଦିର ଇତ୍ୟାଦି ତୋଳାଇଲେ। ଏ ସହର ଏବେ ଚନ୍ଦ୍ରଗୁପ୍ତଙ୍କର ଇତିହାସ ଗାଉଛି। ଏବେ ବି ଭାରତୀୟ ଐତିହାସିକମାନେ ପଛ ଘଟଣାସବୁକୁ ସମୃଦ୍ଧ କରିବାପାଇଁ ପ୍ରମାଣ ଖୋଜି ବୁଲୁଛନ୍ତି। କୌଣସି ଲିଖିତ ପ୍ରମାଣ ନାହିଁ। ମୌଖିକ ପରମ୍ପରା ଓ କିମ୍ବଦନ୍ତୀ ବ୍ୟତିତ ଏହାର ପ୍ରମାଣ ପାଇବା ମୁଷ୍କିଲ।

ବୟସ ୨୫ରେ ଖ୍ରୀ.ପୂ. ୩୨୧ରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ରାଜଗାଦିରେ ବସିଲେ। ଅନେକ ତାଙ୍କୁ ବୁଦ୍ଧଙ୍କର ବଂଶଧର ବୋଲି ଭାବନ୍ତି। କେହି କେହି ତାଙ୍କୁ ନନ୍ଦଙ୍କର ସଂପର୍କୀୟ ବୋଲି ଅନୁମାନ କରନ୍ତି। କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର ହୁଏତ ମୌର୍ଯ୍ୟବଂଶ ଶାସନ ପ୍ରଣାଳୀର ଏକ ଚାକ୍ଷୁସ ପ୍ରମାଣ। ଏହା ବାଇବେଲର ଦଶ କମାଣ୍ଡମେଣ୍ଟ ଓ ବୁଦ୍ଧଙ୍କର ଅଷ୍ଟପଥ ଉପରେ ଆଧାରିତ– ଏହାହିଁ ଚନ୍ଦ୍ରଗୁପ୍ତଙ୍କ ଶାସନ ପ୍ରଣାଳୀ।

ଆଲେକ୍‌ଜାଣ୍ଡରଙ୍କ ରାଜପୁରୁଙ୍କ ସହ ଯୁଦ୍ଧ ଇତିହାସ ପ୍ରସିଦ୍ଧ । ପୁରୁ ହାରିଯାଇ ରାଜବନ୍ଦୀ ଭାବରେ ଉପସ୍ଥିତ ହେଲେ ଆଲେକ୍‌ଜାଣ୍ଡରଙ୍କ ସମ୍ମୁଖରେ । ପ୍ରଶ୍ନକଲେ ଆଲେକଜାଣ୍ଡର କି ନ୍ୟାୟ ବ୍ୟବହାର ଆଶା କରୁଛ ? ପୁରୁ ଉତ୍ତର ଦେଲେ 'ରାଜା ପ୍ରତି ରାଜାର ବ୍ୟବହାର' । ତୁଷ୍ଟ ହେଲେ ଆଲେକଜାଣ୍ଡର । ମୁକ୍ତ ହେଲେ ପୁରୁ । ଏହାର ଅନ୍ୟ ଏକ ଉଦ୍ଦେଶ୍ୟ ମଧ୍ୟ ଥାଇପାରେ । ଆଲେକଜାଣ୍ଡରଙ୍କ ମୂଳ ଉଦ୍ଦେଶ୍ୟ ଥିଲା । ଲୁଣ୍ଠନ– ରାଜ୍ୟଜୟ ନୁହେଁ । ଆଲେକଜାଣ୍ଡରଙ୍କ ଫେରିଯିବା ପରେ ଦେଶରେ ଶାସନକ୍ଷମତାର ଏକ ବ୍ୟବଧାନ ରହିଗଲା । ପଂଜାବ ହିଁ ଏ ବ୍ୟବଧାନର ଉପଯୁକ୍ତ ସ୍ଥାନ । କିନ୍ତୁ ତାହା ମଧ୍ୟ ସମ୍ଭବ ହୋଇପାରିଲା ନାହିଁ । ସେଥିପାଇଁ ତକ୍ଷଶିଳାକୁ ଉଚିତ ସ୍ଥାନ ବୋଲି ବାଛିନେଲେ । ଆଲେକଜାଣ୍ଡରଙ୍କ ଅଧିକୃତ ଅଞ୍ଚଳରେ ରାଜା ଅମ୍ଭି ଓ ପୁରୁରାଜାଙ୍କୁ ଗଭର୍ଣ୍ଣର କରିଦିଆଗଲା । ମୌର୍ଯ୍ୟବଂଶକୁ ଅଧିକ ଗୁରୁତ୍ୱ ଦେଇ ଗଣ-ସଂଘ ତରଫରୁ ଚନ୍ଦ୍ରଗୁପ୍ତଙ୍କୁ ସୈନ୍ୟସାମନ୍ତ ଯୋଗାଇ ଦିଆଗଲା । ଏସବୁର ଆୟୋଜନ କୌଟିଲ୍ୟହିଁ କରାଇଥିଲେ ।

୧୮୩୭ରେ ଗବେଷକ ଜେମସ୍ ପ୍ରିନସେପ ସାନ୍‌ଚିଠାରେ ବୌଦ୍ଧସ୍ତୁପର ପଥରରେଲିଂ ଭିତରୁ ଦୁଇଟି ଅକ୍ଷର ଆବିଷ୍କାର କରିଥିଲେ । ଗୋଟିଏ 'ଡି' ଓ ଅନ୍ୟଟି 'ଏନ୍' । ଅନ୍ୟ ଆବିଷ୍କୃତ ଅକ୍ଷର ସହିତ ମିଶାଇବା ପରେ ଜଣାଗଲା କି ଏହାର ଲିପି ପାଲି । ପାଲି ଭାଷା ସଂସ୍କୃତର ଅପ୍ରଭଂଶ । ବୁଦ୍ଧଙ୍କ ସମୟରେ ମଗଧରେ ଏ ଭାଷା ପ୍ରଚଳିତ ଥିଲା । ଜଣେ ଗବେଷକ ପ୍ରିନ୍‌ସେପ ଏ 'ଟିନ-ମ୍ୟାନ' ଲେଖା ଉପରେ ଆଧାରିତ କରି 'ଅଶୋକ-ବ୍ରାହ୍ମି' ବୋଲି ଅଭିହିତ କଲେ । ଗବେଷଣା ଆରମ୍ଭ କଲେ– ଛୋଟ ଲେଖରୁ ବଡ଼ ଲେଖ ପର୍ଯ୍ୟନ୍ତ । ଓଡ଼ିଶା, ଗୁଜରାଟ, ଆଲ୍ଲାବାଦ, ଦିଲ୍ଲୀ । ୧୮୨୨ରେ ଗବେଷକ ଜେମସ୍ ଟଡ଼ ଗୁଜରାଟର ଗୀନାର ଥିବା ସ୍ତୁପରୁ ରାହିନଲ୍ୟାଣ୍ଡ କିବ୍ରାଲେଟର ପାହାଡ଼ ମଧ୍ୟରୁ ଏକ ଧରଣର ଲେଖ ଆବିଷ୍କାର କଲେ । ଏହି ଲେଖ ଭାରତରେ ସବୁଠାରୁ ପୁରାତନ ଲେଖ ଓ ଯାହା ଇତିହାସ ସମ୍ମତ । ଏହି ଲେଖାକୁ ତୁଳନା କଲେ, ଦଶ-ଉପଦେଶ (Ten-Commandment) ସହିତ । ନାମକରଣ ହେଲା– ଅନୁଶାସନ ।

ପଥର ଉପରେ ଖୋଦିତ ଏ ଅନୁଶାସନ– ସାର୍ବଭୌମ ସମ୍ରାଟଙ୍କ ନିର୍ଦ୍ଦେଶନା ବୋଲି ଜଣାଯାଏ । ଏହା ଥିଲା 'ଦେବାନମପିୟ ପିୟାଦଶି'ଙ୍କର ନିର୍ଦ୍ଦେଶନା । ଅନେକ ସ୍ତୁପରେ ଏହି ଅନୁଶାସନର ସ୍ୱର ଘଣ୍ଟିଭଳି ଅକ୍ଷରରେ ଗୋଟିଏ ପଶୁର ଚିହ୍ନ

ସହିତ ଖୋଦିତ ହୋଇଛି । ଏ ପ୍ରକାର ଖୋଦନ କୌଣସି ବୈଦେଶିକ ଖୋଦନରେ ଦେଖାଯାଏନି । ଏହା ସଂପୂର୍ଣ୍ଣ ଭାବରେ ଭାରତୀୟ । ଦେବାନପିୟା ପିୟାଦର୍ଶୀ । ବୁଦ୍ଧ ଓ ମହାବୀରଙ୍କ ଦେଶର ଲୋକ । ଏପରି ଉକ୍ତି ଉପରେ ନିର୍ଭର କରିଥିଲେ ଅହିଂସା, ମନୁଷ୍ୟତାର ନିର୍ଦ୍ଧାରଣ ଓ ନୀତିଗତ ପୁନରୁତ୍ଥାନ । ନେହୁରୁ ଏହି ଖୋଦିତ ଅନୁଶାସନରୁ ପାଇଲେ ଜାତିୟତା ନିର୍ଦ୍ଧାରିତ ସାଧାରଣତନ୍ତ୍ରର ପ୍ରତୀକ । ସିଂହର ଚାରୋଟି ମୂର୍ତ୍ତି ପର୍ଯ୍ୟବେଶିତ ଏ ଚିହ୍ନହିଁ ମୌର୍ଯ୍ୟବଂଶର ନିର୍ଦ୍ଧାରିତ ଚିହ୍ନ । ଏଥିରେ ବାଘର ପ୍ରତିକୃତି ନାହିଁ ।

**ଅଶୋକ :**

କିନ୍ତୁ 'ଦେବାନପିୟା ପିୟଦର୍ଶି' କିଏ ? ପୁରାଣରେ ଏପରି କୌଣସି ରାଜାଙ୍କର ନାମ ନାହିଁ । ଗବେଷକ ପ୍ରିନ୍ସେପଙ୍କ ସମସାମୟିକ ଅନ୍ୟ ଜଣେ ଶ୍ରୀଲଙ୍କାରେ ସମରୂପ ଗବେଷଣାରେ ବ୍ୟସ୍ତ ଥିଲେ । ଜଣାଇଲେ କି 'ପିୟାଦର୍ଶି' ନାମରେ ଜଣେ ଶ୍ରୀଲଙ୍କାର ରାଜା ଥିଲେ । ଆଉ ସେହି ଏକା ନାମରେ ଜଣେ ପ୍ରସିଦ୍ଧ ଭାରତୀୟ ରାଜା ମଧ୍ୟ ଥିଲେ ବୋଲି କହୁଥିଲେ । ସେ ଭାରତରେ ବୌଦ୍ଧଧର୍ମର ପ୍ରଚାର କରାଇଥିଲେ । ତାଙ୍କ ପୁତ୍ରକୁ ମଧ୍ୟ ଧର୍ମପ୍ରଚାର ପାଇଁ ଶ୍ରୀଲଙ୍କା ପଠାଇଥିଲେ । ତାଙ୍କର ନାମ 'ଅଶୋକ' ।

'ଦେବାନାପିୟ'ର ଅର୍ଥ 'ଭଗବାନଙ୍କ ପ୍ରିୟ' ଆଉ 'ପ୍ରିୟଦର୍ଶି'ର ଅର୍ଥ 'ତେଜସ୍ୱୀମାନବ' । ହୁଏତ ଅଶୋକ ଖ୍ରୀ.ପୂ. ୨୬୮ ରେ ରାଜଗାଦି ଗ୍ରହଣ କରିବା ସମୟରେ ଏ ନାମ ଧାରଣ କରିପାରିଥାନ୍ତି । ପୁରାଣରେ ରାଜା ଅଶୋକଙ୍କ ନାମ ଅଛି । ସେ ୪୦ ବର୍ଷ ଧରି ରାଜତ୍ୱ କରିଥିଲେ । ଚନ୍ଦ୍ରଗୁପ୍ତଙ୍କର ନାତି ବୋଲି ମଧ୍ୟ ଲେଖାଅଛି । ଏଥିରୁ ଅନୁମାନ କରାଯାଏ କି ସେ ହିଁ ଦେବାନପିୟ ପ୍ରିୟଦର୍ଶୀ । ଅଶୋକଙ୍କର ପିଲାଦିନ ସଂକ୍ରାନ୍ତରେ କୌଣସି ବର୍ଣ୍ଣନା ପୁରାଣରେ ନାହିଁ । କୌଣସି ଅନୁଶାସନରେ ମଧ୍ୟ ଉଲ୍ଲେଖ ନାହିଁ । କିନ୍ତୁ ଲେଖାଅଛି ଶ୍ରୀ ଲଙ୍କାର ବୁଦ୍ଧଙ୍କ ଜନିତ ଲେଖାରେ କି ଅଶୋକଙ୍କ ପିତା ବିନ୍ଦୁସାର । ଗ୍ରୀକମାନେ ତାହାଙ୍କୁ ଆମିତ୍ରୋଚେଟସ ବୋଲି ନାମିତ କରୁଥିଲେ । ପାଟଳୀପୁତ୍ର ଓ ଇଜିପ୍ଟ ସିରିଆ ମଧ୍ୟରେ ଉପହାର, ରାଜଦୂତ ଆଦାନ ପ୍ରଦାନ ହେଉଥିଲା । 'ଅମିତ୍ରୋଚେଟସ'ର ସାଂସ୍କୃତିକ ଅର୍ଥ 'ଶତ୍ରୁ ଖଣ୍ଡନ' ।

ବିନ୍ଦୁସାର ପଚିଶବର୍ଷ ଧରି ରାଜ୍ୟଶାସନ କରିଥିଲେ। ଅନେକ ପୁତ୍ରଙ୍କ ମଧ୍ୟରେ ଅଶୋକ ଅନ୍ୟତମ। ସେ ରାଜ୍ୟର ସମସ୍ୟା ସହିତ ଜଡ଼ିତ ଥିଲେ। ତକ୍ଷଶୀଳାରେ ଘଟିଥିବା ବିଦ୍ରୋହକୁ ଅତି ସାହସର ସହିତ ଦମନ କରିଥିଲେ। ସେଇ କାରଣରୁ ତାଙ୍କୁ ଉଜୟିନୀର ଗଭର୍ଣ୍ଣର କରି ପଠାଗଲା। ସେ ସେଠାରେ ବିନ୍ଦୁସାରଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଥିଲେ। ସେତେବେଳେ ଏହା ମୌର୍ଯ୍ୟ ସାମ୍ରାଜ୍ୟ ଅଧିନରେ ଥିଲା ଓ ପାଞ୍ଚଟି ବିଶିଷ୍ଟ ସ୍ଥାନରୁ ଗୋଟେ ଥିଲା। ଏହାର ବୈଶିଷ୍ଟ୍ୟ ଏହି ଯେ ଏ ଦେଶ ସହିତ ବାହାର ଦେଶର ନୌ ବାଣିଜ୍ୟ ପ୍ରଚଳନ କରାଯାଇଥିଲା।

ବୌଦ୍ଧଧର୍ମର ଲେଖ ଅନୁସାରେ ଅଶୋକଙ୍କର ପ୍ରେମଭିସାର ଚମତ୍କାର। ଜଣେ ଧନୀ ବ୍ୟବସାୟୀଙ୍କ କନ୍ୟା ଦେବୀ ବା ବିଦିଶା ମହାଦେବୀ– ଦେବୀ ବିଦିଶା ବର୍ତ୍ତମାନର ଏକ ପୂଜାଦେବୀ। ସେ ଅଶୋକଙ୍କୁ ବିବାହ କରିଥିଲେ। ରାଣୀ ହୋଇ ପାଟଳୀପୁତ୍ର ଯିବାପାଇଁ ବାରଣ କଲେ। ବୋଧେ ଦେବୀ ନିଜେ ମଧ୍ୟ ବୁଦ୍ଧଙ୍କ ଭକ୍ତ ଥିଲେ। ସେ ଅଶୋକଙ୍କ ପୁତ୍ର ଓ କନ୍ୟାର ଜନନୀ ଥିଲେ– ମହେନ୍ଦ୍ର ଓ ସଂଘମିତ୍ରା। ପୁତ୍ର ମହେନ୍ଦ୍ର ମଧ୍ୟ ଧର୍ମପ୍ରଚାର ନିମନ୍ତେ ଶ୍ରୀଲଙ୍କା ଯାଇଥିଲେ। ଅଶୋକ ଅବନ୍ତୀରେ ଥିବା ସମୟରେ ବୁଦ୍ଧଙ୍କ ଭକ୍ତ ହୋଇପାରିଥାନ୍ତି। ସେଇ ବିଦିଶା, ଉଜୟିନୀଠାରୁ ୧୨୦ କିଲୋମିଟର ଦୂର– ଯେଉଁଠି ବୁଦ୍ଧ ନାମାଙ୍କିତ ସ୍ତୁପ ଦଣ୍ଡାୟମାନ, ସାନଚିଠାରେ ବର୍ତ୍ତମାନ ବି ପୂଜା ପାଉଛନ୍ତି।

ମଗଧର ଅଜାତଶତ୍ରୁ ମଧ୍ୟ ବୁଦ୍ଧଙ୍କ ଶିକ୍ଷା ପାଇଥିଲେ। ଅଶୋକଙ୍କ ବିଷୟରେ ବୌଦ୍ଧଗ୍ରନ୍ଥରେ ଲେଖାଅଛି। ବୌଦ୍ଧଧର୍ମରେ ଦିକ୍ଷୀତ ହେବା ପୂର୍ବରୁ ଚଣ୍ଡାଶୋକ ନାମରେ ପରିଚିତ ଥିଲେ। ବୌଦ୍ଧଧର୍ମ ଶିକ୍ଷାର ପ୍ରଭାବରେ ଯେକୌଣସି ଲୋକର ମାନସିକ ପରିବର୍ତ୍ତନ ଯେ ସମ୍ଭବ ଅଶୋକଙ୍କଠାରେ ତାହା ପରିଲକ୍ଷିତ ହୋଇଥିଲା। ବିନ୍ଦୁସାରଙ୍କ ମୃତ୍ୟୁପରେ ଅଶୋକ ତାଙ୍କର ୯୯ ଭାଇଙ୍କୁ କ୍ରୁର ଭାବରେ ହତ୍ୟା କରି ରାଜଧାନୀରେ ବସିଲେ। ଏ ସଂସାରକୁ 'ପୃଥିବୀର-ନର୍କ' କରିଦେବା ଆଶାରେ ମାତିଲେ। ଏ ମର୍ମରେ ସ୍ମୃତିସ୍ତୁପ ଗଠନ କଲେ। ଅଶୋକ ବିନ୍ଦୁସାରଙ୍କ ପ୍ରୀୟପୁତ୍ର ନଥିଲେ। ଆଉ ଉତ୍ତରାଧିକାରୀ ବୋଲି ମଧ୍ୟ ଗଣାଯାଉ ନଥିଲେ। ବିନ୍ଦୁସାରଙ୍କ ମୃତ୍ୟୁର ଚାରିବର୍ଷ ପର୍ଯ୍ୟନ୍ତ ରାଜଗାଦି ଖାଲି ପଡ଼ିଥିଲା। ତାଙ୍କ ଭାଇମାନଙ୍କ ମଧ୍ୟରୁ ବିତାଶୋକ ନାମକ ଭାଇ ବୁଦ୍ଧଧର୍ମ ପ୍ରଚାର କରିଥିଲେ।

ଅଶୋକଙ୍କର କଳିଙ୍ଗ ବିଜୟ ତାଙ୍କ ଜୀବନର ଏକ ଚମତ୍କାର ଘଟଣା। ସେତେବେଳେ କଳିଙ୍ଗ ଏକ ସ୍ୱାଧୀନ ରାଜ୍ୟ ଥିଲା! 'ଧାନ'ର ଅନୁଶାସନରେ ଏ ଯୁଦ୍ଧର ପରିକଳ୍ପନା। ଅଶୋକ ରାଜା ହେବାର ଆଠବର୍ଷ ପରେ ଏ ଯୁଦ୍ଧ ହୋଇଥିଲା। ଜଣେ ଧୀବର ରାଜକନ୍ୟା କାରୁବାକୀ। ଅତି ସୁନ୍ଦର ଓ ବୀରା ମଧ ଥିଲେ। ତାଙ୍କ ସୌନ୍ଦର୍ଯ୍ୟ ଓ ବୀରତ୍ୱରେ ମୁଗ୍ଧ ହୋଇ କଳିଙ୍ଗ ରାଜକୁମାର ତାଙ୍କୁ ବିବାହ କରିଥିଲେ। ତାଙ୍କର ସୌନ୍ଦର୍ଯ୍ୟ ପ୍ରସିଦ୍ଧି ଲାଭ କଲା।

ଅଶୋକଙ୍କ ମନ୍ତ୍ରୀ ସତ୍‌ଗୁପ୍ତ। ଏ ସମ୍ବାଦ ଜଣାଇଲେ ଅଶୋକଙ୍କୁ। ଅଶୋକ ମନ୍ତ୍ରୀଙ୍କ କଥାରେ ପ୍ରଭାବିତ ହୋଇ କଳିଙ୍ଗ ଆକ୍ରମଣ କଲେ। ଏ ଯୁଦ୍ଧରେ କଳିଙ୍ଗ ଯୁବରାଜ ନିହତ ହେଲେ। କଥିତ ଅଛି ଏ ଯୁଦ୍ଧରେ ୧୦୦,୦୦୦ ସୈନ୍ୟ ମରିଥିଲେ। ତାଠାରୁ ଅଧିକ ସଂଖ୍ୟକ ଲୋକ ଲୋପ ପାଇଯାଇଥିଲେ। ଆହତ ଓ ଦୁର୍ଭିକ୍ଷ ପ୍ରପୀଡିତ ଲୋକଙ୍କ ସଂଖ୍ୟା ମଧ ବେଶ୍ ଅଧିକ ଥିଲା। ଯୁଦ୍ଧକ୍ଷେତ୍ରକୁ ଆସିଲେ କାରୁବାକୀ। ମାତ୍ର ବନ୍ଦିହେଲେ। ବଳପୂର୍ବକ ଗଲେ ମଗଧ। କିନ୍ତୁ ଅଶୋକ ତାଙ୍କୁ ବଳପୂର୍ବକ ବିବାହ କରିନାହାନ୍ତି। ସଭାସଦଗଣ ପ୍ରବର୍ତ୍ତାଇଲେ କାରୁବାକୀଙ୍କୁ। ପରିଶେଷରେ ପ୍ରସ୍ତାବ ଦେଲେ କାରୁବାକୀ। କାରୁବାକୀ ହୁଏତ ବୌଦ୍ଧଧର୍ମୀ ଥିଲେ। କହିଲେ ଅଶୋକ ବୌଦ୍ଧଧର୍ମ ଗ୍ରହଣ କରି ସ୍ୱଧର୍ମ ମାର୍ଗକୁ ନ ଆସିଲେ ସେ ବିବାହ କରିବେ ନାହିଁ। ଚଣ୍ଡାଶୋକ ହେଲେ ଧର୍ମାଶୋକ। କୁରୁବାକୀ ପ୍ରେମରୁ ଧର୍ମପ୍ରତି ଆସକ୍ତି ପ୍ରଚାର ଆଉ ପ୍ରସାର। କାରୁଚାକୀ ଓ ଅଶୋକଙ୍କ ଯୁଦ୍ଧ ଓ କାରୁବାକୀଙ୍କ ଅପହରଣ ଚିତ୍ର ରାଣୀଗୁମ୍ଫାର ଚିତ୍ରଣ କରାଯାଇଛି। ଏବେ ବି ବିଦ୍ୟମାନ।

ବିଜୟ ଉଲ୍ଲାସରେ ମାତି ରଣଭୂମିର ଶେଷ ପରିଣତି ଅନୁଧାନ କରୁଥିଲେ ମହାରାଜା ଅଶୋକ। ହଜାର ହଜାର ସଂଖ୍ୟାରେ ମୃତ ସୈନିକଗଣଙ୍କ ମୃତଶରୀର। ବିଧବା ପତ୍ନୀମାନଙ୍କର ବୁକୁଫଟା କ୍ରନ୍ଦନ। ସହି ପାରିଲେନି ମହାରାଜା ଅଶୋକ। ଫେରିଗଲେ ନିଜ ଶିବିରକୁ। ଚିନ୍ତାମଗ୍ନ ଅବସ୍ଥାରେ ବସିରହିଲେ। ମନେପଡ଼ିଲା ଅନେକଶତ ଭାଇଙ୍କର ହତ୍ୟାପରେ ରାଜଗାଦୀ ଲାଭ। କୁରୁବାକୀ ସୌନ୍ଦର୍ଯ୍ୟର ପ୍ରଲୋଭନରେ କଳିଙ୍ଗ ଆକ୍ରମଣ ସବୁ ନାଚି ଯାଉଥାଏ ଆଖିଆଗରେ। ଆଉ ଆଜିର ଏ ଦୃଶ୍ୟ। ଆନ୍ଦୋଳିତ ହେଉଥାଏ ହୃଦୟ। ପାଗଳି ପ୍ରାୟ ବାଧାବିଘ୍ନ ଭାଙ୍ଗି ପ୍ରବେଶ କଲେ ଜଣେ ନାରୀ। କେଶବାସ ଅସମ୍ଭାଳ। ଦୁଃଖର କାଳିମାରେ ଭରି ରହିଛି ମୁଖମଣ୍ଡଳ। ପାଦତଳେ ପଡ଼ିଯାଇ ଭିକ୍ଷା ମାଗିଲେ କାନିପାତି। ମୋର ଏକମାତ୍ର

ଭରସା ମୋର ସନ୍ତାନଙ୍କୁ ମୋ କୋଳକୁ ଫେରାଇ ଦିଅନ୍ତୁ ମହାରାଜ। ସେ ସ୍ତ୍ରୀଲୋକର ଆକୁଳ କ୍ରନ୍ଦନର କୌଣସି ଉତ୍ତର ନଥିଲା ବିଜୟୀ ମହାରାଜଙ୍କ ପାଖରେ। ଆଶ୍ୱାସନାପାଇଁ ନ ଥିଲା ଭାଷା। କେବଳ ଶୂନ୍ୟ ଦୃଷ୍ଟିରେ ଅନେଇ ରହିଲେ ସମ୍ରାଟ ଅଶୋକ। ବୋଧହୁଏ ଭାବୁଥିଲେ ଏଣିକି ରାଜ୍ୟ ଜୟ ହେବ ସତ କିନ୍ତୁ ଯୁଦ୍ଧ ବଦଳରେ ନୁହେଁ ଧର୍ମ ବଦଳରେ। ମାନସିକ ପରିବର୍ତ୍ତନର ଆଧାର।

ଏ ଯୁଦ୍ଧପରେ ପ୍ରିୟଦର୍ଶୀ ବିମର୍ଷ ହୋଇଯାଇଥିଲେ। ଆର:କେ: ମୁଖର୍ଜିଙ୍କ ଭାଷାରେ ଏପରି ଧାର୍ମିକ ଚିନ୍ତାଧାରା କୌଣସି ବିଜୟୀ ସମ୍ରାଟଙ୍କ ପକ୍ଷରେ ସମ୍ଭବ ନୁହେଁ। ଏଚ:ଜି:ୱେଲସ କହିଥିଲେ କି ଯୁଦ୍ଧର କ୍ରୁର ବିଭୀଷିକା ପରେ କୌଣସି ବିଜେତା ଶାନ୍ତିପୂର୍ଣ୍ଣ ବୌଦ୍ଧିକ ବାର୍ତ୍ତା ପ୍ରେରଣ କରିପାରିବେ ନାହିଁ। ଏହା ପରଠୁ ଯୁଦ୍ଧ ସାମ୍ରାଜ୍ୟ ବିଜୟ ଉପରେ ନ ହୋଇ ଧର୍ମର ବିଜୟ ଉପରେ କରିବାପାଇଁ ଘୋଷଣା କରିବା କୌଣସି ରାଜା ପକ୍ଷରେ ସମ୍ଭବ ନୁହେଁ। ସେଥିପାଇଁ ସେ ବଡ଼ ରାଜା। ଅଶୋକଙ୍କର ଏପରି ହୃଦୟ ପରିବର୍ତ୍ତନ ଅଦ୍ୱିତୀୟ। କଳିଙ୍ଗ ସ୍ତୁପରୁ ଯୁଦ୍ଧର ବିଭିଷୀକାର ବର୍ଣ୍ଣନାକୁ ଲିଭାଇ ଦିଆଗଲା। ଏଇ ସ୍ତୁପ ଅନୁଶାସନରେ ଲେଖାଗଲା କି 'ସେ ଓଡ଼ିଶାର ପରାହତ ପ୍ରଜାମାନଙ୍କର ପିତା'।

ମେଘାସ୍ଥିନିସ ମୌର୍ଯ୍ୟ ସେନାବାହିନୀଙ୍କୁ ସ୍ଥାୟୀ ଓ ସୁରକ୍ଷିତ ବୋଲି କହିଛନ୍ତି, ରାଜ୍ୟର ଅର୍ଥରେ ସେମାନେ ପ୍ରତିପାଳିତ। କୃଷି ବା ବ୍ୟବସାୟ ସହିତ ଏମାନଙ୍କର କୌଣସି ସଂପର୍କ ନଥାଏ। ସେଥିପାଇଁ ରାଜ୍ୟରେ କୃଷି, ବ୍ୟବସାୟ ଓ ଯୁଦ୍ଧ ଏକାସମୟରେ ଚାଲିଥାଏ। ଯାହାହେଉନା କାହିଁକି କଳିଙ୍ଗ ଯୁଦ୍ଧର ବିଭୀଷିକା ତାଙ୍କ ମନରେ ଆନ୍ଦୋଳନ ସୃଷ୍ଟି କଲା।

ଧର୍ମର ଦାନ– କ୍ରୀତଦାସ ଓ ସେବକଙ୍କର ପ୍ରତି ଉତ୍ତମ ବ୍ୟବହାର, ମାତା ପିତାଙ୍କ ଆଜ୍ଞାବହ, ସାଙ୍ଗ ସାଥିଙ୍କ ପ୍ରତି ସ୍ନେହ ଭାବ, ସମସ୍ତଙ୍କୁ ଉତ୍ତମ ରାସ୍ତା ଦେଖାଇବା, ଠିକ୍ ଭୂଲର ପ୍ରଭେଦ ବୁଝିବା ଇତ୍ୟାଦି ଜୀବନର ଅନ୍ୟତମ ଉଦ୍ଦେଶ୍ୟ ବୋଲି ସେ ମନେକଲେ। ଅନ୍ୟ ଦିଗରେ ଧର୍ମକୁ ଦୟା, ଦାନ, ସତ୍ୟ, ଶୁଦ୍ଧତା ଓ ଶାନ୍ତିଦାୟିନୀ ବୋଲି ଅଶୋକ ଭାବୁଥିଲେ, ପ୍ରଚାର କରୁଥିଲେ, ଅଭ୍ୟାସ କରୁଥିଲେ, ନୀତି ନିୟମ ମଧ୍ୟ ପାଳନ କରିଥିଲେ, ଧର୍ମପ୍ରଚାର ଉଦ୍ଦେଶ୍ୟରେ ବ୍ୟବହାର କରିଥିଲେ। କେବଳ ଭାରତ ପାଇଁ ନୁହେଁ ସାରା ବିଶ୍ୱପାଇଁ ଏହା ଥିଲା ତ୍ରୈଲୋକ୍ୟ ଚିନ୍ତାମଣି। ନିଜ ରାଜ୍ୟରେ ମଧ୍ୟ ପ୍ରଚାର କଲେ ଧର୍ମର ଏ ବାଖ୍ୟା। ୨୭ ବର୍ଷର ରାଜୁତି

ଭିତରେ ପ୍ରଚଳନ କରାଇଥିଲେ ଏ ବାର୍ତ୍ତା। ଶେଷ ବେଳକୁ ଲେଖିଥିଲେ 'ମୁଁ ଏସବୁ କରିଛି। ଫଳରେ ମୋ ପୁତ୍ର ପୌତ୍ରାଦି ଓ ଯାବତ୍ ସୂର୍ଯ୍ୟ ଚନ୍ଦ୍ରାକ୍ୟ ସମସ୍ତେ ଧର୍ମର ଏ ଧାରାକୁ ଗ୍ରହଣ କରିନେବେ।''

ଏ ଅନୁଶାସନ ପ୍ରଥମେ ତାଳପତ୍ରରେ ଲେଖାଗଲା। ପରେ ପଥରରେ ଖୋଦେଇ ହୋଇ ରଖାଗଲା। ଲୋକଙ୍କୁ ବଡ଼ପାଟିରେ ପଢ଼ି ଶୁଣାଇ ଦିଆଗଲା। ଲେଖା ହେଲା ଅନେକ ଭାଷାରେ। ପ୍ରଚାର ହେଲା ଦେଶ ବିଦେଶରେ। ଅଶୋକଙ୍କୁ ଯୀଶୁଖ୍ରୀଷ୍ଟ ଓ ବୁଦ୍ଧଙ୍କ ପରି ଏକ ଧର୍ମ ପ୍ରଚାରକ ଭାବରେ ଗ୍ରହଣ କରାଗଲା। ତାଙ୍କ ଅନୁଶାସନରେ କୌଣସି ଜାଗାରେ ବୁଦ୍ଧଙ୍କ ନାମ ଅବା ତାଙ୍କର ଅଷ୍ଟପଥବାଣୀ ଦେଖାଯାଏ ନାହିଁ। ନିଜର ସାମ୍ରାଜ୍ୟର ଶାସନପଦ୍ଧତିକୁ ବାନ୍ଧିରଖିବାପାଇଁ ଅଶୋକ ଲିଖିତ ଆକାରରେ ଅନେକ ଲେଖା ରଖିଯାଇଛନ୍ତି। ଆଇନ ଶୃଙ୍ଖଳା ଦିଗରେ ହେଉ ବା ରାଜସ୍ୱ ଆଦାୟ କରିବା ଦିଗରେ ହେଉ, ସବୁଥିପାଇଁ ଅଲଗା ଅଲଗା ବିଭାଗ ରଖି ସଦାସର୍ବଦା ତାର ପର୍ଯ୍ୟାଲୋଚନାପାଇଁ, ଲୋକ ନିଯୁକ୍ତ କରାଯାଉଥିଲା। ଏ ଲୋକମାନେ ଦେଶର, ରାଜ୍ୟର ସବୁ ଖବର ସମ୍ରାଟଙ୍କ ଆଗରେ ପେଶ କରୁଥିଲେ। ସମସ୍ତଙ୍କ ନିଯୁକ୍ତି ମଧ୍ୟ ସମ୍ରାଟଙ୍କ ଜରିଆରେ ହିଁ କରାହେଉଥିଲା। ଶାସନ ପ୍ରଣାଳୀ ସବୁ ଲିପିବଦ୍ଧ ହୋଇ ରହୁଥିଲା। ଅଶୋକଙ୍କର ଏ ଶାସନଧାରା ସମୁଦ୍ରରୁ ସମୁଦ୍ର, ପର୍ବତରୁ ପର୍ବତ, ଦେଶ ବିଦେଶ, ସାରା ବିଶ୍ୱରେ ପ୍ରଚାରିତ ହୋଇଯାଇଥିଲା।

ଅଶୋକଙ୍କର ମୃତ୍ୟୁହେଲା ଖ୍ରୀ.ପୂ. ୨୩୧ରେ।

## ଗୁପ୍ତ ସାମ୍ରାଜ୍ୟ

ଅଶୋକଙ୍କ ମୃତ୍ୟୁ ପରର ଘଟଣା, ଗୁପ୍ତ ସାମ୍ରାଜ୍ୟର ଉତ୍ଥାନ ଓ ପ୍ରସାର– ମୁଦ୍ରା ପ୍ରଚଳନ, ଗ୍ରୀକ-ରୋମାନ ଓ ଚାଇନା ପ୍ରଭୃତି ଦେଶମାନଙ୍କ ସହିତ ବ୍ୟବସାୟ ପ୍ରଭୃତି ବିଷୟରେ ଅନେକ ତଥ୍ୟ ଜାଣିବାକୁ ମିଳେ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ଗବେଷଣା ଓ ଅନେକ ଶିଳାଲେଖରୁ। ସବୁ କିନ୍ତୁ ଅସ୍ପଷ୍ଟ, ଦୁର୍ବୋଧ ଓ ସନ୍ଦେହଜନକ। ଏସବୁ ନିରୁଦ୍ଧ ମତ।

ରୋମ ସେତେବେଳେ ତାର ସଂସ୍କୃତି ବିସ୍ତାର କରୁଥିଲା। ପାଟଳିପୁତ୍ରର ମହତ୍ତ୍ୱ କିନ୍ତୁ କମି କମି ଯାଉଥିଲା। ଅଶୋକଙ୍କର ସାର୍ବଭୌମତ୍ୱ ବିଶ୍ୱଦରବାରରେ ବା ଅନ୍ୟ କୌଣସି ରାଜ୍ୟ ଓ ସାମ୍ରାଜ୍ୟ ଉପରକୁ ଉଠି ପାରି ନଥିଲା। ରାଜନୀତି

ବ୍ୟତୀତ, ଅର୍ଦ୍ଧଶତକ ବର୍ଷ ପର୍ଯନ୍ତ ଅନେକ ପରିମାଣରେ ନୈରାଶ୍ୟଜନକ ଥିଲା । ଭାରତବର୍ଷରେ ସାଂସ୍କୃତିକ ଉନ୍ନତି ଧୀର ଗତିରେ ଚାଲିଥିଲା । କଳା, ବିଜ୍ଞାନ, ବାଣିଜ୍ୟ ଓ ସାଂସ୍କୃତିକ କ୍ଷେତ୍ରରେ ଅବସ୍ଥା ଅଳ୍ପ ସୁଧୁରି ଯାଇଥିଲା । ମୌର୍ଯ୍ୟ ସାମ୍ରାଜ୍ୟ ଅଶୋକଙ୍କ ବେଳରେ ଅନୁଶାସନ, ସ୍ତୁପ, ବିହାର ତିଆରି ହେବା ଫଳରେ ଇଟା ଓ କାଠର ବ୍ୟବହାରରେ ଉନ୍ନତି ଘଟିଥିଲା ଓ ପରେ ପରେ ପଥରର ବ୍ୟବହାର ମଧ୍ୟ ପ୍ରଚଳନ କରାଗଲା । ଭାରାହୁତ, ସାଙ୍କଚି ଓ ଅମରାବତୀ ସ୍ତୁପମାନଙ୍କରେ ଏ ସବୁ ଦେଖାଦେଇଥିଲା ।

ପଶ୍ଚିମ ଭାରତରେ ଗୁମ୍ଫା ସବୁ ଖୋଦିତ ହେଲା । ପ୍ରାକୃତିକ ଗୁମ୍ଫା ବି ଅନେକ ଥିଲା । କିନ୍ତୁ ପରେ ପରେ ଆରମ୍ଭ ହେଲା ବଡ଼ ବଡ଼ ହଲ, ଖୁଣ୍ଟ ବିଶିଷ୍ଟ ଘର । ସ୍ତୁପ ଓ ପଥର ଖୋଦିତ ପ୍ରାର୍ଥନା ଗୃହ ସବୁ, ପଥର କଟାଯାଇ ପାହାଚମାନ ସବୁ ତୋଳାହେଲା । କଠିନ କାଠରେ କାରୁକାର୍ଯ୍ୟ ଆରମ୍ଭ ହେଲା । ମୌର୍ଯ୍ୟ ଯୁଗର ଭାରତୀୟ ଚାରୁଶିଳ୍ପ କଳାର ପରମ୍ପରା ପାଇଁ ବିଶେଷ କିଛି ଅବଦାନ ନାହିଁ । ତାର ସ୍ତମ୍ଭ, ରାଜଧାନୀ, ସ୍ତୁପ ଓ ବିହାର ବ୍ୟତିତ କେବଳ ଇଟା ଓ କାଠର ସାମାନ୍ୟ ଚାତୁରି ଅଛି ।

ସାହିତ୍ୟ କ୍ଷେତ୍ରରେ ପାଣିନୀ ବ୍ୟାକରଣ ଉପରେ ଟୀକା ପ୍ରସ୍ତୁତ କରିଥିଲେ– ନାମ ଥିଲା ପାତଞ୍ଜଳି । ମନୁସ୍ମୃତି, କୌଟିଲ୍ୟଙ୍କର ଅର୍ଥଶାସ୍ତ୍ର, ବାତ୍ସାୟନଙ୍କର କାମସୂତ୍ର ୨ୟ ଶତାବ୍ଦୀରେ ଲେଖାଯାଇଥିଲା । ଜଣେ ବୁଦ୍ଧିଧର୍ମୀ ଲେଖକ– ନାମ ଅଶ୍ୱଘୋଷ, ଭାରତର ପ୍ରଥମ ନାଟକ ଲେଖିଥିଲେ । ଲେଖକ ରାଜା କନିଷ୍କଙ୍କର ସମସାମୟିକ । ୩ୟ ଶତାବ୍ଦୀ ବେଳକୁ ସଂସ୍କୃତ ନାଟକର ଧାରା ସୃଷ୍ଟି ହେଲା । ତାଙ୍କ ସୃଷ୍ଟିକୁ ବାଖ୍ୟା କରିଥିଲେ କାଳିଦାସ । ଏହାସବୁ କଳା ଯୁଗରେ ନ ହୋଇ ଗୁପ୍ତଙ୍କ ସ୍ୱର୍ଣ୍ଣ ଯୁଗରେ ହେବାର ଲେଖାଅଛି ।

ମଧ୍ୟଏସିୟା, ଦକ୍ଷିଣ ପୂର୍ବ ଏସିଆରେ ଭାରତୀୟମାନେ ଏ ସମୟକୁ ପ୍ରବେଶ କରିଥିଲେ । ବାଣିଜ୍ୟ ପାଇଁ ମଧ୍ୟ ରୋମାନମାନଙ୍କୁ ଉତ୍ସାହିତ କରାଯାଉଥିଲା । ସୁମାତ୍ରା ଓ ସିଆକିଙ୍ଗରେ ଏହା ସବୁ ଦେଖିବାକୁ ମିଳିଥିଲା । ମୌର୍ଯ୍ୟ ସାମ୍ରାଜ୍ୟ ଓ ଗୁପ୍ତ ସାମ୍ରାଜ୍ୟ ସମୟକୁ ମୋଟାମୋଟି କହିବାକୁ ଗଲେ ଭାରତୀୟ ସଭ୍ୟତା ବାହାର ଆଗନ୍ତୁକଙ୍କ ଭାରତକୁ ପ୍ରବେଶ ଫଳରେ ଅନ୍ୟ ଦେଶମାନଙ୍କରେ ମଧ୍ୟ ବ୍ୟାପିଥିଲା ।

ଓଡ଼ିଶାବାସୀ ସ୍ୱାଧୀନତା ରକ୍ଷାପାଇଁ ଅକାତରେ ପ୍ରାଣଦାନ କଲେ । ସେମାନେ ବିଜିତ ହେଲେ ସତ ମାତ୍ର ସେମାନଙ୍କ ପ୍ରାଣଦାନ ନିରର୍ଥକ ହୋଇନାହିଁ । କାରଣ ଏ

ଯୁଦ୍ଧପରେ ଯେଉଁ ନୈତିକ ବିପ୍ଳବ ଘଟିଲା ତାହା ପୃଥିବୀ ଇତିହାସରେ ଅବର୍ଣ୍ଣନୀୟ। ଅଶୋକଙ୍କ ପରେ ତାଙ୍କ ଉତ୍ତରାଧିକାରୀ କୌଣସି କୀର୍ତ୍ତି ଇତ୍ୟାଦି ରଖିନାହାନ୍ତି। କେବଳ ଦଶରଥ ନାମକ ରାଜା, ବୋଧହୁଏ ତାଙ୍କର ନାତି, କେତେକ ଗୁମ୍ଫା (ଅଜିଭିକାଶରେ) କରାଇଥିଲେ। ତାଙ୍କ ବଂଶଧରମାନେ ଦାକ୍ଷିଣାତ୍ୟରେ ବା ଓଡ଼ିଶାରେ କୌଣସି ଅଧିକାର ପାତି ପାରିନଥିଲେ।

ଅଶୋକଙ୍କ ଅନୁଶାସନ ମହୀଶୂର ଓ ହାଇଦ୍ରାବାଦରେ ଖୋଳାଇ ହୋଇଯାଇଥିଲେ ମଧ୍ୟ ଦାକ୍ଷିଣାତ୍ୟରେ ତାଙ୍କର ଆଧିପତ୍ୟ ନଥିଲା। ବରଂ କେତେକ ଜାଗାରେ କୃଷି, ଖଣିଜ ପଦାର୍ଥ ବ୍ୟବସାୟ ସୈନ୍ୟ ପରିଚାଳନା ନୀତି ଯୋଗୁ ବନ୍ଧା ରହିଥିଲା। ଅଶୋକଙ୍କ ପରେ ରାଜ୍ୟର ପତନ ଆରମ୍ଭ ହେଲା। ବୋଧହୁଏ ଜାଲମୁଦ୍ରା ପ୍ରଚଳନରେ ଦେଶ ଭାଙ୍ଗିପଡ଼ିଲା।

ଶେଷ ମୌର୍ଯ୍ୟରାଜା ବୃହଦ୍ରଥଙ୍କୁ ହତ୍ୟା କରିଦିଆଯାଇଥିଲା ଖ୍ରୀ.ପୂ. ୧୮୦ରେ। ହତ୍ୟାକାରୀ ଉଜ୍ଜୟନୀର ଜଣେ ବ୍ରାହ୍ମଣ। ସେ ମୌର୍ଯ୍ୟ ଦରବାରରେ କାମ କରୁଥିଲେ। ଏ ବ୍ରାହ୍ମଣ ପୁଷ୍ୟମିତ୍ର ନାମରେ ପରିଚିତ ଓ ଶୁଙ୍ଗବଂଶର ପ୍ରତିଷ୍ଠାତା। ସେମାନେ ୧୧୦ ବର୍ଷ ରାଜୁତି କରିଥିଲେ। ଏହାଙ୍କ ପରେ କଣ୍ୱ ସାମ୍ରାଜ୍ୟ ପ୍ରତିଷ୍ଠା ଲାଭକଲା। ପରେ ପରେ ମଗଧ ସାମ୍ରାଜ୍ୟ ୩ ଶତାବ୍ଦୀ ଧରି ଇତିହାସ ଗର୍ଭରୁ ଲୋପ ପାଇଗଲା। ଶୁଙ୍ଗ ଓ କଣ୍ୱ ସାମ୍ରାଜ୍ୟ ମଧ୍ୟ ଅନେକ ଦିଗରୁ ଆକ୍ରମଣର ସମ୍ମୁଖୀନ ହେଲେ। ଓଡ଼ିଶାର ରାଜା ଖାରବେଳ, ଯଦିଓ ଜୈନ ଧର୍ମାବଲମ୍ବି, ଆକ୍ରମଣ କରି ମଗଧ ଓ ପାଟଳୀପୁତ୍ର ଅଧିକାର କଲେ। ଲୁଣ୍ଠନ ଦ୍ରବ୍ୟ ଏକାଠି କଲେ– ହାତୀ, ଘୋଡ଼ା ସବୁ ଗଙ୍ଗାରେ ଗାଧୋଇଲେ ଓ ଖାରବେଳ ଚକ୍ରବର୍ତ୍ତି ନାମରେ ନାମିତ ହେଲେ।

ଖାରବେଳ ଦାକ୍ଷିଣାତ୍ୟର ତାମିଲ ଶାସକ, ସାତବାହନ ରାଜାଙ୍କୁ ଓ ଅନେକ ଗ୍ରୀକ ରାଜାଙ୍କୁ ମଧ୍ୟ ଜୟ କରିଥିଲେ। ଗ୍ରୀକମାନେ ଆଫଗାନିସ୍ଥାନରୁ ଆସି କାବୁଲ ନଦୀ ପାର ହୋଇ ଇନ୍ଦସ ଓ ପଞ୍ଜାବ ଅଧିକାର କଲେ ଖ୍ରୀ.ପୂ. ପ୍ରଥମର ଶେଷଭାଗରେ ଇତିହାସକାରମାନେ ଏମାନଙ୍କୁ ଯବନ ଭାବରେ ନାମିତ କରିଛନ୍ତି। ଯବନମାନେ (ଉତ୍ତରପଶ୍ଚିମରୁ ଆସିଥିବା) ବୋଧହୁଏ ଶୋକଙ୍କ ସମୟରୁ ଆସିବା ଆରମ୍ଭ। ଏହା ସେମାନେ ପ୍ରଚଳିତ କରିଥିବା ମୁଦ୍ରାରୁ ଜଣାପଡ଼େ। ଭିନ୍ନ ଭିନ୍ନ ଧରଣର ମୁଦ୍ରା ପ୍ରଚଳିତ ହେଉଥିବାର ଅନୁମାନ ହୁଏ।

୧୩୦ ବର୍ଷରେ ଛୋଟ ଛୋଟ ରାଜ୍ୟମାନଙ୍କ ଦ୍ୱାରା ପରିଚାଳିତ ମୁଦ୍ରାର ନମୁନା ଦେଖି ଏହି ଯବନମାନେ (ଷ୍ଟ୍ରାଟୋ, ଡେମିଟ୍ରିୟସ ଓ ଡିଯୋଡୋଟ୍ରସ) ଭାବିନେଲେ କି ତାଙ୍କର ଏକ ସ୍ଥାୟୀ ମୁଦ୍ରା ପ୍ରଚଳନର ଆବଶ୍ୟକ ଅଛି। ଯାହାଫଳରେ ସେମାନଙ୍କର ଆଧିପତ୍ୟ ବିସ୍ତାର ହୋଇପାରିବ।

ବାକ୍ଟ୍ରିୟା ରାଜ୍ୟରେ ଏହି ଯବନମାନେ ଏକାଠି ହେଲେ। ଧେ ରାଜ୍ୟ ଧନୀ ହେବାକୁ ଲାଗିଲା। ପୂର୍ବ ଓ ପଶ୍ଚିମ ମଧ୍ୟରେ ବ୍ୟବସାୟୀ କେନ୍ଦ୍ର ପାଲଟିଗଲା। ସବୁଠୁ ବେଶି ବେପାର ହେଲା ଘୋଡାର। ଏହି ସୂତ୍ରରେ ଟ୍ରୋଜାନ ଘୋଡା ଦେଶରେ ପ୍ରିୟ ହେବାକୁ ଲାଗିଲା। ଏମାନଙ୍କ ଭିତରୁ ଡେମିଟ୍ରିୟସ, ଗ୍ରୀକର ଲୋକ, ପଂଜାବ ଓ ତକ୍ଷଶୀଳାରେ ପ୍ରତିଷ୍ଠିତ ହେବାକୁ ଲାଗିଲେ। ସେ କେତେକ ଭାରତୀୟଙ୍କୁ ମଧ୍ୟ ନିଜର ପ୍ରଜା କରି ରଖିଥିଲେ। ତାଙ୍କର ଜଣେ ଉତ୍ତରାଧିକାରୀ ସ୍ୱାଟ କାଶ୍ମୀରର ପୂର୍ବଦିଗକୁ ମଧ୍ୟ ଆସିଥିଲେ। ଏମାନେ ପାଞ୍ଚାଳ ଓ ମଥୁରା (ଗଙ୍ଗା ଯମୁନା ନଦୀ କୂଳରେ ଅବସ୍ଥିତ) ଦଖଲ କରିପାରିଥାନ୍ତି। ଯବନମାନେ ସ୍ୱଭାବତଃ ନିଜ ନିଜ ଭିତରେ କଳହପ୍ରୀୟ। ହୁଏତ ଏହି ସମୟରେ ଖାରବେଳଙ୍କ ସହ ସେମାନବାର ଯୁଦ୍ଧ ହୋଇପାରିଥାଏ ଓ ଖାରବେଳ ପାଟଳୀପୁତ୍ର ଅଧିକାର କରି ପାରିଥାନ୍ତି। କିନ୍ତୁ ବୋଧେ ଏହାପରେ ଖାରବେଳ ଆଉ ଆଗକୁ ଅଗ୍ରସର କରି ନଥିଲେ।

ଖ୍ରୀ.ପୂ. ୧୧୦ ବେଳକୁ ହିନ୍ଦକୁଶର ଦୁଇପଟେ ଗ୍ରୀକମାନଙ୍କର ଆସ୍ଥାନ ଜମିଯାଇଥିଲା। ତକ୍ଷଶୀଳାର ଜଣେ ଗ୍ରୀକରାଜା (ନାମ ହୁଏତ ହେଲିଓଡୋରସ) ନିଜକୁ ଭଗବାନ ବସୁଦେବଙ୍କ ଭକ୍ତ ବୋଲି କହି ଏକ ସ୍ତୁପ ଉପରେ ଗରୁଡ଼ ମୂର୍ତ୍ତି ସ୍ଥାପନା କଲେ। ବସୁଦେବ ବିଷ୍ଣୁଙ୍କ ଅବତାର। ଗରୁଡ ତାଙ୍କର ବାହନ। ଗ୍ରୀକମାନଙ୍କର ହେରାକୁସ ଓ ଯାଦବଙ୍କ ଭଗବାନ ବିଷ୍ଣୁଙ୍କର ମିଳନ ଏହିପରି ହୋଇଥିଲା। ଏମାନେ ବୁଦ୍ଧଧର୍ମ ଗ୍ରହଣ ନ କରି ଏକ ରକ୍ଷଣଶୀଳ ଧର୍ମର ବଂଧନରେ ବାନ୍ଧି ହୋଇଗଲେ। କୁହାଯାଏ ଏହାହିଁ ହେଉଛି 'ହିନ୍ଦୁଇଜିମ'। ହଠାତ୍ ଗ୍ରୀକଦେବତାମାନେ ମୁଦ୍ରାରୁ ଉଭେଇଗଲେ। ତା' ଜାଗାରେ ଭାରତୀୟ ଦେବାଦେବୀ ମୂର୍ତ୍ତି ସ୍ଥାନ ପାଇଲେ। ପ୍ରଥମେ ଶିବ ଓ ଉମା। ଅନ୍ୟଥିରେ ଥିଲା ହାତୀ ଓ ଘୋଡା ଉପରେ ରାଜା ବସିଥିବାର ଚିତ୍ର।

ଚାଇନା ପାଚେରୀ ଖ୍ରୀ.ପୂ. ୩ୟ ଶତାବ୍ଦୀରେ ନିର୍ମାଣ କରାଯାଇଥିଲା। ମୁଦ୍ରା ଓ ଅନୁଶାସନରୁ ଜଣାଯାଏ କି ଖ୍ରୀ.ପୂ.ର ଶେଷ ଓ ଖ୍ରୀ.ଅ.ର ଆରମ୍ଭ ସମୟକୁ

ଭାରତରେ ବାହାର ରାଜା ରାଜୁତି କରିଥିଲେ। କିନ୍ତୁ ଯୁଦ୍ଧ ହେବାର କୌଣସି ସୂଚନା ମିଳେ ନାହିଁ। ସାଧାରଣ ପ୍ରଜାଙ୍କ ମନରେ ରାଜାଙ୍କର ବଂଶ ପରିଚୟର କୌଣସି ସନ୍ଦେହ ନ ଥିଲା। ଫଳରେ ବାହାର ଲୋକଙ୍କୁ ରାଜାଭାବରେ ଗ୍ରହଣ କରିବାର କିଛି ଅସୁବିଧା ନଥିଲା।

**କନିଷ୍କ–**

ଆହୁରି ମଧ୍ୟ ଜଣାଯାଏ କି କୁଶାନ ବଂଶଧରର ଜଣେ ବଡ଼ ରାଜା କନିଷ୍କ ଭାରତ ସାମ୍ରାଜ୍ୟ ଗଢ଼ିବାରେ ସଫଳ ହୋଇପାରିଥିଲେ। ହାସଲ କରିଥିଲେ ଅନେକ ପଦପଦବୀ ଯଥା– ମହାରାଜା, ରାଜାଧିରାଜ, ଭଗବାନ ପୁତ୍ର, ଧରିତ୍ରୀର ଅଧିକାରୀ, ଭାରତୀୟ ସିଜର, ପରିତ୍ରାଣକାରୀ ଇତ୍ୟାଦି ଇତ୍ୟାଦି। ଏ ସମୟର ମୁଦ୍ରା ବଡ଼ ଗୁଣଧର୍ମୀ। ରାଜାମାନେ ଥିଲେ ଶିବ ଭକ୍ତ ସେମାନେ ପିଢ଼ି ପରେ ପିଢ଼ି ରାଜୁତି କଲେ।

ଏହା ଭିତରୁ ଗୋଟିଏ ପିଢ଼ିର ରାଜା– କନିଷ୍କ। ଅନୁଶାସନରୁ ଜଣାଯାଏ ଏହାଙ୍କର ରାଜୁତି ଆଫଗାନିସ୍ତାନର ଓକ୍ସସରୁ ବନାରସ ଓ ସାଙ୍କଚି ପର୍ଯ୍ୟନ୍ତ ବିସ୍ତୃତ ଥିଲା। ଆହୁରି ଜଣାଯାଏ କି ସେ ମଗଧରୁ ପଶ୍ଚିମ ହିମାଳୟ କାଶ୍ମୀର ଓ ସିକିୟାଙ୍ଗ ଖୋଟାନ ପର୍ଯ୍ୟନ୍ତ ରାଜ୍ୟ ଜୟ କରିଥିଲେ। ତାଙ୍କୁ ଦ୍ୱିତୀୟ ଅଶୋକ ବୋଲି ଅଭିହିତ କରାଯାଏ। ସେ ଅନୁଷ୍ଠିତ ଚତୁର୍ଥ ବୌଦ୍ଧ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ ଓ ଧର୍ମର ଉନ୍ନତି ପାଇଁ ଅନେକ ସାହାଯ୍ୟ କରିଥିଲେ। ପେଶୱାର ବା ପୁରୁଷପୁରର ସ୍ତୁପ ତାଙ୍କ ରାଜଧାନୀର ଗୌରବ ବାଣୀ ଶୁଣାଏ। ଏଇ ସ୍ତୁପ ସେତେବେଳେ ପୃଥିବୀ ବିଖ୍ୟାତ ଥିଲା।

ଯମୁନା କୂଳର ମଥୁରା କନିଷ୍କଙ୍କର ଦ୍ୱିତୀୟ ରାଜଧାନୀ ଥିଲା। ତାର ଆଖପାଖରେ ଅନେକ ପଥରମୂର୍ତ୍ତି କନିଷ୍କଙ୍କର ଓ ୱିମା କାଡ଼ଫିସେସ୍‌ଙ୍କର (ଆଉ ଜଣେ କୁଶାନ ରାଜା) ଖେଳେଇ ହୋଇପଡ଼ିଛି। ଗ୍ରୀକ ମୁଦ୍ରାରୁ ଅନେକ ମୁଣ୍ଡବିହୀନ ଶରୀରର ଚିତ୍ର ଦେଖିବାକୁ ମିଳେ। ମିଳେ କନିଷ୍କଙ୍କର ଏକ ଦଣ୍ଡାୟମାନ ପ୍ରସ୍ତରମୂର୍ତ୍ତି ଯେଉଁଥିରେ କୌଣସି ଭାରତୀୟ କଳାର ନିଦର୍ଶନ ନାହିଁ। ଦେଖିହୁଏ, ଭାରତୀୟ ଲୋକର ବିଦେଶୀ ଢାଞ୍ଚାର ମୂର୍ତ୍ତି। କନିଷ୍କଙ୍କ ପରେ ଅନେକ ରାଜା ଏହି ରାଜବଂଶର ରାଜୁତି ପ୍ରାୟ ଦଶସନ୍ଧି ପର୍ଯ୍ୟନ୍ତ କରିଥିଲେ। କନିଷ୍କଙ୍କ ରାଜୁତି ବେଳର ଦୁଇଟି ମତ

ଦେଖାଯାଏ। ପ୍ରସିଦ୍ଧ ଗ୍ରୀଗୋରିଆନ-କାଲେଣ୍ଡର ଅନୁଯାୟୀ ଏହାର ଆରମ୍ଭ ୭୮ ଖ୍ରୀ.ଅ.ରେ ଓ ଅନ୍ୟମତରେ କନିଷ୍କଙ୍କ ରାଜୁତି ଖ୍ରୀ.ପୂ. ୫୮ରେ।

ବୁଦ୍ଧଙ୍କ ଶିକ୍ଷା ପ୍ରଥମରେ ମଧ୍ୟଏସିଆ ଦେଇ ଚିନ୍‌କୁ ଯାଇଥିଲା ବୋଲି ସମସ୍ତେ ଜାଣନ୍ତି। ଖ୍ରୀ.ପୂ. ଦୁଇ ଶତାବ୍ଦୀରେ ସିଲ୍କ-ରୁଟ ଦେଇ ହନ ଦେଶ ଓ ପଶ୍ଚିମ ଦେଶ ବ୍ୟବସାୟ ସୂତ୍ରରେ ବଂଧା ହୋଇଥିଲେ। ଏ ବ୍ୟବସାୟ ଉତ୍ତର ତିବତ୍ ସିନକିୟାଙ୍ଗ, ଅକ୍ସସ, ବାକଟ୍ରିଆ, ବୁଖାରୋ, ଇରାନ ଓ ମଧ୍ୟସାଗର ଦେଇ ପଶ୍ଚିମ ଦେଶ ପର୍ଯ୍ୟନ୍ତ ବ୍ୟାପିଥିଲା। ହାନ ଦେଶର ଓ୍ୱିହେଚି ସହିତ ଭାରତର କୂଟନୈତିକ ସଂପର୍କ କୁଶାନବଂଶ ସହ ପୂର୍ବରୁ ଥିଲା। ପରେ କୁଶାନମାନେ ସିନକିୟାଙ୍ଗ, ଆଫଗାନିସ୍ତାନ ଦେଇ ଇନ୍ଦସରେ ପଶି ଭାରତରେ ପହଞ୍ଚିଲେ। ପରେ ପରେ ଚାଇନା ସହ ସଂପର୍କ ଆରମ୍ଭ ହେଲା। ଅଶୋକଙ୍କ ପରି କନିଷ୍କ ବୁଦ୍ଧ-ସଂଘର ପ୍ରବର୍ତ୍ତନ ଦେଶ-ବିଦେଶରେ ଆରମ୍ଭ କରିଦେଇଥିଲେ। ଏହାବି ଜଣାଥିଲା କି ବୁଦ୍ଧଙ୍କ ଧର୍ମପ୍ରଚାର ପ୍ରଥମରେ ୬୫ ଖ୍ରୀ.ଅ.ରେ ଚାଇନାରେ ଆରମ୍ଭ ହୋଇଥିଲା। ବୋଧହୁଏ କୁଶାନ ବା ପାର୍ଥିୟାନସ ବେଳରେ ଧର୍ମଗୁରୁ କାଶ୍ୟପମାତଙ୍ଗା ଚାଇନା ଯାଇଥିଲେ। ଗୁରୁମାନେ ହୁଏତ ପେଶୱାରରୁ କାବୁଲନଦୀ ପାରିହୋଇ ଜଲାଲାବାଦ ଓ ପରେ ଦାମିୟାନକୁ ଯାଇଥିବେ। ବାକ୍‌ଟ୍ରିୟା ଯିବାକୁ ହିନ୍ଦୁକୁଶ ବାଟଦେଇ ଯିବାକୁ ପଡ଼େ। ଚିଲାସର ପଶ୍ଚିମକୁ ଗୋଟାଏ ଖାଲିଜାଗା ଅଛି। ସେଠାର ପାର୍ବତ୍ୟ ଅଞ୍ଚଳରେ ଅନେକ ଅନୁଶାସନ ଖେଳେଇ ହୋଇରହିଛି। ତା ମଧ୍ୟରୁ ଏକ ଅନୁଶାସନରେ କୁଶାନ ରାଜା ଓ୍ୱିମା କାଡ଼ଫିସେସଙ୍କ ନାମ ଲେଖାଅଛି।

ଗିଲିଗିଟ୍ ଭ୍ୟାଲିରେ ଅନେକ ବୁଦ୍ଧମୂର୍ତ୍ତି ଓ ସ୍ତୁପ ବିଛାଇ ହୋଇଛି। ଗ୍ଲେସିୟର ଉପରେ ହୁନଜା ଭ୍ୟାଲି ଅବସ୍ଥିତ। ସେଠାରେ ଲେଖାଅଛି କୁସାନା ଦେବପୁତ୍ର ମହାରାଜ କନିଷ୍କ ହୁନ୍‌ଜା। ଏ ଲେଖରୁ ଜଣାପଡ଼େ ଏହା ମଧ୍ୟାୟନ ବୁଦ୍ଧଧର୍ମର ଲେଖ। ୪ର୍ଥ ବୁଦ୍ଧ ସମ୍ମିଳନୀ କନିଷ୍କଙ୍କ ଅଧିନତାରେ ହୋଇଥିଲା।

ଏହାପରେ ବୌଦ୍ଧଧର୍ମର ବିଚାରଧାରା ଦୁଇଟି ସ୍କୁଲରେ ବିଭକ୍ତ ହୋଇଗଲା। ହିନୟାନ ଓ ମହାୟାନ। ମହାୟନ ଚିନ୍ତାଧାରା ଅନୁସାରେ ବୁଦ୍ଧଙ୍କର ମୂର୍ତ୍ତିପୂଜା ଆରମ୍ଭ ହେଲା। ହିନାୟନ ଚିନ୍ତାଧାରାରେ ପଦଚିହ୍ନ, ସିଂହାସନ, ଗଛ, ଛତା ଇତ୍ୟାଦି ପ୍ରତି ଧ୍ୟାନ ଦିଆଗଲା। ଏହା ଏକ ବୌଦ୍ଧଧର୍ମର ନୂଆ ବିଶ୍ୱାସ।

କୁସାନମାନେ ପୂର୍ବ-ପଶ୍ଚିମ ବ୍ୟବସାୟ (ବାକେଟ୍ରିୟାର ଓ ଭାରତ ମଧ୍ୟରେ ବ୍ୟବସାୟ) ଜରିଆରେ ଏକ ବିପୁଳ ସାମ୍ରାଜ୍ୟର ଅଧିକାରୀ ହୋଇ ସେଣ୍ଟ ଥମାସଙ୍କ ଭଳି ଅନେକ ପାଶ୍ଚାତ୍ୟ ଶିଳ୍ପୀମାନଙ୍କୁ ଅର୍ଥଦେଇ ଏ ନୂଆ ବିଶ୍ୱାସକୁ ସେମାନଙ୍କ ମନଭିତରେ ପୁରାଇଲେ। ଏହି ନୂଆ ବିଶ୍ୱାସ, ସେମାନଙ୍କ କଳାକୃତିରେ ପ୍ରତିଫଳିତ ହେଲା ଏବଂ ଧିରେ ଧିରେ ବଢ଼ିଚାଲିଲା। କାରାକୋରମର କିର୍ତୀରାଜି ପ୍ରସିଦ୍ଧି ଲାଭ କଲା ୪ର୍ଥ ଶତାବ୍ଦୀ ପର୍ଯ୍ୟନ୍ତ। ମାତ୍ର ଏସିୟାର ଅନୁପ୍ରବେଶକାରୀଙ୍କ ଫଳରେ ଧୀରେ ଧୀରେ ଏହା ଲୋପ ହେବାକୁ ଲାଗିଲା। ତେବେ ବି କାରାକୋରମର କୀର୍ତୀରାଜି କିଛି ପରିମାଣ ଅତୁଟ ରହିଲା। ସେ ସମୟରେ ଚାଇନାର ସିଲ୍କ କପଡ଼ା ଭାରତକୁ ରପ୍ତାନୀ ହେଉଥାଏ। ସେଇ ସିଲ୍କପଦାର୍ଥ ଭାରତରୁ ପୁଣି ଇଜିପ୍ଟ ଓ ରୋମକୁ ରପ୍ତାନି ହେଲା। ଏ ବ୍ୟବସାୟ କିନ୍ତୁ କାରାକୋରମ ବାଟେ ଚାଲୁ ନଥିଲା। ଏସିୟ ଅନୁପ୍ରବେଶକାରୀ ବ୍ୟବସାୟୀଙ୍କ ଦୃଷ୍ଟି କାରାକୋରମର କିର୍ତ୍ତି ଉପରେ ପଡ଼ିପାରିଲାନି। ସେଥିପାଇଁ ହୁଏତ କାରାକୋରମର କୀର୍ତ୍ତି ବଂଚିଗଲା।

**ଦାକ୍ଷିଣାତ୍ୟ :**

ଗଙ୍ଗା ସମତଳଭୂମିକୁ ସହରି ସଭ୍ୟତା ଓ ରାଜ୍ୟ ବିଭାଜନ ହେବାର ଧାରା ବ୍ୟାପିଯିବାର ବହୁ ପୂର୍ବରୁ ଦାକ୍ଷିଣାତ୍ୟରେ ଏହାର ପ୍ରସାର ହୋଇସାରିଥିଲା। ଅନେକ ଛୋଟଛୋଟ ରାଜ୍ୟ ଗଠିତ ହୋଇ ଉନ୍ନତ ହେବାକୁ ଆରମ୍ଭ କରୁଥିଲେ। ମହାରାଷ୍ଟ୍ର, ତାମିଲନାଡୁ ଓ କେରଳ ଇତ୍ୟାଦିରେ ଚାଷଜନିତ ଉନ୍ନତି ଅଧିକ ଫଳପ୍ରଦ ହୋଇଥିଲା। ଫଳରେ ଜଳସେଚନର ସୁବିଧା ମଧ୍ୟ ତ୍ୱରାନ୍ୱିତ ହୋଇପାରିଥିଲା। ସେଥିପାଇଁ ଉତ୍ପାଦନ ମଧ୍ୟ ବିପୁଳ ପରିମାଣରେ ବୃଦ୍ଧି ପାଇଲା। ସେମାନଙ୍କ ଭାଷା ଥିଲା ଦୁଇପ୍ରକାରର। ଦ୍ରାବିଡ଼ ଭାଷା– ଯଥା କାନାଡା, ତେଲଗୁ, ତାମିଲ ଓ ମାଲାୟାଲମ ଓ ଆର୍ଯ୍ୟ ଭାଷା-ସଂସ୍କୃତ ଓ ଅନ୍ୟାନ୍ୟ।

ଖ୍ରୀ.ପୂ.୩୦୦ ବେଳକୁ ପାଣ୍ଡ୍ୟରାଜ୍ୟ ପ୍ରସିଦ୍ଧ ଥିଲା। ଅଶୋକ ଏ ରାଜ୍ୟ ବିଷୟରେ ଜାଣିଥିଲେ। ମେଘାସ୍ଥିନିସ ପାଣ୍ଡ୍ୟ ରାଜ୍ୟକୁ ଜାଣିଥିଲେ। ଏମାନେ ଦକ୍ଷିଣରୁ ଆରମ୍ଭ କରି ସମୁଦ୍ର ପର୍ଯ୍ୟନ୍ତ ଦେଶର ଅଧିକାରୀ ଥିଲେ। ସେମାନେ ପ୍ରାୟ ୩୬୫ ଖଣ୍ଡ ଗାଁ ଦଖଲ କରିଥିଲେ। ଅନୁଶାସନରେ ଚୋଲା ଓ ପାଣ୍ଡ୍ୟା ସମ୍ବନ୍ଧରେ ଲେଖାଅଛି। ଶ୍ରୀଲଙ୍କା ପର୍ଯ୍ୟନ୍ତ ଏମାନଙ୍କର ରାଜ୍ୟ ବ୍ୟାପିଥିଲା। ଯଦିଓ ସେମାନେ ମୌର୍ଯ୍ୟସାମ୍ରାଜ୍ୟର

ଅଂଶବିଶେଷ ନଥିଲେ ତଥାପି ସେମାନେ 'ଭଗବାନଙ୍କ ପ୍ରିୟ'ଙ୍କ କାର୍ଯ୍ୟକଳାପକୁ ଗ୍ରହଣ କରି ନେଇଥିଲେ। ରାସ୍ତାର ଦୁଇକଡ଼ରେ ଗଛ, ମଣିଷଙ୍କ ପାଇଁ ଓ ଜୀବଜନ୍ତୁଙ୍କପାଇଁ ସ୍ୱାସ୍ଥ୍ୟସେବାକୁ ଗ୍ରହଣ କରିନେଇଥିଲେ।

ଓଡ଼ିଶାର ରାଜା ଖାରବେଳ ଏହି ରାଜ୍ୟ ସଂକ୍ରାନ୍ତରେ ଜାଣିଥିଲେ। ଥରେ ସେ ଜଣେ ପାଣ୍ଡ୍ୟ ରାଜାଙ୍କୁ ହରାଇ ଅନେକ ମୁକ୍ତା ସଂଗ୍ରହ କରିପାରିଥିଲେ। ମଦୁରାଇର ସୂକ୍ଷ୍ମ କପାବସ୍ତ୍ର, ମୁକ୍ତା ଓ ଶାମୁକା ମଧ ସଂଗ୍ରହ କରିଥିଲେ। ଅର୍ଥଶାସ୍ତ୍ର ପୁସ୍ତକରେ ମଧ ପାଣ୍ଡ୍ୟମାନଙ୍କ ସଂକ୍ରାନ୍ତରେ ଉଲ୍ଲେଖ ଅଛି। ଏକଦା ଚିନ୍ତା କରାଗଲା କିପରି ମୌର୍ଯ୍ୟ ସାମ୍ରାଜ୍ୟର ରାଜସ୍ୱ ବଢ଼ାଯାଇପାରିବ ? ଏହାରି ଉପରେ ଆଲୋଚନା କରି କୌଟିଲ୍ୟ କହିଥିଲେ କି ଉତ୍ତର ଭାରତ ସହିତ ମଧ୍ୟଏସିଆର ବ୍ୟବସାୟିକ ସଂପର୍କ ଅଛି। ଏହାକୁ ଅଧିକ ଲାଭଜନକ କରିବାପାଇଁ ବ୍ୟବସାୟକୁ ଦକ୍ଷିଣପଥ ଦେଇ ଗଲେ, ତାହା ଅଧିକ ନିରାପଦ ଓ ଅଧିକ ଲାଭଜନକ ହୋଇପାରିବ। ସେ ଦୃଷ୍ଟିରୁ ମୌର୍ଯ୍ୟ ସାମ୍ରାଜ୍ୟ ସହିତ ସେ ସମୟରେ ଦାକ୍ଷିଣାତ୍ୟର ପାଣ୍ଡ୍ୟରାଜ୍ୟମାନଙ୍କର ସଂପର୍କ ଥିଲା ବୋଲି କୁହାଯାଏ। ଏହାଛଡ଼ା ପାଣ୍ଡ୍ୟ ସାମ୍ରାଜ୍ୟ ଦ୍ୱାରା ଆୟୋଜିତ ଏକ ଉତ୍ସବରୁ ମଧ ଏହା ଜାଣିହୁଏ। ଖ୍ରୀଷ୍ଟଙ୍କ ଜନ୍ମ ସମୟରେ ସଂଘ ତରଫରୁ ହୋଇଥିବା ଏକ ସମ୍ମିଳନୀରୁ ମଧ ଏହା ଜଣାପଡ଼େ। ତାମିଲ କବିଙ୍କ ଲେଖା ଓ ପୂର୍ବକାଳର ତାମିଲ ବ୍ୟାକରଣରୁ ଅନେକ ବିଷୟ ପାଣ୍ଡ୍ୟ ସାମ୍ରାଜ୍ୟ ସଂକ୍ରାନ୍ତରେ ଜାଣିହୁଏ।

ଆହୁରି ପୁଣି ଜଣାଯାଏ କି ଆର୍ଯ୍ୟ-ଅନୁପ୍ରବେଶକାରୀମାନେ ଧବରେଧିରେ ଦାକ୍ଷିଣାତ୍ୟକୁ ବେଶି ପରିମାଣରେ ପ୍ରବେଶ କଲେ। ତାମିଲ କବି ଓ କବିୟତ୍ରୀମାନେ ଆର୍ଯ୍ୟମାନଙ୍କ ଦ୍ୱାରା ରଚିତ ମହାଭାରତ କାବ୍ୟ ସହିତ ପରିଚିତ ହେଲେ ଓ ଜଡ଼ିତ ହେଲେ ମଧ। ସେମାନଙ୍କ ଭାଷାରେ ଅନେକ ନୂତନ ଘଟଣା ମହାଭାରତରେ ଯୋଡ଼ାଗଲା। ଏଥିରୁ ସେଠାର ସାମାଜିକ ଚାଲିଚଳଣ ମଧ ପରିଦୃଷ୍ଟ ହେଲା। ଜାତିପ୍ରଥା ପ୍ରଚଳନ ମଧ ଜଣାପଡ଼ିଲା। ଅଶୋକଙ୍କର ଧର୍ମପ୍ରଚାର ପାଇଁ ଶ୍ରୀଲଙ୍କାରେ ଭାରତର ପ୍ରବେଶ ଅଧିକତର ହେଲା ଏହା ବ୍ରାହ୍ମୀ ଭାଷାରେ ଲିଖିତ ପୁସ୍ତକରୁ ଜଣାପଡ଼େ। ଏଥିରୁ ଜାଣିହେଲା ସେଠାକାର ବ୍ୟବସାୟୀ ଜୀବନ ଓ ବିଦେଶ ସହ ବାଣିଜ୍ୟ ଓ ଲିଖିତ କବିତାରୁ। ବ୍ୟସ୍ତ ବଜାର, ପଣ୍ୟ ଦ୍ରବ୍ୟ ରଖିବା ପ୍ରଣାଳୀ, ରପ୍ତାନୀ ଓ ଆମଦାନୀର ଧାରା, ଜାହାଜ ଯାତାୟତରୁ ତାମିଲ ସଭ୍ୟତାର କେତେକ

ତଥ୍ୟ ଜାଣିହୁଏ। ରୋମାନ ସାମ୍ରାଜ୍ୟର ଲିଖିତ ଇତିହାସରୁ ମଧ୍ୟ ଏହା ଅନୁମାନ କରାହୁଏ।

ଟଲେମିଙ୍କ ସଂଗୃହିତ ଲେଖାରୁ ରପ୍ତାନୀ-ଆମଦାନୀ, ବନ୍ଦର ଓ ଜାହାଜର ଅଭିବୃଦ୍ଧି ଯେ ନୌବାଣିଜ୍ୟର ରାସ୍ତା ଖୋଲିଦେଇଥିଲା ଏହା ସହଜରେ ଅନୁମେୟ। ଭାରତ ମହାସାଗର ବକ୍ଷରେ ସବୁର ଇଙ୍ଗିତ– ରାଜନୈତିକ, ନୌବାଣିଜ୍ୟ ସଂକ୍ରାନ୍ତରେ ଜଣାଯାଉଥିଲା। ସମ୍ରାଟ ଅଗଷ୍ଟସ ଦାବି କରିଥିଲେ କି ଅନେକ ସମୟରେ ଭାରତୀୟ ଦୂତ ତାଙ୍କ ଦରବାରକୁ ଆସୁଥିଲେ। ସେମାନେ ଗାନ୍ଧାର ଓ ପାଣ୍ଡେୟା ସାମ୍ରାଜ୍ୟରୁ ଆସୁଥିଲେ ବୋଲି କୁହାଯାଏ। ଖ୍ରୀ.ପୂ. ୩୧ରୁ ୧୪ ମଧ୍ୟରେ ବାଣିଜ୍ୟିକ ଦ୍ରବ୍ୟସବୁ ଲୋହିତ ସାଗର ଦେଇ ଇଉରୋପକୁ ଯାଉଥିଲା। ମୌସୁମୀବାୟୁ ଜନିତ ନୌଚାଳନା ମଧ୍ୟ ଜଣାଥିଲା।

ରୋମାନ କାରୁକାର୍ଯ୍ୟ ଖଚିତ ପାତ୍ର, ବିଦେଶୀ ରୋମାନ ମଦ ଭାରତର ଦକ୍ଷିଣ ଓ ପଶ୍ଚିମ ଉପକୂଳବର୍ତ୍ତୀ ଅଞ୍ଚଳରେ ଦେଖିବାକୁ ମିଳୁଥିଲା। ରୋମାନ ମୁଦ୍ରା ତାମିଲନାଡୁ, କେରଳ ଓ ଅନ୍ୟତ୍ର ଦେଖାଯାଉଥିଲା। ମାଡ୍ରାଜସ୍ଥିତ ଦକ୍ଷିଣ ପଣ୍ଡିଚେରୀର ଅରିକାମେଡୁରେ ଭାରତ-ରୋମ ବ୍ୟବସାୟ କେନ୍ଦ୍ର ମଧ୍ୟ ଦେଖିବାକୁ ମିଳୁଥିଲା।

ଥମାସ ତାଙ୍କର ଦ୍ୱିତୀୟବାର ଭାରତଭ୍ରମଣ ସମୟରେ ଅନେକ ଧର୍ମାନ୍ତର କରାଇଥିଲେ। ତାଙ୍କୁ ମାୟାଲାପୁରରେ ହତ୍ୟା କରାଗଲା। ବର୍ତ୍ତମାନ ସୁଦ୍ଧା ଥମାସ ଯେଉଁଠି ରହୁଥିଲେ ସେ ଘର ଓ ତାଙ୍କ କବର ସବୁ ସେଠାରେ ଶ୍ରଦ୍ଧା ଓ ସମ୍ମାନ ପାଉଛି। ଆରକାମେଡୁ ଏଇ ବ୍ୟବସାୟ ସୁତ୍ରରେ ବନ୍ଧାହେଲା। ଲବଙ୍ଗ, ନଗମେଗ, ମୋରୁକାନ, ମସଲା– ବର୍ମା ଓ ମାଳୟର ରତ୍ନ ଓ ରେସିନର ବ୍ୟବସାୟ ବଢ଼ିଲା। ଏହି ଉପାୟରେ ପୂର୍ବ, ପଶ୍ଚିମର ବ୍ୟବସାୟ ବୃଦ୍ଧି ଘଟିଲା। ଆରବ ସାଗରରେ ଭାରତୀୟ ବନ୍ଦର ରହଣି ବନ୍ଦର ଭାବରେ କାମ କଲା। ଆରମ୍ଭ ହେଲା ପ୍ରଥମ ଆନ୍ତର୍ଜାତୀୟ ବ୍ୟବସାୟୀଙ୍କ ଆଦାନ-ପ୍ରଦାନ। ଭାଗ ନେଲେ ଦାକ୍ଷିଣାତ୍ୟ ଓ ଦକ୍ଷିଣ-ପୂର୍ବ ଏସିୟା। ଥାଇଲାଣ୍ଡରେ ଭିଏଟନାମରେ ବିଯୋଡ଼ ରୋମାନ ମୁଦ୍ରା ଓ ଭାରତର ମାଳି, ରତ୍ନ, ପାତ୍ର, ମେଟାଲ କାମ ଓ ଇଣ୍ଡୋଗ୍ଲିଅର ପ୍ରମାଣ ବର୍ତ୍ତମାନ ଅନେକ ମିଳୁଛି। ଦକ୍ଷିଣପୂର୍ବ ଏସିୟା ଏକଦା ଏକ ବିଶ୍ୱ ବ୍ୟବସାୟ ସୁତ୍ରରେ ମେଡିଟେରିୟାନ ବେଳାଭୂମି ଓ ହାନ ଚାଇନାର ସଂସ୍କୃତି ସହ ଯୋଡି ହୋଇଥିଲା। ଭାରତୀୟ ସଂସ୍କୃତି ମଧ୍ୟ ଦକ୍ଷିଣ-ପୂର୍ବ-ଏସିଆରେ ବିସ୍ତାର ଲାଭ କରିଥିଲା।

ଦ୍ୱିତୀୟ ଶତାବ୍ଦୀରେ ଚାଇନାର ଟୁନସନଠାରେ ପ୍ରାୟ ୫ଶହ ଭାରତୀୟ ବସବାସ କରିଥିଲେ। ଏହାଛଡ଼ା ପ୍ରାୟ ୧ ହଜାର ବ୍ରାହ୍ମଣ ଏଠାରେ ବସତି ସ୍ଥାପନ କରି ବୈବାହିକ ସୂତ୍ରରେ ମଧ ବନ୍ଧା ହୋଇସାରିଥିଲେ। ଆରମ୍ଭ ହେଲା ଜାହାଜ ବିନିମୟ ବ୍ୟବସାୟ। ଏହି ବ୍ୟବସାୟ ଦଳର କୌଣ୍ଡିନ୍ୟା ନାମକ ଜଣେ ବ୍ରାହ୍ମଣ ଗଙ୍ଗ ଓ ଥାଇଲାଣ୍ଡ ଦେଇ ପୂର୍ବଦିଗକୁ ଯାତ୍ରା କଲେ। ସେଠାର ରାଣୀ ଲିଭ-ୟେ ଚାହିଁଲେ କି ଏ ଜାହାଜ ଅକ୍ତିଆର କରିବେ। କିନ୍ତୁ କୋଣ୍ଡିନ୍ୟା ତୀରମାରି ରାଣୀଙ୍କ ଜାହାଜ କଣା କରିଦେଲେ। ରାଣୀ ଶରଣ ନେଲେ। କୌଣ୍ଡିନ୍ୟା ତାଙ୍କୁ ସ୍ତ୍ରୀ ରୂପରେ ଗ୍ରହଣ କଲେ ସତ ହେଲେ ତାଙ୍କର ଉଲଗ୍ନ ଚେହେରା ଦେଖି ତାଙ୍କୁ ମୁହଁ ବ୍ୟତୀତ ସାରା ଶରୀରରେ ଧାତୁର ଖୋଳପା କରି ବନ୍ଦ କରିଦେଲେ। ସେ ରାଜ୍ୟ ରାଜୁତି କଲେ। ହିନ୍ଦୁ ଦେବାଦେବୀଙ୍କୁ ମେକଂ ଡେଲଟାରେ ପ୍ରତିଷ୍ଠା କଲେ। ଦକ୍ଷିଣପୂର୍ବ-ଏସିଆରେ ଲେଖାର ପ୍ରଚଳନ ଭାରତୀୟମାନେ କରିଥିଲେ ବୋଲି କୁହାଯାଏ।

ରୋମାନ ଗୁଂଫା ସଭ୍ୟତାର ଛାପ ଦାକ୍ଷିଣାତ୍ୟର ଦକ୍ଷୀଣ ପଟକୁ ଥିବା, ମନ୍ଦିରମାନଙ୍କରେ ବେଶୀ ଦେଖାଯାଏ। ଏହାର ସଂଖ୍ୟା ପ୍ରାୟ ହଜାରେହେବ। ଏପ୍ରକାର ମନ୍ଦିର ଭଜ, କାର୍ଲେ, ନାସିକ, ଅଜନ୍ତା ଆଉ ଏଲୋରା ଅଞ୍ଚଳରେ ଦେଖିବାକୁ ମିଳେ। ବିଭିନ୍ନ ପ୍ରକାରର ସ୍ତମ୍ଭ, ସ୍ତୁପ, ଅର୍ଦ୍ଧ ଗୋଲାକାର ଖୁମ୍ବ ଓ ଅନ୍ୟାନ୍ୟ କାରୁକାର୍ଯ୍ୟଖଚିତ ଗୁମ୍ଫା ରୋମାନ ସଭ୍ୟତାର ଢାଂଚାରେ ତିଆରି ହେଲା। ଏସବୁରେ ପ୍ରାୟ ବୌଦ୍ଧଧର୍ମର ଚିନ୍ତାଧାରା ଓ ବିଚାରଧାରା ଦେଖିବାକୁ ମିଳେ।

ଶିଳାଲେଖ, ମୁଦ୍ରାରୁ ମହାରାଷ୍ଟ୍ରର ଐତିହାସିକ ରାଜତ୍ୱ ବିଷୟରେ ଜଣାପଡ଼େ। ଏହାର ରାଜା ସାତବାହନ। ସେମାନେ ମଗଧର କଣ୍ୱଙ୍କୁ ହରାଇ ମଧ ଭାରତ ଓ ଦାକ୍ଷିଣାତ୍ୟରେ ପ୍ରଭାବ ବିସ୍ତାର କଲେ। ତାଙ୍କ ସମୟରେ ଅମରାବତୀ ସ୍ତୁପ ମାରବଲରେ ତିଆରି ହୋଇଥିଲା। ବର୍ତ୍ତମାନ ଏଇ ସ୍ତୁପ (ପ୍ରାୟ ୧୯ଶହ ଶତାବ୍ଦୀ ବେଳକୁ) ଭଙ୍ଗାଯାଇ ଭିନ୍ନ ଭିନ୍ନ ମ୍ୟୁଜିୟମରେ ରଖାଯାଇଛି। ସେ ସମୟର ଅନେକ ରାଜା ବୌଦ୍ଧ ଧର୍ମାବଲମ୍ବି ଥିଲେ ଓ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ପାଇଁ ଚେଷ୍ଟା କରିଥିଲେ। ବୌଦ୍ଧଧର୍ମର ପ୍ରଚାର ବ୍ୟବସାୟ ଓ ଉତ୍ପାଦନ ମାଧ୍ୟମରେ ମଧ କରାଯାଉଥିଲା।



## ସୁବର୍ଣ୍ଣ ଯୁଗ– ଗୁପ୍ତ ସାମ୍ରାଜ୍ୟ– (୩୦୦-୫୦୦ ଖ୍ରୀ.ଅ.)

ଗୁଜରାଟର ସୌରାଷ୍ଟ୍ରରେ ଜୁନାଗଡ଼ ସହର। ସମତଳ ଭୂମିରେ ଅବସ୍ଥିତ ଗିରି-ନଗର (ଗିରନାର)। ଭାରତର ଏକ ଅଦ୍ଭୁତ ପର୍ବତମାଳା ଯାହାର ଅନେକ ଶିଖର (ପ୍ରାୟ ୧ ହଜାର ଫୁଟ) ଉପରେ ଗୁମ୍ଫା ହୋଇରହିଛି। ଏଠାରେ ଅନେକ ଜୈନମନ୍ଦିର ଅବସ୍ଥିତ। ଶିଖର ଉପରକୁ ଗଢ଼ି ମନ୍ଦିର ଦର୍ଶନ କରନ୍ତି ହଜାର ହଜାର ସଂଖ୍ୟାରେ ଜୈନଭକ୍ତ। ନିଃସଙ୍ଗ ଓ ଉପେକ୍ଷିତ ଭାବରେ ଏଠାରେ ଅବସ୍ଥିତ ଅଶୋକ ପାହାଡ଼। ଏହାର ଅବସ୍ଥିତି ପୁରୁଣାକାଳର ରାଜାମାନଙ୍କର ସାମ୍ରାଜ୍ୟ ବିଷୟରେ କହିଚାଲେ। ଏହି ଅବହେଳିତ ବର୍ଷା-କ୍ଷୟ ପର୍ବତରେ ହିଁ ଅଶୋକଙ୍କ କୀର୍ତ୍ତୀ, ବ୍ରାହ୍ମୀ ଭାଷାରେ ସ୍ପଷ୍ଟ ଭାବରେ ଲେଖାଯାଇଛି। ଏ ଶିଳାଲେଖରେ ଲେଖାଅଛି କେନାଲ ମରାମତି ବିଷୟ। ଏ କେନାଲ ଖୋଳା ହୋଇଥିଲା। ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କର ଗୁଜରାଟରେ ଥିବା ଗଭର୍ଣ୍ଣରଙ୍କ ଦ୍ୱାରା– ମୌର୍ଯ୍ୟ ସାମ୍ରାଜ୍ୟର ଗୁଜରାଟ ଉପରେ ଆକ୍ରମଣର ଏକମାତ୍ର ଚିହ୍ନ। ପଞ୍ଜାବରେ ଶାକମାନଙ୍କୁ ହଟାଇ କୁଶାନ ସାମ୍ରାଜ୍ୟ ଗଢ଼ିଉଠିଲା। ଏଥିରେ କନିଷ୍କ ଓ ତାଙ୍କ ପରବର୍ତ୍ତୀ ରାଜାମାନେ ରାଜୁତି କଲେ। ଗୁଜରାଟର ତାଙ୍କ ସାମ୍ରାଜ୍ୟ ସହିତ ରାଜସ୍ଥାନର କିଛି ଅଂଶ ଓ ନର୍ମଦା ନଦୀର ଉତରପଟର ମାଲୱା ଅଞ୍ଚଳ ମିଶିଲା। ମାଲୱାର ରାଜଧାନୀ ଥିଲା ଉଜ୍ଜୟିନୀ।

ପରେ ଗୌତମପୁତ୍ର ସାତକର୍ଣ୍ଣୀ ମାଲୱାରୁ ସମସ୍ତଙ୍କୁ ହଟାଇ ରାଜୁତି କଲେ। ଏହାପରେ ଆସିଲେ ରୁଦ୍ରମନ। ସେ ରାଜସ୍ଥାନ ଓ ସିନ୍ଧ ଅଧିକାର କଲେ। ବୋଧହୁଏ ଅଶୋକଙ୍କ ପରି ରୁଦ୍ରମନ ଧର୍ମରକ୍ଷା କଲେ। ତାଙ୍କର ବ୍ୟାକରଣ, ବିଜ୍ଞାନ ସଂଗୀତ, ତର୍କଶାସ୍ତ୍ର ଓ ଅନ୍ୟାନ୍ୟ ଚିଜ୍ଞାନ ବିଷୟରେ ଜ୍ଞାନ ଥିଲା। ଅଶୋକ, ଖାରବେଳ, କନିଷ୍କଙ୍କ ଉପରେ ଶିଳାଲେଖ ସବୁ ପ୍ରକୃତି ଫର୍ମରେ ମାଗଧି ଓ ପାଲିଭାଷାରେ ଲେଖାଥିଲା। ରୁଦ୍ରମନ ସେ ସବୁକୁ ସଂସ୍କୃତ ଭାଷାରେ ଲେଖିଥିବାର ଅନୁମାନ ହୁଏ।

ସେ ସମୟର ଆଉଜଣେ ଚିଖ୍ୟାତ ରାଜା ଚନ୍ଦ୍ରଗୁପ୍ତ। ତାଙ୍କର ସାମ୍ରାଜ୍ୟ ଥିଲା ଗୁପ୍ତ ସାମ୍ରାଜ୍ୟ। ଅଥଚ ଅଶୋକଙ୍କର ପୂର୍ବଜଙ୍କ ନାମ ମଧ ଚନ୍ଦ୍ରଗୁପ୍ତ। ଯାହାଙ୍କ ରାଜ୍ୟସଭାରେ ଥିଲେ ଚାଣକ୍ୟ। ତାଙ୍କର ସାମ୍ରାଜ୍ୟର ନାଁ ଥିଲା ମୌର୍ଯ୍ୟ ସାମ୍ରାଜ୍ୟ। ମନରେ ସନ୍ଦେହ ଆସେ ଚନ୍ଦ୍ରଗୁପ୍ତ ନାମକ ଜଣେ ରାଜା ଦୁଇଟା ଯାକ ସାମ୍ରାଜ୍ୟ

ଏକା ସମୟରେ କିପରି ବସେଇଲେ । ଜଣେ ମୌର୍ଯ୍ୟ ସାମ୍ରାଜ୍ୟର ଓ ଆଉ ଜଣେ ଗୁପ୍ତ ସାମ୍ରାଜ୍ୟର । ଦୁଇଜଣଙ୍କ ନାଁ ମଧ୍ୟ ଏକା । ଏଇ ସନ୍ଦେହ ଦୂରହୁଏ– ଖ୍ରୀ.ପୂ. ୩୨୦ରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ସାମ୍ରାଜ୍ୟର ରାଜା ଥିଲେ ଓ ଆଉ ଜଣେ ୩୨୦ଖ୍ରୀ.ଅ.ରେ ଗୁପ୍ତ ସାମ୍ରାଜ୍ୟର ରାଜାଥିଲେ । ସେଥିପାଇଁ ଗୁପ୍ତ ବଂଶଜ ଚନ୍ଦ୍ରଗୁପ୍ତଙ୍କୁ ଚନ୍ଦ୍ରଗୁପ୍ତ–୧ମ ବୋଲି ଅଭିହିତ କରାଯାଏ ।

ଗୁପ୍ତ ସାମ୍ରାଜ୍ୟର ପ୍ରତିଷ୍ଠାତା ଶ୍ରୀ ଗୁପ୍ତ ଓ ତାଙ୍କ ପୁତ୍ର ରାଜା ଘଟୋତ୍କଚ ବିହାରରେ କେବଳ ଏକ ପ୍ରାର୍ଥନା ଗୃହ ପ୍ରତିଷ୍ଠା କରିବା ଛଡ଼ା ଅନ୍ୟ କିଛି ଦେଖିଲାଭଳି କାର୍ଯ୍ୟକରି ନାହାନ୍ତି । ଏ ପ୍ରାର୍ଥନା ଘର ଚାଇନାର ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ପାଇଁ ତୋଳାଇଥିଲେ । କାରାକୋରାମ ଦେଇ ବୁଦ୍ଧିଷ୍ଟ ମାନେ ଏଠାକୁ ଆସିଥିଲେ । ଶ୍ରୀ ଗୁପ୍ତ ବୌଦ୍ଧଧର୍ମାବଲମ୍ବୀ ନ ଥିଲେ କିନ୍ତୁ ରାଜାର କର୍ତ୍ତବ୍ୟ ପାଳନ କରିବାପାଇଁ ଏ ଘର ପ୍ରତିଷ୍ଠା କରିଥିଲେ ।

ରାଜା ଚନ୍ଦ୍ରଗୁପ୍ତ ଘଟୋତ୍କଚଙ୍କ ପୁତ୍ର ଥିଲେ । ଏହାଙ୍କ ପାଖରୁ ଗୁପ୍ତ ସାମ୍ରାଜ୍ୟ ଆରମ୍ଭ ବୋଲି ଧରାଯାଏ । ସେ ଅନେକ ରାଜ୍ୟ ଜୟ କରି ପୈତୃକ ରାଜ୍ୟ ସହିତ ସାମିଲ କରିଥିଲେ । ମହାରାଜାଧିରାଜ ଉପାଧି ଗ୍ରହଣ କରିଥିଲେ । ଚନ୍ଦ୍ରଗୁପ୍ତଙ୍କ ଅମଳରେ ରାଜାର ଚିତ୍ର ଥାଇ ମୁଦ୍ରା ପ୍ରଚଳନ କରାଯାଇଥିଲା । ତାଙ୍କ ରାଜ୍ୟ ଗଙ୍ଗାଧାରର ମଗଧ ଠାରୁ ପ୍ରୟାଗ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମଗଧ ସେ ଜୟ କରି ନଥିଲେ । ସେତେବେଳେ ମଗଧ ରାଜା ଲାଚାଭି ଥିଲେ । ତାଙ୍କ କନ୍ୟା କୁମରଦେବୀଙ୍କୁ ଚନ୍ଦ୍ରଗୁପ୍ତ ବିବାହ କରିଥିଲେ ଓ ସେଇ ସୁତ୍ରରେ ବୋଧେ ମଗଧ ରାଜ୍ୟ ପାଇଥିଲେ । ଏପରିକି ଚନ୍ଦ୍ରଗୁପ୍ତ–୧ମଙ୍କ ବଂଶଧରମାନଙ୍କର 'ଚନ୍ଦ୍ରଗୁପ୍ତ ପୁଅ' ବୋଲି ପରିଚୟ ନଥିଲା, ପରିଚୟ ଥିଲା 'ଲାଚାଭି କନ୍ୟାର ପୁଅ' ଭାବରେ । ମୁଦ୍ରାରେ ରାଜାରାଣୀ ଉଭୟଙ୍କ ଚିତ୍ର ଦେଖିବାକୁ ମିଳୁଥିଲା । ଲାଚାଭି ରାଜବଂଶ ନେପାଳ ଅଧିକାର କରିଥିଲେ ବୋଲି ଶୁଣାଯାଏ ଆଉ ସେଇ ସୁତ୍ରରେ ପାଟଳୀପୁତ୍ର ମଧ୍ୟ ତାଙ୍କ ଅଧିନକୁ ଯାଇପାରିଥାଏ ।

ପୁତ୍ର ସମୁଦ୍ରଗୁପ୍ତଙ୍କ ସାମ୍ରାଜ୍ୟର ଅନୁଶୀଳନରୁ ଜଣାଯାଏ ଭାରତରେ ଏହାର ପ୍ରସିଦ୍ଧି ଥିଲା । ଏହାଙ୍କ ସମୟର ଲେଖ ସବୁ ଗୁପ୍ତାବ୍ରାହ୍ମିରେ ଲେଖାଯାଇଥିଲା । ଯେଉଁ ସ୍ତମ୍ଭ ଚନ୍ଦ୍ରଗୁପ୍ତ–୧ମ ଲେଖାଇଥିଲେ ତାହା ଥିଲା ଏହି ସ୍ତମ୍ଭ । ଥିଲା ଆହ୍ଲାବାଦ

ସହରରେ । କିଛିଦିନ ପରେ ଆଉ ଗୋଟାଏ ସ୍ତମ୍ଭ ମିଳିଲା ଯେଉଁଟା କି ଜଣେ ରାସ୍ତା ତିଆରି କଣ୍ଟ୍ରାକ୍ଟରଙ୍କ ପାଖରୁ ମିଳିଥିଲା । ସେ ଖୁମ୍ବକୁ ରାସ୍ତା ତିଆରି କାମରେ ଲଗାଉଥିଲେ । ପୂର୍ବ ଖୁମ୍ବଟି ମଧ୍ୟ ମୂଳରୁ ବାହାର କରି ଅଧା ଯୋଡ଼ା ଅବସ୍ଥାରେ ଥିଲା । ପରେ ଏହାକୁ ମୋଗଲମାନେ ଖିଜିରାବାଦ ଓ ପରେ ଦିଲ୍ଲୀକୁ ଆଣିଥିଲେ । ପ୍ରଥମେ କୋଶମ୍ବିରୁ ଏହାକୁ ଆହ୍ଲାବାଦ ଦୁର୍ଗକୁ ଅଣାଯାଇଥିଲା ଆକବରଙ୍କ ଅମଳରେ । ଜାହାଙ୍ଗୀର ମଧ୍ୟ ଅଶୋକ ଓ ସମୁଦ୍ରଙ୍କ ଲେଖ ସାଙ୍ଗରେ ନିଜର ଲେଖା ସଂଯୋଗ କରିଥିଲେ । ଫଳରେ ଏ ସ୍ତମ୍ଭ ମୌର୍ଯ୍ୟ-ଗୁପ୍ତ-ମୋଗଲର ନାମଫଳକ ଭାବରେ ଦେଖାଯାଇଥିଲା । ପରେ ଏଥିରେ ଗାନ୍ଧୀ-ନେହେରୁଙ୍କ ନାମ ମଧ୍ୟ ଯୋଡ଼ାଗଲା ।

ସେ ଅନୁଶାସନରେ ଲେଖାଅଛି କି ସମୁଦ୍ରଗୁପ୍ତ ବରେଲି ଓ ମଥୁରା ଅଞ୍ଚଳର ରାଜାକୁ ପରାଜିତ କରିଥିଲେ । ପୁଣି ଆଗକୁ ଯାଇଁ, ଅନେକ ଶତ୍ରୁ ରାଜ୍ୟ ଦଖଲ କରି ରାଜା ବିଷ୍ଣୁ ଗୋପାଳ (ପଲ୍ଲବରାଜା କାଞ୍ଚିପୁରମର)ଙ୍କୁ ପରାଜିତ କରିଥିଲେ । ପୁଣି ଦିଲ୍ଲୀରେ ଥିବା ଯୁଧେୟାମାନଙ୍କୁ ମଧ୍ୟ ହଟାଇଲେ । ଫଳରେ ସାରା ଆର୍ଯ୍ୟବର୍ତ୍ତରେ (ବଙ୍ଗଳା, ବିହାର, ୟୁପି, ମଧ୍ୟପ୍ରଦେଶ, ରାଜସ୍ଥାନ, ପୂର୍ବ ପଞ୍ଜାବ)ରେ ଗୁପ୍ତ ରାଜୁତି ଜାରି ରହିଲା । ଅନେକ ମଧ୍ୟବର୍ତ୍ତୀ ଛୋଟ ଛୋଟ ରାଜ୍ୟମାନେ ମଧ୍ୟ ତାଙ୍କ କବଳକୁ ଆସିଗଲେ । ଗାନ୍ଧାର, ଗୁଜରାଟ ମାଲୱା, ଆସାମ ଓ ନେପାଳର ଅନେକ ଛୋଟ ରାଜ୍ୟ ଓ ଶ୍ରୀଲଙ୍କା ତାଙ୍କ ଅଧୀନତା ସ୍ୱୀକାର କଲେ । ଭାରତରେ ସାର୍ବଭୌମତା ଜାରି ରହିଲା । ସମୁଦ୍ରଗୁପ୍ତଙ୍କୁ କହିଲେ 'ଭଗବାନ ରୂପି ବିଶ୍ୱର ରାଜା' । ସେ ଘୋଡ଼ା ବଳି ଦେଲେ । ଲକ୍ଷେ ଗାଈ ଦାନ ସ୍ୱରୂପ ଦେଲେ । ଭାରତର 'ନେପୋଲିୟନ' ବୋଲି ଦାବି କରିବାର ଯୋଗ୍ୟତା ଓ କ୍ଷମତା ଆଉ ବୁଦ୍ଧିମତ୍ତା ତାଙ୍କର ଥିଲା । ଇତିହାସରେ କେବଳ ବିଦେଶୀ ଶାସକମାନଙ୍କର ଏତେ ବଡ଼ ରାଜ୍ୟ ରଖିବାର ଦକ୍ଷତା ଥିଲା ବୋଲି କୁହାଯାଏ । କୋସାମ୍ବିଙ୍କ ଭାଷାରେ ଗୁପ୍ତ ସମ୍ରାଟମାନେ ଜାତୀୟତା ଉତ୍ଥାନ କରିପାରିନାହାନ୍ତି, ଅନ୍ୟ ଭାଷାରେ ଜାତୀୟତା ତାଙ୍କୁ ଟେକି ଧରି ରଖିଛି । ରାଜ୍ୟ ଜୟ କରିବା ସମୁଦ୍ରଗୁପ୍ତଙ୍କର ଉଦ୍ଦେଶ୍ୟ ନଥିଲା । ଉଦ୍ଦେଶ୍ୟ ଥିଲା ଏକ ଆନ୍ତର୍ଦେଶୀୟ ବନ୍ଧୁଭାବ ଓ ଶାନ୍ତି ପ୍ରତିଷ୍ଠାର ଭାବ । ହିଂସା, ଯୁଦ୍ଧ, ଆକ୍ରମଣର ଆଶ୍ରୟ ନେଇଥିଲେ ସତ କିନ୍ତୁ ଅହିଂସା ଓ ସତ୍ୟାଗ୍ରହ ଦେଇ ଶାନ୍ତି ପ୍ରତିଷ୍ଠା କରିବା ତାଙ୍କର ମୂଳ ଲକ୍ଷ୍ୟ ଥିଲା । ସେଥିପାଇଁ ଜୟ କରିଥିବା ରାଜ୍ୟଗୁଡ଼ିକୁ ସେ ସେମାନଙ୍କ ନିଜ ନିଜ ରାଜାଙ୍କୁ ଫେରାଇ ଦେଇଥିଲେ । ସେଠାରୁ ଗୁପ୍ତ ସାମ୍ରାଜ୍ୟର

ସେନାବାହିନୀ ଉଠାଇ ଆଣିଥିଲେ। ସୁନ୍ଦର ଡିଜାଇନର ସ୍ୱର୍ଣ୍ଣ ମୁଦ୍ରା ଯାହାକୁ ନେଇ ସେ ସୁନାମ ହାସଲ କରିଥିଲେ, ତାକୁ ପ୍ରଚଳନ କରିଥିଲେ। ମୌର୍ଯ୍ୟ ସାମ୍ରାଜ୍ୟର ଏକଛତ୍ରବାଦର ଆଭାସ ଯାଙ୍କ ପାଖରେ ନଥିଲା। ବରଂ ଜମୀଦାରୀ ବନ୍ଧନ ସୂତ୍ରରେ ବାନ୍ଧିଦେବାର ନିୟମ କରି ସାର୍ବଭୌମତାର ଦକ୍ଷତା ହାସଲ କରିଥିଲେ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମୌର୍ଯ୍ୟ ସାମ୍ରାଜ୍ୟ ତାଙ୍କ ଶାସନ କାଳରେ ରାଜନୈତିକ ଛୋଟ ଛୋଟ ରାଜ୍ୟକୁ ନେଇ ପ୍ରଦେଶ (ସୁବା) ଗଢ଼ିବାର ଆଶାରେ ଥିଲେ ମାତ୍ର ଏପରି ସୁଯୋଗ ପାଇପାରି ନଥିଲେ। ୬୦୦ ବର୍ଷ ପରେ ଗୁପ୍ତ ସମ୍ରାଟମାନେ ସେହି ପ୍ରକାର ଅବସ୍ଥାର ସମ୍ମୁଖୀନ ହୋଇଥାଇପାରନ୍ତି। ତାଙ୍କ ମତରେ ଯେକୌଣସି ଦୂରବର୍ତ୍ତୀ ଛୋଟ ଛୋଟ ରାଜ୍ୟ ଉପରେ ପ୍ରତ୍ୟକ୍ଷ ଅଧିକାର ନଥାଇ ମଧ୍ୟ, ଯଦି ସେମାନଙ୍କର ଆନୁଗତ୍ୟ ରହେ, ତେବେ, ସେ ରାଜା ଚକ୍ରବର୍ତ୍ତୀ ରାଜା ହୋଇପାରିବ। ନିକଟବର୍ତ୍ତୀ ରାଜ୍ୟରେ ପ୍ରତ୍ୟକ୍ଷ ଉପସ୍ଥିତି ଜରୁରୀ ଥିଲା। 'ଚକ୍ରବର୍ତ୍ତୀ ରାଜା' ବିଶ୍ୱ ଶାସନ କରିବା ଦରକାର ନାହିଁ କିନ୍ତୁ ବିଶ୍ୱ ତାଙ୍କୁ ଚକ୍ରବର୍ତ୍ତୀ ରାଜା ବୋଲି ସ୍ୱୀକାର କରିବା ଆବଶ୍ୟକ।

ସମୁଦ୍ରଗୁପ୍ତଙ୍କ ଶାସନ କାଳରେ କୌଣସି ଶିଳାଲେଖ ଇତ୍ୟାଦି ନାହିଁ। ତାଙ୍କ ପରେ ଆସିଲେ ରାମଗୁପ୍ତ। ସେ ମାଲୱାଠାରେ ପଶ୍ଚିମ ସମ୍ରାଟମାନଙ୍କୁ ମୂଳପୋଛ କରିବା ପାଇଁ ଇଚ୍ଛା ପ୍ରକାଶ କଲେ। ସର୍ତ୍ତ ରହିଲା ହାରିଗଲେ ରାମଗୁପ୍ତ ରାଜ୍ୟଛାଡ଼ି ପଳାୟନ କରିବେ। କିନ୍ତୁ ତା ପୂର୍ବରୁ ତାଙ୍କ ସୁନ୍ଦରୀ ସ୍ତ୍ରୀ ଧ୍ରୁବଦେବୀଙ୍କୁ ସତ୍ରାପଙ୍କୁ ହସ୍ତାନ୍ତର କରିବେ। ରାମଗୁପ୍ତ ସର୍ତ୍ତରେ ରାଜିହେଲେ। ହାରିଲେ ସମ୍ରାଟ। ସୁନ୍ଦରୀ ନାରୀଙ୍କ ପାଇଁ ଯୁଦ୍ଧ। ପ୍ରେମଭିସାର ପାଇଁ ଯୋଜନା– ସବୁ ତ ରାଜ ଇତିହାସ ସହିତ ଜଡ଼ିତ। କିନ୍ତୁ ରାମଗୁପ୍ତଙ୍କର ଜଣେ ଭାଇ ଧ୍ରୁବଦେବୀଙ୍କ ପରି ନାରୀବେଶ ହୋଇ ଶତ୍ରୁପକ୍ଷ ଛାଉଣୀରେ ପ୍ରବେଶ କଲେ। ସାତ୍ରାପଙ୍କୁ ହତ୍ୟା କଲେ। ରାମଗୁପ୍ତ ଏ ପ୍ରତାରଣାରେ ରାଜି ନଥିଲେ ସତ କିନ୍ତୁ ଅନ୍ୟ ଉପାୟ ନଥିଲା। ପରେ କିନ୍ତୁ ସର୍ତ୍ତ ଅନୁଯାୟୀ ସାନଭାଇ ରାଜା ହେଲେ ଆଉ ସେ ଧ୍ରୁବଦେବୀଙ୍କୁ ସ୍ତ୍ରୀ ଭାବେ ଗ୍ରହଣ କଲେ। ଯେ ଥିଲେ ଚନ୍ଦ୍ରଗୁପ୍ତ–୨ୟ।

ସାକା ସାତ୍ରାପଙ୍କ ସହିତ ଅନେକଦିନ ଧରି ଯୁଦ୍ଧରେ ମାତିରହିଲେ। ଶେଷରେ ୪୦୯ରେ ଚନ୍ଦ୍ରଗୁପ୍ତ–୨ୟ ନିଜ ନାଁରେ ରୁପା ମୁଦ୍ରା ସାତ୍ରାପଙ୍କ ବଦଳରେ ମୁଦ୍ରିତ

କଲେ । ସାକା ରାଜ୍ୟ ଗୁପ୍ତ-ସାମ୍ରାଜ୍ୟ ସହିତ ମିଶିଗଲା । ସାତ୍ରାପଙ୍କ ଉପରେ ବିଜୟ ଗୁପ୍ତ ସାମ୍ରାଜ୍ୟକୁ ଗୁଜୁରାଟର ବନ୍ଦରମାନଙ୍କରେ ପ୍ରବେଶ ପାଇଁ ସୁଯୋଗ ଦେଇଥିଲା ଓ ଆନ୍ତର୍ଦେଶିୟ ନୌବାଣିଜ୍ୟ ବ୍ୟବସାୟରେ ସାହାଯ୍ୟ କରିଥିଲା । କିନ୍ତୁ ସେ ଆଧିପତ୍ୟ ଅନେକ ଦିନ ପର୍ଯ୍ୟନ୍ତ ରହିଲା ନାହିଁ । ସାତ୍ରାପଙ୍କ ପରେ ଭକାଟାକା– ସାତବାହନଙ୍କ ନେତୃତ୍ୱରେ ଦାକ୍ଷିଣାତ୍ୟରେ ତାଙ୍କ ଅଧିକୃତ ସାମ୍ରାଜ୍ୟକୁ ଆକ୍ରମଣ କରି ବାଧା ଦେଲେ ଚନ୍ଦ୍ରଗୁପ୍ତ-୨ୟଙ୍କୁ ।

ଚନ୍ଦ୍ରଗୁପ୍ତଙ୍କ କନ୍ୟା ଭକାଟାକାରାଜା ରୁଦ୍ରସେନା-୨ୟଙ୍କୁ ବିବାହ କରିଥିଲେ । ରୁଦ୍ରସେନାଙ୍କ ମୃତ୍ୟୁପରେ ପ୍ରଭାବତୀ (ଚନ୍ଦ୍ରଗୁପ୍ତ ୨ୟଙ୍କ କନ୍ୟା) ଭକାଟାକା ରାଜ୍ୟ ସମ୍ଭାଳିଲେ ଗୁପ୍ତ ସାମ୍ରାଜ୍ୟର ନିୟମ ଅନୁସାରେ । ପରେ ଗୁପ୍ତ ସାମ୍ରାଜ୍ୟରେ ଏହା ମିଶିଗଲା । ଚନ୍ଦ୍ରଗୁପ୍ତଙ୍କ କନ୍ୟା ପ୍ରଭାବତୀ । କିନ୍ତୁ ଧ୍ରୁବଦେବୀଙ୍କ କନ୍ୟା ନୁହନ୍ତି । ନାଗା ସାମ୍ରାଜ୍ୟର କନ୍ୟା ତାଙ୍କ ମାତା । ସମୁଦ୍ରଗୁପ୍ତ, ଚନ୍ଦ୍ରଗୁପ୍ତ ୨ୟ ଓ କୁମାର ଗୁପ୍ତ ତିନି ବଂଶଧର ୪୦ ବର୍ଷ ଧରି ଗୁପ୍ତ ସାମ୍ରାଜ୍ୟ ଚଳାଇଲେ । ଦିଲ୍ଲୀ ପାଖ ମେହେରୋଲ୍ଲୀ ଗାଁରୁ ଗୋଟେ ଛୋଟ ଅନୁଶୀଳନରୁ ଜଣାପଡ଼େ କି ସେମାନେ ଏକ କଳଙ୍କିହୀନ ଲୁହାର ଖୁଣ୍ଟ ବସାଇଥିଲେ । ବର୍ତ୍ତମାନ ସୁଦ୍ଧା ଏହା ସେଠାରେ ମସଜିଦର ଅଗଣାରେ ବିଦ୍ୟମାନ । କୁହାଯାଉଛି ଏ ଖୁମ୍ବକୁ ଯେ ଦୁଇହାତ ବଢ଼ାଇ ଛାତିରେ ଲଗାଇ କୁଣ୍ଢାଇ ପାରିବ ତାର ସବୁ ଆଶା ପୂରଣ ହେବ । ଲେଖାଅଛି– 'ସ୍ୱର୍ଗୀୟ ବିଷ୍ଣୁଙ୍କ ମହତ ନାମ' ଗଠନ କରିଥିବା ଲୋକର ନାମ 'ଚନ୍ଦ୍ର'– ଜଗତ ବିଖ୍ୟାତ ବିଜୟୀ, ଯାହାଙ୍କ ବାହୁରେ ଖଣ୍ଡାଧାରର ଯଶ, ଯେତେବେଳେ ସେ ଭାଙ୍ଗା ଦେଶ ଜୟ କରିଥିଲେ, ସାତମୁହାଁଣିଆ ସିନ୍ଧୁ ନଦୀ ପାର ହୋଇ ଭାଲିଲିକାଙ୍କୁ ହରାଇଥିଲେ । 'ଚନ୍ଦ୍ର'ଙ୍କ ପଛରେ କିଛି ପଦବୀ ଓ ସମୟ ଲେଖାନାହିଁ । ବର୍ତ୍ତମାନ ଏହା ଏକ ପ୍ରହେଳିକା ହୋଇରହିଛି ।

କୁମାର ଗୁପ୍ତ ୪୧୫ ଖ୍ରୀ.ଅ.ରୁ ୪୫୫ ଖ୍ରୀ.ଅ. ପର୍ଯ୍ୟନ୍ତ ରାଜୁତି କରିଥିଲେ । ସେତିକିବେଳେ ମାଲୱାରେ ପୁଷ୍ପମିତ୍ରଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ ହେଲା । ଭାରତକୁ 'ହୁନାଜ'– ମ୍ଲେଚ୍ଛମାନେ ଆସିଲେ । ଏମାନେ ଚାଇନାର ହିୟୁଙ୍ଗ-ନୁ ଓ ଇଉରୋପର ହୁନସ ବୋଲି ଜଣାଯାଏ । ଏମାନେ ବାକଟ୍ରିୟାରେ ଚତୁର୍ଥ ଶତାବ୍ଦୀର ଶେଷଭାଗକୁ ବସବାସ କରୁଥିଲେ । ପଞ୍ଚମ ଶତାବ୍ଦୀର ମଧ୍ୟଭାଗରେ ହିନ୍ଦୁକୁଶ ପାର ହୋଇ ଗାନ୍ଧାର ଗଲେ । ପରେ ପୂର୍ବଦିଗକୁ ଗତିକରି ଗୁପ୍ତ ସାମ୍ରାଜ୍ୟ ବିରୁଦ୍ଧରେ

ଲଢ଼ିଲେ। କୁମାରଗୁପ୍ତ ଓ ସ୍କନ୍ଦଗୁପ୍ତଙ୍କ ବିଷୟରେ ଲେଖାଅଛି 'ବ୍ୟାପ୍ତ ଜଳପଦ୍ମ ଉପରେ ସେ ଏକ କ୍ଷୁଦ୍ର ମହୁମାଛି ପରି ତାଙ୍କ ବାପାଙ୍କ ତଳେ' ଥିଲେ। କିନ୍ତୁ ଏ ମହୁମାଛିର ଶୁଣ୍ଢ ଥିଲା। ପୁଷ୍ପମିତ୍ରଙ୍କ ବିରୁଦ୍ଧରେ ଲଢ଼େଇରେ ଭାଗନେଇ ସେ ସେମାନଙ୍କୁ ହରେଇଲେ। ପରେ ସେ ପିତାଙ୍କ ଉତ୍ତରାଧିକାରୀ ହେଲେ। ଚାରି ସମୁଦ୍ରର ଉପକୂଳବର୍ତ୍ତୀ ପ୍ରଦେଶର ଅଧିକାରୀ ଥାଇଁ ଶେଷରେ ସୌରାଷ୍ଟ୍ର ପେନିନସୁଲାର ଜୁନାଗଡ଼ ବାହାର ପାହାଡ଼ିଆ ଅଞ୍ଚଳ ଅଧିକାର କଲେ। ଅଶୋକ ଓ ରୁଦ୍ରଦମନଙ୍କ ଅନୁଶୀଳନ ସହିତ ତୃତୀୟ ଅନୁଶୀଳନ ଲେଖାହେଲା। ଗୁଜରାଟର ଗଭର୍ଣ୍ଣର ସ୍କନ୍ଦ ଗୁପ୍ତ ଓ ତାଙ୍କ ପୁଅ ଅତୁଳନୀୟ ସଦଗୁଣର ଅଧିକାରୀ, ରୁଦ୍ରଦମନଙ୍କ ଜଳାଶୟର ଚାରିପଟେ ପଥରବନ୍ଧ ବସାଇ ବନ୍ୟା ଦାଉରୁ ରକ୍ଷା କଲେ ଓ ମନ୍ଦିରଟିଏ ମଧ୍ୟ ପ୍ରତିଷ୍ଠା କଲେ। ସ୍କନ୍ଦ ଗୁପ୍ତଙ୍କର ମୃତ୍ୟୁ ୪୬୭ରେ ହେଲା। ତାଙ୍କ ବଂଶର ଅନେକ ରାଜା ୫୧୦ ପର୍ଯ୍ୟନ୍ତ ରାଜୁତି କରିଥିଲେ। ପରେ ପରେ ସେମାନଙ୍କର ପତନ ହେଲା। ସେମାନଙ୍କର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ନାଁ ଇତିହାସ ବକ୍ଷରୁ ଲୋପ ପାଇଗଲା ଯେପରି କି ତାଙ୍କ ଗୁପ୍ତସାମ୍ରାଜ୍ୟର ସୁବର୍ଣ୍ଣ ମୁଦ୍ରାକୁ ଭାଙ୍ଗି ସମୁଦ୍ରଗୁପ୍ତ ତାଙ୍କୁ ଭିନ୍ନ ରୂପ ଦେଇଥିଲେ, ସେ ମଧ୍ୟ ସମୟର ଅକାଳ ଗର୍ଭରେ ଲୁପ୍ତ ହୋଇଗଲା।

## ଗୁପ୍ତ କଳ୍ପିତ ସ୍ୱର୍ଣ୍ଣଯୁଗ–

'ଉତ୍କର୍ଷତା ମିଳି ସାରିଛି, ତିନି ଅନୁଶୀଳନ ମଧ୍ୟରୁ ଶେଷ ଅନୁଶୀଳନରେ ଲେଖାଯାଇଛି'। ସ୍କନ୍ଦ ଗୁପ୍ତ ଶାସନ କରିବା ସମୟରେ ତାଙ୍କର କୌଣସି ପ୍ରଜା ଧର୍ମ ବାହାର କାର୍ଯ୍ୟ କରିପାରିବେ ନାହିଁ। କେହି ଦୁଃଖ, ଦାରିଦ୍ର୍ୟ, ଦୁର୍ଦ୍ଦଶା, ଦୁର୍ଗତି ବା ଅର୍ଥଲିପ୍ସୁ ନଥିଲେ। ଦଣ୍ଡ ବିଧାନପାଇଁ ଅତ୍ୟଧିକ ଯନ୍ତ୍ରଣା ଦିଆଯାଉ ନଥିଲା। ଏପରି ଉଜ୍ଜ୍ୱଳ ଗୁପ୍ତସାମ୍ରାଜ୍ୟର ଏପରି ଉଜ୍ଜ୍ୱଳ ଚିତ୍ର କେବଳ ରାଜକୀୟ ସ୍ତୁତିଗାନରେ ସମ୍ଭବ।' ସେ ସମୟର ଲୋକଙ୍କର ଏହା ଏକ ଚାକ୍ଷୁସ ପ୍ରମାଣ–

''ଲୋକମାନେ ବେଶ୍ ଭଲରେ ଚଳୁଥିଲେ। କୌଣସି କର ଇତ୍ୟାଦି ଦେବାକୁ ପଡୁନଥିଲା ବା କୌଣସି ପ୍ରତିବନ୍ଧକ ନଥିଲା। ରାଜା ଶାରୀରିକ ଦଣ୍ଡ ଦେଉ ନଥିଲେ। ଅପରାଧିର ଅବସ୍ଥାକୁ ଅନୁଧ୍ୟାନ କରି ଦଣ୍ଡବିଧାନ କରାଯାଉଥିଲା। କ୍ରମାଗତ ବିଦ୍ରୋହୀମାନଙ୍କର କେବଳ ଡାହାଣ ହାତ କାଟି ଦିଆଯାଉଥିଲା। ସାରା ରାଜ୍ୟରେକେହି ଜୀବନ୍ତ ପ୍ରାଣୀଙ୍କୁ ହତ୍ୟା କରୁ ନଥିଲେ। ମଦ୍ୟପାନ, ପିଆଜ ଓ

ରୁପଣ ବ୍ୟବହାର କେବଳ ବଣ୍ଡାଳମାନଙ୍କ ବ୍ୟତିତ କେହି ବ୍ୟବହାର କରିପାରିବେ ନାହିଁ ବୋଲି ରାଜାଦେଶ ଥିଲା।''

ଫାଇୟାନ, ବୁଦ୍ଧଧର୍ମରେ ଦିକ୍ଷିତ ଜଣେ ଯାତ୍ରୀ, ୪୦୦-୪୧୦ଖ୍ରୀ.ଅ. ମଧ୍ୟରେ ଚନ୍ଦ୍ରଗୁପ୍ତ-୨ୟଙ୍କ ରାଜ୍ୟକାଳ ଭିତରେ ଭାରତ ଆସିଥିଲେ। ତାଙ୍କ ଆସିବାଟାହିଁ ସ୍ୱର୍ଣ୍ଣଯୁଗର ପରିଚୟ ଦିଏ। କୋରାକୋରମ ଦେଇ ଗଙ୍ଗାଧାଟିରେ ବୁଦ୍ଧଧର୍ମ ପ୍ରଚାର ହୋଇଥିବା ସବୁ ସ୍ଥାନ ବୁଲି ସେ ଦେଖିଥିଲେ। କେବଳ ବଣ୍ଡାଳମାନଙ୍କ ବ୍ୟତିତ (ମୁର୍ଦ୍ଦାର ଉଠାଇବା ଲୋକ) ରାସ୍ତାରେ ଯିବା ଆସିବା କରିବାପାଇଁ କୌଣସି ପ୍ରତିବନ୍ଧକ ନଥିଲା। ଶାନ୍ତି ଶୃଙ୍ଖଳା ସହ ରାଜ୍ୟଶାସନ। ଅରାଜକତା ଦେଖା ନଥିଲା। କାହାରି କିଛି ଅଭିଯୋଗର ସୁଯୋଗ ବି ନଥିଲା।

ସମାଜରେ ଶିଳ୍ପର ଉନ୍ନତି ହେଉଥିଲା। ଦେଶରେ ଶାନ୍ତି ପ୍ରତିଷ୍ଠା ହୋଇଥିଲା। ଲକ୍ଷ ଦ୍ରବ୍ୟର ମାନ, ଦରଦାମ, ବଣ୍ଟନ, ପ୍ରତ୍ୟେକ ଶିଳ୍ପପାଇଁ ଟ୍ରେନିଂ, ଦବ୍ର୍ୟର ଚାହିଦା ସବୁ ଅତି ସୁଚାରୁ ରୂପେ ଚାଲିଥିଲା। ରାଜ ଦରବାରରେ ମଧ୍ୟ ଏହି ବ୍ୟବସାୟୀମାନେ ଅନେକ ସମୟରେ ଅର୍ଥପାଇଁ ବ୍ୟାଙ୍କ ଭଳି କାମ କରୁଥିଲେ। 'ଚ୍ୟାମ୍ବର ଅଫ କମର୍ସ' ଭଳି ସଂସ୍ଥା, ଏକ ସଂଗଠନ ଥିଲା। ଆଉ ସେମାନଙ୍କ ସଭା ମଧ୍ୟ କ୍ରମାଗତ ଭାବରେ ହେଉଥିଲା। ଭାରତ ଓ ଭାରତ ବାହାରେ ମଧ୍ୟ ବ୍ୟବସାୟ ଖୁବ୍ ସୁନ୍ଦର ଚାଲିଥିଲା। ଫାଇୟାନ ଯେତେବେଳେ ଚାଇନା ଫେରିଗଲେ ସେ ସ୍ଥଳପଥରେ ନଯାଇଁ ବଙ୍ଗଳାର ତାମ୍ରଲିପି ବନ୍ଦରରୁ ଯାଉଥିବା ଭାରତୀୟ ଜାହାଜରେ ଯାତ୍ରା କରିଥିଲେ। ବାଟରେ ଜାହାଜ ଦୁର୍ଘଟଣାଗ୍ରସ୍ତ ହୋଇ ବର୍ମାର ଏକ ବନ୍ଦରରେ ପହଞ୍ଚିଲେ। ଏହା ଜାଭା, ସୁମାତ୍ରା ବା ମାଲୟା ହୋଇପାରିଥାଏ। ସେଠାରେ ମଧ୍ୟ ବ୍ରାହ୍ମଣମାନଙ୍କର ପ୍ରତିପତ୍ତି ବଜାୟ ରହିଥିଲା, ଯଦିଓ ବୁଦ୍ଧଙ୍କ ବିଷୟରେ କେହି ବିଶେଷ ଜାଣି ନଥିଲେ। ଆଉ କେତେକ ଛୋଟ ବଡ଼ ଦୁର୍ଘଟଣା ପରେ ସେ ଚାଇନାରେ ପହଞ୍ଚିଲେ।

ଫାଇୟାନଙ୍କ ବର୍ଣ୍ଣନା ଅନୁଯାୟୀ ମଗଧର ଶାନ୍ତି ଅତି ପରିମାଣରେ ହୃଦୟସ୍ପର୍ଶୀ। ବଡ଼ ସହର, ଲୋକମାନେ ଧନୀ, ସୌଭାଗ୍ୟବନ୍ତ ଓ ନ୍ୟାୟ ପରାୟଣ। ଏହା ସତ ଯେ ଶାକ୍ୟଙ୍କର କପିଳବସ୍ତୁରେ ଅନେକ ବୁଦ୍ଧଭକ୍ତ ପ୍ରତ୍ନତତ୍ତ୍ୱବିତ୍‌ମାନେ କାର୍ଯ୍ୟରତ ଥିଲେ। ଏହା ଥିଲା ଏକ ମରୁଭୂମୀ ପରି ବସତିବିହୀନ, ରାଜ୍ୟବିହିନ।

ଅଶୋକଙ୍କର ପ୍ରାସାଦର (ପାଟଲୀପୁତ୍ରରେ) କେବଳ ଧ୍ୱଂସାବଶେଷ ଥିଲା। କିନ୍ତୁ ବୁଦ୍ଧଙ୍କ ଗବେଷଣା ପାଇଁ ଅନେକ କିଛି ଥିଲା। ହଜାର ହଜାର ସ୍ତୁପ-ଛୋଟ ଆଉ ବଡ଼, ଖେଳେଇ ହୋଇ ରହିଥିଲା। ଭାରତ ବାହାରେ ବର୍ମା ଇତ୍ୟାଦିରେ ବର୍ତ୍ତମାନ ଯେପରି ଅଛି। ସେତେବେଳେ ଭାରତୀୟ ଜନତାର ବିଶ୍ୱାସ ବୁଦ୍ଧଧର୍ମ ଉପରେ ଅନେକ ବେଶି ଥିଲା। ବୁଦ୍ଧ ସନ୍ୟାସୀଙ୍କ ଆଶ୍ରମ ଓ ତାଙ୍କ ପ୍ରଚାରକମାନଙ୍କ ସଂଖ୍ୟା ହଜାର ହଜାର ଥିଲା। ଆଠ ଶତାବ୍ଦୀବେଳକୁ କେବଳ ଶ୍ରୀଲଙ୍କାରେ ଏମାନଙ୍କ ସଂଖ୍ୟା ଅଧିକ ଥିଲା। ସମୁଦ୍ରଗୁପ୍ତ ହିଁ ଶ୍ରୀଲଙ୍କାର ରାଜାଙ୍କଠାରୁ ଉପହାର ପାଉଥିଲେ। ସେ ଉପହାର ସହିତ ଅନୁରୋଧ ଥିଲା କି ବୁଦ୍ଧଗୟାରେ (ବୁଦ୍ଧଙ୍କର ଜ୍ଞାନପ୍ରାପ୍ତିର ସ୍ଥଳ) ଏକ ବୁଦ୍ଧଙ୍କ ଆଶ୍ରମ ତିଆରି କରାଇବେ। ପାଟଲୀପୁତ୍ରରେ ବର୍ଷକୁ ଥରେ ଗୋଟାଏ ମେଳା ହୁଏ। କୋଡ଼ିଏଟି ଚକ ବିଶିଷ୍ଟ ରଥରେ ଠାକୁର ମୂର୍ତ୍ତି ସବୁ ବସି, ସୁନା ଓ ରୂପାରେ ସଜାହୋଇ, ବୁଦ୍ଧଙ୍କର ବସିବା ମୂର୍ତ୍ତି ସହ ସହର ପରିକ୍ରମା କରେ। ରଥସବୁ ସହରରେ ପ୍ରବେଶ କରିବାମାତ୍ରେ ବ୍ରହ୍ମଚାରୀମାନେ ସେମାନଙ୍କୁ ନିୟନ୍ତ୍ରଣ କରିବାକୁ ଆଗେଇ ଆସନ୍ତି। ପରେ ରଥଗୁଡ଼ିକ ସହର ଭିତରେ ପ୍ରବେଶ କରନ୍ତି। ବୁଦ୍ଧ ଓ ବ୍ରାହ୍ମଣ, ଦୁଇ ସଂପ୍ରଦାୟକୁ ଅଭ୍ୟର୍ଥନା ଦିଆଯାଏ। ବ୍ରାହ୍ମଣମାନଙ୍କର ସୁରକ୍ଷା ଓ ସାହାଯ୍ୟ ବଜାୟ ରହୁଥିଲା। ନୀତିନିୟମ ଓ ଉତ୍ସବ ପାରମ୍ପରିକ ନିୟମ ଅନୁଯାୟୀ କରାହେଉଥିଲା।

ଧର୍ମ– (ବିଶ୍ୱାସ ଭକ୍ତି, କର୍ତ୍ତବ୍ୟ, ନୀତି ଓ ନିୟମ)

ଅର୍ଥ– (ସଂପତ୍ତି, ରାଜନୀତି, ଉଦ୍ଦେଶ୍ୟ)

ଦଣ୍ଡ– (କ୍ଷମତା, ସରକାର, ବଳପ୍ରୟୋଗ ପୂର୍ବକ ଶାସନ)

ଏ ସବୁ ଶବ୍ଦର ଅର୍ଥ, ଏହାର ବ୍ୟବହାର ବ୍ରାହ୍ମଣତ୍ୱର ମୂଳଭିତ୍ତି ବୋଲି ଅନୁମାନ କରାଯାଉଥିଲା।

## ଗୁପ୍ତ ସାମ୍ରାଜ୍ୟର ସ୍ୱପ୍ନ ଓ ସିଦ୍ଧାନ୍ତ–

ଆଖିରେ ଝଟସିଲା ଏକ ସୁନ୍ଦର ରୂପ– ଉଜ୍ଜ୍ୱଳ ମୁଖ– କି ସୁନ୍ଦର ଆଖି– ନିଶ୍ଚୟ ଏଥିରେ ଏକ ଗପ ନିହିତ ଅଛି। କିନ୍ତୁ ତମେ ଆଶାକରୁଛ ଏ ଗପର ଅବତାରଣା ମୁଁ କରିପାରିବି ? ଯେତେ କମ ସିଦ୍ଧାନ୍ତ ତମେ ନେଇପାରିବ, ସେତେ କମ୍ ଭୁଲ ତମେ କରିପାରିବ। ହେଲେ ବି ସିଦ୍ଧାନ୍ତ ନେବା ଉଚିତ। ଆମେ ଜାଗ୍ରତ

ରହି କିଛି ନ କରିପାରିବା ମଧ ଠିକ୍ ନୁହେଁ। ବିଶ୍ୱ-ପ୍ରସିଦ୍ଧ ଅଜନ୍ତା ଗୁମ୍ଫାରୁ ଦୁଇଜଣ ଇଂରେଜ ଭଦ୍ରଲୋକ (କାପ୍ଟେନ ଗ୍ରେସ୍‌ଲେ ଓ ମିଷ୍ଟର ରାଲଫ) ୧୮୩୬ ମସିହାବେଳକୁ ଏହାର ନକ୍ସା ଅଙ୍କନକାରୀର ଦକ୍ଷତା ଓ ଏହାର ବର୍ଣ୍ଣନା, ଗଠନ ଶୈଳୀର ସଜୀବତା ଓ ଗୁଢ଼ ତତ୍ତ୍ୱର ପ୍ରକାଶ, ନିପୁଣତାର ସହ ରଙ୍ଗଫଳକର ବ୍ୟବହାର ବିଭିନ୍ନ ଚିତ୍ରରେ– ସାମରିକ ଶୈଳୀ, ଭକ୍ତି ପୂର୍ଣ୍ଣତା, ପବିତ୍ର କାମନାର ଉତ୍କର୍ଷତାର ପ୍ରକାଶ କରିବାର ଦକ୍ଷତାର ପରିଚୟ ପାଇଲେ। ତାହା ସେ ସମୟର ନିପୁଣ କାରିଗରୀ ପ୍ରତିପାଦନ କରେ। ଅଜନ୍ତା କାରୁକାର୍ଯ୍ୟର ଗୁପ୍ତ ସାମ୍ରାଜ୍ୟ ସହିତ କିଛି ସଂପର୍କ ନାହିଁ। ମଥୁରା ଓ ସାରନାଥର କାରୁକାର୍ଯ୍ୟ ଭାରତୀୟ ପ୍ରତିମା ନିର୍ମାଣ ପାଇଁ ଅଦ୍ୱିତୀୟ। ଅଜନ୍ତାର ପ୍ରସ୍ତର ଖୋଦିତ ଭିତ୍ତି ଚିତ୍ର ଭାରତୀୟ ଚିତ୍ରଣ ପାଇଁ ପ୍ରସିଦ୍ଧ। କାଳିଦାସଙ୍କ ସଂସ୍କୃତ ଭାଷା ସମସ୍ତଙ୍କ ପାଇଁ ଶିକ୍ଷଣୀୟ। କାଳିଦାସ ଗୁପ୍ତ ଯୁଗର ଲେଖକ। ଅନ୍ୟାନ୍ୟ ଅନେକଙ୍କ ମଧ୍ୟରେ ଶୁଦ୍ରାକଙ୍କ ପୁସ୍ତକ 'ଛୋଟ ମାଟିର ଗାଡ଼ି "Little Clay Cart" ମଧ ଜନାଦୃତ। ଅନ୍ୟମାନେ ମଧ ଅନେକ କାବ୍ୟ ଲେଖିଯାଇଛନ୍ତି। ସମୁଦ୍ର ଗୁପ୍ତଙ୍କର ଆଲ୍ଲାହାବାଦ ଅନୁଶୀଳନରୁ ଜଣାଯାଏ କି ତାଙ୍କର ଜଣେ ମନ୍ତ୍ରୀ, ନାମ ହରିସେନାଙ୍କ ନାଟକ, ଜଗତର ଏକ ଅନବଦ୍ୟ ସୃଷ୍ଟି। ସମ୍ରାଟ ନିଜେ ମଧ ତାଙ୍କ ଲେଖାର ପଦ୍ଧତି ଓ ଶୈଳୀ ପାଇଁ ପ୍ରସିଦ୍ଧ। 'ଶକୁନ୍ତଳା' ଓ 'ମେଘଦୂତ' କାବ୍ୟ ସେ ସମୟରେ କାଳିଦାସଙ୍କୁ ବିଶ୍ୱପ୍ରସିଦ୍ଧ କରାଇଥିଲା। 'କୁମାର-ସମ୍ଭବ'– ହର ପାର୍ବତୀଙ୍କ ଉପରେ ଆଧାରିତ କବିତା ଓ ଖଜୁରାହୋର ଶିଳ୍ପ ନିପୁଣତା ତାଙ୍କ ସମୟର ଏକ ପରିଚୟ। ସେ ବିଶ୍ୱବିଖ୍ୟାତ। ଏହାର ଗୁପ୍ତ ସାମ୍ରାଜ୍ୟ ସହିତ ସଂପର୍କ ଥିଲା କି ନାହିଁ ଜଣାନାହିଁ। ନର୍ମଦା କୂଳବର୍ତ୍ତୀ ଅଞ୍ଚଳର ବର୍ଣ୍ଣନାରୁ ଅନୁମାନ କରାଯାଏ କି ମାଲୱା ବା ମଗଧର ବୋଲି। ବିକ୍ରମାଦିତ୍ୟଙ୍କ ଦରବାରରେ 'ଲୋକକଥା'ରୁ କେହି କେହି ଭାବନ୍ତି କି ସମୁଦ୍ରଗୁପ୍ତ ମଧ ଅନେକବାର ବିକ୍ରମାଦିତ୍ୟଙ୍କ ବିଶେଷ ଉପାଧି ବ୍ୟବହାର କରିପାରିଥାନ୍ତି। 'ରଘୁବଂଶ' କାବ୍ୟରେ କାଳିଦାସ ଅଯୋଧାର 'ରାମ'ଙ୍କ ଜେଜେବାପା ରଘୁ ବୋଲି କହିଛନ୍ତି। ତାଙ୍କ କାବ୍ୟରେ ମଧ ବର୍ଣ୍ଣନା ଅଛି ରାଜା ରଘୁଙ୍କର ପ୍ରସିଦ୍ଧି ଓ ତାଙ୍କ ରାଜ୍ୟ ଉତ୍ତର, ପୂର୍ବ, ଦକ୍ଷିଣ, ପଶ୍ଚିମ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା। ସଂସ୍କୃତ ଭାଷା, କାବ୍ୟ, ନାଟକ ଇତ୍ୟାଦିର ଅଭିବୃଦ୍ଧି, ଅମରକୋଷ ଅଭିଧାନ, ପାଣିନୀ ବ୍ୟାକରଣର ପୁନରୁଦ୍ଧାର କେବଳ ଗୁପ୍ତ ସାମ୍ରାଜ୍ୟରେ ହିଁ ଉଚ୍ଚସ୍ତରକୁ ଆସିପାରିଥିଲା। ବିଜ୍ଞାନ, ଗ୍ରହ ଉପଗ୍ରହମାନଙ୍କ ଚଳନ, ପୃଥିବୀରେ

ପ୍ରସିଦ୍ଧି ଲାଭ କରିଥିଲା– ଯେଉଁ ତଥ୍ୟ କି ଗ୍ରୀକମାନେ ବି ପାଇପାରି ନଥିଲେ। 'ଶୂନ୍ୟ'ର ମୂଲ୍ୟ ମଧ ଏଇ ସମୟରେ ମୁଣ୍ଡ ଟେକି ଉଠିଥିଲା। ଲୁହା ଖୁନ୍ଦ ତିଆରି କରିବା ଲୋକଙ୍କର ମଧ ଧାତୁ-ବିଦ୍ୟା ଉପରେ ଜ୍ଞାନର ପରିସର ଅଧିକ ଥିଲା। ତେବେ ବି ଜନସାଧାରଣଙ୍କର ସଂସ୍କୃତ ଭାଷା ବା ତାର ଆଭିଧାନିକ ଅର୍ଥ ହୃଦୟଙ୍ଗମ ହୋଇପାରି ନଥିଲା।

ଭାରତର ମଧ୍ୟଯୁଗୀୟ ଇତିହାସରେ କେତେକ ଶବ୍ଦ ଥିଲା– ପ୍ରଦେଶଗଠନ ଓ ବିଭାଜନ। କିନ୍ତୁ ସାକ୍ଷୀ ପ୍ରମାଣ ଉପରେ ଆଧାରିତ ଆଲୋଚନା ଯେ କେତେଦୂର ଫଳପ୍ରଦ ତାହା ଜାଣିବା ମୁଷ୍କିଲ ଥିଲା। ଭାରତୀୟ ଇତିହାସ କେତେକ ବିଷୟ ଉପରେ ନିର୍ଭର କରିଥିଲା– ଯଥା ଇଉରୋପୀୟ ଓ ଚାଇନାର ପରିବ୍ରାଜକ, ମୁଦ୍ରା, ପ୍ରସ୍ତର ଖୋଦିତ ଅନୀଶୀଳନ, ଲୋକକଥା, ଧର୍ମ ପୁସ୍ତକ, ପ୍ରଚଳିତ ପରମ୍ପରାର ଧାରା। ବର୍ତ୍ତମାନ ତା' ସାଙ୍ଗକୁ ଯୋଗ କରାହେଉଛି କେତେକ ଦରକାରୀ କାଗଜପତ୍ରର ରେକର୍ଡ, ସନନ୍ଦ ଓ ଜୀବନୀ। ଅନେକ ରାଜବଂଶର ସନନ୍ଦରୁ ଅନେକ କିଛି ପ୍ରମାଣ ମିଳେ। ତାଳପତ୍ର ସନନ୍ଦ, ଗୁମ୍ଫା କାନ୍ଥ, ମନ୍ଦିର ଗାତ୍ର ଓ ଅନେକ ତମ୍ବାପତ୍ରରେ ଲେଖା ହୋଇ ସୁରକ୍ଷିତ ରଖାଯାଉଥିଲା। କେତେକ ଲେଖାର ପରିବର୍ତ୍ତନ ମଧ ତମ୍ବାପତ୍ରରେ କରାଯାଉଥିଲା। ସବୁ ପତ୍ର ଏକାଠି ଗୁନ୍ଥି ତମ୍ବା ତାରରେ ଗୁଡାଯାଇଥିଲା। ଖ୍ରୀଷ୍ଟିୟାନମାନଙ୍କ ସମୟରୁ ଏହି ପ୍ରଥା ଚଳି ଆସୁଥିଲା।

ଏପରି କେତେକ ସମୁଦ୍ରଗୁପ୍ତ ସମୟର ସନନ୍ଦ ମଧ ମିଳିଛି। ଭାଷା ପଲ୍ଲବ ବା ପ୍ରକୃତି। ସଂସ୍କୃତ ଭାଷାକୁ ପରେ ସେମାନେ ନିଜର କରିନେଲେ। ପଲବ ରାଜପରିବାର ମୂଳସ୍ଥିତି ପ୍ରାୟ ଜଣା ଥିଲା, ଏବେ ଜଣାଯାଉଛି କି ସେମାନେ ତୋଣ୍ଡାରମଣ୍ଡଳମ-ମାନ୍ଦ୍ରାଜର ପଶ୍ଚିମକୁ ଥିବା ଦେଶର ବୋଲି। କାଞ୍ଚିପୁରମରେ ସେମାନେ ଏକ ପ୍ରସିଦ୍ଧ ଧାର୍ମିକ ଓ ସାଂସ୍କୃତିକ କେନ୍ଦ୍ର ପ୍ରତିଷ୍ଠା କରିଥିବାର ପ୍ରମାଣ ମିଳେ।

ଉତ୍ତର ଭାରତରେ ଗୁପ୍ତ ସାମ୍ରାଜ୍ୟ ସମୟରେ ତମ୍ବା ଫଳକରୁ ଅନେକ ସୂଚନା ମିଳେ। ମୁସଲିମର କ୍ରମିକ-ଇତିବୃତ୍ତିରୁ ୧୮ଶହ ଶତାବ୍ଦୀ ପର୍ଯ୍ୟନ୍ତ ଅନେକ ଚାକ୍ଷୁସ ପ୍ରମାଣ ମିଳେ। ଇଉରୋପିଅମାନେ ଅନେକ ଚୁକ୍ତିନାମା ପାଇଁ ଏ ସବୁକୁ ବ୍ୟବହାର କରିଛନ୍ତି ଏପରିକି ଗବେଷଣା ପାଇଁ ଗବେଷକମାନେ ମଧ ଏପରି

ପ୍ରମାଣ ଯୋଗାଡ କରିଛନ୍ତି । ସନନ୍ଦ, ଆଇନଗତ ପ୍ରମାଣପତ୍ର, ପ୍ରାଦେଶିକ ଲିପିସବୁ ମଧ୍ୟ ସଂସ୍କୃତ ଭାଷାରେ ଲେଖାଯାଇଛି । କେବଳ ସନନ୍ଦ ଲେଖାରୁ ଜଣାଯାଏ କି ଦାନୀ ଓ ତାର ବଂଶଧରଙ୍କର ଅନେକ ପ୍ରଶଂସାପତ୍ର ମଧ୍ୟ ଅଛି ସେ ସବୁ ମଧ୍ୟ ଗ୍ରହଣଯୋଗ୍ୟ । ଏପରି ସନନ୍ଦରୁ ଅନେକ ଜାଣିବା ବିଷୟ ବି ମିଳେ । କିନ୍ତୁ ବେଳେବେଳେ ଅତ୍ୟଧିକ ଭାଷାର ପ୍ରୟୋଗ ଅନୁଶୀଳନର ପ୍ରକୃତ ଅର୍ଥ ବଦଳାଇ ଦେଇଥାଏ । ରୁଦ୍ରମାନଙ୍କ ପରେ ସୌରାଷ୍ଟ୍ରର ରାଜଧାନୀ ଜୁନାଗଡ଼ ୫୭୧ ଖ୍ରୀ.ଅ.ରେ ଉଲ୍ଲବୀଠାରେ ଏହିପରି ଦୁଇଟି ସନନ୍ଦର ଫଳକ ମିଳିଥିଲା ।

## ପ୍ରଫେଟ ମହମ୍ମଦଙ୍କ ଜନ୍ମ–

୫୭୧ ଖ୍ରୀ.ଅ.ରେ ଭାରତ ବାହାରେ କିଛି ଘଟଣା ଘଟିଥିଲା । କ୍ୱିରାସ ଜନଜାତିର ଜଣେ ଅନାମଧେୟ ବ୍ୟବସାୟୀର ସ୍ତ୍ରୀ ଆରବିୟାନ ସମୁଦ୍ର ମଝିରେ ପୁଅଟିଏ ଜନ୍ମ କଲେ । ଚାଳିଶ ବର୍ଷ ପରେ ତାଙ୍କରି ନାମ (ବିଶ୍ୱବିଖ୍ୟାତ) ମହମ୍ମଦ ନାମରେ ଖ୍ୟାତିଲାଭ କଲା । କିନ୍ତୁ ଭାରତରେ ଏହାର ପ୍ରଭାବ ପଡ଼ିଲା ପ୍ରାୟ ଶହେବର୍ଷ ପରେ । ସେତେବେଳକୁ ମୈତ୍ରୀକାକ ରାଜବଂଶ ବ୍ୟତିତ ଅନ୍ୟାନ୍ୟ ରାଜବଂଶ ସବୁ ଭାରତଭୂମିରେ ଲୋପ ପାଇସାରିଥିଲେ । ଗୁପ୍ତ ସାମ୍ରାଜ୍ୟ ବା ତା ପରବର୍ତ୍ତୀ ସାମ୍ରାଜ୍ୟର ବିବରଣୀ ଘଟଣାବିହୀନ । ସେତିକିବେଳେ ହୁନଙ୍କ ଅନୁପ୍ରବେଶ ଏକ ଉଲ୍ଲେଖନୀୟ ଘଟଣା । ୫୦୦ ଖ୍ରୀ.ଅ. ବେଳକୁ ଗାନ୍ଧାରରୁ ହୁନମାନେ ପଞ୍ଜାବ ଦେଇ ମାଲୱା ପର୍ଯ୍ୟନ୍ତ ଆସିଲେ । ତକ୍ଷଶୀଳା, ପେଶୱାର, ସ୍ୱାର୍ଟ ପ୍ରଭୃତି ଉତ୍ତର ପଶ୍ଚିମ ଦିଗରେ ଅନେକ ବୁଦ୍ଧଙ୍କର ପ୍ରତିମୂର୍ତ୍ତି ନଷ୍ଟ କରିଦେଇଥିବାର ଅନୁମାନ କରାଯାଏ ।

ଏହି ସମୟରେ ଜଣେ ଚାଇନାର ପରିବ୍ରାଜକ ହୁଏନ୍ସା ସପ୍ତମ ଶତାବ୍ଦୀର ମଧ୍ୟଭାଗରେ ବୁଦ୍ଧବିହାରମାନଙ୍କର ଧ୍ୱଂସର ଚିତ୍ର ତାଙ୍କ ପୁସ୍ତକରେ ଲେଖିଯାଇଛନ୍ତି । ଅନ୍ୟାନ୍ୟ ଅନେକ ଜାଗାରେ ମଧ୍ୟ ସମଦଶା । ମନେ ହେଉଥିଲା ବୁଦ୍ଧ-ବିଶ୍ୱାସ ଆଉ କେବେହେଁ ଏ ଧ୍ୱଂସ ସ୍ତୁପରୁ ମୁଣ୍ଡ ଟେକି ପାରିବ ନାହିଁ ଯେ ପର୍ଯ୍ୟନ୍ତ ଇସଲାମ, ଚାଇନା ଓ ପଶ୍ଚିମ ଦେଶ ସହିତ ବ୍ୟବସାୟ ବନ୍ଦ ନ ହୋଇଛି । ହୁଏନ୍ସାଙ୍କ ବ୍ୟବସାୟର ଚିତ୍ର କାବୁଲରେ ମଧ୍ୟ ଦେଖିବାକୁ ମିଳୁଥିଲା । ସ୍ଥଳପଥରେ ବ୍ୟବସାୟ ପ୍ରାୟ ବନ୍ଦ କରାଗଲା । କିନ୍ତୁ ଜଳପଥରେ ଘୋଡା ବ୍ୟବସାୟ ଏକ ନୌବାଣିଜ୍ୟରେ ପରିଣତ ହେଲା ଆଉ ତା' ମଧ୍ୟ ମୁସଲମାନମାନଙ୍କର ଏକଚାଟିଆ ବ୍ୟବସାୟ ଭାବରେ ।

ଏଇ ହୁନମାନଙ୍କ କବଳରୁ ଭାରତର ଅନ୍ୟାନ୍ୟ ଅଂଶ ବାଦ ପଡ଼ିଯାଇଥିଲା। କାରଣ ମାଲୱାରେ ଯଶୋଧର୍ମନ ନାମକ ଜଣେ ରାଜାଙ୍କ ପ୍ରଭାବରେ। ୫୩୦ ମସିହାରେ ଯଶୋଧର୍ମନ ହୁନମାନଙ୍କୁ ପରାସ୍ତ କରିଥିଲେ ବୋଲି ଦାବି କରନ୍ତି। ପରାଜିତ ହୁନମାନଙ୍କୁ କାଶ୍ମୀର ଆଡକୁ ସେ ପଠାଇଦେଲେ। ହୁନମାନଙ୍କୁ ଗୁପ୍ତସାମ୍ରାଜ୍ୟର ବାଲାଦିତ୍ୟ, ମୁକାରୀମାନେ ଓ ବର୍ଦ୍ଧମାନମାନେ ମଧ ପରାସ୍ତ କରିଛନ୍ତି ବୋଲି ଦାବି କରନ୍ତି। ଏହି ସମୟକୁ ହର୍ଷବର୍ଦ୍ଧନ–ବର୍ଦ୍ଧନ ରାଜ୍ୟ ବଂଶଜ ମଧ ଗୁପ୍ତମାନଙ୍କ ସହିତ ମିଳି ହୁନ୍‌ମାନଙ୍କୁ ପରାସ୍ତ କରିଦେଇଥିଲେ।

ବଦାନ୍ୟତା, ପଦାଧିକାର, ମନୁଷ୍ୟତା ଯେକୌଣସି ରାଜାର ଗୁଣ ବୋଲି ଧରାଯାଏ। ତମ୍ୱା ସଂଗ୍ରହ ମଧ ସେତେବେଳକାର ବଡ଼ କାମ। ରାଜାଙ୍କର ପ୍ରଧାନ କାମ ତାଙ୍କ ଅଧିନସ୍ଥମାନଙ୍କୁ ଜମି ବାଣ୍ଟିବା ଓ ତାରି ବଳରେ କ୍ଷମତାହାସଲ କରିବା। ୫୭୧ ଖ୍ରୀ.ଅ.ରେ ଉଲ୍ଲବୀ ରାଜବଂଶରେ ରୁଦ୍ରାଭୂତି ନାମରେ ଜଣେ ବ୍ରାହ୍ମଣ ଏ ପ୍ରକାର ଦୟା ପାଇସାରିଥିଲେ। ସେବକାର ବ୍ରାହ୍ମଣମାନଙ୍କୁ ଓ ଧର୍ମ ସଂସ୍ଥାମାନଙ୍କୁ ଏପରି ଉପହାର ପ୍ରଦାନ କରାଯାଉଥିଲା। କେତେକ ସ୍ଥଳରେ ଭୂମିଦାନ ସହିତ ଗୋ-ଦାନର ବ୍ୟବସ୍ଥା ମଧ ଥିଲା। ଜମିସବୁ ଗ୍ରହୀତାମାନଙ୍କ ନାଁରେ କରାଯାଇ ନଥିଲା। ଅନ୍ୟଦିଗରେ ଜମିର ଉତ୍ପାଦନ ମଧ ରାଜାଙ୍କ ଦ୍ୱାରା ଗ୍ରହଣ କରାଯାଉଥିଲା। ଅପରାଧୀମାନଙ୍କ ପାଖରୁ ଦଣ୍ଡ ଆକାରରେ ଜୋରିମାନା ମଧ ଆଦାୟ କରାଯାଉଥିଲା। ତମ୍ୱା-ବଣ୍ଟନ ମଧ ଦାନର ଏକ ଅଂଶ ବୋଲି ଗ୍ରହଣ କରାଯାଉଥିଲା। ସେଥିରୁ ସୃଷ୍ଟି ହେଲା ମହାସାମନ୍ତଙ୍କ ଗୋଷ୍ଠୀ।

'ମହାରାଜାଧିରାଜ' ଉପାଧି ଏହି 'ମହାସାମନ୍ତ' ଦଳର ଅଭିବୃଦ୍ଧି ଉପରେ ନିର୍ଭର କଲା।

**ହର୍ଷବର୍ଦ୍ଧନ–**

ଗୁପ୍ତ ସାମ୍ରାଜ୍ୟ ପରଠାରୁ 'ଆର୍ଯ୍ୟାବ୍ରତ' କୁହେଳିକାମୟ ଥିଲା। ଉତ୍ତର ଭାରତ ମୁସଲିମ ଆକ୍ରମଣ ସାମନା କରୁଥିଲା। ସମୟ ସପ୍ତମ ଶତାବ୍ଦୀର ଆଦ୍ୟ ଭାଗ। ହର୍ଷବର୍ଦ୍ଧନଙ୍କ ସମୟରେ ଥାନେଶ୍ୱରରେ (ପରେ କନୌଜ ହେଲା) କିଛି ଶାସନ ବଂଚି ରହିଥିଲା। ତାମ୍ରଫଳକର ଲେଖାରୁ ଜଣାଯାଏ ହର୍ଷବର୍ଦ୍ଧନ

ଏହି ରାଜବଂଶର ଚତୁର୍ଥ ବଂଶଧର। ତାଙ୍କ ବାପା 'ମହାରାଜାଧିରାଜ' ଉପାଧି ପାଇଥିଲେ। ତାଙ୍କ ଜଣେ ଭାଇ ବୁଦ୍ଧଙ୍କ ଦୀକ୍ଷିତ ବୋଲି ଦାବି କରୁଥିଲେ। ହର୍ଷଙ୍କ ବେଳର ପ୍ରଚଳିତ ମୁଦ୍ରାରୁ ତାଙ୍କ ବିଷୟରେ ଜାଣିହୁଏ। ଚାଇନାର ପରିବ୍ରାଜକ ହୁଏନ୍ସାଂ (ଫାଇୟାନଙ୍କ ବିବରଣୀରୁ ବୁଦ୍ଧଙ୍କ ବିଷୟ ପଢ଼ି) ଅନୁପ୍ରାଣିତ ହେଲେ ଭାରତ ଭ୍ରମଣ କରିବା ପାଇଁ। ସେ ୬୩୦-୪୪ ମସିହାରେ ଭାରତ ଆସିଲେ। କୁହାଯାଏ ସେ ଚାଇନା ଫେରିଯିବା ବାଟରେ ୨୦ଟି ଘୋଡା, ବୁଦ୍ଧଙ୍କ ବହିପତ୍ର ଓ ବୁଦ୍ଧଙ୍କର କିଛି ଅଂସାବଶେଷ ନେଇ ଯାଇଥିଲେ।

ଏହି ତଥ୍ୟ ଆଉ ଜଣେ ଲେଖକ ବନଙ୍କ ଲେଖାରେ ମଧ୍ୟ ମିଳେ। 'ହର୍ଷ-ଚରିତ' ସେ ଲେଖିଛନ୍ତି। ସେଥିରେ ଲେଖାଅଛି ହର୍ଷଙ୍କର ଉନ୍ନତି ସଂକ୍ରାନ୍ତରେ। ଏ ପୁସ୍ତକ ସଂସ୍କୃତ ଭାଷାରେ ଲିଖିତ ଜୀବନୀ ଓ ସାହିତ୍ୟର ଏକ ଉତ୍କୃଷ୍ଟ ଲେଖା।

ହୁଏନ୍ସାଂ ଓ ବନ ଦୁଇଜଣଯାକ ହର୍ଷବର୍ଦ୍ଧନଙ୍କ ଦାନରେ ପ୍ରତିପାଳିତ। ଜଣେ ହର୍ଷଙ୍କର ରକ୍ଷା କବଚ ଓ ଆଉ ଜଣେ ତାଙ୍କ ଅନ୍ନରେ ପ୍ରତିପାଳିତ। ସେଥିପାଇଁ ଏ ଦୁଇଜଣଙ୍କ ଲେଖା ସମାଲୋଚନା ସାହିତ୍ୟ ଭିତରେ ନଥିଲା। ହୁଏନ୍ସାଂ ବୌଦ୍ଧିକ ପର୍ଯ୍ୟବେକ୍ଷିତ ଘଟଣା ବିବରଣୀ ଉପସ୍ଥାପନ କରିଥିଲେ ଓ ବନ ହର୍ଷଙ୍କ ଐତିହାସିକ ଚରିତ୍ର ବର୍ଣ୍ଣନା କରିଥିଲେ। ଚାଇନା ପରିବ୍ରାଜକ ଓ ବନ ଦୁଇଜଣଙ୍କ ଲେଖାରେ ଦୁହେଁ ଦୁହିଁଙ୍କର ପରିପୂରକ।

ହର୍ଷଙ୍କ ପିତା ପ୍ରଭାକରବର୍ଦ୍ଧନ ହର୍ଷଙ୍କୁ ଦେଖି ତାଙ୍କୁ ତାଙ୍କ ଉତ୍ତରାଧିକାରୀ ବୋଲି ମାନିନେଉଥିଲେ। ହର୍ଷଙ୍କ ବଡ଼ ଭାଇ ହୁନଙ୍କୁ ସହିତ ଯୁଦ୍ଧକରି ଫେରିବା ପରେ ପିତାଙ୍କର ମୃତ୍ୟୁ ହେଲା। ସେ ପିତାଙ୍କ ମୃତ୍ୟୁପରେ ନିଜକୁ ଉତ୍ତରାଧିକାରୀ ବୋଲି ମାନିନେଲେ କିନ୍ତୁ ପିତାଙ୍କ ମୃତ୍ୟୁରେ ଦୁଃଖାଭିଭୂତ ହୋଇ ସେ ହର୍ଷଙ୍କୁ ରାଜ୍ୟ ଦାନ ଦେଇ ବାନପ୍ରସ୍ଥ ନେଲେ। ହର୍ଷଙ୍କ ଭଉଣୀ ରାଜ୍ୟ-ଶ୍ରୀ କନୌଜର ମୌଖାରୀ ରାଜବଂଶରେ ବିବାହ କରିଥିଲେ। ଠିକ ସେହି ସମୟକୁ ମାଲଓ୍ୱାର ରାଜା କନୌଜ ଆକ୍ରମଣ କଲେ। ମୌଖାରୀ ରାଜା ଯୁଦ୍ଧକ୍ଷେତ୍ରରେ ନିହତ ହେଲେ। ଆଉ ରାଜ୍ୟଶ୍ରୀ ମାଲଓ୍ୱା ରାଜାଙ୍କର ବନ୍ଦୀ ହେଲେ। ମାଲଓ୍ୱା ରାଜା ଥାନେଶ୍ୱର ଆକ୍ରମଣ କଲେ। ହର୍ଷଙ୍କ ଭାଇ ରାଜ୍ୟବର୍ଦ୍ଧନ ବାନପ୍ରସ୍ଥ ନ ଦେଇ ଯୁଦ୍ଧ କଲେ। ହର୍ଷ ଯୁଦ୍ଧରୁ ବାଦ ପଡ଼ିଗଲେ।

ରାଜ୍ୟବର୍ଦ୍ଧନ ମାଲଓ୍ୱା ରାଜାଙ୍କୁ ହରାଇଲେ। ବଙ୍ଗଳାର ଗୌଡ଼ ରାଜା ଶଶାଙ୍କ ମାଲଓ୍ୱା ରାଜାଙ୍କୁ ସାହାଯ୍ୟ କରୁଥିଲେ। ବିଜୟୀ ରାଜ୍ୟବର୍ଦ୍ଧନ ରାଣାଙ୍କ ସହିତ ସନ୍ଧି କରିବାକୁ ଚାହିଁଲେ। କିନ୍ତୁପ୍ରତାରଣାର ବଶବର୍ତ୍ତୀ ହୋଇ ମୃତ୍ୟୁବରଣ କଲେ। ଖବର ପାଇ ହର୍ଷ ରାଗିଗଲେ। ଦେଖାଗଲା ସେ ଦିଶୁଛନ୍ତି ଏକ ରାଗରୋଷର ଅବତାର ଭଳି। ରାଗିଯାଇ କମାଣ୍ଡର-ଇନ-ଚିଫ ଓ କମାଣ୍ଡାଣ୍ଟଙ୍କ ସହଯୋଗରେ ସେହି ବର୍ଷ ସେ 'ବିଶ୍ୱବିଜୟ' କରିବାପାଇଁ ବାହାରିଲେ। ଶତ୍ରୁପକ୍ଷ ଅନେକ ଅଶୁଭ ଲକ୍ଷଣ ସବୁ ଦେଖିବାକୁ ଲାଗିଲେ।

ଜଘନ୍ୟ ଗୌଡ଼ ରାଜା ଶଶାଙ୍କ ହର୍ଷଙ୍କ ଶତ୍ରୁ। ଗୌଡ଼ରାଜ୍ୟ ଥାନେଶ୍ୱରଠାରୁ ପୂର୍ବକୁ ପ୍ରାୟ ହଜାର ମାଇଲ ଦୂର। ସେଥିପାଇଁ ରାସ୍ତାରେ ଅନେକ ରାଜ୍ୟ ଜୟ କରିବାକୁ ହେଲା। ତାଙ୍କ ଭିତରୁ ଜଣେ ଟାଣୁଆ ରାଜା ବଂଧୁତ୍ୱର ହାତ ହର୍ଷଙ୍କ ସହିତ ବଢ଼ାଇଲେ। ତାଙ୍କ ନାଁ ଭାସ୍କର ବର୍ମନ। ଗୌଡ଼ ରାଜ୍ୟର ଉତ୍ତରକୁ ଆସାମର ରାଜା କାମରୂପ ମଧ୍ୟ ଶଶାଙ୍କଙ୍କ ସହିତ ଯୁଦ୍ଧ କଲେ। ସେଥିପାଇଁ ଗୌଡ଼ ରାଜାଙ୍କୁ ଦୁଇପଟର ଶତ୍ରୁଙ୍କୁ ମୁକାବିଲା କରିବାକୁ ପଡ଼ିଲା। ମୌଖାରୀର ପରାଜିତ ରାଣୀ ରାଜ୍ୟ-ଶ୍ରୀ ମାଲଓ୍ୱା ଖସି ପଳାଇଲେ। ଦୁଃଭାଗ୍ୟବଶତଃ ସେ ବିନ୍ଧ୍ୟ ପର୍ବତ ଦେଶକୁ ଲୁଚି ପଳାଇଲେ। ହର୍ଷ ଭାବିଲେ ବିଧବାଭାବରେ ସେ ସେଠାରେ ସତୀ ହୋଇଯାଇପାରନ୍ତି। ତାଙ୍କର ଅନ୍ୟଯୋଜନା ବି ଥିଲା। ସେ ରାଜ୍ୟଶ୍ରୀଙ୍କୁ ଖୋଜିବା ବାହାନାରେ ଗୋଟିଏ ଭାଗ ସୈନ୍ୟ ନେଇ ମଧ୍ୟ ଭାରତକୁ ଗଲେ। ସେଠାରେ ରାଜ୍ୟଶ୍ରୀ 'ସତୀ-ଚିତା' ଜଳିବା ପୂର୍ବରୁ ଉଦ୍ଧାର କଲେ ଓ ଭାଇସହିତ ମିଳିତ ହେଲେ। ହର୍ଷବର୍ଦ୍ଧନ ୬ ବର୍ଷ ମଧ୍ୟରେ ଉତ୍ତର ପଥ, ଦକ୍ଷିଣପଥ, ମଧ୍ୟ ଦେଶ ଓ ଆର୍ଯ୍ୟାବର୍ତ୍ତର ପୂର୍ବ ଓ ପଶ୍ଚିମ – ପଞ୍ଚ ଭାରତ ଜୟ କଲେ। ହୁଏନ୍ସାଂଙ୍କ ବିବରଣୀରେ ଏହି ପାଞ୍ଚ ଭୂଖଣ୍ଡ ସମ୍ବନ୍ଧରେ ଲେଖାଅଛି।

ହର୍ଷ ପ୍ରାୟ ଉତ୍ତର ଭାରତର କାଶ୍ମୀରଠାରୁ ଆରବିୟାନ ସମୁଦ୍ର ଓ ବଙ୍ଗୋପସାଗର ପର୍ଯ୍ୟନ୍ତ ଭୂଖଣ୍ଡର ରାଜା ଥିଲେ। ଗୁଜରାଟର ମୈତ୍ରିକା ରାଜବଂଶ, ସିନ୍ଧ ଓ ଓଡ଼ିଶା ମଧ୍ୟ ତାଙ୍କର ବଶତା ସ୍ୱୀକାର ଇଚ୍ଛା କରିଥିଲେ। ପଞ୍ଜାବରୁ ରାଜସ୍ଥାନ ଓ ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ଅଂଚଳ ହର୍ଷଙ୍କ ସାମ୍ରାଜ୍ୟର ଏକ ଅଙ୍ଗ ହୋଇସାରିଥିଲା। ତାଙ୍କର ଆନନ୍ଦର ସୀମା ନଥିଲା। ତଥାପି ଭୟ ଥିଲା– ସଂପୂର୍ଣ୍ଣ ପରାଜୟର ଭୟ। ସପ୍ତମ ଶତାବ୍ଦୀ ବେଳକୁ ହର୍ଷବର୍ଦ୍ଧନ ସବୁ ଧର୍ମର ପ୍ରତିନିଧିଙ୍କର ଏକ ସଭା

ଟକାଇଥିଲେ। ହୁଏତ ସବୁ ଧର୍ମର ଏକତ୍ରୀକରଣ। ହର୍ଷବର୍ଦ୍ଧନ ନିଜେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ। ସମସ୍ତ ଆର୍ଯ୍ୟାବର୍ତ୍ତରେ ବୁଦ୍ଧ ସଂଘର ପ୍ରତିଷ୍ଠାତା ବୋଲି ହର୍ଷଙ୍କୁ କୁହାଯିବ। ସେହି ସମୟରେ ହର୍ଷଙ୍କ ଅସହଯୋଗକାରୀମାନେ ଏକ ଉଚ୍ଚ ସ୍ତମ୍ଭ ଉପରେ ରଖାଯାଇଥିବା ବୁଦ୍ଧ ମୂର୍ତ୍ତି ଦେହରେ ଅଗ୍ନି ସଂଯୋଗ କଲେ। ହର୍ଷଙ୍କ ଜୀବନ ପ୍ରତି ମଧ୍ୟ ବିପଦ ଥିଲା। ହର୍ଷ ସାହସର ସହିତ ସେମାନଙ୍କୁ ନିରସ୍ତ୍ର କରିବା ସହ ବନ୍ଦୀ କରି ନିର୍ବାସନ ଦେଲେ। ହର୍ଷଙ୍କ ମୃତ୍ୟୁ କିଭଳି ଭାବରେ ହେଲା ଜଣାନାହିଁ। ତାଙ୍କ ରାଜତ୍ୱ ଶେଷ ହେଲା ୬୪୭ ମସିହାରେ।

ହର୍ଷଙ୍କ ସିଂହାସନ ଜଣେ ବ୍ରାହ୍ମଣ ମନ୍ତ୍ରୀଙ୍କ ଦ୍ୱାରା ଅଧିକୃତ ହେଲା। ହର୍ଷଙ୍କ ମୃତ୍ୟୁପରେ ଅନେକ ବିଦେଶୀ ପରିବ୍ରାଜକମାନେ ଭାରତ ଆସିଛନ୍ତି। ଟାଙ୍ଗର ରାଜଦୂତ ହର୍ଷଙ୍କ ମୃତ୍ୟୁପରେ ଭାରତରେ ପହଞ୍ଚିଲେ। ସେତେବେଳକୁ ଭାରତର ଅବସ୍ଥା ଦ୍ୱାଦଲ୍ୟମାନ। ଯେକୌଣସି କାରଣରୁ ହେଉ ନା କାହିଁକି ଅନେକ ଚୀଇନିଜ ପରିବ୍ରାଜକ ଲୁଣ୍ଠନର ଶିକାର ହୋଇ ବନ୍ଦୀ ହେଲେ। କେବଳ ସେଲେଷ୍ଟିଆସର ସମ୍ରାଟଙ୍କ ରାଜଦୂତ ନିଜ ଜୀବନ ଧରି ତିବ୍ଦକୁ ଖସି ପଳାଇଲେ। ହର୍ଷଙ୍କୁ ଆକବରଙ୍କ ସହିତ ତୁଳନା କରାଯାଏ। କିନ୍ତୁ ହର୍ଷଙ୍କ ନାଁରେ କୌଣସି କୀର୍ତ୍ତିସ୍ତମ୍ଭ ନାହିଁ।

ହର୍ଷଙ୍କ ପରେ ଉତ୍ତର ଭାରତରେ ସାର୍ବଭୌମତ୍ୱ ଶେଷ ହେଲା। ହର୍ଷଙ୍କ ମୃତ୍ୟୁର ୬୦ ବର୍ଷ ପରେ ଆରବୀୟମାନେ ସିନ୍ଧରେ ଏକ ମୁସଲିମ ସଂପର୍କ ସ୍ଥାପନ କଲେ। ହୁଏନ୍‌ସାଂ ଦାକ୍ଷିଣାତ୍ୟ ସାରା ଘୁରି ବୁଲିଥିଲେ। ଯାହାକୁ ସେ କହୁଥିଲେ ମୋ-ହୋ-ଲା-ଚା। ସଂସ୍କୃତରେ ଏ ଶବ୍ଦର ଅର୍ଥ ମହାରାଷ୍ଟ୍ର, ପଶ୍ଚିମଘାଟ ପର୍ବତମାଳାର ଅବସ୍ଥିତ ରାଜ୍ୟ। ଏଠାରେ ସାତବଂଶୀଙ୍କର ବ୍ୟବସାୟ ଥିଲା। ଏହାର ମାଟି ଉର୍ବର, ଲୋକେ ଅକପଟ, ନ୍ୟାୟବନ୍ତ ଯୋଦ୍ଧା। କେହି ଶତ୍ରୁ ତାଙ୍କୁ ସାମନା କରିପାରିବ ନାହିଁ। ଏହାର ଅଦ୍ୱିତୀୟ ରାଜା 'ପୁ-ଲୋ-କି-ସି' ପୁଲକେସିନ-୨ୟ। ୬୩୦ ମସିହା ବେଳକୁ ସେ ହର୍ଷଙ୍କୁ ମଧ୍ୟ ଅସ୍ୱୀକାର କରିଥିଲେ। ସେ ଚାଲୁକ୍ୟ ବଂଶଜ ଯାହାଙ୍କର ବୀରତ୍ୱର କାହାଣୀ ଚର୍ଚ୍ଚାର ବିଷୟ। ସେମାନେ କର୍ଣ୍ଣାଟକ ଆସି ଦାକ୍ଷିଣାତ୍ୟ ଅଧିକାର କଲେ। ପରେ କଦମ୍ବ ଓ ସେମାନଙ୍କର ଦୁର୍ଗ ଅଧିକାର ଓ ଅନ୍ୟାନ୍ୟ ଅନେକ ଛୋଟ ରାଜ୍ୟ ମଧ୍ୟ ଜୟ କଲେ। ପୁଲେକେସିନ-୧ମ ଏହି ବଂଶର ପ୍ରତିଷ୍ଠାତା। ପ୍ରଥମେ ଘୋଡା-ବଳି ଆରମ୍ଭ କଲେ। ଏକ ଛୋଟ ରାଜା ଭାଟାପି (ବର୍ତ୍ତମାନର ବାଦାମୀ) ଉତ୍ତର କର୍ଣ୍ଣାଟକର ଦୁଇ ପର୍ବତଶ୍ରେଣୀ ମଧ୍ୟରେ ଅବସ୍ଥିତ ଥିଲା।

ଏଠି ଚାଲୁକ୍ୟ ବଂଶ ରାଜୁତି କରୁଥିଲେ। ପଥର କାଟି ଅନେକ ମନ୍ଦିର ଗଢ଼ିଲେ। ଗଠନ ଶୈଳୀ ଅଦ୍ୱିତୀୟ– ସେଇ ସୂତ୍ରରେ ଶାସନ ମଧ୍ୟ। ଆଇହୋଲରେ ଗୋଟିଏ ମନ୍ଦିର ଜୈନମାନଙ୍କୁ ଉତ୍ସର୍ଗିତ ହୋଇଥିଲା। କବି ରବିକୃତି ପୁଲକେସିନ-୨ୟଙ୍କର ବୃତ୍ତି ଲେଖିଥିଲେ। ୬୩୬ ମସିହା ବେଳକୁ ସମୁଦ୍ର ଗୁପ୍ତଙ୍କର ଆଲ୍ଲାବାଦ ଅନୁଶୀଳନ ପରି ବୃତ୍ତି ଏହି ଲେଖା ଯାଇଥିଲା। ମନୁଙ୍କଠାରୁ ଆରମ୍ଭ କରି ଚନ୍ଦ୍ରାଗୁ ଆରମ୍ଭ ଏହି ଲେଖରେ ଲେଖାଯାଇଛି ଇତିହାସ। ରବିକୃତିଙ୍କର ଏହି ଲେଖାକୁ କାଳିଦାସଙ୍କ ଲେଖା ସହିତ ତୁଳନା କରାଯାଇଛି।

ଚାଲୁକ୍ୟ ବଂଶର ରାଜା ପୁଲକେସିନ-୨ୟ ରାଜଗାଦୀ ଆରୋହଣ କଲାପରେ କର୍ଣ୍ଣାଟକର କଦମ୍ବା, ଗଙ୍ଗା ଇତ୍ୟାଦି ରାଜାମାନଙ୍କୁ ଜୟ କଲେ। ଏହାପରେ ସେ 'ମହାରାଜଧିରାଜ' ଓ 'ପରମେଶ୍ୱର' ଉପାଧି ଧାରଣ କଲେ। ପଶ୍ଚିମଘାଟ (କଙ୍କନ)ରେ ଗୋଆରୁ ବମ୍ବେ (ବୋଧ ଏଲିଫାଣ୍ଟା) ସହିତ ସବୁଠି ଚାଲୁକ୍ୟର ନୌସେନାଙ୍କ ଅଧିକାରରେ ଥିଲା। ମାଲୱା, ରାଜସ୍ଥାନ ଏପରିକି ଗୁଜରାଟ ମଧ୍ୟ ତାଙ୍କ ଅଧିନତା ସ୍ୱୀକାର କରିଥିଲେ। ତାପ୍ତି ଓ ନର୍ମଦା ମଧ୍ୟ ପାରି ହୋଇ ସେ ହର୍ଷବର୍ଦ୍ଧନଙ୍କ ରାଜଧାନୀକୁ ବାରମ୍ବାର ଆତଙ୍କିତ କରୁଥିଲେ।

ହର୍ଷର ଅର୍ଥ 'ଆନନ୍ଦ', ପୁଲକେଶିନର ଅର୍ଥ 'ବିଜୟ'। ଚାଲୁକ୍ୟ, କୃଷ୍ଣା ଓ ଗୋଦାବରୀର ମଧ୍ୟବର୍ତ୍ତୀ ରାଜ୍ୟ ଆନ୍ଧ୍ରପ୍ରଦେଶ ରାଜାଙ୍କ ତତ୍ତ୍ୱାବଧାନରେ ଥିଲା। ଓଡ଼ିଶାରେ ମଧ୍ୟ ସେମାନେ ପହଞ୍ଚିଥିଲେ। ଫଳରେ ପୂର୍ବ ଓ ପଶ୍ଚିମଘାଟର ସମୁଦ୍ରରେ ତାଙ୍କର ଆଧିପତ୍ୟ ଥିଲା। ଚାଲୁକ୍ୟଙ୍କ ରାଜ୍ୟବିସ୍ତାର– ଦକ୍ଷିଣ, ପଶ୍ଚିମ, ଉତ୍ତର ଓ ପୂର୍ବ ଓ ପୁଣି ଦକ୍ଷିଣକୁ ରହିଥିଲା। କାଳିଦାସଙ୍କ ରଘୁବଂଶର ନାୟକ ରଘୁ ପରି। ଏହାକୁ କୁହାଗଲା 'ରାଜମଣ୍ଡଳ'।

ଆବୁ ପର୍ବତକୁ ପୃଥିବୀର ମେରୁଦଣ୍ଡ ବୋଲି ଗଣାଯାଏ। ଆବୁ ପର୍ବତ ଚତୁର୍ଦ୍ଦିଗକୁ ଚାରୋଟି ଦ୍ୱୀପରେ ବିଭକ୍ତ କରାଯାଏ ତନ୍ମଧ୍ୟରୁ ଜମ୍ବୁ ଦ୍ୱୀପ (ନାଲସେଓର ପ୍ରଦେଶ)କୁ ପୃଥିବୀ କୁହାଯାଏ। ତା ଚାରିପଟେ ସମୁଦ୍ର।

'ରାଜମଣ୍ଡଳ' ରାଜନୈତିକ ଚିହ୍ନ। ରାଜନୈତିକ ସ୍ଥିରତା ଧର୍ମର ଶାସନ ଭିତରେ। ଏହା ରାଜାଙ୍କର ପରାକ୍ରମ ଉପରେ ନିର୍ଭର କରେ। ଏଇଠି ମତ୍ସ୍ୟ-ନ୍ୟାୟ ବ୍ୟବହାର କରାଯାଏ (ବଡ଼ମାଛ ଛୋଟ ମାଛକୁ ଗିଳିବାର ନିୟମ)। ସେଥିପାଇଁ

ରାଜନୈତିକ ବାତାବରଣ ମଧ୍ୟ ପରିବର୍ତ୍ତନଶୀଳ। ଚାଲୁକ୍ୟ ବଂଶଧର ବିକ୍ରମାଦିତ୍ୟ-୧ମ କିଛିକାଳ ବିତିଗଲା ପରେ ରାଜା ହେଲେ ୬୫୫ ମସିହାରେ। ୭୪୦ରେ ବିକ୍ରମାଦିତ୍ୟ-୨ୟ ରାଜଧାନୀ ବସିଲେ। ତାଙ୍କର ଅନୁଶୀଳନ ପଲ୍ଲଭମନ୍ଦିର କୈଳାସ ନାଥ ମନ୍ଦିରରେ ଲେଖାଅଛି।

## ୭୦୦-୯୦୦ ଖ୍ରୀଷ୍ଟାବ୍ଦ

ମହମ୍ମଦ ପ୍ରଫେଟଙ୍କ ମୃତ୍ୟୁର ୨୦ ବର୍ଷ ପରେ ୬୩୨ରେ ତାଙ୍କ ଅନୁଗତ ଆରବୀମାନେ, ସେନାବାହିନୀ ଗଠନର ଜ୍ଞାନ ନ ଥାଇ, ଦୁର୍ଗାଦି ଅଧିକାର କରିବାର ପ୍ରଣାଳୀ ଜଣା ନ ଥାଇଁ ସିରିଆ ଓ ଇଜିପ୍ଟ (ବିଜାନାଟାଇନ ସାମ୍ରାଜ୍ୟର) ଓ ସାସାନିଦ ସାମ୍ରାଜ୍ୟର ଇରାକ ଓ ଇରାନ ଅଧିକାର କଲେ। ୪୦ ବର୍ଷପରେ ଉତ୍ତର ଆଫ୍ରିକା, ସ୍ପେନ, ଆଫଗାନିସ୍ଥାନର ଅନେକ ଅଞ୍ଚଳ, ମଧ୍ୟ ଏସିଆର ବହୁତ କିଛି ଅଞ୍ଚଳ– ଏପରି ତିନୋଟି ମହାଦେଶ ଜୟ କରିଥିଲେ। ଆଟଲାଣ୍ଟିକରୁ ଇନ୍ଦସ ଓ ଉପର ନାଇଲରୁ ଆରମ୍ଭ ଆରାଲ ସମୁଦ୍ର। ୭୦୦ ମସିହା ବେଳକୁ ଚାଇନା ଓ ଭାରତ ସେମାନଙ୍କ ନିଜ ନିଜ ସୀମାରେ ଇସଲାମ ପ୍ରତିବେଶୀଙ୍କୁ ପାଇଲେ। ୭୫୦ ବେଳକୁ ପୂର୍ବ ଆରବୀମାନେ ଇନ୍ଦସ୍ ଭିତରକୁ ପଶିଆସିଥିଲେ। ମୁସଲିମମାନଙ୍କର କିନ୍ତୁ ଭାରତର ସୀମା ଅଞ୍ଚଳର ସ୍ଥିତି ଦୃଢ଼ ଥିଲା। ୧୩ଶହ ଶତାବ୍ଦୀ ବେଳକୁ ଭାରତ ମୁସଲିମ ସାମ୍ରାଜ୍ୟପାଇଁ ମଥାନତ କରିସାରିଥିଲେ।

୬୬୩ ବେଳକୁ ମହମ୍ମଦଙ୍କ କେତେକ ଶିଷ୍ୟ ବୋଲାନ ପାଶ୍ ଦେଇ ଉପରସିନ୍ଧରେ ପ୍ରବେଶ କଲେ। ଭାରତର ପଶ୍ଚିମ ଉପକୂଳବର୍ତ୍ତୀ ଅଞ୍ଚଳରେ, ୨୦ ବର୍ଷ ପୂର୍ବରୁ ଆରବୀୟାନ ସମୁଦ୍ର ଦେଇ ଆରବ ବ୍ୟବସାୟୀମାନେ ବ୍ୟବସାୟ ଆରମ୍ଭ କରି ଦେଇଥିଲେ। ୭୦୮ ଖ୍ରୀ.ଅ. ବେଳକୁ ସିନ୍ଧର ଜଣେ ଅନାମଧେୟ ଶୁଦ୍ର ରାଜା ଥିବାର ଅନୁମାନ କରାଯାଏ। ସେ ଆରବୀୟ ଆକ୍ରମଣକୁ ମୁକାବିଲା କଲେ।

ସେତେବେଳେ ଆରବିଆନ ସମୁଦ୍ରରେ ଜଳଦସ୍ୟୁମାନେ ପ୍ରବଳ ହୋଇ ଉଠିଥାନ୍ତି। ସେମାନଙ୍କୁ କୁହାଯାଉଥିଲା ''ମେଡ଼''। ଏତିକିବେଳେ ସେହି ଜଳଦସ୍ୟୁଙ୍କ ଆକ୍ରମଣ ଫଳରେ ଶ୍ରୀଲଙ୍କାରୁ ଗୋଟେ ଜାହାଜ ବାଣ୍ଡା ଯିବା ଯାତ୍ରୀଙ୍କୁ ନେଇ ବାଟ ଭୁଲି ବନ୍ଦର-ସହର ଦେବାଲରେ ଲଙ୍ଗର ଦେଲା। ଯାତ୍ରୀଙ୍କ ମଧ୍ୟରେ ଅଧିକାଂଶ ଥିଲେ ସ୍ତ୍ରୀ ଲୋକ। ଏମାନେ ସବୁ ମୃତ ମୁସଲିମ ବ୍ୟବସାୟୀଙ୍କ କନ୍ୟା। ସେମାନଙ୍କୁ

ଶ୍ରୀଲଙ୍କାର ରାଜା, ଇରାନର ଗଭର୍ଣ୍ଣର ଓ ପୂର୍ବ ସାମ୍ରାଜ୍ୟର ଭାଇସରାୟଙ୍କ ପାଖକୁ ଉପହାର ସ୍ୱରୂପ ପଠାଇଥିଲେ। ଦେବାଲର ରାଜା ଦାହାରଙ୍କର ଇଚ୍ଛା ଥିଲେ ବି ଏହି ସ୍ତ୍ରିଲୋକମାନଙ୍କୁ ରକ୍ଷା କରିପାରିବେ ନାହିଁ ବୋଲି ଜଣାଇଦେଲେ। କହିଲେ ସେମାନେ ଜଳଦସ୍ୟୁ ଓ ସେମାନଙ୍କ ଉପରେ କୌଣସି ଚାପ ଦେବା ତାଙ୍କର କ୍ଷମତାର ବାହାରେ। ଏ ଉତ୍ତରରେ ସନ୍ତୁଷ୍ଟ ନ ହୋଇ ଇରାନର ଗଭର୍ଣ୍ଣର 'ଅଲ ହଜଜ' ନୌ-ସେନାଙ୍କୁ ଦାହାରଙ୍କ ରାଜ୍ୟ ଅଭିମୁଖେ ପଠାଇଲେ। ଦାହାର ସେମାନଙ୍କୁ ପରାସ୍ତ କଲେ। ପରେ ହାଜି 'ଅଲ ହଜଜ' ତାଙ୍କର ସଂପର୍କୀୟ ଭାଇ ମହମ୍ମଦ ବିନ କାସିମଙ୍କୁ ଅନେକ ନୌସେନା ଦେଇ ଦେବାଲ ପଠାଇଲେ।

ବିନ କାସିମ ସ୍ଥଳପଥରେ ଯାଇ ଇନ୍ଦସର ପଶ୍ଚିମାକୂଳବର୍ତ୍ତୀ ସ୍ଥାନରେ ପହଞ୍ଚିଲେ। ସେଠାକାର ବୌଦ୍ଧ ସନ୍ୟାସୀମାନେ ଅହିଂସାରେ ବିଶ୍ୱାସ କରି ଆକ୍ରମଣକାରୀଙ୍କ ସହିତ କଥାବାର୍ତ୍ତା କଲେ। ନଦୀର ଅପରପାର୍ଶ୍ୱରେ 'ଦହର'। ସୁରକ୍ଷିତ କିନ୍ତୁ ଥିଲେ କାରଣ ବିନ କାସିମ ନଦୀପାର ହେବାକୁ ବାହିଁ ନଥିଲେ। ପରେ ଅଲ ହଜାଜ ଆଦେଶରେ ନଦୀ ପାର ହେଲେ। ଯେଉଁପରି ଆଲେକଜାଣ୍ଡରଙ୍କର ପୁରୁଙ୍କ ସହିତ ଯୁଦ୍ଧ ହୋଇଥିଲା ସେହିପରି ଏ ଯୁଦ୍ଧ ମଧ୍ୟ ଭୀଷଣ ଆକାର ଧାରଣ କଲା। ପରିଶେଷରେ ଦାହାରଙ୍କର ମୃତ୍ୟୁ ହେଲା। ବିନ କାସିମ ଆଗକୁ ବାଲିଲେ। ୭୧୦ରୁ ୭୧୩ ମଝିରେ ସିନ୍ଧର କେତେକ ରାଜ୍ୟ ମଧ୍ୟ ସେ ଦଖଲ କଲେ। ବିଜୟ ହେଉ ବା ଆତ୍ମସମର୍ପଣ।

ଦଶମ ଶତାବ୍ଦୀ ବେଳକୁ ସିନ୍ଧୁପ୍ରଦେଶ ଦୁଇଭାଗରେ ବିଭକ୍ତ ହୋଇ ଦୁଇ ଆରବ ପରିବାରଙ୍କୁ ବାଣ୍ଟି ଦିଆଯାଇଥିଲା।

## ରାଷ୍ଟ୍ରକୁଟର ଉତ୍ଥାନ—

ଇସଲାମ ଧର୍ମାବଲମ୍ବୀମାନଙ୍କୁ ସେତେବେଳେ ଯବନ, ତୁର୍କ ବା ପର୍ଶିୟାନ ନାମରେ ସମ୍ବୋଧନ କରାଯାଉଥିଲା। କିନ୍ତୁ ସମସ୍ତଙ୍କୁ କୁହାଯାଉଥିଲା ମ୍ଲେଚ୍ଛ। ମ୍ଲେଚ୍ଛ କହିବାର ଅର୍ଥ ହେଲା ଏ ଲୋକମାନେ ଭଲରେ କଥା କହି ଜାଣିନାହାନ୍ତି, ଭାରତୀୟ ବଂଶଜ ନୁହନ୍ତି ଆଉ ଏମାନଙ୍କ ଧର୍ମ ଅଲଗା।

ଆଲବାରୁଣିଙ୍କ (ଜଣେ ଶ୍ରେଷ୍ଠ ଇସଲାମିୟ ଗବେଷକ) ମତରେ ହିନ୍ଦୁମାନେ ସେମାନଙ୍କର ଧର୍ମ, ଦେଶ, ସାମ୍ରାଜ୍ୟ ବଣ୍ଟନ ସବୁଠାରୁ ଶ୍ରେଷ୍ଠ ବୋଲି ଅନୁଭବ

କରୁଥିଲେ। କିନ୍ତୁ ଅଷ୍ଟମ ଓ ନବମ ଶତାବ୍ଦୀରେ ମୁସଲିମମାନେ ଭାବୁଥିଲେ କି ଭାରତ ପରି ପଛୁଆଦେଶ ପୃଥିବୀରେ ଆଉ କେଉଁଠି ନାହିଁ। ଆଲବାରୁଣୀଙ୍କ ଯୋଗୁଁ ଆରବ ଜଗତ ଓ ଭାରତୀୟ ବିଜ୍ଞାନ ଓ ସଂସ୍କୃତୀ ସମ୍ବନ୍ଧରେ ସଂସ୍କୃତ ଭାଷା ଜାଣିପାରିଲା। ଆଲେକଜାଣ୍ଡରଙ୍କ ଭଳି କିନ୍ତୁ ମୁସଲିମ ଆକ୍ରମଣକାରୀମାନେ ଭାରତର ବିଭବ ସମ୍ବନ୍ଧରେ ଅଜ୍ଞ ନଥିଲେ। ଆଲବାରୁଣୀ କିନ୍ତୁ ଏହାର ଇଂଗୀତ ତାଙ୍କ ଲେଖାରେ ଜଣାଇ ନାହାନ୍ତି। ଆଲବାରୁଣୀ ନିଜେ ମଧ ତାହା ଲେଖିଛନ୍ତି। ଜାତିପ୍ରଥା ଯୋଗୁଁ ମଧଭାରତୀୟ ସମାଜ ଏକ ସ୍ଥିର ସମାଜ ବୋଲି ଗଣାଯାଉଥିଲା। ଜାତିପ୍ରଥା ଯୋଗୁଁ ସମାଜର ରାଜନୈତିକ ଓ ଅର୍ଥନୈତିକ ଅଗ୍ରଗତି ହେଉଛି ବୋଲି ଧରାଯାଉଥିଲା। ସେମାନଙ୍କର ନିଜ ନିଜ କ୍ଷେତ୍ରରେ କାର୍ଯ୍ୟର ଦକ୍ଷତା ପ୍ରତିପାଦିତ କରୁଥିଲେ ଓ ତାହା ଅଗ୍ରଗତିର ବିଶେଷ ଧାରା ବୋଲି ଗଣାଯାଉଥିଲା। 'କର୍ମ'ର ଧାରଣା ପ୍ରଥମେ ଉପନିଷଦ୍‌ରେ ବର୍ଣ୍ଣନା କରାଗଲା ଓ ପରେ ବୁଦ୍ଧଙ୍କ ଶିକ୍ଷାରେ ମଧ ଉପସ୍ଥାପିତ କରାଯାଇଥିଲା।

ତା'ପରେ ଆସିଲା ଜାତିପ୍ରଥା ଓ କାଳକ୍ରମେ ହିନ୍ଦୁ ସଭ୍ୟତାର ଏକ ଅଙ୍ଗ ହୋଇଗଲା। ଭାରତର କୋଣେ କୋଣେ ଅନେକ ରାଜା ରାଜୁତି କରୁଥିଲେ। ସମସ୍ତଙ୍କର ଥିଲେ ସୈନ୍ୟବାହିନୀ, ହାତୀ, ଘୋଡାସବାର, ପଦାତିକ। ଆଲବେରମଙ୍କ ମତରେ ତୁର୍କମାନଙ୍କର ସବୁଠୁ ଭଲ ଘୋଡା ଥିଲା। ଭଲ ହାତୀ କାନ୍ଧାହାରରେ ଦେଖାଯାଉଥିଲେ ଓ ଭାରତ ପଦାତିକ ସନ୍ୟଙ୍କ ପାଇଁ ବିଖ୍ୟାତ ଥିଲା। ନବମୀ ଶତାବ୍ଦୀ ବେଳକୁ 'ବଲ୍ଲାର' ବୋଲି ଜଣେ ରାଜା 'ରାଜାଧିରାଜ' ଉପାଧିରେ ଭୂଷିତ ହେଲେ। ଏ କଥା ସୁଲେମାନ ଯେ କି ଭାରତକୁ ଅନେକ ଥର ଆସିଛନ୍ତି, ଏହା ସ୍ୱୀକାର କରନ୍ତି।

ସୈନିକ ଯୁଦ୍ଧ କରେ, କୃଷକ ଚାଷ କରେ। କେହି କାହା କାମରେ ସଠିକ ଭାଗ ନିଅନ୍ତି ନାହିଁ। ଚାଷଲବ୍ଧ ଉତ୍ପାଦନ ସୈନିକ ଭୋଗ କରେ। ସୈନିକର ରକ୍ଷାପାଇଁ ଚାଷୀ ଆନନ୍ଦରେ ନିଜ କାମକରେ।

ବାଦାମିର ଚାଲୁକ୍ୟ ବଂଶଙ୍କ ସାମ୍ରାଜ୍ୟ ଖ୍ରୀ.ଅ. ୭୬୦ବେଳକୁ ଲୋପପାଇଲା। କାଞ୍ଚି ଓ ପଲ୍ଲବୀ ସହିତ ସଂଗ୍ରାମରେ ବ୍ୟସ୍ତ ରହି ସେମାନେ ବେରାର ଓ ଗୋଦାବରୀର ଆଖପାଖ ଅଞ୍ଚଳକୁ ତାଙ୍କର କିଛି ଅଫିସରଙ୍କୁ ଶାସନ କରିବାକୁ

ଅନୁମତି ଦେଇଥିଲେ। ୭୩୫-୫୬ ଶତାବ୍ଦୀ ବେଳକୁ ଏମାନଙ୍କ ମଧ୍ୟରୁ ଜଣେ ପ୍ରସିଦ୍ଧ ବ୍ୟକ୍ତି ହେଉଛନ୍ତି ଦାନ୍ତି ଦୁର୍ଗା। ଚାଲୁକ୍ୟଙ୍କ ସାମ୍ରାଜ୍ୟରେ ଯେହେତୁ ସେ ଅଞ୍ଚଳର ମୁଖ୍ୟ ଥିଲେ ତାଙ୍କୁ 'ରାଷ୍ଟ୍ରକୁଟ' କୁହାଯାଉଥିଲା। ଫଳରେ ପରବର୍ତ୍ତୀ ସମୟରେ ତାଙ୍କ ପ୍ରତିଷ୍ଠିତ ସାମ୍ରାଜ୍ୟର ନାମ 'ରାଷ୍ଟ୍ରକୁଟ' ଗଣାଗଲା।

ଚାଲୁକ୍ୟ ରାଜା ବିକ୍ରମାଦିତ-୨ୟ ପଲ୍ଲବ ଓ ସିନ୍ଧ ସହିତ ଲଢ଼େଇରେ ବ୍ୟସ୍ତ ଥିଲାବେଳେ ୭୪୭ରେ ମରିଗଲେ। ଏ ସୁଯୋଗରେ ଦାନ୍ତିଦୁର୍ଗା ତାଙ୍କର ସାମ୍ରାଜ୍ୟ ବୃଦ୍ଧିକରି ମହାରାଷ୍ଟ୍ର, ଗୁଜରାଟ ଓ ମଧ୍ୟପ୍ରଦେଶର କିଛି କିଛି ଅଂଶ ଦଖଲ କଲେ।

ଚାଲୁକ୍ୟମାନେ ଫେରିଆସିବାପରେ ଦାନ୍ତିଦୁର୍ଗାଙ୍କ ସାମ୍ରାଜ୍ୟର ପତନ ହେଲା। ୭୫୬ରେ ତାଙ୍କର ମୃତ୍ୟୁ ହେଲା। ସେ ଥିଲେ ପୁତ୍ରହୀନ। ତାଙ୍କ କକେଇ କ୍ରିଷ୍ଣ-୧ମ ରାଷ୍ଟ୍ରକୁଟର ମୁଖ୍ୟ ହେଲେ। ଘମାଘୋଟ ଯୁଦ୍ଧପରେ ବାଦାମୀର ପତନ ହେଲା ଓ କର୍ଣ୍ଣାଟକ ରାଜ୍ୟ ରାଷ୍ଟ୍ରକୁଟ ସହିତ ସାମିଲ ହେଲା। ୭୭୩ରେ କ୍ରିଷ୍ଣା-୧ମର ମୃତ୍ୟୁ ହେଲା। ସେତେବେଳକୁ ପୁରା ଦାକ୍ଷିଣାତ୍ୟ ରାଷ୍ଟ୍ରକୁଟ ସହିତ ସାମିଲ ହୋଇ ସାରିଥିଲା। ବର୍ତ୍ତମାନ ଆଗକୁ ରାଜ୍ୟଜୟ କରିବାକୁ ହେଲେ ଆର୍ଯ୍ୟବର୍ତ୍ତ ଆକ୍ରମଣ କରିବାକୁ ହେବ।

## କନୌଜର ତ୍ରିକୋଣ ଲଢ଼େଇ-

ହର୍ଷଙ୍କ ଅମଳରୁ କନୌଜ ଉତ୍ତର ଭାରତର ସାମ୍ରାଜ୍ୟର ମୂଳକେନ୍ଦ୍ର ଥିଲା। ନବମ ଶତାବ୍ଦୀ ବେଳକୁ କନୌଜ ଅଧିନରେ ବେଶି ରାଜ୍ୟ ନଥିଲା। ଦୁଇ ସାମ୍ରାଜ୍ୟଙ୍କ ମଝିରେ ଏହା ଦୋଦୁଲ୍ୟମାନ- ପୂର୍ବ ଭାରତର ପଲାସ ଓ ପଶ୍ଚିମରେ ଗୁର୍ଜର ପ୍ରତିହାରୀ। ଦାକ୍ଷିଣାତ୍ୟର ରାଷ୍ଟ୍ରକୁଟ ମଧ୍ୟ କନୌଜ ଉପରେ ଆଧିପତ୍ୟ ଜାହିର କଲା। ପ୍ରତିଦ୍ୱନ୍ଦ୍ୱିତା ହେଲା।

କ୍ଷମତା ସଂଗ୍ରାମ ଛଡ଼ା ଆଉ ଅନେକ ମୁସଲିମଙ୍କ ଇତିବୃତ୍ତି ଲେଖରେ ସ୍ଥାନ ପାଇନାହିଁ। ଧର୍ମପାଲ ବୋଲି ଜଣେ ରାଜା ୭୭୫-୮୧୦ରେ ବେଙ୍ଗଲ ପଲାସଠାରେ ରାଜୁତି କରୁଥିଲେ। ପଲାସରେ ସୂକ୍ଷ୍ମତୁଳା କପଡା ଓ (ଆଲୋ) କାଠ ଉତ୍ପାଦିତ ହୋଇଥିଲା। ରାଜାଙ୍କର ୫୦ ହଜାର ହାତୀ ଓ ବହୁ ସଂଖ୍ୟାରେ ସୈନିକ ଥିଲେ। ତାଙ୍କ ବାପା ଗୋପାଳ ୭୫୦ରେ ଏହି ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ। ଧର୍ମପାଲ ତାଙ୍କ ବାପାଙ୍କର ରାଜ୍ୟ ବିସ୍ତାର ନୀତିକୁ ଆଦରି

ନେଇଥିଲେ। ଧର୍ମପାଳଙ୍କ ବାପା ରାଷ୍ଟ୍ରକୁଟର ଅଧିନାୟକ ଥିଲେ। ସେ ଆର୍ଯ୍ୟବ୍ରତ ଅଧିକାର କରିବାର ଆଶା ପୋଷଣ କଲେ। ଧର୍ମପାଳ ୪୦ ବର୍ଷ ରାଜୁତି କଲେ (୮୧୦-୫୦) ଓ ରାଜାମାନଙ୍କର ଏକବୈଠକ ତାଙ୍କ ସାର୍ବଭୌମତ୍ୱର ନିଦର୍ଶନ ସ୍ୱରୂପ ଡକାଇଥିଲେ।

ପରେ ସେ କାମରୂପ (ଆସାମ), ଉତ୍କଳ (ଓଡ଼ିଶା) ଦକ୍ଷିଣ ଭାରତ ଓ ଉତ୍ତର ପଶ୍ଚିମ ଭାରତରେ ରାଜ୍ୟ ବିସ୍ତାର କରିଥିଲେ। ପାଳସମାନେ ବୌଦ୍ଧ ଧର୍ମାବଲମ୍ବି। ଉଦ୍ଦେଶ୍ୟ ଥିଲା ନାଳନ୍ଦା ବିଶ୍ୱବିଦ୍ୟାଳୟର ମରାମତି ଓ ବାଙ୍ଗଲାଦେଶର ସୋମପୁରା ଠାରେ ଥିବା ଘରର ମରାମତି। ବିକ୍ରମଖିଲାରେ (ବିହାରର ଗଙ୍ଗାଠାରେ) ଗୋଟାଏ ବୌଦ୍ଧଶିକ୍ଷା ପାଇଁ ନୂଆ କେନ୍ଦ୍ର ପ୍ରତିଷ୍ଠା କରିବା। ବିଶ୍ୱଦରବାରରେ ବୌଦ୍ଧଧର୍ମର ପ୍ରସାର ପାଇଁ ପାଳସଠାରେ ଚେଷ୍ଟା ଅନେକ ହେଲା। ଏଠିକୁ ସିନ୍ଧ କାଶ୍ମିର, ନେପାଲ, ତିବତ, ଚାଇନା, ବର୍ମା, କାମ୍ବୋଡ଼ିଆ, ଶ୍ରୀଲଙ୍କା ଓ ଇଣ୍ଡୋନେସିଆର ଛାତ୍ରମାନେ ଶିକ୍ଷା ପାଇବାପାଇଁ ଆସୁଥିଲେ। ପାଳସ ଶିଳ୍ପବାତୁରୀ, ସ୍ତୁପ ଓ ମନ୍ଦିରମାନଙ୍କରେ (ବର୍ମା ଓ ଜାଭା) ପରିଦୃଷ୍ଟ ହେଲା। ପଥର ଓ ବ୍ରୋଞ୍ଜର (ତିବତ୍ ଓ ନେପାଲ) ପ୍ରତିମୂର୍ତ୍ତି ନିର୍ମାଣ କଳା, ପାଳସ ସାମ୍ରାଜ୍ୟର ତତ୍ତ୍ୱାବଧାନରେ ହୋଇଥିଲା।

ପୂର୍ବ ଭାରତରେ ମନ୍ତ୍ର, ଯନ୍ତ୍ର ଓ ମୁଦ୍ରାର ଚଳଣି ସବୁ ତନ୍ତ୍ରବିଦ୍ୟାର ଗୋଟେ ଗୋଟେ ଅଙ୍ଗ। ବୌଦ୍ଧଧର୍ମରେ ବିଶ୍ୱାସ କରୁଥିବା ଲୋକ ବା ଅବିଶ୍ୱାସ କରିବା ଲୋକ ମଝିରେ ତନ୍ତ୍ରହିଁ ବିଶେଷ କାମ କରୁଥିଲା। ଏହା ବୁଦ୍ଧଙ୍କର 'ଅଷ୍ଟମପଥ' ଶିକ୍ଷାର ବାହାରେ। ଗୁପ୍ତଙ୍କ ସମୟରୁ ସଂଘର ପ୍ରଭାବ ଆସ୍ତେ ଆସ୍ତେ କମିଯାଇଥିଲା। 'ଭକ୍ତି' ସଂଗ୍ରାମ ବୁଦ୍ଧଙ୍କ ଶିକ୍ଷା ଉପରେ ମୁଣ୍ଡ ଟେକି ଥିଲା। ସେହି ସମୟରେ କେରଳର ଜଣେ ବ୍ରାହ୍ମଣ 'ଶଙ୍କର' ଏକ ସଂସ୍କାର ଆନ୍ଦୋଳନର ନେତୃତ୍ୱ ନେଲେ। ସେ ବୈଦିକ ଦର୍ଶନର ଶ୍ରେଷ୍ଠତ୍ୱକୁ ପ୍ରାଧାନ୍ୟ ଦେଲେ ଓ ଧିରେ ଧିରେ ବୁଦ୍ଧଙ୍କ ଅଷ୍ଟପଦ ଦର୍ଶନର ପ୍ରାଧାନ୍ୟ କମିବାକୁ ଆରମ୍ଭ କଲା। ବୁଦ୍ଧଧର୍ମ କେବଳ ସିନ୍ଧ, ନେପାଲ, କାଶ୍ମୀର ଓ ପାଲାସରେ ସିମିତ ରହିଲା।

ଉତ୍ତର ଭାରତରେ, ଆର୍ଯ୍ୟବର୍ତ୍ତର ସୀମାପରେ, ଗୁରୁଜର ପ୍ରତିହାର ହର୍ଷଙ୍କଠାରୁ ଅଧିକ ଶକ୍ତିଶାଳି। ସେମାନେ ତାଙ୍କ ପରମ୍ପରା, ଆଶା, ଆକାଂକ୍ଷାଠାରୁ ଦୂରେଇ ଯିବାକୁ ଚାହୁଁ ନଥିଲେ। ସେମାନେ ଇସଲାମ ଧର୍ମକୁ ବିଶ୍ୱାସ ନ କରି ନିଜର ଧର୍ମକୁ ବଜାୟ ରଖିଲେ। କନୌଜର ରାଜା ବାଉରାଙ୍କ ବିଷୟରେ ଅନେକ

କିଛି ଲେଖା ହୋଇଛି । ତାଙ୍କର ୩ ମିଲିଅନ ସୈନ୍ୟ ଥିଲେ । ଏହାକୁ ସେ ଚାରିଭାଗରେ ବିଭକ୍ତ କରିଥିଲେ । ଗୋଟେ ଭାଗ ଆରବଙ୍କ ସୁଲତାନଙ୍କ ସହ ଯୁଦ୍ଧ କରିବାପାଇଁ, ଦ୍ୱିତୀୟ ରାଷ୍ଟ୍ରକୁଟ ସାମନ୍ତମାନଙ୍କ ସହ ଓ ଅନ୍ୟ ଦୁଇଟି ଭାଗ ବାହାରର ଯେ କୌଣସି ଶତ୍ରୁଙ୍କ ସହିତ ଯୁଦ୍ଧ କରିବାରେ ନିୟୋଜିତ କରିଥିଲେ ।

ଗୁରୁଜର ଓ ରାଜପୁତମାନଙ୍କ ପୂର୍ବପୁରୁଷ ହୁଏତ ଏକ ହୋଇପାରନ୍ତି । ମାତ୍ର ୫୦୦ ଖ୍ରୀଷ୍ଟାବ୍ଦରେ ସେମାନେ ଲୋକଲୋଚନକୁ ଆସିଲେ । ସେମାନେ ମାଉଣ୍ଡ ଆବୁ ପର୍ବତ ନିକଟରୁ ଆସିଲେ ବୋଲି ଲୋକ କଥା ଅଛି । ସେମାନେ ନିଜକୁ ଓ ରାମକୃଷ୍ଣଙ୍କ ବଂଶଧର ବୋଲି ଦାବି କରନ୍ତି । ଗୁରୁଜରମାନେ ଥରେ ରୁଦ୍ରଦମନଙ୍କୁ ଓ ଆଉଥରେ ସମୁଦ୍ର ଗୁପ୍ତଙ୍କୁ ହରାଇଥିଲେ ବୋଲି ଅନୁଶାସନରୁ ଦେଖାଯାଏ ।

ଯମୁନା ଓ ଗଙ୍ଗାର ମଧବର୍ତ୍ତୀ ରାଜ୍ୟ କୁରୁ ଓ ପାଣ୍ଡବମାନେ ଉପଭୋଗ କରିଥିଲେ । ଗୋଦାବରୀ ଓ କ୍ରିଷ୍ଣା ଉପକୂଳବର୍ତ୍ତୀ ଅଞ୍ଚଳ କର୍ଣ୍ଣାଟକ, ମହାରାଷ୍ଟ୍ର ଓ ଆନ୍ଧ୍ରପ୍ରଦେଶ ରାଷ୍ଟ୍ରକୁଟ ଅଞ୍ଚଳ ବୋଲି ଘୋଷଣା କରାଯାଉଥିଲା । ତା'ପରେ ଅନେକ ରାଜା, ରାଜ୍ୟ, ସାମ୍ରାଜ୍ୟ ଦେଇ ଭାରତର ଇତିହାସ ଅନ୍ୟାନ୍ୟ ଇତିହାସ ଭଳି ଗଢ଼ିଉଠିଲା । ହିମାଳୟର କୈଳାସ ପର୍ବତରେ ଶିବଙ୍କର ବାସ । ଏଲୋରାର ନୂଆ କୈଳାସ ମନ୍ଦିର ମଧ ଶିବଙ୍କ ନାମରେ ନାମିତ । ବିନ୍ଧ୍ୟପର୍ବତକୁ ସେଥିପାଇଁ ଦାକ୍ଷିଣାତ୍ୟର ହିମାଳୟ ବୋଲି କୁହାଯାଏ । ଏପରିକି ଗଙ୍ଗା, ଯମୁନା, ସରସ୍ୱତୀ ଆର୍ଯ୍ୟବର୍ତ୍ତର ତିନି ନଦୀର ତିନିମୂର୍ତ୍ତି ଏଠାରେ ରଖାଯାଇଛି । ରାଜା ଧ୍ରୁବ ଏହି ତିନିମୂର୍ତ୍ତିକୁ ତାଙ୍କ ଉତ୍ତର ଭାରତ ଆକ୍ରମଣ ସମୟରେ ନେଇଥିଲେ ।

## ୯୫୦-୧୮୮୦ ମସିହା (ଗଜନୀ)

୮ଶହ ଶତାବ୍ଦୀରେ ଆରବୀୟମାନଙ୍କର ସିନ୍ଧ ଓ ଗୁଜରାଟ, ରାଜସ୍ଥାନ ଉପରେ ଅତର୍କିତ ଆକ୍ରମଣ ସମୟ ପରଠାରୁ ଦଶମ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ଇସଲାମ ଅନୁପ୍ରବେଶ ହୋଇ ନଥିଲା । ହିନ୍ଦୁ ଓ ମୁସଲିମମାନଙ୍କ ମଧରେ ସୌହାର୍ଦ୍ଦ୍ୟ ସୃଷ୍ଟି ସଂପର୍କ ଥିଲା ରାଷ୍ଟ୍ରକୁଟ ରାଜା ମୁସଲିମ ବ୍ୟବସାୟୀମାନଙ୍କୁ ସୁରକ୍ଷା ପ୍ରଦାନ କରିଥିଲେ । ମଣ୍ଡଳ ନିୟମାବଳୀ ଅନୁଯାୟୀ ଗୁରକାର ପ୍ରତିହାରୀ, ତାଙ୍କ ପଡ଼ୋଶୀ ଥିବା ସତ୍ତ୍ୱେ ସେମାନଙ୍କର ଶତ୍ରୁ ଥିଲେ । ସେମାନେ ଆରବୀୟମାନଙ୍କର ମଧ ଶତ୍ରୁ ଥିଲେ । ଶତ୍ରୁଙ୍କ ଶତ୍ରୁ ମିତ୍ର ନ୍ୟାୟରେ, ରାଷ୍ଟ୍ରକୁଟ ରାଜାମାନେ ଆରବିୟମାନଙ୍କୁ

ମିତ୍ର ବୋଲି ଭାବୁଥିଲେ। ପ୍ରତିହାରର ଅର୍ଥ 'ଦ୍ୱାର ରକ୍ଷକ'। ସେମାନେ ନିଜକୁ ଆର୍ଯ୍ୟାବର୍ତ୍ତର ଦ୍ୱାରପାଳକ ଭାବେ ଗଣୁଥିଲେ। ୯ମ ଶତାବ୍ଦୀର ମଧଭାଗରେ କୁଶାଣ ସାମ୍ରାଜ୍ୟର ଅବଶେଷ ସ୍ୱରୂପ ଗାଂଧାର ରାଜ୍ୟର ଉତ୍ତରପଶ୍ଚିମ ଅଞ୍ଚଳ ଓ ଆଫଗାନିସ୍ତାନର କିଛି ଅଞ୍ଚଳରେ ଗୋଟିଏ ଭାରତୀୟ ସାମ୍ରାଜ୍ୟକୁ 'ସାହାଇଜ'ଙ୍କ ରାଜ୍ୟ ବୋଲି ଗଣାଯାଉଥିଲା। ସାହାଇଜ ଶବ୍ଦର ଅର୍ଥ (ରାଜାଙ୍କ ରାଜା)। ଏ ଶବ୍ଦ କୁଶାନଙ୍କ ଦ୍ୱାରା ବ୍ୟବହାର କରାଯାଉଥିଲା। ଏମାନଙ୍କ ସହିତ କୁଶାନ ରାଜା କନିଷ୍କର ନାମ ଯୋଡାଯାଇଥିଲା।

ସାହାଇଜମାନେ ଗୁର୍ଜ୍ଜର, କାଶ୍ମୀରି ଓ ସିନ୍ଧି ଅଧିବାସୀଙ୍କୁ ଶତ୍ରୁ ବୋଲି ଭାବୁଥିଲେ ଓ ବେଳେ ବେଳେ ମିତ୍ର ଭାବରେ ମଧ ଗ୍ରହଣ କରୁଥିଲେ। କିନ୍ତୁ ସେମାନଙ୍କ ଶତ୍ରୁମାନେ କାବୁଲର ଦକ୍ଷିଣ-ପୂର୍ବ ଅଞ୍ଚଳକୁ ଓ ପରେ କାବୁଲକୁ ଅଧିକାର କରିନେଲେ। ଆଫଗାନିସ୍ତାନରେ ସାହାୟିଜମାନେ କେବଳ ଅଳ୍ପ ଅଞ୍ଚଳକୁ ଅଧିକାରରେ ରଖିପାରିଲେ। କିନ୍ତୁ ପଞ୍ଜାବରେ ସେମାନେ ଅଧିକାର ଦୃଢ଼ କଲେ ଓ ପ୍ରଥମ 'ହୁଣ୍ଡ'ରେ ରାଜଧାନୀ ସ୍ଥାପନ କଲେ, ମାତ୍ର ପରେ ଲାହୋରକୁ ଉଠାଇନେଲେ। କାବୁଲର ଶାସକ ସାବୁକ୍ତଜିନଙ୍କ ସହ, ସାହାୟିକ ରାଜା 'ଜୟପାଳ'ଙ୍କର ଯୁଦ୍ଧ ହେଲା। ହିନ୍ଦୁ ଓ ମୁସଲିମମାନଙ୍କ ମଧରେ ଏହା ଏକ ଐତିହାସିକ ଯୁଦ୍ଧ। ଯୁଦ୍ଧ ଘମାଘୋଟ ହେଲା। କିନ୍ତୁ କେହି ହେଲେ ବିଜୟୀ ହୋଇପାରିଲେ ନାହିଁ। ଆଫଗାନରେ ଶୀତ ପଡ଼ିଆସିଥିଲା। ମୁସଲିମ ଲେଖାରୁ ଜଣାପଡ଼େ ଯେ ଯୁଦ୍ଧକ୍ଷେତ୍ରରେ ଆକାଶରୁ ଅଗ୍ନିବର୍ଷଣହେଲା, ଝଡ଼ତୋଫାନ ମାଡ଼ି ଆସିଲା। ବର୍ଷା ବିଜୁଳି ଘଡ଼ଘଡ଼ିରେ ଥରି ଉଠିଲା ପୃଥିବୀ। ଡେର ସହ ଗନ୍ଧ ଉପୁଡ଼ି ଆସିଲା। ଜୟପାଳ ଶାନ୍ତି ଚୁକ୍ତି ପାଇଁ ବାର୍ତ୍ତା ପଠାଇଲେ। ସାବୁକ୍ତଜିନ ଏହାର ସୁଯୋଗନେଇ କେତେକ ଦୁର୍ଗ, ଅର୍ଥ ଓ ହାତୀ ବଦଳରେ ଚୁକ୍ତି କରିବାପାଇଁ ରାଜିହେଲେ।

ଜୟପାଳ ଏ ଚୁକ୍ତିକୁ ପରାଜୟ ବୋଲି ଭାବିନଥିଲେ। ପଞ୍ଜାବକୁ ଫେରିବା ପରେ ସାବୁକ୍ତଜିନଙ୍କ ଲୋକଙ୍କୁ ମୁଣ୍ଡ ଜାମିନ ରଖିଲାଭଳି ବ୍ୟବହାର କଲେ। ରାଗିଯାଇ ଲୋକମାନେ ଏଇ ମୂର୍ତ୍ତିପୂଜକମାନଙ୍କୁ ହତ୍ୟା କଲେ। ମନ୍ଦିର ଭାଙ୍ଗିଲେ, ମୂର୍ତ୍ତି ଚୋରିକଲେ। ଜୟପାଳ ପୁଣିଥରେ ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ। ରାଜା ଜୟପାଳ ଲକ୍ଷେ ସୈନ୍ୟ ଏକାଠି କଲେ। କନୌଜ ଆଜମୀର, ଦିଲ୍ଲୀ ଓ କାଲିନସ ଅଞ୍ଚଳର ସବୁ ସୈନ୍ୟ ଏକାଠି ହୋଇଥିଲେ। ସାବୁକ୍ତଜିନ ଗୋଟାଏ ପାହାଡ଼ ଉପରୁ ଏମାନଙ୍କ

ସମରସଜ୍ଜା ଦେଖି ଭୟଭୀତ ହୋଇ ନଥିଲେ। ବାଘ ମେଣ୍ଢାପଲକୁ ଶିକାର କରିବା ପରି ସେ ଭାରତୀୟ ସୈନ୍ୟଙ୍କ ଉପରେ କୁଦି ପଡ଼ିଲେ। ଜୟ ହେଲା ସାବୁକ୍ତଜିନଙ୍କର। ଦୁଇଶହ ହାତୀ, ବିପୁଳ ପରିମାଣରେ ଲୁଣ୍ଠନ ଦ୍ରବ୍ୟ, ଖାଇବର ପାଶ ଅଧିକାର ସହ ପଶ୍ଚିମ ପେଶୱାର ଦଖଲ କଲେ। ତାପରେ ହିନ୍ଦୁକୁଶ ଦିଗରେ ଆଗେଇଲେ। ହେରାଟ ଅଞ୍ଚଳରେ ଅନେକ ରାଜ୍ୟ ଜୟ କଲେ। ବାଗଦାଦ୍ ଖଲିଫାଙ୍କ ଦ୍ୱାରା ମାନ୍ୟତା ପାଇଲେ ଓ ହେଲେ ବି ଏକ ବିରାଟ ସାମ୍ରାଜ୍ୟର ମାଲିକ। ୯୯୭ରେ ସାବୁକ୍ତଜିନ ପ୍ରାଣତ୍ୟାଗ କଲେ। ପରେ ତାଙ୍କ ପୁତ୍ର ମହମ୍ମଦ ମାସୁଦ ଏ ସାମ୍ରାଜ୍ୟର ଅଧିକାରୀ ହେଲେ। ଚେହେରା ସୁନ୍ଦର। ତାଙ୍କ ମତରେ ପ୍ରତ୍ୟେକ ମୁସଲମାନଙ୍କର ଏକମାତ୍ର ଭଗବାନ ପ୍ରଦତ୍ତ ଗୁଣ– ମୂର୍ତ୍ତିର ଧ୍ୱଂସ ସାଧନ କରିବା। ଇସଲାମ ପରମ୍ପରା ଅନୁଯାୟୀ ଗଜନୀକୁ ମୁସଲମାନ ରାଷ୍ଟ୍ରର ରାଜଧାନୀ କରିବା ତାଙ୍କର ଲକ୍ଷ୍ୟ ଥିଲା।

ଆଲେକଜାଣ୍ଡରଙ୍କ ପରେ ଭାରତବର୍ଷ ଉପରେ ଗଜନୀ ଆକ୍ରମଣ ପରି ଆଉ କୌଣସି ଆକ୍ରମଣ ହୋଇନାହିଁ। ମହମ୍ମୁଦ ବର୍ଷକୁ ଥରେ ଏପରି ଆକ୍ରମଣ କରିବେ ବୋଲି ବୋଧେ ସିଦ୍ଧାନ୍ତ ନେଇଥିଲେ। ଯାହାଫଳରେ ସେ ଗଜନୀ ରାଜ୍ୟ ଓ ଭଗବାନଙ୍କର ଆନୁଗତ୍ୟ ରହିପାରିବେ ବୋଲି ଭାବିଲେ। ମହମ୍ମୁଦଙ୍କ ମତରେ ଧର୍ମର ମାନ ବଢ଼େଇବା, ଅଧିକାର ସାବ୍ୟସ୍ତ କରିବା, ସତ୍ୟର ମାନ ବଢ଼େଇବା, ନ୍ୟାୟର ହାତ ଦୃଢ଼ କରିବା ଓ ଏଥିପାଇଁ ନିଜର ଦୃଢ଼ ସଂକଳ୍ପ ହିଁ ତାଙ୍କର ଧର୍ମ। ସେଇ କାରଣରୁ ସେ ଭାରତ ଉପରେ ଦୃଷ୍ଟି ଦେଲେ। ୧୦୦୦ ମସୀହାର ବର୍ଷାରତୁ ପରେ ସେ ୧୬ଥର ଲୁଣ୍ଠନ କାର୍ଯ୍ୟରେ ବ୍ୟସ୍ତ ରହିଲେ। ପେଶୱାର ନିକଟରେ ୨୭ ନଭେମ୍ବର ୧୦୦୧ ମସୀହାରେ ଜୟପାଳଙ୍କ ଉପରେ ମହମ୍ମୁଦ ଦ୍ୱିତୀୟ ଥର ପାଇଁ ବିଜୟ ହାସଲ କଲେ। ଏଥିରେ ସେ ୧୫ ହଜାର ଲୋକ ଓ ଜୟପାଳଙ୍କୁ ବନ୍ଦୀ କଲେ। ୧୫ଟି ହାତୀର ବିନିମୟରେ ଜୟପାଳଙ୍କୁ ଛାଡ଼ି ଦିଆଗଲା। ପରେ ଜୟପାଲ ପୁତ୍ର ଆନନ୍ଦପାଳଙ୍କୁ ରାଜ୍ୟଦାନ କରି ନିଜ ଚିତାରେ ନିଜେ ଝାସ ଦେଲେ।

୧୦୦୪ରେ ମହମ୍ମୁଦ ପୁଣି ଭାରତ ଆସିଲେ। ଏଥର ଇନ୍ଦସ ପାର ହୋଇ ଆଉ ଏକ ଯୁଦ୍ଧରେ (ହୁଏତ ଝେଲମ ପାଖରେ ଭାଟିଆଠାରେ) ତାଙ୍କର ସବୁ ସଂପତ୍ତି ହାରିଲେ। ତହିଁ ପରବର୍ଷ ପୁଣି ମୂଲତାନ ଆକ୍ରମଣ କଲେ। ସେଠିକାର ଅମିର ଜଣେ ମୁସଲମାନ। ଅନଙ୍ଗପାଲ ମହମ୍ମୁଦଙ୍କୁ ତାଙ୍କ ନିଜ ସାମ୍ରାଜ୍ୟ ଭିତରେ ସହଜରେ ପଶିବାକୁ ଦେଲେ ନାହିଁ। ଆରମ୍ଭ ହେଲା ପୁଣି ଥରେ, ହତ୍ୟା, ଆଉ

ଲୁଣ୍ଠନ । ବିଦ୍ରୋହ ଦମନ ହେଲା । ମହମ୍ମୁଦଙ୍କୁ ଆଲେକଜାଣ୍ଡରଙ୍କ ଠାରୁ ଆହୁରି ପରାକ୍ରମୀ ବୋଲି ସମସ୍ତେ ଭାବିଲେ ଓ ଇଜିପ୍ଟ ପର୍ଯ୍ୟନ୍ତ ତାଙ୍କର ଖ୍ୟାତି ଲାଭକଲା ।

୧୦୦୮ରେ ମହମ୍ମୁଦଙ୍କ ଦ୍ୱାରା ଆନନ୍ଦପାଳଙ୍କ ସମଗ୍ର ରାଜ୍ୟ ଲୁଣ୍ଠିତ ହେଲା । ପୁରା ପଞ୍ଜାବକୁ ହାତକୁ ନେଲାପରେ ହିମାଚଳ ପ୍ରଦେଶ ନିକଟରେ ସେ କାଙ୍ଗ୍ରାରେ ମନ୍ଦିର ଧ୍ୱଂସ କଲେ । ସେଥିରେ ଅନଙ୍ଗପାଳଙ୍କ ଧନସଂପତ୍ତି ସବୁ ଏକତ୍ରୀତ ହୋଇଥିଲା । ସୁନାର ଏକ ଧାତୁ ପିଣ୍ଡ ଯାହାର ଓଜନ ଥିଲା ୧୮୦ କିଲୋ । ରୁପା ସବୁର ଓଜନ ଥିଲା ୨ ବିଲିୟନ ଟନ । ଗଜନୀ ଅନେକ ଭାରତୀୟଙ୍କୁ ହତ୍ୟା କଲେ ଓ ଧନସଂପତ୍ତି ଲୁଟିଲେ । ତଥାପି ତାଙ୍କ ମନରେ ଶାନ୍ତି ନଥିଲା ।

ବର୍ତ୍ତମାନ ଅନଙ୍ଗପାଳଙ୍କ ରାଜ୍ୟ ପଞ୍ଜାବରେ ଏକ ଛୋଟ ଅଂଶରେ ପରିଣତ ହୋଇସାରିଥିଲା । ଅନଙ୍ଗପାଳ ହାତୀ, ମୂଲ୍ୟବାନ ରତ୍ନ ଓ ବାର୍ଷିକ ସ୍ଥାୟୀ ସୁଧ ଦେବାକୁ ମହମ୍ମୁଦଙ୍କୁ କହିଲେ । ମହମ୍ମୁଦ ଏ ପ୍ରକାର ସର୍ତ୍ତରେ ରାଜି ହେଲେ ନାହିଁ । ୧୦୧୨ରେ ଥାନେଶ୍ୱର (ଦିଲ୍ଲୀର ଉତ୍ତର ଦିଗରେ ହର୍ଷଙ୍କ ରାଜ୍ୟ) ପାଖରେ ପହଞ୍ଚିଲେ । ପତନ ହେଲା ଥାନେଶ୍ୱରର । ଅକଳନୀୟ ଧନସଂପତ୍ତି ମହମ୍ମୁଦ ଅଧିକାର କରିନେଲେ ।

୧୦୧୮ରେ ସେ ମଥୁରାକୁ ଗତିକଲେ । ଏହା ଏକ ଧର୍ମସ୍ଥଳ । ଯମୁନା କୂଳରେ ଭଗବାନ ଶ୍ରୀକୃଷ୍ଣଙ୍କର ଜାଗା । ଏହିଠାରେ ଖେଳାଇ ହୋଇ ରହିଥିଲା ଗୁପ୍ତ ସାମ୍ରାଜ୍ୟର ଅସଂଖ୍ୟ ଶିଳ୍ପକଳା । ମଥୁରାର ମୂଳମନ୍ଦିର ମହମ୍ମୁଦଙ୍କୁ ବିମୋହିତ କରିଥିଲା । ନଷ୍ଟ ନ କରି ସେ ଫେରିଗଲେ । କନୌଜର ପ୍ରତିହାରି ରାଜା ମହମ୍ମୁଦଙ୍କୁ ଡରି ତାଙ୍କର ରାଜଧାନୀ, ସାତୋଟି ଦୁର୍ଗ ଓ ଦଶହଜାର ମନ୍ଦିର ଅସୁରକ୍ଷିତ ଭାବରେ ଛାଡ଼ି ପଳାୟନ କଲେ । ମହମ୍ମୁଦଙ୍କ ପାଇଁ ଏହା ଏକ ଥିଲା ସୁବର୍ଣ୍ଣ-ସୁଯୋଗ । ଏଠାରୁ ସେ ପାଇଥିଲେ ପ୍ରଚୁର ମୁଦ୍ରା ୨୦ ମିଲିୟନ ଡିରହାମସ, (ଆଫଗାନ ଅର୍ଥରେ) ତେପନ ହଜାର ଦାସ ଓ ୩୫୦ ହାତୀ ।

ପରେ ପରେ ମଧ୍ୟପ୍ରଦେଶର ଚାନ୍ଦେଲରେ ସେ ରାଜପୁତମାନଙ୍କୁ ଲୁଣ୍ଠନ କରିଥିଲେ । ଏ ଲୁଣ୍ଠନ ଫଳରେ ସେ ବିଶେଷ ଉପକୃତ ହୋଇ ନଥିଲେ । କିନ୍ତୁ ୧୦୨୫ରେ ସୋମନାଥ ମନ୍ଦିର ଆଡ଼କୁ ଅଗ୍ରସର ହେଲେ । ଏହା ହିନ୍ଦୁମାନଙ୍କର ଏକ ତୀର୍ଥସ୍ଥଳ । ସେଠି ପହଞ୍ଚିବାକୁ ହେଲେ ରାଜସ୍ଥାନର ମରୁଭୂମି ପାର ହୋଇ ମୂଲତାନରୁ ଜୟସାଲମର, ତା'ପରେ ଗୁଜରାଟ । କେବଳ ଘୋଡ଼ାସବାର ଓ ଓଟକୁ ବାହନକରି ସେ ଏ ଅଞ୍ଚଳ ଅତିକ୍ରମ କରିବା ସମ୍ଭବ ।

ମାହମ୍ମଦ ପହଞ୍ଚିଲେ ସୋମନାଥରେ । ନିର୍ଦ୍ଦୟ ଭାବରେ ହତ୍ୟାକଲେ ପଚାଶହଜାର ପୂଜକଙ୍କୁ ଓ ତୀର୍ଥଯାତ୍ରୀ ଦଳକୁ ପାଇଲେ ୨୦ ବିଲିୟନ ଡ୍ରିରହାମ ମୂଲ୍ୟର ସୁନା, ରୂପା ମଣି ଓ ମୁକ୍ତା । ତା'ପରେ ଶିବଲିଙ୍ଗକୁ ଖଣ୍ଡ ଖଣ୍ଡ କରି ଗଜନୀକୁ ପଠାଇଦେଲେ, ସେଠାର ମସ୍‌ଜିଦ ପାହାଚରେ ଖୋଳାଇ ଖୋଳାଇ ବିଛାଇ ଦେବାପାଇଁ । ଯାହାଫଳରେ ମୁସଲିମ ବିଶ୍ୱାସୀ ଭକ୍ତଙ୍କ ପାଦତଳେ ପ୍ରତ୍ୟେକ ମୁହୂର୍ତ୍ତରେ ହେବେ ନିର୍ଯ୍ୟାତିତ । ୧୦୩୦ରେ ମହମ୍ମୁଦ ମୃତ୍ୟୁବରଣ କଲେ । ଏତେ ହତ୍ୟା, ଆକ୍ରମଣ, ଲୁଣ୍ଠନ ପରେ ମଧ ତାଙ୍କର ରାଜ୍ୟ ଦଖଲ କରିବାର ଅଭିପ୍ରାୟ ନଥିଲା । ସେ କାଶ୍ମୀର, ମଧଭାରତ, ଗୁଜରାଟ, ଗାଓ୍ୱାଲିୟର ଦୁର୍ଗ ଇତ୍ୟାଦି ଅଧିକାର କଲେ ନାହିଁ । ପଞ୍ଜାବରେ ଥିବା ସାହାୟିଜ ରାଜ୍ୟ ହିଁ ତାଙ୍କର ଅଧିନରେ ଥିଲା । କେବଳ କେତେକ ସାଧାରଣ ଲୋକ ଓ ରାଜପୁତ୍ରମାନେ ନିଜ ଜୀବନ ଆଶାରେ ଧର୍ମାନ୍ତରିତ ହୋଇଥିଲେ । ୧୦୧୩ରେ ତ୍ରିଲୋଚନ ପାଲ, ଆନନ୍ଦପାଲଙ୍କ ପୁତ୍ର, ସାହାଇଜ ବଂଶର ଶେଷ ରାଜା ମହମ୍ମୁଦଙ୍କୁ ପ୍ରତିରୋଧ କରିଥିଲେ । ଅବଶେଷରେ ତ୍ରିଲୋଚନ ପାଲଙ୍କ ପତନ ହେଲା । ଧ୍ୱଂସ ପାଇଲା ସାହାୟିଜ ରାଜତ୍ୱ ।

## ତାନ୍‌ଜୋର ମହାବଳ ବାଘ–

ଧ୍ୱଂସର ସ୍ତୁପ ଉପରେ ଅଗ୍ରଗତିରେ ଚେହେରା ଲୁକ୍କାୟିତ ଥାଏ । 'ମରଣ ଭିତରେ ଜୀବନର ଭୂମିକା' ହିନ୍ଦୁଧର୍ମର ବିଶ୍ୱାସ । ସେଥିପାଇଁ ଥାଏ ପୁର୍ନଜନମର ଅବତାରଣା । ମହମ୍ମୁଦଙ୍କର ମୂର୍ତ୍ତିଖଣ୍ଡନ, ମନ୍ଦିର ଲୁଣ୍ଠନ, ସଂପତ୍ତି ଅପହରଣ, ଧନରତ୍ନ ଲୁଣ୍ଠନ ପଛରେ ଏହି ରହସ୍ୟ ଲୁଚି ରହିଥିଲା । ଭୁବନେଶ୍ୱରର ମନ୍ଦିର ମାଳା, ଅନେକ ଶତାବ୍ଦୀ ଧରି ଅନେକ ରାଜାଙ୍କର ଚେଷ୍ଟାରେଯୁଗ ଯୁଗ ଧରି ବିରାଜମାନ । ୭ମ ଶତାବ୍ଦୀରୁ ଆରମ୍ଭକରି ୧୩ ଶତାବ୍ଦୀ ପର୍ଯ୍ୟନ୍ତ । ଆକର୍ଷଣୀୟ ମୁକ୍ତେଶ୍ୱର, ରାଜରାଣୀ ଓ ଲିଙ୍ଗରାଜ ମନ୍ଦିର । ପଶ୍ଚିମରେ ମଥୁରା ଓ ସୋମନାଥ ମନ୍ଦିର ଅନ୍ୟତମ । ଖଜୁରାହୋ ଚନ୍ଦେଲାଙ୍କ ରାଜଧାନୀ, ମଧଭାରତର କେତେକ ମନ୍ଦିର ମଧ ଏହି ସମୟର ବୋଲି କୁହାଯାଏ । ରାଜା ଧଙ୍ଗାଙ୍କ ଅମଳର କାଶୀ ବିଶ୍ୱନାଥରେ ଥିବା ସୁନ୍ଦର ଓ ବିରାଟ ନନ୍ଦିଙ୍କ ମୂର୍ତ୍ତି ମଧ ଉଲ୍ଲେଖନୀୟ । ଖଣ୍ଡାରିହର ମହାଦେବ ମନ୍ଦିର (ଚନ୍ଦେଲା ସାମ୍ରାଜ୍ୟର) କାଳିନଜର ମଧ ଦୃଶ୍ୟମାନ ମନ୍ଦିର । ଭୁବନେଶ୍ୱର ଓ ଓଡ଼ିଶାର ମନ୍ଦିର ସବୁ ଏତେ ଦୂରରେ ଅବସ୍ଥିତ ଯେ ମୁସଲମାନଙ୍କ ନଜରକୁ ନ

ଆସିବା ସ୍ୱାଭାବିକ। ଖଜୁରାହ ଇତିହାସରୁ ଜଣାଯାଏ କି ସେତେବେଳେ ଶୈବ-ଶକ୍ତିର ପ୍ରଚଳନ ଥିଲା। ଉତ୍ତର ଭାରତ ଓ ଘୋର ଜଙ୍ଗଲ ପରିବେଷ୍ଟିତ ବିନ୍ଧ୍ୟ ପର୍ବତ, ଯେଉଁଠି ହର୍ଷ ତାଙ୍କର ବିଧବା ଭଉଣୀକୁ ରାଣୀ ଭାବରେ ପ୍ରତିଷ୍ଠିତ କରାଇଥିଲେ ଏ ସବୁ ରାଜ୍ୟରେ ମଧ୍ୟ ଅନୁପ୍ରବେଶ ମହମ୍ମଦ ଗଜନୀ କରିଥିଲେ। ସମୟ ବୋଧେ ୧୦୨୧ ମସୀହାର ବେଳ। ସୋମନାଥ ଉପରେ ଦୃଷ୍ଟି ପକାଇବା ପୂର୍ବରୁ। ମୌର୍ଯ୍ୟ ଓ ଗୁପ୍ତ ସାମ୍ରାଜ୍ୟ ପରେ ଚୋଳ ସାମ୍ରାଜ୍ୟ ମୁଣ୍ଡଟେକି ଉଠିଥିଲା। ସାହିତ୍ୟ, ଶିଳ୍ପକଳା, ଖୋଦେଇକାମ, ଚିତ୍ରକଳା ଓ ତମ୍ବାପତ୍ରରେ ଲେଖା ଚୋଳ ସାମ୍ରାଜ୍ୟର ବିଶେଷତ୍ୱ। ଚୋଳମାନେ ହେଉଛନ୍ତି ଦ୍ରାବିଡ଼ ସଂପ୍ରଦାୟ। ଅଶୋକଙ୍କ ସମୟର ଏକ ନାମକରା ସଂପ୍ରଦାୟ। ଶିଳାଲେଖରେ ଏମାନଙ୍କର ଉଲ୍ଲେଖ ଅଛି। ପ୍ରାଗୈତିହାସିକ କାଳରୁ ଏମାନେ କାବେରୀ ଉପତ୍ୟକାରେ ରହିଆସିଛନ୍ତି।

ଚୋଳମାନଙ୍କର କ୍ଷମତା ୯୮୫ରେ ରାଜରାଜ-୧ମଙ୍କ ଅମଳରେ ବୃଦ୍ଧିପାଇଲା। ଶ୍ରୀ ଲଙ୍କାର ବୌଦ୍ଧ ଧର୍ମାବଲମ୍ବିମାନଙ୍କୁ ଆକ୍ରମଣ କରି ଅନେକ ସ୍ତୁପ ଭାଙ୍ଗିପକାଇଥିଲେ। ଏହି ଚୋଳମାନଙ୍କୁ ଅଧିକ ପରିମାଣରେ ପ୍ରତିରୋଧ କଲେ ଚାଲୁକ୍ୟ ରାଜବଂଶୀୟମାନେ। ପୂର୍ବ ଓ ପଶ୍ଚିମ ଚାଲୁକ୍ୟ ସାମ୍ରାଜ୍ୟ ସହ ଚୋଳ ରାଜବଂଶ କଳହରେ ମାତି ରହିଲା। ରାଜରାଜ ଦେବ ତାଂଜୋରରେ ଏ ବୃହତ ଶିବ ମନ୍ଦିର ତୋଳାଇଥିଲେ। ନାମ ରଖିଥିଲେ 'ବିଦ୍ରଦେଶ୍ୱର' ବା ରାଜରାଜେଶ୍ୱର ବା ରାଜରାଜଙ୍କର ଭଗବାନ ଶିବଙ୍କ ମନ୍ଦିର। ମନ୍ଦିର ପାଇଁ ଭୂମିଦାନ, ଶସ୍ୟ ଉତ୍ପାଦନ, ସଂପତ୍ତି ଦାନ କରିବାରେ, ମନ୍ଦିରର ରକ୍ଷଣାବେକ୍ଷଣ ପାଇଁ ଓ ବର୍ଷକର ଅନ୍ୟାନ୍ୟ ଉତ୍ସବ ଆଦି ସମାପନ କରିବାରେ ଅନେକ ଦାତାଙ୍କର ଅବଦାନ ଥିଲା। ଏହାର ଦେଖାଚାହାଁ ରାଜାଙ୍କ ଲୋକଙ୍କଦ୍ୱାରା କରାଯାଉଥିଲା। ରାଜାରାଜ-୧ମଙ୍କ ଏ ମନ୍ଦିରପାଇଁ ଅବଦାନ ଅନେକ ଥିଲା ଓ ସବୁ ଯୁଦ୍ଧ-ଲୁଣ୍ଠନ ସଂପତ୍ତିରୁ ଏହାର ଅଭିବୃଦ୍ଧି ନିମନ୍ତେ ଖର୍ଚ୍ଚ କରୁଥିଲେ।

ଚୋଳ ସମ୍ରାଟମାନେ ଦକ୍ଷିଣ ଭାରତରେ ଭକ୍ତି-ଆନ୍ଦୋଳନ ମଧ୍ୟ ଜାରି ରଖିଥିଲେ। ଭକ୍ତି-ଆନ୍ଦୋଳନର ମୁଖ୍ୟ ବ୍ରାହ୍ମଣଙ୍କର ଆଧିପତ୍ୟ ଲୋପକରିବା। ତାହା ବୌଦ୍ଧ ଓ ଜୈନଧର୍ମର ଉଦ୍ଦେଶ୍ୟ ସହ ପ୍ରାୟ ସମାନ ଥିଲା। ୧୦୨୦ ମସୀହାରେ ଭେଙ୍ଗୀ (ଆନ୍ଧ୍ରପ୍ରଦେଶ)ରେ ରାଜେନ୍ଦ୍ର (ରାଜରାଜଙ୍କ ପୁଅ)ଙ୍କ ଜଣେ ସେନାପତି

ନିଜର ଛାଉଣୀ ବିସ୍ତାର କରିବା ସମୟରେ ଗଙ୍ଗ ସାମ୍ରାଜ୍ୟ ଅଧୀନରେ ଥିବା ଓଡ଼ିଶା (ଭୁବନେଶ୍ୱର) ଭିତରକୁ ପଶିଆସିଲେ। ଚୋଳ ସାମ୍ରାଜ୍ୟକୁ ଗଙ୍ଗାପାଣିରେ ପବିତ୍ର କରିବାପାଇଁ ତାଙ୍କୁ ଉତ୍ତରଦିଗକୁ ଗତି କରିବାକୁ ପଡ଼ିଥିଲା। ଗଙ୍ଗାଜଳ ପାଇବା ଆଶାରେ ସେ ଅନେକ ରାଜ୍ୟ ଜୟ କଲେ। ଅନେକ ରାଜାଙ୍କୁ ହଟାଇଲେ। କ୍ଷୀପ୍ରଗତିରେ ସବୁ ଘଟିଗଲା।

ମୂଳକଥା ହେଲା ପବିତ୍ର ଗଙ୍ଗାଜଳ। ବଡ଼ ବଡ଼ ପାତ୍ରରେ ଗଙ୍ଗା ଜଳ ଆଣି ରାଜା ରାଜେନ୍ଦ୍ରଙ୍କୁ ଦିଆଗଲା। ସେ ଅପେକ୍ଷା କରିଥିଲେ– ଗୋଦାବରୀ ନଦୀ କୂଳରେ। ତାଙ୍କ ବାପାଙ୍କ ଭଳି ମନ୍ଦିର ତୋଳାଇବାର ଇଚ୍ଛା ମଧ୍ୟ ତାଙ୍କର ଥିଲା। ଗଂଗାରୁ ଆସିଥିବା ଜଳକୁ ୫ କିଲୋମିଟର ଲମ୍ବ ଏକ ନାଳରେ ଢାଳି ଦିଆଗଲା। ନାମ ଦିଆଗଲା 'ଚୋଳ-ଗଂଗା'। ସେଠାକାର ସହର ନାମ ରହିଲା 'ଗଙ୍ଗାଇ-କୋଣ୍ଡା-ଚୋଲାପୁରମ'। ଅର୍ଥାତ୍ 'ଚୋଳଙ୍କ ସହର ଯେକି ଗଂଗାକୁ ଅଧିକାର କରିଥିଲେ'। ରାଷ୍ଟ୍ରକୁଟ ସାମ୍ରାଜ୍ୟର ଆଶାଥିଲା ଦାକ୍ଷିଣାତ୍ୟରେ ଆର୍ଯ୍ୟବର୍ତ୍ତ ଭଳି ସାମ୍ରାଜ୍ୟ କରିବେ। ଏକଥା ଜାଣିଥିଲେ ରାଜା ରାଜେନ୍ଦ୍ର। ସେଇଭଳି ଏକ ସାମ୍ରାଜ୍ୟ ଗଠନ କରିବାକୁ ସେ ଚେଷ୍ଟା କରିଥିଲେ। ସେ ସାମ୍ରାଜ୍ୟ ଏବେ ନାହିଁ, ସେ ସହର ନାହିଁ, ଚୋଲାଗଙ୍ଗା ମଧ୍ୟ ଶୁଖିଯାଇଛି।



# ରାଜପୁତ

ରାଜପୁତର ଅର୍ଥ ରାଜର ପୁତ୍ର । ସେମାନଙ୍କ ରାଜ୍ୟ ରାଜପୁତନା । ଏମାନଙ୍କୁ ସୈନ୍ୟ, ଯନ୍ତପାତି ସବୁ ମହଜୁଦ୍ ରଖିବାକୁ ଆବଶ୍ୟକ ପଡ଼େ କାରଣ ସଦାବେଳେ ବାହାର ଶତ୍ରୁଙ୍କୁ ମୁକାବିଲା କରିବାକୁ ହୁଏ । ପ୍ରଥମେ ଜେମସ୍ ଟଡ୍ ରାଜସ୍ଥାନରେ ରାଜପୁତ ମାନଙ୍କୁ ଠାବ କଲେ । ଦେଶର ନାଁ ଦେଲେ 'ରାଜପୁତନା' । ୧୮୨୯ରେ ଫରିସ୍ତା ଇତିହାସରେ ଆଦ୍ୟ ଇସଲାମିକ ଭାରତର ଜନ୍ ବ୍ରିଗସ୍ ରାଜପୁତନାର ରାଜପୁତ୍ରଙ୍କ ବିଷୟ ଲେଖିଛନ୍ତି । ୧୨ଶହରୁ ୧୮ଶହ ଶତାବ୍ଦୀ ପର୍ଯ୍ୟନ୍ତ ଏଇ ରାଜପୁତମାନେ ଯେଉଁ ବୀରତ୍ୱ ଦେଖାଇଛନ୍ତି ତାହା ଅବର୍ଣ୍ଣନୀୟ । ଚୌହାନ, ପ୍ରତିହାର ଓ ଭୋଜ ପରମରାସଙ୍କ ପରି, ସେମାନଙ୍କର ବିଶ୍ୱାସ କି ଆବୁ ପର୍ବତରୁ ନିର୍ଗତ ଜ୍ୱଳନ୍ତ ଅଗ୍ନିରୁ ବଳିଦନରୁ ଜନ୍ମନେଇ କ୍ଷତ୍ରୀୟ ପଦବୀ ପାଇଛନ୍ତି । ସମ୍ଭର ହ୍ରଦ ଓ ପୁଷ୍କର ନିକଟରେ କ୍ଷତ୍ରିୟ ପରିବାରରୁ ସେମାନଙ୍କର ଜନ୍ମ । ଗୁର୍ଜରମାନଙ୍କ ସହ ବିବାହସୂତ୍ରରେ ମଧ ବନ୍ଧା ହୋଇଥିଲେ । ୧୨ଶହ ଶତାବ୍ଦୀର ପ୍ରଥମ ଭାଗରେ ସେମାନେ ଏ ବନ୍ଧନରୁ ମୁକୁଳିଯାଇଁ 'ଅଜୟ-ରାଜା'ରେ ନୂଆ ରାଜଧାନୀ ବସାଇଲେ । ରାଜ୍ୟର ନା ହେଲା ଆଜମୀର । ରାଜା 'ବିଗ୍ରହ-ରାଜ' ଏଇ ବଂଶଜ । ସେ ଉତ୍ତରଦିଗକୁ ନିଜର ସାମ୍ରାଜ୍ୟ ସଂପ୍ରସାରଣ କରି ହରିୟାଣା ଓ ପୂର୍ବ ପଞ୍ଜାବ ପର୍ଯ୍ୟନ୍ତ ଅଧିକାର କଲେ । ଅଧିକାର କଲେ ଦିଲ୍ଲୀ ବି, ଏ ବୀରତ୍ୱ କାହାଣୀକୁ ଲିପିବଦ୍ଧ କରିବାପାଇଁ ସେ ଅଶୋକ ସ୍ତମ୍ଭକୁ ମନୋନୀତ କଲେ । ଏ ସ୍ତମ୍ଭ ସେତେବେଳେ ଯମୁନା କୂଳରେ ଥିଲା । କିନ୍ତୁ ୨ୟ ଶତାବ୍ଦୀରେଏହାକୁ ଦିଲ୍ଲୀ ଅଣାଯାଇଥିଲା । ଏଇ ଖୁମ୍ବରେ ବିଗ୍ରହରାଜ ତାଙ୍କ ବୀରତ୍ୱର କାହାଣୀ ଲିପିବଦ୍ଧ କରିଥିଲେ । ସେଥିରେ ବି ଲେଖାଥିଲା କି ପତନପ୍ରାୟ ଗଜନୀ ଭିତସଙ୍କ ସହ ସେ ଯୁଦ୍ଧ କରିଥିଲେ । ବିଗ୍ରହ ରାଜଙ୍କର ମୃତ୍ୟୁ ହେଲା ୧୧୬୫ରେ । ଏହି ବଂଶର ରାଜା ପୃଥ୍ୱୀରାଜ । ବିଗ୍ରହରାଜଙ୍କ ପରେ ରାଜଗାଦୀ ପାଇଁ କଳହ ସୃଷ୍ଟି ହେଲା । ରାଜପୁତମାନେ କେବେହେଲେ ନିଜ ନିଜ ଭିତରେ ଅନୁରତ ନୁହନ୍ତି । ସର୍ବଦା ଭାଗ ଭାଗ । ପୃଥ୍ୱୀରାଜ ରାଜଗାଦି ଅଳଙ୍କୃତ କଲେ ଖୁବ୍ ଅଳ୍ପ ବୟସରେ । ପ୍ରାୟ ୧୧୮୨

profssmishra@gmail.com

ବେଳକୁ ମହମ୍ମଦ ଘୋରୀ ସିନ୍ଧ ଆକ୍ରମଣ କଲେ। ସେଠାରେ ସେ ମୁସଲମାନ ଶାସକଙ୍କୁ ହଟାଇ ଇନ୍ଦସ (ମନସୁରା ଓ ଦେବାର) ଦିଗକୁ ଅଗ୍ରସର ହେଲେ। ମହମ୍ମଦ ଗଜନୀଙ୍କର ସୋମନାଥ ମନ୍ଦିର ଲୁଣ୍ଠନ କାହାଣୀ ଘୋରୀଙ୍କ ଆଖି ଆଗରେ ନାଚୁଥିଲା। ଲୁଣ୍ଠନ ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା। ସେଥିପାଇଁ ଘୋରୀ ଥର ମରୁଭୂମି ଅତିକ୍ରମ କରି ଗୁଜରାଟର ସୋଲାଙ୍କି ଆକ୍ରମଣ କଲେ। ମୁସଲମାନମାନଙ୍କର ବିଶ୍ୱାସ ଥିଲା କି ମନ୍ଦିର ନଷ୍ଟ, ମୂର୍ତ୍ତି ନଷ୍ଟ ଓ ସହରମାନଙ୍କରେ ଧନସଂପତ୍ତିକୁ ଅକ୍ତିଆରକୁ ନେଇ ଆସିପାରିବେ। କିନ୍ତୁ ହିନ୍ଦୁମାନଙ୍କୁ ଦମନ କରିବାପରେ ହିଁ ଦିଲ୍ଲୀ ଅଧିକାରର ରାସ୍ତା ଖୋଲିଯିବ। ମୁସଲମାନ ଅନୁପ୍ରବେଶକାରୀ ଓ ଧର୍ମ ପ୍ରଚାରକମାନେ ସେତେବେଳକୁ ବଲହାରାରେ ପୂର୍ଣ୍ଣ ସ୍ୱାଧୀନତା ପାଇଥିଲେ। ହିନ୍ଦୁମାନେ ମଧ୍ୟ ସିନ୍ଧ ଓ ପଞ୍ଜାବରେ ରାଜ୍ୟ କରୁଥିଲେ।

କେତେକ ମୁସଲମାନ ମହମ୍ମଦ ଗଜନୀଙ୍କ ସମୟରୁ ଭାରତରେ ରହିଯାଇଥିଲେ। ଏପରିକି ଆଜମୀରର ବାସିନ୍ଦାବୋଲି ମଧ୍ୟ ଗଣାଯାଉଥିଲେ। ସେଠାରେ ସେଖ ମିଉ-ଉଦ୍ଦିନ ଚିସ୍ତି ନାମକ ଜଣେ ବ୍ୟକ୍ତି ସୁଫି ମୁସଲିମ ସଂପ୍ରଦାୟର ପ୍ରସାର ଓ ପ୍ରଚାର ନିମନ୍ତେ ଆନ୍ଦୋଳନ ଚଳାଇଥିଲେ। ପୃଥ୍ୱୀରାଜ ଏ ଆନ୍ଦୋଳନକୁ ଦମନ କରିଥିଲେ। ଏଣେଘୋରୀ ଭାରତବର୍ଷରେ ଭିତରକୁ ଭିତରକୁ ପଶିବାପାଇଁ ପୃଥ୍ୱୀରାଜଙ୍କ ସାହାଯ୍ୟ ମାଗିଲେ। ପୃଥ୍ୱୀରାଜ ଏପରି ସାହାଯ୍ୟ କରିବାକୁ ବାରଣ କଲେ। ୧୧୯୧ରେ ଘୋରୀ ପଞ୍ଜାବର ଗୋଟେ ଦୁର୍ଗ ଉପରେ ଆକ୍ରମଣ କରି ଅଧିକାର କରିନେଲେ। ଦୁର୍ଗର ସୁରକ୍ଷା ପାଇଁ ପୃଥ୍ୱୀରାଜ ତାରାଇନର ଥାନେଶ୍ୱର (ଦିଲ୍ଲୀଠାରୁ ୧୫୦ କିଲୋମିଟର ଦୂର) ନିକଟରେ ତାଙ୍କର ଜଣେ ଅନୁଗତ ଗୋବିନ୍ଦରାଜଙ୍କୁ ନେଇ ଘୋରୀଙ୍କୁ ମୁକାବିଲା କଲେ। ଗୋବିନ୍ଦରାଜଙ୍କ ବର୍ଚ୍ଛା ଆଘାତରେ ଘୋରୀ ମୃତ ପ୍ରାୟ ହୋଇଗଲେ। କିନ୍ତୁ ଠିକ୍ ସମୟରେ ତାଙ୍କର ଅନୁଗତ ସୈନ୍ୟମାନେ ଘୋରୀଙ୍କୁ ଯୁଦ୍ଧକ୍ଷେତ୍ରରୁ ଟେକିନେଲେ। ସେଥିପାଇଁ ପୃଥ୍ୱୀରାଜଙ୍କ ସେନାବାହିନୀ ଆଉ ଆକ୍ରମଣ ନ କରି ଯୁଦ୍ଧଷେତ୍ର ଛାଡ଼ିଦେଲେ। କାରଣ ଘୋରୀଙ୍କ ସେନାବାହିନୀର ଛତ୍ରଭଙ୍ଗ ଓ ପଳାୟନକୁ ସେ ବିଜୟ ବୋଲି ଭାବିଲେ।

ସେଇ ସମୟରେ ପୃଥ୍ୱୀରାଜ (ସିରହିନ୍ଦ ଓ ଭାଟିନ୍ଦା) ଅଧିକାର କଲେ। ଘୋରୀ ଗଜନୀ ଫେରିଗଲେ। କିନ୍ତୁ ଅପମାନିତ ହେଲେ। ପୃଥ୍ୱୀରାଜଙ୍କୁ ଜୟ

କରିବା ହେଲା ତାଙ୍କର ମୂଳ ଉଦ୍ଦେଶ୍ୟ। ମହମ୍ମଦ ଘୋରୀ ଫେରିଗଲେ ସତ ହେଲେ ଅନ୍ୟାନ୍ୟ ରାଜ୍ୟକୁ ଡାକରାଦେଲେ। ତାଙ୍କ ସହିତ ଯୋଗ ଦେଲେ ଆଫଗାନ, ପର୍ଶିୟା ଓ ଆରବ। ଟର୍କିର ସେନା ବାହିନୀ ମଧ୍ୟ ମିଶିଗଲେ। ୧୧୯୨ ବେଳକୁ ଘୋରୀ ପୁଣି ପଞ୍ଜାବରେ ପହଞ୍ଚିଲେ। ସାଙ୍ଗରେ ବିପୁଳ ସେନାବାହିନୀ। ତା ସହିତ ଅନ୍ୟାନ୍ୟ ସାମ୍ରାଜ୍ୟର ସମର୍ଥନ। ପୃଥ୍ୱୀରାଜଙ୍କ ବୟସ ମାତ୍ର ୨୦ ବର୍ଷ। ଘମାଘୋଟ ଯୁଦ୍ଧ ହେଲା। ପ୍ରଥମ ଯୁଦ୍ଧର ଯୋଦ୍ଧା ଗୋବିନ୍ଦରାଜ ନିହତ ହେଲେ। ଲକ୍ଷେରୁ ଉପରେ ସୈନ୍ୟ ମତ୍ୟୁବରଣ କଲେ। ଶେଷରେ ପୃଥ୍ୱୀରାଜ ସନ୍ଧିପାଇଁ ବାର୍ତ୍ତା ପଠାଇଲେ। ରାଜିହେଲେ ଘୋରୀ। କିନ୍ତୁ କୁଟିଳତା ମଣିଷ ପ୍ରକୃତିର ଏକ ଅଙ୍ଗ। ସନ୍ଧିପାଇଁ ପ୍ରତ୍ୟକ୍ଷରେ ରାଜି ହେଲେ କିନ୍ତୁ ପରୋକ୍ଷରେ ଯୁଦ୍ଧପାଇଁ ପ୍ରସ୍ତୁତି କଲେ। ବନ୍ଦୀ କଲେ ପୃଥ୍ୱୀରାଜଙ୍କୁ। ପରେ ହତ୍ୟା ମଧ୍ୟ କରାଗଲା। ଆର୍ଯ୍ୟାବର୍ତ୍ତର 'ଦିଲ୍ଲୀ ଫାଟକ' ମୁସଲମାନମାନଙ୍କ ପାଇଁ ଖୋଲା ରହିଲା। ରୋମ ସାମ୍ରାଜ୍ୟର ପତନ ପରି ପତନ ହେଲା ଭାରତର ହିନ୍ଦୁ ସାମ୍ରାଜ୍ୟ।

## ମହମ୍ମଦ ଘୋରୀ

ମହମ୍ମଦ ଘୋରୀ ହିଁ ପ୍ରଥମେ ଟର୍କି ଓ ଆଫଗାନ ମାନଙ୍କର ରାଜୁତି ଭାରତ ମାଟିରେ ପୋତିଲେ। ପ୍ରଥମରେ ଦିଲ୍ଲୀ, ପରେ ଗୁଜୁରାଟ, ମାଲୱା, ଜୌନପୁର, ବଙ୍ଗଳା ଓ ଦାକ୍ଷିଣାତ୍ୟ ଅଧିକାର କରିବାର ସୁଯୋଗ ପାଇଲେ। ଆଜମୀର ରନଥୋମ୍ବର, ଗୋଆଲିୟର, କାଲିନଝର ମଧ୍ୟ ହାତକୁ ନେଲେ। ଏସବୁ ରାଜ୍ୟ ଜୟକଲେ ସତ କିନ୍ତୁ ପରେ ପରେ ଗଜନୀ ଫେରିଗଲେ। ଉଦ୍ଦେଶ୍ୟ ଥିଲା ଲୁଣ୍ଠନ- ରାଜ୍ୟଶାସନ ନୁହେଁ।

ପରେ କେବଳ ମଧ୍ୟ ଭାରତରେ କିଛିଟା ଆଧିପତ୍ୟ ବିସ୍ତାର କରିଥିଲେହେଁ ୧୨୦୧ରେ ବାଗଦାଦ୍ ଖଲିଫାଙ୍କର ପ୍ରରୋଚନାରେ 'କାସପିୟାନ ସାମ୍ରାଜ୍ୟ' ଜୟ କଲେ। 'କୋରାସନ'କୁ ଅଧିକାର କରିବାକୁ ଚେଷ୍ଟା କଲେ ସତ କିନ୍ତୁ ସମର୍ଥ ହୋଇପାରିଲେ ନାହିଁ। ଉତ୍ତରପଶ୍ଚିମ ଆଫଗାନିସ୍ଥାନରେ ହାରିଯାଇ ଘୋରୀ ନିଜ ରାଜ୍ୟ ଗଜନୀ ଉପରେ ବିପଦ ଘନେଇଆସିବାର ଜାଣିପାରିଲେ। ଗଜନୀରୁ ଲାହୋର ଭିତରେ ଯେଉଁ ସମ୍ବାଦ ମିଳିଲା ସେଥିରେ ଜଣାଗଲା କି ପଞ୍ଜାବର ଏକ ପାହାଡ଼ିଆ ଜନଜାତିଙ୍କର ବିଦ୍ରୋହର ସୂତ୍ରପାତ ହୋଇଛି। ୧୨୦୬ ବେଳକୁ ଏ ବିଦ୍ରୋହ

ଦମନ କଲେ ସତ କିନ୍ତୁ ରାତ୍ରିର ଅନ୍ଧକାରରେ ବିଦ୍ରୋହୀ ଘାକରାମାନେ କୌଣସି ଉପାୟରେ ଘୋରୀଙ୍କ ଛାଉଣୀ (ଝେଲମ ନଦୀ କୂଳରେ) ଭିତରେ ପଶି ଘୋରୀଙ୍କୁ ଆଘାତ କଲେ। ଶେଷରେ ପ୍ରାଣତ୍ୟାଗ କଲେ ଘୋରୀ। ବତିଶ ବର୍ଷର ରାଜୁତି ଲୋପ ପାଇଗଲା। ଘୋରୀଙ୍କ ଭାରତରେ ସାମ୍ରାଜ୍ୟ ସ୍ଥାପନର ଆଧାର ଥିଲେ ତୁର୍କିସ୍ତାନର ତାଙ୍କ ସେନାବାହିନୀର କମାଣ୍ଡର କୁତବୁଦ୍ଦିନ ଆଇବାକ– ସବୁଠୁ ବିଶ୍ୱସ୍ତ କମାଣ୍ଡର। ଘୋରୀଙ୍କର ନିଜସ୍ୱ ସନ୍ତାନ କେହି ନଥିଲେ। ସେ ଆଇବାକ୍‌ଙ୍କୁ ନିଜର ଉତ୍ତରାଧିକାରୀ ରୂପରେ ମନୋନୀତ କରିଥିଲେ।

ମହମ୍ମଦ ଘୋରୀଙ୍କ ପରେ କୁତୁବୁଦ୍ଦୀନ ଆଇବାକ ସିଂହାସନରେ ବସିବାର ଯୋଗ୍ୟତା ହାସଲ କଲେ। ଆଉ ପ୍ରତିଷ୍ଠା କଲେ ଦାଶ-ବଂଶ। ୪ ବର୍ଷର ଶାସନ ଭିତରେ ରାଜଧାନୀ କଲେ ରାୟପିଥୋରା। କିନ୍ତୁ ଦିଲ୍ଲୀ କାଳକ୍ରମେ ତାର ନିଜର ପାରିପାର୍ଶ୍ୱିକ ଅବସ୍ଥିତିକୁ ନେଇ କ୍ଷମତାର କେନ୍ଦ୍ରବୁନ୍ଦୁ ହୋଇଗଲା। ଇତିହାସ ଦିଲ୍ଲୀ ଚାରିପାଖରେ ଘୁରିବୁଲିଲା। ଆଇବାକ ତୁର୍କିସ୍ତାନର ଶାସନ ପ୍ରଣାଳୀ ପ୍ରୟୋଗ କଲେ ଦିଲ୍ଲୀରେ। ତାଙ୍କ ଶାସନକାଳ ଭିତରେ ସେ ତାଙ୍କ ରାଜୁତିର ଚିହ୍ନ ଦିଲ୍ଲୀ ସହରରେ ଲିପିବଦ୍ଧ କରିଯାଇଛନ୍ତି। ଏଥିପାଇଁ ସେ ତୋଳାଇଲେ କୁୱାତ-ଉଲ-ଇସଲାମ ମସଜିଦ୍– ଏହା ନିଜ ସୌନ୍ଦର୍ଯ୍ୟରେ ନିଜେ ଅଦ୍ୱିତୀୟ। ଭାଙ୍ଗିଲେ ଜୈନମନ୍ଦିର ଓ ୨୭ଟି ହିନ୍ଦୁ ମନ୍ଦିର। ସେଇ ସାମଗ୍ରୀରେ ଏ ମସ୍‌ଜିଦ ଗଢ଼ିଲେ। କୁହାଯାଏ ୧୨୦୦ ମସୀହାରେ କୁତବମିନାର ମଧ ଗଢ଼ିଲେ। ବୋଧେ ଗଜନୀର ଟାୱାର ଷ୍ଟାଇଲରେ ଏ ବିଜୟର ଖୁମ୍ବ ତୋଳାଇଲେ। କୋଇଁ ଇଲତୁତମିସ କୁତବମିନାରକୁ ସଂପୂର୍ଣ୍ଣ କଲେ ବୋଲି ଅନୁମାନ କରାଯାଏ।

ମୁସଲମାନଙ୍କ ରାଜତ୍ୱକୁ କୌଣସି ହିନ୍ଦୁ ବିରୋଧ କରି ନଥିଲେ। ଆଇବାକ ପୃଥ୍ୱୀରାଜଙ୍କ କିଲା ଭିତରେ 'ଜସ୍ତେ ସଫେଦ' ତିଆରି କଲେ। ଏହାର ଚିହ୍ନବର୍ଣ୍ଣ ଏବେ ନାହିଁ। କନିଂହାମଙ୍କ ମତରେ ମନ୍ଦିରର ଚୌଷଠ ଖୁମ୍ବ ମଧ୍ୟରୁ ଚନ୍ଦ୍ରଖୁମ୍ବ ବ୍ୟତିତ ଆଉ ସବୁ ଖୁମ୍ବ ଭାଙ୍ଗିଦେଇଥିଲେ। ଏହି ଚନ୍ଦ୍ରଖୁମ୍ବର ଚଉତରା ଏବେବି ମସଜିଦର ମୁଳଦୂଆ। କୁତୁବ ସାହେବଙ୍କ ମସଜିଦ୍ ଦେଖିବାକୁ ଅତି ସାଧାରଣ। ଏ ମସଜିଦ୍‌ର ତିନୋଟି ଦରଜା।

ସେ ସମୟରେ ଖିଜରିଙ୍କ ନାଁ ବେଶ ଜଣାଶୁଣା। ସେ ଜଣେ ସନ୍ୟାସୀ। ରାମଜାନ ମାସ। ଖିଜରି 'ରୋଜା' ପାଳନ କଲେ। ତାଙ୍କ ମଜଲିସରେ ଆକାଶରୁ

ରୋଟି ଖସୁଥିଲା । ତାକୁ କହୁଥିଲେ 'କାକ୍' । ଏ ରୋଟି ସବୁ ଗରିବ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ସେ ପଦ୍ଧତି ହୁଏତ ଏବେ ବି ଚାଲୁ ରହିଛି । କିନ୍ତୁ ଆକାଶରୁ ରୋଟି ଖସୁଛି କି ନାହିଁ ଜଣାନାହିଁ । କୁତବୁଦ୍ଦିନଙ୍କ ପରେ ତାଙ୍କ ପୁଅ ଆରାମ ସାହ ରାଜଗାଦିରେ ବସିଲେ । କିନ୍ତୁ ରାଜ୍ୟ ପରିଚାଳନାରେ ତାଙ୍କର ଦୁର୍ବଳତା ଦେଖି କୁତୁବୁଦ୍ଦିନଙ୍କ ଜ୍ୱାଇଁ ଇଲତୁତମିସ ରାଜଗାଦିରେ ବସି ରାଜ୍ୟଶାସନ ଚଳାଇଲେ । ରାଜଧାନୀ ମଧ୍ୟ ଦିଲ୍ଲୀକୁ ସ୍ଥାନାନ୍ତରିତ କଲେ ।

## ଇଲତୁତମିସ

ଇଲତୁତମିସ ଅନୁଭବ କରିଥିଲେ କି ତୁର୍କି ରାଜ୍ୟମାନଙ୍କୁ ଭାରତକୁ ଅନୁପ୍ରବେଶ କରିବାକୁ ସୁଯୋଗ ଦେବା ଉଚିତ ନୁହେଁ । ଆଉ ଯଦି ନିଜ ରାଜଧାନୀ ଦିଲ୍ଲୀକୁ ନ ଉଠାଇ ଦିଅନ୍ତି ତେବେ ବାହାର ଶତ୍ରୁଙ୍କୁ ସମ୍ଭାଳିବା ମୁଷ୍କିଲ ହେବ ।

## ଇଲତୁତମିସଙ୍କ ଶାସନ—

ଏ ବେଳରେ ରାଜସ୍ୱ ବିଭାଗ ଓ ସୈନ୍ୟବିଭାଗର ସଂଯୋଗ ସୁଦୃଢ଼ ଥିଲା । ଇସଲାମର ପବିତ୍ର ସାରିଆ ଆଇନ ବଳରେ ସେ ୪ଟି ପୃଥକ ପୃଥକ ଉପାୟରେ ରାଜସ୍ୱ ଆଦାୟ କରୁଥିଲେ ।

୧. କୃଷିଜାତ ଦ୍ରବ୍ୟର ଏକ ପଞ୍ଚମାଂଶ ଆଦାୟ
୨. ଅଣମୁସଲମାନ ଜନତାଙ୍କଠାରୁ ଜିଜିୟାକର ଆଦାୟ
୩. ଯୁଦ୍ଧକ୍ଷେତ୍ରରୁ ହେଉଥିବା ଲୁଣ୍ଠନ ଦ୍ରବ୍ୟର ଏକପଞ୍ଚମାଂଶ
୪. ମୁସଲମାନ ପରିବାରଙ୍କର ସୁରକ୍ଷାପାଇଁ ମଧ୍ୟ ସେମାନଙ୍କଠାରୁ କର ଆଦାୟ କରୁଥିଲେ ।

ରାଜଗାଦି ଆରୋହଣ ପରଠାରୁ ସେ ହିନ୍ଦୁରାଜାମାନଙ୍କ ସହ ଲଢ଼ାଇ କରୁଥିଲେ । ସିଂଧି ଓ ପଞ୍ଜାବ ସହ ସଦାସର୍ବଦା ଲଢ଼ାଇରେ ବ୍ୟସ୍ତ ଥିଲେ । ଚେଙ୍ଗିଜ୍ ଖାଁ ସେତେବେଳକୁ ଇନ୍ଦସ ପାର ହୋଇସାରିଥିଲେ । ତୁର୍କୀସ୍ଥାନ, କୋରାସନ ଓ ଆଫଗାନିସ୍ଥାନରୁ ମଙ୍ଗୋଲିୟାନମାନଙ୍କ ଆକ୍ରମଣ ମଧ୍ୟ ବୃଦ୍ଧି ପାଇଥିଲା ।

ଦିଲ୍ଲୀର ପୂର୍ବରେ ଉତ୍ତର ପ୍ରଦେଶ, ବିହାର ଓ ବଙ୍ଗଳାର ସ୍ଥାୟୀ ମୁସଲମାନ ବାସିନ୍ଦାଙ୍କ ସହ ମଧ୍ୟ ଲଢ଼ାଇ ଚାଲିଥିଲା । ଇଲତୁତମୀସଙ୍କ ସମୟରେ ଜଣେ ମୁସଲମାନ

ସାଧୁ ଥିଲେ। ଏହାଙ୍କ ଜନ୍ମ ତୁର୍କୀରେ। ଅଢ଼େଇବର୍ଷ ବୟସରେ ତାଙ୍କର ପିତାଙ୍କର ମୃତ୍ୟୁ ଘଟିଲା। ମାଙ୍କ ଯତ୍ନରେ ପ୍ରତିପାଳିତ ଏ ବାଳକ ପ୍ରଥମେ କୋରାସନ ଓ ବାଗଦାଦ୍‌କୁ ଯାଇଁ ପରେ ଭାରତକୁ ଆସିଥିଲେ। ଅଜମୀରର ଖ୍ୱାଜା ମଇଉଦ୍ଦିନ ଚିସ୍ତିଙ୍କ ଶିଷତ୍ୱ ଗ୍ରହଣ କଲେ। 'କାକୀ' ପଦବୀ ତାଙ୍କୁ ମିଳିଥିଲା। ଏଇ ସାଧୁଙ୍କ ରମଜାନ ଉପବାସ ସମୟରେ କାକ୍ (ଛୋଟ ରୁଟି) ଆକାଶରୁ ଖସୁଥିଲା। ତାଙ୍କ ମୃତ୍ୟୁ ହେଲା ନଭେମ୍ବର ୧୫, ୧୨୩୬ ଖ୍ରୀଷ୍ଟାବ୍ଦରେ।

ମୁସଲମାନ ସଂପ୍ରଦାୟର ଲୋକ ମୋଗଲ ବାଦଶାହମାନଙ୍କ ମଧ୍ୟରୁ ଅନେକ ଏଇ ସାଧୁଙ୍କ କବରପାଖରେ କବର ନେବାକୁ ଚାହିଁଥିଲେ– ଯଥା ଆଲମଶାହ–୧ମ, ଆଲାମସାହ–୨ୟ ଓ ଆକବର ସାହ ୨ୟ। ତାଙ୍କ କବର ସହ କିଛି ଅଂଶ ମଧ ବାଦଶାହାମାନେ ଯୋଡୁଥିଲେ। ଏ ସନ୍ଥ ଫତେହ ମସଜିଦ ଓ ଓ୍ୱାଲିୟା ମସଜିଦରେ ଅନୁଷ୍ଠିତ ହେଉଥିବା କାର୍ଯ୍ୟକ୍ରମରେ ବେଶ୍ ଭାଗ ନେଉଥିଲେ। ଇଲତୁତମିଶଙ୍କ ଅମଳରେ ଦିଲ୍ଲୀ ବାହାରେ ଗୋଟେ ବଡ଼ ଜଳାଶୟ ଥିଲା। ଏଥିରେ ବର୍ଷାପାଣି ଜମୁଥିଲା ଓ ସେଇ ପାଣିକୁ ଦିଲ୍ଲୀବାସୀ ବ୍ୟବହାର କରୁଥିଲେ। ଏ ପୋଖରୀ ଗଜନୀ ଫାଟକ ନିକଟରେ ଅବସ୍ଥିତ। ୨ ମାଇଲ ଲମ୍ବ ଓ ୧ ମାଇଲ ଚଉଡ଼ା ଏହାର ପରିଧି। ପୋଖରୀ ମଝିରେ ଛୋଟ ଛୋଟ ଟେରାସ ତିଆରି ହୋଇଥିଲା। ପାହାଚ ମଧ ଥିଲା ତଳ ପାହାଚର ପାଣି ପର୍ଯ୍ୟନ୍ତ। ଟେରାସରେ ଦର୍ଶକମାନଙ୍କ ପାଇଁ ବସିବାର ଜାଗା। ପୋଖରୀ ଭିତରେ ପଥରରେ ଏକ ପାଭେଲିୟାନ ତିଆରି ହୋଇଥିଲା। ପୋଖରୀରେ ପାଣି ପୁରା ହୋଇଗଲେ ଡଙ୍ଗା ସାହାଯ୍ୟରେ ଏଇ ଟେରାସ ପାଖରୁ ଯାଇହେବ। ଆଉ ପାଣି ନଥିଲେ ଭିତରକୁ ଚାଲି ଚାଲି ଯାଇପାରିବ। ମସଜିଦ୍ ମଧ ଥିଲା ଗରୀବ ଲୋକଙ୍କ ପ୍ରାର୍ଥନା ପାଇଁ। ପାଣି ଶୁଖିଗଲେ ସେ ଜାଗାରେ ଆଖୁ ଇତ୍ୟାଦି ଚାଷ ହୋଇଥାଏ।

## ମଟକା ପୀର

ମଟକା ସାହ ବାବାଙ୍କ ସ୍ମୃତିମନ୍ଦିର ପ୍ରଗତି ମଇଦାନ ନିକଟରେ ଦିଲ୍ଲୀ ମଥୁରା ରାସ୍ତାରେ ଦେଖାଯାଏ। ଇଲତୁତମିସଙ୍କ ସମୟର ଏ ବାବା କୁତୁବୁଦ୍ଦିନ ଭକ୍ତିୟାରଙ୍କ ସମସାମୟିକ। ସେ ସିରିଆରୁ ମହମ୍ମଦ ଘୋରୀଙ୍କ ଆକ୍ରମଣ ପରେ ଦିଲ୍ଲୀ ଆସିଥିଲେ।

କୁତୁବୁଦ୍ଦିନ ଆଇବାକ, ଇଲତୁତମିସଙ୍କ କନ୍ୟା ରେଜିୟା ଓ ସାଜିୟା ମଟକା ବାବାଙ୍କ ଭକ୍ତ। ୧୨୨୧ରେ ଚେଙ୍ଗିଜ୍ ଖାଁ ଦିଲ୍ଲୀ ଆକ୍ରମଣ କଲେ। ଭୟରେ ଥରହର ହେଲା ଦିଲ୍ଲୀ ସହର। ଭୟ ପାଇଲେ ସୁଲତାନ ବି। ବାବା ପ୍ରସ୍ତାବ ଦେଲେ ସୁଲତାନ ଇଲତୁତମିସଙ୍କୁ। କହିଲେ ଆପଣ କୌଣସି ଜାଗାରେ ଆଶ୍ରୟ ନିଅନ୍ତୁ– ବିଶେଷ କରି ଦିଲ୍ଲୀରେ। ଅଗ୍ରାହ୍ୟ କଲେ ସୁଲତାନ ଇଲତୁତମିସ। ତାଙ୍କ ମତରେ ଦିଲ୍ଲୀ ବାତାବରଣ ତାଙ୍କୁ ପୋଷାଇବ ନାହିଁ। ମୁହଁ ଖୋଲିଲେ ଏଇ ମଟକା ବାବା। 'ବିବ୍ରତ ହେବାର କୌଣସି କାରଣ ନାହିଁ। କିଛି ସମୟ ପାଇଁ ଚେଙ୍ଗିଜ ଖାଁଙ୍କ ପରି ଆକ୍ରମଣକାରୀଙ୍କୁ ଦୂରେଇ ରଖନ୍ତୁ। ଶତ୍ରୁ ଆପେ ଆପେ ଉଭେଇ ଯିବେ।' ଚେଙ୍ଗିଜ ଖାଁ ପଞ୍ଜାବ ଭିତରକୁ ଧସେଇ ପଶି ଆସିଲେ। ଆଉ ତାଙ୍କ ଘୋଡା ସହ ନଦୀରେ ଝାସ ଦେଲେ। ବାବାଙ୍କ ଉପଦେଶ କାମ ଦେଲା। ଇଲତୁତମିସ ଖୁସିହେଲେ।

ଇଲତୁତମିସ ଜଣେ ବିଖ୍ୟାତ ବିଜୟୀ। କିନ୍ତୁ କଳା ଓ ସାହିତ୍ୟରେ ତାଙ୍କ ବିଶେଷ ଦଖଲ ନଥିଲା। ଖ୍ୱାଜା କୁତୁବୁଦ୍ଦିନ ଓ ହଜରତ ଆହମଦ ସେଖଙ୍କ ଭଳି ସାଧୁ ସନ୍ଥଙ୍କର ଦେଶ ସଂକ୍ରାନ୍ତରେ ଉପଦେଶ ସେ ଗ୍ରହଣ କରୁଥିଲେ। ସେତେବେଳର ରାଜଧାନୀ ଦିଲ୍ଲୀ ମେହେରୋଲି ଓ ତାର ଆଖପାଖ ଅଞ୍ଚଳକୁ ନେଇ ସୀମାବଦ୍ଧ ଥିଲା। ମଟକା ବାବାଙ୍କର ଆଶ୍ରମ ଏହା ଠାରୁ ବହୁତ ଦୂରରେ ଥିଲା। ଯମୁନା ପାଖରେ ଓ ଭୈରଙ୍କ ମନ୍ଦିରର ନିକଟତମ ଥିଲା। ମଟକା ବାବାଙ୍କର ଖ୍ୟାତି ମଧ ଥିଲା।

ଥରେ ଜଣେ ଗରୀବ ଦମ୍ପତି ପୁତ୍ର ଲାଭ ଆଶାରେ ଏ ବାବାଙ୍କ ଦର୍ଶନ ନିମନ୍ତେ ପହଞ୍ଚିଲେ। ଗରୀବ ଥିବାରୁ ଗୋଟିଏ ମାଟିର ମାଠିଆରେ କିଛି ଗୁଡ଼ ଓ ବୁଟ ନେଇ ଆସିଥିଲେ। ଥିଲେ କୁମ୍ଭକାର ବର୍ଗର ଲୋକ। ଉପହାର ଦେଲେ ସନ୍ଥଙ୍କୁ। ଉପହାର ଗ୍ରହଣ କରି ଗୁଡ଼ ଓ ବୁଟରଖା ମାଠିଆକୁ ଅଗଣା ମଝିରେ ରଖି, ଭଗବାନଙ୍କୁ ବିଶ୍ୱାସ ରଖି ଫେରିଯିବାକୁ ସେ ଦମ୍ପତିଙ୍କୁ ଉପଦେଶ ଦେଲେ। ବିତିଗଲା ଗୋଟିଏ ବର୍ଷ। ସମସ୍ତେ ଭୁଲିଗଲେ ସେ ଘଟଣାକୁ। ସେଇ ଦମ୍ପତି ବର୍ଷକ ପରେ ଆବିର୍ଭାବ ହେଲେ। କୋଳରେ ପୁତ୍ର ସନ୍ତାନ। ସେମାନେ ଆଉ ଗୋଟେ ମାଠିଆ ସେଠି ଥୋଇ ଦେଇଗଲେ। ସେ ଦିନଠୁ ସେଠାରେ ମାଠିଆ ଗଦା ହୋଇଚାଲିଛି। ଏ ଜାଗା ଦିଲ୍ଲୀ ମଥୁରା ରାସ୍ତାରେ ପ୍ରଗତି ମଇଦାନ ପାଖରେ ଅବସ୍ଥିତ। ପ୍ରାୟ ୧୨୩୫ ବେଳକୁ ଏ ବାବାଙ୍କର ମୃତ୍ୟୁ ହେଲା ଦିଲ୍ଲୀକୁ ଆସିଲେ ନିଜାମୁଦ୍ଦିନ ଓ୍ୱାଲିୟା।

ବର୍ତ୍ତମାନ ସୁଦ୍ଧା ଏଇ ମଟକା ପୀରଙ୍କ ପାଖରେ ଡିସେମ୍ବର ମାସରେ ପ୍ରତ୍ୟେକ ବର୍ଷ ମେଳା ହୁଏ। ଭୈରବ ମନ୍ଦିରର ମହନ୍ତ ଏ ସବୁ ଦେଖାବାହାଁ କରନ୍ତି। ସବୁ ଶ୍ରେଣୀର, ସବୁ ଜାତିର, ସବୁ ସଂପ୍ରଦାୟର ଲୋକ ଏଠିକୁ ଆସନ୍ତି। ମାଠିଆ ଗଦା ହୋଇଯାଏ। ଲୋକଙ୍କର ବିଶ୍ୱାସ ବର୍ତ୍ତମାନ ସୁଦ୍ଧା ମଟକା ବାବା ସେଠି ବୁଲୁଛନ୍ତି। କୁତୁବ ମିନାରକୁ ସଂପୂର୍ଣ୍ଣ କରିବାପାଇଁ ଆଗେଇ ଆସିଥିଲେ ଇଲତୁତମିସ। ୧୨୨୦ ମସିହାର କଥା। କୁୱାତ-ଉଲ-ଇସଲାମ ମସଜିଦକୁ ଦେଲେ ସଂପୂର୍ଣ୍ଣ ରୂପ। ସୁଲତାନ ଘାଜିଙ୍କର ସମାଧି ତୋଳାଇଥିଲେ କୁତୁବ ମିନାରର ୬ କିଲୋମିଟର ଆଗକୁ। ଇଲତୁତମିସଙ୍କ ସମାଧିକ୍ଷେତ୍ର କୁୱାତ ଉଲ ଇସଲାମ ମସଜିଦ ପାଖରେ।

## ରେଜିୟା

ଇଲତୁତମୀସଙ୍କର ତିନିପୁତ୍ର ଥିଲେ। ରୁକନଦ୍ଦୀନ ଇଲତୁମୀସଙ୍କ ବଡ଼ପୁଅ ହିସାବରେ ଜଗଗାଦିରେ ବସିଲେ। ତାଙ୍କ ମା ଟିକେ କପଟୀ ସ୍ୱଭାବର ଥିଲେ। ରାଜଗାଦିରେ ବସିବା ପରେ ସେ ଅୟସରେ ମାତିଲେ। ନା ଦୃଷ୍ଟିଦେଲେ ପ୍ରଜାହିତକର କାର୍ଯ୍ୟପାଇଁ ନା କଲେ ରାଜ୍ୟ ପରିଚାଳନା। ରାଜଗାଦିରୁ ବିତାଡ଼ିତ ହେଲେ। ମା'ଙ୍କ ସହିତ ବନ୍ଦୀ ହେଲେ। ବନ୍ଦୀ ଥିବା ବେଳେ ହିଁ ମୃତ୍ୟୁବରଣ କଲେ ଦୁଇଜଣଯାକ। ୧୨୩୬ ବେଳର କଥା। ରେଜିୟା ଇଲତୁତ୍‌ମିସଙ୍କ ସହ ରାଜଗାଦୀରେ ବସି ରାଜକାର୍ଯ୍ୟ ପରିଚାଳନା କରୁଥିଲେ। ସେ ପୁରୁଷମାନଙ୍କ ପରି ପୋଷାକ ପିନ୍ଧୁଥିଲେ। ସାହସୀ ଓ କାହାକୁ ପରବାୟ ନ କରିବାର ପ୍ରକୃତିର ଥିଲେ।

ରୁକନୁଦ୍ଦିନ ରାଜଗାଦିରୁ ବିତାଡ଼ିତ ହେବାପରେ ଦେଶରେ ଚହଳ ପଡ଼ିଗଲା। ମନ୍ତ୍ରୀ ସଭା ବସିଲା। ପାରିଷଦଗଣଙ୍କ ପରାମର୍ଶରେ ଅନ୍ୟ ଦୁଇଭାଇଙ୍କୁ ରାଜକାର୍ଯ୍ୟ ହସ୍ତାନ୍ତର ନ କରି ରେଜିୟାଙ୍କୁ ମନୋନୀତ କଲେ। ସେ କାଳରେ ଜଣେ ମୁସଲିମ ସ୍ତ୍ରୀ ଲୋକ ଏପରି ରାଜଗାଦିରେ ବସିବା ବିରଳ। ରେଜିୟା ରାଜଗାଦିରେ ବସିଲେ ପ୍ରାୟ ୩ ବର୍ଷ। କେତେକ ଇଣ୍ଡୋ-ପର୍ଶିୟାନ ସ୍ଥାପତ୍ୟକଳାର ଅନୁକରଣରେ ଇମାରତ ସବୁ ତିଆରି କଲେ। ମହିଳାମାନଙ୍କ ଉଚ୍ଚଶିକ୍ଷା ପାଇଁ ନାସରିଆ କଲେଜ ବସାଇଲେ। ରେଜିୟାଙ୍କର ଶାସନଗାଦିକୁ ଆସିବା ପରେ ରାଜକାର୍ଯ୍ୟ ସବୁସୁରୁଖୁରରେ ଚାଲିଲା। କିନ୍ତୁ ୱାଜିର ନିଜାମ-ଉଲ-ମୁଲ୍କ-ଜୁନାଇଦି ତାଙ୍କର ଶାସନକୁ ମାନି ନେଇ

ପାରୁନଥିଲେ। ଓ୍ୱାଜିର ଅନ୍ୟ ବିଦ୍ରୋହୀମାନଙ୍କ ସହ ମିଶି ରେଜିୟାଙ୍କ ଶାସନ ବିରୁଦ୍ଧରେ ଆନ୍ଦୋଳନର ସୂତ୍ରପାତ କଲେ ଆଉ ଏ ଆନ୍ଦୋଳନ ଅନେକ ଦିନ ପର୍ଯ୍ୟନ୍ତ ଚାଲୁ ରହିଲା।

ସେଦିନ ଶୁକ୍ରବାର। ରୋଜାର ଷଷ୍ଠ ଦିନ। ରେଜିୟାଙ୍କ ରାଜତ୍ୱର ପ୍ରଥମ ଭାଗ। କିରାମିତାହ ଓ ସୁଲାହିଦାର ସଂପ୍ରଦାୟର ନାସ୍ତିକ ଲୋକେ ତାଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ। ଆଉ ଜଣେ ତୁର୍କୀ ଲୋକ- ନାଁ ନୁରଉଦ୍ଦିନ ମଧ ଏ ଆନ୍ଦୋଳନରେ ଭାଗ ନେଲେ। ଜନସାଧାରଣଙ୍କୁ ଏକାଠି କରି ଦିଲ୍ଲୀ ନିକଟରେ ଏକ ମେଳି କରିଦେଲେ। ପ୍ରାୟ ହଜାରେ ଖଣ୍ଡେ ଲୋକ ଖଣ୍ଡା ତଲଓ୍ୱାର ଧରି ଜାମି ମସଜିଦ୍ ପାଖରେ ପହଞ୍ଚିଲେ। ଉଦ୍ଦେଶ୍ୟ ରେଜିୟାଙ୍କୁ ହଟାଇବେ। ପଶିଲେ ଲୁଗା ବ୍ୟବସାୟୀଙ୍କ ବଜାର ବାଟେ। ସେମାନେ ମୁସଲମାନମାନଙ୍କ ଉପରେ ପ୍ରାୟ କୁଦିପଡ଼ିଲେ। ଖଣ୍ଡଯୁଦ୍ଧର ସୂତ୍ରପାତ ହେଲା। ମସଜିଦ ଭିତରୁ ମୁସଲମାନମାନେ ଏମାନଙ୍କ ଉପରକୁ ଟେକା ପଥର ପକାଇଲେ।

ଫଳରେ ରେଜିୟା ହେଲେ ବନ୍ଦୀ। ରେଜିୟାଙ୍କ ଇଚ୍ଛା ଥିଲା ଜଣେ ହବ୍ସିଙ୍କୁ ବିବାହ କରିବାକୁ। ଜନମତ ନ ପାଇବାରୁ ବାହାଘର ହେଲାନାହିଁ ବରଂ ସେ ହବ୍ସିଙ୍କୁ ମାରି ଦିଆଗଲା। ଶେଷରେ ଜଣେ ଅମିରଙ୍କ ସହ ତାଙ୍କର ବିବାହ ହେଲା। କିନ୍ତୁ ଏହି ସଂପର୍କକୁ ମଧ ଜନତା ଗ୍ରହଣ ନ କରିପାରି ଦୁଇଜଣଙ୍କୁ ମାରିଦେଲେ।

କରନାଲ ନିକଟରେ ତାଙ୍କ କବର ଦିଆଗଲା। ରେଜିୟାଙ୍କ ଚନ୍ଦକପଡ଼ାକୁ ନେଇ ବଜାରରେ ବିକ୍ରି କରିବା ସମୟରେ ହତ୍ୟାକାରୀ ଧରାପଡ଼ିଲା। ତାର ବିଚାର ହେଲା। ବିଚାର ବେଳେ ହତ୍ୟାକାରୀ କବର ସ୍ଥଳକୁ ଚିହ୍ନଟ କରିଦେଲା। ପରେ କବର ଭିତରୁ ରେଜିୟାଙ୍କ ଲାସ ବାହାର କରି ତାଙ୍କୁ ବିଧିବଦ୍ଧ ଭାବରେ କବର ଦିଆଗଲା। ପରେ ଏହି କବର ଉପରେ ଗୋଟାଏ ଛୋଟ ମକବରା ତୋଳାଯାଇଥିଲା।

୧୨୩୬ ବେଳର କଥା। ରେଜିୟାଙ୍କ ଅମଳରେ ତାଳପତ୍ର ଓ ଲେଖନ ବଦଳରେ କାଗଜର ବ୍ୟବହାର ପ୍ରଚଳନ କରାଗଲା। ଘରେ ଘରେ ଚରଖାର ପ୍ରସାର ଫଳରେ କପଡ଼ା ଶିଳ୍ପ ବହୁତ ଉନ୍ନତି କଲା।

ପ୍ରାୟ ୧୨୪୧ ବେଳକୁ ରେଜିୟାଙ୍କ ମୃତ୍ୟୁର କିଛି ବର୍ଷ ପରେ ମଙ୍ଗୋଲିୟାନ ଦଳ ପୁଣି ମାଡ଼ିଲେ ଓ ହାଙ୍ଗମା ଆରମ୍ଭ କଲେ। ଏ ଅନୁପ୍ରବେଶକାରୀ ଦଳ ଲାହୋରରେ ପଶି ସବୁ ଛାରଖାର କରିଦେଲେ। ରେଜିୟାଙ୍କ ପରେ ତାଙ୍କ ଭାଇମାନେ ରାଜଗାଦିରେ ବସିଲେ। ସେମାନଙ୍କର କୌଣସି ଇତିହାସ ନାହିଁ।

ପରେ ପରେ ସୁଲତାନ ନାସିରୁଦ୍ଦିନ ମହମ୍ମଦ ଶାହ ରାଜଗାଦିରେ ବସିଲେ ପ୍ରାୟ ୧୨୪୫ ବେଳକୁ। ଏ ସୁଲତାନ ଜଣେ ପାରିବାରିକ ଲୋକ। ଶାନ୍ତ ପ୍ରକୃତିର ଓ ସରଳ। ସେ ଏକସ୍ତ୍ରୀ ବ୍ରତ ଗ୍ରହଣ କରିଥିଲେ। ଆଶ୍ଚର୍ଯ୍ୟର କଥା ସୁଲତାନ ହୋଇ ମଧ୍ୟ ତାଙ୍କର କେହି ରକ୍ଷିତା ନଥିଲେ। ସ୍ୱାମୀଙ୍କ ପଥାନୁସରଣ କରି ସ୍ତ୍ରୀ ମଧ୍ୟ ଘରୋଇ ସ୍ତ୍ରୀଲୋକ ଭଳି ଘରକାମରେ ଲିପ୍ତ ଥିଲେ। ଏକଦା ଥରେ କାନ୍ଦି କାନ୍ଦି ପ୍ରବେଶ କଲେ ସୁଲତାନଙ୍କ କକ୍ଷରେ। ସୁଲତାନ ବ୍ୟସ୍ତ ହୋଇ ତାଙ୍କୁ ପଚାରିଲେ, କ'ଣ ହେଲା ? ବିକଳ ହୋଇ ସ୍ତ୍ରୀ ନିଜର ପୋଡ଼ିଯିବା ହାତକୁ ଦେଖାଇଲେ। ରୁଟି ସେକିବା ଅବସ୍ଥାରେ ଏ ଦଶା ବୋଲି ଜଣାଇଲେ। ଅଭିଯୋଗର ଉଦ୍ଦେଶ୍ୟ ଥିଲା କାଳେ ଦୟାପରବଶ ହୋଇ ସୁଲତାନ କୌଣସି ସାହାଯ୍ୟକାରୀଙ୍କ ବ୍ୟବସ୍ଥା କରିବେ। କିନ୍ତୁ ସୁଲତାନ ସ୍ତ୍ରୀଙ୍କ ହାତରେ ଔଷଧ ଲଗାଉ ଲଗାଉ ନିଜର ଦୁଃଖ ଜଣାଇଲେ। କହିଲେ; ସୁଲତାନ ରାଜ୍ୟର ଟ୍ରଷ୍ଟି। ଅଯଥା ଖର୍ଚ୍ଚ କରିବାର ଅଧିକାର ମୋର ନାହିଁ। ଚୁପ ରହିଲେ ସ୍ତ୍ରୀ। ଅଭିଯୋଗର ପର୍ବ ଶେଷ ହେଲା। ସୁଲତାନଙ୍କ ଖାଇବା ଟେବୁଲରେ ସଜା ହୋଇ ରହିବା ଖାଦ୍ୟ ଥିଲା ଆଡମ୍ବରହୀନ, ସରଳ। ସେ ନିଜେ ଲେଖାଲେଖିରେ ବ୍ୟସ୍ତ ରହୁଥିଲେ। ପ୍ରଥମ ଉଦ୍ଦେଶ୍ୟ ତାଙ୍କର ଥିଲା କି କାହାରି ମନରେ ଦୁଃଖ ଦେବେ ନାହିଁ। ସେ କୋରାନକୁ ମଧ୍ୟ ଅନୁବାଦ କରିଥିଲେ। ସେ କୋରାନଲେଖାକୁ ତଦାରଖ କରିବାପାଇଁ ଜଣେ ଓମରାହଙ୍କୁ ଅନୁରୋଧ କଲେ। ଓମରାହ ଗୋଟାଏ ଶବ୍ଦକୁ ଦେଖାଇ କହିଲେ କି ସେଇ ଶବ୍ଦଟା ଭୁଲ ଅଛି। ସୁଲତାନ ତତ୍‌କ୍ଷଣାତ୍ ସେ ଶବ୍ଦ ଉପରେ ଗୋଟାଏ ଗୋଲ ବୁଲାଇଦେଲେ। ଓମରାହ ଫେରିଗଲେ। ସେ ଗୋଲ ବୁଲିଥିବା ଗାରକୁ ଲିଭାଇ ଦେଲେ। ଜଣେ ବିଶ୍ୱସ୍ତ ଲୋକ ପଚାରିଲେ; ଆପଣ ଏପରି କାହିଁକି କଲେ ? ସୁଲତାନ ଉତ୍ତର ଦେଲେ 'ମୁଁ ଭଲଭାବରେ ଜାଣେ କି ସେ ଶବ୍ଦଟା ଠିକ୍। ତେବେ ବି ସେ ଲୋକ ମନରେ ଆଘାତ ଦେଲି ନାହିଁ।

## ବଲବନ

ଗିୟାସୁଦ୍ଦିନ ବଲବନ ପ୍ରାୟ ୧୨୬୫ ବେଳକୁ ରାଜଗାଦି ଅଳଙ୍କୃତ କଲେ। ତାଙ୍କର ପ୍ରକୃତ ନାଁ ଉଲଗ ଖାଁ। ଇଲତୁତ୍‌ମିଶଙ୍କର ଚାଳିଶ ଜଣ ଗୋଲାମଙ୍କ ମଧ୍ୟରୁ ସେ ଜଣେ। ସବୁ ସାଥି ଗୋଲାମଙ୍କୁ ମାରିଦେଇ ନିଜେ ରାଜଗାଦିରେ ବସିଲେ। ପ୍ରଥମେ ଥିଲେ ଅତ୍ୟନ୍ତ ରାଗି ମିଜାଜ୍‌ର ଲୋକ। ପରେ ଅବଶ୍ୟ ତାଙ୍କ ପ୍ରକୃତି ଶାନ୍ତ

ହୋଇଯାଇଥିଲା। ବଲବନ ରାଜଗାଦିରେ ବସିବାବେଳକୁ ଚେଙ୍ଗିଜ ଖାଁ ମୃତ୍ୟୁବରଣ କରିସାରିଥିଲେ। ହେଲେବି ତାଙ୍କ ଉତ୍ତରାଧିକାରୀମାନେ ଅନେକ ସମୟରେ ସିନ୍ଧ ବାଟେ ଭାରତକୁ ପଶି ପଞ୍ଜାବରେ ଗଣ୍ଡଗୋଳ କରୁଥିଲେ।

ବଲବନଙ୍କର ଇଚ୍ଛା ନଥିଲା ଗୋଟାଏ ଦିନ ବି ରାଜଧାନୀରେ ରହିବାପାଇଁ, ବରଂ ଭାବୁଥିଲେ କି ସୈନ୍ୟବାହିନୀକୁ ପଠାଇ ଧନସଂପତ୍ତି, ଅମୂଲ୍ୟରତ୍ନ, ହାତୀ ଓ ଘୋଡା ପ୍ରଭୃତି ଲୁଣ୍ଠନ କରିବାପାଇଁ ଆଗେଇବେ। ହିନ୍ଦୁରାଜାମାନଙ୍କୁ ଓ ରାଜପୁତ୍‌ମାନଙ୍କୁ ହଟାଇବେ। ସେହି ସମୟକୁ ଗଙ୍ଗା-ଯମୁନା ଉପକୂଳବର୍ତ୍ତୀ ଅଞ୍ଚଳର ବିଦ୍ରୋହ ଜାଗିଲା। ସେ ତାକୁ ଦବାଇଲେ। ବଙ୍ଗଳାର ଗଭର୍ଣ୍ଣରଙ୍କ ବିଦ୍ରୋହକୁ ଦବାଇବାପାଇଁ ତାଙ୍କୁ ତିନିବର୍ଷ ଲାଗିଗଲା। ସେ ବିଦ୍ରୋହ ଦବାଇବାକୁ ଯାଇଁ ସେ ହରାଇଲେ ତାଙ୍କର ଯୋଗ୍ୟପୁତ୍ର ଓ ଭାବି ଉତ୍ତରାଧିକାରୀଙ୍କୁ। ସେ ମର୍ମନ୍ତୁଦ ଘଟଣାପାଇଁ ସେ ପାଗଳପ୍ରାୟ ହୋଇଯାଇଁ ଶଯ୍ୟାଶାୟୀ ହୋଇଗଲେ। ଆଉ ସେଇ ଅବସ୍ଥାରୁ ଉଧୁରି ନ ପାରି ମୃତ୍ୟୁବରଣ କଲେ ୧୨୮୭ ମସିହାରେ। ଇମାଲୀ ପାଖରେ ତାଙ୍କୁ କବର ଦିଆଗଲା। ବଲବନଙ୍କ ରାଜ୍ୟଶାସନ ଏକ ଆଦର୍ଶ ରାଜଶାସନ ଥିଲା ବୋଲି ସମସ୍ତଙ୍କର ବିଶ୍ୱାସ। ଆଭ୍ୟନ୍ତରୀଣ ବିଦ୍ରୋହ, ଆନ୍ଦୋଳନ ସବୁ ଦବାଇ ଶାନ୍ତି ପ୍ରତିଷ୍ଠା କଲେ। ରାଜ ସିଂହାସନର ମାନମର୍ଯ୍ୟାଦା ବୃଦ୍ଧିକଲେ। ପର୍ଶିୟାନ ଆଦାବକାଇଦା ରାଜାମାନଙ୍କୁ ଶିକ୍ଷା ଦେଲେ। ସାରା ଦେଶରେ ପର୍ଶିୟାର ପୂଜାପର୍ବକୁ ପ୍ରାଧାନ୍ୟ ଦେଲେ। ଅନେକ ମୁସଲମାନ ରାଜାଙ୍କୁ ଦିଲ୍ଲୀରେ ଥଇଥାନ କରାଇଲେ। କବରମାନଙ୍କରେ ଯେଉଁ ଅର୍ଦ୍ଧ ଗୋଲାକାର ଶିଳ୍ପ ସ୍ତମ୍ଭ ତିଆରି ହେଉଥିଲା ସେ ସବୁ ପାରମ୍ପରିକ ଶିଳ୍ପ କଳା ଅନୁଯାୟୀ ଗଢ଼ାଯାଉଥିଲା। ତାଙ୍କ ଦ୍ୱାରା ନିର୍ମିତ କବରମାନଙ୍କରେ ଏ ଶିଳ୍ପକଳା ବୈଜ୍ଞାନିକ ପ୍ରଣାଳୀରେ ତିଆରି ହେଲା। ଦରବାରରେ କବି, ଦାର୍ଶନିକ, ଧର୍ମଗୁରୁ ସ୍ଥାନ ପାଇଥିଲେ। ପ୍ରିନ୍ସ ସାହିଦ ବଲବନ୍‌ଙ୍କ ପୁଅଙ୍କ ପ୍ରାସାଦରେ ଏସବୁ କବି, ଦାର୍ଶନିକ, ଧର୍ମଗୁରୁ ପ୍ରଭୃତିଙ୍କର ପ୍ରତ୍ୟେକ ଦିନ ରାତିରେ ବନ୍ଧୁମିଳନ ହେଉଥିଲା। ଏ ବଂଧୁମିଳନରେ କବି ଖୁଷେରା ଅଧିନାୟକତ୍ୱ କରୁଥିଲେ। ଏମାନଙ୍କ ବ୍ୟତୀତ ଆଉ ଏକ ସଂଗଠନ ଗଢ଼ାଯାଇଥିଲା। ଏ ସଂଗଠନରେ ଭାଗ ନେଉଥିଲେ ନର୍ତ୍ତକୀ, ସଂଗୀତକାର ବ୍ୟଙ୍ଗକବି, ଗଳ୍ପକାର, ହାସ୍ୟରସ ରଚୟିତାମାନେ। ତାଙ୍କର ଦ୍ୱିତୀୟ ପୁତ୍ର କୋରାଙ୍କ ପ୍ରାସାଦରେ ଏମାନେ ଏକତ୍ରିତ

ହେଉଥିଲେ । ଦେଶର ଅନ୍ୟାନ୍ୟ ଅନେକ ସ୍ଥାନରେ ମଧ୍ୟ ଅନେକ ସଂସ୍ଥା ସଂଗଠନମାନ ସାଧାରଣ ପ୍ରଜାମାନଙ୍କ ମେଳରେ ଗଢ଼ିଉଠିଥିଲା ।

ଅତି ଦୁଃଖରେ ପଡ଼ିଥିଲେ ଜଣେ କର୍ଜଦାର । କରଜ ସୁଝିବାର କ୍ଷମତା ନଥିଲା ଓ ଆଉ କରଜ ଆଣି କିଛି କାମ କରିବାର ସାହସ ଓ ସୁବିଧା ନଥିଲା । ଏଣେ କରଜ ଦେଇଥିବା ଲୋକ ମଧ୍ୟ ନଛୋଡ଼ ବନ୍ଧା । ଦିନରାତି ଭୟ ଓ ଆଶଙ୍କାରେ ନିଦ୍ରା ଭୋଜନ ତ୍ୟାଗ କରିଥିଲେ । ସେହି ସମୟକୁ (ପ୍ରାୟ ୧୨୬୬ ବେଳକୁ) ସୁଲତାନ ବଲବନ ଏକ କିଲା ତୋଳାଇଥିଲେ । ନାଁ ରଖିଥିଲେ ଦାରୁଲ ଅମନ ବା ରକ୍ଷାସ୍ଥଳ । ଭୟଭୀତ କର୍ଜଦାର ଜଣକ ଏଇ ରକ୍ଷାସ୍ଥଳର ଆଶ୍ରୟ ଲୋଡିଲେ । ଆଶ୍ରୟ ପାଇଲେ ଆଉ ପାଇଲେ କରଜରୁ ମୁକ୍ତି । ଏହିପରି ଅନେକ ଦୃଷ୍ଟାନ୍ତ ମଧ୍ୟ ଥିଲା । ଆଶ୍ରୟ ସ୍ଥଳ ତା' ନାଁ ବଜାୟ ରଖିଥିଲା ।

ଇବନବତୁତା ଏ ସଂକ୍ରାନ୍ତରେ ବିବରଣୀ ମଧ୍ୟ ଲେଖିଛନ୍ତି । ସେ ନିଜେ ମଧ୍ୟ ପରିବ୍ରାଜକ ଭାବରେ ଏଠାରେ ଆଶ୍ରୟ ନେଇଥିଲେ । ଏ ସବୁ ପ୍ରତିଷ୍ଠାନ ପାଇଁ ଓ ଦରବାରର ପଦ୍ଧତି ପାଇଁ ସେ ସମୟରେ ଭାରତୀୟ ଦରବାରର ବିଶ୍ୱ ଦରବାରରେ ବେଶ୍ ନାଁ ଥିଲା । ପୃଥିବୀର ସବୁଠୁ ଅତି ଭଦ୍ର, ପ୍ରଭାବଶାଳୀ ବିଚାରାଳୟ ବୋଲି ଗଣା ହେଉଥିଲା । ଦରବାରର ଭାଷା ଥିଲା ଉର୍ଦ୍ଦୁ, ଆରବିକ ଓ ପର୍ଶିୟାନ । ଏଇ ସମୟରେ ଜନ୍ମ ନେଇଥିଲେ ଅମୀର ଖୁସୁରୁ ।

## କୈକବାଦ (୧୨୮୭-୯୦)

ବଲବନଙ୍କ ପରେ ତାଙ୍କ ନାତି ମାତ୍ର ୧୮ ବର୍ଷ ବୟସରେ ରାଜଗାଦିରେ ବସିଲେ । ସୁନ୍ଦର ଚେହେରା, ସାହିତ୍ୟ ପାଇଁ ମମତା ଅଧିକ । ନା ଥିଲା ମିଉଜ-ଉଦ୍ଦିନ । ରାଜଗାଦିରେ ବସିବା ପରେ ପରେ ଯମୁନା ନଦୀ କୂଳରେ ଏକ ପ୍ରାସାଦ ବନାଇଲେ । ନାଁ ଦେଲେ 'କିଲୋଖାରୀ' । ତାଙ୍କ ଶାସନକାଳ ମଧ୍ୟରେ ଦୁଇଟି ଦଳ ବିଦ୍ରୋହ କରୁଥିଲେ । ତୁର୍କି ଦଳ ଓ ଅଣତୁର୍କୀ ଦଳ । ଅଣତୁର୍କୀ ଦଳରେ ଥିଲେ ଜଲାଲୁଦ୍ଦିନ ଖିଲଜି । ଆଉ ତୁର୍କି ଦଳରେ ଥିଲେ– ଆଇତିମାର କଛାନ୍ । ମଉକାଦେଖି ମୋଗଲମାନେ ମଧ୍ୟ ବିଦ୍ରୋହ କଲେ । କିନ୍ତୁ ସଫଳ ହୋଇପାରିଲେ ନାହିଁ । ସେ ପ୍ରାୟତଃ ମଦ୍ୟପାନ, ଭୋଗବିଳାସରେ ମାତି ରହୁଥିଲେ । ବଲବନଙ୍କ ଶାସନ

ଦିଲ୍ଲୀର ସୁଲତାନମାନଙ୍କ ଶାସନ ମଧ୍ୟରେ ଶ୍ରେଷ୍ଠ। ଏହାହିଁ ଦିଲ୍ଲୀ ଇତିହାସରେ ଏକ ଅବିସ୍ମରଣୀୟ ଯୁଗ। ଖିଲାପତର କାହାଣୀ ଶେଷକରି ସେ ନିଜକୁ ଖଲିଫା ବୋଲି ଘୋଷଣା କଲେ। ରାଜପୁତମାନଙ୍କରର ଦୁର୍ଗ ଦଖଲ କଲେ ଆଉ ଦାକ୍ଷିଣାତ୍ୟକୁ ମଧ୍ୟ ନିଜ ଅଧିନକୁ ନେଲେ। ସେ ହେତୁ ସାରା ଭାରତବର୍ଷ ନିଜ କବଳରେ। କୁତବ ଅଞ୍ଚଳରେ ରାଜଧାନୀ 'ସିରି' ବନାଇଲେ। ମଙ୍ଗୋଲିୟାନମାନେ ଆକ୍ରମଣ କରି ସିରି ଅଧିକାର କଲେ। ପୂର୍ବ ଶାସକମାନେ ମଙ୍ଗୋଲିୟାନମାନଙ୍କୁ ଦିଲ୍ଲୀ ଆଖପାଖରେ ବସବାସ କରିବାପାଇଁ ଅନୁମତି ଦେଇଥିଲେ। କିନ୍ତୁ ଏ ଅନୁମତି ଖଣ୍ଡନ କରି ପ୍ରାୟ ୩୦ ହଜାର ମଙ୍ଗୋଲିୟାନମାନଙ୍କୁ ହତ୍ୟା କଲେ। ଫଳରେ ସୁଯୋଗ ଦେଖି ଶାୟସ୍ତ ଖାଁ (ପରେ ନାଁ ହେଲା ଜଲାଲୁଦ୍ଦିନ ଖିଲିଜୀ) କୈଳବାଦଙ୍କୁ ଆକ୍ରମଣ କଲେ। ଯୁଦ୍ଧ ହେଲା। ଜୟୀ ହେଲେ ଶାୟସ୍ତୀ ଖାଁ। ପରେ ପରେ ସେ ହତ୍ୟାକଲେ କୈଳବାଦ ଓ ତାଙ୍କର ତିନିବର୍ଷର ପୁଅକୁ। ଗୋଲାମ ଖାନ୍‌ଦାନର ୮୪ ବର୍ଷର ରାଜୁତି ସମୟରେ ୧୦ ଜଣ ରାଜା ଶାସନ କରିଥିଲେ। ତିନିଜଣ ନିଜ ମୃତ୍ୟୁବରଣ କରିଥିଲେ। ଆଉ ସାତଜଣଙ୍କୁ ହତ୍ୟା କରାଯାଉଥିଲା। ଶେଷ ହେଲା ଗୋଲାମ ଖାନ୍‌ଦାନର ଶାସନ। କୈକବାଦଙ୍କ ନିର୍ମିତ ପ୍ରାମାଦ କିଲୋଖୁଡି ଆଶ୍ରୟ ଦେଲା ଜଲ୍ଲାଲୁଦ୍ଦିନ ଖିଲିଜିଙ୍କୁ।

## ଜଲ୍ଲାଲୁଦ୍ଦିନ ଖିଲଜି

ଏ ହେଉଛନ୍ତି ଖିଲଜି ବଂଶର ପ୍ରତିଷ୍ଠାତା। ଜଣେ ସାହସୀ ବୀର। ମନୋଭାବ ଥିଲା ଧାର୍ମିକ। ସର୍ବଦା ଜନସାଧାରଣଙ୍କର ହିତ ନିମନ୍ତେ ପ୍ରସ୍ତୁତ। ତେବେ ବି ଦିଲ୍ଲୀ ଜନତାଙ୍କର ଆସ୍ଥାଭାଜନ ହୋଇପାରିଲେ ନାହିଁ। ସେଇ କାରଣରୁ କିଲୋଖୁଡିରେ ପ୍ରାୟ ବର୍ଷେ ପର୍ଯ୍ୟନ୍ତ ରହିଲେ। ଯୁଦ୍ଧ ହେଲା ମଙ୍ଗୋଲିୟାନମାନଙ୍କ ସହ। ପରାଜିତ କଲେ ସେମାନଙ୍କୁ। ବନ୍ଦୀ କଲେ। କେତେକଙ୍କୁ ଧର୍ମାନ୍ତକରଣ କରାଇ ରାଜଧାନୀରେ ରଖାଇବାର ବନ୍ଦୋବସ୍ତ ବି କଲେ। ବଡ଼ପୁଅକୁ ଖାନ-ଇ-ଖାନାନ ପଦବୀ ଦେଲେ, ଦ୍ୱିତୀୟ ପୁତ୍ର ଆରକାଲି ଖାନ, ଆଉ କନିଷ୍ଠ ପୁତ୍ର କଦାର ଖାନ। ସମସ୍ତଙ୍କ ପାଇଁ ପ୍ରାସାଦ ତୋଳାଇଦେଲେ। ସୁଲତାନଙ୍କ ଭାଇ ଯାଗରିର ଖାନ ପଦବୀ ଓ ମାଷ୍ଟର ଜେନେରାଲ ଭାବେ ପରିଗଣିତ ହେଲେ। ଆଲାଉଦ୍ଦିନ ଓ ଉଲଗା ଖାନ (ଭାଇର

ପୁଅମାନେ, ଜଣକୁ ଅମିର ଟୁଜାକ୍ ଓ ଆରକଣକୁ ଆଖୁର-ବାକି (ଘୋଡ଼ାମାନଙ୍କ ମାଷ୍ଟ୍ର) ପଦବୀ ଦେଲେ। ଏହିପରି ଭାବରେ ସମସ୍ତଙ୍କ ଭିତରେ ପଦ ପବଦୀ ସବୁ ବାଣ୍ଟିଦେଲେ। ୧୨୯୬ ଜଲାଲୁଦ୍ଦିନଙ୍କୁ ହତ୍ୟାକଲେ ତାଙ୍କ ପୁତୁରା ଆଲ୍ଲାଉଦ୍ଦିନ ଖ୍ଲିଜି। ପରେ ନିଜେ ରାଜସିଂହାସନ ଆରୋହଣ କଲେ।

ଜଲାଲୁଦ୍ଦିନଙ୍କ ହତ୍ୟା ଖବର ତାଙ୍କ ସୈନ୍ୟବାହିନୀଙ୍କ ମଧ୍ୟରେ ଖେଳିଗଲା ଆଉ ମନୋବଳ ଭାଙ୍ଗିଗଲା ସେମାନଙ୍କର। ଯୁଦ୍ଧଭୂମି ପରିତ୍ୟାଗ କରି ସେମାନେ ଘରକୁ ଫେରିଗଲେ। କଲାଲୁଦ୍ଦିନଙ୍କ ସ୍ତ୍ରୀ ମଲ୍ଲିକା-ଇ-ଜାହାନ ଦାବି କଲେ ରାଜସିଂହାସନ। ଟିକେ ଦୃଢ଼ପ୍ରତିଜ୍ଞ ପ୍ରକୃତିର ସ୍ତ୍ରୀ ଲୋକ। ବଡ଼ପୁଅଙ୍କ ଫେରିବା ପର୍ଯ୍ୟନ୍ତ ଅପେକ୍ଷା ନ କରି ତାଙ୍କ ସାନପୁଅ ରୁକବୁଦ୍ଦିନଙ୍କୁ ଗାଦିରେ ବସାଇ ନିଜେ ରାଜ୍ୟଶାସନ ହାତକୁ ନେଲେ। କିଲୋଖୁଡ଼ିରୁ ଦିଲ୍ଲୀ ମଧ ଗଲେ। ଖବର ପହଞ୍ଚିଲା ବଡ଼ପୁଅ ଆକବର ଖାଁଙ୍କ ପାଖରେ। ସେ ଆଉ ଦିଲ୍ଲୀ ନ ଯାଇଁ ମୂଲତାନରେ ରହିଗଲେ। ଭୀଷଣ ବର୍ଷା ହେଲା କିନ୍ତୁ ଆଲ୍ଲାଉଦ୍ଦିନ ଖ୍ଲିଜି କିନ୍ତୁ ବର୍ଷା ସତ୍ତ୍ୱେ ଦିଲ୍ଲୀରେ ପହଞ୍ଚିଗଲେ।

## ଆଲ୍ଲାଉଦ୍ଦିନ ଖ୍ଲିଜୀ

ଆଲ୍ଲାଉଦ୍ଦିନ ଦିଲ୍ଲୀ ଯିବା ରାସ୍ତାରେ ତାଙ୍କର ଅନୁଗତମାନଙ୍କୁ ସୁନା ରୂପା ବାଣ୍ଟି ବାଣ୍ଟି ଗଲେ। ଫଳରେ ଯମୁନା କୂଳରେ ପହଞ୍ଚିଲା ବେଳକୁ ଏକ ବିରାଟ ସେନାବାହିନୀ ତାଙ୍କ ସାଙ୍ଗରେ ମିଳିତ ହେଲେ। ମଲ୍ଲିକାଙ୍କ ସୈନ୍ୟମାନେ ମଧ୍ୟ ସୁନାଲୋଭରେ ଆଲ୍ଲାଉଦ୍ଦିନଙ୍କ ପାଖକୁ ଚାଲିଆସିଲେ। ଘମାଘୋଟ ଯୁଦ୍ଧ ହେଲା। କିନ୍ତୁ ଯୁଦ୍ଧରେ ହାରିଲେ ମଲ୍ଲିକା ଓ ତାଙ୍କ ପୁଅ। ମଲ୍ଲିକା ପୁଅକୁ ନେଇ ମୂଲତାନ ଫେରିଗଲେ।

ଆଲ୍ଲାଉଦ୍ଦିନ ରାଜଗାଦିରେ ବସିଲେ। ଲୋକମାନଙ୍କ ମଧ୍ୟରେ ଏତେ ସୁନା ବିତରଣ କଲେ ଯେ ସେମାନେ ସ୍ୱର୍ଗତ ସୁଲତାନଙ୍କ ହତ୍ୟା ଘଟଣା ଭୁଲିଗଲେ।

୧୨୯୬ ବେଳକୁ ଆଲ୍ଲାଉଦ୍ଦିନ ଏକ ବିରାଟ ସେନାବାହିନୀ ଧରି ଦଉଲତ-ଖାନା-ଇ-ଜୁଲୁଲରେ ରାଜଗାଦି ଅଳଙ୍କୃତ କଲେ। ପରେ କୁସକି (ପ୍ରାସାଦକୁ) ଗଲେ। ରାଜକୋଷରେ ଯାହା ଟଙ୍କା, ସୁନା, ଦିଗଲ ଥିଲା ସବୁ ଲୋକଙ୍କ ଭିତରେ ବାଣ୍ଟିଲେ। ଦେଶରେ ଆନନ୍ଦ ଉତ୍ସବ ଲାଗି ରହିଲା। ନିଜେ ମଧ୍ୟ ରାଜଗାଦୀ,

ଧନସଂପତ୍ତି ଆଉ ଲୋକଙ୍କର ସମର୍ଥନ ପାଇ ବିଳାସ ବ୍ୟସନରେ ବୁଡ଼ି ରହିଲେ। ଲୋକଙ୍କର ଯୋଗ୍ୟତା ଥାଉ ବା ନ ଥାଉ ବଡ଼ ବଡ଼ ପଦପଦବୀରେ ରଖାଇଲେ। ଏସବୁ ସୁବିଧା ସୁଯୋଗ ପାଇ ସଂପତ୍ତି ଆହରଣ କରି ପ୍ରଜାମାନେ ପୂର୍ବତନ ସୁଲତାନଙ୍କ ହତ୍ୟା ଘଟଣାକୁ ଭୂଲିଗଲେ। ଆଲାଉଦ୍ଦିନହିଁ ପ୍ରଥମ ସୁଲତାନ ଯେ କି ଲୋକଙ୍କର ଦୋଷ ପାଇଁ ସେମାନଙ୍କର ସ୍ତ୍ରୀ ଓ କନ୍ୟାମାନଙ୍କୁ ଉପଭୋଗ କରିବାପାଇଁ ଆଦେଶ ଦେଉଥିଲେ। ନୁସରତ ଖାଁ ଦିଲ୍ଲୀର ଅନେକ ଅତ୍ୟାଚାରପାଇଁ ଦାୟୀ। ତାଙ୍କ ଭାଇଙ୍କୁ ମଧ ହତ୍ୟା କରାଯାଇଥିଲା। ଏହାରି ପ୍ରତିଶୋଧ ପାଇଁ ସବୁ ହତ୍ୟାକାରୀଙ୍କ ସ୍ତ୍ରୀ ଓ ପିଲାଙ୍କୁ ହୀନଭାବରେ ଅତ୍ୟାଚାର କରିବା ପରେ ହାଣି ଦେଉଥିଲେ ଆଉ ସେହି କାରଣରୁ ଜନତା ସଦାସର୍ବଦା ଭୟଭୀତ ହୋଇ ରହୁଥିଲେ। ଆଲାର ଦରଜା ମୁସଲମାନ ସ୍ଥାପତ୍ୟର ଏକ କୀର୍ତ୍ତିସ୍ତମ୍ଭ। ୧୩୧୧ରେ ଖିଲଜି ଏହାକୁ ତିଆରି କରିଥିଲେ। ଏହି ଲାଲ ପଥରରେ ତିଆରି ସ୍ତମ୍ଭ ଘୋଡାଟାପୁର ନାଲ ଆକୃତିର। ଏହା ଆରବିୟାନ ସ୍ଥାପତ୍ୟର ଓ ସାରା ପୃଥିବୀରେ ଏକ ସୁନ୍ଦରତମ ବସ୍ତୁ। ଏ ଆଲାର ଦରଜା ଉପରେ ବସିଲେ ତୁମେ ତୁମ ଚାରିପାଖର ଦୁନିଆଠୁ ଅଲଗା ହୋଇଯିବ।

ପ୍ରତ୍ୟେକ ଶୁକ୍ରବାର ସଂଧ୍ୟାରେ ମସ୍‌ଜିଦର ପ୍ରାର୍ଥନା ସାରି ଏହି ଆଲାର ଦରଜା ଉପରେ ବସନ୍ତି ଖିଲଜି। ଏଇଟା ତାଙ୍କର ଅଭ୍ୟାସ। ଏଇଠି ବସି ସେ ଆଉଡ଼ାଇଥାନ୍ତି ପୂର୍ବ ପୁରୁଷମାନଙ୍କ କୀର୍ତ୍ତି। ଦରଜା ଉପରେ ବସି ମନେପକାନ୍ତି ଅମୀର ଖୁସ୍‌ରୁଙ୍କ କବିତା ଆବୃତ୍ତି। ମନେପକାନ୍ତି କବି ଜୟସଙ୍କର ଅପେକ୍ଷା କରିବା ସମୟ। ଇଚ୍ଛା ଥାଏ, ଖୁସ୍ରୁଙ୍କ ପରେ ଜୟସ ନିଜ ଲେଖା 'ପଦ୍ମାବତ୍'ରୁ କିଛି ପଂକ୍ତି ଉଦ୍ଧାର କରିବେ।

ଶୁଣିପାରନ୍ତି ତାଙ୍କ ପ୍ରଥମସ୍ତ୍ରୀ ମାହ୍ରୁଙ୍କର ଗାଳି ଚିତ୍କାର। ମାହ୍ରୁ ଚିତ୍କାର କରନ୍ତି ତାଙ୍କ ଦ୍ୱିତୀୟ ସ୍ତ୍ରୀଙ୍କ ଉପରେ ଗାଳିବର୍ଷଣ ସମୟରେ। ଜଲ୍ଲାଲୁଦ୍ଦିନଙ୍କ ଝିଅ ମାହ୍ରୁ ଓ ତାଙ୍କ ମାଙ୍କ ପାଇଁ ଅନେକ ଅତ୍ୟାଚାର ସେ ସହୁଥିଲେ। ଦିନକର ଘଟଣା। ଗାଳି ଦେଇ ଦେଇ ମାହ୍ରୁ ତାଙ୍କ ସଉତୁଣୀଙ୍କୁ ଯୋତା ପ୍ରହାର କଲେ। ସଉତୁଣୀଙ୍କ ଉପରକୁ କୁଦି ପଡ଼ି ଛାତି ଉପରେ ପାଦ ପ୍ରହାର କଲେ। ଏ ଦୃଶ୍ୟ ଦେଖି ରାଗରେ ଥରିଉଠିଲେ ସୁଲତାନ ଆଲ୍ଲାଉଦ୍ଦିନ ଖିଲିଜି। ହଠାତ୍ ତରକାରୀ

ଉଠାଇ ତାଙ୍କୁ ଖଣ୍ଡାରେ ହାଣି ଦେବାକୁ ଉଦ୍ୟତ ହେଲେ । ଭାଗ୍ୟ ଜୋର । ମାହୁରୁ ଖସି ପଳାଇଲେ ।

ଖିଲିଜ ଦୈନନ୍ଦିନ ସାଧାରଣ ଜିନିଷମାନଙ୍କର ଦରଦାମ ରାଜ୍ୟରେ କମାଇ ଦେଇଥିଲେ । ସରକାରଙ୍କ ତରଫରୁ ପ୍ରତ୍ୟେକ ମହୋଲାରେ ଦୋକାନ ସବୁ ଖୋଲଗଲା । ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଅଭାବ ନ ହେବା ପାଇଁ ସେ ରାସନ ପଦ୍ଧତିର ବ୍ୟବହାର କଲେ । ଲୁଗାପଟାର ସୁବଣ୍ଟନ କରାହେଉଥିଲା । ଦିଲ୍ଲୀର ଗୋଲାମ ଖାନଦାନଙ୍କ ଅମଳରେ ଏକ ଟର୍କିର ଦୁର୍ଗଭଳି ଜଣାପଡୁଥିଲା । କିନ୍ତୁ ତାଙ୍କ ଅମଳରେ ଏହା ରାଜଧାନୀର କାମ କଲା ।

ସୁଲତାନ ଖିଲଜିଙ୍କ ଅମଳରେ ତାଙ୍କ ଦରବାରକୁ ଅମିର ଖୁସ୍ରୁ ଓ ଅମିର ହାସିନ ପରି ବିଦ୍ୱାନ ସାହିତ୍ୟିକମାନେ ଅଳଙ୍କୃତ କରିଥିଲେ । ଫଳରେ ଦେଶ ବାହାରୁ ମଧ୍ୟ ଏପରି ବିଦ୍ୱାନ ତାଙ୍କ ଦରବାରକୁ ଆସୁଥିଲେ । ତାଙ୍କ ସମୟର ସ୍ଥାପତ୍ୟକଳାର ଯାଦୁଗରି ଥିଲା । ତାହାର ପ୍ରମାଣ ସ୍ୱରୂପ ସେ କୁତଓ୍ୱାଲ-ଭଲ-ଇସଲାମ ମସଜିଦଗ ଆଲାଇଦରଜା ତୁର୍କିସ୍ଥାନ ସ୍ଥାପତ୍ୟବିଦ୍ୟାର କାରୁକାର୍ଯ୍ୟରେ ନିର୍ମାଣ କରାଉଥିଲେ । ଏ ମିନାରକୁ ଅର୍ଦ୍ଧସମାପ୍ତ କରି ସେ ପ୍ରାଣତ୍ୟାଗ କରିଥିଲେ ।

'ସିରି' ଆଖପାଖରେ ସେ ହଜାର ଖୁମ୍ବବିଶିଷ୍ଟ ଏକ ହଲ ମଧ୍ୟ ତିଆରି କରିଥିଲେ । ଉଦ୍ଦେଶ୍ୟ ଥିଲା ମଙ୍ଗୋଲିୟାନମାନଙ୍କ ଆକ୍ରମଣରୁ ନିଜକୁରକ୍ଷା କରିବା । ଇମାରତ ବନାଇବା ଓ ଭାଙ୍ଗିବାରେ ସେ ସିଦ୍ଧହସ୍ତ । ମୋଗଲମାନଙ୍କ ଆକ୍ରମଣରୁ ଦିଲ୍ଲୀକୁ ରକ୍ଷା କରିବାପାଇଁ ସେ ରାୟପିଥୋରା କିଲ୍ଲାକୁ ମଧ୍ୟ ମରାମତି କରାଇଥିଲେ । ହାଉସ ଖାସରେ ଏକ ବିରାଟପୋଖରୀ ଓ କୁତବମିନାର ସହିତ ସମତୁଲ କରିବାପାଇଁ ଏକ ମିନାର ମଧ୍ୟ ତୋଳାଇବା ଆରମ୍ଭ କରିଥିଲେ । ସାରା ରାଜ୍ୟରେ ମଦବିକ୍ରି ବନ୍ଦ କରିବାକୁ ଆଦେଶ ଦେଲେ । ଆହୁରି ଆଦେଶ ଦେଲେ କି ମଦବିକାଳି ଓ କିଣାଳି ମାନଙ୍କୁ ଦେଶ ବାହାରକୁ ବିଦା ହୋଇଯିବା ପାଇଁ । ଦେଶରେ ହାଣ୍ଡି ହାଣ୍ଡି ତିଆରି ମଦ ଗଦା ହୋଇରହିଲା । ଏସବୁ ଦେଖି ମଦନୀତି ବଦଳାଇଲେ । କହିଲେ କି ମଦ କେବଳ ଘରୋଇ ଭାବରେ କାରବାର ହୋଇପାରିବ । ବେଶ୍ୟା ବ୍ୟବସାୟ ବନ୍ଦ କରିଦେଲେ । ସେମାନଙ୍କୁ ବିବାହ ବନ୍ଧନରେ ବାନ୍ଧି ହୋଇଯିବା ପାଇଁ ଆଦେଶ ଦେଲେ । ଜନତାଙ୍କ ମନୋବଳକୁ ଦୃଢ଼ କରିବାପାଇଁ ଅନେକ ସାହାଯ୍ୟ କଲେ ।

ଖିଲିଜିଙ୍କର ମୃତ୍ୟୁପରେ ତାଙ୍କର ୬ ବର୍ଷର ପୁଅକୁ ରାଜଗାଦିରେ ବସାଇ ତାଙ୍କ ଯତ୍ନକାରୀ ମୁବାରକ ଖାନ୍। ମାତ୍ର ରାଜଗାଦି ହାସଲ କରିବା ଲୋଭରେ ସେ ଖିଲିଜଙ୍କ ପୁଅକୁ ଅନ୍ଧ କରିଦେଲେ। ମାତି ରହିଲେ ଭୋଗ ବିଳାସରେ। ଜନତା ମଧ୍ୟ ସେଇ ରାସ୍ତାରେ ଯାଇଁ ଭୋଗ ବିଳାସରେ ମାତି ରହିଲେ।

## ଗିୟାସୁଦ୍ଦିନ ତୋଗଲକ (୧୩୨୦-୨୫)

ଏହି ଅପର୍ଯ୍ୟାପ୍ତ ଅବସ୍ଥାରେ ଗିୟାସୁଦ୍ଦିନ ତୋଗଲକ ଦିଲ୍ଲୀ ଆକ୍ରମଣ କରି ନିହତ କଲେ ଶାସନବର୍ଗଙ୍କୁ ଓ ୧୩୨୦ରେ ତୋଗଲକ ବଂଶର ପ୍ରତିଷ୍ଠା କଲେ। ଏ ବଂଶର ଏଗାର ଜଣ ଶାସକଙ୍କ ମଧ୍ୟରୁ କେବଳ ପ୍ରଥମ ତିନିଜଣ ଶାସକ ସାଧାରଣରେ ମୃତ୍ୟୁବରଣ କରିଥିଲେ। କିନ୍ତୁ ଅନ୍ୟମାନଙ୍କୁ ହତ୍ୟା କରାଯାଇଥିଲା। ସ୍ଥାପତ୍ୟକଳାର ଉନ୍ନତି ନିମନ୍ତେ ମନୋନିବେଶ କରି ସେ 'ତୋଗଲକବାଦ' ସହରର ମୂଳଦୂଆ ପକାଇଲେ। ଏ ସ୍ଥାନ ପୁରୁଣା ସହରଠାରୁ ୮ କିଲୋମିଟର ଦୂର। ବଦରପୁରରୁ ଫରିଦାବାଦ ପର୍ଯ୍ୟନ୍ତ ଲମ୍ବିଥିଲା ଏ ସହର। ଉଦ୍ଦେଶ୍ୟ ଥିଲା ମଙ୍ଗୋଲିୟାନମାନଙ୍କ ଆକ୍ରମଣରୁ ଦେଶକୁ ରକ୍ଷା କରିବା। ଏହାକୁ ମୁସଲମାନଙ୍କର ଚତୁର୍ଥ ଦିଲ୍ଲୀ ବୋଲି ମଧ୍ୟ କୁହାଯାଏ। ସୁଲତାନଙ୍କ ଅମଳରେ ହଜରତ ନିଜାମୁଦ୍ଦିନ ଓ୍ୱାଲିଆ ନିଜର ବାଉଲି ବନାଉଥିଲେ। ତୋଗଲକାବାଦ ମଧ୍ୟ ସେହି ସମୟରେ ତିଆରି ଚାଲିଥାଏ। ସେଥିପାଇଁ ଦିନରେ ମୂଲିଆମାନେ ତୋଗଲକାବାଦ ନଗର ତିଆରି କରନ୍ତି ଓ ରାତିରେ ଆଲୁଜାଳି ବାଉଲି ତିଆରି କରନ୍ତି।

ଏହାଫଳରେ ହାଲିଆ ହୋଇଯାନ୍ତି ମୂଲିଆମାନେ। ଥରେ ଏପରି ହାଲିଆ ହୋଇ ସୁଲତାନଙ୍କ କାମକୁ ଯାଇପାରିଲେ ନାହିଁ। ନ ଆସିବାର କାରଣ ଅନୁସନ୍ଧାନ କରି ବାଦାଶାହା ପ୍ରକୃତ କଥା ଜାଣିପାରିଲେ। ଆଦେଶ ଦେଲେ କୌଣସି ଲୋକ ବାଉଲି ତିଆରି କରିବା ପାଇଁ ତେଲ ବିକ୍ରି କରିପାରିବେ ନାହିଁ। ତେଲ ବିକ୍ରି ବନ୍ଦହେଲା। ସନ୍ଥ ଏ କଥାରେ ବିଚଳିତ ହେଲେ ନାହିଁ। ନିଜର ମନ୍ତ୍ର ବଳରେ ପାଣିରେ ଦୀପଜାଳି ବାଉଲି ତିଆରି କଲେ। ଗିୟାସୁଦ୍ଦିନ ତୋଗଲକଙ୍କର ଧନର କୌଣସି କଳନା ନଥିଲା। ଅନେକ ପରିମାଣରେ ସୁନାକୁ ତରଳାଇ ସେ କାନ୍ଥ ଭିତରେ ରଖିଥିଲେ। ଦୁର୍ଗ ତୋଳାଇବା ବେଳେ ପାଣିର ବ୍ୟବସ୍ଥା ମଧ୍ୟ କରିଥିଲେ। ପୂର୍ବରେ ତୋଗଲକାବାଦ, ପଶ୍ଚିମରେ ପାହାଡ଼, ଦକ୍ଷିଣରେ ହଜାରେ ସ୍ତମ୍ଭର ଇମାରତ ଓ ଉତ୍ତରଦିଗରୁ ପାଣିସବୁ ଅଣାଇ ଦୁର୍ଗ

ଚାଳିପଟେ ଜମା କରି ରଖାଇଥିଲେ। ଗିଆସଉଦ୍ଦିନଙ୍କ ପରେ ତାଙ୍କ ପୁତ୍ର ଜୁନା ଖାଁ ପରେ ମହମ୍ମଦବିନ ତୋଗଲକ ନାମରେ ସମ୍ରାଟ ହେଲେ।

ଏଇ ସମ୍ରାଟ ହେବାର କାହାଣୀ ପଛରେ ଏକ ମର୍ମନ୍ତୁଦ ଘଟଣା ଜଡ଼ିତ ଅଛି। ନିଜାମୁଦ୍ଦିନ ଯାଲିଆଙ୍କ ସହ ତାଙ୍କର ବେଶ୍ ବନ୍ଧୁତା ଥିଲା। ମହମ୍ମଦ ସନ୍ଥଙ୍କ (ନିଜାମଉଦ୍ଦିନ ଓ୍ୱାଲିଆ) ସହ ପରାମର୍ଶ କରି ଏକ ଷଡ଼ଯନ୍ତ୍ରର ଯୋଜନା କଲେ। ଗିୟାସୁଦ୍ଦିନ ତୋଗଲକ ବଙ୍ଗଳାର ବିଦ୍ରୋହ ଦମନ କରିବାପାଇଁ ବଙ୍ଗଳା ଗସ୍ତରେ ଯାଇଥିଲେ। ନିଜାମୁଦ୍ଦିନଙ୍କ ସହ ମତାନ୍ତର ଯୋଗୁଁ ଗିଆସଉଦ୍ଦିନଙ୍କ ଯୋଜନା ଥିଲା କି ସେ ବଙ୍ଗଳାର ବିଦ୍ରୋହ ଦମନ କରି ଫେରିବା ପରେ ନିଜାମୁଦ୍ଦିନଙ୍କୁ ଦେଶରୁ ବାହାର କରିଦେବେ। ସନ୍ଥ ତାଙ୍କୁ ଉତ୍ତର ଦେଇଥିଲେ କି 'ଦିଲ୍ଲୀ ଦୁରସ୍ଥ' (ଦିଲ୍ଲୀ ବହୁତ ଦୂର) ଏହାର ସୁଯୋଗ ନେଲେ ମହମ୍ମଦ ବିନ ତୋଗଲକ। ଗୁପ୍ତରେ ସନ୍ଥଙ୍କ ସହ ପରାମର୍ଶ କଲେ। ପରାମର୍ଶ ଅନୁସାରେ ବଙ୍ଗଳାରୁ ଫେରିବାପରେ ବିଜୟୀବୀର ଗିୟାସୁଦ୍ଦିନ ତୋଗଲକଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ଏକ ସୁସଜ୍ଜିତ ସୁନ୍ଦର ମଣ୍ଡପ ତିଆରି କରିବାର ବ୍ୟବସ୍ଥା ହେଲା। ମଣ୍ଡପଟି ଏପରି ଗଢ଼ାହୋଇଥିଲା କି ପ୍ରବେଶଦ୍ୱାରରେ ହାତୀ ସହ ଲଢ଼ାଇ ହେବାର ଯୋଜନା ଥିଲା। ଆଉ ସେଇ ଲଢ଼ାଇ ସମୟରେ ମଣ୍ଡପଟି ଧୂଳିସାତ୍ ହୋଇଯିବାର ବିକଳ୍ପ ଯୋଜନା ମଧ୍ୟ କରାଯାଉଥିଲା। ଠିକ୍ ତାହାହିଁ ହେଲା। ବଙ୍ଗଳା ଫେରନ୍ତା ବିଜୟୀ ଗିୟାସୁଦ୍ଦିନ ସେ ମଣ୍ଡପରେ ପ୍ରବେଶ ମାତ୍ରେ ମଣ୍ଡପ ଭାଙ୍ଗିଯାଇ ପ୍ରାଣ ହରାଇଲେ ଗିୟାସୁଦ୍ଦିନ। ସମ୍ରାଟ ହେଲେ ମହମ୍ମଦ ବିନ ତୋଗଲକ। ସନ୍ଥଙ୍କ ବାଣୀ ମଧ୍ୟ ସତ୍ୟ ହେଲା।

## ମହମ୍ମଦ ତୋଗଲକ

ମହମ୍ମଦ ତୋଗଲକଙ୍କୁ ଆବୁଲ ଫଜଲ ଏକଛତ୍ରବାଦୀ ଅତ୍ୟାଚାରୀ ଓ କ୍ରୋଧି ଶାସକ ବୋଲି ଗଣୁଥିଲେ। ତାଙ୍କ ଶାସନକାଳ ମଧ୍ୟରେ ସେ ଅନେକବାର ଚାଇନା ଆକ୍ରମଣ କରିଥିଲେ। ଅଧିକନ୍ତୁ ଶାସନ ପରିଚାଳନା ସୂଚାରୁରୂପେ ଚଳାଇନେବାର ଆଶା ରଖି ସେ ଦିଲ୍ଲୀରୁ ରାଜଧାନୀ ଦୌଲତାବାଦକୁ ଉଠାଇନେବାର ଯୋଜନା କଲେ। ଦେଶର ସମସ୍ତ ପ୍ରଜାଙ୍କୁ ନିଜ ଭିଟାମାଟି ଛାଡ଼ି ଦୌଲତାବାଦ ଯିବାପାଇଁ ବାଧ୍ୟ କଲେ। ରାଜି ନ ହେଲେ ସେମାନଙ୍କୁ ଜୋରଜବରଦସ୍ତି ନେଇଯିବାର ବନ୍ଦୋବସ୍ତ କରାଗଲା। ବାଦଶାହା ନିଜେ ଘରଘର ବୁଲି ଯାଞ୍ଚ କରିଥିଲେ।

ଶେଷରେ ରହିଗଲେ ଦୁଇ ବଂଧୁ। ଜଣେ ଛୋଟା ଓ ଆଉ ଜଣେ ଅନ୍ଧ। ଦୁହେଁ ଦୁହିଁଙ୍କୁ ସାହାରା। ସେମାନେ ଦିଲ୍ଲୀ ଛାଡ଼ି ଯିବାକୁ ରାଜି ହେଲେ ନାହିଁ। ଫଳରେ ବାଦଶାହାଙ୍କ ହୁକୁମରେ ସମସ୍ତଙ୍କ ସାମନାରେ ଛୋଟାକୁ ହତ୍ୟା କରାଗଲା। ଆଉ ଅନ୍ଧକୁ ଏପରି ଭାବରେ ଘୋଷାଡ଼ି ନିଆଗଲା ଯେ ଅନ୍ଧର ଗୋଟାଏ ଗୋଡ କେବଳ ଦୌଲତାବାଦରେ ପହଞ୍ଚିପାରିଲା।

ଅଭିଶାପ ପଡ଼ିଲା ଦୁଇ ଅକ୍ଷମ ଲୋକଙ୍କର। ସେଠି ରାଜଧାନୀ ବସାଇ ସାରିଲା ପରେ ଅନେକ ଅସୁବିଧା ହେଲା। ବିଶେଷକରି ପାଣିର। ସେଥିଲାଗି ବାଦଶାହା ଆଦେଶ ଦେଲେ ରାଜଧାନୀ ଦିଲ୍ଲୀକୁ ଫେରାଇ ନେଇଆସିବାପାଇଁ। ଏ କଷ୍ଟ ସହି ନ ପାରି ଅନେକ ପ୍ରଜା ମରିଗଲେ। ଦିଲ୍ଲୀ ସହର ଜନଶୂନ୍ୟ ହୋଇଗଲା। ପୁଣି ସହରକୁ ଲୋକପୂର୍ଣ୍ଣ କରିବାପାଇଁ ଦିଲ୍ଲୀ ଆଖପାଖ ଅଞ୍ଚଳରୁ ଲୋକ ମଗାଗଲା। ତଥାପି ଦିଲ୍ଲୀ ପରିପୂର୍ଣ୍ଣ ହୋଇପାରିଲା ନାହିଁ।

ଇବନ ବତୁତାଙ୍କ ଭାଷାରେ ଦିଲ୍ଲୀ ସହର ସାରା ଭାରତରେ କାହିଁକି ସାରା ମୁସଲିମ ଜଗତର ସବୁଠୁ ବଡ଼ ଓ ସୁନ୍ଦର ସହର। କିନ୍ତୁ ସେ ଅବସ୍ଥାରେ ଅନେକ ଦିନ ଧରି ତାର ପୂର୍ବ ସୌନ୍ଦର୍ଯ୍ୟ ଫେରିପାଇ ନଥିଲା। ଏସବୁ ବିକଳ୍ପ ଯୋଜନା ସତ୍ତ୍ୱେ ବାଦଶାହାଙ୍କର ନ୍ୟାୟପୂର୍ଣ୍ଣତା, ଅନ୍ୟର ଆବଶ୍ୟକ ପୂରଣ କରିବାର ଦରଦ; ଆଉ ଦୋଷୀକୁ ଉଚିତ ନ୍ୟାୟ ଦେବାର ମନୋବୃତ୍ତି ଅତୁଳନୀୟ ଥିଲା। ଧନୀ ଦରିଦ୍ର, ଉଚ୍ଚ ନୀଚ ଭାବ ତାଙ୍କ ପାଖରେ ନଥିଲା। ସବୁ ବନ୍ଦୀଙ୍କୁ କେବଳ ଶୁକ୍ରବାର ବ୍ୟତିତ ପ୍ରତ୍ୟେକ ଦିନ ତାଙ୍କ ପାଖରେ ହାଜିର କରାଯାଉଥିଲା। କିନ୍ତୁ ଶୁକ୍ରବାର କଥା ଅଲଗା। ସେଦିନ ସେମାନେ ମୁକ୍ତ। ଭଗବାନଙ୍କ ନିକଟରେ ପ୍ରାର୍ଥନାରତ। ସମସ୍ତଙ୍କ ମୁହଁରେ ଗୋଟିଏ ମାତ୍ର ପ୍ରାର୍ଥନା। 'ହେ ପ୍ରଭୂ ଆମକୁ ଆମ ଦୁଃର୍ଭାଗ୍ୟରୁ ବଞ୍ଚାନ୍ତୁ।' ମାସୁଦ ଖାଁ ତାଙ୍କ ସାବତ ମା' ପୁଅ ଭାଇ। ତାଙ୍କ ମା' ଆଲ୍ଲାଉଦ୍ଦିନଙ୍କ ଝିଅ। ଦେଖିବାକୁ ଅତି ସୁନ୍ଦର। ଢଉଳ ଢାଉଳ ଚେହେରା। ମାସୁଦ ଖାଁ ବାଦଶାହାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ। କିନ୍ତୁ ଏ ଦୋଷ ସେ ମୁକ୍ତ କଣ୍ଠରେ ସ୍ୱୀକାର କରିନେଲେ। ଖୋଲା ବଜାରରେ ତାଙ୍କୁ ହତ୍ୟା କରାଗଲା ଓ ତିନିଦିନ ପର୍ଯ୍ୟନ୍ତ ସେହିପରି ଭାବରେ ଛାଡ଼ିଦିଆଗଲା। ମାସୁଦ ଖାଁଙ୍କ ମା ମଧ୍ୟ ସେଇ ଜାଗାରେ ପଥର ମାଡ଼ ଖାଇ ମରିଥିଲେ। ଦୋଷ ଥିଲା ବ୍ୟଭିଚାର। ଏ ତ ଅତ୍ୟାଚାରର କାହାଣୀ। ଏ ସବୁ ସତ୍ତ୍ୱେ ଦୁର୍ଭିକ୍ଷ ପଡ଼ିବା ସମୟରେ ରାଜଧାନୀ ଭିତରେ ଅନେକ କୁଅ ଖୋଳାଯାଇଥିଲା।

ଫଳରେ ସେଇଜାଗାରେ କୃଷିଜାତ ଦ୍ରବ୍ୟ ଉତ୍ପାଦନ ହୋଇପାରିବ ବୋଲି କୃଷକମାନଙ୍କୁ କୁହାଗଲା। ବିହନ ମଧ୍ୟ ମାଗଣାରେ ଯୋଗାଇ ଦିଆଗଲା ଆଉ କୃଷିଜନିତ ଆବଶ୍ୟକୀୟ ଯନ୍ତ୍ରପାତି ମଧ୍ୟ। ଏଥିପାଇଁ ସେ ସରକାରୀ ଭଣ୍ଡାରରେ ୬ ମାସ ପାଇଁ ଖାଦ୍ୟ ମହଜୁଦ ରଖିଲେ। ରାସନ ପଦ୍ଧତିରେ ଲୋକଙ୍କ ମଧ୍ୟରେ ବିତରଣକଲେ। ଦ୍ୱିତାଲା ବିଶିଷ୍ଟ ସାତପୁଲା ନିକଟରେ ପୋଲ ତିଆରି କଲେ। ବର୍ତ୍ତମାନ ଏ ପୋଲ ମାଲବ୍ୟନଗର ନିକଟରେ ଅଛି। ଏକ ନୂଆ ସହର ବସାଇଲେ। ନାଁ ଦେଲେ 'ଜାହାଁପନା' ତାଙ୍କ ଶାସନକାଳ ସମୟରେ ଇବନ ବତୁତା ଦିଲ୍ଲୀ ଆସିଲେ। ମୃତ୍ୟୁ ହେଲା ଅମିର ଖୁସୁରୁ ଓ ନିଜାମୁଦ୍ଦିନ ଆଲିୟାଙ୍କର ୧୩୩୪ରେ।

ବିଦେଶୀ ପରିବ୍ରାଜକମାନଙ୍କୁ ଅତି ଆଦର ଓ ସମ୍ମାନ ଦେଖାଉଥିଲେ। ମହମ୍ମଦ ବିନ ତୋଗଲକ ପର୍ଶିୟାରୁ ଜଣେ ଦର୍ଶନଶାସ୍ତ୍ର ବିଶାରଦ ଦର୍ଶନଶାସ୍ତ୍ର ଉପରେ କିଛି ବହି ନେବାପାଇଁ ତାଙ୍କ ଲାଇବ୍ରେରୀରେ ପହଞ୍ଚିଲେ। ଏପରି ଅନେକ ବହି ତାଙ୍କ ଲାଇବ୍ରେରୀରେ ମହଜୁଦ୍ ଥାଏ। ତାଙ୍କୁ ବହି ଉପହାର ଦେବାପାଇଁ ବହିଥାକରୁ ବହି ବାହାର କରିବାକୁ ଆଦେଶ ଦେଲେ। ବହି ବାହାର କରିବା ସମୟରେ ବହି ଥାକରୁ ଅନେକ ମୂଲ୍ୟବାନ ରତ୍ନ ସବୁ ବାହାରିଲା। ସେ ସବୁ ଏକାଠି କରି ଆଞ୍ଜୁଳା ଭରି ସେ ଦର୍ଶନବିତଙ୍କୁ ଦେଇଦେଲେ। ଜନସାଧାରଣ ତାଙ୍କୁ ସମ୍ବୋଧନ କରୁଥିଲେ 'ମହମ୍ମଦଖୁନୀ'। ନିଜ ନାଁରେ ସେ ମୁଦ୍ରା ତିଆରି କରିବାରେ ବ୍ୟସ୍ତ ରହିଲେ। ଶେଷ ହେଲା ରାଜକୋଷରେ ଗଚ୍ଛିତ ସୁନା ଆଉ ରୁପାର ପରିମାଣ। ଖବର ପାଇଲେ ଆଲାଉଦ୍ଦିନ ଦକ୍ଷିଣରେ ଅନେକ ସୁନା ରୂପା ଗଚ୍ଛିତ ରଖିଛନ୍ତି। ସେ ସବୁ ବାହାର କରି ଆଣିଲେ। ଇବନ ବତୁତାଙ୍କ ମତରେ ମହମ୍ମଦ ବିନା କାରଣରେ ଲୋକଙ୍କୁ ଉପହାର ଦେଉଥିଲେ। ଆଉ ଦଣ୍ଡ ବିଧାନ ମଧ୍ୟ ଅଦ୍ଭୂତ। ଦୋଷ ନ ଥାଇ ମୃତ୍ୟୁ ଦଣ୍ଡ ଦେବାର ସ୍ୱାଭିମାନ ମଧ୍ୟ ତାଙ୍କର ଥିଲା।

ଯେତେ କ୍ରୁର ହେଲେ ବି ମଣିଷ ହିସାବରେ ଉତ୍ତମ ଓ ସମାନତା ଦେଖାଇବାରେ ମଧ୍ୟ ଉପଯୁକ୍ତ। ମହମ୍ମଦ ଥିଲେ ଉଚ୍ଚଶିକ୍ଷିତ, ବୁଦ୍ଧିମାନ, ଆଉ ଏକାଧାରରେ କବି ଓ କାବ୍ୟରଚୟିତା। ଗଣିତ ଶାସ୍ତ୍ର ଓ ଚିକିତ୍ସା ବିଜ୍ଞାନରେ ମଧ୍ୟ ଧୁରନ୍ଧର। ଇସଲାମ ଜଗତରେ ସେ ଥିଲେ ଜଣେ ଉଚ୍ଚକୋଟୀର ହସ୍ତଲିପି ସଂଚାଳକ (calliography)।

## ଫିରୋଜସାହ ଟୋଗଲକ

ମହମ୍ମଦ ବିନ ଟୋଗଲକଙ୍କର କୌଣସି ସନ୍ତାନ ନଥିଲେ। ଫଳରେ ଭଣଜା ଫିରୋଜସାହ ଟୋଗଲକ ଗାଦିରେ ବସିଲେ ମହମ୍ମଦ ବିନ ଟୋଗଲକଙ୍କ ପରେ ପରେ ୧୩୫୧ରେ। ସେ ଥିଲେ ପ୍ରଜାବତ୍ସଳ ଶାନ୍ତିପ୍ରୀୟ ଲୋକ। ଦିଲ୍ଲୀଠାରୁ ୫ କିଲୋମିଟର ଦୂର ଗାଉଁନ ଗାଁରେ ଗୋଟେ ସହର ବସାଇଲେ। ନାଁ ରଖିଲେ ଫିରୋଜାବାଦ। ଏହାଥିଲା ଯମୁନା ନଦୀ କୂଳରେ। ସାଧାରଣ ଜନତାଙ୍କ ପାଇଁ ଅନେକ ଘର ତୋଳାଇଲେ। ସର୍ବସାଧାରଣଙ୍କ ପାଇଁ ୮ଟି ମସଜିଦ ମଧ୍ୟ ବନାଇଲେ। ଏଇ ଦୁଇ ସହର ଭିତରେ (ଦିଲ୍ଲୀ ଓ ଫିରୋଜାବାଦ) ଜୀବନଯାତ୍ରା ଏତେ ସହଜ ଓ ସୁନ୍ଦର ହୋଇଗଲା ଯେ ଦିଲ୍ଲୀରୁ ଫିରୋଜାବାଦକୁ ପ୍ରତ୍ୟେକ ସପ୍ତାହରେ ଲୋକେ ବୁଲିବାକୁ ଆସିପାରୁଥିଲେ।

ଫିରୋଜସାହଙ୍କର ଥିଲା ମୋଗଲମାନଙ୍କ ଉପରେ ପ୍ରଥମ ବିଜୟ। ଅନେକ ଲୁଣ୍ଠନ କରିବା ପରେ ମୋଗଲମାନେ ଦିଲ୍ଲୀ ପାଖାପାଖି ଦେଖାଦେଲେ। ଫିରୋଜସାହ ସବୁ ଶକ୍ତିକୁ ଏକାଠି କରି ସେମାନଙ୍କୁ ଆକ୍ରମଣ କଲେ। ମୋଗଲମାନେ ପରାଜିତ ହେଲେ। ମୋଗଲମାନଙ୍କ ଅଧିନରେ ଥିବା ଫିରୋଜ ବଜାର ମୁକ୍ତ ହେଲା। ବନ୍ଦୀ ଥିବା ଲୋକମାନଙ୍କୁ ମଧ୍ୟ ମୁକ୍ତ କରାଗଲା।

ଫିରୋଜାବାଦ ତିଆରି ହେବାର ଦୁଇବର୍ଷ ପରେ ଦେଶରେ ଅକାଳ ପଡ଼ିଲା। ଯମୁନା ଓ ସତଲଜ ନଦୀ ଧାରରୁ ପାଣି ଅଣାଇବା ଉଦ୍ଦେଶ୍ୟରେ ଏକ କେନାଲ ଖୋଳାହେଲା। ଲୋଦି କଲୋନି ପଛରେ ଦ୍ୱିତୀୟ ଯମୁନା ନାମରେ ଏକ କେନାଲ ବର୍ତ୍ତମାନ ସୁଦ୍ଧା ମହଜୁଦ ଅଛି। ଫିରୋଜାବାଦ ସହର ଏତେ ସୁନ୍ଦର ଆଉ କାରୁକାର୍ଯ୍ୟଖଚିତ ଥିଲାଯେ ତାକୁ 'ଉଇଣ୍ଡସର ଅଫ ଦିଲ୍ଲୀ' ଆଖ୍ୟା (Windsorof Delhi) ଦିଆଯାଇଥିଲା। ଜନସାଧାରଣଙ୍କୁ ଅକାଳରୁ ବଞ୍ଚାଇବାପାଇଁ ୫୦ଟି ନାଳ, ୩୦ଟି ଘର, ୧୦୦ ହାମାମ୍, ଆଉ ୧୫୦ ପୋଲ ନିର୍ମାଣ କରିଥିଲେ। ପ୍ରାର୍ଥନା ପାଇଁ ତିଆରି କରିଥିଲେ ୪୦ ମସଜିଦ୍। ପାଠପଢ଼ିବାର ସୁଯୋଗ ପାଇଁ ୩୦ଟି ବିଦ୍ୟାପୀଠ ମଧ୍ୟ କରିଥିଲେ। ପୁରୁଣା ଇମାରତ ନିର୍ମାଣ, ଅନେକ ଛାପାଖାନା ମଧ୍ୟ ଖୋଲିଥିଲେ। ଲାଲ ଗୁମ୍ବଦ ତାଙ୍କ ସମୟର ଇତିହାସର ଏକ ମୂକସାକ୍ଷୀ। ଫଳ ବଗିଚା ସବୁ ତିଆରି କରି ସେଥିରୁ ରାଜସ୍ୱ ଆଦାୟ ହେଉଥିଲା। ଏ ବର୍ଣ୍ଣନା ସବୁ ଇତିହାସକାର ଫରିସ୍ତଙ୍କ ବର୍ଣ୍ଣନା। କୋଟଲାରେ ଦୁଇଟି ମନମୁଗ୍ଧକର ଜିନିଷ

ଦେଖିବାକୁ ମିଳେ । (୧) ଅଶୋକଲାଟ ଓ (୨) ଜାମା ମସଜିଦ । ୧୩୯୫ରେ ତୈମୁର ତାଙ୍କ ଫତଓ୍ୱା ପଢ଼ାଇବା ସମୟରେ ଏସବୁର ନକ୍ସା ତାଙ୍କ ସାଙ୍ଗରେ ନେଇଯାଇଥିଲେ ତାଙ୍କ ଦେଶକୁ । ଫିରୋଜ ନିଜେ ଶିକାର ପ୍ରିୟ ଥିଲେ । ସେଥିଲାଗି ପାହାଡ଼ ଉପରେ ଏକ ଶିକାରଘର ତିଆରି କରିଥିଲେ । ଶିକାର କରିବା ବ୍ୟତିତ ରହିବାପାଇଁ ଘର, ଖାଇବା ହଲ ବି ଥିଲା । ଗୋଟାଏ ଘର ମଧ୍ୟ ପକ୍ଷୀମାନଙ୍କ ରହିବାପାଇଁ ଥିଲା । ଘର ଆଗରେ ଲଗାଇଥିଲେ ଶବ୍ଦକରି ବାଜିବା ଘଣ୍ଟା ।

ଦରବାରର ପରିଚାଳନା ପାଇଁ ଦରବାରକୁ ତିନିଭାଗରେ ବିଭକ୍ତ କରିଥିଲେ । ବାହାରେ ସାଧାରଣ ଜନତାଙ୍କ ପାଇଁ ଦରବାର, ଭିତରେ ଦରବାରର ଲୋକଙ୍କ ପାଇଁ ଦରବାର ଆଉ ଖାସଲୋକଙ୍କ ଆଲୋଚନା ପାଇଁ ଦରବାର । ମାଲଗୁଜାରୀ ମହକୁମା ଇତ୍ୟାଦି ଅନେକ ନୂଆ କର ସବୁ ବସାଇଥିଲେ ।

ଫିରୋଜସାହ ତୋଗଲକଙ୍କ ନିଜପାଇଁ ଅନେକ ମହଲ ବନାଇଥିଲେ– ୧. ଅଙ୍ଗୁରି ମହଲ, ୨. ଛଜ୍ଜା ବୌବିନ ମହଲ ୩. ମହଲ ବରେ ଆମ । ଏ ତିନିମହଲର ବର୍ତ୍ତମାନ କିଛି ଚିହ୍ନବର୍ଣ୍ଣ ନାହିଁ ।

ଭୂଲି ଭ୍ୟାତାରୀଙ୍କ ମହଲ ପୁଷା ରୋଡ଼ ନିକଟରେ ଅବସ୍ଥିତ । ପ୍ରାୟ ୭୦୦ ବର୍ଷପରେ ଏ ଜାଗା ଜନସାଧାରଣଙ୍କ ପାଇଁ ଦିଲ୍ଲୀ ଟୁରିଜିମ ପକ୍ଷରୁ ଖୋଲାହେଲା । ଏ ମହଲ ଫିରୋଜସାହ ତୋଗଲଜ ଦ୍ୱାରା ନିର୍ମିତ ହୋଇଥିଲା । ଏ ମହଲର ବର୍ତ୍ତମାନ କୌଣସି ଅବଶେଷ ନାହିଁ । ବର୍ତ୍ତମାନ ଏହା ଏକ ଖୋଲା ପଡ଼ିଆ । ପାଚେରୀ ଘେରା ଏଇ ଜାଗାଟିର ଦୁଇପଟେ ଦୁଇଟି ଗେଟ । ପାଚେରୀ ୬ ଫୁଟ ଉଚ୍ଚ । ବୁ-ଅଲିଭାଟି ବୋଲି ଜଣେ ନୋବେଲଙ୍କ ଅକ୍ତିଆରରେ ଏ ଜାଗା ଥିଲା । ପରେ ଭୁଲି ଭଟ୍ୟାରୀଙ୍କ ଅଧିନକୁ ଆସିଥିଲା ।

ସିକନ୍ଦର ଲୋଦିଙ୍କ ସମୟରେ ବୋଧହୁଏ ଏହା ନଷ୍ଟ ହୋଇଯାଇଥିଲା ଏ ସ୍ଥାନରେ ବର୍ତ୍ତମାନ ପବନ ପରଛାନା ମେଳା କରାଯାଉଛି । ପବନର ଗତି ଅନୁଯାୟୀ 'ଚାଷ'ର ଭବିଷ୍ୟତ ଜାଣିବାପାଇଁ, ବସନ୍ତ ପଞ୍ଚମୀରେ ଯୋଗମାୟା ମନ୍ଦିର ପାଖରେ ଏ ମେଳାର ଆୟୋଜନ କରାଯାଏ । ଏହାକୁ ଗୁଡ଼ି ଉଡା ମେଳା ମଧ୍ୟ କହନ୍ତି ।

ବସନ୍ତ ପଞ୍ଚମୀରୁ ହୋଲି ପର୍ଯ୍ୟନ୍ତ ଏପରି ମେଳା ହୁଏ । ଗୁଡ଼ି ଉଡାର ପ୍ରଧାନ ପର୍ବ ସୁତାରେ ମାଞ୍ଜା ଦେବା । ମାଞ୍ଜା ଦେବାପାଇଁ ପ୍ରତିଯୋଗୀତା ହୁଏ । ଉପଯୁକ୍ତ ମାଞ୍ଜାଦେଇ ଆକାଶରେ ପବନର ଗତି ଜାଣିହୁଏ । ତା' ସହିତ ଅନ୍ୟର

ଗୁଡ଼ିକୁ ପେଞ୍ଚପକାଇ କାଟିବାର ପ୍ରଣାଳୀ ମଧ୍ୟ ଆବଶ୍ୟକ। ଭଲ ମାଞ୍ଜା ଦେଉଥିବା ଲୋକକୁ ନୌସେରା (ନ'ଟି ବାଘମାରିବା ଲୋକ) ଉପାଧି ଦିଆଯାଏ।

ଏ ସ୍ଥାନ ପଛରେ ଏକ ପ୍ରେମକାହାଣୀ କଡ଼ିତ। ଶିକାର ପ୍ରେମୀ ଫିରୋଜସାହ ଶିକାର ଶେଷ କରି ସେ ରାସ୍ତାରେ ଫେରୁଥିଲେ। ହଠାତ୍ ପାତ୍ରମନ୍ତ୍ରୀଙ୍କଠୁ ବିଚ୍ୟୁତ ହେଲେ। ଶୋଷରେ ଛଟପଟ ହୋଇ ପାଣିର ସନ୍ଧାନରେ ବାଟବଣା ହୋଇ ଘୁରିବୁଲୁଥିଲେ। ହଠାତ୍ ଆଖିଆଗରେ ଦେଖିଲେ ଜଣେ ସ୍ତ୍ରୀ ଲୋକ କାଖରେ କଳସି ଧରି ଆଗରେ ଆଗରେ ଚାଲିଛି। ବହୁତ ଡାକିଲେ। କିନ୍ତୁ କିଛି ଫଳ ହେଲାନି। ଶେଷରେ ଘୋଡ଼ା ଝପଟାଇ ତା' ପଛେ ପଛେ ଗଲେ।

କିଛିବାଟ ଗଲାପରେ ସ୍ତ୍ରୀ ଲୋକଟି ଗୋଟିଏ ଗଛ ମୂଳରେ ବସିଲା। ଘୋଡ଼ା ଦଉଡ଼ାଇ ରାଜାସେଠାରେ ପହଞ୍ଚିଲେ ଓ ସେ ରାଜାଙ୍କୁ ଆଞ୍ଜୁଳାଭରି ପାଣିଦେଲା। ଶୋଷ ମରିଗଲା ରାଜାଙ୍କର। ସନ୍ତୁଷ୍ଟ ହୋଇ ତାଙ୍କର ପାଣିଦାତ୍ରୀଙ୍କ ମୁହଁକୁ ସେ ନିରେଖିଲେ। ଯଦି ନ ଅନାଇଥାନ୍ତେ ହୁଏତ ତାଙ୍କର ଜୀବନରେ ଏକ ଅବଶୋଷ ରହିଯାଇଥାନ୍ତା। ଏ ଅପରୂପ ସୌନ୍ଦର୍ଯ୍ୟ ଦର୍ଶନ କରି ଫିରୋଜଶାହ ସାଙ୍ଗେ ସାଙ୍ଗେ ତାକୁ ବିବାହ ପ୍ରସ୍ତାବ ଦେଲେ। ବିବାହ ପ୍ରସ୍ତାବ ଗ୍ରହଣ କରି ସେ ସ୍ତ୍ରୀ ଲୋକ ରାଜି ହେଲା ସତ କିନ୍ତୁ ସର୍ତ୍ତ ରଖିଲା କି ରାଜା ସେଇ ଜାଗାରେଗୋଟିଏ ମହଲ ତୋଳାଇଦେବେ। ସେ ରାଜମହଲକୁ ଯିବ ନାହିଁ। ଆଉ ରାଜା ତାକୁ ଦେଖାକରିବାକୁ କେବଳ ସଂଧ୍ୟା ପରେ ଆସିବେ। ସର୍ତ୍ତ ଅନୁଯାୟୀ ମହଲ ତୋଳାହେଲା। କିନ୍ତୁ ଆଶ୍ଚର୍ଯ୍ୟର କଥା ରାଜାଙ୍କ ମୃତ୍ୟୁପରେ ସେ ମହଲ ଅଚାନକ ଅଗ୍ନିରେ ନଷ୍ଟ ହୋଇଗଲା। କେବଳ ରହିଗଲା ଦୁଇଟି ଫାଟକ।

ଫିରୋଜସାହଙ୍କ ବିଶେଷ ଖ୍ୟାତି ଏହି ଦୁଇଟି ଅଶୋକସ୍ତମ୍ଭ (ମିରଟରୁ ଓ ଆମ୍ବାଲା ତୋପ୍ରା) ଦିଲ୍ଲୀକୁ ଆଣି ଗୋଟିଏ ରଜ ପାଖରେ ଓ ଅନ୍ୟଟି ଫିରୋଜାବାଦରେ ବସାଇବା। ଏହି ସ୍ତମ୍ଭକୁ ଏତେ ଦୂର ଜାଗାରୁ ଖୋଳାଇ ଦିଲ୍ଲୀକୁ ଆଣିବା କାହାଣୀ ମଧ୍ୟ ଚିତ୍ତାକର୍ଷକ। ଲାଟସବୁକୁଖୋଳା ହେବାର ଆଦେଶ ଦେଲେ ଫିରୋଜସାହା। କାମ ଆରମ୍ଭ ହେଲା ସତ କିନ୍ତୁ ଭୟ ହେଲା ସ୍ତମ୍ଭ ଯଦି ତଳେ ପଡ଼ିଯାଇ ଭାଙ୍ଗିଯାଏ। ସବୁ ଆଶା ବ୍ୟର୍ଥ ହୋଇଯିବ।

ସେଥିପାଇଁ ହଜାର ହଜାର ମହଣ ଶିମିଳି ତୁଳା ଯୋଗାଡ଼ ହୋଇ ଖୁମ୍ବ ଚାରିପଟେ ବିଛାଇ ଦିଆଗଲା। ଖୁମ୍ବ ଖୋଳା ସରିବା ପରେ ଦେଖାଗଲା ତା' ତଳେ

ଚବୁତରା ମଧ ଅଛି। ନିଖୁଣ ଭାବରେ ଖୁମ୍ବ ବାହାରିଲା। ଚବୁତରା ମଧ ଖୋଲା ହୋଇ ବାହାରିଲା। ସବୁ ତ ବାହାରିଲା। ଏଥରକ ଯିବ କିପରି ? ଖୁମ୍ବ ଦେହରେ ଲଟାପତ୍ର ଘାସ, ଚମଡ଼ା ଇତ୍ୟାଦି ଭଲଭାବରେ ଗୁଡ଼ାଇ ଦିଆଗଲା। ରାସ୍ତାରେ ଯେପରି ଏ ଖୁମ୍ବ ଦେହରେ କୌଣସି ଆଘାତ ନହୁଏ। ଏତେ ରାସ୍ତା ଯିବାର କୌଣସି ଅସୁବିଧା ନହୁଏ। ବିରାଟ ଯାନ ତିଆରି ହେଲା। ସେଥିରେ ଖୁମ୍ବକୁ ଶୁଆଇ ଦିଲ୍ଲୀ ଅଣାଗଲା। ଲକ୍ଷ ଲକ୍ଷ ଶ୍ରମିକ, ଏହି କାମରେ ଲାଗିଲେ ଓ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ ହେଲା। ଅନେକ ପରିଶ୍ରମ ଆଉ ଅନେକ ପାରିଶ୍ରମିକ। କୋଟଲାରେ ଯେଉଁ ଲାଟ ପୋତାହେଲା ତହିଁରେ ଅନେକ ଲେଖ ଦେଖିବାକୁ ମିଳିଲା। ବହୁତ ଚେଷ୍ଟା କରାଯାଇଥିଲା ପଢ଼ିବାପାଇଁ। ପଢ଼ିହେଲା ନାହିଁ। ପରେ କେହି ଜଣେ ଏ ଲେଖାକୁ ପଢ଼ି ତର୍ଜମା କଲେ। ଲେଖାଥିଲା; 'କେହି ବ୍ୟକ୍ତି ଏ ଖୁମ୍ବକୁ ତା' ନିଜ ଜାଗାରୁ ଉଠାଇ ପାରିବେ ନାହିଁ। କିନ୍ତୁ ଭବିଷ୍ୟତରେଜଣେ ମୁସଲମାନ ବାଦଶାହା (ଯାହାର ନାଁ ସୁଲତାନ ଫିରୋଜସାହ ହୋଇଥିବ) ସେ କେବଳ ଏହାକୁଖୋଳାଇ ଉଠାଇପାରିବ।'

ଖୁମ୍ବ ଉପରେ ଚାନ୍ଦ ଚିହ୍ନ ଥିଲା। ସୁନାର ଖିଲାଣ ଥିବାର ଅନୁମାନ କରାହୁଏ। ହୁଏତ ବିଜୁଳି ଆଘାତରେ ବା ତୋପମାଡ଼ରେ ଏହା ନଷ୍ଟ ହୋଇପାରିଥାଏ। ଆହୁରି ଏକ ଲେଖ ମଧ ଦେଖାଯାଏ। ସେଥିରେ ଚୌହାନବଂଶଜ ଶାକମ୍ବରୀର ରାଜା ବିଶାଳଦେବଙ୍କ ବିଜୟର ବର୍ଣ୍ଣନା ଥିଲା। ପ୍ରଥମ ଲେଖ ଅଶୋକଙ୍କର ସବୁଠୁ ମହତ୍ୱପୂର୍ଣ୍ଣ ବୋଲି ଗଣାଯାଏ। ପରେ ପ୍ରାୟ ୧୮୦୦ ଶତାବ୍ଦୀ ବେଳକୁ ଏହି ଖମ୍ବ ଖଣ୍ଡ ଖଣ୍ଡ ହୋଇ ପାଞ୍ଚଖଣ୍ଡରେ ବିଭକ୍ତ ହୋଇଯାଇଥିଲା। ଅକ୍ଷର ପଢ଼ି ହେଉ ନଥିଲା। ୧୮୩୮ରେ ହିନ୍ଦୁରାଜାମାନେ ଯେବେ ଫେଜର ସାହେବଙ୍କ କୋଠୀ କିଣିଲେ ଲାଟର ଏ ପାଞ୍ଚଖଣ୍ଡ ଅଂଶ ମଧ ଆଣିଥିଲେ। ପ୍ରାୟ ୧୮୬୭ ସମୟକୁ ଏ ଖଣ୍ଡମାନଙ୍କୁ ଯୋଡ଼ି ପାହାଡ଼ ଉପରେ ଚଉତରା ଉପରେ ଲାଟକୁ ରଖାଗଲା। ତଳେ ଲେଖା ଥିଲା, ଏ ସ୍ତମ୍ଭ ଅଶୋକଙ୍କର। ଖ୍ରୀ.ପୂ. ୩୦ ଶତାବ୍ଦୀରେ ଅଶୋକ ଏହାକୁ ମିରଟରେ ବନାଇଥିଲେ। ଫିରୋଜସାହ ଏହାକୁ ମିରଟରୁ ଆଣି ଶିକାରଘରେ ଲଗାଇଥିଲେ। ୧୭୧୩ରୁ ୧୯ ଭିତରେ ବାରୁଦଶାଳାରେ ନିଆ ଲାଗିବା ଫଳରେ ଏହା ଧ୍ୱଂସପ୍ରାୟ ହୋଇଯାଇଥିଲା।

ଲୋକଶ୍ରୁତି ଅନୁଯାୟୀ ବିଜୁଳି ଆଘାତରେ ମଧ କୁତୁବମିନାର ନଷ୍ଟ ହୋଇଯାଇଥିଲା। ଫିରୋଜସାହଙ୍କ ଅମଳରେ। ସେ ଚତୁର୍ଥ ମହଲା ତିଆରି କଲେ।

ସମୁଦାୟ ମିନାରକୁ ମରାମତି କଲେ। ଉପରେ ୫ମ ତାଲା ମଧ୍ୟ ଯୋଗକଲେ। ପ୍ରାୟ ୧୩୮୬ ବେଳର କଥା। ମୃତ୍ୟୁହେଲା ଫିରୋସସାହ ଟୋଗଲକଙ୍କର ୧୩୮୮ରେ। ତାଙ୍କ ପରେ ଆହୁରି ଆଠଜଣ ରାଜା ରାଜୁତି କରିଥିଲେ ହେଁ ନିଜ ନିଜ ଭିତରେ ଲଢ଼ାଇରେ ବ୍ୟସ୍ତ ରହି ବାହ୍ୟ ଆକ୍ରମଣକୁ କେହି ଦୃଷ୍ଟି ଦେଲେ ନାହିଁ। ଏହି ସମୟରେ ହିନ୍ଦୁମାନେ ଜିଜିୟା କର ଦେବା ବନ୍ଦ କରିଦେଲେ।

ଫିରୋଜଶାହଙ୍କ ପୁଅ ଫତେ ଖାନ ୧୩୭୪ରେ କବର ଗଢ଼ିଲେ। ତା' ଉପରେ ଏକ ମହଲ କଦମ-ଇ-ସରିଫ ନାମରେ ହାଉସ-ଖାସ ଗଢ଼ାଇଲେ। ୧୩୯୫ରୁ ୧୪୧୩ ପର୍ଯ୍ୟନ୍ତ ମହମ୍ମଦ ଟୋଗଲଙ୍କୁ ମିଶାଇ ଜଣକ ପରେ ଜଣେ ରାଜୁତି କରିଥିଲେ ମଧ୍ୟ କୌଣସି ସ୍ମୃତିଚିହ୍ନ ରଖିଯାଇନାହାନ୍ତି। ୧୩୯୮ରେ ଆସିଲେ ତୈମୁର। ଇନ୍ଦସ୍ ଓ ଝେଲମ ପାର ହୋଇ ତୈମୁର ମୁଲତାନ, ଭାଟନିସ ଓ କାରଥାଲ ଅଧିକାର କଲେ। ସେ ଦେଶ ଲୁଣ୍ଠନ ଓ ହତ୍ୟା କରିବାରେ ମଗ୍ନ ରହିଲେ। ପରେ ପରେ ୧୩୯୮ରେ ଦିଲ୍ଲୀରେ ପହଞ୍ଚିଲେ। ମହମ୍ମୁଦ ସାହ ଓ ତାଙ୍କ ମନ୍ତ୍ରୀ ମାଲୁ ଇକବାଲ ତୈମୁରଙ୍କୁ ପ୍ରତିରୋଧ କଲେ।

ଯୁଦ୍ଧ ଆରମ୍ଭ ହେବା ଆଗରୁ ପ୍ରାୟ ଲକ୍ଷେ ହିନ୍ଦୁ ବନ୍ଦୀଙ୍କୁ ନିର୍ମମ ଭାବରେ ହତ୍ୟା କଲେ ତୈମୁର। ମହମ୍ମୁଦ ଓ ଦିଲ୍ଲୀ ସୈନ୍ୟଙ୍କର ରକ୍ତ ତାତି ଉଠିଲା। ସେମାନେ ସାହସର ସହିତ ସାମନା କଲେ ତୈମୁରଙ୍କର। କିନ୍ତୁ ପରାଜିତ ହୋଇ ମହମ୍ମୁଦ ଗୁଜୁରାଟ ପଳାୟନ କଲେ ଆଉ ଦିଲ୍ଲୀ ଅବନତ ମସ୍ତକରେ ଅତ୍ୟାଚାର ସହିନେଲା। ତୈମୁରଙ୍କ ବିଜୟ ହେଲା। ହାଉସଖାସ ଠାରେ ସର୍ବସାଧାରଣ ତୈମୁରଙ୍କୁ ସ୍ୱାଗତ ଜଣାଇଲେ। ବାସସ୍ଥାନ ପାଇଁ ଦାବି ଜଣାଇଲେ। ତୈମୁର ମଧ୍ୟ ପ୍ରତିଶ୍ରୁତି ଦେଲେ ସେମାନଙ୍କର ଦାବିପୂରଣ କରିବାକୁ।

କିନ୍ତୁ ନିଜର ସୈନ୍ୟମାନଙ୍କୁ ଅତ୍ୟାଚାର କରିବାରୁ ବିରତ କରିପାରିଲେ ନାହିଁ। ଜନସାଧାରଣ ତୈମୁରଙ୍କୁ ପ୍ରତିରୋଧ କଲେ। ରାଗିଯାଇଁ ତୈମୁର ସୈନ୍ୟମାନଙ୍କୁ ଅଧିକ ଲୁଣ୍ଠନ କରିବାକୁ ଆଦେଶ ଦେଲେ। ଦିନ ଦିନ ଧରି ଲୁଣ୍ଠନ ଚାଲିଲା। ବିଜେତା ସୈନ୍ୟମାନେ ଅନେକ ଧନସଂପତ୍ତିର ଅଧିକାରୀ ହେଲେ ଆଉ ପ୍ରତ୍ୟେକ ସୈନିକ ଦଶଜଣ ଲେଖାଏଁ ଜନସାଧାରଣଙ୍କୁ ଦାସ କରି ରଖିଲେ। କେତେକ ବିଶିଷ୍ଟ କାରିଗରଙ୍କୁ ସମରକନ୍ଦ ପଠାଇ ଦିଆଗଲା। ସେଠାରେ ଗୋଟେ ଶୁକ୍ରବାର ମସଜିଦ ଭଳି ଏକ ମସଜିଦ ତୋଳାଇବା ପାଇଁ। ତୈମୁର ଏହି ମନୋଭାବ ନେଇ ଆଉ ପ୍ରାୟ

ପନ୍ଦରଦିନ ରହିଗଲେ। ପରେ ଫିରୋଜାବାଦ ବାଟେ ଯମୁନା ପାର ହୋଇ ହରଦ୍ୱାରରେ ପହଞ୍ଚିଲେ। ତା'ପରେ ଶିବାଲିକ ପାହାଡ଼ର କାଁଗ୍ରା ଓ ଜାମ୍ମୁ ଲୁଣ୍ଠନ କଲେ।

ଦିଲ୍ଲୀର ଛାତି ଚିରି, ବ୍ୟବସାୟ ବାଣିଜ୍ୟ ଓ ଅନ୍ୟାନ୍ୟ ପ୍ରତିପତ୍ତିର ଚିହ୍ନସବୁ ଲୁଣ୍ଠନ କଲେ। ସହର ହେଲା ଧ୍ୱଂସପ୍ରାୟ ଓ ଜନହୀନ। ଦିଲ୍ଲୀ ଓ ଆଖପାଖ ଅଞ୍ଚଳରେ ଦୁର୍ଭିକ୍ଷ ଦେଖାଦେଲା। ଐତିହାସିକ ଅବଦୂଲ କାଦିର ବାଦାଉନିଙ୍କ ବର୍ଣ୍ଣନା ଅନୁଯାୟୀ ଦିଲ୍ଲୀ ଦୁର୍ଦ୍ଦଶାରେ ମର୍ମାହତ ହୋଇ ପ୍ରାୟ ଦୁଇମାସ ପର୍ଯ୍ୟନ୍ତ ପକ୍ଷୀର ପକ୍ଷ ବି ଦିଲ୍ଲୀ ସହରରେ ଘୁରି ବୁଲିଲା ନାହିଁ। ପ୍ରାୟ ୩ ମାସ ଧରି ଅରାଜକତା, ଜନଶୂନ୍ୟତା ଦେଖାଦେଲା ଦିଲ୍ଲୀରେ।

୧୩୯୯ରେ ନସରତ ସାହା ଦିଲ୍ଲୀ ଫେରିଲେ କିନ୍ତୁ ମହମ୍ମଦ ସାହଙ୍କ ମନ୍ତ୍ରୀ ଇକ୍‌ବାଲଙ୍କ ଦ୍ୱାରା ବିତାଡ଼ିତ ହେଲେ। କାରଣ ଇକବାଲ ମହମ୍ମଦ ସାହଙ୍କୁ ୧୪୦୧ରେ ପୁଣି ରାଜଗାଦିରେ ବସାଇଲେ। ହେଲେ ମହମ୍ମଦ ପୂର୍ବ ରାଜ୍ୟ ଫେରିପାଇଲେ ନାହିଁ ବା ତାଙ୍କ ପୂର୍ବ ଗୌରବ ରକ୍ଷା କରି ପାରି ନଥିଲେ। କୌଣସି ମତେ ୧୪୧୩ ପର୍ଯ୍ୟନ୍ତ ରାଜ୍ୟ ରକ୍ଷାକରି ମୃତ୍ୟୁବରଣ କଲେ। ୧୪୨୦ ସମୟକୁ ତୋଗଲକଙ୍କ ସାମ୍ରାଜ୍ୟ ଶେଷହେଲା। ୧୪୫୦ ପର୍ଯ୍ୟନ୍ତ ଦିଲ୍ଲୀ ଛାରଖାର ହୋଇଗଲା। ନା ରହିଲେ ଶାସକ, ନା ରହିଲେ ପ୍ରଜା, ନା ରହିଲା ଶାସନ।

ଏଇ ଅରାଜକତା ସମୟରେ ଆସିଲେ ସୟଦ ବଂଶ। ଦୌଲତ ଖାଁ, ଖିଜରୀ ଖାଁ ଶାସନ କଲେ। ଯମୁନା ନଦୀ କୂଳରେ ଖିଜିରାବାଦ ବୋଲି ଏକ ନଗର ଖିଜରୀ ଖାଁ ବସାଇଲେ। ଖଜରୀ ଖାଁଙ୍କ ପରେ ମୁବାରକ ସାହ ରାଜୁତି କଲେ। ସେ ବି ତୋଳାଇଲେ କୋଟଲା ମୁବାରକପୁର।

## ବାହାଲାଲ ମୋଦି

୧୪୫୦ ବେଳକୁ ବାହାଲାଲ ମୋଦି ପଞ୍ଜାବର ଗଭର୍ଣ୍ଣର ଥିଲେ। ସେ ଦିଲ୍ଲୀ ଅଧିକାର କରି କିଛି ସମୟ ପାଇଁ ଦିଲ୍ଲୀର ସମ୍ମାନ ରକ୍ଷାକଲେ। ଲୋଦି ବଂଶର ପ୍ରତିଷ୍ଠା କଲେ। ପରେ ଜୋନପୁର ଅଧିକାର କଲେ। ଜୈନପୁର ଅଧିନରେ ଅଓଧ, ବନାରସ ଓ ବିହାର ଇତ୍ୟାଦି ରାଜ୍ୟସବୁ ଥିଲା। ୧୪୮୯ରେ ତାଙ୍କର ମୃତ୍ୟୁ ହେଲା। ବାହଲାଲ ମୋଦିଙ୍କ ଜନ୍ମବୃତାନ୍ତ ଅଦ୍ଭୁତ। ଘର ଭୂଷୁଡିପଡ଼ିବା ଫଳରେ ତାଙ୍କ ମା'ଙ୍କର ମୃତ୍ୟୁ ହେଲା। ମା'ଙ୍କ ମୃତ୍ୟୁପରେ ଆଶଙ୍କା ହେଲା କି ଶିଶୁଟିର ମଧ୍ୟ ମୃତ୍ୟୁ ଘଟିଛି। ଅନେକ ଚେଷ୍ଟା କରିବା ପରେ ମୃତ ମା'ଙ୍କ ପେଟରୁ ଛୁଆକୁ

ବାହାର କରାହେଲା– ଜୀବନ୍ତ ଅବସ୍ଥାରେ। ଯତ୍ନ ନେଲେ ଦାଦାଗୁଡ଼ି। ଦାଦା କିନ୍ତୁସେ ଛୁଆର ରାଜଲକ୍ଷଣ ଦେଖିପାରିଲେ। ବାହାଲାଲ ଥରେ ସାଙ୍ଗ ସାଥିଙ୍କ ମେଳରେ ଖେଳୁଥିଲେ। ଜଣେ ସାଧୁ ଏ ପିଲାମାନଙ୍କୁ ଅଲଗା ଅଲଗା ଭାବରେ ପ୍ରଶ୍ନ କଲେ। ପଚାରିଲେ; ଦୁଇହଜାର ଟଙ୍କାରେ ଦିଲ୍ଲୀ ରାଜଧାନୀ କିଣିପାରିବ ? କୌଣସି ପିଲା ଏହାର ଉତ୍ତର ଦେଇପାରିଲେ ନାହିଁ। ବାହାଲାଲ କିନ୍ତୁ ସେ କାର୍ଯ୍ୟ ସମ୍ପନ୍ନ କରିପାରିବେ ବୋଲି ଆଗେଇ ଆସି ହିଁ ଭରିଲେ।

ତାଙ୍କ ଯୁବା ଅବସ୍ଥାରେ ସୟଦ ରାଜବଂଶଜ ମହମ୍ମଦ ସାହା ଦିଲ୍ଲୀରେ ରାଜୁତି କରୁଥିଲେ। କିନ୍ତୁ ରାଜ୍ୟ ପୁରାପୁରି ଭାବରେ ବିଛୁରି ଯାଇଥିଲା। ବାହାଲାଲ ପଞ୍ଜାବର ଗଭର୍ଣ୍ଣର ହେବାପାଇଁ ସମର୍ଥ ହେଲେ। ମହମ୍ମଦ ସାହାଙ୍କ ମୃତ୍ୟୁପରେ ଆଲାମସାହ ରାଜଗାଦିରେ ବସିଲେ। ସେ ସମୟକୁ ବାହାଲାଲ ନିଜ ସମର୍ଥକ ମାନଙ୍କ ସାହାଯ୍ୟରେ ଏକ ଦଳ ଗଢ଼ିଲେ– ରାସ୍ତା କଡ଼ର ସଂଗୀତଜ୍ଞ ଦଳ। ଏ ଦଳକୁ ଧରି ହମିଦ୍‌ଖାନ୍‌ଙ୍କ ଭଳି ଏକ ଶକ୍ତିଶାଳୀ ୱାଜିରଙ୍କ ଘରେ ପଶିଲେ ଓ ଆତ୍ମ ସମର୍ପଣପାଇଁ ତାଙ୍କୁବାଧ କଲେ। ୱାଜିରଙ୍କ ଆତ୍ମସମର୍ପଣ ପରେ ଆଲାମ ସାହଙ୍କୁ ଗାଦିରୁ ହଟାଇବା ସହଜ ହେଲା। ୧୪୫୧କୁ ବାହାଲାଲ ସମ୍ରାଟ ହେଲେ। କିନ୍ତୁସେ ରାଜଗାଦିରେ ନ ବସି ଦରବାରର ଅନ୍ୟ ସଦସ୍ୟଙ୍କ ସହ ତଳେ କାରପେଟ ଉପରେ ବସୁଥିଲେ।

୧୪୮୯ରେ ତାଙ୍କର ମୃତ୍ୟୁ ହେଲା। ରୋଷନ ଚିରାଗ ଦିଲ୍ଲୀରେ ତାଙ୍କୁ କବର ଦିଆଗଲା। କବରର ତିଆରି ପ୍ରଣାଳୀ ଏତେ ସୁନ୍ଦର ନଥିଲା। ଚାରିକୋଣିଆ ଘରଟିଏ। ପାଞ୍ଚଟି ଅଟ୍ଟାଳିକା ଦ୍ୱାରା ପରିବେଷ୍ଟିତ। ମଝି ଘରଟା ଅପେକ୍ଷାକୃତ ବଡ଼। ଏ ଗୋଲାକାର ଖିଲାଣ ଉପରେ କୋରାନରୁ କିଛି କିଛି ଅଂଶ ଉଦ୍ଧୃତ ହୋଇ ଲେଖାଯାଇଛି। ଅନ୍ୟ କାରୁକାର୍ଯ୍ୟ କିଛି ନାହିଁ। କିନ୍ତୁ ବାହାଲାଲ ହିଁ ଏକମାତ୍ର ବ୍ୟକ୍ତି ଯେ କି ସାଧୁଙ୍କଠାରୁ ଦିଲ୍ଲୀ ରାଜଧାନୀ କିଣିଥିଲେ।

ପୁତ୍ର ସିକନ୍ଦର ଲୋଦି ରାଜଧାନୀ ଅଳଙ୍କୃତ କଲେ ବାହାଲାଲଙ୍କ ମୃତ୍ୟୁ ପରେ। ରାଜଗାଦିରେ ବସିବା ପରେ ଆଗ୍ରା ପାଖରେ ସିକନ୍ଦରାବାଦ ନାମରେ ଗୋଟିଏ ସହର ବସାଇଥିଲେ। ରାଜଧାନୀ ସେଇଠିକୁ ନେଇଗଲେ। ଅନେକ କନ୍ଦଳର ସୂତ୍ରପାତ ହେଲା। ଆଫଗାନର ଉମରାମାନେ ଯୁଦ୍ଧପ୍ରୀୟ। ଆକ୍ରମଣ, ଯୁଦ୍ଧ ଓ ଲୁଣ୍ଠନ ସେମାନଙ୍କର ଜୀବନର ବ୍ରତ। ଉମାରାମାନେ, ସିକନ୍ଦର ଲୋଦିଙ୍କର ଭାଗ୍ୟ, ବିପୁଳ ଐଶ୍ୱର୍ଯ୍ୟକୁ ସହ୍ୟ କରିପାରିଲେ ନାହିଁ। ସିକନ୍ଦରଙ୍କ ଦାଦାପୁଅ ଭାଇ ସେମାନଙ୍କୁ ସାହାଯ୍ୟ କଲେ। ପରେ ଅବଶ୍ୟ ସେ ପରାଜୟ ସ୍ୱୀକାର କରିଥିଲେ ସିକନ୍ଦରଙ୍କଠାରୁ।

ବିଭିନ୍ନ କଳହରେ ବ୍ୟସ୍ତ ରହି ସିକନ୍ଦର ୧୪୯୦ ପର୍ଯ୍ୟନ୍ତ ଦିଲ୍ଲୀରୁ ସିକନ୍ଦରାବାଦ ଆସିପାରି ନଥିଲେ। ୧୫୦୪ରେ ସେ ରାଜଧାନୀ ଉଠାଇନେଲେ ଆଗ୍ରାକୁ। ସେଠି ମଧ୍ୟ ଠିକ୍ ବର୍ଷକ ପରେ ଭୂମିକମ୍ପ ହେଲା। ଏତେ ଜୋରରେ ଭୂମିକମ୍ପ ହେଲା ଯେ ଲୋକେ ଭାବିଲେ ପ୍ରଳୟ ଘଟିଲା। ସିକନ୍ଦର ଲୋକମାନଙ୍କୁ ସାହାଯ୍ୟ କଲେ। ଏହା ପରଠାରୁ ଶାହାଜାହାଁଙ୍କ ପର୍ଯ୍ୟନ୍ତ ରାଜଧାନୀ ଆଗ୍ରାରେ ହିଁ ଥିଲା।

ସେ ମୂର୍ତ୍ତିପୂଜାର ଘୋର ବିରୋଧି ଥିଲେ। ମନ୍ଦିର ଓ ମୂର୍ତ୍ତି ଭାଙ୍ଗି ଚୁରମାର କରିଦେଉଥିଲେ। ଆକବରଙ୍କ କବର ପାଖରେ ସିକନ୍ଦରା ନା'ରେ ଏକ ମୌଜା ଅଛି। ସେଠି ମସଜିଦର ମକବରା ସିକନ୍ଦର ଲୋଦି ବନାଇଥିଲେ। ନିକଟରେ ଏକ ବାଉଲି ମଧ୍ୟ ଥିଲା। ଏ ମସଜିଦ ଢଙ୍ଗରେ ଶେରସାହଙ୍କ ପୁରୁଣା କିଲାରେ ଓ କୁତୁବ ପାଖରେ ଜମାଲୀ ମସଜିଦ ମଧ୍ୟ ଗଢ଼ାହେଲା। କିନ୍ତୁ ମସଜିଦର ସଦର ଦରଜାରେ ହିନ୍ଦୁ ସ୍ଥାପତ୍ୟ କଳାର ଚିହ୍ନ ଦେଖାଯାଏ। କୁହାଯାଏ ରାସ୍ତାରେ ଗୋଟିଏଦାନା ପଡ଼ିଥିବାର ଦେଖି ତାକୁ ଉଠାଇ ସେହି ଜାଗାରେ ବୁଣି ଦିଆଗଲା।ଏଥିରୁ ଉତ୍ପାଦନ ହେଲା ଶସ୍ୟ। ସେ ଶସ୍ୟକୁ ପୁଣି ବୁଣି ଦିଆଗଲା। ଏହି ପ୍ରକାର ଶସ୍ୟ ଉତ୍ପାଦନରୁ ଯେଉଁ ଅର୍ଥ ମିଳିଲା ସେଥିରେ ମସଜିଦ ଓ ବାଉଲି ତୋଳା ହେଲା।

ସିକନ୍ଦର ଲୋଦି ବଡ଼ ଗୁମ୍ବଜ (ଲୋଦି ଗାର୍ଡ଼ନରେ) ମୁବାରକ ସାହ କବର ପାଖରେ ମୋତି ମସଜିଦ ବନାଇଥିଲେ। ଏହା ସିକନ୍ଦର ଲୋଦିଙ୍କ ମିୟାଁ ଭୋୟାଙ୍କ ଦ୍ୱାରା କରାଯାଇଥିଲା। ୧୫୧୭ରେ ସିକନ୍ଦର ଲୋଦିଙ୍କର ମୃତ୍ୟୁ ହେଲା। ଇବ୍ରାହିମ ଲୋଦି ରାଜାସୀନ ହେଲେ। ଦେଶରେ ଗୃହଯୁଦ୍ଧ ଲାଗିରହିଲା।

ଏହି ସମୟକୁ ଦୌଲତ ଖାଁ ନାରେ ଜଣେ ବ୍ୟକ୍ତି ପଞ୍ଜାବରେ ଗଭର୍ଣ୍ଣର ଥିଲେ। ସେ ବାବରଙ୍କୁ ଦେଶର ଏ ପରିସ୍ଥିତି ଜଣାଇ ଆସିବାକୁ ଅନୁରୋଧ କଲେ। ବାବର ଥିଲେ କାବୁଲର ବାଦଶାହ। ଦୌଲତ ଖାଁଙ୍କ ଡାକରା ପାଇ ସେ ହିନ୍ଦୁସ୍ଥାନ ଆସିଲେ। ଇବ୍ରାହିମ ଲୋଦିଙ୍କର ସହ ଯୁଦ୍ଧହେଲା ବାବରଙ୍କ ପାନିପଥରେ। ଯୁଦ୍ଧରେ ଇବ୍ରାହିମ ପ୍ରାଣ ହରାଇଲେ। ଫଳରେ ୧୧୯୩ରୁ ୧୫୦୪ ପର୍ଯ୍ୟନ୍ତ ଦିଲ୍ଲୀରେ ପଠାଣ ରାଜୁତିର ଅବସାନ ଘଟିଲା।

ନିଜାମୁଦ୍ଦିନ ଯାଲିଆଙ୍କ ଖୋଦିତ ବାଉଲି ପାଣି ଖାର ହୋଇଯାଉ ବୋଲି ଅଭିଶାପ ଦେଇଥିଲେ ଥରେ ଫିରୋଜସାହ ତୋଗଲକ। ସନ୍ଥ ଯାଲିଆ ତୋଗଲକାବାଦ ଧ୍ୱଂସ ହୋଇଯାଉ ବୋଲି ମଧ୍ୟ ଅଭିଶାପ ଦେଲେ। ଦୁଇଟି ଯାକ ଅଭିଶାପ ସତ ହେଲା।

## ନିଜାମୁଦ୍ଦିନ ଯାଲିଆ

ସେଖଙ୍କର ଜେଜେବାପା ସଯଦ ଅଲି ବୁଖାରୀ ତାଙ୍କର ଜଣେ ସଂପର୍କୀୟ ଭାଇଙ୍କୁ ଧରି ମୁସଲମାନମାନଙ୍କ ଦିଲ୍ଲୀ ଆକ୍ରମଣ ସମୟରେ ଦିଲ୍ଲୀ ଆସିଥିଲେ। ପ୍ରଥମେ ଲାହୋର ଓ ପରେ ବାଦାଉନିରେ ବସବାସ କଲେ। ତାଙ୍କ ଭାଇ ବ୍ୟବସାୟ ବାଣିଜ୍ୟ କରି ବହୁତ ଧନୀ ହୋଇଗଲେ। ତାଙ୍କ ନାମ ଖ୍ୱାଜା ଅହମଦ। ଯାଲିୟାଙ୍କ ବାପା ବାଦାଉନିରେ କାଜି ହୋଇଗଲେ। ଖ୍ୱାଜା ଅହମଦଙ୍କ ଝିଅ ବିବି ଜୁଲାଇକାଙ୍କୁ ବିବାହ କଲେ। ତାଙ୍କରି ପୁଅ ସେଖ ନିଜାମୁଦ୍ଦିନ। ୫ ବର୍ଷ ବୟସରେ ବାପାଙ୍କର ମୃତ୍ୟୁ ହେଲା। ମା'ଙ୍କ ତତ୍ତ୍ୱାବଧାନରେ ନିଜାମଉଦ୍ଦିନ ବଡ଼ହେଲେ। ୧୬ ବର୍ଷ ବୟସରେ ଉଚ୍ଚଶିକ୍ଷା ପାଇଁ ଦିଲ୍ଲୀ ଆସିଲେ। ସେତେବେଳକାର ବିଖ୍ୟାତ ବିଦ୍ୱାନ ଖ୍ୱାଜା ଶ୍ୟାମସୁଦ୍ଦିନଙ୍କ ପାଖରେ ଶିକ୍ଷାଲାଭ କଲେ। ପରେ ବଲବନ୍ ସାମଉଲମୁଲ୍କ ନାମ ଦେଇ ତାଙ୍କୁ ଓ୍ୱାଜିର ବନାଇଲେ। ୨୦ ବର୍ଷ ବୟସରେ ପାକ୍‌ପଟାନ ଯାଇ ସେଖ ଫରିଉଦ୍ଦିନ ମାମୁଦ ଶଖରଗଞ୍ଜଙ୍କ ଶିଷତ୍ୱ ଗ୍ରହଣ କଲେ। କିଛିଦିନ ପରେ ଦିଲ୍ଲୀ ଫେରିଆସି ପ୍ରାର୍ଥନା ଓ ନୀରବ ଚିନ୍ତନ ଦେଇ ସରଳ ଜୀବନ ଯାପନ କଲେ। ଧିରେ ଧିରେ ଖ୍ୟାତି ବ୍ୟାପିଲା।

ତାଙ୍କର ମୃତ୍ୟୁ ହେଲା ୮୯ ବର୍ଷ ବୟସରେ ଏପ୍ରିଲ ୩, ୧୩୨୫ରେ। ତାଙ୍କ ଦରଗାହ ପାଖରେ ଚଷମା-ଦିଲ-କୁସା ନାମରେ ଯେଉଁ ପୋଖରୀ ଦେଖାଯାଏ, ଦରଗାହର ସୌନ୍ଦର୍ଯ୍ୟ ଅନେକ ପରିମାଣରେ ବଢ଼ାଇ ଦେଇଥାଏ। ନିକଟରେ ଜମାତ୍ ଖାନା (ଖିଜରି ମସଜିଦ)– ମୁସଲମାନ କଳାର ସୁନ୍ଦର କାରୁକାର୍ଯ୍ୟ ଖଚିତ ହୋଇ ଏହା ଏଠାରେ ବିଦ୍ୟମାନ।

ଏ ମସଜିଦ ଖିଲଜୀ ଓ ତୋଗଲକଙ୍କ ବଂଶସମୟର। ଗର୍ଭଗୃହ ଆଲ୍ଲାଉଦ୍ଦିନ ଖିଲିଜିଙ୍କ ପୁତ୍ର ଖିଜରି ଖାଁଙ୍କ ନିର୍ମିତ। ଅନ୍ୟ ପାଖ ଘରସବୁ ତୋଗଲକଙ୍କ ସମୟର। ସବୁଠୁ ସୁନ୍ଦର ଆଉ କାରୁକାର୍ଯ୍ୟଖଚିତ ଏ ଖିଜରି ମସଜିଦ୍। ପାଖାପାଖି– ଜାହାନ୍ନାରା ବେଗମ (ଶାହାଜାହାଁଙ୍କ ବଡ଼ଝିଅ) ଅଗାତ୍‌ଖାନ (ଆକବରଙ୍କ ଧରମଭାଇ), ସମ୍ରାଟ ମହମ୍ମଦ ସାହ, ଆକବରଙ୍କ ଦ୍ୱିତୀୟ ପୁତ୍ର ମିର୍ଜା ହାହାଙ୍ଗୀର, ଜିଆ-ଉଦ-ଦିନ (ଜଣାଶୁଣା ଐତିହାସିକ), ଖୁସୁରୁ ଓ ଗାଲିବ (ଉଚ୍ଚକୋଟୀର କବି)ମାନଙ୍କର କବରସବୁ ମଧ୍ୟ ଅବସ୍ଥିତ। ସବୁଠୁ ଅଗତାହ ଖାନ୍‌ଙ୍କ ଦରଗାହ ସ୍ଥାପତ୍ୟବିଦ୍ୟାର

ଶୈଳୀ ଅତି ମନୋମୁଗ୍ଧକର । ଏହା ଭାରତର ସବୁଠୁ ପ୍ରଭାବଶାଳୀ 'ପୋଲିକ୍ରୋମାଟିକ କାରୁକାର୍ଯ୍ୟ' ।

ଏହାର ଚୌଷଠ ଖୁମ୍ବବିଶିଷ୍ଟ ଯେଉଁ ହଲ ଅଛି ତାକୁ ପ୍ରକୃତରେ ମିର୍ଜା ଅଜିତ କୋକଲତାସ (ଆକବରଙ୍କ ଜଣେ ଧରମଭାଇ) ତିଆରି କରାଇଥିଲେ ତାଙ୍କ ଜୀବନକାଳ ଭିତରେ । ଚକ୍ ଚକ୍ ମାରବଲର ଖୁମ୍ବ ସରଳ ଆଉ କୋମଳ ଅନେକ କାରୁକାର୍ଯ୍ୟ ଖଚିତ ଏ ଦରଗାହ । ମହମ୍ମଦ ଟୋଗଲକ ଗୋଟାଏ କପୋଲା କବର ଉପରେ ତିଆରି କରିଥିଲେ । ଫିରୋଜସାହ ଟୋଗଲକ ଚନ୍ଦନକାଠର ଏକ ଲମ୍ବା କାଠ ଏଥିରେ ଲଗାଇଥିଲେ । ଫରିଦ ଖାନ୍ ଏ କବରକୁ ଏକ ନୂଆ ରୂପ ଦେଲେ । 'ମଦର-ଅଫ-ପର୍ଲ'ଦେଇ ଗୋଟାଏ କାଠର ଟଦର ତା' ଉପରେ ଲଗାଇଥିଲେ । ହାଇଦ୍ରାବାଦର ଖୁରସିଦ ସାହା କବର ଚାରିପାଖେ ମାର୍ବଲ କାନ୍ଥ କରାଇ ଦେଇଥିଲେ । ହାଇଦ୍ରାବାଦ ନିଜାମ ଚିତ୍ରପଟସବୁ ନଷ୍ଟ ନ ହେବାପାଇଁ ସାହାଯ୍ୟ କରିଥିଲେ । ଓ୍ୱାଲିଆଙ୍କୁ ଦିଲ୍ଲୀ ଜନତା 'ସୁଲ୍‌ତାନୀ' ବୋଲି ଡାକୁଥିଲେ । ବାଦଶାହ ବଲବନଙ୍କ ସମୟରେ ଦିଲ୍ଲୀ ଆସି ଗୟସପୁର ଗାଁରେ ରହିଲେ । ମାଙ୍କ ମୃତ୍ୟୁ ପରେ ଏକ ମସଜିଦରେ ରହିଲେ । ସେ ବେଳରେ ତାଙ୍କର ଜଣେ ଭକ୍ତ ବହୁତ କଷ୍ଟରେ କାଳାତିପାତ କରୁଥିଲେ । ଆଲ୍ଲାଉଦ୍ଦିନ ଖିଲଜି ସେ ଭକ୍ତଙ୍କୁ ସାହାଯ୍ୟ କରିବାପାଇଁ ଚାହିଁଲେ । ଏ ପ୍ରକାର ଅଯାଚିତ ଦାନ ଭକ୍ତ ସ୍ୱୀକାର କଲେ ନାହିଁ । ଫଳରେ ଓ୍ୱାଲିୟା ଯାହା ପାଉଥିଲେ ସେ ସବୁ ତାହାଙ୍କୁ ଦାନ କରୁଥିଲେ । ଏ ଖବର ଚାରିଆଡ଼େ ଖେଳିଗଲା । ଓ୍ୱାଲିୟାଙ୍କ ପାଖରୁ ଖାଲି ହାତରେ କେହି ଫେରନ୍ତି ନାହିଁ । ତାଙ୍କ ଦୁଆବଳରେ ସେ ତାଙ୍କ ଲଙ୍ଗରରେ ହଜାର ହଜାର ଲୋକଙ୍କୁ ଖାଇବାକୁ ଦେଉଥିଲେ । ବାଦଶାହା ଓ୍ୱାଲିୟାଙ୍କୁ ଦେଖା କରିବାକୁ ଚାହିଁଲେ । କିନ୍ତୁ ଓ୍ୱାଲିଆ ଦେଖା କରିବାକୁ ମନା କରିଦେଲେ । ଅମୀର ଖୁସୁରୁ ଓ ତାଙ୍କ ଦୁଇପୁଅଙ୍କୁ ନିଜର ଶିଷ୍ୟ କରିନେଲେ । ଏ ସନ୍ଥଙ୍କର ମୁଖନିସୃତ ବାଣୀ ହିଁ ଅମରବାଣୀ ଥିଲା । ନଭେମ୍ବର ମାସରେ ଏ କବର ନିକଟକୁ ହଜାର ହଜାର ସଂଖ୍ୟାରେ ଦେଶର ପ୍ରତ୍ୟେକ କୋଣରୁ ଆସିଲେ ଭକ୍ତମାନେ । ଶ୍ରାଦ୍ଧମେଳାରେ ଯୋଗ ଦେବାପାଇଁ । ସମୟର ପରିବର୍ତ୍ତନ ସତ୍ତ୍ୱେ ଏମେଳାର ସାଜସଜା ଏକ ଦର୍ଶନୀୟ ବସ୍ତୁ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ଥରେ ଏହି ମେଳାରେ ଯୋଗଦେଇ କହିଥିଲେ କି ନିକର ବଡ଼ପଣ ଯୁଦ୍ଧରେ ନାହିଁ, ଅଛି ଶାନ୍ତିରେ । ଚିସ୍ତି ସନ୍ଥମାନଙ୍କ ମଧ୍ୟରେ ଏ ଚତୁର୍ଥ । ବୋଖରା ବୋଲି ଯେଉଁ ଜାଗାରୁ

ସେ ଆସିଥିଲେ, ସେ ସମୟରେ ଏ ଜାଗା ଏକ ଓ୍ୱାଲିୟା ସାଂସ୍କୃତିକ କେନ୍ଦ୍ର ଥିଲା ବୋଲି କୁହାଯାଏ।

## ଅମୀର ଖୁସୁରୁ

ତୁର୍କି ପିତାମାତାଙ୍କଠାରୁ ଜନ୍ମ। ପିଲାଦିନୁ ଓ୍ୱାଲିୟାଙ୍କ ଶିଷ୍ୟ ଥିଲେ। ବଲବନଙ୍କ ସମୟରେ ତାଙ୍କର ଚାକିରୀ ଆରମ୍ଭ ହୋଇଥିଲା। ଜଣେ ଗଭର୍ଣ୍ଣରଙ୍କ ପାଖରେ ସେ ଚାକିରୀ କରିଥିଲେ। ଜଲ୍ଲାଲୁଦ୍ଦିନ ତାଙ୍କୁ ନିଜର ଦରାବରୀ (ଅଙ୍ଗ ରକ୍ଷକ) କରାଇଦେଲେ ଓ ତୋଗଲକଙ୍କ ଆସିବା ପର୍ଯ୍ୟନ୍ତ ସେ ସେମାନଙ୍କର ବିଶ୍ୱାସର ପାତ୍ର ଥିଲେ। ମହମ୍ମଦ ସାହା ଗାଦିରେ ବସିବା ସମୟରେ ଖୁସୁରଙ୍କ ଭାଗ୍ୟ ବଦଳିଗଲା। ବାଦଶାହାଙ୍କର ତାଙ୍କ ଉପରେ କୃପାଦୃଷ୍ଟି ଥିଲା। ସେ ଖୁସୁରୁଙ୍କୁ ତାଙ୍କ ଲାଇବ୍ରେରୀୟାନ କରାଇଥିଲେ। ବଙ୍ଗଳା ଯିବା ସମୟରେ ମଧ୍ୟ ତାଙ୍କୁ ସାଙ୍ଗରେ ନେଇଯାଇଥିଲେ। ବଙ୍ଗଳାରେ ଥିବା ଅବସ୍ଥାରେ ସେ ନିଜାମୁଦ୍ଦିନ ୟାଲିୟାଙ୍କର ମୃତ୍ୟୁଖବର ପାଇଲେ। ମୃତ୍ୟୁ ଖବର ଶୁଣିବା ମାତ୍ରେ ସେ ତାଙ୍କର ସବୁ ଜିନିଷପତ୍ର ବିକିଦେଇ ଦିଲ୍ଲୀ ପଳାଇ ଆସିଲେ। ଚିରାଗ ଦିଲ୍ଲୀରେ ଫକୀର ନାସିରୁଦ୍ଦିନ ମଧ୍ୟ ଥିଲେ। ଖୁସୁରୁଙ୍କ ଆଶାଥିଲା ୟାଲିଆଙ୍କ କବର ନିକଟରେ କବର ନେବାପାଇଁ। ୟାଲିଆଙ୍କ ମଧ୍ୟ ସେଇଭଳି ଇଚ୍ଛାଥିଲା କିନ୍ତୁ ଅନ୍ୟମାନେ ବିରୋଧ କଲେ। ସେଥିଲାଗି ତାଙ୍କୁ ଅଳ୍ପ ଦୂରରେ କବର ଦିଆଗଲା। ସେ ୟାଲିୟାଙ୍କ ମୃତ୍ୟୁ ସମୟରୁ ଛ'ମାସ ଧରି କଳାଡ୍ରେସ ପିନ୍ଧି ୟାଲିୟାଙ୍କ କବର ଆଡ଼କୁ ମୁହଁ କରି ନିଜ ମୃତ୍ୟୁ ପର୍ଯ୍ୟନ୍ତ ବସି ରହିଥିଲେ। ଖୁସୁରୁଙ୍କ କବିତାର କବିତ୍ୱ ଆଜି ବି ବିଦ୍ୟମାନ।

■



# ବାବର

ହିନ୍ଦୁସ୍ଥାନକୁ ଅଲତମମ୍‌ଙ୍କ ସମୟରୁ ଇବ୍ରାହିମ ଲୋଦିଙ୍କ ପର୍ଯ୍ୟନ୍ତ ବାରମ୍ବାର ମୋଗଲମାନଙ୍କର ଆକ୍ରମଣ ଜାରି ରହିଥିଲା। ଉଦ୍ଦେଶ୍ୟ ଥିଲା ଭାରତ ଲୁଣ୍ଠନ– ରାଜ୍ୟ ଶାସନର ନୁହେଁ। ତୈମୁର ମଧ୍ୟ ସେଇ ଉଦ୍ଦେଶ୍ୟରେ ଆସିଥିଲେ। ସେ ମହମ୍ମଦଶାହଙ୍କୁ ପରାଜିତ କଲେ ସତ କିନ୍ତୁ ରାଜ୍ୟ ଶାସନର ଲୋଭ ନ ରଖି ଫେରିଗଲେ।

୧୨୨୧ରେ ମଧ୍ୟ ଚେଙ୍ଗିଜ ଖାଁ ଇନ୍ଦସ ନଦୀ ପାର ହୋଇ ଆସିଥିଲେ। ସମରକନ୍ଦର ପୂର୍ବକୁ ଛୋଟ ରାଜ୍ୟ ଫରଗାନାରେ ବାବରଙ୍କ ବାପା ରାଜା ଥିଲେ। ବାବରଙ୍କ ଉଚ୍ଚତା ଅଳ୍ପ ଓ ସେ ଥିଲେ ଟିକିଏ ମୋଟା। କିନ୍ତୁ ଥିଲେ ବୀର ଓ ସାହସୀ। ଥରେ ଜଣଙ୍କୁ ମାଡ଼ ମାରିଲେ ସେ ତଳୁ ଆଉ ଉଠିପାରିବ ନାହିଁ। ନିଜ ରାଜ୍ୟ ବଢ଼େଇବାର ଆଗ୍ରହ ଥିଲା ତାଙ୍କର ଅନେକ। ମାତ୍ର ୧୨ ବର୍ଷ ବୟସରେ ସେ ହେଲେ ଫରଗନାର ଶାସକ। ଯୁଦ୍ଧ ଜୟ ନିଶାରେ ବାବର ପାଗଳ।

ଏଇ ଯୁଦ୍ଧନିଶା ଭିତରେ ସେ ବିବାହ କଲେ ସତ, ହେଲେ କୌଣସି ଆଗ୍ରହ ଦେଖାଇପାରିଲେ ନାହିଁ ସ୍ତ୍ରୀଙ୍କ ପ୍ରତି। ବାବୁରି ନାମରେ ଜଣେ ବଜାରପିଲା ପାଇଁ ତାଙ୍କର ଆଗ୍ରହ, ଅତିମାତ୍ରାରେ ବଢ଼ିଯାଇଥିଲା ବୋଲି ବାବର ନିଜେ ସ୍ୱୀକାର କରିଛନ୍ତି। ତାଙ୍କ ପ୍ରଥମ ସ୍ତ୍ରୀ ତାଙ୍କୁଛାଡ଼ି ଚାଲିଗଲେ। ମଙ୍ଗୋଲିୟାନମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ନଥିଲା। ଟର୍କିସ ବଂଶଜ ପାଇଁ ସେ ଗର୍ବ କରୁଥିଲେ। କିନ୍ତୁ ତାଙ୍କର ମଙ୍ଗୋଲିୟାନ ଜେଜେମା ତାଙ୍କୁ ରାଜ୍ୟଜୟ ଓ ରାଜ୍ୟଶାସନ କରିବାପାଇଁ ଅନୁପ୍ରାଣିତ କରିଥିଲେ। ସେ ହେଉଛନ୍ତି ମୋଗଲ ସାମ୍ରାଜ୍ୟର ପ୍ରଥମ ସ୍ତ୍ରୀଲୋକ ଯେ କି ପରଦା ଆଢୁଆଳରେ ଥାଇଁ ନିଜ ନାତିଙ୍କୁ ରାଜ୍ୟ ଶାସନର ଉଚ୍ଚ ଶିକ୍ଷା ଦେଇପାରିଥିଲେ।

ସମରକନ୍ଦକୁ ଅଧିକାର କରିବାପାଇଁ ବାବର ବାରମ୍ବାର ଆକ୍ରମଣ କରିଥିଲେ ସତ କିନ୍ତୁ ବେଶିଦିନ ଶାସନ କରିପାରି ନଥିଲେ। ସେ ସେଠାରୁ ଚାଲିଯାଇ ଅଳ୍ପ ସଂଖ୍ୟକ ଅନୁଚର ନେଇ ପାହାଡ଼ ଜଙ୍ଗଲରେ ଘୁରି ବୁଲିଲେ। ତା'ପରେ ସେ କାବୁଲ ଅଧିକାର କଲେ। ସେଠି ଶାନ୍ତିରେ ରହି ପୁସ୍ତକ ପ୍ରୀତି ଓ ବଗିଚା ପ୍ରୀତି

ଆହରଣ କଲେ। ସମରକନ୍ଦରେ ଥିବାବେଳେ ମଧ ସେଠାରେ ସେ ସୁନ୍ଦର ବଗିଚା ତିଆରି କରିଥିଲେ। ମସଜିଦ ଓ ଟୁମ୍ ବନାଇଥିଲେ। କାବୁଲରେ ଯେଉଁ ବଗିଚା ବନାଇଥିଲେ, ତା' ମଝିରେ ପାଣିର ଧାରା ବୋହୁଥିଲା। ଦକ୍ଷିଣପଟକୁପାଣି ଧରି ରଖିବାର ଜଳଭଣ୍ଡାର ତିଆରି କରିଥିଲେ। କମଳାର (ଫଳ) ରଙ୍ଗ ଯେତେବେଳେ ହଳଦିଆ ହୋଇ ଆସେ ବଗିଚାର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ ହୋଇଯାଏ। ଭାରତରେ ଥିଲାବେଳେ ମଧ ସେ କାବୁଲର ତାଙ୍କ ଗଭର୍ଣ୍ଣରଙ୍କୁ ଚିଠି ଲେଖି ବଗିଚାର ତତ୍ତ୍ୱାବଧାନ କରୁଥିଲେ।

ଜାହିରୁଦ୍ଦିନ ମହମ୍ମଦ ବାବର– ଇବ୍ରାହିମ ଲୋଦିଙ୍କୁପରାସ୍ତକରି ଦିଲ୍ଲୀରେ ମୋଗଲ ବଂଶ ଆରମ୍ଭ କରାଇଲେ। ୧୫୨୬ରେ ଦିଲ୍ଲୀ ରାଜଗାଦିରେ ବସିଲେ। କିନ୍ତୁ ପରେ ପରେ ଆଗ୍ରା ଚାଲିଗଲେ। ସେଠୁ ଆଉ ଦିଲ୍ଲୀ ଫେରିଲେ ନାହିଁ। ସେହିଠାରେ ହିଁ ତାଙ୍କର ମୃତ୍ୟୁ ହେଲା। ଆଗ୍ରା ଯିବା ପୂର୍ବରୁ ଖ୍ୱାଜା କୁତୁବୁଦ୍ଦିନ କାକୀ, ଆଲାଉଦ୍ଦିନ ଖିଲଜି, ବଲବନ ଓ ଲୋଦିମାନଙ୍କର କବର ଦେଖିସାରି ଆଗ୍ରା ଅଭିମୁଖେ ଯାତ୍ରା କଲେ। ଆଗ୍ରାରେ ଥାଇଁ ଶୁଣିଲେ କି ପୁତ୍ର ହୁମାୟୁନ ସବୁ ରାଜସ୍ୱ ଯାହାର ଆନୁମାନିକ ମୂଲ୍ୟ ୩,୬୯,୫୦,୨୫୪ ଟଙ୍କା ଥିଲା ସବୁ ଉଡ଼ାଇ ଦେଇଛନ୍ତି। ସେ ମଲା ବେଳକୁ ବିରାଟ ଓ ଟଳମଟଳ ରାଜ୍ୟ ଛାଡ଼ିଯାଇଥିଲେ।

ବାବର ଯେଉଁ ରାଜ୍ୟସବୁ ଜୟକଲେ ସେ ରାଜ୍ୟର ଲାଇବ୍ରେରୀ ନିଜ ଲାଇବ୍ରେରୀ ସହିତ ମିଶାଇଦେଲେ। ସେ ପାଠ, ଆଉ କଳାରେ ଆଗ୍ରହ ଦେଖାଉଥିଲେ। ହସ୍ତଲିପି, ଗଦ୍ୟକବିତା, କବିତା, ପାଠଶୈଳୀ, ସାହିତ୍ୟିକ ରଚନା, ଆଲୋକସଜ୍ଜା, ଚିତ୍ରକଳା, ସୁନାକାମ, ସିଲ ତିଆରି କାମ ଇତ୍ୟାଦି ସେ ନିଜେ ଜାଣିଥିଲେ ଓ ସମସ୍ତଙ୍କୁ ଶିଖାଇଥିଲେ।

ବାବର ବିବାହ କରିଥିଲେ ମାସୁମା ସୁଲତାନ ବେଗମଙ୍କୁ। ଏ ସ୍ତ୍ରୀଲୋକ ବାବରଙ୍କ ପ୍ରେମରେ ପଡ଼ିଥିଲେ ବୋଲି କୁହାଯାଏ। ଅବଶ୍ୟ ବାବର ଏ ପ୍ରକାର ନିଶା ସେ ସ୍ତ୍ରୀଲୋକପ୍ରତି ଥିବାର କେବେହେଁ ପ୍ରକାଶ କରିନାହାନ୍ତି। ହୁମାୟୁନ ସେମାନଙ୍କ ପୁଅ। ଖ୍ରୀଷ୍ଟାବ୍ଦ ୧୫୦୮ରେ ହୁମାୟୁଁ ଜନ୍ମ ହୋଇଥିଲେ। ପରେ ୧୫୦୯ରେ ଜନ୍ମନେଲେ କାମାରନ ଆଉ ଜଣେ ସ୍ତ୍ରୀଙ୍କ ଗର୍ଭରୁ। ୧୫୧୬ରେ ଜନ୍ମନେଲେ ଆସ୍କାରି। ମା ଭିନ୍ନ। ଶେଷରେ ଆଉ ଜଣେ ସ୍ତ୍ରୀଙ୍କ ଗର୍ଭରୁ ଜନ୍ମନେଲେ ହିଣ୍ଡାଲ ୧୫୧୯ରେ।

୧୫୧୯ ପୂର୍ବରୁ ଚାରିଥର ଭାରତକୁ ଅଭିଯାନ କରିଥିଲେ ବାବର। ମାତ୍ର ୧୫୨୬ରେ ଇବ୍ରାହାମ ଲୋଦିଙ୍କୁ ଜୟ କରି ବାବର ଦିଲ୍ଲୀରେ ପହଞ୍ଚିଲେ। ପୁତ୍ର ହୁମାୟୁନ ସେତେବେଳକୁ ୧୮ ବର୍ଷର ଯୁବକ। ତାଙ୍କୁ ଆଗ୍ରା ପଠାଇଦେଲେ। ସେଠାରେ ଲୋଦିଙ୍କ ରାଜଧାନୀ ଓ ରାଜକୋଷ ଅକ୍ତିଆର କରିବାପାଇଁ। ଆଗ୍ରାରେ ପହଞ୍ଚିବା ପରେ ହୁମାୟୁନ ଇବ୍ରାହିମ ଲୋଦିଙ୍କ ମା ଓ ଗୋୟାଲିର ରାଜା ବିକ୍ରମାଦିତ୍ୟଙ୍କୁ ଭେଟିଲେ। ସେତେବେଳକୁ ଗୋୟାଲିଅର ଲୋଦିଙ୍କର ଅଧିନରେ ଥିଲା। ସେ ସ୍ୱତଃପ୍ରବୃତ ହୋଇ ବିଜେତାଙ୍କୁ ମୂଲ୍ୟବାନ ପଥରସବୁ ଦେଇ ଅଭ୍ୟର୍ଥନା କଲେ। ଏଥି ଭିତରେ ଥିଲା ଏକ ବିରାଟ ହୀରା ଖଣ୍ଡ– କୋହିନୂର। ହୁଏତ ଆଲାଉଦ୍ଦିନ ଖିଲଜି ଦାକ୍ଷିଣାତ୍ୟ ଆକ୍ରମଣ ବେଳେ ଏହାକୁ ପାଇପାରିଥାନ୍ତି। କାରଣ ମୁଖ୍ୟ ମୂଲ୍ୟବାନ ପଥରର ଖଣି ହାଇଦ୍ରାବାଦର ଗୋଲକୋଣ୍ଡାରେ ହିଁ ଥିଲା। ସେମାନଙ୍କ ଅକ୍ତିଆରକୁ କୋହିନୂର କିପରି ଆସିଲା ହୁଏତ ଜଣାନାହିଁ କିନ୍ତୁ ଏହି ବହୁମୂଲ୍ୟ ପଥର ହୁମାୟୁନଙ୍କ ହସ୍ତଗତ ହେଲା।

ବାବର ଆଗ୍ରାରେ ପାଦଦେବା ମାତ୍ରେ, ହୁମାୟୁନ ପିତାଙ୍କର ଅଭ୍ୟର୍ଥନା ନିମନ୍ତେ ଅନ୍ୟାନ୍ୟ ମୂଲ୍ୟବାନ ପଥର ସହ କୋହିନୂର ମଧ ତାଙ୍କୁ ଭେଟିଦେଲେ। କୋହିନୂର 'ଆଲୋକର ପର୍ବତ' ନାମରେ ପରିଚିତ। କିନ୍ତୁ ହୁମାୟୁନଙ୍କୁ ବାବର ସେ ମୂଲ୍ୟବାନ ହୀରା ଫେରାଇଦେଲେ। ବାବର ଅନୁଭବ କଲେ ହିନ୍ଦୁସ୍ଥାନର ସବୁ ସହର ଅସୁନ୍ଦର। ବଗିଚାମାନଙ୍କରେ ପାଚେରୀ ନାହିଁ– ଲୋକଙ୍କର ସୌନ୍ଦର୍ଯ୍ୟ ନାହିଁ। ଭଦ୍ର ସମାଜ ନାହିଁ, କବିତ୍ୱର ଦକ୍ଷତା ନାହିଁ, ଆଭିଜାତ୍ୟ ନାହିଁ, ଶିଷ୍ଟାଚାର ନାହିଁ। ଭଲ ଘୋଡ଼ା ମଧ ମିଳେ ନାହିଁ। ମାଂସ, ଅଂଗୁର, ତରଭୂଜ ପରି ଫଳ କିମ୍ୱା ଅନ୍ୟ କୌଣସି ଭଲ ଫଳ ନାହିଁ। ବରଫ ନାହିଁ, ଥଣ୍ଡା ପାଣି ନାହିଁ, ନାହିଁ ଉତମ ଖାଦ୍ୟ, ନାହିଁ କୌଣସି ସ୍କୁଲ ବା କଲେଜ। ବଗିଚା ଭିତରେ ବୋହିଯାଉଥିବା ଜଳଧାରା ନାହିଁ। ପ୍ରାସାଦ ବି ନାହିଁ ଓ ଅଟ୍ଟାଳିକା ମାନଙ୍କରେ ସଂଗତି ବା ସୌନ୍ଦର୍ଯ୍ୟ ନାହିଁ। ବାବର କିନ୍ତୁ ଗୋଟିଏ କଥା ଭଲଭାବରେ ବୁଝିପାରିଥିଲେ, ହିନ୍ଦୁସ୍ଥାନ ଏକ ବିରାଟ ଦେଶ। ସୁନା ଓ ପଇସାରେ ଭରପୁର। ପରେ ପରେ ଅନ୍ୟ ଏକ ବିଷୟ ତାଙ୍କୁ ଆକର୍ଷିତ କରିଥିଲା– ବ୍ୟବସାୟରେ ଧୂର୍ତ୍ତ ଲୋକ, ପଥରକଟାଳି, ଦକ୍ଷ କାରିଗରରେ ପରିପୂର୍ଣ୍ଣ ଏ ଦେଶ। ଏହି ଲୋକମାନଙ୍କୁ ସେ ନିଜେ ଏବଂ ତାଙ୍କର ବଂଶଧରମାନେ ବେଶ୍ ଉପଯୋଗ କରିପାରିବେ।

ପରାଜିତ ଇବ୍ରାହିମ ଲୋଦିଙ୍କ ପରିବାରକୁ ବେଶ୍ ସୁସ୍ଥରେ ରଖିଥିଲେ। ଘରେ ଲୋଦିଙ୍କର ମା' 'ବୁୟା'ଙ୍କୁ ନିଜ ଛତ୍ରଛାୟା ତଳେ ଘୋଡ଼ାଇ ରଖିଲେ। 'ବୁୟା' କିନ୍ତୁ ଏହାର ଉପଯୁକ୍ତ ଜବାବ ଦେଇପାରିଲେ ନାହିଁ। ଲୋଦିଙ୍କର ୪ଜଣ ରନ୍ଧାଳିଙ୍କୁ ହିନ୍ଦୁସ୍ଥାନୀ ଖାଦ୍ୟ ପରିବେଷଣ ପାଇଁ ନିଯୁକ୍ତି ଦେଲେ ବାବର। ୨୧ ଡିସେମ୍ବର ୧୫୨୬ରେ ବୁୟା ତାଙ୍କ ଭିତରୁ ଜଣେ ରନ୍ଧାଳୀକୁ ବାବରଙ୍କ ଖାଦ୍ୟରେ ବିଷ ମିଶାଇବାପାଇଁ ପ୍ରବର୍ତ୍ତାଇଲେ। ସ୍ୱାଦରେ କିଛି ଫରକ ନଥିଲା। କିନ୍ତୁ ଖାଦ୍ୟଖାଇ ବାବର ବାନ୍ତି କଲେ। ସେ ବାନ୍ତିକୁ ଗୋଟେ କୁକୁରକୁ ଖାଇବାକୁ ଦେଲେ। କୁକୁର ତାକୁ ଖାଇ ମଲାନାହିଁ ସତ କିନ୍ତୁ ମୃତପ୍ରାୟ ପଡ଼ିରହିଲା। ଖୋଳତାଡ଼ କରି ଜାଣିପାରିଲେ କି ଏସବୁ ବୁୟା ଓ ସେ ରୋଷେୟାମାନଙ୍କର କାମ। ଉଚିତ ଦଣ୍ଡଦେଲେ ସେମାନଙ୍କୁ।

କିନ୍ତୁ ବାବର ଭୋଗିଲେ ମରଣାନ୍ତକ ଯନ୍ତ୍ରଣା। ଉଦ୍ଧାର ପାଇବା ପରେ ଅନୁଭବ କଲେ କି ''ଜୀବନ କେତେ ସୌନ୍ଦର୍ଯ୍ୟମୟ''।

ବାବର ରମଜାନ ମାସରେ ବାରବର୍ଷ ବୟସରେ ଫରଗନାର ଶାସକ ହେଲେ। ପିତା ଉମର ମିର୍ଜାଙ୍କ ଦୁର୍ଘଟଣାରେ ମୃତ୍ୟୁ ହେଲା। ବାବରଙ୍କ ନାଁ ଥିଲା ଜାହିରୁଦ୍ଦିନ ମହମ୍ମଦ। ପରେ ତାଙ୍କ ନାଁ ଦେଲେ 'ବାବର'। ବାବରର ଅର୍ଥ 'ବାଘ'। ସେ ତୈମୁରଙ୍କ ଅଣନାତି। ତାସକେଣ୍ଟର ୟୁନ ଖାନ ତାଙ୍କର ଅଜା। ସେ ଥିଲେ ଚେଙ୍ଗିଜ୍ ଖାଁଙ୍କ ବଂଶଧର। ବାବର ସମରକନ୍ଦକୁ ବହୁତ ଭଲପାଉଥିଲେ। ସେ ସମରକନ୍ଦର କିଛି ବର୍ଷ ପାଇଁ ମଧ ଶାସକ ଥିଲେ। କିନ୍ତୁ ସମରକନ୍ଦ କିଛିଦିନ ପରେ ଚେଙ୍ଗିଜ ଖାଁଙ୍କ ବଂଶଧର ଶୈବାନୀ ଖାଁଙ୍କ ହାତକୁ ଚାଲିଯାଇଥିଲା। ଦଶବର୍ଷ ପର୍ଯ୍ୟନ୍ତ ସେ ଗୋଟିଏ ରାଜ୍ୟ ପରେ ଆଉ ଗୋଟିଏ ରାଜ୍ୟର ଶାସକ ହୋଇରହିଲେ। ଫରିସ୍ତାଙ୍କ ଭାଷାରେ

''ଭାଗ୍ୟର ବିବର୍ତ୍ତନବାଦରେ କେବେ ଗୋଟାଏ ନିଷ୍ଠୁର ମୋଡ଼ ମୋ ଦୃଷ୍ଟିର ବାହାରେ ଆସିଛି– ଆକସ୍ମିକ ଦୁଃଖ ଯନ୍ତ୍ରଣା ମୋ' ବିଦାରିତ ହୃଦୟଠୁ ମତେ ଏଡାଇ ଯାଇଛି।''

ସମରକନ୍ଦ, ତାସକେଣ୍ଟରେ ସେ ଶାନ୍ତି ପାଇ ପାରିଲେ ନାହିଁ। କେତେକ ମୁଷ୍ଟିମେୟ ସାଥିଙ୍କୁ ନେଇ ହିଂସ୍ର ପାର୍ବତ୍ୟଦେଶର ଲୋକଙ୍କ ମେଳରେ ବିତାଇଲେ। ଦାରିଦ୍ର୍ୟ ଓ ଯନ୍ତ୍ରଣା ଭିତରେ ଜୀବନ ଯାପନ କଲେ। ରାଜ୍ୟନାହିଁ, ଲକ୍ଷ୍ୟ ନାହିଁ,

ଆଶା ନାହିଁ। ଲଜ୍ଜା, ଦୁଃଖ, ଯନ୍ତ୍ରଣା ନେଇ ସେ ବାଇନାକୁ ବାଲିଯିବାକୁ ଇଚ୍ଛା କରିଥିଲେ। କିନ୍ତୁ ଭାଗ୍ୟ ତାଙ୍କୁ ଏଇ ଦୁର୍ଦ୍ଦଶାରୁ ରକ୍ଷା କଲା। ସେ କାବୁଲର ଶାସକ ହେଲେ। କାବୁଲର ସେତେବେଳର ଶାସକ ଉଲଗ୍ ବେଗ୍ ମିରଜା ମରିଗଲେ– ଏକ ଶିଶୁପୁତ୍ରକୁ ଉତ୍ତରାଧିକାରୀ ଭାବରେ ଛାଡ଼ିଦେଇ। ସେ ଥିଲେ ବାବରଙ୍କ କାକା। ବିଦ୍ରୋହୀମାନଙ୍କ ବିଦ୍ରୋହ ଫଳରେ ଶିଶୁପୁତ୍ର ମଧ୍ୟ ଶାସକ ହୋଇ ରହିପାରିଲେ ନାହିଁ।

ବାବରଙ୍କୁ ସେତେବେଳେ ୨୨ ବର୍ଷ। ୧୫୦୪ ମସୀହା। ସେ ହେଲେ କାବୁଲର ଶାସକ। ପାଇଲେ ଏକ ଶକ୍ତିଗ ଆଧାର। ବାବର ସବୁବେଳେ ନିଜକୁ ଦୁଃଖୀ ମୁସଲମାନ ବୋଲି ଭାବନ୍ତି। ଭାଗ୍ୟରେ ବିଶ୍ୱାସ କରନ୍ତି ନାହିଁ କିନ୍ତୁ ବିଶ୍ୱାସ କରନ୍ତି ଆତ୍ମସନ୍ତୋଷରେ। ଆଉ ଆତ୍ମ ସନ୍ତୋଷ ହିଁ ତାଙ୍କପାଇଁ ଶାସକର ବିଶିଷ୍ଟ ଗୁଣ।

ତାଙ୍କ ପାହାଡ଼ି ରାଜ୍ୟର ରାଜସ୍ୱ ବଢ଼ାଇବାପାଇଁ ସେ ଚିନ୍ତା କରୁଥିଲେ। ତୈମୁରଙ୍କ ଭାରତ ଆକ୍ରମଣ ତାଙ୍କୁ ପ୍ରଭାବିତ କରିଥିଲା। ୧୫୦୫ରେ ଲେଖିଥିଲେ କି ଭାରତ ଆକ୍ରମଣ ତାଙ୍କର ନିଶା। ତାଙ୍କ ମତରେ ମଝିରେ ମଝିରେ ଭାରତକୁ ଅନୁପ୍ରବେଶ କରିବା ପ୍ରକୃତ ଭାରତ ଆକ୍ରମଣ ନୁହେଁ। ପ୍ରଥମ ଭାରତ ଆକ୍ରମଣ ହେଲା ୧୫୨୪ରେ। ଶୈବାନୀ ଓ ତୈମୁର ମଧ୍ୟରେ କେବଳ ଦକ୍ଷତାର ପ୍ରଭେଦ ନଥିଲା କିନ୍ତୁ ବାବର ବିଶ୍ୱାସ କରୁଥିଲେ ମଙ୍ଗୋଲିୟାନର ଶୈବାନୀଦଳ ଯେ ପର୍ଯ୍ୟନ୍ତ ମୋଗଲ ମାନଙ୍କ ସହିତ ମିଳିତ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ଭାରତ ଆକ୍ରମଣ ବା ଭାରତରେ ରହଣି ସୁରକ୍ଷିତ ନୁହେଁ। ବିନା ଶକ୍ତି ପ୍ରୟୋଗରେ ସେ ଶୈବାନୀ ଦଳକୁ ହାତକୁ ଆଣିଲେ।

୧୫୨୫ ନଭେମ୍ବର ମାସରେ ସେ ଭାରତ ଆକ୍ରମଣ ପାଇଁ ଆଗେଇଲେ। ଭାରତରେ ଯମୁନା କୂଳରେ ପହଞ୍ଚିଲା ବେଳକୁ ଏପ୍ରିଲ ମାସ। ସୂର୍ଯ୍ୟଙ୍କ ଉତାପ ଅଧିକ। ମହାଭାରତର ଯୁଦ୍ଧ ସ୍ଥଳ କୁରୁକ୍ଷେତ୍ରର ପୂର୍ବଦିଗକୁ ସେ ଛାଉଣି ପକାଇଲେ। ଦିଲ୍ଲୀରୁ ୮୦ କିଲୋମିଟର ଦୂର ପାନିପଥଠାରେ ତାଙ୍କୁ ଦୁଇଟି ଦଳ– ଆଫଗାନ ଓ ଲୋଦିଙ୍କୁ ସାମନା କରିବାକୁ ପଡ଼ିଲା। ମସିହା ୧୫୨୬।

ବାବରଙ୍କର ସୈନ୍ୟବାହିନୀ ୧୨,୦୦୦ ସୈନ୍ୟରେ ସିମୀତ ଥିଲାବେଳେ ଭାରତୀୟ ସେନାବାହିନୀରେ ୨୦,୦୦୦ ସୈନ୍ୟ ଥିଲେ। ଆଉ ଆଫଗାନ ମାନଙ୍କର

ଥିଲେ ୧,୦୦,୦୦୦ ସୈନ୍ୟ ଓ ୧୦୦୦ ହତୀ। ଆଫଗାନମାନଙ୍କର ସେନା ବାହିନୀକୁ ବାବର ଡରୁ ନଥିଲେ। କାରଣ ବାବରଙ୍କର ଉନ୍ନତ ଧରଣର ଯୁଦ୍ଧ ଯନ୍ତ୍ରପାତି ଥିଲା। ତଥାପି ବାବର ନିଜର ବୁଦ୍ଧି କୌଶଳ ବଳରେ ହିଁ ଜିତିଲେ। ମାତ୍ର ୫ ଘଣ୍ଟାର ଯୁଦ୍ଧପରେ ବାବରଙ୍କୁ ଏକ ସାମ୍ରାଜ୍ୟ ମିଳିଗଲା। ରାସ୍ତାରେ ଦିଲ୍ଲୀରେ କିଛିଦିନ ରହି ସେଠାକାର ବାଗ୍ ବଗିଚା, ପୀଠସ୍ଥଳୀ ପ୍ରାସାଦ ଓ ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ ଦର୍ଶନ କଲେ ବାବର। ନିଜ ନାଁରେ କୁତୁବା (ସମ୍ରାଟଙ୍କ ଆଧିପତ୍ୟ ସ୍ୱୀକାର କରି ଏକ ଛୋଟ ପ୍ରାର୍ଥନା)ର ବ୍ୟବସ୍ଥା କରି ଗଲେ ଆଗ୍ରା। ନିଜକୁ ହିନ୍ଦୁସ୍ଥାନର ସମ୍ରାଟ ବୋଲି ଘୋଷଣା କଲେ।

ଭାରତର ସମ୍ରାଟ ହେଲାବେଳକୁ ବାବରଙ୍କ ବୟସ ୪୩ ବର୍ଷ। ଅନେକ ରାସ୍ତା, ଅନେକ ବାଧାବିଘ୍ନ ପରେ ତାଙ୍କ ନିଜ ସ୍ୱପ୍ନର ସାମ୍ରାଜ୍ୟ ତାଙ୍କୁ ମିଳିଲା। ନିଜ ରାଜ୍ୟ ଫରଗନାର ସ୍ମୃତି ରହିଯାଇଥିଲା ଏକ ସୁଦୂର ସ୍ମୃତି ଭାବରେ। ରାଜଧାନୀ ସମରକନ୍ଦ ଓ ୨୫ ବର୍ଷ ରାଜୁତି କରିଥିବା କାବୁଲ ବର୍ତ୍ତମାନ ଏକ ଅତୀତ ସ୍ମୃତି। ବର୍ତ୍ତମାନ ସେ ଏକ ବିରାଟ ସାମ୍ରାଜ୍ୟର ରାଜା। ଶାସକ।

ବାବର ସିଦ୍ଧାନ୍ତ କଲେ ଭାରତରେ ରହିବେ। କିନ୍ତୁ ଅନୁଚରମାନେ ଏହାକୁ ପସନ୍ଦ କଲେ ନାହିଁ। ସେମାନଙ୍କର ଇଚ୍ଛା ଥିଲା ଭାରତ ଲୁଣ୍ଠନ କରି ନିଜ ଦେଶକୁ ଫେରିଯିବେ। ବାବରଙ୍କୁ ଭାରତରେ ରହିବା ପାଇଁ ଦୁଇଟି ଜିନିଷ ଆକର୍ଷିତ କରିଥିଲା। ଭାରତର ବ୍ୟବସାୟୀଗଣ, ଯେଉଁଠି ସବୁ ଧରଣର ବ୍ୟବସାୟୀ ମହଜୁଦ୍ ଥିଲେ। ଦ୍ୱିତୀୟରେ ଏ ବିରାଟ ଦେଶ ଭାରତ-ବର୍ଷ ଯେଉଁଠି ସୁନା, ରୂପା, ରତ୍ନ, ସଂପତ୍ତି ମହଜୁଦ ଅଛି। ଆଉ ତାହା ସହଜରେ ସରିବ ନାହିଁ। କିନ୍ତୁ ତାଙ୍କ ଲୋକମାନଙ୍କର ଭାରତରେ ରହିବାପାଇଁ ଆଦୌ ଇଚ୍ଛା ନଥିଲା। ବାବର ନିଜେ କହୁଥିଲେ;

"ମତେ ଯଶ ଦିଅ, ମୁଁ ଶାନ୍ତିରେ ମରିପାରିବି।
ଯଶ ଯଦି ମୋର, ମୃତ୍ୟୁ ମୋର ଶରୀରକୁ ନେଉ।"

ପାନିପଥ ତାଙ୍କୁ ଇତିହାସରେ ଏକ ସ୍ଥାନ ଦେଇଛି। ଧିରେ ଧିରେ ବାବର ନିଜର ଆନ୍ତରିକତା, ବ୍ୟବହାର ଦେଇ ଭାରତୀୟଙ୍କୁ ହାତକୁ ନେଲେ। ଆସ୍ତେ ଆସ୍ତେ ମୋଗଲମାନଙ୍କୁ ଡକାଇ ଭାରତରେ ଅଇଥାନ କରିବାର ଇଚ୍ଛା କଲେ। ଏପଟେ ଆଫଗାନମାନେ ପରାସ୍ତ ହୋଇଥିଲେ ସତ କିନ୍ତୁ ଶେଷ ହୋଇଯାଇ

ନଥିଲେ। ବିହାର ଓ ବଙ୍ଗଳାରେ ତାଙ୍କର ଶାସନ ଥିଲା। ଗୁଜୁରାଟରେ ମଧ୍ୟ ଶାସନ ଚଳାଉଥିଲେ। ବିନ୍ଧ୍ୟ ପର୍ବତରେ, ଦାକ୍ଷିଣାତ୍ୟରେ ସୁଲତାନମାନେ ଓ ରାଜପୁତମାନେ ମେବାରରେ ଶାସନ କରୁଥିଲେ। ଏମାନେ ଥିଲେ ବାବରଙ୍କ ଶତ୍ରୁ। ମୋଗଲ ଆକ୍ରମଣରେ ଆଫଗାନମାନେ ପ୍ରାୟ ପଳାୟନ କରିଥିଲେ। ରାଜପୁତ ମାନଙ୍କ ବିଷୟ ବାବରଙ୍କୁ ଭାବିବାକୁ ପଡ଼ିଲା କାରଣ ତାଙ୍କ ଦୂରତା ଅଧିକ ଥିଲା। ବର୍ଷା ଋତୁ ପାଖେଇ ଆସିଥିଲା। ସେଥିପାଇଁ ଆଉ ଅଗ୍ରସର ନ ହୋଇ ବାବର ଆଗ୍ରା ପ୍ରାସାଦରେ ବଗିଚା ତିଆରି କରିବାରେ ଲାଗିପଡ଼ିଲେ। ଅତି ସୁନ୍ଦର ଭାବରେ ସଜାଇଲେ ଆଗ୍ରା ସହରକୁ।

ବର୍ଷା ଶେଷ ହେବାପରେ, ରାଜପୁତ ରାଣା ସଙ୍ଗଙ୍କ ସହିତ ଯୁଦ୍ଧ କରିବାର ବନ୍ଦୋବସ୍ତ କଲେ। ରାଜପୁତମାନେ ଆଫଗାନ ଶାସକ ଓ ଇବ୍ରାହିମ ଲୋଦିଙ୍କ ଭାଇ ମହମ୍ମଦଙ୍କ ସହିତ ମିଳିତ ହୋଇଥିଲେ। ୧୫୨୭, ୧୧ ଫେବୃୟାରୀରେ ବାବର ଆକ୍ରମଣପାଇଁ ବାହାରିଲେ। ରାଜ୍ୟ ଜୟ କେବଳ ସେନାବାହିନୀର ଶକ୍ତି ଉପରେ ନିର୍ଭର କରେନାହିଁ। ଯୁଦ୍ଧଜନିତ ସମସ୍ୟାକୁ ଗଭୀର ଭାବରେ ଅନୁଧ୍ୟାନ କରି ସମ୍ୟକ ସିଦ୍ଧାନ୍ତ ନେବା ଆବଶ୍ୟକ। ଗତ ୧୪ ବର୍ଷ ଧରି ବାବର ଅନେକବେଶି ମଦ୍ୟପାନ କରୁଥିଲେ। ଠିକଣା କଲେ ମଦ୍ୟପାନ ଛାଡ଼ି ଦିବ୍ୟଶକ୍ତି ନିକଟରେ ନତମସ୍ତକ ହେବେ। ହିନ୍ଦୁ ରାଜାଙ୍କ ବିରୁଦ୍ଧରେ ପ୍ରଥମ ଯୁଦ୍ଧ। ଧର୍ମର ଯୁଦ୍ଧ। ସୈନ୍ୟବାହିନୀ ଓ ଅଫିସରମାନଙ୍କୁ ମଧ୍ୟ ଏ ଧାରଣାଦେଲେ। ବାବର ସେଇଦିନୁ ଦାଢ଼ି କାଟିବା ମଧ୍ୟ ଛାଡ଼ିଦେଲେ। ମଦସବୁ ଢାଳିଦିଆଗଲା। ବାବର କହିଲେ ଜୀବନ ଶେଷ ହେବା ପୂର୍ବରୁ ମୃତ୍ୟୁର ପିଆଲାକୁ ପିଅ। ତା'ପରେ ମୃତ୍ୟୁ ସହଜ ହୋଇଯିବ। ମୃତ୍ୟୁ ହେଚ ବିଜୟୀର, ଅପଯଶ ନେଇ ବଞ୍ଚିବା ଅପେକ୍ଷା ମୃତ୍ୟୁକୁ ବୀର ଭାବରେ ଗ୍ରହଣ କରିନିଅ। ଭାଗ୍ୟ ଆମକୁ ଏପରି ମୋଡ଼ରେ ପହଞ୍ଚାଇଛି ଯେ ଆମେ ମରିଗଲେ ଶହିଦ ହେବା ଆଉ ଜିତିଗଲେ ସୁଖ ଭୋଗିବା। ୧୦ ମାର୍ଚ୍ଚରେ ଖାନୁଆ ନାମରେ ଏକ ଛୋଟ ଗାଁରେ ବାବର ତାଙ୍କ ସୈନ୍ୟସହ ପହଞ୍ଚିଲେ। ବାବରଙ୍କ ବାକ୍ୟ ଓ ନିର୍ଦ୍ଦେଶ ତାଙ୍କ ସୈନ୍ୟବାହିନୀ ଭିତରେ ଖେଳି ଯାଇଥିଲା।

ଯୁଦ୍ଧ ଶେଷ ହେଲା। ଯୁଦ୍ଧକ୍ଷେତ୍ରରେ ପରାଜିତ ମୃତ ସୈନିକ ମାନଙ୍କର ମୁଣ୍ଡମାଳାରେ ଏକ ଖୁମ୍ବ ତିଆରି କରି ତାଙ୍କ ବିଜୟର ଚିହ୍ନ ଦେଖାଇଲେ। ଉଦ୍ଦେଶ୍ୟ

ଥିଲା ମୋଗଲ ବିଜୟରେ ଶତ୍ରୁକୁ ଭୟଭୀତ କରାଇବା। ଜ୍ୟୋତିଷ ମହମ୍ମଦ ସରିଫ ବାବର ଯୁଦ୍ଧରୁ ଫେରିବା ପରେ ତାଙ୍କୁ ସଂବର୍ଦ୍ଧନା ଜଣାଇବାପାଇଁ ପ୍ରସ୍ତୁତ ହୋଇଥିଲେ। ଏଇ ଜ୍ୟୋତିଷ କିନ୍ତୁ ତାଙ୍କୁ ଭାରତ ଆକ୍ରମଣ ପାଇଁ ବାରଣ କରିଥିଲେ। ବାବର ସେଥିଲାଗି ଜ୍ୟୋତିଷଙ୍କ ଉପରେ କ୍ଷୁବ୍‌ଧ ଥିଲେ। ପରେ ଶାନ୍ତ ହୋଇ, ଯେହେତୁ ସେ ତାଙ୍କର ପୁରୁଣା ସେବକ, ଲକ୍ଷେ ଟଙ୍କା ଦେଇ ଦେଶରୁ ବିଦା କରିଦେଲେ।

ହିନ୍ଦୁସ୍ଥାନର ସମ୍ରାଟ ହେଲାପରେ ବାବର ଆଶ୍ୱସ୍ତ ହେଲେ। ଯୁଦ୍ଧ, ଆଉ ଯୁଦ୍ଧ ବ୍ୟତିତ ଆଉ ଅନ୍ୟାନ୍ୟ ଅନେକ ଜିନିଷରେ ତାଙ୍କର ଆଗ୍ରହ ଥିଲା। ଉଦାହରଣ ସ୍ୱରୂପ– ଓକ୍ ଗଛର ଭରାପୁରା ପତ୍ରସହ ଗଛକୁ ଜଳେଇବା ଆଉ ଜଳେଇବା ପରେ ଯେଉଁ ଠୋଠା ଶବ୍ଦ ହୁଏ ତାକୁ ଆଗ୍ରହ ସହିତ ଶୁଣିବାରେ, ଚନ୍ଦ୍ର ଆଲୋକ, ଫୁଲଭରା ବୁଦାଗଛ, ବୋହିଯାଉଥିବା ପାଣିରେ ଧାରା, ପ୍ରକୃତିର ଏ ସବୁ ସୃଷ୍ଟି ତାଙ୍କ ପାଇଁ ଥିଲା ଏକ ଅଦ୍‌ଭୁତ ଉନ୍ମାଦନା। ଭଲ ସମୟ ହେଉ ବା ଖରାପ ସମୟ ହେଉ ସାହିତ୍ୟ ପ୍ରତି ତାଙ୍କର ମମତା ଅଧିକ। ତାଙ୍କ ଲାଇବ୍ରେରୀ ତାଙ୍କ ପାଇଁ ସବୁଠୁ ବଡ଼ ମୂଲ୍ୟବାନ ସଂପତ୍ତି ଥିଲା। ତାଙ୍କ ଦାଦାଙ୍କ ଲେଖା ସଂକ୍ରାନ୍ତରେ ସେ କହନ୍ତି; ତାଙ୍କ ଲେଖା ନୀରବ ଓ ନିଃସ୍ୱାଦ। ଖରାପ ଲେଖିବା ଅପେକ୍ଷା ମୋଟେ ନ ଲେଖିବାହିଁ ଭଲ। ତାଙ୍କୁ ଦୁଃଖ ଲାଗୁଥିଲା କି ତାଙ୍କ ପୁଅ ହୁମାୟୁନ ମଧ୍ୟ ଜଣେ ଖରାପ ଲେଖକ।

ବାବର ନିଜେ ଜଣେ ଜଣାଶୁଣା ଲେଖକ। ସେ ତୁର୍କୀ ଓ ପର୍ଶିୟାନ ଭାଷାରେ ଲେଖୁଥିଲେ। ଅନେକ ଭଲ ଲେଖା ସହିତ ସବୁଠୁ ଭଲ ଲେଖା ତାଙ୍କର ଆତ୍ମ-ଜୀବନୀ– ବାବରନାମା। ମଦ୍ୟପାନ ଛାଡ଼ିବା ପରେ ଲେଖାହିଁ ତାଙ୍କୁ ଶାନ୍ତି ଦେଉଥିଲା। ଦୁଃଖର ବିଷୟ ତାଙ୍କର କୌଣସି ଲେଖା ବର୍ତ୍ତମାନ ମହଜୁଦ ନାହିଁ। ବାବର ଲେଖିଛନ୍ତି; କାର୍ଯ୍ୟର ସତ୍ୟତା ପ୍ରକାଶ କରିବା ମୋର କର୍ତ୍ତବ୍ୟ। ଇତିହାସରେ କାମ ଖରାପ ହେଉ ବା ଭଲ ହେଉ ଯାହା ଘଟିଛି ସେ ସବୁ ଲିପିବଦ୍ଧ ହେବା ଉଚିତ। ବାପା, ବଡ଼ଭାଇ, ଅନୁଗତ, ଅଜଣା ଲୋକଙ୍କ ସଂକ୍ରାନ୍ତରେ ଯାହା କିଛି ଲେଖିଛି ସେ ସବୁ ସତ ଆଉ ସେଇଟାହିଁ ମୋର ଆନନ୍ଦ। ବହି ଲେଖା ଛଡ଼ା, ତାଙ୍କ ସଂଗୀତ ଚର୍ଚ୍ଚା, ନୂଆ ଧରଣର କାଲିଗ୍ରାଫିର ସୃଷ୍ଟି କରିବାରେ ତାଙ୍କର ଅସୀମ ଆନନ୍ଦ। ସାହିତ୍ୟଚର୍ଚ୍ଚା ବ୍ୟତିତ ବଗିଚା ତିଆରି କରିବା ଓ ଅନ୍ୟାନ୍ୟ ଅନେକ

ଜିନିଷରେ ସେ ଆନନ୍ଦ ପାଉଥିଲେ । ଜୈନଙ୍କ ପ୍ରାର୍ଥନା ସ୍ଥଳ, ଗୋୟାଲିୟର ଦୁର୍ଗର ନିର୍ମାଣଶୈଳୀ, ହିନ୍ଦୁ ମନ୍ଦିର ଦେଖି ସେ ଅଭିଭୂତ ହୋଇଥିଲେ । ଜୈନ ମୂର୍ତ୍ତିର ଉଲଗ୍ନତା ଦେଖି ତାକୁ ନଷ୍ଟ କରିଦେବାପାଇଁ ଆଦେଶ ଦେଇଥିଲେ ହେଁ ହିନ୍ଦୁମନ୍ଦିରର ମୂର୍ତ୍ତି ସବୁକୁ ବିନଷ୍ଟ କରିବାପାଇଁ ଆଦେଶ ଦେଇ ନଥିଲେ । ବାବରଙ୍କର ନିଜ ସାମ୍ରାଜ୍ୟ, ରାଜ୍ୟ, ଲୋକ ସମସ୍ତଙ୍କ ପାଇଁ ମମତା ଥିଲା । ତାଙ୍କ ମତରେ ଦେଶପ୍ରୀତିର ବନ୍ଧନ ସହିତ ଅନ୍ୟ କୌଣସି ବନ୍ଧନର ତୁଳନା ନାହିଁ । ସହଜ ଜୀବନ ଯାପନ କରୁଥିବା ପୁତ୍ର ହୁମାୟୁନଙ୍କୁ ସେ ଲେଖିଥିଲେ, ଶାସନର ଆଇନରୁ ଅବ୍ୟାହତିନେବା ଅଭିନନ୍ଦନୀୟ ନୁହେଁ ।

ବାବରଙ୍କର ଦେଶ ସଂକ୍ରାନ୍ତରେ ଚିନ୍ତା, ଶାସନ ବିଷୟରେ ଜ୍ଞାନ ଥିଲେ ମଧ୍ୟ ଭାରତରେ ଏକ ମୌଳିକ ଶାସନଧାରାର ପ୍ରଚଳନ ସେ କରିପାରି ନଥିଲେ । ପାଞ୍ଚବର୍ଷର ଶାସନ କାଳ ଭିତରେ ସେ କେବଳ ଯୁଦ୍ଧରେ ବ୍ୟସ୍ତ ଥିଲେ । ନିଶ୍ଚିତ ଭାବରେକୁହାଯାଇପାରେ ଯାଯାବର ଶାସନ ପଦ୍ଧତି ବ୍ୟତିତ ସେ ଏକ ନିୟମଗତ ଶାସନପଦ୍ଧତି ପ୍ରଣୟନ କରି ପାରି ନଥିଲେ । ୧୫୨୮ରେ ସେ ଆର୍ଥିକ ସଂକଟର ସମ୍ମୁଖୀନ ହେଲେ । ସେଥିପାଇଁ ନିଜ ଅମୀରମାନଙ୍କଠାରୁ ଆର୍ଥିକ ଦାନ ମଧ୍ୟ ଗ୍ରହଣ କରିଥିଲେ । ଅନ୍ୟାନ୍ୟ ବେତନଭୋଗୀ କର୍ମଚାରୀମାନଙ୍କୁ ମଧ୍ୟ ଆଦେଶ ଦେଲେ କ ସେମାନେ ରାଜକୋଷ ପାଇଁ ଆର୍ଥିକ ସହାୟତା କରିବେ ଯାହା ଯୁଦ୍ଧକାଳିନ ଖର୍ଚ୍ଚରେ ଯିବ । ହୁଏତ ଏଇସବୁ କାରଣଯୋଗୁଁ ସେ ଆଗ୍ରାକୁ ଫେରିବାପରେ ଯେଉଁ ଅନୁଚରମାନେ କାବୁଲକୁ ଫେରିବାକୁ ଚାହିଁଥିଲେ ସେମାନଙ୍କୁ କାବୁଲ ପଠାଇଦେଲେ । ହୁମାୟୁନଙ୍କୁ ମଧ୍ୟ ବଡ଼ାକ୍ଷଣ ଶାସନ କରିବାକୁ ପଠାଇଦେଲେ । ସେ ନିଜେ ଆଗ୍ରାର ଅଷ୍ଟସ୍ୱର୍ଗ ବଗିଚାରେ ରମଜାନ ପର୍ଯ୍ୟନ୍ତ ରହିଲେ । ପରେ ପରେ ସିକ୍ରି ଗଲେ ।

ସେ ପୁଣି ଯୁଦ୍ଧ ଅଭିଯାନରେ ବାହାରିଲେ ବର୍ଷାଋତୁ ଶେଷହେବା ପରେ । ପ୍ରଥମେ ରାଜପୁତମାନଙ୍କୁ ପାଖରୁ ମାଲଓ୍ୱା ଦୁର୍ଗ ଅଧିକାର କରେ । ପରେ ପରେ ସୁଲତାନ ମହମ୍ମଦ ଲୋଦିଙ୍କ ନେତୃତ୍ୱରେ ଯେଉଁ ଆଫଗାନ ଦଳ ବିହାରରେ ରାଜୁତି କରୁଥିଲେ ପାଟନାଠାରେ ୧୫୨୯ ମସିହାରେ ସେମାନଙ୍କୁ ପରାସ୍ତ କଲେ ।

କିଛିଦିନ ପରେ ଖବର ମିଳିଲା ହୁମାୟୁନ ଅସୁସ୍ଥ । ହୁମାୟୁନଙ୍କ ମା ମହାମବେଗମଙ୍କ ଇଚ୍ଛାରେ ତାଙ୍କୁ ଆଗ୍ରା ଅଣାଗଲା । କିନ୍ତୁ ହୁମାୟୁନ ପାଗଳ ପ୍ରାୟ

ଥିଲେ। ସମସ୍ତେ କହିଲେ, କି ଭଗବାନହିଁ ତାଙ୍କୁ ରକ୍ଷା କରିପାରିବେ। ଭଗବାନଙ୍କୁ ଯଦି ହୁମାୟୁନଙ୍କର କୌଣସି ମୂଲ୍ୟବାନ ପ୍ରିୟବସ୍ତୁ ଦାନ ସ୍ୱରୂପ ଦିଆଯାଏ, ତା ହେଲେ ତାଙ୍କ ଜୀବନ ରକ୍ଷା ହୋଇପାରେ। ବାବର ନିଜ ଜୀବନକୁ ହୁମାୟୁନଙ୍କର ଅଧିକ ମୂଲ୍ୟବାନ ବସ୍ତୁ ବୋଲି ଭାବି ଜୀବନ ଅର୍ପଣ କରିବାକୁ ଆଗେଇ ଆସିଲେ।

ହୁମାୟୁନଙ୍କ ବିଛଣା ପାଖରେ ବାବର ପ୍ରାର୍ଥନା ଆରମ୍ଭ କଲେ। କିଛିଦିନ ପ୍ରାର୍ଥନା କରିବା ପରେ ବାବର ହଠାତ୍ ଭୀଷଣ ଜ୍ୱରରେ ପଡ଼ିଲେ। କିନ୍ତୁ ହୁମାୟୁନ ଆସ୍ତେ ଆସ୍ତେ ଭଲ ହୋଇଗଲେ। କର୍ମକ୍ଷେତ୍ରକୁ ଫେରିଗଲେ। ବାବର ହେଲେ ଶଯ୍ୟାଶାୟୀ। ଫେରିଲେ ହୁମାୟୁନ ଆଗ୍ରାକୁ। ବାପାଙ୍କର ଅବସ୍ଥା ଦେଖି ବ୍ୟଥିତ ହୋଇପଡ଼ିଲେ। ତହିଁପରଦିନ ସେଇ ଅବସ୍ଥାରେ ବାବର ବାହାର କାଉଚରେ ବିଶ୍ରାମ ନେବା ସମୟରେ ନିଜର ଅମିରମାନଙ୍କୁ ଡକାଇଲେ। ମୃତ୍ୟୁ ପୂର୍ବରୁ ଶେଷ ଉପଦେଶ ନେବାପାଇଁ ନିର୍ଦ୍ଦେଶ ଦେଲେ। ହୁମାୟୁନଙ୍କୁ ରାଜଗାଦି ଦେଇ ସମ୍ରାଟ ବୋଲି ଘୋଷଣା କଲେ। ହୁମାୟୁନଙ୍କୁ କହିଲେ କି ସେ ତାଙ୍କ ଭାଇମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ନାହିଁ।

ସୋମବାର ୨୬ ଡିସେମ୍ବର ୧୫୩୦ରେ ବାବର ପ୍ରାଣତ୍ୟାଗ କଲେ। ଅଷ୍ଟସ୍ୱର୍ଗ ବଗିଚାରେ ତାଙ୍କୁ କବର ଦିଆଗଲା। ବର୍ତ୍ତମାନ ସେ ଜାଗାର ନାଁ ଆରାମ-ବାଗ। କିନ୍ତୁ ପରେ ବାବରଙ୍କ ଇଚ୍ଛା ଅନୁଯାୟୀ କାବୁଲକୁ ସେ କବର ସ୍ଥାନାନ୍ତରିତ ହୋଇଥିଲା।



# ହୁମାୟୁନ

ବାବରଙ୍କ ମୃତ୍ୟୁର ୪ ଦିନପରେ ୩୦ ଡିସେମ୍ବର ୧୫୩୦ରେ ଜ୍ୟୋତିଷଙ୍କ ମତ ଅନୁସାରେ ୨୩ ବର୍ଷ ବୟସ୍କ ହୁମାୟୁନଙ୍କର ରାଜାଭିଷେକ ହେଲା। ବାବରଙ୍କ ଉକ୍ତି 'ସ୍ୱପ୍ନାଳୁ ମଣିଷ ସ୍ୱପ୍ନରେ ହିଁ ବଞ୍ଚି ରହେ'। କିନ୍ତୁ ହୁମାୟୁନ ସଂକ୍ରାନ୍ତରେ ସେ ଏହି ଉକ୍ତି ପ୍ରଯୁଜ୍ୟ କରିପାରିନଥିଲେ। ରାଜଗାଦିରେ ବସିବା ହୁମାୟୁନଙ୍କ ପାଇଁ ଏକ ସ୍ୱପ୍ନ ଥିଲା, ଏ ସ୍ୱପ୍ନ ଥିଲା ଭୟାନକ– ଅନ୍ଧକାର ଭିତରେ ସବୁ ମିଳେଇଗଲା ପରି। ହୁମାୟୁନଙ୍କ ପରି କେହି ଏତେ ଭଲଗୁଣର ଅଧିକାରୀ ନଥିଲେ। ମିର୍ଜା ହାଇଦରଙ୍କ ଭାଷାରେ 'ହୁମାୟୁନ ଥିଲେ ଜଣେ ଦକ୍ଷ ଗଣିତଜ୍ଞ, ଜ୍ୟୋତିଷବିଜ୍ଞାନୀ ଓ ଜ୍ୟୋତିଗଣନା ବିଦ୍ୟାରେ ଅଦ୍ୱିତୀୟ'। ବାଦଉଇନଙ୍କ ଭାଷାରେ କିନ୍ତୁ ଏସବୁ ଦେଶର ଶାସକ ହେବାରେ କିଛି କାମରେ ଲାଗେନାହିଁ। ଏସବୁ ସୁଗୁଣସବୁ ଦୁର୍ଗୁଣରେ ପରିଣତ ହେଉଥିଲା। ତାଙ୍କ ସମୟର ଓ କ୍ଷମତାର ସେ ଥିଲେ ଅନୁପଯୁକ୍ତ। ତାଙ୍କ ଜୀବନ ମଧ୍ୟରେ କିଛି ଉଲ୍ଲେଖନୀୟ ଘଟଣା ଘଟିନାହିଁ। ହୁମାୟୁନ– କାବୁଲରେ ମାର୍ଚ୍ଚ ୬ ତାରିଖ ୧୫୮୦ରେ ଜନ୍ମଗ୍ରହଣ କରିଥିଲେ। ୧୨ ବର୍ଷ ବୟସରେ ବଡ଼ଖାଶନଙ୍କୁ ଗଭର୍ଣ୍ଣର ହୋଇ ଗଲେ। ବାବର ଶେଷଥର ପାଇଁ ଭାରତ ଆକ୍ରମଣରେ ଆସିବାବେଳେ ତାଙ୍କୁ ନିର୍ଦ୍ଦେଶ ଦେଇଥିଲେ କି ସେ ତାଙ୍କୁ ରାସ୍ତାରେ ମିଳିବେ କିନ୍ତୁ ହୁମାୟୁନ ଆସି ନଥିଲେ।

୧୫୩୦-୧୫୪୦ ପର୍ଯ୍ୟନ୍ତ ଭାରତରେ ହୁମାୟୁନ ଶାସନ କରିଥିଲେ। ପାନିପଥରେ ଓ ଖାନୁଆରେ ସେ ମୋଗଲ-ସୈନ୍ୟଙ୍କପାଇଁ ବୀରତ୍ୱ ପ୍ରଦର୍ଶନ କରିଥିଲେ। ହୁମାୟୁନ ହେଲେ ଭାରତରେ ମୋଗଲ ସାମ୍ରାଜ୍ୟର ସମ୍ରାଟ। ହୁମାୟୁନ ତାଙ୍କ ଭାଇମାନଙ୍କୁ ବିତାଡ଼ିତ କରିବା ପରିବର୍ତ୍ତେ ତାଙ୍କ ସାମ୍ରାଜ୍ୟରୁ ନିଜ ଭାଇମାନଙ୍କ ଭିତରେ ବାଣ୍ଟିଦେଲେ। ତାଙ୍କ ସାନଭାଇ କାମରାନଙ୍କୁ କାବୁଲ ଓ କାନ୍ଧାହାର ଦେଇଦେଲେ। ତାଙ୍କ ଅନ୍ୟ ଭାଇମାନଙ୍କୁ ସବୁଛୋଟ ଛୋଟ ରାଜ୍ୟର ରାଜା

କରିଦିଆଗଲା । କାମରାନଙ୍କ ଭାଗ ପ୍ରାୟ ହୁମାୟୁନଙ୍କ ସହିତ ସମାନ ଥିଲାବେଳେ କାମରାନ ଏଥିରେ ସନ୍ତୁଷ୍ଟ ନଥିଲେ । ଏଇ ସର୍ତ୍ତ ହୁଏତ ଯୁଦ୍ଧରେ ପରିଣତ ହୋଇଥାନ୍ତା । କାମରାନ ହୁମାୟୁନଙ୍କୁ ଅଧିକ ଭାଗ ମାଗିଲେ । ହୁମାୟୁନ ମଧ୍ୟ ତାଙ୍କ ମାଗିବାଠୁ ଅଧିକ ଦେଲେ ।

ଏହି ସମୟରେ ଆଗ୍ରାରେ ଥିବା ତାଙ୍କ ଭାଇମାନେ, ବିହାରରେ ମହମ୍ମଦ ଲୋଦୀଙ୍କ ନେତୃତ୍ୱରେ ଆଫଗାନମାନଙ୍କ ସହ ମିଶି ବିଦ୍ରୋହ ଆରମ୍ଭ କଲେ । ପରେ ଗୁଜରାଟରେ ବାହାଦୂର ସାହ ମହମ୍ମଦ ଲୋଦୀଙ୍କୁ ହରାଇବା ପରେ ହିନ୍ଦୁସ୍ଥାନର ସବୁ ଆଫଗାନମାନେ ଏକାଠି ହୋଇଗଲେ । କେତେକ ମୋଗଲ ବିଦ୍ରୋହୀମାନେ ମଧ୍ୟ ସେମାନଙ୍କ ସହିତ ମିଶିଲେ । ଏପରିକି ଆଲାମ ଖାନ, ଲୋଦୀଙ୍କ ବିରୁଦ୍ଧରେ ବିଦ୍ରୋହ କରି ବାବରଙ୍କୁ ହିନ୍ଦୁସ୍ଥାନ ଆଣିଥିଲେ । ସେ ମଧ୍ୟ ଏ ବିଦ୍ରୋହରେ ଯୋଗଦେଲେ ।

ବାହାଦୂର ଶାହା ହୁମାୟୁନଙ୍କର ମୁହାଁମୁହିଁ ହେବାକୁ ଚାହୁଁ ନଥିଲେ । ସେମାନେ ସାମନାରୁ ପଳାୟନ କଲେ । ହୁମାୟୁନ କାବେଁ ପର୍ଯ୍ୟନ୍ତ ତାଙ୍କ ପିଛା କରିଥିଲେ । ସେଠି ସେ ପ୍ରଥମ ଥର ପାଇଁ ସମୁଦ୍ର ଦେଖିଲେ । ଶୁଣିଲେ ଜଙ୍ଗଲ ଭିତରେ ଚମ୍ପାନୀରରେ ଏକ ଦୁର୍ଗରେ ଗୁଜରାଟର ସମସ୍ତ ଧନ ଗୁପ୍ତରେ ରଖାଯାଇଛି । ସେ ୩୦୦ ମୋଗଲଙ୍କୁ ଧରି ଦୁର୍ଗ ଭାଙ୍ଗିଲେ । ମୋଗଲମାନେ ଯାହା ବିଶ୍ୱାସ କରୁଥିଲେ ସେ ଦୁର୍ଗରେ ତା'ଠାରୁ ଅଧିକ ଧନସଂପତ୍ତି ଥିଲା । ହୁମାୟୁନ ତାଙ୍କ ଅଫିସର ଓ ସୈନ୍ୟମାନଙ୍କୁ ସୁନା, ରୂପା, ଗହଣା ଇତ୍ୟାଦି ଯିଏ ଯେତେ ନେଇପାରିଲା ସେତେ ଦେଇଦେଲେ । ଆଉ ଅଧିକ ଯୁଦ୍ଧଯାତ୍ରା କରିବାପାଇଁ ମନ ବଳାଇଲେ ନାହିଁ । ସେଠାରେ ରହି ସେ ଆନନ୍ଦ ମନାଇଲେ ।

ଅବୁଲ ଫଜଲଙ୍କ ଭାଷାରେ 'ମୋଗଲ ବାହିନୀର ଶୃଙ୍ଖଳା ବଡ଼ ହୁଗୁଳା ଥିଲା ।' ତଳପାହିଆର ସୈନ୍ୟମାନେ ଦାକ୍ଷିଣାତ୍ୟ ବିଜୟ ଆଶାରେ ବାହାରିଗଲେ । ସେମାନେ ବାଟରେ ଧରା ପଡ଼ିଲେ । ହୁମାୟୁନଙ୍କ ଇଚ୍ଛା ବିରୁଦ୍ଧରେ ଫେରି ଆସିଲେ । ସେ ଦିନ ଥିଲା ମଙ୍ଗଳବାର । ହୁମାୟୁନ ଜ୍ୟୋତିଷଙ୍କ ନିର୍ଦ୍ଦେଶକ୍ରମେ ଲାଲ ଲୁଗା ପିନ୍ଧି ସିଂହାସନରେ ବସିଥିଲେ । ଫେରି ଆସିଥିବା ସୈନ୍ୟମାନଙ୍କର ହାତ, ପାଦ,

ମୁଣ୍ଡ କାଟ ହେବାପାଇଁ ଆଦେଶ ହେଲା। ଏପରିକି ଜଣେ ଇମାମଙ୍କୁ ମଧ୍ୟ ହାତୀ ପାଦତଳେ ମାରିଦେବା ପାଇଁ ନିର୍ଦ୍ଦେଶ ହେଲା।

ଜ୍ୟୋତିଷ ଗଣନା, ଜ୍ୟୋତିଷଶାସ୍ତ୍ର ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ। ଏପରିକି ଅନେକ ସମୟରେଜ୍ୟୋତିଷମାନେ ମଧ୍ୟ ବିରକ୍ତ ହୋଇଯାଉଥିଲେ। ସେ ତାଙ୍କ ଦରବାରର ସଦସ୍ୟମାନଙ୍କୁ ତିନିଭାଗରେ ବିଭକ୍ତ କରିଦେଉଥିଲେ। ପ୍ରଶାସନ ବିଭାଗ, ଧର୍ମ ଓ ସଂସ୍କୃତି ବିଭାଗ ଓ ଆନନ୍ଦ ଉତ୍ସବରେ ମାତିବାପାଇଁ ଆଉ ଗୋଟେ ଦଳଙ୍କୁ ମନୋନୀତ କରିଥିଲେ। ଯେଉଁ ଦଳ ଆନନ୍ଦ ପାଇଁ ମନୋନୀତ ହୋଇଥିଲେ ତାହା କେବଳ ଅଳ୍ପବୟସ୍କମାନଙ୍କ ଭିତରେ ପର୍ଯ୍ୟବେକ୍ଷିତ ଥିଲା। ସେମାନଙ୍କର ସୌନ୍ଦର୍ଯ୍ୟ ଓ ଦକ୍ଷତା ଥିଲା। ପ୍ରତ୍ୟେକଟି ବିଭାଗକୁ ବାରଟି ଲେଖାଏଁ ଦଳରେ ବାଣ୍ଟି ଦିଆଯାଇଥିଲା। ଏପରି କରିବାରେ ହୁମାୟୁନଙ୍କ ଦକ୍ଷତା ଅଧିକ ଥିଲା।

ଲୋଦି ସାମ୍ରାଜ୍ୟ ଲୋପ କରିବା ହୁମାୟୁନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା। ଶେର ଖାଁଙ୍କୁ ନଜର ନଦେଇ ପୂର୍ବ ଦିଗକୁ ଯୁଦ୍ଧ କରିବା ବନ୍ଦ କରିଦେଲେ। ତା'ପରେ ସେ ରାଜସ୍ଥାନ, ମାଲୱା, ଗୁଜରାଟ ଜୟକଲେ। ଅହମଦାବାଦ ଓ କାମ୍ବେ (ବଡ଼ସହର ଓ ବଡ଼ବନ୍ଦର) ପଶ୍ଚିମ ଭାଗର ଦୁଇଟି ପ୍ରଧାନ ଧନୀ ସହର। ଅହମଦାବାଦ ଜୟ କଲାପରେ ପାରମ୍ପରିକ ରୀତିରେ ଅହମଦ ସାହାଙ୍କୁ ରାଜଗାଦି ଫେରାଇଦେବା କଥା। କିନ୍ତୁ ସେ ତାହା ନକରି ତାଙ୍କ ଭାଇ ଅସକାରଙ୍କୁ ରାଜ୍ୟ ଦେଇଦେଲେ। ହୁମାୟୁନ ଗତିକଲେ ମାଣ୍ଡୁ। ସେଠାରେ କିଛିଦିନ ରହି ସେ ଆଗ୍ରା ଅଭିମୁଖେ ଯାତ୍ରା କଲେ।

୧୫୩୭ ବେଳକୁ ସେ ପୂର୍ବଦିଗକୁ ଯୁଦ୍ଧଯାତ୍ରା କଲେ। ଆଫଗାନଙ୍କ ବିରୁଦ୍ଧରେ ଲଢ଼ିଲେ। ଚୁନାର ଦୁର୍ଗ ଅଧିକାର କଲେ। ପରେ ଅଧିକାର କଲେ ଜୁଆନପୁର ଓ ଅଉଧ। ଶେର ଖାଁ ସେଠାରୁ ପଳାଇ ବେଙ୍ଗଲରେ ଅଧିକାର ପାତିବା ପାଇଁ ଗଲେ। ବର୍ଷକ ପରେ କନୌଜ ପାଖରେ ଯେଉଁଠି ଗୁଜରାଟ ପ୍ରତିହାରୀମାନେ ଦିନେ ରାଜୁତି କରୁଥିଲେ ସେଇଠି ହୁମାୟୁନ ସେନାସହ ଆଫଗାନ ସୈନ୍ୟବାହିନୀର ମୁହାଁମୁହିଁ ହେଲେ। ଏଠୁ ମଧ୍ୟ ହୁମାୟୁନ ଖସିଗଲେ ନିଜ କୋହିନୁର ହିରା ସହ। ଗଲେ ଭାଇମାନଙ୍କ ପାଖକୁ। କିନ୍ତୁ ସେମାନଙ୍କଠୁ କୌଣସି ସାହାଯ୍ୟ ଓ ଆଶ୍ରୟ ନ ପାଇ ସିନ୍ଧ ଓ ଗୁଜୁରାଟ ମରୁଭୂମି ଦେଇ ସାହାଙ୍କ ପାଖକୁ ପଳାଇଲେ।

ଆଫଗାନ ଓ ମୋଗଲ ସେନା ଚୌଷାରେ (ବନାରସ ଓ ପାଟନା ମଝିରେ) ମୁହାଁମୁହିଁ ହେଲେ। ପରାଜିତ ହେଲେ ହୁମାୟୁନ। ଜୀବନ ନେଇ ପଳାଇଲେ। ମୋଗଲମାନେ ଚମ୍ପାନିୟରରେ ବିଦ୍ରୋହ ମାତିଥିଲାବେଳେ ବାଦାଦୂର ଶାହ ପୁଣି ଥରେ ତାଙ୍କ ରାଜ୍ୟ ଫେରିପାଇବା ଆଶାରେ ଯୁଦ୍ଧକରି ହାରିଗଲେ। କିନ୍ତୁ ସେଇ ସମୟରେ ହୁମାୟୁନ ଅହମ୍ମଦାବାଦ ଦଖଲ କରିବା ଉଦ୍ଦେଶ୍ୟରେ ବାହାରିଥିଲେ। ତାଙ୍କ ବ୍ୟକ୍ତିଗତ ଅନୁଚର ଜହ୍ୱାର ତାଙ୍କୁ ପ୍ରସ୍ତାବ ଦେଲେ କି ଯେହେତୁ ବାହାଦୂର ଶାହଯୁଦ୍ଧ କରିବାକୁ ଇଚ୍ଛୁକ, ଆପଣ ଆପଣଙ୍କ ସୈନ୍ୟବାହିନୀଙ୍କୁ ମାସେ ବା ଦୁଇମାସର ଦରମା ଆଗତୁରା ଦେଇଦିଅନ୍ତୁ। ଯାହାଫଳରେ ସେମାନଙ୍କର ଆନୁଗତ୍ୟ ଆପଣଙ୍କପାଇଁ ରହିଯିବ ଓ ଆପଣ ନିଶ୍ଚିନ୍ତରେ ଦେଶ ବିଜୟ ପାଇଁ ଯାଇପାରିବେ। ହୁମାୟୁନ ଏଥିରେ ରାଜି ନ ହୋଇ ଅହମଦାବାଦ ଚାଲିଗଲେ।

ଅହମଦାବାଦ ଜୟକରି ତାଙ୍କ ଭାଇ ଅସକରଙ୍କୁ ଗୁଜୁରାଟ ଦାୟିତ୍ୱ ଦେଇ ମାଣ୍ଡୁ ଅଭିମୁଖେ ଯାତ୍ରା କଲେ। ହୁମାୟୁନ ଯିବାପରେ ଅହମଦ ଶାହ ଜଙ୍ଗଲ ଭିତରୁ ବାହାରି ଅସକରଙ୍କୁ ଯୁଦ୍ଧ ଡାକରା ଦେଲେ। ଅସକର ବେଶି ବିରୋଧ ନ କରି ତାଙ୍କୁ ଗୁଜରାଟ ଦେଇ ଆଗ୍ରା ପାଇଁ ଅଗ୍ରସର ହେଲେ। ବୋଧହୁଏ ଇଚ୍ଛା ଥିଲା ସିଂହାସନ ଦାବି କରିବେ ଆଗ୍ରାରେ। ଅକସରଙ୍କ ପରିଶ୍ରମ ବୃଥା ହେଲା। ହୁମାୟୁନ ୧୫୩୪-୧୫୩୬ ଦୁଇବର୍ଷରେ ମାଲୱା ଓ ଗୁଜରାଟ ହାସଲ କରିଥିଲେ। ଆଗ୍ରାକୁ ଫେରି ଆସିବାର ପ୍ରାୟ ବର୍ଷେ ପର୍ଯ୍ୟନ୍ତ ଅଫିମର ନିଶା ଓ ହାରେମର ଆନନ୍ଦ ହୁମାୟୁନଙ୍କୁ ପାଗଳ କରି ରଖିଲା। ମଝିରେ ମଝିରେ ଅହମଦ ଶାହଙ୍କ ବିରୁଦ୍ଧରେ ଯୁଦ୍ଧ କରିବାର ଯୋଜନା ବିଷୟରେ ମଧ୍ୟ କିଛି ଚିନ୍ତା ଚାଲିଥାଏ।

ଏହି ସମୟରେ ବିହାରରେ ଶେର ଖାଁ (ଜଣେ ସ୍ଥାନୀୟ ରାଜା)ଙ୍କ ନେତୃତ୍ୱରେ ଅଚାନକ ଯୁଦ୍ଧ ଘୋଷଣା କଲେ। ଲୋଦୀଙ୍କ ସହ ଲଢ଼ିବାବେଳେ ଶେର ଖାଁଙ୍କ ସହିତ କିଛି ସମୟପାଇଁ ଯୁଦ୍ଧ ହୋଇଥିଲା। ସେ ବିହାରର ଜଣେ ସ୍ଥାନୀୟ ରାଜା କିନ୍ତୁ ତାଙ୍କର ନଜର ଥିଲା ମୋଗଲ ସିଂହାସନ ଉପରେ। ହୁମାୟୁନ ମାଲୱା ଓ ଗୁଜରାଟ ଯୁଦ୍ଧରେ ବ୍ୟସ୍ତ ଥିଲାବେଳେ ସେ ବଙ୍ଗଳା ଦିଗକୁ ନିଜର ସ୍ଥିତି ବିସ୍ତାର କରିବାକୁ ଲାଗିଲେ। ବଙ୍ଗଳାରେ ନିଜର ଶକ୍ତି ବଢ଼ାଇବାର ଆଶାରେ।

୧୫୩୭ରେ ନିଜ ରାଜ୍ୟ ନୋବେଲମାନଙ୍କ ହାତରେ ସୁରକ୍ଷିତ ରଖି ହୁମାୟୁନ ଶେର ଖାଁଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ। କିନ୍ତୁ ପରିସ୍ଥିତି ଭୟଙ୍କର ହେଲା। ଶେର ଖାଁଙ୍କ ବୁଦ୍ଧି କୌଶଳ ଆଗରେ ହୁମାୟୁନ ଶିଶୁମାତ୍ର। ଶେର ଖାଁଙ୍କ ସିଧାସଳଖ ବଙ୍ଗଳାରେ ମୁକାବିଲା କରିବା ପରିବର୍ତ୍ତେ ସେ ବନାରସ ପାଖରେ ଥିବା ଆଫଗାନଙ୍କ ଚୁନାର ଦୁର୍ଗ ପାଖରେ ଅପେକ୍ଷା କରି ରହିଲେ। ଫଳରେ ଶେର ଖାଁ ବଙ୍ଗଳା ଅଧିକାର କରିନେଲେ। ହୁମାୟୁନ ହାରିଗଲେ।

ଏଣେ ହୁମାୟୁନ ଚୁନାର ଦୁର୍ଗ ଅଧିକାର କରି ଆଠମାସ ସମୟ ବ୍ୟବଧାନରେ ରୋହଟାସ ଦୁର୍ଗ ଅଧିକାର ନ କରି ସେଠାକାର ସ୍ଥାନୀୟ ରାଜାଙ୍କୁ ନିଜର ସଂପତ୍ତି ଓ ପରିବାର ରୋହଟାସର ହେପାଜତରେ ରଖିବେ ବୋଲି ଅନୁମତି ମାଗିଲେ। ଅନୁମତି ପାଇ ସେଠାରେ ନିଜର ପରିବାର ଓ ସଂପତ୍ତି ରଖି ଆଗେଇଲେ। ହୁମାୟୁନ ଓ ଶେରଖାଁ ଭିତରେ ଚୁନାର, ଜୋନପୁର ଓ ବଙ୍ଗଳା ଅଦଳବଦଳ ହେବାର ପ୍ରଶ୍ନ ଉଠିଲା। ରାଜଛତ୍ର ଓ ସିଂହାସନର ଅଦଳ ବଦଳର କଥାବାର୍ତ୍ତା ହେଲା। ଶେର ଖାଁ ପ୍ରସ୍ତାବ ଦେଲେ କି ଯଦି ହୁମାୟୁନ ବଙ୍ଗଳା ଛାଡ଼ିଦିଅନ୍ତି ତେବେ ସେ ବିହାର ଫେରାଇଦେବେ ଓ ଏକ ଅୟୁତ ଟଙ୍କା ହୁମାୟୁନଙ୍କୁ ଦେବେ।

ଏଥିରେ ପ୍ରଥମେ ହୁମାୟୁନ ରାଜି ହୋଇଯାଇଥିଲେ। ଅବଶେଷରେ ଦୁହେଁ ଯୁଦ୍ଧ କରିବାକୁ ଆଗ୍ରହୀ ହେଲେ। ଶେର ଖାଁ କଲିକତା ଫେରିଗଲେ। ସେଠାରେ ସେ ଶେର ଖାଁରୁ ଶେରସାହ ପଦବୀ ଗ୍ରହଣ କଲେ। ସାହା ଅର୍ଥ ରାଜା। ସେ ହୁମାୟୁନଙ୍କୁ ଶେଷ କରିବାକୁ ଚାହିଁଲେ। ହୁମାୟୁନ ବଙ୍ଗଳାର ଗୌର ଆଡ଼କୁ ଆଗେଇଲେ। ବର୍ଷା ଋତୁ ଆସିଗଲା। ଗୌରରେ ଶେରସାହ ପ୍ରଭୂତ ଧନସଂପତ୍ତି ମହଜୁତ ରଖିଥିଲେ। ତାକୁ ରୋହଟାସ ନେଇଯିବା ଇଚ୍ଛା ଥିଲା। କିନ୍ତୁ ଯାନବାହନର ଅସୁବିଧା ଥିଲା। ସେଥିପାଇଁ ସେ ତାଙ୍କ ପୁଅ ଜଲାଲ ଖାଁକୁ ବେଙ୍ଗଲକୁ ଯିବାପାଇଁ ନିର୍ଦ୍ଦେଶ ଦେଲେ ହୁମାୟୁନଙ୍କ ସହ ଲଢ଼ିବାପାଇଁ। ଜଲାଲ ଖାଁ କୌଶଳକ୍ରମେ ମୋଗଲମାନଙ୍କୁ ଛିନ୍ନଛତର କରାଇଦେଲେ। ଏହି ସମୟ ଭିତରେ ଶେରସାହ ବଙ୍ଗଳାର ସଂପତ୍ତି ରୋହଟାସ ନେଇଯିବା ପାଇଁ ସକ୍ଷମ ହେଲେ। ଜଲାଲ ଖାଁ ଇଚ୍ଛା କରିଥିଲେ କି ହୁମାୟୁନ ଗୌରରେ ପହଞ୍ଚିଯାନ୍ତୁ। ହୁମାୟୁନ ଗୌରରେ ପହଞ୍ଚି ଏକ

ଭିନ୍ନ ଚେହେରା ଦେଖିଲେ। ଅନେକ ଗହଣାଗାଣ୍ଠି, ମୂଲ୍ୟବାନ ରତ୍ନ ସଜାହୋଇଛି ଗୌରରେ। ଜଲାଲ ଖାଁ ଇଚ୍ଛା କରିଥିଲେ କି ଏସବୁ ଦେଖି ହୁମାୟୁନ ଗୌରରେ ରହିଯିବେ। ସେଇଆ ହେଲା। ଏ ପାଖେ ହୁମାୟୁନଙ୍କ ଫେରିବାର ସବୁ ରାସ୍ତା ବନ୍ଦ କରିଦିଆଗଲା। ମୌସୁମ ମଧ ପୁଣି ଥରେ ଆସିଗଲା। ଶେରଶାହଙ୍କୁ ଖୋଜିବାପାଇଁ ହୁମାୟୁନ ଚେଷ୍ଟା କଲେ ନାହିଁ। ବରଂ ଆଗ୍ରା ଆଡକୁ ଯିବାକୁ ଚାହିଁଲେ। ସୈନ୍ୟବାହିନୀ ସବୁ ଛିନଛତର ହୋଇ ଖେଳାଇ ହୋଇଯାଇଥିଲେ। ଏଣେ ଶେରସାହଙ୍କ ସେନାବାହିନୀ ଯୁଦ୍ଧ କରିବାକୁ ପ୍ରସ୍ତୁତ ଥିଲେ। ଶେରସାହ ଭାବିଲେ ଯୁଦ୍ଧଘୋଷଣା କରିବେ। ଏ ଖେଳରେ ହୁମାୟୁନଙ୍କ ଦୁଇଭାଇ କାମରାନ ଓ ହିଣ୍ଡାଲ ରାଜଗାଦିରେ ବସିଯାଇପାରିବେ। କିନ୍ତୁ ତାଙ୍କ ମା ଦିଲଦାର ବେଗମ ବିରୋଧ କଲେ। ଶେରସାହ ଭୟ କରିଥିଲେ କି ଦୁଇ ମୋଗଲ ବାହିନୀ ସହିତ ଲଢ଼ିବାକୁ ହେବ। ଏଣେ ହୁମାୟୁନ ଆଗ୍ରାକୁ ଫେରିଯିବାପାଇଁ ସହଜ ରାସ୍ତା ଖୋଜିବାରେ ଲାଗିଲେ। ଚାହିଁଲେ ଶେରସାହଙ୍କ ସହିତ ଶାନ୍ତିପ୍ରତିଷ୍ଠା କରିବାପାଇଁ ମୁଲ୍ଲା ମହମ୍ମଦ ବରଘିଜଙ୍କୁ ଆଫଗାନ କ୍ୟାମ୍ପକୁ ଡକାଇଲେ। ସେ ଦିଗରେ ଚେଷ୍ଟା କରି କୌଣସି ସମାଧାନରେ ପହଞ୍ଚି ପାରିଲେ ନାହିଁ କିନ୍ତୁ ଯୁଦ୍ଧର ଧାରଣା ମନରୁ ପାଶୋରିଦେଲେ। ବିଚକ୍ଷଣ ଶେରସାହ ଏହାର ସୁଯୋଗନେଇ ୧୯ ଜୁନ ୧୫୩୯ରେ ଆକ୍ରମଣ କରିଦେଲେ। ଅତର୍କିତ ଆକ୍ରମଣ ଫଳରେ ଛିନଛତର ହୋଇଗଲେ ହୁମାୟୁନଙ୍କ ସେନାବାହିନୀ। ହୁମାୟୁନ ଅଚାନକ ନିଜାମଙ୍କୁ ଖବର ଦେଲେ କି ସେ ଗାଦି ଅଧିକାର କରନ୍ତୁ। ହୁମାୟୁନ ଆଗ୍ରା ଫେରିଗଲେ ଆଉ ନିଜ ବିପଦ ନିଜ ଆଖିରେ ଦେଖିଲେ।

ଶେରସାହ ହୁମାୟୁନଙ୍କୁ ପିଛାକରି ଆଗ୍ରା ପର୍ଯ୍ୟନ୍ତ ଗଲେ ନାହିଁ। ସେ ବଙ୍ଗଳା ଯାଇ ମୋଗଲ ଗଭର୍ଣ୍ଣର ଜାହାଙ୍ଗୀର କୁଲିଙ୍କୁ ବାହାର କରିଦେଲେ। ନିଜକୁ ବଙ୍ଗଳାରେ ସୁରକ୍ଷିତ କରି ମୋଗଲ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାକୁ ପ୍ରସ୍ତୁତ ହେଲେ। ଏ ଯୁଦ୍ଧ ରାଜା ସହିତ ରାଜାର ଯୁଦ୍ଧ। ବିଦ୍ରୋହୀ ସହିତ ରାଜାରଯୁଦ୍ଧ ନୁହେଁ। ଶେରସାହ ଜିତିଲେ। ଅତର ଡାଳି, ମୁଣ୍ଡ ଉପରେ ଛତା ରଖି ରାଜଗାଦୀରେ ବସିଲେ। ଆଫଗାନ ଲୋକେ ଦଳ ଦଳ ହୋଇ ନାଚିଲେ। ଶେରସାହ ବିହାର ଓ ବେଙ୍ଗଲର ରାଜା ହେଲେ। ଯେଉଁ ପାନିପଥରେ ସେମାନେ

ଯୁଦ୍ଧରେ ହାରିଯାଇଥିଲେ ସେଇଠି ଖୁସି ମନାଇଲେ। ବାକି ରହିଲା ଆଗ୍ରା। ଆଗ୍ରାରେ ପହଞ୍ଚି ପରିସ୍ଥିତି ଦେଖି ହୁମାୟୁନ ଭାଇମାନଙ୍କୁ କ୍ଷମା କରିଦେଲେ। କହିଲେ ଯାହା ସରିଯାଇଛି ତା' ପାଇଁ ଅନୁଶୋଚନାର ସମୟ ନାହିଁ। ମାସମାସ ବିତିଯାଇଛି। ବର୍ତ୍ତମାନ ସଙ୍ଗେ ସଙ୍ଗେ ପ୍ରସ୍ତୁତ ହେବାକୁ ହେବ। କାମରାନ ଯୁଦ୍ଧ ପାଇଁ ବାହାରିଲା। ବାରଣ କଲେ ହୁମାୟୁନ। କହିଲେ ଶେରସାହ ମୋ' ଶତ୍ରୁ। ମୁଁ ତାକୁ ସାମନା କରିବି। କାମରାନଙ୍କୁ ତାଙ୍କ ଅଧିନରେ ରହି ଯୁଦ୍ଧ କରିବାକୁ ହେବ ବୋଲି ପ୍ରବର୍ତ୍ତାଇଲେ। ଏଥିରେ ରାଜିହେଲେ ନାହିଁ କାମରାନ। ଆଗେ ସାଙ୍ଗେ କାବୁଲ ଫେରିଯିବା ପାଇଁ ଚାହିଁଲେ। ଦେହ ଅସୁସ୍ଥ ହୋଇଯିବାରୁ ସେ କାବୁଲ ଫେରିଯିବାକୁ ବାଧ ହେଲେ। ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ ହୁମାୟୁନ। ମୋଗଲ ଅମିରମାନେ ସହଯୋଗ କଲେ।

ଯୁଦ୍ଧ ଆରମ୍ଭ ହେଲା। ଶେରସାହ ବେଙ୍ଗଲ ଓ ବିହାରର ଶକ୍ତିକୁ ଏକାଠି କରି ତାଓବ (ମୋଗଲ ସାମ୍ରାଜ୍ୟର ମଧ୍ୟସ୍ଥଳ ବୋଲି ଗଣାଯାଏ)କୁ ସୈନ୍ୟବାହିନୀ ଘେନିଗଲେ। ସେଠାରେ ମୋଗଲସେନା ଦ୍ୱାରା ଶେରସାହଙ୍କ ଦ୍ୱିତୀୟ ପୁତ୍ର କୁତୁବ ଖାଁ ନିହତ ହେଲେ। କୁତୁବ ଖାଁଙ୍କର କଟାମୁଣ୍ଡ ଓ ଅନ୍ୟ କେତେକଙ୍କ କଟାମୁଣ୍ଡ ଆଗ୍ରାକୁ ପଠାଇ ଦିଆଗଲା। ମୋଗଲ ସେନାର ବୀରତ୍ୱ କାହାଣୀ ଶୁଣାଇବାପାଇଁ। ଶେରସାହଙ୍କ ବିରୁଦ୍ଧରେ ଲଢ଼ିବାପାଇଁ ଅନେକ ଏକାଠି ହୋଇଗଲେ। କିନ୍ତୁ ସେମାନେ ଏତେ ବିଶୃଙ୍ଖଳିତ ଥିଲେ ଯେ ଶେରସାହଙ୍କ ସହିତ ଲଢ଼ିବାର ଶକ୍ତି ସେମାନଙ୍କର ନ ଥିଲା। ତେବେ ବି ମୋଗଲଙ୍କ ହାତରେ ଅନେକ ଶସ୍ତ୍ର ବାରୁଦ ମହଜୁଦ୍ ଥିଲା। ସେଇ କାରଣରୁ ସାହସ ମଧ୍ୟ ଥିଲା। ସେମାନେ ଅପେକ୍ଷା କଲେ। ଚାହୁଁ ଚାହୁଁ ହୁମାୟୁନ ପାଖରେ ଯେତେ ଅମିର ଥିଲେ, ମୋଗଲ ସେନାର ଅନେକ ଅଫିସର ସମସ୍ତେ ମୋଗଲ ସେନାରୁ ବିଦା ହୋଇଗଲେ।

ସମସ୍ତେ ଯେ ଯୁଆଡ଼େ ପଳାଇଗଲେ। ହୁମାୟୁନ ନିଜେ ମଧ୍ୟ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାୟନ କଲେ। ଶେରସାହ କହିଲେ, ଭାବିଥିଲେ ହୁମାୟୁନ ବିନାଶ ହୋଇଯିବେ କିନ୍ତୁ ସେ ପଳାୟନ କଲେ। ହୁମାୟୁନ ଯୁଦ୍ଧକ୍ଷେତ୍ରରୁ ସିଧା ଆଗ୍ରା ଗଲେ। ଲଜ୍ଜା ଓ ଅପମାନରେ କ୍ଷତ ବିକ୍ଷତ ହେଲେ। ରାସ୍ତାରେ ଜଣେ ସୁଫି ସନ୍ଥ

ଦେଖାହେଲେ। ଉପଦେଶ ଦେଲେ ଆଗ୍ରାରେ ନ ରହି ସେ ଲାହୋର ଯା'ନ୍ତୁ। ସେ ଅନୁସାରେ ସେ ତାଙ୍କ ପରିବାର ଓ ଧନସଂପତ୍ତି ଧରି ଅନେକ ବାଧା ବିଘ୍ନ ଓ ଭୟ ଭିତରେ ଯାଇ ଦିଲ୍ଲୀରେ ପହଞ୍ଚିଲେ ଓ ପରେ ପରେ ଲାହୋର ଚାଲିଗଲେ।

ସେଠାରେ ସବୁ ଭାଇ– ହୁମାୟୁନ, କାମରାନ, ହିଣ୍ଡାଲ, ଯାଦଗାର, ଆସ୍କାରି, ସମସ୍ତେ ଏକଜୁଟ ହେବାପାଇଁ ଚୁକ୍ତି କଲେ। ପରେ ସେମାନେ ଓହରିଗଲେ। ଆସ୍କାରି ଓ କାମାରନ କାବୁଲ, ଯାଦଗାର ଓ ହିଣ୍ଡାଲ ଗୁଜରାଟ ଗଲେ। ହୁମାୟୁନ କୌଣସି ସିଦ୍ଧାନ୍ତ ନ ନେଇପାରି ଶେଷରେ ହିଣ୍ଡାଲ ସହ ସିନ୍ଧ ଯିବେ ବୋଲି ଠିକଣା କଲେ। ସିନ୍ଧରେ ମଧ୍ୟ କୌଣସି ସାହାଯ୍ୟ ନ ପାଇ ସେ ଚିନ୍ତାରେ ପଡ଼ିଲେ। ହୁମାୟୁନଙ୍କ ସିନ୍ଧ ରହଣି ତାଙ୍କପାଇଁ ବହୁ ଭାଗ୍ୟର ଘଟଣା ଥିଲା। ହମିଦାଙ୍କ ସହିତ ତାଙ୍କର ଦେଖାହେଲା। ସେ ଶଙ୍କାକୁଳ ଅବସ୍ଥା ଓ ହାମିଦାଙ୍କର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କରି କୋଳରେ ଆଶ୍ରୟ ନେବେ ବୋଲି ମନସ୍ଥ କଲେ। ବିବାହ ସୂତ୍ରରେ ବାନ୍ଧି ହେଲେ ହମିଦାଙ୍କ ସହିତ ଏ ସାକ୍ଷାତ ହିଣ୍ଡାଲର ମା ଦିଲଦାର ବେଗମଙ୍କ ଜରିଆରେ ହୋଇଥିଲା। ହମିଦା ଓ ହିଣ୍ଡାଲ ଦୁହେଁ ଦୁହିଁଙ୍କୁ ଚାହୁଁଥିଲେ। ଏ ପ୍ରେମୀଯୁଗଳ ହୁମାୟୁନ ସହିତ ଏ ବିବାହରେ ରାଜି ନଥିଲେ। କିନ୍ତୁ ଦିଲଦାର ବେଗମ ଏ ବାହାଘର କରାଇଥିଲେ।

ଖବର ଆସିଲା ଶେରସାହଙ୍କ ପୁଅ ଇସଲାମ ସାହଙ୍କର ମଧ୍ୟ ମୃତ୍ୟୁ ଘଟିଛି। ଆହୁରି ବି ଖବର ଆସିଲା କି ଶେରସାହାଙ୍କ ଅନ୍ୟ ତିନି ଉତ୍ତରାଧିକାରୀଙ୍କ ମଧ୍ୟରେ ବିବାଦ ଚାଲିଛି। ହୁମାୟୁନ ଏ ସୁଯୋଗ ଛାଡ଼ିବାକୁ ଚାହିଁଲେ ନାହିଁ। ଆକବରଙ୍କୁ ସାଙ୍ଗରେ ଧରି ଦିଲ୍ଲୀ ପୁନରାଗମନ କଲେ।

## ହୁମାୟୁନଙ୍କ କଳାକୃତି–

ସମରକନ୍ଦରେ ତୈମୁରଙ୍କର ଯେଉଁ ସ୍ମୃତିମନ୍ଦିର ତୋଳାଯାଇଥିଲା ଏହା ପର୍ଶିୟାନ ସ୍ଥାପତ୍ୟବିଦ୍ୟାର ପରିଚୟ। ହିନ୍ଦୁସ୍ଥାନରେ ଗଢ଼ାଯାଇଥିବା ସବ୍‌ବୁର୍ଜ ମଧ୍ୟ ସେଇ ଶୈଳୀରେ ଗଠନ ହୋଇଥିଲା। ଗଠନ ସମୟ ୧୫୩୦-୪୦ ମଧ୍ୟରେ। ଟାଇଲମାନଙ୍କର ରଂଗ ନେଇ ଏହାର ନାମକରଣ। ଗ୍ରୀନ ଟାୱାର ନକ୍ସାର ପ୍ରତିଫଳନ

ତାଜମହଲର ସହିତ ମେଳ ଅଛି। ଆବୁଲ ଫଜଲ ଲେଖିଛନ୍ତି– ''ଯମୁନା ଉପରେ ଏକ ଭାସମାନ ପ୍ରାସାଦ ଗଢ଼ିଥିଲେ। ଏହା ଥିଲା ଅଷ୍ଟକୋଣୀ। ଚାରିଗୋଟି ଦିତାଲା ବିଶିଷ୍ଟ ଚନ୍ଦ୍ରାତପ ତୋଳିଥିଲେ। ପ୍ରତ୍ୟେକଟି ଗୋଟିଏ ଗୋଟିଏ ନଉକା ଉପରେ ଭାସମାନ। ଚାରୋଟି ଚନ୍ଦ୍ରାତପର ମିଳନ ଘଟିଛି ଏକ ଅର୍ଦ୍ଧଗୋଲାକାର ଖିଲାଣ ସହ। ତଳେ ଅଷ୍ଟକୋଣୀ ମଣ୍ଡପ। ଏପରି ସବୁ ଖିଲାଣ ଉପରେ ଓ ଏହି ଭାସମାନ ପ୍ରାସାଦ ଛାତରେ ବଗିଚା ତିଆରି କରିଥିଲେ। ଏପ୍ରକାର ଅଷ୍ଟକୋଣୀ ପ୍ରାସାଦ ମୋଗଲ ସାମ୍ରାଜ୍ୟର ଉଜ୍ଜ୍ୱଳ ଦୃଷ୍ଟାନ୍ତ। ଗୋଲାକାର ଖିଲାଣ ଉପରେ ଦୁଇଟି ଅଷ୍ଟକୋଣୀ ପ୍ରାସାଦ। ଆଉ ଏକ ପ୍ରାସାଦ ଏଇ ଅଷ୍ଟକୋଣୀ ଟୁମକୁ ଘେରି ରହିଛି। ତା' ଉପରକୁ ଏକ ଛୋଟ ଗମ୍ବୁଜ।

ଏ ଅଷ୍ଟକୋଣୀ ବିଚାରଧାରା କୋରାନର ଆଠଭାଗକୁ ପ୍ରତିନିଧିତ୍ୱ କରେ। ହୋଇପାରିଥାଏ ମୋଗଲମାନେ ଏହି ବିଚାରଧାରାରେ ଅନୁପ୍ରାଣିତ ହୋଇପାରିଥାନ୍ତି। ଦିଲ୍ଲୀର ହୁମାୟୁନ ଟୁମ୍ ମଧ୍ୟ ଏହି ଧାରାରେ ଗଠିତ। ଏହାକୁ ଗଢ଼ିଥିଲେ ହାମିଦା ବେଗମ୍– ହୁମାୟୁନଙ୍କ ସ୍ତ୍ରୀ ପ୍ରାୟ ୧୫୬୦ ବେଳକୁ। ଭିତରର ଏ ସ୍ତରର ପ୍ରାସାଦକୁ ଘେରି ରହିଛି ଆଉ ଏକ ପ୍ରାସାଦ। ଚଟାଣ ଉପରୁ ଆଠଫୁଟ ଉପରକୁ ଗଢ଼ାହୋଇଛି ଏ ଭିତର ପ୍ରାସାଦ। ଏ ପ୍ରାସଦରେ ଛିଡ଼ା ହୋଇ ଶବ୍ଦ କଲେ ତାହାର ପ୍ରତିଧ୍ୱନୀ ଶୁଣାଯାଏ। ହୁମାୟୁନ ଆଉ ଏକ ପ୍ରଥା ପ୍ରଚଳନ କରିଥିଲେ। ସାଧାରଣତଃ ହାରେମ ଭିତରେ ଏହା କରାଯାଉଥିଲା। ସମ୍ରାଟଙ୍କ ଜନ୍ମଦିନ ଦିନ ସମ୍ରାଟଙ୍କୁ ଓଜନ କରାଯାଇ, ସୁନା, ରୂପା, ହୀରା, ନୀଳା ଅନ୍ୟାନ୍ୟ ମୂଲ୍ୟବାନ ପଥର ସବୁ ହୁଏତ ହାରେମର ଅନ୍ତେବାସୀଙ୍କ ମଧ୍ୟରେ ବଣ୍ଟା ଯାଉଥିଲା।

ମୋଗଲ ସାମ୍ରାଜ୍ୟର ଶେଷ ହେଲା ବୋଲି ଭାବି ୧୫୪୩ ଜୁଲାଇ ୧୧ରେ ହୁମାୟୁନ ହିନ୍ଦୁସ୍ଥାନରୁ ଫେରିଯାଇଥିଲେ। ୧୫୩୦-୪୦ ପର୍ଯ୍ୟନ୍ତ ହିନ୍ଦୁସ୍ଥାନରେ ହିଁ ଥିଲେ। ପ୍ରଥମେ ପୃଥ୍ୱୀରାଜଙ୍କ ଦିଲ୍ଲୀ ପୁରୁଣା କିଲାରେ ଥିବା ଦୀନପନାହକୁ ତିଆରି କରିବା ଆରମ୍ଭ କଲେ। ଆଗ୍ରା ଓ ଦିଲ୍ଲୀ ଭିତରେ ବାଛିବାକୁ ଯାଇଁ ଶେଷରେ ସେ ଦୀନପନାହକୁ ବାଛିନେଲେ। ଏହାକୁ ଧାର୍ମିକ ଲୋକଙ୍କର ଆଶ୍ରୟ ସ୍ଥଳ ବୋଲି କୁହାଯାଉଥିଲା। ଦୀନପନାହର ଆକ୍ଷରିକ ଅର୍ଥ ଆଶ୍ରୟ ସ୍ଥଳ।

ଏହାକୁ ସାତତାଲା ବିଶିଷ୍ଟ ପ୍ରାସାଦରେ ତିଆରି କରି ଭିତରେ ଏକ ମନୋହରପୂର୍ଣ୍ଣ ବିଗିଚା ତୋଳାଇଲେ । ଇଚ୍ଛା ଥିଲା ଏ ପ୍ରାସାଦ, ଏ ବଗିଚା ଓ ଏ ଜାଗାର ସୌନ୍ଦର୍ଯ୍ୟର ମୁଗ୍ଧ ହୋଇ ସାରା ପୃଥିବୀର ଲୋକ ଏହାକୁ ଦେଖିବାକୁ ଆସିବେ । ଏହାର ଆଲୋଚନାପାଇଁ ସେ ସଭାସଦମାନଙ୍କୁ ଡକାଇ ନିଜର ଅଭିପ୍ରାୟ ଜଣାଇଲେ । ସଭାସଦମାନେ ଏହାର ଶତମୂଖରେ ପ୍ରଶଂସା କରିଥିଲେ । ସେତିକିବେଳେ ଜଣେ ମୌଲାନା, ନାମ ସାହାବୁଦ୍ଦିନ ଅହମଦ ମୁମାଇ କହିଲେ; "ଯେଉଁ ଚିତ୍ର ତୁମ ମନର ଭାବନାରେ ଚିତ୍ରିତ ହୋଇଯାଏ, ଏହାର କୌଣସି ବିପରୀତ ଚିତ୍ର ଭାଗ୍ୟ ହାତରେ ଚିତ୍ରିତ ହୋଇ ନପାରେ।" ଏହାହିଁ ଥିଲା ହୁମାୟୁନଙ୍କ ଦୀନପନାହର ସୌନ୍ଦର୍ଯ୍ୟ। ତାଙ୍କ ମନ ଭାବନାର ଚିତ୍ର।

୧୫ ବର୍ଷ ଧରି ହୁମାୟୁନ ଶେରସାହଙ୍କ ଦ୍ୱାରା ବିତାଡ଼ିତ ହୋଇ ଭାଗ୍ୟର ବିଡ଼ମ୍ବନାଯୋଗୁଁ ଅନେକ ଯନ୍ତ୍ରଣା ପାଇଲେ । ସେ ହମିଦା ଓ ଶିଶୁପୁତ୍ର ଆକବରଙ୍କ ସହ ଅନ୍ୟାନ୍ୟ ପ୍ରାୟ ୪୨ଜଣ ଲୋକଙ୍କୁ ଧରି ବରଫାବୃତ ଅଞ୍ଚଳରେ ଘୁରି ବୁଲିଲେ । ନା ଥିଲା ବିଶ୍ରାମର ଠିକଣା, ନା ଥିଲା ଖାଦ୍ୟର । ପ୍ରଥମେ ଭାବିଥିଲେ କାନ୍ଧାହାର ଚାଲିଯିବେ । କିନ୍ତୁ ଭାଇମାନଙ୍କ ରାଜ୍ୟକୁ ପଶିବାର ସାହସ ନଥିଲା । ଆଫଗାନିସ୍ଥାନ ଆଡ଼କୁ ଯିବା ରାସ୍ତାରେ କାମରନଙ୍କ ଆଦେଶରେ ଆସ୍କାର ହୁମାୟୁନଙ୍କ ରାସ୍ତା ଅବରୋଧ କଲେ । ଜଙ୍ଗଲ ଭିତରକୁ ହୁମାୟୁନ ପଳାଇଲେ । କେତେକ ବିଶ୍ୱସ୍ତ କର୍ମଚାରୀଙ୍କ ହାତରେ ଶିଶୁ ଆକବରଙ୍କୁ ଛାଡ଼ି ଦେଇଗଲେ । କିନ୍ତୁ ଆସ୍କାର ଅତି ସ୍ନେହରେ ଆକବରଙ୍କୁ କାନ୍ଧାହାର ନେଇଗଲେ । ତାଙ୍କ ସ୍ତ୍ରୀ ସୁଲତାନ ବେଗମ ଆକବରଙ୍କୁ ନିଜ ପୁଅଭଳି ଲାଳନ ପାଳନ କଲେ । ସେ ହେଲେ ମା ଯଶୋଦା । ହୁମାୟୁନ ଭାବିଲେ ପ୍ରଥମେ ପର୍ସିୟା ଯିବେ । ପର୍ସିୟାର ରାଜାଙ୍କଠାରୁ ଯଦି ସାହାଯ୍ୟ ମିଳେ ସେଇ ସାହସ, ସେଇ ସୈନ୍ୟବଳ ନେଇ ନିଜ ରାଜ୍ୟ ଜୟ କରିବାକୁ ଯିବେ, ନ ହେଲେ ତୀର୍ଥସ୍ଥଳ ମକ୍କା ଚାଲିଯିବେ । ୧୫୪୪ରେ ପର୍ଶିୟାର ସାହାଙ୍କ ଠାରୁ କୌଣସି ସଂକେତ ନପାଇ ହେଲମଣ୍ଡ ନଦୀ ପାରି ହୋଇ ପର୍ଶିୟାରେ ପାଦ ଦେଲେ । ପର୍ଶିୟା ପର୍ଯ୍ୟନ୍ତ ପହଞ୍ଚିବାପାଇଁ ତାଙ୍କୁ ଲାଗିଲା ତିନିବର୍ଷ କିନ୍ତୁ ହିନ୍ଦୁସ୍ଥାନର ବାତାବରଣଠାରୁ ଅନେକ ଦୂରରେ ।

ଆନନ୍ଦର କଥା ପର୍ଶିୟାର ସାହା ତାଙ୍କୁ ସାଦର ଅଭ୍ୟର୍ଥନା ଜଣାଇଲେ। କାଜଭିନର ରାଜପ୍ରାସାଦରେ ତିନିଦିନ ଧରି ତାଙ୍କର ଅଭ୍ୟର୍ଥନା କରିଥିଲେ ମହା ଧୁମ୍‌ଧାମରେ। ଆଫଗାନିସ୍ଥାନରେ ପହଞ୍ଚିବାପରେ ତାଙ୍କର ଜୀବନର ଧାରା ବଦଳିଗଲା। ଆଫଗାନିସ୍ଥାନର କରଦରାଜ୍ୟମାନଙ୍କର ରାଜାମାନଙ୍କର ହିନ୍ଦୁସ୍ଥାନର ପଳାତକ ସମ୍ରାଟଙ୍କ ଉପସ୍ଥିତି ପାଇଁ ଡର ଥିଲା। କିନ୍ତୁ ପର୍ଶିୟା ସାହଙ୍କର ଏପରି କୌଣସି ଭୟ ନଥିଲା। ହିନ୍ଦୁସ୍ଥାନର ସମ୍ରାଟଙ୍କୁ ପାଛୋଟି ନେବା ସାହାଙ୍କ ପାଇଁ ଗୌରବ ଥିଲା। ଅତିଥିଙ୍କ ସ୍ୱାଗତ କରିବା ପର୍ଶିୟାନ ସଭ୍ୟତାର ଏକ ଅଂଗ। ସାହା ଥାମ୍ପା ହୁମାୟୁନଙ୍କୁ ସ୍ୱାଗତ କରିଥିବାରୁ ତାଙ୍କର ଇଜ୍ଜତ ବଢ଼ିଗଲା। ସାହା ପାଞ୍ଚଶହ ଲୋକ (ବିଜ୍ଞ ଓ ଅନଭିଜ୍ଞ)ଙ୍କୁ ହୁମାୟୁନଙ୍କୁ ଉପହାର ଦେବାପାଇଁ ନିୟୋଜିତ କଲେ। ତାଙ୍କୁ ସ୍ୱାଗତ ଜଣାଇବାପାଇଁ ହେରାଟରେ ଆୟୋଜନ କଲେ। ଏପରିକି ପୁଅ ଓ ନାତିଙ୍କୁ ଇଉନିଫର୍ମ ପିନ୍ଧାଇ ୧୦୦୦ ଜଣ ଲେଖାଏଁ ଅଶ୍ୱାରୋହି ଦେଇ ସ୍ୱାଗତ ଜଣାଇବାପାଇଁ ନିର୍ଦ୍ଦେଶ ଦେଲେ। ଆହୁରି ପୁଣି ୩୦ ହଜାର ସୈନ୍ୟଙ୍କୁ ଧରି ଗଭର୍ଣ୍ଣରଙ୍କୁ ହେରାଟରୁ ହୁମାୟୁନଙ୍କୁ ପାଛୋଟି ନେବାକୁ କହିଲେ। ନିଜ ରାଜାଙ୍କୁ ସ୍ୱାଗତ ଜଣାଇଲା ପରି ସେ ହୁମାୟୁନଙ୍କ ସ୍ୱାଗତ ଜଣାଇଲେ। ଦିନ ଦିନ ଧରି ଏ ସ୍ୱାଗତର ଉତ୍ସବ ଜାରି ରହିଲା। ସାହା ନିଜର ବଡ଼ପୁଅ ସୁଲତାନ ମିର୍ଜାଙ୍କୁ ମଧ୍ୟ ପଠାଇଲେ। ହେରାଟରେ ପହଞ୍ଚିବା ପରେ ହଜାର ହଜାର ସଂଖ୍ୟାରେ ଜନସାଧାରଣ ତାଙ୍କୁ ସ୍ୱାଗତ ଜଣାଇଲେ। ସୁରକ୍ଷା ବ୍ୟବସ୍ଥା ମଧ୍ୟ ଅତି କଡ଼ାକଡ଼ି କରାଯାଇଥିଲା।

ସବାଶେଷରେ ହୁମାୟୁନ ସାହାଙ୍କ ଭାଇ ବେହରାମଙ୍କ ପ୍ରାସାଦରେ ରହିଲେ। ଏସବୁ ଅଭ୍ୟର୍ଥନା ପଛରେ ଏକମାତ୍ର ଉଦ୍ଦେଶ୍ୟ ସାହାଙ୍କର ଥିଲା କି ହୁମାୟୁନ ସିହା ଧର୍ମ ଗ୍ରହଣ କରନ୍ତୁ। ଗମ୍ବୁଜ ଭଳିଆ ଟୋପି, ଇଟା ରଙ୍ଗର ସିଲ୍କରେ, ସୁନାର କାମ ହୋଇଥିବା ଗୋଟାଏ ଟୋପି ତାଙ୍କୁ ପିନ୍ଧିବାକୁ କୁହାଗଲା।

**ସୁନି ଓ ସିୟା—**

୧୫୦୧ ସାଫାଉଇଦଙ୍କ ରାଜୁତି ସମୟକୁ ଇସଲାମର ସିୟା ଧର୍ମକୁ ରାଜ୍ୟର ବା ଦେଶର ଧର୍ମ ବୋଲି ଗ୍ରହଣ କରାଯାଇଥିଲା। ଇସଲାମ ଧର୍ମର

ଆରମ୍ଭରୁ ସିୟା ସୁନିଙ୍କର ପାର୍ଥକ୍ୟ ଚାଲିଥିଲା। ସୁନିର ପରିଚାଳକମାନେ ନିର୍ବାଚିତ ହେଉଥିଲେ ଆଇନ ଅନୁଯାୟୀ। କିନ୍ତୁ ସିୟା ଆଲିଙ୍କ ପାର୍ଟିରୁ ସମ୍ଭୁତ ବୋଲି କୁହାଯାଏ। ସୁନିମାନେ ମହମ୍ମଦଙ୍କ ସୁନାରୁ ପରମ୍ପରାକୁ ମାନିନେଇଛନ୍ତି। ପରେ ମଧ ପ୍ରାର୍ଥନା କରିବାର ବିଚାରଧାରାକୁ ନେଇ ଦୁହିଁଙ୍କ ମଧ୍ୟରେ ଅଧିକ ପ୍ରଭେଦ ପରିଲକ୍ଷିତ ହେବାର ଦେଖାଯାଇଥିଲା। ସାହା ନିଜେ ହୁମାୟୁନଙ୍କୁ ସେ ଟୋପି ପିନ୍ଧାଇଦେଲେ। ସିହା ଧର୍ମ ଗ୍ରହଣ କରିବାକୁ ବାଧ କରିବାରୁ ହୁମାୟୁନ ସାହାଙ୍କୁ ଜଣାଇଲେ କି ସେ କେବଳ ପର୍ଶିୟାରେ ଏପରି କରିବେ। ସେଦିନ ସଂଧ୍ୟାରେ ରାତ୍ରିଭୋଜନ ଓ ଉପହାରରେ ସାହାଙ୍କୁ ହୁମାୟୁନ ଆପ୍ୟାୟିତ କଲେ। ତହିଁ ପରଦିନ ସକାଳେ ବିଦାୟ ନେଲେ ହୁମାୟୁନ। ଗଲାବେଳେ ଦୁଇଟି ସେଓ ଓ ଛୁରୀଟିଏ ସାହାଙ୍କୁ ଦେଲେ। ତା ସହିତ ହାତରୁ କାଢ଼ି ଗୋଟିଏ ମୁଦି ମଧ ଦେଲେ।

କିନ୍ତୁ ହୁମାୟୁନଏତେ ଚଞ୍ଚଳ ପର୍ଶିୟାରୁ କାବୁଲ ଯିବାପାଇଁ ଚାହୁଁ ନଥିଲେ। ସେଥିପାଇଁ ସେ କାଷପିଆନ ହ୍ରଦର ସୌନ୍ଦର୍ଯ୍ୟ ଦେଖିବାକୁ ବାହାରିଗଲେ। ସାହା ଥମ୍ପ କାଜଭିନକୁ ଫେରି ହୁମାୟୁନଙ୍କୁ ସେଠାରେ ଦେଖି ଖବର ଦେଲେ କି ହୁମାୟୁନ ଚଞ୍ଚଳ ପର୍ଶିୟାଛାଡ଼ି ଚାଲିଯାନ୍ତୁ। କିନ୍ତୁ ସେ ପର୍ଶିୟାରେ ରହିଲେ ପ୍ରାୟ ବର୍ଷେ। ଶାନ୍ତିପୂର୍ଣ୍ଣ ଭାବରେ ବର୍ଷକ ପର୍ଯ୍ୟନ୍ତ ପର୍ଶିୟାରେ ରହିବା ପରେ ଦ୍ୱିଧାସହ କାବୁଲ ଅଭିମୁଖେ ଯାତ୍ରା କଲେ। ସିସଟାନ ଆଫଗାନ ସୀମାରେ ପହଞ୍ଚିବା ପରେ ପର୍ଶିୟାନ ସେନାବାହିନୀ ହୁମାୟୁନଙ୍କୁ ସେଠି ଦେଖିଲେ।

କାନ୍ଧାହାର ଜୟ କରିବା ତାଙ୍କର ପ୍ରଥମ ପଦକ୍ଷେପ ଥିଲା। କାନ୍ଧାହାର ଜୟ ବି କରିଥିଲେ। ତାର ୪ ମାସ ପରେ ତାଙ୍କ ଚୁକ୍ତି ଅନୁସାରେ ପର୍ଶିୟାନ କମାଣ୍ଡରଙ୍କୁ କାନ୍ଧାହାର ହସ୍ତାନ୍ତର କଲେ। ପୁଣି ଭାବିଲେ କି କାନ୍ଧାହାରକୁ ଆଧାରକରି କାବୁଲ ଉପରେ ଆକ୍ରମଣ କରିପାରିବେ। ଫେରାଇ ନେଲେ କାନ୍ଧାହାର। ସେତିକିବେଳେ ସାହାଙ୍କର ଶିଶୁପୁତ୍ର କାନ୍ଧାହାରରେ ମୃତ୍ୟୁବରଣ କଲେ। ସାହାଙ୍କୁ ହୁମାୟୁନ କହିଲେ କି କାନ୍ଧାହାରକୁ ସେ କିଛିଦିନ ପାଇଁ ନିଜ ଅକ୍ତିଆରରେ ରଖିଛନ୍ତି। କାନ୍ଧାହାର ତାଙ୍କ ଅଧିନରେ ରହିଲା ସତ। କିନ୍ତୁ ମୋଗଲ ଓ ସାହାଙ୍କ ମଧ୍ୟରେ ଅର୍ନ୍ତଦ୍ୱନ୍ଦ ଲାଗିରହିଲା। ଜଣେ ବିଜେତାର ଗୁଣ ହୁମାୟୁନଙ୍କ ନିକଟରେ ଦେଖାହେଲା।

ଠିକ୍ ଏଇ ସମୟରେ ଭାଇ ହିଣ୍ଡାଲ ଓ ଆଉଜଣେ ସଂପର୍କୀୟ ଭାଇ ଯାଦଗାର ଓ ଅନେକ ଅମୀର (କାମରାନଙ୍କୁ ଛାଡ଼ି) ହୁମାୟୁନ ସହିତ ଯୋଗଦେଲେ। ୧୫୪୬ରେ କାବୁଲ ଜୟ କଲେ। କାମାରନ ଓ ତା ପରିବାର ସିନ୍ଧ ଚାଲିଗଲେ। କିଛିଦିନ ଆମୋଦ ପ୍ରମୋଦରେ ମାତି ରହିଲା ପରେ ହାମିଦା କାନ୍ଧାହାରରୁ କାବୁଲରେ ପହଞ୍ଚିଲେ। ଆନନ୍ଦ ଦ୍ୱିଗୁଣିତ ହେଲା।

୧୦ ବର୍ଷ ଧରି ଦୁଇଭାଇଙ୍କ ମଧ୍ୟରେ (ହୁମାୟୁନ ଓ କାମାରନ) ଗଣ୍ଡଗୋଳ ଲାଗି ରହିଥିଲା। କାବୁଲ ଅନୁସନ୍ଧାନ କରିବା ସମୟରେ କାମାରାନ ଦୁର୍ଗ ଆକ୍ରମଣ କରି ସ୍ତ୍ରୀ ଲୋକ ଓ ପିଲାମାନଙ୍କୁ ବାହାରକରି ଅଳିଆଗଦାକୁ ଫୋପାଡ଼ି ଦେଲେ। ସେଇ ରାଗରେ କାମରନ ଆକବରଙ୍କୁ ମଧ୍ୟ ବାହାରକୁ ଫିଙ୍ଗିଦେଇଥିଲେ। ହୁମାୟୁନଙ୍କ ନଜର ଆକବରଙ୍କ ଉପରେ ପଡ଼ିବାରୁ ସେ ଦୁର୍ଗ ଉଡାଇଦେବାର ଆଦେଶ ପ୍ରତ୍ୟାହାରକଲେ। ଅବଶେଷରେ କାବୁଲ ତାଙ୍କ ହାତକୁ ଆସିଲା। ୪ ଭାଇଙ୍କର ମିଳନ ହେଲା। ବାବରଙ୍କ ୪ ପୁଅ ମଧ୍ୟରୁ ଭଗବାନଙ୍କର ନିର୍ଦ୍ଦେଶ ଥିଲା କି କେବଳ ଜଣେ ଗାଦିରେ ବସିବେ ବୋଲି। ହିଣ୍ଡାଲ ମରିଗଲେ। ପାରମ୍ପରିକ ସୌଜନ୍ୟତାର ଶାସନ ସହିତ କୌଣସି ସଂପର୍କ ନାହିଁ। ବିଦ୍ରୋହ କରି କାମାରନ ଧରାହେଲେ। ତାଙ୍କୁ ହତ୍ୟା ପରିବର୍ତ୍ତେ ଅନ୍ଧ କରିଦିଆଗଲା। ଆଉ ତାଙ୍କ ପୁଅକୁ କାବୁଲର ନାଁକୁ ମାତ୍ର ଗଭର୍ଣ୍ଣର କରି ଦିଆଗଲା। ଦିଲ୍ଲୀ ଫେରିବା ବାଟରେ ହୁମାୟୁନ ସ୍ଥଳପଥରେ ଘୁରି ଘୁରି ରାଜସ୍ଥାନର ମରୁଭୂମି ପାଖରେ ପହଞ୍ଚିଲେ। ଉମରକୋଟରେ ପହଞ୍ଚିବା ବେଳକୁ ସେ ନିଃସ୍ୱ ଓ କ୍ଳାନ୍ତ ହୋଇଯାଇଥିଲେ। ଏହି ଦୁଃଖ ସମୟରେ ତାଙ୍କର ଜଣେ ବିଶ୍ୱସ୍ତ ଜେନେରାଲ ତାଙ୍କୁ ଭେଟିଲେ। ସେ ଜେନେରାଲ ଆଫଗାନଙ୍କ ହାତରେ ବନ୍ଦୀ ଥିଲେ। ତାଙ୍କର ସାକ୍ଷାତ ହିଁ ହୁମାୟୁନଙ୍କର ଶୁଭଦିନର ଆରମ୍ଭ ହେଲା।

୧୫୫୪ରେ ହୁମାୟୁନ କାବୁଲରୁ ହିନ୍ଦୁସ୍ଥାନ ଉଦ୍ଦେଶ୍ୟରେ ଯାତ୍ରା କଲେ। ଆକବରଙ୍କୁ ମଧ୍ୟ ସାଙ୍ଗରେ ଆଣିଲେ। ଜଲାଲବାଦରେ ପହଞ୍ଚି ଡଙ୍ଗାରେ ପେଶୱାର ଯାତ୍ରା କଲେ। ଅତି ସହଜ ହେଲା ହିନ୍ଦୁସ୍ଥାନ ଆକ୍ରମଣ କରିବା। କାରଣ ସାଙ୍ଗରେ ଥିଲେ ବୈରାମ ଖାଁ। ପଞ୍ଜାବରେ ପହଞ୍ଚିଲା ବେଳକୁ ସିକନ୍ଦର ସାହା ତାଙ୍କ

ସେନାବାହିନୀ ସହ ଦିଲ୍ଲୀରେ ଥିଲେ। ୩୦ହଜାର ସୈନ୍ୟ ପଞ୍ଜାବକୁ ପଠାଇଲେ। କିନ୍ତୁ ବୈରାମ ଖାଁ ସେମାନଙ୍କୁ ସତଲେଜ ନଈ ପାଖରୁ ଦୂରେଇ ଦେଇଥିଲେ। ଆଗ୍ରା ଅଧିକାରକୁ ଆସିଲା। ଆଖପାଖର ପୁରୁଣା ମୋଗଲ ପ୍ରଦେଶ ସବୁ ମଧ୍ୟ। ସିକନ୍ଦର ସାହାଙ୍କୁ ଜଙ୍ଗଲ ଭିତରକୁ ତଡ଼ି ଦିଆଗଲା। ଦିଲ୍ଲୀ ଅଧିକାର କଲେ ହୁମାୟୁନ ୧୯୫୫ ଜୁଲାଇରେ। ଶେରମହଲ ମଧ୍ୟ ଅଧିକାର କରି ତାକୁ ଲାଇବ୍ରେରୀରେ ପରିଣତ କଲେ। ଦୂରବିକ୍ଷଣ କେନ୍ଦ୍ର ପ୍ରତିଷ୍ଠା କଲେ ଫଳରେ ତାରା ଗ୍ରହମାନଙ୍କର ଗତିବିଧି ଲକ୍ଷ୍ୟ କରିପାରିବେ।

ଉପଯୁକ୍ତ ଶାସନ ପ୍ରଣାଳୀର ସ୍ୱପ୍ନ ମଧ୍ୟ ଦେଖିଲେ। ସେ ପ୍ରଧାନ ଶାସକ ରହି ସବୁ ପ୍ରଦେଶକୁ ତଦାରଖ କରିପାରିବେ। ବାରହଜାର ଘୋଡ଼ସବାରଙ୍କୁ ନିଯୁକ୍ତି ଦେଲେ ଦେଶରେ ଆଇନ ଶୃଙ୍ଖଳା ରକ୍ଷା କରିବାପାଇଁ। ୧୫୫୬ରେ ସେ ନିଜ ରାଜଧାନୀ ଆଗ୍ରାକୁ ନେଇଯିବାର ଯୋଜନା କରୁଥିଲେ। କିନ୍ତୁ ଭାଗ୍ୟର ବିଡ଼ମ୍ବନା। ଶୁକ୍ର ଗ୍ରହ ଚଳଣ ପର୍ଯ୍ୟବେକ୍ଷଣ କରିବାପାଇଁ ନଗରମଣ୍ଡଳର ଛାତ ଉପରକୁ ଗଲେ। ଶୁକ୍ରଗ୍ରହର କିଛି ବି ଖବର ତାଙ୍କ ଜୀବନରେ ଥାଇପାରେ ସେ କିନ୍ତୁ ଭୂଲଭାବରେ ପଢ଼ିଲେ। ଛାତଉପରୁ କିଛି ସମୟ ଧରି ପର୍ଯ୍ୟବେକ୍ଷଣ କରିବାପରେ ପାହାଚ ଓହ୍ଲାଇ ଆସୁଥିଲେ। ଆସିବା ସମୟରେ ସିଢ଼ିରେ ଗୋଡ଼ ଖସିଗଲା। ତାଙ୍କ ନିଜ ରାଜକୀୟ ପୋଷାକରେ ତାଙ୍କ ଗୋଡ଼ ଲାଗିଗଲା। ମୁଣ୍ଡରେ ଆଘାତ ହେଲା। କାନ ବାଟେ ଅଳ୍ପ ରକ୍ତ ମଧ୍ୟ ବାହାରିଲା। ସେ ଅଚେତ ହୋଇଗଲେ।

ଏହିପରି ଚେତା, ଅଚେତ ଅବସ୍ଥାରେ ସେ କିଛିଦିନ ରହିଲାପରେ ୨୬ ଜାନୁୟାରୀରେ କହିଲେ; ''ସ୍ୱଗର ଡାକରାକୁ ଗ୍ରହଣ କରୁଛି''। ବୋଧେ ମୃତ୍ୟୁର ସଂକେତ ପାଇଥିଲେ। ଦିଲ୍ଲୀକୁ ଫେରିବା ପରେ ସେ ଅନେକଥର ସେ ବିଷୟରେ କହୁଥିଲେ। ଶୂନ୍ୟରୁ ଯେଉଁ ସ୍ୱର ସେ ଶୁଣିଥିଲେ;

ବାବରଙ୍କ ବ୍ୟତିରକେ ଆଉ କୌଣସି ମୋଗଲ ସମ୍ରାଟ ହୁମାୟୁନଙ୍କ ପରି ଯନ୍ତ୍ରଣାକ୍ଲିଷ୍ଟ ଜୀବନ ଭୋଗି ନାହାନ୍ତି ବା ସେଥିରୁ ମୁକୁଳିବାର ରାସ୍ତା ମଧ୍ୟ ପାଇନାହାନ୍ତି। କେବଳ ହୁମାୟୁନ ହିଁ ତାର ବ୍ୟତିକ୍ରମ।

ଭାଇମାନଙ୍କୁ ପ୍ରତ୍ୟେକଙ୍କୁ କ୍ଷମା କରିଦେଉଥିଲେ ଗୁଲବଦନଙ୍କ ଲେଖା ଅନୁସାରେ କାମାରନ ଭିତିରି ଭାବରେ ଶେରସାହଙ୍କ ସହିତ ଚୁକ୍ତି କରୁଥିଲେ କି

'ତୁମେ ହିନ୍ଦୁସ୍ଥାନ ନିଅ ଆଉ ମତେ କାବୁଲ ଛାଡ଼ିଦିଅ। ଆଉ ସିନ୍ଧ ଆମ ଦୁଇଜଣଙ୍କ ମଧ୍ୟରେ ଏକ ମିଳିତ ସ୍ଥାନ ରହୁ।'

ଲାହୋର ଦିଗକୁ ଗତିକରି ହୁମାୟୁନ ଭାଇମାନଙ୍କ ସହ ୨୦,୦୦୦ ଅନୁଚରଙ୍କୁ ନେଇ ସିନ୍ଧ ଚାଲିଗଲେ। ସେଠାରେ ଅନେକ ଦିନ ରହି ସିନ୍ଧର ଶାସକଙ୍କୁ ପ୍ରବର୍ତ୍ତାଇଲେ ତାଙ୍କୁ ସାହାଯ୍ୟ କରିବାପାଇଁ ଅନୁରୋଧ କଲେ। ଅନୁରୋଧ ରକ୍ଷାକରି ସିନ୍ଧର ଶାସକ ତାଙ୍କୁ ସାହାଯ୍ୟ କରିବାପାଇଁ ରାଜି ହେଲେ।

**ହାମିଦା ବେଗମ** – ହିଣ୍ଡାଲର ଜଣେ ଉପଦେଶକାରୀଙ୍କ ୧୪ ବର୍ଷିୟ କନ୍ୟା ହାମିଦାଙ୍କୁ ତାଙ୍କୁ ବିଭାହେବା ପାଇଁ ପ୍ରବର୍ତ୍ତାଇଲେ। ହିଣ୍ଡାଲ ଓ ହାମିଦା ପ୍ରଥମରେ ଦୁଇଜଣ ଯାକ ଏଥିରେ ରାଜି ହୋଇ ନଥିଲେ। କାରଣ ହିନ୍ଦାଲ ନିଜେ ହାମିଦାଙ୍କୁ ବିବାହ କରିବାକୁ ଚାହୁଁଥିଲେ। କିନ୍ତୁ ଏ ପ୍ରସ୍ତାବ ପରେ ହିନ୍ଦାଲ ରାଗିଯାଇଁ କାନ୍ଧାହାର ବାଲିଗଲେ। ପରେ ହୁମାୟୁନଙ୍କ ମା' ହାମିଦାଙ୍କୁ ରାଜି କରାଇଲେ। କହିଲେ, 'ତୋର ତ ଜଣେ ରାଜାଙ୍କୁ ବିଭାହେବା କଥା। ଏ ତ ଜଣେ ରାଜାଠାରୁ ମଧ୍ୟ ଅଧିକ।' ହାମିଦା ରାଜିହେଲେ ୩୩ ବର୍ଷୀୟ ହୁମାୟୁନଙ୍କୁ ବାହାହେବା ପାଇଁ। ହୁମାୟୁନଙ୍କ ଜ୍ୟୋତିଷଶାସ୍ତ୍ର ଅନୁସାରେ ତାରିଖ ଖୋଜିଲେ ବାହାଘର ପାଇଁ। ତାରିଖ ହେଲା ୨୧ ଅଗଷ୍ଟ ୧୫୪୧। ମେ ୧୫୪୨ରେ ସେମାନେ ସିନ୍ଧ ଛାଡ଼ିଲେ। ଏ ଦଳ ରାଜସ୍ଥାନର (ଯୋଧପୁର) ମରୁଭୂମି ଦେଇ ମାରୱାର ରାଜାଙ୍କ ସହିତ ଦେଖାକରିବା ଆଶାରେ ଗଲେ। ଗ୍ରୀଷ୍ମ ମାସ। ମରୁଭୂମିର ଶୁଷ୍କ ବାତାବରଣ। ଉତ୍ତପ୍ତ ବାଲୁକା ରାଶି ଉପରେ ଗତି କରିବାକୁ ହେଲା। ହାମିଦା ଗର୍ଭବତୀ। ଏ ଗରମରେ ମରୁଭୂମିର ଶୁଷ୍କ ପ୍ରାନ୍ତରରେ ଗତି କରିବା ଅତି କଷ୍ଟକର ଥିଲା। ସେଥିପାଇଁ ହୁମାୟୁନଙ୍କ ଅଫିସରମାନଙ୍କର ହୁମାୟୁନଙ୍କ ଉପରେ ଭୀଷଣ ରାଗ ଥିଲା। ଥରେ ଏପରି ଘଟିଲା କି ହାମିଦାଙ୍କ ପାଖରେ କୌଣସି ଘୋଡ଼ା ନଥିଲା। କିନ୍ତୁ କୌଣସି ଅଫିସର ସ୍ୱତଃପ୍ରବୃତ୍ତ ହୋଇ ଘୋଡ଼ାଦେଲେ ନାହିଁ ହାମିଦାଙ୍କୁ। ଅବଶେଷରେ ତାଙ୍କ ହୁମାୟୁନ ଘୋଡ଼ା ହାମିଦାଙ୍କୁ ଦେଇ ଓଟ ବଢ଼ିଗଲେ। ସମ୍ରାଟଙ୍କ ପାଇଁ ଏହା ଲଜ୍ଜାଜନକ ଥିଲା। ଶେଷରେ ଜଣେ ଅଫିସର ନିଜ ଘୋଡ଼ା ସମ୍ରାଟଙ୍କୁ

ଦେଇ ଓଟରୁ ଓହ୍ଲେଇବା ପାଇଁ ଅନୁରୋଧ କଲେ। ମରୁଭୂମି ଯାତ୍ରୀଦଳ ପହଞ୍ଚିଲେ ଉମରକୋଟର। ଉମରକୋଟର ରାଜାଙ୍କୁ ହୁମାୟୁନଙ୍କର ଜଣେ ଶତ୍ରୁ ମାରିଦେଇଥିଲେ। ସେଥିପାଇଁ ହୁମାୟୁନ ତାଙ୍କର ମିତ୍ର ହେଲେ। ଉମରକୋଟ ତାଙ୍କୁ ଅଭ୍ୟର୍ଥନା ଜଣାଇଲେ। ସେଠାରେ ହାମିଦାଙ୍କର ପୁଅ ହେଲା ୧୫ ଅକ୍ଟୋବର ୧୫୪୨ରେ। ପରବର୍ତ୍ତୀ ସମୟର ସମ୍ରାଟ ଆକବର ମୋଗଲ ସାମ୍ରାଜ୍ୟର ନିୟମ ଅନୁସାରେ ହାମିଦାପୁତ୍ରଙ୍କୁ ନିଜ କ୍ଷୀର ପିଆଇଥିଲେ।

ହୁମାୟୁନ ପୁଣି ଥରେ ଭାରତ ଛାଡ଼ିଲେ ଭାଇ ଅସ୍କର ଓ କାମରାନଙ୍କୁ ଧରି। ଅନୁଭବ କଲେ କି ତାଙ୍କର ଏକମାତ୍ର ଆଶା– ପର୍ଶିୟା ସାହା ଯେ କି ତାଙ୍କୁଭାରତ ଆକ୍ରମଣ କରିବାରେ ସାହାଯ୍ୟ କରିପାରିବେ। ଏ ସାହା ବାବରଙ୍କୁ ମଧ୍ୟ ସାହାଯ୍ୟ କରିଥିଲେ। ଏ ବରଫାବୃତ ରାସ୍ତାରେ ହୁମାୟୁନଙ୍କର ମଧ୍ୟ ଗୋଡ଼ହାତ ଥଣ୍ଡା ହୋଇ ମୁହଁ ନାକ କାନ ସବୁ ଥଣ୍ଡା ହୋଇଯାଉଥିଲା। ସେଥିପାଇଁ ୧୪ ମାସର ପୁତ୍ର ଆକବରଙ୍କୁ ତାଙ୍କ ବିଦ୍ରୋହୀ ଭାଇ ଆସିକାରି ହାତରେ ସମର୍ପି ଦେଇ ସେମାନେ ପର୍ଶିୟାନଙ୍କୁ ଗତି କଲେ। ବାଟରେ ନା ପାଇଲେ ଖାଦ୍ୟ ନା ଆଶ୍ରୟ। ଘୋଡ଼ାଙ୍କୁ ମାରି ତା' ମାଂସ ରାନ୍ଧି ଖାଇଲେ। ଶେଷରେ ୧୫୪୪ ଜାନୁୟାରୀରେ ପର୍ଶିୟାରେ ପହଞ୍ଚିଲେ। ସାହା ଆଦର ଅଭ୍ୟର୍ଥନା ଜଣାଇଲେ। ହୁମାୟୁନ ତାଙ୍କ ପୋଷାକ ଭିତରୁ ସବୁଜଫୁଲ ରଂଗର ପର୍ଶ ବାହାର କଲେ। ତା ଭିତରୁ ବାହାର କଲେ ମଦର-ଅଫ-ପର୍ଲର ଗୋଟିଏ ବାକ୍ସ। ସେ ବାକ୍ସରେ ଥିଲା କୋହିନୁର ସହ ଅନେକ ଅନେକ ମୂଲ୍ୟାବନ ପଥର। ଭେଟି ସ୍ୱରୂପ ଦେଲେ ସାହାଙ୍କୁ। ପରେ ଆବୁଲ ଫଜଲ ଲେଖିଥିଲେ କି ହୁମାୟନଙ୍କ ପାଇଁ ଯାହା କିଛି ସାହା ଖର୍ଚ୍ଚ କରିଥିଲେ ଏ ରତ୍ନସବୁର ମୂଲ୍ୟ ତା'ଠାରୁ ଚାରିଗୁଣ ଅଧିକ।

ସାହାଯ୍ୟ ଦେବା ପୂର୍ବରୁ ସାହା ହୁମାୟୁନଙ୍କୁ ସୁନି ମୁସଲମ ଧର୍ମରୁ ସିହା ମୁସଲିମ ଧର୍ମ ଗ୍ରହଣ କରିବାକୁ ବାଧ କଲେ। ବାଧ ହୋଇ ହୁମାୟୁନ କହିଲେ 'କେବଳ ପର୍ଶିୟାରେ ହିଁ ସେ ଧର୍ମ ବଦଳାଇବେ'। ସାହା ସୈନ୍ୟବଳ ଦେଇ ସାହାଯ୍ୟ କଲେ। ହୁମାୟୁନ ଆଫଗାନିସ୍ତାନଯାଇ ଆସକାରୀଙ୍କଠାରୁ କାନ୍ଧାହାର ଓ କାମାରନଙ୍କଠାରୁ କାବୁଲ ଜୟ କଲେ। ଏଇଠି ହାମିଦାଙ୍କର ପୁତ୍ର ଆକବର ସହ

ମିଳନ ହେଲା। ଭାଇମାନଙ୍କ ସହ ମିଶି ହୁମାୟୁନ ୩ ବର୍ଷର ପୁଅ ଆକବରଙ୍କ ପାଇଁ ଉତ୍ସବ ମନେଇଲେ।

ତଥାପି ଦୁଇଭାଇ ବିଦ୍ରୋହ କଲେ। ହିଣ୍ଡାଲ ଆସକାରୀଙ୍କ ସହ ଯୁଦ୍ଧକରି ପ୍ରଥମରୁ ପ୍ରାଣତ୍ୟାଗ କରିଥିଲେ। ଯୁଦ୍ଧପରେ ଆକସାରୀଙ୍କୁ ତୀର୍ଥସ୍ଥଳ ମକ୍କା ପଠାଇଦେଲେ। ସେଠାରେ ସେ ପ୍ରାଣତ୍ୟାଗ କଲେ। ତା'ପରେ ହୁମାୟୁନ ଗଲେ କାବୁଲ। କାମାରନ ଦୁଇ ଦୁଇଥର କାବୁଲ ଜିତିଲେ। କିନ୍ତୁ ହୁମାୟୁନ ତୃତୀୟଥର ଯୁଦ୍ଧରେ କାବୁଲ ହାସଲ କଲେ। ପରେ କାମରନଙ୍କୁ ଧରିବାପାଇଁ ସୈନ୍ୟମାନେ ୧୫୫୨ରେ ଗୋଡ଼ାଇଲେ। ହୁମାୟୁନଙ୍କ ପରାମର୍ଶଦାତାମାନେ କାମାରନଙ୍କୁ ପ୍ରାଣଦଣ୍ଡ ଦେବାକୁ ଉପଦେଶ ଦେଲେ। କହିଲେ, ଭାଇ ସହିତ ସଂପର୍କଟା ରାଜାଠୁ ବଡ଼ ନୁହେଁ। ସେ ରାଜ୍ୟର ଶତ୍ରୁ। ଅତଏବ ତାଙ୍କୁ ପ୍ରାଣଦଣ୍ଡ ଦେବା ଉପଯୁକ୍ତ। ଶେଷରେ କାମାରନଙ୍କୁ ଅନ୍ଧ କରିବାପାଇଁ ଆଦେଶ ଦେଲେ। ଅନେକ ବିରୋଧ ପରେ ସୈନ୍ୟମାନେ ତାଙ୍କୁ ଅନ୍ଧ କଲେ। କାମାରନ ଲଜ୍ଜା ଓ ଅପମାନରେ ମକ୍କା ଚାଲିଗଲେ ଆଉ ସେଇଠାରେ ହିଁ ତାର ମୃତ୍ୟୁ ହେଲା।



# ଶେରଶାହା

ହୁମାୟୁନ ସିନ୍ଧ ଓ ରାଜସ୍ଥାନରେ ଘୁରି ବୁଲିଲା ବେଳେ ଆଫଗାନମାନେ ନଜରରେ ନଥିଲେ। ସେମାନେ ହୁମାୟୁନଙ୍କ ପଛରେ ନ ଗୋଡାଇ ନିଜ କାମରେ ବ୍ୟସ୍ତ ଥିଲେ। ଶେରସାହାଙ୍କ ଆଦେଶ ଥିଲା ହୁମାୟୁନଙ୍କୁ ଦେଶରେ ରଖାଇ ନ ଦେଇ ଦେଶ ବାହାରକୁ ବିଦା କରିବାପାଇଁ।

ଶେରସାହା ୫୦ ବର୍ଷ ବୟସରେ ଆଗ୍ରା ଅଧିକାର କଲେ। ଏଡେ ବଡ଼ ସାମ୍ରାଜ୍ୟର ସମ୍ରାଟ ସେ। ପିଲାଦିନୁ ବହୁ କଷ୍ଟକର, ଚିନ୍ତା କରି, ଯୋଜନା କରି ନିଜର ବିଚକ୍ଷଣ ବୁଦ୍ଧି ବଳରେ ଏ ସାମ୍ରାଜ୍ୟ ହାସଲ କରିଛନ୍ତି। ତାଙ୍କ ମତରେ ତାଙ୍କର ଆହୁରି ଅନେକ କାମ ବାକି ରହିଛି। ତାଙ୍କ ପରିବାର ସୁଲେଇମାନ ରେଞ୍ଜର (ଦକ୍ଷିଣ ଆଫଗାନିସ୍ଥାନର)। ହିନ୍ଦୁସ୍ଥାନଠୁ ବହୁତ ପାଖ। ଶେରଶାହାଙ୍କ ଜେଜେବାପା ଘୋଡ଼ା ବେପାରୀ। ହିନ୍ଦୁସ୍ଥାନକୁ ବୁହାଲାଲ ଲୋଦୀଙ୍କ ସମୟରେ ଆସି ସୈନ୍ୟବିଭାଗରେ ଭର୍ତ୍ତି ହୋଇଥିଲେ। ତାଙ୍କ ପରିବାର ପ୍ରଥମେ ପଞ୍ଜାବରେ ଓ ପରେ ଦିଲ୍ଲୀ ପାଖ କରନାଲରେ ବସବାସ କଲେ। ଇବ୍ରାହିମ ଶେରସାହଙ୍କ ଜେଜେବାପାଙ୍କୁ ଜାଗିର ଦାନ କଲେ। ୪୦ ଜଣଙ୍କୁ କମାଣ୍ଡ କରିବାପାଇଁ। ହାସାନ ଖାଁ ଜାଗିର ହେଲେ। ପ୍ରାୟ ୧୪୮୬ ବେଳକୁ ହାସନଙ୍କର ପ୍ରଥମ ସନ୍ତାନ ଜନ୍ମ ହେଲେ। ନାଁ ହେଲା ଫରିଦ– ଭବିଷ୍ୟତର ଶେରସାହ।

ହାସାନ ବିହାରର ରୋହଟାସ ପାଖରେ ଶାସାରାମ ଓ ଖାଲାସପୁରରେ ୫୦୦ ସୈନ୍ୟଙ୍କର କମାଣ୍ଡର ହେଲେ। ସେ ଫରିଦଙ୍କୁ ମୋଟେ ଭଲ ପାଉ ନଥିଲେ। ବରଂ ତାଙ୍କ କ୍ରୀତଦାସଙ୍କ ଝିଅମାନଙ୍କ ପ୍ରତି ବେଶି ଆକୃଷ୍ଟ ଥିଲେ। ଜଣେ ହିନ୍ଦୁ କ୍ରୀତଦାସର ଝିଅ ପ୍ରତି ଅଧିକ ଆକୃଷ୍ଟ ରହିଥିଲେ ଓ ସେ ଝିଅର ମଧ୍ୟ କର୍ତ୍ତୃତ୍ୱ ହାସାନଙ୍କ ଉପରେ ଅଧିକ ଥିଲା। ଫରିଦ ଓ ତାଙ୍କ ମା'ଙ୍କୁ ମୋଟେ ପଚାରୁ ନଥିଲେ। ଫଳରେ ଦୁଇଜଣ ବହୁତ କଷ୍ଟରେ ବଳୁଥିଲେ। ହୁଏତ ସେଥିପାଇଁ ଫରିଦ ଏକ ଡାକୟତ ଦଳରେ ମିଶିଯାଇଥିଲେ। ସେ ବେଳରେ ରାଜା,କୌଣସି ଏକ ଦଳର ପ୍ରଧାନ ଓ ଦସ୍ୟୁ ସରଦାରଙ୍କ ଭିତରେ ପ୍ରଭେଦ ଥିଲା ଅତି ସୂକ୍ଷ୍ମ। ସେ ଘରେ ନ ରହି ଜୌନପୁରରେ ରହୁଥିଲେ। ହାସନ ଫରିଦଙ୍କ ଉପରେ ଖୁସି ନଥିଲେ।

ଫରିଦ ଛୋଟ ବୟସରେ ମଧ୍ୟ ଉଦ୍ଦେଶ୍ୟର ସ୍ଥିରତା ଓ ନିର୍ଦ୍ଦିଷ୍ଟତା ଦେଖିବାକୁ ପାଇଥିଲେ। ସେ ନିରୀହ ଗ୍ରାମବାସୀଙ୍କୁ ବୁଝାଉଥିଲେ କି କେବଳ ନିଜର ବୀରତ୍ୱ ହିଁ ହାତକୁ ଶାସନ ଭାର ଆଣିପାରିବ। ନିଜର ଭାବ ବା ଭାଷାନୁହେଁ। ସେ ନିଜେ ଏହାର ନମୁନା ରୂପେ କାମ କରୁଥିଲେ। ସେ ନିଜର କ୍ରୁର ପାରଦର୍ଶିତା ବଳରେ ଲୋକଙ୍କୁ ତାଙ୍କ କଥା ମାନିନେବାକୁ ବାଧ୍ୟ କରୁଥିଲେ। କହୁଥିଲେ, ମୋର ଯାହା ଦାବି ମତେ ଦିଅ। ନହେଲେ ତୁମ ସ୍ତ୍ରୀ ପିଲାମାନଙ୍କୁ ବିକ୍ରି କରିଦେବି। ଆଉ ତମେମାନେ କେଉଁଠି ବି ସ୍ଥାୟୀ ବାସିନ୍ଦା ହୋଇ ରହିପାରିବ ନାହିଁ। ଅଳ୍ପ ସମୟ ଭିତରେ ଜାଗିର ଅଧିପତ୍ୟ ଲୋକଙ୍କୁ ଭୟଭୀତ କରାଇ ଜାହିର କଲେ। ଭିନ୍ନ କୌଶଳରେ ମଧ୍ୟ ପ୍ରଭାବିତ କରି ଲୋକଙ୍କଠୁ ଜାଗିର ହାସଲ କଲେ।

ପରେ ରାଜସ୍ୱ ଓ ଆଇନ ଦିଗକୁ ନଜର ଦେଲେ। ସମସ୍ତଙ୍କର ନ୍ୟାୟ ଅନ୍ୟାୟ ବୁଝି ସେମାନଙ୍କୁ ସବୁ ଅଧିକାର ଦେବାରେ ମନ ବଳାଇଲେ। ଫଳରେ ଶତ୍ରୁ କମ୍ ହୋଇଗଲେ। କିନ୍ତୁ ଅନ୍ୟ ଏକ ସମସ୍ୟା ଦେଖାଦେଲା। ତାଙ୍କ ବାପାଙ୍କର ହିନ୍ଦୁ କ୍ରୀତଦାସର କନ୍ୟା, ତାଙ୍କ ସାବତ ମା' ଫରିଦଙ୍କର ଉଜ୍ଜ୍ୱଳ ଭବିଷ୍ୟତକୁ ସହିପାରିଲେ ନାହିଁ। ସାବତ ମା' ଭାବିଲେ ତାଙ୍କ ପୁଅମାନଙ୍କ ଭବିଷ୍ୟତ ଅନ୍ଧକାର ହୋଇଯିବ। ସେଥିପାଇଁ ସେ ତାଙ୍କ ବାପା (ହାସନଙ୍କ) ପଛରେ ସଦାସର୍ବଦା ଲାଗିଲେ କି ସେ ଜାଗିର ଫରିଦଙ୍କ ହାତରୁ ଛଡ଼ାଇ ଆଣି ତାଙ୍କ ଦୁଇପୁଅଙ୍କୁ ଦିଅନ୍ତୁ। ଏ ଜାଗିର ହାସାନ ଫରିଦଙ୍କୁ ଦେଇଥିଲେ। ଏଥିରେ ଏକମତ ହୋଇ ଫରିଦଙ୍କ ପାଖରୁ ଜାଗିର ଛଡ଼ାଇନେଲେ। ଫରିଦ ଓରଫ ଶେରସାହ ଘର ଛାଡ଼ିବାକୁ ବାଧ୍ୟ ହେଲେ। ତା'ପରେ ସେ ଗଲେ ଆଗ୍ରା। ସୁଲତାନ ଇବ୍ରାହିମ ଲୋଦୀଙ୍କୁ ଅନୁରୋଧ କଲେ କି ସେ ତାଙ୍କ ବାପାଙ୍କର ଜାଗିର ତାଙ୍କୁ ଦେଇଦିଅନ୍ତୁ। ସୁଲତାନ ସିଧା ମନା କରିଦେଲେ। କହିଲେ; ଯେଉଁ ପିଲା ବାପା ବିରୁଦ୍ଧରେ କହୁଛି ସେ ଉପଯୁକ୍ତ ଲୋକ ନୁହେଁ। କିନ୍ତୁ ହାସାନଙ୍କର ମୃତ୍ୟୁପରେ ସାସାରାମର ଜାଗିର ତାଙ୍କୁ ପ୍ରଦାନ କରାଗଲା। ସେ ନିଜ ଅଧିକାର ଫେରିପାଇ ଘରକୁ ଫେରିଲେ। ସାବତ ମା'ଙ୍କ ସହିତ ପୁଣି ମତଭେଦ ଘଟିଲା। ସାବତମା' ତାଙ୍କ ନିଜ ପୁଅମାନଙ୍କ ପାଇଁ ଜାଗିରର କିଛି ଅଂଶ ଦାବି କଲେ। ଦୁଃଭାର୍ଗ୍ୟବଶତଃ ସେତିକିବେଳେ ପାନିପଥରେ ଲୋଦିଙ୍କର ମୃତ୍ୟୁ ହେଲା। ହିନ୍ଦୁସ୍ଥାନର ରାଜନୈତିକ ବାତାବରଣ ପରିବର୍ତ୍ତନ ହେଲା। ଖାଁ କେବଳ

ବିହାରର ଗଭର୍ଣ୍ଣର ଥିଲେ। କିନ୍ତୁ ସୁଲତାନଙ୍କ ମୃତ୍ୟୁପରେ ସେ ବିହାରର ଶାସକ ହୋଇଗଲେ। ମୁହୂର୍ତ୍ତକ ପାଇଁ ବି ବିଶ୍ରାମ ନ କରି, ଦିନରାତି ପରିଶ୍ରମ କରି ବିହାରର ଶାସକଙ୍କର ନିଜ ଲୋକ ହୋଇଗଲେ। ଆଉ ସେତିକିବେଳେ ସିଂହକୁ ବାହୁବଳରେ ମାରି ଶେର ଉପାଧି ପାଇଥିଲେ।

ଲୋଦି ସାମ୍ରାଜ୍ୟର ପତନ ପରେ ହିନ୍ଦୁସ୍ଥାନର ରାଜଗାଦି ଅନ୍ୟ କାହା ଉପରେ ବିଶ୍ୱାସ କରିପାରିଲା ନାହିଁ। ଏହାର ସୁଯୋଗନେଇ ଭକିଲ ଓ ଅସୁରକ୍ଷିତ ରାଜାଙ୍କର ଅନେକ ଗଣ୍ଡଗୋଳ ହେଲା। ଫଳରେ ଶେରଖାନ ପୁଣି ଥରେ ସାସାରାମ ହରାଇଲେ। ଯାତ୍ରା କଲେ ଆଗ୍ରା ଅଭିମୁଖେ। ଉଦ୍ଦେଶ୍ୟ ଥିଲା ମୋଗଲଙ୍କ ଠାରୁ କିଛି ସହାୟତା ପାଇବା। ଉଚ୍ଚାଭିଳାଷିମାନଙ୍କ ପାଇଁ ଏହାଥିଲ ଅପୂର୍ବ ସୁଯୋଗ। ସାସାରନ ଫେରିପାଇବା ପରେ ମୋଗଲମାନଙ୍କର ଛିନ୍ନ ଛତର ଅବସ୍ଥାକୁ ବିଚାରକରି ମୋଗଲମାନଙ୍କୁ ଦେଶରୁ ବାହାର କରିଦେଇ ଆଫଗାନ ରାଜୁତି ପ୍ରତିଷ୍ଠା କରିହେବ ବୋଲି ଭାବିଲେ। ଅନ୍ୟ କେହି ଲକ୍ଷ୍ୟ କରିପାରିଲେ ନାହିଁ କିନ୍ତୁ ବାବର ଲକ୍ଷ୍ୟ କଲେ। ମନ୍ତ୍ରୀ ମିର ଖଲିଫାଙ୍କୁ କହିଲେ, ଶେରଖାଁ ଜଣେ ବିଚକ୍ଷଣ ଲୋକ ତାଙ୍କୁ ବନ୍ଦୀ କର। ଏ ବିଷୟ ଜାଣିପାରିଲେ ଶେର ଖାଁ। ସେ ଶାଶାରନ ଫେରିଆସିଲେ। ଶାଶାରନରେ ସୁଲତାନଙ୍କ ସେବାରେ ମନ ନିଯୋଜିତ କଲେ। ସୁଲତାନ ତାଙ୍କୁ ସାଙ୍ଗେ ସାଙ୍ଗେ ଭକିଲ କରାଇଦେଲେ। ଠିକ ପରେ ପରେ ବିହାର ଖାଁ ମରିଗଲେ। ଜଲାଲ ଖାନ, ତାଙ୍କ ପୁଅ ସୁଲତାନ ହେଲେ ଦାଦୁ (ସୁଲତାନଙ୍କ ବିଧବା) ସହ। କିନ୍ତୁ ଦାଦୁ ଯେତେବେଳେ ମରିଗଲେ, ଶେର ଖାଁ ବିହାରର 'ସୁଲତାନ ପ୍ରାୟ' ହୋଇଗଲେ।

ଏ ଆସନରେ ଥାଇଁ ଦୁଇଟି ବିବାହ କଲେ। ଶକ୍ତିଶାଳୀ ହେଲା ତାଙ୍କ ଆସନ। ଜଣେ ଧନୀ ଓ ସନ୍ତାନହୀନ ବିଧବାଙ୍କୁ ବାହାହେଲେ– ପାଇଲେ ଚୁନାର ଦୁର୍ଗ। ଆଉ ଜଣକୁ ବାହା ହୋଇ ପାଇଲେ ପ୍ରଚୁର ସଂପତ୍ତି। ରାଜ୍ୟ ଭିତରେ ରାଜ୍ୟ ଗଢ଼ିବାପାଇଁ ଏ ଦୁଇଟିଯାକ ବିବାହ ତାଙ୍କୁ ସାହାଯ୍ୟ କଲା। ଏ ଅଧିକାର ବାଧାପ୍ରାପ୍ତ ହେଲା। ଆବ୍ରାହମ ଲୋଦିଙ୍କ ସାନ ଭାଇ ମହମ୍ମଦ ଲୋଦି ଜଲାଲ ଖାଁକୁ ବାହାର କରି ବିହାରର ରାଜଗାଦିରେ ବସିଲେ। ଶେର ଖା ପୁଣି ଜାଗିର ସ୍ଥାନକୁ ଫେରିଆସିଲେ।

ମହମ୍ମଦ ଲୋଦି ମୋଗଲ ବିରୁଦ୍ଧରେ ଲଢ଼ିବାପାଇଁ ଯୋଜନା କଲେ। ନିଜ ଇଚ୍ଛା ବିରୁଦ୍ଧରେ ସେଥିରେ ସାମିଲ ହେଲେ ଶେର ଖାଁ। ଅବଶେଷରେ ସେ ମୋଗଲମାନଙ୍କ ସହିତ ସନ୍ଧି କଥାବାର୍ତ୍ତା କରି ଯୁଦ୍ଧକ୍ଷେତ୍ରରୁ ଓହରିଗଲେ। କିନ୍ତୁ ହୁମାୟୁନ ଶେରଖାଁଙ୍କ ପାଖରୁ ଚୁନାର ଦୁର୍ଗ ଦାବି କଲେ। ଚାରିମାସ ଧରି ଚୁନାର ଦୁର୍ଗ ରକ୍ଷା କରିବାପରି ହୁମାୟୁନଙ୍କୁ ଦେଇଦେଲେ। ଗୁଜରାଟ ଓ ମାଲୱାର ସମସ୍ୟାର ସମାଧାନ କରିବାପାଇଁ ସେଠାକୁ ଗଲେ। ଶେର ଖାଁ ପୁଣି ଜଲାଲ ଖାଁଙ୍କ ପାଖକୁ ଫେରି ବିହାରର ଶାସକ ପ୍ରାୟ ହୋଇଗଲେ। ମୂଳ ଉଦ୍ଦେଶ୍ୟ ଥିଲା ମୋଗଲମାନଙ୍କୁ ଦେଶରୁ ବିଦା କରିବେ। ସେଇ ଉଦ୍ଦେଶ୍ୟରେ ଆଫଗାନମାନଙ୍କୁ ଏକାଠି କଲେ।

ଅବଶେଷରେ ବୃଦ୍ଧ ଜଲାଲ ଖାଁଙ୍କ ସହ ଯୁଦ୍ଧ ହେଲା। ଜଲାଲ ବଙ୍ଗଳାକୁ ଗଲେ– ଆଶ୍ରୟପ୍ରାର୍ଥି ଭାବରେ। ସେ ବିହାରର ରାଜାହେଲେ ସତ କିନ୍ତୁ ମୋଗଲମାନଙ୍କ ସମର୍ଥନ ପାଇଲା ପର୍ଯ୍ୟନ୍ତ ବିହାର ରାଜଗାଦି ଶୂନ୍ୟ ହୋଇ ରହିଲା। ଆସ୍ତେ ଆସ୍ତେ ବଙ୍ଗଳାର ଛୋଟ ଛୋଟ ରାଜ୍ୟସବୁ କରାଗତ କଲେ। ଗୁଜରାଟରୁ ହୁମାୟୁନ ଫେରି ଦେଖିଲେ କି ତାଙ୍କ ଅଧିନରେ ରହି ମଧ ଶେର ଖାଁଙ୍କ ଆଧିପତ୍ୟ ବୃଦ୍ଧି ପାଉଛି। ଶେର ଖାଁଙ୍କ ମୂଳ ଉଦ୍ଦେଶ୍ୟ ଏକ ଭିତିରି ସତ୍ୟ ହୋଇ ରହିଗଲା। ହୁମାୟୁନ ସୁସ୍ଥି, ଶେରଖାଁ ସତର୍କ ଓ କପଟି। ସେଥିପାଇଁ ଯେଉଁ କନ୍ଦଳ ୧୫୩୭ରେ ଆରମ୍ଭ ହୋଇଥିଲା ତାହା ୧୫୪୦ରେ ସରିଲା।

ଶେର ଖାଁ ହୁମାୟୁନଙ୍କୁ ହିନ୍ଦୁସ୍ଥାନରୁ ବିଦା କଲାପରେ ପଞ୍ଜାବରେ କିଛିଦିନ ରହିଲେ ସେତେବେଳକୁ ବଙ୍ଗଳାରେ ଗଣ୍ଡଗୋଳ ହେଲା। ଶେରସାହ ଖିଜିର ଖାଁକୁ ବଙ୍ଗଳାର ଗଭର୍ଣ୍ଣର ଭାବରେ ଅବସ୍ଥାପିତ କଲେ। ଖିଜିର ଖାଁ ପୂର୍ବତନ ରାଜା ସୁଲତାନ ମହମୁଦ ଝିଅଙ୍କୁ ବିବାହ କଲେ ଓ ନିଜେ ରାଜା ଭଳି ବ୍ୟବହାର କରିବାକୁ ଲାଗିଲେ। ରାଗିଯାଇ ଶେରଖାଁ ବଙ୍ଗଳାରେ ପହଞ୍ଚିଲେ। ବିନା ରାଜାଜ୍ଞାରେ ଏ ପ୍ରକାର ବିବାହକୁ ବିରୋଧ କଲେ। ଖିଜିରି ଖାଁ ତାଙ୍କ ମନ ବହଲେଇବା ପାଇଁ ବହୁତ ଚେଷ୍ଟା କଲେ। କିନ୍ତୁ ଶେରଶାହାଙ୍କୁ ସନ୍ତୁଷ୍ଟ କରିପାରିଲେ ନାହିଁ। ଶେର ଶାହା ଭାବିଲେ; ବିଦ୍ରୋହୀଙ୍କୁ ଦମନ କରିବା ବ୍ୟତିତ ଅସଲରେ ମୂଳ ରାଜନୀତିକୁ ବଦଳାଇବା ଉଚିତ। ସେ ବଙ୍ଗଳାକୁ ଅନେକ ଜିଲାରେ ବିଭକ୍ତ କଲେ। ଜିଲ୍ଲାର ମୁଖ୍ୟମାନେ ସିଧାସଳଖ ସମ୍ରାଟଙ୍କ ସହିତ କଥାବାର୍ତ୍ତା କରିପାରିବେ।

ପ୍ରତ୍ୟେକ ଜିଲ୍ଲାରେ କ୍ଷମତାର ଏକତ୍ରୀକରଣ ପରିବର୍ତ୍ତେ ବିକେନ୍ଦ୍ରୀକରଣ କଲେ। ଆଇନ ଶୃଙ୍ଖଳାପାଇଁ ଅଫିସର, ରାଜସ୍ୱ ଓ ଆଭ୍ୟନ୍ତରୀଣ ଶାସନ ପାଇଁ, ନ୍ୟାୟ ପାଇଁ ମୁନସିଫ୍, ଧର୍ମ ସଂକ୍ରାନ୍ତୀୟ କାମ ପାଇଁ କାଜି, ଅନ୍ୟାନ୍ୟ ଅନେକ ସମସ୍ୟା ପାଇଁ ଭିନ୍ନ ଭିନ୍ନ ଲୋକ ନିଯୁକ୍ତ କଲେ। ଜିଲାମାନଙ୍କୁ ମଧ୍ୟ ସେ ପ୍ରଗଣାରେ ବିଭକ୍ତ କଲେ। ସେଇ ଢଙ୍ଗରେ ଲୋକ ନିଯୁକ୍ତି ଦେଲେ। ବର୍ଷରେ ଥରେ ମଧ୍ୟ ଅଫିସରମାନଙ୍କୁ ଅଦଳବଦଳ କଲେ। ରାଜସ୍ୱ ବଣ୍ଟନ ବ୍ୟତିତ ଗାଁ ସଂସ୍ଥାମାନଙ୍କରେ କୌଣସି ପରିବର୍ତ୍ତନ କରାଇଲେ ନାହିଁ। ଗାଁର ମୁଖିଆମାନେ ଗାଁ ସମସ୍ୟାର ସମାଧାନ କରିନେଉଥିଲେ। ପୋଲିସ ଥାନା ସବୁ ଅନେକ ବସାଇଲେ। ବିଦ୍ରୋହୀମାନଙ୍କୁ ଦମନ କରିବାପାଇଁ ସୁବିଧା ରାସ୍ତା ବାହାର କଲେ। ସେ ଥିଲେ ଜଣେ ପ୍ରତ୍ୟକ୍ଷ ରାଜନୀତିଜ୍ଞ ଭାବରେ ଯେଉଁ ଗୁଣ ତାଙ୍କୁଦେଶର ସୁପରିଚାଳନାରେ ସମର୍ଥ କରାଇପାରିଲା।

ପ୍ରତାରଣା ପ୍ରତିରୋଧ କରିବା ଶେରସାହଙ୍କର ଏକ ମାନିଆ ଥିଲା। ଛୋଟ ବଡ଼ ସବୁ ଅଫିସରମାନଙ୍କୁ ଅଫିସ ସଂକ୍ରାନ୍ତରେ ଖବର ତାଙ୍କୁ ଦେବାପାଇଁ ବାଧ କରୁଥିଲେ। ପ୍ରତାରଣା କରୁଥିବା ଲୋକଙ୍କୁ ସେ ଛାଡୁନଥିଲେ। ସେଇ କାରଣରୁ ପୁରା ଖବର ଅଫିସରମାନେତାଙ୍କୁ ଜଣାଉ ନଥିଲେ। ସେ ବିଶ୍ୱାସ କରୁଥିଲେ କି ପ୍ରତାରଣା ଦୂର କରିବା ନୈତିକତା ନୁହେଁ, ଏକ ଦକ୍ଷତା। ନିଜ ଅଧିନରେ ଏକ ସୈନ୍ୟବାହିନୀ ମଧ୍ୟ ମଜବୁତ ରଖିଥିଲେ। ସେନାବାହିନୀ ଭିତରେ ଶୃଙ୍ଖଳା ରଖିବାପାଇଁ ସେ ଆଲ୍ଲାଉଦ୍ଦିନ ଖିଲଜୀଙ୍କର ଦୁଇଟି ପୁରୁଣା ନିୟମ ଲାଗୁ କରିଥିଲେ। ରୋଲକଲ ସମୟରେ କେହି କାହା ଘୋଡ଼ା ଅଦଳବଦଳ କରିପାରିବେ ନାହିଁ; ପ୍ରତ୍ୟେକ ସୈନିକର ବିଶଦ ବିବରଣୀ ମଧ୍ୟ ଲେଖା ହୋଇଥିବ। ହାରେମ ଭିତରେ ମଧ୍ୟ ଘୋଡାଙ୍କର ବିଶଦ ବିବରଣୀ ନଥିଲେ ସେମାନଙ୍କୁ ମାସିକିଆ ଦରମା ମଧ୍ୟ ଦିଆଯାଇପାରିବ ନାହିଁ। ଏହା ବ୍ୟତିତ ଦକ୍ଷତାର ସହିତ ସରକାର ଚଳାଇବାକୁ ଯାଇଁ ସେ ଛୋଟ ଛୋଟ ଦୁର୍ଗସବୁ ନିର୍ମାଣ କରିଥିଲେ। ଅଧିକ ତୋଳାଇବାପାଇଁ ଇଚ୍ଛା ମଧ୍ୟ ଥିଲା। ରାସ୍ତା ମରାମତି (ଜାତୀୟ ରାଜପଥ) କରେଇବାର କାର୍ଯ୍ୟକ୍ରମ ମଧ୍ୟ ରଖିଥିଲେ। ଆଭ୍ୟନ୍ତରୀଣ ଉନ୍ନତିମୂଳକ କାମ ମଧ୍ୟ ତ୍ୱରାନ୍ୱିତ କରିଥିଲେ। ୬ କିଲୋମିଟର ବ୍ୟବଧାନରେ ୧୭୦୦ ଲୋକ ଥିବା କାରାଭାନ ମଧ୍ୟ ବନ୍ଦୋବସ୍ତ

ହୋଇଥିଲା । ତାଙ୍କର ପ୍ରତ୍ୟେକ ଜିନିଷ ପ୍ରତି ନଜର ଯୋଗୁଁ ତାଙ୍କ ସାମ୍ରାଜ୍ୟ ଉନ୍ନତି ପଥରେ ଆଗେଇଥିଲା । ସେ ମାତ୍ର ୫ ବର୍ଷର ଶାସନ କାଳ ମଧ୍ୟରେ ଭାରତ ଇତିହାସରେ ଜଣେ ଦକ୍ଷ ଶାସକ ଭାବେ ପରିଗଣିତ ହେଲେ । ପରିବ୍ରାଜକ ତଥା ରାସ୍ତାରେ ପଥିକମାନେ ମଧ ବିନା ଭୟରେ ଯାତାୟାତ ଓ ରାତ୍ରିଯାପନ କରିପାରୁଥିଲେ ।

ଶାନ୍ତି ଓ ଶୃଙ୍ଖଳା ପାଇଁ ଖ୍ୟାତି ମଧ ମିଳିଥିଲା । ଶାଶାରନରେ ଥିଲାବେଳେ ମଧ ସେ ଚାଷୀ ମୂଲିଆଙ୍କ ଯତ୍ନ ନେବାକୁ ଭୁଲି ନଥିଲେ । ରାଜସ୍ୱ ପାଇଁ ସେ କ୍ଷେତବାଡ଼ିକୁ ପ୍ରାଧାନ୍ୟ ଦେଉଥିଲେ । ଚାଷଜାତ ଦ୍ରବ୍ୟର ମୂଲ୍ୟାଙ୍କନ କରି କ୍ଷେତର ରାଜସ୍ୱ ଧାର୍ଯ୍ୟ କରୁଥିଲେ । ଜାଗିରୀଦାରୀ ଓ ଜମିଦାରୀର ସଂସ୍ଥା ମଧ ଜାରି ରହିଥିଲା । ଏ ବ୍ୟବସ୍ଥା ସୁଚାରୁରୂପେ ପରିଚାଳନା କରାଯାଉଥିଲା । ଏପରିକି ଶେରସାହାଙ୍କ ପରେ ମୋଗଲ ଓ ବ୍ରିଟିଶମାନେ ମଧ ଏହାକୁ ଚଳେଇ ରଖିଥିଲେ । ବ୍ୟବସାୟୀମାନଙ୍କଠାରୁ ମଧ କର ଆଦାୟ କରୁଥିଲେ । କାହାରି ଯେପରି କୌଣସି ଅନିଷ୍ଟ ହେବନାହିଁ ସେପରି ଭାବରେ କରର ପରିମାଣ ନିର୍ଦ୍ଧାରିତ ହେଉଥିଲା । ନ୍ୟାୟ ଭାବରେ କାମ କରିବାପାଇଁ କୌଣସି ପାତର ଅନ୍ତର ରଖୁ ନଥିଲେ । ଗପଟିଏ ଦୃଷ୍ଟାନ୍ତ ସ୍ୱରୂପ କୁହାଯାଏ । ଶେରସାହଙ୍କ ପୁଅ ଆଦିଲ ଖାଁ ଆଗ୍ରାରେ ହାତୀଚଢ଼ି ଯାଉଥିଲେ । ଭଙ୍ଗା କାନ୍ଥ ଭିତରେ ଜଣେ ଦୋକାନୀର ସ୍ତ୍ରୀ ଗାଧୋଉଥିଲା । ତାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତା' ଉପରେ ନଜର ରଖିଲେ । ଖାଲି ସେତିକି ନୁହେଁ ଖଣ୍ଡେ ଖିଲିପାନ ମଧ ତା' ଉପରକୁ ପକାଇଲେ । ସେ ସ୍ତ୍ରୀ ଲୋକ ତା' ଇଜ୍ଜତରେ ବାଧ ଆସିଛି ବୋଲି ଭାବି ଆତ୍ମହତ୍ୟା କରିବାକୁ ଠିକ୍ କଲା । ଶେରସାହ ରାୟ ଦେଲେ କି ଆଦିଲ ଖାଁର ସ୍ତ୍ରୀ ସେହି ଦୋକାନୀ ଦ୍ୱାରରେ ସେହିପରି ନିର୍ଯ୍ୟାତିତ ହେଉ । ଦୋକାନୀ ତାର ଅଭିଯୋଗ ପ୍ରତ୍ୟାହାର କରିନେବାରୁ ଏ ପ୍ରକାର ନିର୍ଦ୍ଦେଶ କାର୍ଯ୍ୟକାରୀ ହେଲାନି । ମୁସଲିମ ଆଇନ ଅନୁଯାୟୀ ଏ ପ୍ରକାର ନିର୍ଦ୍ଦେଶ ନ୍ୟାୟ ସଂଯତ ଥିଲା । କୁହାଯାଏ; ଶେରସାହଙ୍କ ନିର୍ଦ୍ଦେଶ ଫଳରେ ସିଂହ ଓ ଛେଳି ଏକ ଘାଟରେ ପାଣି ପିଉଥିଲେ । ଧର୍ମ ସଂକ୍ରାନ୍ତରେ ଶେରସାହ ଜଣେ ରକ୍ଷଣଶୀଳ ସୁନି ଭକ୍ତ । ଉଲେମା ବା ସନ୍ଥ ସାଙ୍ଗରେ ନ ଥିଲେ ସେ ସକାଳର ଖାଇବା ଖାନ୍ତି ନାହିଁ । ହିନ୍ଦୁମାନଙ୍କ ପ୍ରତି ବ୍ୟବହାର ମଧ ଜଣେ ପ୍ରଜା ଭଳି କିନ୍ତୁ ସବୁବେଳେ ଦୃଷ୍ଟି ଥାଏ

କି ସେମାନେ ଯେପରି ଅତ୍ୟାଚାରିତ ନ ହୁଅନ୍ତି । କୌଣସି ସାଂପ୍ରଦାୟିକ ଗଣ୍ଡଗୋଳ ମଧ୍ଯ ସେ ସମୟରେ ହୋଇଥିବାର ଇତିହାସ ନାହିଁ ।

ଅନ୍ଧ, ବୃଦ୍ଧ, ଦୁର୍ବଳ, ବିଧବା, ରୋଗୀମାନଙ୍କୁ ମଧ୍ୟ ତାଙ୍କ ଟ୍ରେଜେରୀରୁ ସେମାନଙ୍କର ଚଳିବାପାଇଁ ଟଙ୍କା ଯୋଗାଇ ଦିଆଯାଉଥିଲା । ଆଫଗାନରୁ ଆସୁଥିବା ଅତିଥିମାନଙ୍କ ସେବା, ତାଙ୍କ ପରିବାରପାଇଁ ମାସିକ ଭତ୍ତା ପଠାଇବା ଏସବୁ ରାଜକୋଷ ତରଫରୁ କରାଯାଏ । ଏସବୁ ଦାନର ମୂଳରେ ଥିଲା ଧର୍ମ ଉପାର୍ଜନ । ଶେରସାହଙ୍କ କ୍ଷୁଦ୍ର ଶାସନକାଳ ଭିତରେ ଯାହା କିଛି ହାସଲ କରିଛନ୍ତି ତା' କେବଳ ଅନୁଧାବନ ଓ କପଟତା ବଳରେ କରିଛନ୍ତି । ସୈନ୍ୟବାହିନୀର ରକ୍ଷଣାବେକ୍ଷଣ ଅତି ଆନ୍ତରିକତାର ସହ କରନ୍ତି, ଏପରିକି ରାଜ୍ୟ ବଦଳରେ ସେ ଗୋଟିଏ ସୈନ୍ୟର ମଧ୍ୟ ବଳିଦାନ ଦେବାକୁ ଚାହାନ୍ତି ନାହିଁ । ରାଜପୁତ ରାଜା ତାଙ୍କ କଥାରେ ଭୁଲିଯାଇ ବିନାବାଧାରେ ରାଜ୍ୟ ଦେଇଦେଲେ । କିନ୍ତୁ ରାଏସୋରୀର ରାଜା ପୁରନମଲ ସେଥିରେ ରାଜି ହେଲେ ନାହିଁ । ସେ କପଟକରି ତାଙ୍କର ପରିବାରର ସମସ୍ତ ସଦସ୍ୟଙ୍କୁ ଦୁର୍ଗ ବାହାରକୁ ନେଇଆସିଲେ । ତା'ପରେ ନିଜେ ଓ ତାଙ୍କ ସୈନ୍ୟବାହିନୀରେ ସମସ୍ତେ ସେ ରାଜପୁତ ରମଣୀମାନଙ୍କୁ ହତ୍ୟାକଲେ, ରାଜାଙ୍କୁ କବଳିତ କରି ହତ୍ୟା କଲେ । ଶେରସାହଙ୍କ କପଟତାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଅନେକ ଉପାୟ, ଅନେକ କପଟତା, ଶଠତାର ଆଶ୍ରୟ ନେଇ ସେ ମେବାର, କାଲନଝର, ଚିତୋର ଗୋଟାକ ପରେ ଗୋଟାଏ ଦୁର୍ଗ ଜୟ କଲେ । କାଲିନଟ୍ର ଦୁର୍ଗ ଜୟ କରିବା ସବୁଠୁ କଷ୍ଟକର ଥିଲା । ଦୁର୍ଗ ନିକଟରେ ଏକ ପର୍ଯ୍ୟବେକ୍ଷଣ କେନ୍ଦ୍ର ପ୍ରତିଷ୍ଠା କଲେ ଖୁମ୍ବ ଭଳି । ସେଠି ଥାଇ ଦୁର୍ଗ ଭିତରର ଲୋକଙ୍କର ଗତିବିଧି ଲକ୍ଷ୍ୟ କଲେ । ଦୁର୍ଗ ଭିତରକୁ ଶର ଓ ବନ୍ଧୁକ ଲୋକଙ୍କ ଉପରକୁ ଲକ୍ଷ୍ୟ କରି ମାରିଲେ । ଦିନେ ସେ ନିଜେ ସେଇ ଖୁମ୍ବରେ ରହି ଶର ଓ ବନ୍ଧୁକ ଦୁର୍ଗ ଭିତରକୁ ମାରିଲେ । ଗୋଟାଏ ରକେଟର ଗ୍ରେନେଡ୍ ଦୁର୍ଗ କାନ୍ଥରେ ବାଜି ଫେରିଲା । ଏହି ଗ୍ରେନେଡ୍‌ରୁ ଯେଉଁ ଅଂଶ ବିଚ୍ଛୁରିତ ହେଲା ତାହା ଅନ୍ୟ ଗ୍ରେନେଡ୍‌ରେ ବାଜିଲା । ଫଳରେ ବଡ଼ ଧରଣର ବିସ୍ଫୋରଣ ହେଲା । ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଆଘାତ ପାଇଲେ ଶେରସାହ । ଶେରସାହଙ୍କ ସାରାଦେହରେ ଚନ୍ଦନ ଓ ଗୋଲାପ ପାଣି ଛିଞ୍ଚିବା ଛଡ଼ା ଡାକ୍ତରମାନେ ଆଉ କିଛି କରିପାରିଲେ ନାହିଁ ।

ସବୁବେଳେ ଅଚେତ ଅବସ୍ଥାରେ ଥିଲେ। ଚେତା ଆସିବା ମାତ୍ରେ ସେ କେବଳ ଦୁର୍ଗ ଅକ୍ତିଆର କରିବାର ସ୍ୱପ୍ନ ଦେଖୁଥିଲେ। କିଛି ସମୟ ପରେ ଦୁର୍ଗ ଭୂଷୁଡ଼ି ପଡ଼ିଗଲା। ଚେତା ଅବସ୍ଥାରେ ଶେରସାହ ଥିଲେ। କହିଲେ; ଭଗବାନଙ୍କ ଅଶେଷ ଦୟା। ମୋର ଏହାହିଁ ଇଚ୍ଛା ଥିଲା। ଏତକ କହି ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ।

**ସଲିମ ସାହା–**

ପରେ ଜଲାଲ ଖାଁଙ୍କୁ ସଲିମ ସାହା ନାମରେ ଗାଦିରେ ବସାଇଲେ। କିନ୍ତୁ ପରିଶେଷରେ ତାହା ଇସଲାମ ସାହାଙ୍କ ହାତକୁ ଗଲା। ଜଣେ କବି ବଖାଣିଲେ; ଯଦି ରାଜା ନିଜେ ତା' ହାତରେ ଖଣ୍ଡା ନ ଧରିଛି, ଉତ୍ତରାଧିକାରୀ ସୂତ୍ରରେ କେହି ରାଜଗାଦିରେ ବସିପାରିବେ ନାହିଁ।

**ଇସଲାମ ସାହା–**

ରାଜଗାଦିରେ ବସିଲେ ଇସଲାମ ସାହା। ଭାଇ ଅଦିଲ ଖାଁଙ୍କୁ ରନ୍‌ଥାଭୋରରେ ରାଜଗାଦି ଖାଲି କରିବାକୁ ଆଦେଶ ଦେଲେ। ଆଦିଲ ଖାଁ ସଲିମ ସାହାଙ୍କୁ ଲେଖିଲେ କି ତାଙ୍କୁ ଚାରିଜଣ ଉଚ୍ଚଧରଣର ନୋବେଲ ଦେଇ ପ୍ରତିରକ୍ଷାର ବ୍ୟବସ୍ଥା କଲେ ହିଁ ସେ ଆସିପାରିବେ। ବ୍ୟବସ୍ଥାହେଲା ଓ ସେ ଆସି ପହଞ୍ଚିଲେ। ସିରିଠାରେ ଦୁଇଭାଇଙ୍କର ଦେଖା ହେଲା ଓ ଦୁହେଁ ଆଗ୍ରାକୁ ଗଲେ। ଆଗ୍ରାରେ ଇସଲାମ ସାହା ଆଦିଲଙ୍କୁ ରାଜଗାଦୀରେ ବସାଇ ରାଜ୍ୟ ଚଳାଇବାପାଇଁ ଅନୁରୋଧ କଲେ। ଯଦିଓ ଇସଲାମଙ୍କ ତରଫରୁ ସବୁଏକ ପ୍ରହସନ ଥିଲା। ହେଲେ ଆଦିଲ ଖାଁ ରାଜ କାର୍ଯ୍ୟ ଚଳାଇବାକୁ ଅନିଚ୍ଛା ପ୍ରକାଶ କଲେ। ସେ ଇସଲାମ ସାହାଙ୍କୁ ରାଜଗାଦିରେ ବସାଇ ନିଜେ ବାୟାନର ଜାଗିରୀପଦ ଆବୋରି ନେଲେ। ଭାଇ ଭାଇ ଭିତରେ ବିବାଦ ଏତିକିରେ ସରିଲା ନାହିଁ। କିଛିଦିନ ପରେ ଇସଲାମ ସାହା ଆଦିଲଙ୍କୁ ବନ୍ଦି କରିବା ପାଇଁ ସୈନ୍ୟ ପଠାଇଲେ। ଆଦିଲ ତାଙ୍କ ଆଦେଶ ଅମାନ୍ୟ କରି ନିଜ ସେନାବାହିନୀ ଧରି ଆଗ୍ରା ଅଭିମୁଖେ ଯାତ୍ରା କଲେ। ଯୁଦ୍ଧ ହେଲା– ଯୁଦ୍ଧରେ ଆଦିଲ ହାରିଗଲେ। ତା' ପରର ଖବର ତାଙ୍କ ସଂକ୍ରାନ୍ତରେ ଆଉ କିଛି ମିଳିଲା ନାହିଁ।

କୌଣସି ବଡ଼ ଧରଣର ରାଜ୍ୟ ଜୟ ଇତ୍ୟାଦିର ଘଟଣା ଇସଲାମ ସାହାଙ୍କ ଜୀବନରେ ଆସିନାହିଁ। ଉଚ୍ଚାଭିଳାସ ସତ୍ତ୍ୱେ କୌଣସି ସୁଯୋଗ ପାଇ ନଥିଲେ।

ନ'ବର୍ଷ ରାଜୁତି କଲେ। ମୃତ୍ୟୁ ଆସିଲା ୧୫୫୪ରେ– କିନ୍ତୁ ସ୍ୱାଭାବିକ ମୃତ୍ୟୁ। ତାଙ୍କ ପରେ ଛୋଟ ଛୋଟ ରାଜା ହେଲେ ସତ କିନ୍ତୁ ଉଲ୍ଲେଖନୀୟ ନୁହେଁ।

**ଶେରସାହଙ୍କ କିର୍ତ୍ତୀ–**

୧୫୪୦ରେ 'ଦୀନପନାହ' ମରାମତି କରି ନା ଦେଲେ ଶେରଗଡ଼। ହୁମାୟୁନଙ୍କ ମକବରାକୁ ସଲିମ ସାହା ବନାଇଥିଲେ। ସଲିମ ଗଡ଼ର ଇମାରତକୁ ପୂର୍ଣ୍ଣ କରିଥିଲେ। ଶେରଗଡ଼ ଶେରସାହା ବନାଇଥିଲେ ବୋଲି କୁହାଯାଏ। ଇନ୍ଦ୍ରପ୍ରସ୍ଥର ଗୋଟାଏ ଅଂଶରେ ସେ ଏହାକୁ ବନାଇଥିଲେ। 'ତାରିଖେ ଶେରସାହୀ'ରେ ଲେଖାଅଛି କି ଦିଲ୍ଲୀର ପ୍ରଥମ ରାଜଧାନୀ ଯମୁନା କୂଳରେ ଥିଲା। ଶେରସାହା ତାକୁ ଭାଙ୍ଗି ଗୋଟେ ଛୋଟ କିଲ୍ଲା ବନାଇଥିଲେ ଗଭର୍ଣ୍ଣରଙ୍କ ପାଇଁ ଓ ଆଉ ଗୋଟପଟରେ କାନ୍ଥ ତିଆରି କଲେ କିଲ୍ଲାର ସୁରକ୍ଷା ପାଇଁ। କିଲ୍ଲା ଭିତରେ ଗୋଟେ ଛୋଟ ମସଜିଦ ମଧ୍ୟ ବନାଇଲେ। କିନ୍ତୁ ରକ୍ଷାକାନ୍ଥ ପୁରାହେବା ପୂର୍ବରୁ ଶେରସାହ ମରିଗଲେ। 'ତାରିଖେ ଦାଉଦୀ'ରେ ଲେଖା ଅଛି ଶେରସାହ ୧୫୪୦ରେ ଆଗ୍ରାରୁ ଦିଲ୍ଲୀ ଗଲେ। ସିରିରେ ଆଲାଉଦ୍ଦିନଙ୍କ କିଲ୍ଲାର ତଥା ଯମୁନା କୂଳରେ ଫିରୋଜାବାଦ ଓ କିଲୋଖଡ଼ି ମଝିରେ ଇନ୍ଦ୍ରପ୍ରସ୍ଥ ଠାରୁ ଦୁଇମାଇଲ ଦୂରରେ କିଲ୍ଲା ତିଆରି କଲେ– ନାଁ ରଖିଲେ ଶେରଗଡ଼। କିନ୍ତୁ ପୂରଣ କରି ପାରିଲେ ନାହିଁ।

''ତାରିଖେ ଶେରସାହୀ'ରେ ଲେଖାଅଛି କି ଶେରସାହା କିଲା ଭିତରେ ଯେଉଁ ମସଜିଦ ବନାଇଥିଲେ ସେଥିରେ ଅନେକ ବେଶି ସୁନା ଓ ମୂଲ୍ୟବାନ ପଥର ଖର୍ଚ୍ଚ କରିଥିଲେ। ମସଜିଦ ସହିତ ଏକ ବାଉଲୀ ମଧ୍ୟ ତିଆରି କଲେ। ଏହାର ସିଢ଼ିସବୁ ପାଣି ପର୍ଯ୍ୟନ୍ତ ଯାଇଥିଲା। ସିଢ଼ି ସବୁ ପଥରରେ ତିଆରି। ଗୋଟେ ଘର ବନାଇଥିଲେ। ଏସବୁ ଦେଖି ସମସ୍ତେ ଖୁବ୍ ପ୍ରଶଂସା କରିଥିଲେ। ଶେରମଣ୍ଡଳ– ୧୫୪୧ରେ ହୁମାୟୁନଙ୍କ ଉପରେ ବିଜୟ ହାସଲ ପରେ କିଲା ବାହାଲାଲରେ ଚନ୍ଦ–ମକାନ ତିଆରି କଲେ। ଭିତରେ ମସଜିଦ ଆଉ ନାଁ ରଖିଲେ ଶେରମଣ୍ଡଳ। ଏହା ଲାଲପଥରରେ ତିଆରି। ଜାଗାଏ ଜାଗାଏ ଶଙ୍ଖମଲମଲ ପଥର ମଧ୍ୟ ଲଗାଯାଇଛି। ଏ ମଣ୍ଡଳ ଏକ ଐତିହାସିକ କାରଣପାଇଁ ବିଖ୍ୟାତ ହେଲା। ହୁମାୟୁନ ଏହି ସମୟରେ ସିଢ଼ିରୁ ପଡ଼ି ମୃତ୍ୟୁବରଣ କଲେ। ସେ ଏହାକୁ ପୁସ୍ତକାଳୟ ଓ ଜ୍ୟୋତିଷ ଅଧ୍ୟୟନ କେନ୍ଦ୍ର ଭାବରେ ବ୍ୟବହାର କରୁଥିଲେ।

ସଲିମଗଡ଼ ବା ସୁରଗଡ଼– ୧୫୬୪ ବେଳକୁ ଶେରସାହଙ୍କ ପୁତ୍ର ସଲିମ ସାହ ଜାଣିବାକୁ ପାଇଲେ କି ହୁମାୟୁନ ପୁଣି ହିନ୍ଦୁସ୍ଥାନ ଫେରିଆସୁଛନ୍ତି।ସେ ଲାହୋରରୁ ଦିଲ୍ଲୀ ଫେରିଆସିଲେ। ଯମୁନା ନଦୀ ପାଣି ଭିତରେ ସଲିମ ଗଡ଼ ବନେଇବା ଆରମ୍ଭ କଲେ। ଭାବିଲେ ଏହାଠୁ ଅଧିକ ସୁନ୍ଦର କିଲା ଆଉ ବନା ହୋଇପାରିବ ନାହିଁ। ବାହାରୁ ଦେଖିଲେ ମନେ ହେଉଥିଲା ଏହା ଗୋଟିଏ ପଥରରେ ଗଢ଼ାହୋଇଛି। ଗୋଲାକାର ଆକୃତି। ସେ ଅମଳରେ ପ୍ରାୟ ୪ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା ବୋଲି ଅନୁମାନ କରାଯାଏ। କିନ୍ତୁ ପାଚେରୀ ତିଆରି ପରେ ପରେ ସଲିମସାହାଙ୍କ ମୃତ୍ୟୁ ହେଲା। ଏହା ସେହିପରି ଉପେକ୍ଷିତ ଅବସ୍ଥାରେ ପଡ଼ିରହିଲା। ୮୦ ବର୍ଷ ପରେ ଆକବର ଓ ଜାହାଙ୍ଗୀରଙ୍କ ଅମଳରେ ଜଣେ ପ୍ରଭାବଶାଳୀ ଅମୀର ଥିଲେ– ନାଁ ଥିଲା ଫରିଦ ଖା ବା ମୃତଜା ଖାଁ। ସେ ଏ ଜାଗାକୁ ଜାଗିରୀ ସୂତ୍ରରେ ନେଇଥିଲେ। ବନାଇଥିଲେ ଏ ସୁନ୍ଦର ଗଡ଼। ଏହା ୧୮୧୮ ବେଳକୁ ନଷ୍ଟପ୍ରାୟ ହୋଇଯାଇଥିଲା। ୧୭୮୮ରେ ଗୋଲାମ କାଦୀର ଖାଁ ନିଜ ସାଥିମାନଙ୍କୁ ନେଇ ଏ କିଲାରୁ ଖସି ପଳାଇ ଯାଇଥିଲେ। ହୁମାୟୁନ ଫେରିବା ପରେ ଏହାର ନାମ ନହରଗଡ଼ ରଖିଥିଲେ।

ଇସା ଖାଁ ମସଜିଦ ଓ ମକବରା– ଶେରସାହଙ୍କ ଦରବାରରେ ଇସା ଖାଁ ଜଣେ ପ୍ରଭାବଶାଳୀ ଅମୀର ଥିଲେ। ସେ ଶେରସାହଙ୍କ ମୃତ୍ୟୁପରେ ତାଙ୍କର ପିଲାମାନଙ୍କ ସହ ଝଗଡ଼ା ହେଲା ଓ ସେ ସଲିମ ଶାହାଙ୍କ ସାଙ୍ଗରେ ରହିଲେ। ୧୫୪୭ରେ ସଲିମ ସାହଙ୍କ ଅମଳରେ ଏ ମସଜିଦ ବନାଇଥିଲେ। ଚୁନ ଓ ପଥରରେ ତିଆରି। ଏ ମସଜିଦ ପାଖରେ ଇସା ଖାଁଙ୍କ ମକବରା ମଧ୍ୟ ତିଆରି ହୋଇଥିଲା।

ସଲିମଗଡ଼– ସଲିମଗଡ଼କୁ ନହରଗଡ଼ ନାମରେ କେହି ମନେ ପକାଉ ନାହାନ୍ତି। ଏଠାରେ ଯାତାୟତର ସୁବିଧାପାଇଁ ଜାହାଙ୍ଗୀର ଏକ ପୋଲ ବନାଇଥିଲେ। ଆଗ୍ରା ଗଡ଼ ଭିତରେ ସଲିମଗଡ଼ ନାମରେ ଏକ ଦୁଇମହଲା କୋଠା ଅଛି। ଏହାର କାରୁକାର୍ଯ୍ୟର ମହତ୍ତ୍ୱ ଏବେ ବି ବିଦ୍ୟମାନ। ସଲିମଗଡ଼କୁ ବ୍ରିଟିଶରମାନେ ରେଳବାଇ ଅଫିସ ଭାବରେ ବ୍ୟବହାର କରୁଥିଲେ।

ଲାଲ କିଲ୍ଲା ଗଠନ ପରେ ଏହା ଯୋଡ଼ା ହେବା ମହଲ ଭାବରେ କାମ କରୁଛି। ଔରଙ୍ଗଜେବ ଏହାର ବ୍ୟବହାର ଭଲ ଭାବରେ କରିଥିଲେ। ସେ ଦାରା

ଶିଖୋଙ୍କୁ ଏଠାରେ ବନ୍ଦୀ କରି ରଖିଥିଲେ ତାଙ୍କୁ ପ୍ରାଣଦଣ୍ଡ ଦେଲା ପୂର୍ବରୁ। ତାଙ୍କ ସାନଭାଇ ମୁରାଦଙ୍କୁ ମଧ୍ୟ ପ୍ରାଣଦଣ୍ଡ ପୂର୍ବରୁ ଏଠି ରଖିଥିଲେ। ବାହାଦୂର ସାହ ପ୍ରଥମଙ୍କ ମୃତ୍ୟୁପରେ ଏହି ଜାଗାରେ ଅନେକ ରାଜପୁତ୍ରଙ୍କୁ ମଧ୍ୟ ବନ୍ଦି କରି ରଖାଯାଇଥିଲା। ସାହା ଆଲମଙ୍କୁ ମଧ୍ୟ କାଦିର ଖାଁ ଅନ୍ଧ କରିଦେଲା ପରେ ଏ ଜାଗାରେ ରଖାଯାଇଥିଲା। ବ୍ରିଟିଶରମାନେ ମଧ୍ୟ ବାହାଦୂର ସାହ ଜଫରଙ୍କୁ ରେଙ୍ଗୁନ ପଠେଇବା ପୂର୍ବରୁ ଏଠି ବନ୍ଦୀ କରି ରଖିଥିଲେ। ସ୍ୱାଧୀନତା ସଂଗ୍ରାମ ବେଳେ ବହୁତ ବନ୍ଦୀଙ୍କୁ ଏଠାରେ ଅତ୍ୟାଚାରିତ କରୁଥିଲେ। ଟାୱାର ଅଫ ଲଣ୍ଡନ ଦିନେ କାଳେ ବନ୍ଦୀମାନଙ୍କର ଅତ୍ୟାଚାରିତ ସ୍ଥାନ ଥିଲା। ସେ ଚିତ୍ର ସଲିମଗଡ଼ରେ ପ୍ରତିଫଳିତ ହୋଇଥିଲା। ବର୍ତ୍ତମାନ ସ୍ୱାଧୀନତା ଆନ୍ଦୋଳନ ପରେ ଏହା ମିଉଜିୟମ ରୂପେ କାମ କରୁଛି। କିନ୍ତୁ ଏକଦା ଏହାଥିଲା ଅତ୍ୟାଚାରିତଙ୍କ ବଙ୍ଗଳା।

**ଶେରସାହ–**

ହୁମାୟୁନଙ୍କର ୧୫ ବର୍ଷର ରାଜୁତି ଭିତରେ ଆଫଗାନର ମୋନାର୍କ (ରାଜା) ଶେରସାହ ୧୫୪୦ ବେଳକୁ ଉତ୍ତର ଭାରତର ଅଧିକାଂଶ ରାଜ୍ୟରେ ନିଜର ଅଧିକାର ଜାହିର କରିସାରିଥିଲେ। ଚୌଷାର ଯୁଦ୍ଧ, କନୌଜ ଯୁଦ୍ଧ, ପରେ ହୁମାୟୁନ ପଳାୟନ କଲେ। ଶେରସାହ ଭାରତର ସମ୍ରାଟ ବୋଲାଇଲେ। ସାଙ୍ଗେ ସାଙ୍ଗେ ଦିଲ୍ଲୀର ଶାସନ ପଦ୍ଧତି ବଦଳାଇବାକୁ ଚାହିଁଲେ। ପୁରୁଣା କିଲାରେ ରାଜ୍ୟକାର୍ଯ୍ୟ ଚଳାଇବା ସହ ଫିରୋଜସାହ କୋଟଲାରେ ଅନେକ ପରିବର୍ତ୍ତନ ଆଣିଲେ। ଖୁନି ଦରୱାଜା ମଧ୍ୟ ଗଢ଼ିଲେ। ଗୋଟାଏ ମସଜିଦ ଗଢ଼ିଲେ ଯାହାକୁ ଫରଗୁସନ ଭାବନ୍ତି କି ମସଜିଦ ଦୃଷ୍ଟିରୁ ସବୁ ଠିକ୍ ବୋଲି ଓ ଆରଟି ହେଲା ଶେରମଣ୍ଡଳ। ପରେ ହୁମାୟୁନ ଯାହାକୁ ଲାଇବ୍ରେରୀ ଭାବରେ ବ୍ୟବହାର କରିଥିଲେ। ଖିଲଜିଙ୍କର ସିରିକୁ ଭାଙ୍ଗି, ସେଇ ସାମଗ୍ରୀରେ ଏହି ଦୁଇଟି ଗଡ଼ ତିଆରି କରିଥିଲେ। ତାଙ୍କ ଆଭ୍ୟନ୍ତରଣୀୟ ଶାସନ ପରବର୍ତ୍ତୀ କାଳର ଉନ୍ନତି ପାଇଁ ଆବଶ୍ୟକ ବୋଲି ଗଣାହେଲା। ମୋଗଲ ଆକ୍ରମଣରୁ ରକ୍ଷା କରିବାପାଇଁ ସଲିମଗଡ଼ ତାଙ୍କ ପୁତ୍ର ସଲିମ ସାହା ତିଆରି କରିଥିଲେ। ସଲିମ ସାହା ଗ୍ୱାଓଲିୟରଙ୍କୁ ନିଜର ରାଜଧାନୀ କରିଥିଲେ। ମହମ୍ମଦ ଆଦିଲସାହାଙ୍କ ଅମଳରେ ଇବ୍ରାହିମ ଖାନ (ସଲିମ ସାହାଙ୍କ

ଭିଶୋଇ) ଅନ୍ତର୍ଦ୍ୱନ୍ଦ ଦେଖି ଦିଲ୍ଲୀ ଓ ଆଗ୍ରା ଉପରେ କବ୍ଜା କରିନେଲେ। ସେତେବେଳେ ସିକନ୍ଦର ସାହା ପଞ୍ଜାବର ଗଭର୍ଣ୍ଣର ଥିଲେ। ସେ ଅତିଶୀଘ୍ର ତାଙ୍କ ଜେନେରାଲ ହିମୁଙ୍କୁ ଦିଲ୍ଲୀ ଅଧିକାର କରିବାପାଇଁ ପଠାଇଲେ।

ଶେରସାହାଙ୍କ ଅମଳରେ ଇସା ଖାଁ ଏକ ପ୍ରଭାବଶାଳୀ ଅମିର ଥିଲେ। ଶେରସାହାଙ୍କ ମୃତ୍ୟୁ ପରେ ତାଙ୍କ ପୁଅମାନଙ୍କ ଭିତରେ ଝଗଡା ଦେଖି, ସେ ସଲିମ ସାହାଙ୍କ ସହିତ ରହିଲେ ଓ ତାଙ୍କୁ ଦିଲ୍ଲୀ ରାଜଧାନୀରେ ବସାଇବାପାଇଁ ବହୁତ ସାହାଯ୍ୟ କରିଥିଲେ। ସେ ସମୟରେ ମସଜିଦ ଓ ମକବରା ବନାଇଥିଲେ।



# ଆକବର

ହୁମାୟୁନଙ୍କ ଦୁର୍ଘଟଣା ଘଟିବା ବେଳକୁ ଆକବର ଓ ବୈରାମ ଖାଁ ପଞ୍ଜାବରେ ଥିଲେ। ଆକବର ବାପାଙ୍କ ଖବର ପାଇ ଭାଙ୍ଗି ପଡ଼ିଲେ। ଭାବିଲେ ସାମ୍ରାଜ୍ୟର ଦାୟିତ୍ୱ ତାଙ୍କ ଉପରେ ପଡ଼ିବ। ଏଣେ ତାଙ୍କର ବାଲ୍ୟଚପଳତାର ସମୟ ମଧ୍ୟ ସରି ନ ଥିଲା। ମର୍ମାହତ ହୋଇପଡ଼ିଲେ ଆକବର।

ଯଦିଓ ହୁମାୟୁନଙ୍କ ମୃତ୍ୟୁ ଖବର ତାଙ୍କୁ ଗୁପ୍ତ ରଖାଗଲା। କାଳେ ଗଣ୍ଡଗୋଳର ସୁତ୍ରପାତ ହୋଇଯିବ। ହୁମାୟୁନ ପ୍ରତ୍ୟେକ ଦିନ ସକାଳେ ନଦୀ ପାଖ ବାଲକୋନିରୁ ଜନସାଧାରଣଙ୍କୁ ଦେଖାଦିଅନ୍ତି। ସେ ନିୟମକୁ ବଜାୟ ରଖିବାକୁ ମୁଲାବକ୍ସି ନାଁରେ ଜଣେ ଲୋକକୁ ହୁମାୟୁନଙ୍କ ବେଶରେ ପ୍ରତ୍ୟେକ ଦିନ ସକାଳେ ଜନସାଧାରଣଙ୍କୁ ଦେଖାଇ ଦିଆଯାଉଥିଲା। ଶେଷରେ ୧୧ ଫେବୃୟାରୀରେ ହୁମାୟୁନଙ୍କ ମୃତ୍ୟୁ ଖବର ଘୋଷଣା କରାଗଲା। ଆଉ ଆକବରଙ୍କୁ ସମ୍ରାଟ ବୋଲି ଘୋଷଣା କରାଗଲା। ଆକବରଙ୍କର ବୟସ ୧୪ ବର୍ଷ। ଆକବରଙ୍କ ବୟସବେଳକୁ ବାବର ରାଜା ହୋଇ ଯୁଦ୍ଧରେ ଲିପ୍ତ ଥିଲେ। ଆକବରଙ୍କ ପିଲାଳିଆ ବୁଦ୍ଧି ଯାଇ ନ ଥିଲା। ତେବେ ବି ସେ ସାଧାରଣ ବାଳକ ନ ଥିଲେ। ସେ ମାତୃଗର୍ଭରେ ଥିଲାବେଳେ ଯେଉଁ ଲୋକର ସ୍ୱର୍ଣ୍ଣ ଦେଖାଦେଇଥିଲା, ସେଇଟା ହିଁ ତାଙ୍କ ଭବିଷ୍ୟତର ପରିଚୟ ଥିଲା। ଟିକିଏ ଡେରିରେ ଜନ୍ମ ନେଇଥିଲେ ଓ ଜ୍ୟୋତିଷ ଗଣନା ଅନୁଯାୟୀ ଭବିଷ୍ୟତ ଆହୁରି ଉଜ୍ଜ୍ୱଳ ହୋଇପାରିଥାନ୍ତା। କିନ୍ତୁ ଧାଇ (ଜନ୍ମ କରେଇବା ସ୍ତ୍ରୀ ଲୋକ) ପକ୍ଷରେ ଏଇଟା ସମ୍ଭବ ନଥିଲା।

୧୫ ଅକ୍ଟୋବର ୧୫୪୨ରେ ରାତି ଦୁଇଟା ବେଳେ – ଜନ୍ମ ନେଲେ ଆକବର। ରାତିର ଆଲୋକକୁ ସମ୍ମାନ ଦେଖାଇ ମୁହଁରେ ଥିଲା ହସ। ରାଜକୀୟ ଢଙ୍ଗରେ ହମିଦା ଆକବରଙ୍କୁ ନିଜ କ୍ଷୀର ଶୁଖାଇଥିଲେ କାରଣ ପରେ ସେ ଆଉ ଆକବରଙ୍କୁ ନିଜ କ୍ଷୀର ଦେଇପାରିବେ ନାହିଁ। ନିୟମ ଥିଲା ଆଉ ୧୦ ଜଣ ସ୍ତ୍ରୀ ଲୋକ ଛୁଆକୁ କ୍ଷୀର ଦେବା ପାଇଁ ପ୍ରସ୍ତୁତ ଥିଲେ। ଦୁଗ୍ଧଦାତ୍ରୀମାନେ(wet nurse)

ସେମାନଙ୍କର ନିଜ ନିଜ ଭିତରେ ମଧ୍ୟ ପ୍ରତିଦ୍ୱନ୍ଦ୍ୱିତା ଚାଲେ ରାଜସନ୍ତାନଙ୍କୁ କ୍ଷୀର ପିଆଇବାରେ । ଆଶା ଥାଏ, ସେମାନଙ୍କର ସ୍ୱାମୀ ଓ ପିଲାମାନେ କାଳେ ଭବିଷ୍ୟତରେ ରାଜକୃପା ଲାଭ କରିବେ । ଏମାନଙ୍କ ଭିତରେ ପ୍ରଧାନ ଥିଲେ ମହାମ ଅନାଗା । ଯେତେବେଳେ ହୁମାୟୁନଙ୍କ ସହିତ ହମିବା ପର୍ଶିୟାରେ ଥିଲେ ସେ ମା'ର ଦାୟିତ୍ୱ ପୂରଣ କରିଥିଲେ । ମହାମ ଅନାଗ ଏକ ଦକ୍ଷ ସେବିକା । ଭବିଷ୍ୟତରେ ଆକବରଙ୍କ ରାଜତ୍ୱ ବେଳେ ଦରବାରରେ ରାଜନୀତିରେ ତାଙ୍କର ବେଶ୍ ଦକ୍ଷତା ଥିଲା । କୁହାଯାଉଥିଲା ସେ ''ପରଦାର ଆଢୁଆଳାରେ'' ଆକବରଙ୍କୁ ଉପଦେଶ ଦେଉଥିଲେ ।

ଆକବରଙ୍କ ପାଠରେ ମନ ନ ଥିଲା । ବାଲ୍ୟାବସ୍ଥାରେ ହୁମାୟୁନ ବହୁତ ଥର ଚେଷ୍ଟା କରିଥିଲେ ହେଁ ଆକବର ଧରାଛୁଆଁ ଦେଇ ନ ଥିଲେ । ସିଂହାସନ ଆରୋହଣ ପରେ ମଧ୍ୟ ବୈରାମ ଖାଁ ବହୁତ ଚେଷ୍ଟା କରି ବିଫଳ ହୋଇଥିଲେ । ସୁଫି କବିତା ପ୍ରତି ଆକୃଷ୍ଟ ହେଲେ ଆକବର । ସୁଫି ମାଷ୍ଟର ମଧ୍ୟ ତାଙ୍କୁ ପଢ଼ାଇବା ପାଇଁ ଚେଷ୍ଟା କଲେ । କିଛି କାମ ହେଲାନି ।

ରାଜଗାଦୀରେ ବସି ମଧ୍ୟ ଆକବର ରାଜକାର୍ଯ୍ୟରେ ମନ ଦେଲେ ନାହିଁ । ସବୁ କାର୍ଯ୍ୟ ଭାର ବୈରାମ ଖାଁଙ୍କ ଉପରେ ହିଁ ନ୍ୟସ୍ତ ଥିଲା । ହୁମାୟୁନଙ୍କ ରାଜ୍ୟ ଚଳେଇବା ବହୁତ କଷ୍ଟସାଧ ଥିଲା । ବୈରାମ ଖାଁ ଏଥିରେ ଧୁରନ୍ଧର ଥିଲେ । ଫଳରେ ଆକବରଙ୍କର କୌଣସି ଅବଦାନ ନ ଥାଇ ମଧ୍ୟ ତାଙ୍କ ରାଜ୍ୟ ସୁରୁଖୁରୁରେ ଚାଲିଥିଲା ।

ବୈରାମ ଖାଁ ତୁର୍କୀର ଲୋକ । ପ୍ରଥମରେ ପର୍ଶିୟାର ସାହାଙ୍କ ପାଖରେ ଥିଲେ । କିଛିଦିନ ବାବରଙ୍କ ସମରକନ୍ଦ ଛାଉଣୀରେ ସେ କ୍ୟାପଟାନ୍ ଭାବରେ ନିଯୁକ୍ତି ପାଇଥିଲେ । ଯଦିଓ ବାବରଙ୍କ ସମୟରେ କୌଣସି ଉଲ୍ଲେଖନୀୟ ଘଟଣା ତାଙ୍କ ଜୀବନରେ ଘଟି ନାହିଁ । କିନ୍ତୁ ହୁମାୟୁନଙ୍କ ଅମଳରେ ଗୁଜରାଟ ଆକ୍ରମଣ ସମୟରେ ସେ ବହୁତ ଉପରକୁ ଉଠିଯାଇଥିଲେ । ପରେ ସେ ହୁମାୟୁନଙ୍କୁ ସିନ୍ଧରୁ ପର୍ଶିୟା ପଳେଇବାରେ ସାହାଯ୍ୟ କରିଥିଲେ । ସାହାଙ୍କ ସହିତ ହୁମାୟୁନଙ୍କର ବନ୍ଧୁତା ପାଇଁ ହୁମାୟୁନ ଆଫଗାନିସ୍ଥାନ ଅଧିକାର କଲେ । ବୈରାମ ଖାଁ ହେଲେ କାନ୍ଧାହାରର ଗଭର୍ଣ୍ଣର । ପରେ ହୁମାୟୁନଙ୍କ ଭାରତ ଆକ୍ରମଣ ବେଳେ ପଞ୍ଜାବରେ ଯେଉଁ ଯୁଦ୍ଧ ଚାଲିଥିଲା ସେ ବି ସେଠି ଥିଲେ । ପରେ ପରେ ଆକବରଙ୍କ ତତ୍ତ୍ୱାବଧାନରେ

ରହିଲେ। ସରକାରୀ ଦାୟିତ୍ୱ ବହନ କରିବା ପରେ ବୈରାମଖାଁଙ୍କ ପ୍ରଥମ କାମ ଥିଲା ରାଜ୍ୟରେ ରାଜା ଅଛି ଏ କଥା ସମସ୍ତେ ଅନୁଭବ କରନ୍ତୁ।

ହିନ୍ଦୁସ୍ଥାନରେ ମୋଗଲଶକ୍ତି କେବଳ ଦୁର୍ଗରକ୍ଷାର ସୈନ୍ୟ ବଳ ବୋଲି ଧରାଯାଉଥିଲା। କୌଣସି ଶାସନ କଳ ଏହାକୁ ଧରି ରଖି ନ ଥିଲା। କେତେକ ମୋନାର୍କ ମଧ ଖେଳାଇ ହୋଇ ରହିଥିଲେ। ଏକ ଅଜ୍ଞାତ ଶକ୍ତି 'ହେମୁ'ଙ୍କୁ ଦ୍ୱାରା ମଧ ମାଡ଼ି ବସିଥିଲା ଶାସନ ଗାଦି।

ବୈରାମ ଖାଁଙ୍କ ନେତୃତ୍ୱରେ ଏମାନଙ୍କୁ ଏକାଠି କରିବା ସମ୍ଭବ ନଥିଲା। ଅବଦୁଲ ମାଲି ସାହା ଜଣେ ଜେନେରାଲ ଥିଲେ। ତାଙ୍କୁ ହୁମାୟୁନ ଅତି ଭଲ ପାଉଥିଲେ। ଆକବର ରାଜା ହେଲା ପରେ ବୈରାମ ଖାଁଙ୍କ ଉପଦେଶରେ ମାଲିଙ୍କୁ ବନ୍ଦୀ କଲେ। ବୈରାମ ଖାଁ ପଞ୍ଜାବରେ ନିଜର ରାଜତ୍ୱ ବିସ୍ତାର କଲେ।

ପ୍ରଶ୍ନ ହେଲା କି ବର୍ତ୍ତମାନ ବୈରାମ ଖାଁ ପଞ୍ଜାବରେ ରହିବେ କି ଆଗ୍ରାକୁ ଯିବେ – ମୋଗଲ ରାଜତ୍ୱର ରାଜଧାନୀଭାବେ ଆଗ୍ରାକୁ ଗ୍ରହଣ କରିବେ କି ? କାଲାନୁରଠାରୁ ଆଗ୍ରାର ଦୂରତା ୬୦୦ କିଲୋମିଟର। ରାଜଧାନୀ– ସହରଠରୁ ଦୂରରେ ରହିବା ଉଚିତ ନୁହେଁ କିନ୍ତୁ ବୈରାମ ଖାଁ ଶେଷରେ ପଞ୍ଜାବରେ ରହିବାକୁ ଠିକଣା କଲେ। ପଞ୍ଜାବରେ ରହିବାକୁ ଠିକଣା କରିବା ପଛରେ ଏକ ଚତୁର ସମାଧାନ ଥିଲା। କାବୁଲ ମଧ ଆଖି ନଜରରେ ରହିବା ଉଚିତ। ସେଥିପାଇଁ ପଞ୍ଜାବକୁ ଏକ ରକ୍ଷାସ୍ଥଳ ଭାବରେ ବ୍ୟବହାର କରିବା ମଧ ଉଚିତ। ଅନ୍ତତଃ ବିପଦବେଳେ ଏହି ଜାଗାକୁ ଫେରିପାଇବେ। କାବୁଲରେ ଆକବରଙ୍କ ସାନଭାଇ ରାଜୁତି କରୁଥିଲେ। ସେ ଆକବରଙ୍କୁ ଯେ କୌଣସି ମୁହୂର୍ତ୍ତରେ ବିରୋଧ କରିପାରନ୍ତି। ସାନଭାଇଙ୍କର ଉପଦେଷ୍ଟା ମୁନିମ ଖାଁ ମଧ ବୈରାମ ଖାଁଙ୍କର ଶତ୍ରୁ। ଆଉ ଜଣେ ଶତ୍ରୁ ବି ଥିଲେ– ସୁଲେମାନ ମିର୍ଜା। ହୁମାୟୁନଙ୍କ ଠାରୁ ''ବଡ଼ସାନ'' ଉପହାର ସ୍ୱରୂପ ପାଇଥିଲେ ଅନ୍ୟ ଏକ କାରଣ ମଧ ଥିଲା। ଦିଲ୍ଲୀ ଓ ଆଗ୍ରାରେ ଦୁର୍ଭିକ୍ଷର ପ୍ରଭାବ ମଧ ଅଧିକ ହେଉଥିଲା। ରାଜକୀୟ ବେଗମମାନେ ସେମାନଙ୍କର ପରିବାର ସହ ଭାରତ ଫେରି ଆସୁଥିଲେ। ସେମାନଙ୍କ ଫେରିବାଟାକୁ ସୁରକ୍ଷିତ ରଖିବାରେ ଦାୟିତ୍ୱ ବୈରାମ ଖାଁଙ୍କର ମଧ ଥିଲା। ସେଥିପାଇଁ ପଞ୍ଜାବ ରହଣି ଏ ସବୁର ସମାଧାନ।

ସେ ପାଖେ ହେମୁଙ୍କ ଶକ୍ତି ବଢ଼ିବାରେ ଲାଗିଥିଲା ଏବଂ ସେ ମୋଗଲ ସାମ୍ରାଜ୍ୟକୁ ଧ୍ୱଂସ କରିବା ଅଭିପ୍ରାୟରେ ଥିଲେ। ଏକ ମୁସଲିମ୍ ସାମ୍ରାଜ୍ୟର ହେମୁ

ଜଣେ ହିନ୍ଦୁ। ତାଙ୍କର ସୌନ୍ଦର୍ଯ୍ୟ, ଶକ୍ତି ଓ ସଂପତ୍ତି କୌଣସିଟା ରାଜକୀୟ ଢଙ୍ଗରେ ଗଢ଼ା ନଥିଲା। ହିନ୍ଦୁମାନଙ୍କ ମଧ୍ୟରେ ତାଙ୍କ ପାଇଁ ମମତା ନ ଥିଲା। ସେ ଖଣ୍ଡା ଧରିବାକୁ ବା ଘୋଡ଼ ଚଢ଼ିବାକୁ ସକ୍ଷମ ନ ଥିଲେ। କିନ୍ତୁ ଧୂର୍ତ୍ତତା, ମାନସିକ ବଳ ଓ ଏକାଠି ରଖିବାର ମନୋବୃତ୍ତି ଅଧିକ ଥିଲା।

ଦିଲ୍ଲୀ ପାଖରେ ଅଲୱାର ସହିତ ହେମୁର ଦେଖାହେଲା– ନାଁ ଥିଲା ହେମଚନ୍ଦ୍ର–ଯବକ୍ଷାର ବୁଲାବିକାଳି, ପରିବା ବୁଲାବିକାଳି। ସେ ଆସ୍ତେ ଆସ୍ତେ ସରକାରୀ ବୁଲାବିକାଳି ହେଲେ। ବୁଦ୍ଧି ବଳରେ ଇସଲାମ ସାହଙ୍କର ଦୃଷ୍ଟି ଆକର୍ଷଣ କରି ଦିଲ୍ଲୀ ମାର୍କେଟର ସୁପରଭାଇଜର ହୋଇଗଲେ। ତା' ପରେ ନିଜର ଦକ୍ଷତା ବଳରେ ଇସ୍‌ଲାମ୍ ସାହଙ୍କର ଅମଳରେ ତାଙ୍କ ସୁପାରିଶ କ୍ରମେ ଇନଟେଲି-ଜେନସିଆ ବିଭାଗର ମୁଖ୍ୟ ହୋଇଗଲେ। ଆବଦିଲ ସାହା, ଇସଲାମ ସାହାଙ୍କର କନିଷ୍ଠ ପୁତ୍ର, ଯେତେବେଳେ ରାଜଗାଦିରେ ବସିଲେ, ମୁଖ୍ୟ ସଚିବ ରୂପେ ସବୁ ବିଭାଗର ଦାୟିତ୍ୱରେ ରହିଲେ। ଆବଦିଲ ସାହା ନାଚ ଆଖଡ଼ାରେ ବ୍ୟସ୍ତ ଥିଲାବେଳେ ହେମୁ ରାଜକାର୍ଯ୍ୟ ଚଳାଇଲେ। ସାହାଙ୍କର ଆନୁଗତ୍ୟ ଦେଖଇଲେ ବି ନିଜ ଇଚ୍ଛାରେ ସରକାର ଚଳାଇଲେ। ଆସ୍ତେ ଆସ୍ତେ ବିରାଟ ସଂପତ୍ତିର ମାଲିକ ହୋଇଗଲେ ଆଉ ସେସବୁକୁ ନିଜର ଶକ୍ତି ସାମର୍ଥ୍ୟ ବଢ଼ାଇବାରେ ଖର୍ଚ୍ଚ କରୁଥିଲେ। ଧନ ଓ କ୍ଷମତା ତାଙ୍କର ଦୁଇଗୋଡ଼ ପରି। ନିଜର ମାଲିକ ଓ ଅମିରମାନଙ୍କ ମନରେ ସନ୍ଦେହ ଉପୁଜିବାର ସୁଯୋଗ ବି ଦେଉ ନଥିଲେ। ଆଦିଲ ସାହାଙ୍କ ପାଇଁ ସେ ଖୁବ୍ କମରେ ବାଇଶିଟି ଯୁଦ୍ଧ ଜୟ କରିଛନ୍ତି। ହୁମାୟୁନ ଯେତେବେଳେ ଭାରତ ଫେରିଲେ ହିମୁ ସୁଯୋଗ ଆଶାରେ ବସିଥିଲେ। ତାଙ୍କ ଚାରିପଟେ ଘୁରି ବୁଲିଲେ। ହେମୁଙ୍କୁ ତାଙ୍କର ଭାଗ୍ୟ ଯେପରି ସାହାଯ୍ୟ କରିଥିଲା, ଭାରତର ଶାସକମାନଙ୍କ ଭାଗ୍ୟରେ ଏପରି ସୁଯୋଗ ଆସି ନଥିଲା। ଅଧିକ ସୁଯୋଗ ମିଳିଲା ହୁମାୟୁନଙ୍କ ମୃତ୍ୟୁପରେ। ଆଦିଲସାହାଙ୍କୁ ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବାପାଇଁ ପ୍ରବର୍ତ୍ତାଇଲେ, କିନ୍ତୁ ଦରବାର ଜ୍ୟୋତିଷ ବାରଣ କଲେ।

ପ୍ରଥମେ ଗୋଆଲିୟର ମୋଗଲ ଗଭର୍ଣ୍ଣର ଅଲ୍ଲି କୁଲିଖାଁକୁ ବିଦା କଲେ। ପରେ ସେ ଆଗ୍ରା ଅଭିମୁଖେ ଯାତ୍ରା କଲେ। ଆଗ୍ରାରେ ମୋଗଲ କମାଣ୍ଡର ଥିଲେ ଇସକନ୍ଦର ଉଦ୍‌ବେଗ ଖାଁ। ସେ ବିନାଯୁଦ୍ଧରେ ଆଗ୍ରା ସମର୍ପଣ କରି ଦିଲ୍ଲୀ ଟାଇଡ଼ବେଗର ସେନାବାହିନୀରେ ଯୋଗ ଦେଲେ। ଟାଇଡ଼ ବେଗ୍ ନିଜେ ପଂଜାବ

ପାଇଁ କାବୁଲ ଚାଲିଯିବାକୁ ଚାହୁଁଥିଲେ। କିନ୍ତୁ ସମସ୍ୟାର ସାମନା କରିବାକୁ ଚାହୁଁ ନଥିଲେ।

ହେମୁ ଦିଲ୍ଲୀ ଓ ଆଗ୍ରା ଦୁଇଟି ଯାକ ରାଜଧାନୀକୁ କବଜାକୁ ନେଇ ଆସିଲେ। ନିଜକୁ ରାଜା ବିକ୍ରମାଦିତ୍ୟ ବୋଲି ଘୋଷଣା କରି ତାଙ୍କ ମୁଣ୍ଡ ଉପରେ ଛତ୍ର ଧରିଲେ। ଏପରିକି ତାଙ୍କ ନାଁରେ ମୁଦ୍ରା ମଧ୍ୟ ପ୍ରଚଳନ କରିବାକୁ ଆଦେଶ ଦେଲେ। ଏହିପରି କୌଶଳପୂର୍ବକ ଆଫଗାନମାନଙ୍କୁ ହାତକୁ ନେଲେ ଓ ସେମାନେ ହିମୁଙ୍କୁ ମାନି ନେବାକୁ ବାଧ ହେଲେ। ଏଣେ ଟାରଡ଼ିବେଗ୍ ଅନେକ ଅସୁବିଧାର ସମ୍ମୁଖୀନ ହେଲେ। ଫଳରେ ଦଣ୍ଡଭୋଗ ମଧ୍ୟ ଭୋଗିଲେ। ସେ ବୈରାମ ଖାଁଙ୍କ ଆଦେଶ ମାନିବାକୁ ରାଜି ହେଲେ ନାହିଁ। ଚାହିଁଲେ କାବୁଲ ଯିବେ। ଟେରଡ଼ି ବେଗ୍ ବାବରଙ୍କ ସହିତ ଭାରତ ଆସିଥିଲେ ଜଣେ ଜଣାଶୁଣା କମାଣ୍ଡର ହିସାବରେ କିନ୍ତୁ ବର୍ତ୍ତମାନ କେବଳ ଶତ୍ରୁ ଭାବରେ ନୁହେଁ ଶତ୍ରୁଙ୍କ ମୁଖିଆ ଭାବରେ ବିତାଡ଼ିତ ହେଲେ।

ଟାରଡ଼ି ବେଗ୍ ଥିଲେ ସୁନି କିନ୍ତୁ ବୈରାମ ଖାଁ ସିହା। ବୈରାମ ଖାଁ ଥିଲେ ଖାଁ ସମ୍ଭ୍ରାନ୍ତବଂଶର ଆଉ ସଂପର୍କ ଥିଲା ପର୍ଶିଆନ ରାଜପରିବାର ସହିତ। ବାବରଙ୍କ ଦ୍ୱାରା ମନୋନୀତ ହୋଇ ଅମୀରପଦକୁ ଆସିଥିଲେ। ଟରଡ଼ି ଖାଁ ବୈରାମ ଖାଁଙ୍କୁ ଡରନ୍ତି। ତାଙ୍କର ଭୟ ଥିଲା ଯେ ବୈରାମ ଖାଁ ତାଙ୍କର ସବୁ ଯୋଜନା ଧୂଳିସାତ୍ କରିଦେବେ। ଶେଷରେ ଯୋଜନା ଧୂଳିସାତ୍ ହେଲା ଏବଂ ସେ ନିଜେ ରାଜଦଣ୍ଡରେ ଦଣ୍ଡିତ ହେଲେ।

ମୋଗଲମାନଙ୍କର କାବୁଲ୍ ପଳାଇବାର ଯୋଜନା ବନ୍ଦ ରହିଲା। ବୈରାମ ଖାଁ ଦିଲ୍ଲୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ। ହେମୁ ମଧ୍ୟ ପ୍ରସ୍ତୁତ ହୋଇଗଲେ। କାରଣ ତାଙ୍କ ଜୀବନରେ ଏହାହିଁ ହେବ ମୁଖ୍ୟ ସମାଧାନ। ପାନିପଥ ହିଁ ହେବ ଯୁଦ୍ଧକ୍ଷେତ୍ର। ମୋଗଲମାନଙ୍କ ପାଇଁ ଏ ପ୍ରକାର ଯୋଜନା ମଧ୍ୟ ସ୍ୱାଗତଯୋଗ୍ୟ। ଏଠାରେ କ୍ୱାଲି ଅଲି ଖାଁ ହେମୁଙ୍କ ସେନା ବାହିନୀକୁ ପରାସ୍ତ କରିଥିଲେ। ହେମୁଙ୍କୁ ପରାସ୍ତ କରିବାର ତିନୋଟି କାରଣ ଥିଲା। ହେମୁ ପାନିପଥ ଯିବା ପାଇଁ ପ୍ରସ୍ତୁତ ହେଉଥିଲା ବେଳେ ସେ ସ୍ୱପ୍ନ ଦେଖିଲେ କି ବନ୍ୟାରେ ଯେଉଁ ହାତୀ ଉପରେ ସେ ବସିଥିଲେ ସେ ହାତୀ ଭାସି ଯାଉଛି। ବୁଡ଼ିବାକୁ ଯିବାର ଶେଷ ସମୟରେ ଜଣେ ମୋଗଲ ସୈନ୍ୟ ତାଙ୍କ ବେକରେ ଚେନ ଗୁଡ଼ାଇ ତାଙ୍କୁ ଉଠାଇ ନେଇଯାଉଛନ୍ତି।

ଜ୍ୟୋତିଷମାନେ କହିଲେହେମୁଙ୍କର ପରାସ୍ତ ସୁନିଶ୍ଚିତ। ହେମୁ ଦାବି କଲେ କି ସ୍ୱପ୍ନର ବିପରୀତ ହିଁ ଘଟିବ। କିନ୍ତୁ ତହିଁ ପରଦିନ ବର୍ଷା ହେଲା। ବର୍ଷା ବେଳେ ବିଜୁଳି ଘଡ଼ଘଡ଼ିରେ ତାଙ୍କର ସବୁଠୁ ବୀରହାତୀ ମରିଗଲା।

ସେ ଯୁଦ୍ଧକ୍ଷେତ୍ରରେ ହାରିଗଲେ ମୋଗଲ। ହେମୁ ଆନନ୍ଦରେ ଆଗେଇଲେ ମୂଳପୋଛ କଲେ ମୋଗଲଙ୍କୁ। ସେମାନଙ୍କର କଟା ମୁଣ୍ଡ ଗଦା ଦେଖି ହେମୁଙ୍କ ମନ ଆନ୍ଦରେ ଭରିଗଲା। ହାତୀ ଉପରେ ହାଉଦାରେ ଚଢ଼ି ସେ ମୋଗଲମାନଙ୍କ ମଝିଦେଇ ବାହାରିଗଲେ। କିନ୍ତୁ ଭାଗ୍ୟର ବିଡ଼ମ୍ବନା 'କେଉଁ ଦିଗରୁ ଏକ ତୀର ଆସି ହେମୁଙ୍କ ଆଖିଭେଦ କଲା ଓ ମୁଣ୍ଡର ଆରପଟେ ବାହାରି ଗଲା। ହେମୁ ତଳେ ପଡ଼ିଗଲେ। ହାତ ଗୋଡ଼ ଚଳିଲା ନାହିଁ। ସୈନ୍ୟବାହିନୀର ସାହସ ଉଡ଼ିଗଲା। ସେମାନେ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ। ଧରା ହେଲେ ହେମୁ। ଆକବର ୩୦୦୦ ଘୋଡ଼ା ସବାର ନେଇ ଯୁଦ୍ଧକ୍ଷେତ୍ରଠୁ ଦୂରରେ ଥିଲେ। ହେମୁଙ୍କୁ ଯୁଦ୍ଧକ୍ଷେତ୍ରକୁ ଅଣାଗଲା। ହେମୁଙ୍କ ଶରୀର ଆକବରଙ୍କ ପାଖରେ ରଖି ବୈରାମ ଖାଁ ଆକବରଙ୍କୁ କହିଲେ 'ଏଇଟା ତୁମର ପ୍ରଥମ ଯୁଦ୍ଧ' ତୁମ ଖଣ୍ଡାରେ ତାଙ୍କ ଶରୀର ବିଦ୍ଧ କର। ଆକବର ମନା କଲେ। କହିଲେ; 'ନିର୍ବଳ ଦେହରେ ମୁଁ ମୋ' ଖଣ୍ଡା ଉଠାଇ ପାରିବି ନାହିଁ।' ବୈରାମ ନିଜେ ହେମୁଙ୍କୁ ଦୁଇଗଡ଼ କରିଦେଲେ। ମୁଣ୍ଡଟା କାବୁଲକୁ ଓ ଦେହର ଅନ୍ୟ ଅଂଶ ଦିଲ୍ଲୀକୁ ପଠାଇଲେ। ସିକନ୍ଦରଙ୍କ ପଳାତକ ସୈନ୍ୟଙ୍କୁ ଗୋଡ଼ାଇଲେ। ଆକବର ନିଜେ ଦିଲ୍ଲୀରେ ପହଞ୍ଚି ଗୋଟେ ମାସ ରହିଲେ। ପରେ ବୈରାମ ଓ ଆକବର ପଞ୍ଜାବ ଫେରି ଆସିଲେ ସିକନ୍ଦର ସାହା ସହିତ ଲଢ଼ିବା ପାଇଁ।

ପଞ୍ଜାବରେ ସେ ହାମିଦା ବାନୁ ବେଗମ୍ ଓ ଅନ୍ୟାନ୍ୟ ରାଜପରିବାର ସହ ମିଳିଲେ। ସେଠାରେ ଚାରିମାସ ରହିଲା ପରେ ଦିଲ୍ଲୀ ଫେରିଲେ। ଜଳନ୍ଧର ପାଖରେ ଆକବରଙ୍କର ପ୍ରଥମ ବିବାହ ସମ୍ପନ୍ନ ହେଲା– ବେରମଙ୍କ ନାମ ରୁକେୟେ 'ହିଣ୍ଡାଲଙ୍କର ଏକମାତ୍ର କନ୍ୟା'। ବୈରାମ ଖାଁ ନିଜେ ୫୦ ବର୍ଷ ବୟସରେ ଆକବରଙ୍କ ଆଉ ଜଣେ ସଂପର୍କୀୟ ଭଉଣୀକୁ ବିବାହ କଲେ। ଭାରତରେ ମୋଗଲ ଶାସନ ଦୃଢ଼ ହେଲା।

୧୫୫୮ରେ ରାଜାଭିଷେକର ଠିକ୍ ଅଢ଼େଇବର୍ଷ ପରେ ରାଜ ଦରବାର ସହ ଆକବର ଦିଲ୍ଲୀରୁ ଆଗ୍ରା ଉଦ୍ଦେଶ୍ୟ ଯାତ୍ରା କଲେ। ଛୋଟ ସ୍ତରରେ ଆକବରଙ୍କ

ରାଜୁତି ଆରମ୍ଭ ହେଲା। ବାହାରୁ ବୈରାମ ଖାଁ ଓ ଆକବର ଯେତେ ଅନ୍ତରଙ୍ଗ ବୋଲି ଦେଖାଯାଉଥିଲେ ମଧ୍ୟ ଭିତରେ ଭିତରେ ଦୁହେଁ ଦୁହିଁଙ୍କର ଶତ୍ରୁ ଥିଲେ। ଅବୁଲ ଫଜଲଙ୍କ ଭାଷାରେ 'ଆକବର ପରଦା ଅନ୍ତରାଳେ ଥାଇ ମଧ୍ୟ ସବୁ ବିଷୟର ସମ୍ୟକ ଚିତ୍ର ଆଙ୍କି ପାରୁଥିଲେ। ବୈରାମ ଖାଁ ତାଙ୍କ ତତ୍ତ୍ୱାବଧାରକ ଥିଲେ ସତ କିନ୍ତୁ ଦୁଇ ଦୁଇଥର ତାଙ୍କ ଆଦେଶକୁ ମାନି ନେଇ ପାରି ନଥିଲେ। ପ୍ରଥମରେ ହେମୁଙ୍କ ହତ୍ୟା ଓ ଦ୍ୱିତୀୟରେ ମାଲିକ୍‌ଙ୍କୁ ହତ୍ୟା। ଆସ୍ତେ ଆସ୍ତେ ମନୋମାଳିନ୍ୟ ବାହାରକୁ ଜଣା ପଡ଼ିଲା। ଆକବରଙ୍କ ମା ହାମିଦାବେଗମ୍ ଓ ଦୁଗ୍ଧଦାତ୍ରୀ ମା ମହମ ଅନାଗ, ଦୁଇଜଣଯାକ ପ୍ରାସାଦରେ ପହଞ୍ଚିବା ପରେ ଆକବର ଉପରେ ବୈରାମ ଖାଁଙ୍କ ଅଧିକାରରେ ବାଧା ଆସିଲା। ପ୍ରଥମ କଥା ଆକବର ଆଉ ଛୋଟ ପିଲା ହୋଇ ନଥିଲେ। ସେଥିପାଇଁ ପିଲାଙ୍କ ପରି ବ୍ୟବହାର ପାଇବା ପାଇଁ ଇଚ୍ଛା କରୁ ନଥିଲେ। ବୈରାମ ଖାଁ ତାଙ୍କୁ ସବୁ କାମରେ ବାଧା ଦେଉଥିଲେ। ତାଙ୍କୁ କୌଣସି ଗୁରୁତ୍ୱ ଦେଉ ନ ଥିଲେ ଏପରିକି ଘରୋଇ ଖର୍ଚ୍ଚକୁ ମଧ୍ୟ କମେଇ ଦେବା ଚେଷ୍ଟାରେ ଥିଲେ ଆଉ ନିଜର ଖର୍ଚ୍ଚସବୁ ବଢ଼େଇ ଦେଇଥିଲେ। ଏଇ କଥା ଜଣାପଡ଼ିଲା ଯେତେବେଳେ ଆକବର ଦ୍ୱିତୀୟ ସ୍ତ୍ରୀ ଗ୍ରହଣ କରିବାକୁ ଇଚ୍ଛା କରନ୍ତେ ବୈରାମ ଖାଁ ତା'ର ବିରୋଧ କଲେ। କାରଣ କାମାରନ ସ୍ତ୍ରୀଙ୍କର ଜଣେ ଭାଇର ଝିଅକୁ ସେ ବଧୂ ଭାବରେ ଗ୍ରହଣ କରିବାକୁ ଇଚ୍ଛା କଲେ। ସେଥିପାଇଁ ବୈରାମ ଖାଁଙ୍କ ବ୍ୟତୀତ ଅନ୍ୟ ଅମୀରମାନଙ୍କର ସହାୟତାରେ ଆକବର ଦ୍ୱିତୀୟ ବିବାହ କରିଥିଲେ। ବନ୍ଧୁତା ଭାଙ୍ଗି ଶତ୍ରୁଭାବ ଜାଗ୍ରତ ହେଲା। ପଞ୍ଜାବର ଏକ ଘଟଣା ସେଠାରେ ହାତୀ ଲଢ଼େଇରେ ଆକବରଙ୍କ ଦୁଇଟି ହାତୀ ବୈରାମଙ୍କ ଛାଉଣୀ ଭିତରକୁ ପଶି ଆସିଲେ। ଯଦିଓ ଏହା ଏକ ଦୁର୍ଘଟଣା ଥିଲା, କିନ୍ତୁ ବୈରାମ ଖାଁ ଏହାକୁ ଏକ ସୁପରିକଳ୍ପିତ ଯୋଜନା ବୋଲି ବାଖ୍ୟା କଲେ। ବୈରାମ ମହମ ଅନଗ ବା ଆତଖା ଖାଁ (ଆକବରଙ୍କ ଧର୍ମ ପିତା)ଙ୍କୁ ଦାୟୀ କଲେ। ଏଇଟା ସତ ଯେ ମହମ ଅନଗ ବୈରାମ ଖାଁଙ୍କ ଅବନତି ଚାହୁଁଥିଲେ।

ବୈରାମ ଖାଁ ମୋଗଲ ସାମ୍ରାଜ୍ୟର ସହ ସହଯୋଗୀ ରକ୍ଷକ ବୋଲି ନିଜକୁ ଭାବୁଥିଲେ ଏବଂ ସେ ସାମ୍ରାଜ୍ୟର ଏକ ଅବିଚ୍ଛେଦ ଅଂଗ ବୋଲି ଧରି ନେଇଥିଲେ। ଆକବର ତାଙ୍କ କବଳରୁ ଖସିଯିବା ପରେ ସେ ନିଜର ସ୍ଥିତି ଉପରେ ସନ୍ଦେହ ପ୍ରକାଶ କଲେ।

ମୋଗଲ ଦରବାରର ଶେଖ୍ ଗଦାଇ ନାମରେ ଜଣେ ମୁନି ସନ୍ଥଙ୍କ ଧର୍ମ ସଂସ୍କାରକ ମନ୍ତ୍ରୀ ପଦରେ ନିଯୁକ୍ତିକୁ ବୈରାମ ବିରୋଧ କଲେ। ଆହୁରି ଏକ ଘଟଣା ମଧ ଘଟିଲା। ହାରେମ କର୍ମଚାରୀ ଫାର ମହମ୍ମଦଙ୍କ ବିରୁଦ୍ଧରେ ଛୋଟ ଛୋଟ ଘଟଣାକୁ କେନ୍ଦ୍ରକରି ତାଙ୍କୁ ଚାକିରୀରୁ ବାହାର କରି ବୟାନାରେ ବନ୍ଦୀ କରି ରଖିଲେ ଓ ପରେ ତାଙ୍କୁ ମକ୍କା ଯାତ୍ରା ପାଇଁ ପଠାଇଦେଲେ!

୧୫୬୦ ବେଳକୁ ଆକବର ୧୮ ବର୍ଷ ହୋଇସାରିଥିଲେ। ସେ ନିଜ ଗୋଡ଼ରେ ନିଜେ ଠିଆ ହେବା ପାଇଁ ଇଚ୍ଛା କଲେ। ବୈରାମ ଜଣେ ମୁରବୀ ଭଳି ସବୁ କ୍ଷେତ୍ରରେ ଆକବରଙ୍କୁ ସାହାଯ୍ୟ କରି ଆସିଛନ୍ତି। ତାଙ୍କୁ ବାହାର କରିବା ଆକବରଙ୍କ ପକ୍ଷରେ ଏତେ ସହଜ ନ ଥିଲା। ସେଥିପାଇଁ ସେ ମହମ ଅନଗାଙ୍କର ସାହାଯ୍ୟ ନେଲେ। ଧୂର୍ତ୍ତ ମହମ ଆକବରଙ୍କୁ ବୈରାମଙ୍କ ଠାରୁ ଅଲଗା ରଖିବାକୁ ଚାହିଁଲେ। ଆକବର କିଛି ଲୋକଙ୍କୁ ନେଇ ଶିକାର ଉଦ୍ଦେଶ୍ୟରେ ଆଗ୍ରା ଗଲେ। ତା' ପରେ ନିଜ ରୋଗିଣା ମା'ଙ୍କୁ ଦେଖିବା ଉଦ୍ଦେଶ୍ୟରେ ଦିଲ୍ଲୀ ଗଲେ। ସାଙ୍ଗରେ ଥିଲେ ଅବଦୁଲ୍ କାସିମ୍- କାମାରନଙ୍କ ପୁଅ। ଫଳରେ ବୈରାମ ବିଦ୍ରୋହ କରିବାକୁ ଚାହିଁଲେ ମଧ କାହା ସହିତ ପରାମର୍ଶ କରି ପାରିବେ ନାହିଁ। ଏଣେ ମହିମ ଦିଲ୍ଲୀ ଗଭର୍ଣ୍ଣର ସିଆବୁଦ୍ଦିନ ଅହମ୍ମଦ ଖାଁଙ୍କୁ ଖବର ଦେଲେ କି ଦିଲ୍ଲୀ ଦୁର୍ଗର ସୁରକ୍ଷା ଓ ସୈନ୍ୟବଳକୁ ଧରି ଆକବରଙ୍କୁ ସ୍ୱାଗତ କରିବା ପାଇଁ। ଯୋଜନା ଅନୁଯାୟୀ କାର୍ଯ୍ୟ ସଂପନ୍ନ ହେଲା। ପହଞ୍ଚିଲା ପରେ ଆକବର ଅନ୍ୟ ଅମୀରମାନଙ୍କୁ ଚିଠି ଲେଖିଲେ କି ସେ ବୈରାମଙ୍କ ଠାରୁ ଅଲଗା ହୋଇଯାଉଛନ୍ତି! କେତେକ ଅମୀରଙ୍କୁ ଦିଲ୍ଲୀ ମଧ ଡକାଇଲେ। ଅମୀର୍‌ମାନେ ସେଇ ସୁଯୋଗରେ ବୈରାମଙ୍କଠାରୁ ଦୂରେଇ ଗଲେ।

ବୈରାମ ଖାଁ ବିଶ୍ୱାସ କରି ପାରିଲେ ନାହିଁ କି ସେ କ୍ଷମତାର ଡିଣ୍ଡିମ ବଜାଉଥିଲା ବେଳେ ତାଙ୍କ ଇଚ୍ଛା ବିରୁଦ୍ଧରେ ଏତେ ଘଟଣା ଘଟିଗଲା; ଘଟଣାର ସତ୍ୟାସତ୍ୟ ଜାଣି ସେ ରାଗି ନିଆଁ ହୋଇଗଲେ। ସେ ଆତ୍ମସମର୍ପଣ କରିଦେବେ ବୋଲି ଭାବି ସାଂଗେ ସାଂଗେ ଦିଲ୍ଲୀ ବାହାରିଲେ। ସମସ୍ତଙ୍କ ମନରେ ଭୟ ହେଲା। ସେମାନେ ଆକବରଙ୍କୁ ଉପଦେଶ ଦେଲେ ସେ ପ୍ରଥମେ ଲାହୋର ଓ ପରେ ଆବଶ୍ୟକ ମଣିଲେ କାବୁଲ୍ ଚାଲିଯାନ୍ତୁ। କିନ୍ତୁ ଏପରି ଭୀରୁ ପଦକ୍ଷେପ ନବାକୁ ଆକବର ପ୍ରସ୍ତୁତ ନ ଥିଲେ। ସେ ବୈରାମଙ୍କୁ ଆଦେଶ ଦେଲେ କି ସେ ଆଗ୍ରା ଫେରିଯାନ୍ତୁ।

ବୈରାମଙ୍କୁ ତାଙ୍କ ଲୋକ କହିଲେ କି ଏ ସବୁ ଯୋଜନା ମହମ ଅନଗଙ୍କର । ଆକବରଙ୍କୁ ବଂଚାଇବାକୁ ହେବ। କିନ୍ତୁ ଅମଙ୍ଗ ହେଲେ ବୈରାମ। ଶାସନକର୍ତ୍ତାଙ୍କ ସହିତ ଯୁଦ୍ଧ କରିବେ ନାହିଁ ବୋଲି ଠିକଣା କଲେ। ଯୋଜନା ପଛରେ ଯାହାର ହାତ ଥାଉ ନା କାହିଁକି ଆକବର ନିଜେ ଏ ଯୁଦ୍ଧର ସାମନା କରିବେ। ସେଥିପାଇଁ ବୈରାମ ଆଗେଇଲେ ନାହିଁ। ଅନେକ ଦିନରୁ ତୀର୍ଥ କରିବା ପାଇଁ ତାଙ୍କର ଇଛା ଥିଲା। ହେଲେ ଭାବୁଥିଲେ ତାଙ୍କ ବିନା ଶାସନକାର୍ଯ୍ୟ ଚଳିପାରିବ ନାହିଁ।

ଇତି ମଧରେ ସବୁ ଅଭିଯୋଗ ଏକାଠି କରି ଆକବର ବୈରାମ ଖାଁଙ୍କୁ ଏକ ଅଭିଯୋଗ ପତ୍ର ଲେଖିଲେ। ପ୍ରସ୍ତାବ ଦେଇଥିଲେ କି ସେ ତୀର୍ଥଯାତ୍ରାରେ ମକ୍କା ଯିବା ଉଚିତ। ଆଉ ଆଶ୍ୱାସନା ଦେଲେ କି ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ନାହିଁ।

ଅଭିଯୋଗ ପତ୍ରରେ ଆକବର ଲେଖିଥିଲେ କି "ଆପଣଙ୍କ ସେବା ଓ ଅନୁଶାସନ ଏ ପରିବାର ପ୍ରତି ଅନେକ ବୋଲି ପୃଥିବୀବାସୀ ଜାଣନ୍ତି। ଆମର ବାଳୁତ ବୟସ ପାଇଁ ଆମେ ଶିକାର ଇତ୍ୟାଦିରେ ବ୍ୟସ୍ତ ଥିଲୁ। ଦେଶର ରାଜନୈତିକ, ଅର୍ଥନୈତିକ ଓ ଆଭ୍ୟନ୍ତରୀଣ ସମସ୍ୟା ଉପରେ ନଜର ଦେଇ ନ ଥିଲୁ। ବର୍ତ୍ତମାନ ଆମର ଯୋଗ୍ୟତା ବଳରେ ଏ ସବୁ ଉପରେ ନଜର ଦେବା ପାଇଁ ସମର୍ଥ ହୋଇପାରିଛୁ। ଭାରତରେ ଯେତେ ଜମି ବାହିଁବେ ଦିଆହେବ ଯାହାଫଳରେ ଭାରତ ସଂକ୍ରାନ୍ତରେ ସମ୍ବାଦ ତାଙ୍କ ଲୋକମାନଙ୍କୁ ପଠାଇପାରିବେ।"

ବୈରାମ ଖାଁ ଜାଣିଥିଲେ କି ତୀର୍ଥଯାତ୍ରା ପାଇଁ ଆଦେଶ ଦେବାହିଁ ଏକ ଦଣ୍ଡ। ତଥାପି ତାଙ୍କ ମତରେ ଭାଗ୍ୟ ଏକ ଗଧ। ଆଦେଶ ମାତ୍ରେ ଆଗକୁ ଓ ଆଦେଶମାତ୍ରେ ପଛକୁ ଯାଏ। ପରେ ପରେ ସେ ତୀର୍ଥରେ ଯିବାର ଠିକଣା କଲେ।

ଶେଷରେ ଆକବର ଜିତିଲେ। ମହମ ଅନଗ ପିର ମହମ୍ମଦଙ୍କୁ ବୈରାମ ଖାଁଙ୍କୁ ଶୀଘ୍ର ବିଦା କରିବା ପାଇଁ ଆଦେଶ ଦେଲେ। ଏଥିରେ ବୈରାମ ରାଗିଯାଇ ବିଦ୍ରୋହ କରିବାକୁ ମନସ୍ଥ କଲେ। ସେ ମୋଗଲ ଅମୀରମାନଙ୍କୁ ଚିଠି ଲେଖିଲେ କି ମହମ ଅନଗଙ୍କର ତାଙ୍କୁ ବିନିଷ୍ଟ କରିବା ପାଇଁ ଏହା ଏକ ଯୋଜନା।

ଏକ ଚିଠି ଲେଖିଥିଲେ। ବୈରାମଙ୍କର ପ୍ରିୟାପ୍ରୀତି ତୋଷଣର ନିନ୍ଦା କରିଥିଲେ। ଏ ଚିଠି ମଧ୍ୟ ମହମ ଅନଗ ଲେଖାଇଥିଲେ। ଏଥିରେ ରାଗିଯାଇ ବୈରାମ ବିଦ୍ରୋହର ସୂତ୍ରପାତ କଲେ। କିନ୍ତୁ ଆକବର କହିଥିଲେ କି ଯଦି ବୈରାମ

ରାଜି ନ ହୁଅନ୍ତି ତାଙ୍କୁ ବଳତ୍କାର ପୂର୍ବକ ବାହାର କରି ଦିଆଯିବ। ଅନେକ ଛୋଟ ଛୋଟ ଯୁଦ୍ଧ ପରେ ବୈରାମ ସିଆଲିକ ପାହାଡ଼ ଓ ଦିଲ୍‌ୱାରା ଦୁର୍ଗରେ ଲୁଚି ରହିଲେ। ଆକବର ଏକଥା ଜାଣି ତାଙ୍କୁ ଉଚିତ ସମ୍ମାନ ଦେଇ ବାହାଟକୁ ଅଣାଇଲେ। ସେଥିରେ ବୈରାମ ଖାଁ ପ୍ରତି ହୋଇଥିବା ଅନ୍ୟାୟକୁ ଠିକ୍ ରାସ୍ତାକୁ ଆଣିପାରିଲେ। ସେ ତିନୋଟି ପ୍ରସ୍ତାବ ବୈରାମ ଖାଁଙ୍କୁ ଦେଲେ। ୧. ଆକବରଙ୍କ ବିଶ୍ୱସ୍ତ ଉପଦେଶ ଦାତା ଓ ନାମକୁ ମାତ୍ର ପ୍ରଧାନମନ୍ତ୍ରୀ ହୋଇରହିବେ। ୨. ଭାରତରର ଯେ କୌଣସି ଜାଗାରେ ଜାଗିର ନେଇ ରହିପାରିବେ।୩. ତୀର୍ଥଯାତ୍ରାରେ ମକ୍କା ଯିବେ।

ବୈରାମ ତୃତୀୟ ପ୍ରସ୍ତାବରେ ରାଜି ହେଲେ। ଦୁଇଦିନ ପରେ ଗୁଜରାଟରୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଗଲେ। ପଟାନଠାରେ ବିଶ୍ରାମ ନେଇ ତୀର୍ଥଯାତ୍ରୀଙ୍କ ଜାହାଜରେ ଯିବେ। ପଟାନଠାରେ ତାଙ୍କୁ ଆଫଗାନ ଦଳ ନିଜର ଆକ୍ରୋଶ ପାଇଁ ହତ୍ୟା କଲେ। ତାଙ୍କ ଶରୀରକୁ କବର ଦେବା ପାଇଁ କେହି ନ ଥିଲେ। କିଛିଦିନ ପରେ କିଛି ଫକୀର ଓ ଗରୀବ ଲୋକ ମିଶି ତାଙ୍କ ମାଟିକୁ ଫେରାଇଦେଲେ।

ଅବଦ୍ଧଲ ଫଜଲଙ୍କ ଭାଷାରେ ''ଏପରି ଏକ ମହାନ ଲୋକଙ୍କର ଏପରି ଏକ ଦୁଃଖଦ ଘଟଣା। ଅନେକ ଭଲ ଗୁଣରେ ଭୂଷିତ ଅତି ଉତ୍ତମ ଲୋକ। ନିଜର ସୌଜନ୍ୟତା, ନ୍ୟାୟପରାୟଣ ଉପରେ ବିଶ୍ୱାସ ରଖି ହୃଦୟର ଅନ୍ତରମ ପ୍ରଦେଶରୁ କାମ କରିଥିଲେ।

ବାଦାଉନି କହିଲେ, ଅଭିଳାଷ, ସାଧୁତା, ଭଦ୍ରତା, ସନ୍ତୋଷର ସହ ଉଦାର ପଣିଆ, ନମ୍ରତା, ଆନୁଗତ୍ୟ ସବୁ ଗୁଣରେ ଭୂଷିତ ବୈରାମ ଖାଁ। ତାଙ୍କର ଜ୍ଞାନ, କଠୋର ପରିଶ୍ରମ, ଚେଷ୍ଟା, ଦକ୍ଷତା ସବୁ ଉପରେ ହିନ୍ଦୁସ୍ତାନର ଦ୍ୱିତୀୟବାର ଆକ୍ରମଣ ନିର୍ଭର କରୁଥିଲା।

ବୈରାମ ଖାଁ କ୍ୟାମ୍ପରେ ଲୁଟତରାଜ ହୋଇଥିଲା। ସୁରକ୍ଷିତ ଥିଲେ ତାଙ୍କର ପରିବାର। ପରେ ଆକବର ସେମାନଙ୍କୁ ଦିଲ୍ଲୀ ନେଇ ଆସିଲେ। ବୈରାମଙ୍କର ବିଧବା ପତ୍ନୀଙ୍କୁ ବିବାହ କଲେ। ତାଙ୍କ ୪ ବର୍ଷର ପୁଅ ଅବଦୂଲ ରହିମଙ୍କର ଦାୟୀତ୍ୱ ନେଲେ। ପରେ ବୈରାମ ଖାଁଙ୍କ ପୁଅ ବହୁତ ନାମ କରି ବାପାଙ୍କ ପରି ହୋଇପାରିଲେ।

ବୈରାମ ଖାଁଙ୍କ ମୃତ୍ୟୁ ପରେ ଆଗ୍ରାରେ ସରକାର ଚଳାଇବା ପାଇଁ ଆଉ ଗୋଟାଏ ଶକ୍ତି ବାହାରିଲା କାରଣ ଆକବର ଏବେ ବି 'ପରଦା ଅନ୍ତରାଳେ'

ରହିଥିଲେ। ଅବଦୁଲ ଫଜଲ କଥା ଅନୁସାରେ ମହମ ଅନଗ ରାଜକାର୍ଯ୍ୟ ଚଳାଇଲେ। ଯଦିଓ ବାହାଦୁର ଖାଁ ଭକିଲ ଥଲେ ତଥାପି ମହମ ଅନଗଙ୍କ ପରିଚାଳନାରେ ଦେଶର ରାଜନୈତିକ, ଅର୍ଥନୈତିକ ଓ ଆଭ୍ୟନ୍ତରୀଣୀୟ ସମସ୍ୟାର ସମାଧାନ ହୋଇପାରୁଥିଲା।

ଅନେକ ପରିମାଣକ୍ଷରେ ସେ ବୈରାମ ଖାଁଙ୍କର ଅନୁରୂପ ଥିଲେ। ବୈରାମ ଖାଁଙ୍କ ଭଳି ଅର୍ଥପୂର୍ଣ୍ଣ, ସୂକ୍ଷ୍ମବୁଦ୍ଧିମରା, କାର୍ଯ୍ୟଦକ୍ଷ ଓ ସଂଯତ ଥିଲେ। ନିଜକୁ ଆସ୍ତେ ଆସ୍ତେ ଉପରକୁ ଆଣୁଥିଲେ ମଧ୍ୟ ସେ ଆକବରଙ୍କ ଆନୁଗତ୍ୟ ସ୍ୱୀକାର କରି ଆକବରଙ୍କ ଇଚ୍ଛା ଓ ଆଦେଶକୁ ଅମାନ୍ୟ କରି ନ ଥିଲେ। ସେ ଏ ପ୍ରକାର କାର୍ଯ୍ୟରୁ ଓହରିବା ବେଳକୁ ତାଙ୍କ ମନରେ କୌଣସି ବିରୋଧଭାବ ନଥିଲା। କିନ୍ତୁ ବୈରାମ ଖାଁ ରାଜ୍ୟ ପାଇଁ କାମ କରି ନିଜର ଖ୍ୟାତି ଅର୍ଜନ କରିଥିଲେ। ତାଙ୍କର ଏକ ସ୍ୱାଧିନ ସଂଗଠନ ସମ୍ରାଟଙ୍କଠାରୁ ଅଲଗା ଭାବରେ ଗଢ଼ି ଉଠିଥିଲା। କିନ୍ତୁ ମହମ ଅନଗଙ୍କର ନିଜର ଅଲଗା ଶକ୍ତି ଗଢ଼ି ଉଠି ନ ଥିଲା। ସମ୍ରାଟଙ୍କ ସହିତ ଯଥାଯୋଗ୍ୟ ସଂପର୍କ ରହିଥିଲା ଆଉ ସେଇଟା ଅନେକ ଦିନ ପର୍ଯ୍ୟନ୍ତ ଯାଇ ପାରିଥାନ୍ତା। କିନ୍ତୁ ମହମ ଅନଗଙ୍କର ପୁତ୍ର ଅଧମ ଖାଁଙ୍କର ଅବିଶ୍ୱାସନୀୟ କାର୍ଯ୍ୟକଳାପ ଅସହ୍ୟ ଥିଲା। ମହମ ନିଜେ ମଧ୍ୟ ତାଙ୍କର ପୁତ୍ରର ବାକ୍ୟ ଓ କାର୍ଯ୍ୟକଳାପ ଯେପରି ଆକବରଙ୍କ ବିରୁଦ୍ଧରେ ନ ଯାଏ ସେଥିପ୍ରତି ସତର୍କ ଥିଲେ। କିନ୍ତୁ ଅଧମ ଖାଁ ସମ୍ରାଟଙ୍କର ଅନୁଗତ ନ ଥିଲେ ଆଉ ମହମଙ୍କର ପତନର କାରଣ ମଧ୍ୟ। ୧୫୬୧ରେ ଅଧମ ଖାଁଙ୍କୁ ପୀର ମହମ୍ମଦଙ୍କ ସହ ଆକବର ମାଲୱା ଅଧିକାର କରିବାକୁ ପଠାଇଥିଲେ। ସେଠାରେ ବଜ ବାହାଦୁର (ସୁର ପଠାନ) ରାଜୁତି କରୁଥିଲେ। ବଜବାହାଦୁର ରାଜକାର୍ଯ୍ୟରେ ମନ ନ ଦେଇ ନାଚ ଗୀତରେ ଅଧିକ ସମୟ କଟାଇଥିଲେ। ଫଳରେ ମାଲୱା ଅତି ସହଜରେ ଅଧିକାର କରିନେଲେ ଆକବର।

ବଜ ବାହାଦୁର ନିଜେ ଥିଲେ ପ୍ରେମ ପାଗଳ। ରୂପମତୀ ତା' ନିଜ ରୂପ ପାଇଁ ସାରା ବିଶ୍ୱରେ ଖ୍ୟାତି ଲାଭ କରିଥିଲା। ସେ ଥିଲା ଜଣେ ଯାଦୁକରୀ। ତାରି ପ୍ରେମରେ ପାଗଳ ଥିଲେ ବଜ୍ ବାହାଦୁର। ଏ ଯୁଦ୍ଧରେ ବଜ୍ ବାହାଦୁର ଖସି ପଳାଇଲେ। କିନ୍ତୁ ତାଙ୍କ ହାରେମ, ଅନ୍ୟ ଧନସଂପତ୍ତି ସବୁ ମୋଗଲଙ୍କ ହାତରେ ପଡ଼ିଲା। ରୂପମତୀ ମଧ୍ୟ ଆହତ ଅବସ୍ଥାରେ ଧରାହେଲେ। କିନ୍ତୁ ସେ ଅଧମ ଖାଁଙ୍କ ବାହୁରେ ଆବଦ୍ଧ ହେବା ପୂର୍ବରୁ ବିଷ ପିଇ ଆତ୍ମହତ୍ୟା କଲେ।

ବଜ ବାହାଦୂରଙ୍କ ପ୍ରତ୍ୟେକ ସଦସ୍ୟ ଏପରିକି ଚିତ୍ତୋର ଦରବାର ମଧ୍ଯ ଆକବରଙ୍କ ଆଶ୍ରୟରେ ରହିଲେ। ଘଟଣାକ୍ରମେ ପୁଣି ଥରେ ରାଜଧାନୀ ଫେରି ପାଇବା ଉପରେ ଥିଲେ। ଶେଷରେ ବଜ୍ ବାହାଦୂର ଆକବରଙ୍କ ପାଖରେ ଆତ୍ମସମର୍ପଣ କଲେ। ଆକବର ନିଜେ ଜଣେ ସଂଗୀତଜ୍ଞ ଥିବାରୁ ତାଙ୍କୁ ଗ୍ରହଣ କରିନେଇ ୨୦୦୦ ସୈନିକଙ୍କର କମାଣ୍ଡର କରିଦେଲେ। ମଲାପରେ ସମ୍ମାନର ସହିତ ଉଜ୍ଜୟିନୀରେ କବର ଦିଆଗଲା– ପାଖରେ ରହିଲା ରୂପମତୀର ଦେହାବଶେଷ। ବଜ ବାହାଦୂରଙ୍କ ପତନ ପରେ ମାଲୱାରେ ହଣାକଟା ଆରମ୍ଭ ହେଲା। ପୀର ମହମ୍ମଦ ଏ ବିଷୟରେ ଆକବରଙ୍କୁ ଜଣାଇଲେ। ଆକବର କୌଣସି ଉତ୍ତର ଦେଲେନି। ପୀର ମହମ୍ମଦ ଆକବରଙ୍କ ଉପରେ ରାଗି ଯାଇଥିଲେ। କାରଣ ଥିଲା କି ଅଧମ ଖାଁଙ୍କ ସବୁ ସଂପତ୍ତି, ସୈନ୍ୟବଳ ଆକବରଙ୍କ ପାଖରେ ସମର୍ପଣ ନ କରି ନିଜ ପାଇଁ ଅନେକ ଅଂଶ ରଖି ନେଉଥିଲେ। ଏଇଟା ମୋଗଲ ଶାସନର ବିରୁଦ୍ଧ ଥିଲା। ମହମ ଅନଗର ସମ୍ବାଦଦାତା ସେଠାରେ ପହଞ୍ଚିବା ପୂର୍ବରୁ ଆକବର ଆଗ୍ରାରୁ ଅଧମ ଖାଁଙ୍କ ନିକଟରେ ପହଞ୍ଚିଗଲେ। ଏପରିକି ମହମ ଅନଗ ନିଜେ ମଧ୍ଯ ସେଠାରେ ପହଞ୍ଚିଲେ ପୁଅର ଦୋଷ ଘୋଡ଼ାଇବା ପାଇଁ।

ଫେରିବା ରାସ୍ତାରେ ଅଧମ ଖାଁ ସଂପତ୍ତି ସହ ଦୁଇଟି ସୁନ୍ଦର କନ୍ୟା ମଧ୍ଯ ଆକବରଙ୍କୁ ଭେଟି ଦେଇଥିଲେ। କିନ୍ତୁ ବାଟରେ ସେମାନେ ହଜିଗଲେ। ଅଧମ ଖାଁ ମଧ୍ଯ। ତାଙ୍କୁ ଖୋଜିବା ପାଇଁ ଲୋକ ପଠାଗଲା। ପ୍ରକୃତରେ ମହମ ଅନଗ ସେ କନ୍ୟାମାନଙ୍କୁ ହତ୍ୟା କରିଥିଲେ। ଆକବର ଏ କଥା ଜାଣି ମଧ୍ଯ ମହମଙ୍କୁ ଜଣାଇଲେ ନାହିଁ। ମନେ ମନେ ଆଘାତ ପାଇଲେ ଓ ମହମ ଓ ଆକବରଙ୍କ ଦୂରତା ବଢ଼ିଗଲା। ୧୫୬୧ ନଭେମ୍ବର ବେଳକୁ ମୁନିମ ଖାଁଙ୍କୁ (ମହମ ଅନଗଙ୍କର ଆଉ ଜଣେ ବିଶ୍ୱସ୍ତ) ଭକିଲ ପଦରୁ ବାହାର କରି ଅତଗା ଖାଁଙ୍କୁ ସେ ପଦବୀ ଦେଇଦେଲେ। କେବଳ ମହମ ଅନଗଙ୍କର କ୍ଷମତାକୁ କମ କରିବା ପାଇଁ। ଏହା ସବୁ ମହମ ମଥାପାତି ସହି ନେଲେ ସତ କିନ୍ତୁ ମାଲୱାରୁ ଅଧମ ଖାଁଙ୍କୁ ଡକାଇଲେ।

ଆକବର ହାରେମରେ ବିଶ୍ରାମ ନେଉଥିଲେ। ତାଙ୍କ ପ୍ରଧାନ ଅଫିସରମାନେ ପାଖ ହଲରେ ଦେଶର ଘଟଣା ଅନୁଧ୍ୟାନ କରୁଥିଲେ। ଅଧମ ଖାଁ ଘର ଭିତରକୁ ପଶି ଆସି ଖୋଲା ଖଣ୍ଡା ଧରି ଅଗତ ଖାଁଙ୍କ ଆଗରେ ଠିଆ ହୋଇଗଲେ। ଅଧମ ଖାଁଙ୍କ ଉପସ୍ଥିତିରେ ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ଅଗତ ଖାଁ ତାଙ୍କୁ କୋଳେଇ ନେବା

ପାଇଁ ତାଙ୍କ ଆଡ଼କୁ ଅଗ୍ରସର ହେଲାବେଳେ ଅଧମ ଖାଁ ତାଙ୍କୁ ମାରି ତଳେ ପକାଇଦେଲେ। ଜଣେ ଅମିର ନିଜକୁ ରକ୍ଷାକରିବା ପାଇଁ ଦୌଡ଼ି ବାହାରକୁ ପଳାଇ ଗଲାବେଳେ ସେ ମଧ୍ୟ ଶିକାର ହେଲେ।

ଅଧମ ଖାଁଙ୍କୁ ଅଟକେଇବାକୁ କେହି ନ ଥିଲେ। ସେ ଖୋଲା ଖଣ୍ଡା ଧରି ପାଚେରୀ ଡେଇଁ ହାରେମ ଆଡ଼କୁ ଧାଇଁଲେ। ଠିକ୍ ସେତିକିବେଳେ ହାରେମ ଦରଓ୍ୱାନ ଗେଟ ବନ୍ଦ କରିଦେଲେ। ଗୋଳମାଳ ଶୁଣି ଆକବର ଉଠି ପଡ଼ିଲେ। ଜଣେ ପୁରୁଣା ସେବକ ତାଙ୍କୁ ସବୁ ଜଣାଇଲା ପରେ ସେ ନିଜକୁ ଘୋଡ଼ାଇ ବାହାରିଗଲେ। ରାସ୍ତାରେ ଜଣେ କେହି ତାଙ୍କୁ ହାତକୁ ଖଣ୍ଡା ଓ ତଲଓ୍ୱାର ବଢ଼ାଇ ଦେଲା। ବାଟରେ ଦେଖା ହେବ୍ଲ ଅଧମ ଖାଁ। ଅଧମ ଖାଁ ଆକବରଙ୍କୁ ଆକ୍ରମଣ କଲେ; କିନ୍ତୁ ଆକବର ବଳପ୍ରୟୋଗ ପୂର୍ବକ ଅଧମ ଖାଁଙ୍କୁ କାବୁ କରିଦେଲେ। ଅଧମ ଖାଁ ବେହୋସ ହୋଇଗଲେ। ତାଙ୍କୁ ବାନ୍ଧି ଛାତ ଉପରୁ ଫୋପାଡ଼ି ଦେବା ପାଇଁ ଆଦେଶ ଦେଲେ। ଫିଙ୍ଗା ହେବା ପରେ ମଧ୍ୟ ସେ ମଲେ ନାହିଁ।

ଏ ଗଣ୍ଡଗୋଳ ଭିତରେ ମହମ ଅନଗ ତାଙ୍କ ଘରୁ ବାହାରି ଆସିଲେ। ତାଙ୍କ ପୁଅ କଥା ଜାଣି ଦେଖିବା ପାଇଁ ଆକବରଙ୍କୁ ଅନୁରୋଧ କଲେ। ଆକବର ମହମଙ୍କୁ ଏ ଅବସ୍ଥାରେ ତାଙ୍କ ପୁଅଙ୍କ ଦେଖିବାପାଇଁ ଇଚ୍ଛା କରୁ ନ ଥିଲେ। ପୁଅକୁ ବଂଚେଇବାର ଅନ୍ୟ ରାସ୍ତା ନ ପାଇ ସେ ମଧ୍ୟ ବେହୋସ ହୋଇଗଲେ। ମହମ ଆଉ ଭଲ ହେଲେ ନାହିଁ ଓ କିଛିଦିନ ପରେ ମୃତ୍ୟୁ ବରଣ କଲେ। ଆକବରଙ୍କ ଜୀବନର ପ୍ରଥମ ପର୍ଯ୍ୟାୟ ଶେଷ ହେଲା। ପର ପର୍ଯ୍ୟାୟ ମଧ୍ୟ ଆରମ୍ଭ ହୋଇଯାଇଥିଲା। ୪ ମାସ ପୂର୍ବରୁ ଆକବର ତୀର୍ଥଯାତ୍ରାରେ ଆଜମୀର ଯାଇଥିଲେ। ଅମ୍ବରର ରାଜା ଭାରମଲ୍ଲ ଜଣେ ରାଜପୁତ ରାଜା ତାଙ୍କୁ ଅଭ୍ୟର୍ଥନା ଜଣାଇଲେ। ରାଜା ତାଙ୍କ ବଡ଼ ଝିଅକୁ ବିବାହ କରିବାକୁ ଅନୁରୋଧ କଲେ। ଅନୁରୋଧ ରକ୍ଷାକରି ସମ୍ଭଲଠାରେ ଆଜମୀରରୁ ଫେରିବା ରାସ୍ତାରେ ବିବାହ କଲେ।

କିଛି ଅସମ୍ଭବ ନଥିଲା; କିନ୍ତୁ ଆକବର ସେ ହିନ୍ଦୁ ରାଜକୁମାରୀଙ୍କୁ ହିନ୍ଦୁ ହୋଇ ରହିବାର ଅନୁମତି ଦେଲେ ଓ ପ୍ରାସାଦ ଭିତରେ ହିନ୍ଦୁ ଦେବତାଙ୍କୁ ରଖିବା ପାଇଁ ଆଦେଶ ଦେଲେ। ଆଉ ନିଜେ ମଧ୍ୟ ବେଳେ ବେଳେ ସେ ପୂଜାରେ ଅଂଶ ଗ୍ରହଣ କରୁଥିଲେ। ଏହାହିଁ ଏବେକାର ଯୋଧା ଆକବରରର କାହାଣୀ। ସେତେବେଳକୁ ଆକବର କୋଡ଼ିଏ ବର୍ଷର। ଭବିଷ୍ୟତ ପାଇଁ ଅପେକ୍ଷାରତ।

ମେୱାର ପରେ କିଛି ବର୍ଷ ପାଇଁ ସ୍ଥିର ପଡ଼ିଗଲେ। ସେ ସମୟରେ ନୂଆ ରାଜଧାନୀ ସିକ୍ରି ବନାଉଥିଲେ। ତା' ପରେ ତାଙ୍କର ଆଖିଥିଲା ଗୁଜରାଟ ଉପରେ। ବୈଦେଶିକ ବ୍ୟାପାର ପାଇଁ ଏହି ଜାଗାଟି ପ୍ରସ୍ତୁତ ଥିଲା। କିନ୍ତ ଆକବରଙ୍କ ଆଉ ଗୋଟିଏ କାରଣ ଥିଲା ଯେ ବିଦ୍ରୋହୀ ମିର୍ଜାମାନେ (ଯେଉଁମାନେ ହିନ୍ଦୁସ୍ଥାନରୁ ବାହାରି ଯାଇଥିଲେ ସେମାନେ) ଗୁଜରାଟରେ ଏକ ମେଳି କରିଥିଲେ। ତା' ଛଡ଼ା ଗୁଜରାଟର ଆଇନ ଶୃଙ୍ଖଳା ରକ୍ଷା କରିବା ପାଇଁ ତାଙ୍କୁ ନିମନ୍ତ୍ରଣ ମଧ୍ୟ ଆସିଥିଲା। ୧୫୭୨ରେ ସିକ୍ରିରୁ ଗୁଜରାଟ ଅଭିମୁଖେ ଯାତ୍ରା କଲେ। ଗୁଜରାଟ ପହଞ୍ଚିବା ପାଇଁ ୨ ମାସ ନେଲା। ଗୁଜରାଟର ରାଜା ମୁଜାଫର ସାହା ଆକବରଙ୍କ ନାଁ ଶୁଣି ଗୋଟେ ଶସ୍ୟକ୍ଷେତ୍ରରେ ଲୁଚିଗଲେ। ଗୁଜରାଟ ଦଖଲ ପରେ ସେ ରାଜାଙ୍କୁ ସେ ପେନସନ୍ ଦେଲେ। ସେଠୁ ଅହମଦାବାଦ ବାହାରିଲେ। ପ୍ରଥମଥର ପାଇଁ ସମୁଦ୍ର ଦେଖିଲେ। ସମୁଦ୍ରର ଆନନ୍ଦ ଉପଭୋଗ କରିବା ପାଇଁ ଏକ ଡଙ୍ଗାରେ ସପ୍ତାହେ ଧରି ଘୁରି ବୁଲିଲେ। ଏଇଠାରେ ସେ ନିଜର ବଳପ୍ରଦର୍ଶନ କଲେ। ମିର୍ଜା ମାନଙ୍କର ସୈନ୍ୟବଳ ଯଥେଷ୍ଟ ଥିଲା; କିନ୍ତୁ ଆକବର ନିଜର ମୁଷ୍ଟିମେୟ ସୈନ୍ୟଙ୍କ ସାହାଯ୍ୟରେ ମିର୍ଜାଙ୍କୁ ବାହାଗ କରି ସେ ସେଠାରୁ ସୁରଟ ଅଭିମୁଖେ ଯାତ୍ରା କଲେ। ସେଠି ସେ ପର୍ତ୍ତୁଗୀଜମାନଙ୍କୁ ଦେଖି ସେମାନଙ୍କୁ ସାଦର ଅଭିନନ୍ଦନ ଜଣାଇଲେ। ୧୫୭୩ରେ ତାଙ୍କ ଭାଇ ଅଜିଦ କୋକାଙ୍କୁ ଗୁଜରାଟର ଗଭର୍ଣ୍ଣର ପଦରେ ନିଯୁକ୍ତି ଦେଇ ସିକ୍ରି ଫେରି ଆସିଲେ। ସିକ୍ରିର ନାଁ ରଖିଲେ ଫତେପୁର ସିକ୍ରି ଅର୍ଥାତ 'ବିଜୟର ରାଜ୍ୟ'। ଗୁଜରାଟରେ ବୁଲନ୍ଦ ଦରଜା, ଜାମା ମସଜିଦର ଗେଟ ଭାବରେ ତିଆରି କଲେ। କିନ୍ତୁ ଗୁଜୁରାଟ ଗଣ୍ଡଗୋଳ ସରି ନ ଥିଲା। ମିର୍ଜାମାନେ ପୁଣି ଥରେ ଗୁଜରାଟକୁ ଫେରି ଆସିଥିଲେ। ଫଳରେ ତିନିମାସ ସିକ୍ରିରେ ରହି ସେ ପୁଣି ଗୁଜରାଟ ଫେରିଗଲେ। ସଂଗରେ ନେଲେ ୩୦୦୦ ଅଶ୍ୱାରୋହୀ। ଯୁଦ୍ଧ ହେଲା। ବିଜୟ ପାଇ ସେ ଶତ୍ରୁମାନଙ୍କର କଟାମୁଣ୍ଡର ଏକ ଖୁମ୍ବ ଯୁଦ୍ଧକ୍ଷେତ୍ରରେ ତିଆରି କରି ବିଜୟର ଧ୍ୱଜା ଉଡ଼ାଇଲେ। ପରେ ଫେରି ଆସିଲେ ସିକ୍ରି। କିଛିଦିନ ପରେ ଗୁଜରାଟ ରାଜା ଟୋଡ଼ରମଲ୍ଲଙ୍କୁ ଗୁଜରାଟରେ ଏକ ରାଜସ୍ୱ ଶାସନ ଜାରି ରଖିବାକୁ କହିଲେ। ଫଳରେ ସେଠୁ ବାର୍ଷିକ ୫ ମିଲିଅନ ଟଙ୍କା ରାଜସ୍ୱ ହିସାବରେ ପାଉଥିଲେ।

ଗୁଜରାଟ ପରେ ବଙ୍ଗଳାକୁ ଗୋଟିଏ ସ୍ୱାଧୀନ ପ୍ରଦେଶରେ ପରିଣତ କରାଇଲେ। ସେଠରେ ସୁର ବଂଶଜ ସୁଲେମାନ କରରାନୀ ନାମରେ ଜଣେ ରାଜା

ରାଜୁତି କରୁଥିଲେ। ସେ ଭଦ୍ର ଥିଲେ ଓ ଆକବରଙ୍କ ଆଧିପତ୍ୟକୁ ମାନି ନେଇଥିଲେ। କିନ୍ତୁ ସୁଲେମାନଙ୍କ ପରେ ତାଙ୍କ ସାନପୁଅ ଦାଉଦ ଜୋରଜବରଦସ୍ତି ଗାଦି ମାଡ଼ି ବସିଲେ ଆଉ ଆକବରଙ୍କ ଆଧିପତ୍ୟକୁ ଅମାନ୍ୟ କଲେ। ସେଥିପାଇଁ ଆକବର ବିହାର ଗଭର୍ଣ୍ଣର ମୁନିମ୍ ଖାଁଙ୍କୁ ଦାଉଦଙ୍କୁ ଦମନ କରିବା ପାଇଁ କହିଲେ। କିନ୍ତୁ କିଛି ଫଳ ହେଲାନି। ଆକବର ନିଜେ ବଙ୍ଗଳା ଗଲେ ସାଙ୍ଗରେ ଥିଲେ ପରିବାର, ଶିଶୁପୁତ୍ରମାନେ, ରାଜଦବାରର ମହିଳାମାନେ ସମସ୍ତେ। ପାଟନା ଠାରେ ଦାଉଦ ସହିତ ଭେଟ ହେଲା। ଆକବରଙ୍କ ସର୍ତ୍ତରେ ରାଜି ନ ହୋଇ ରାତାରାତି ପଳାୟନ କଲେ। ବଙ୍ଗଳା ଅନେକଦିନ ପରେ ତାଙ୍କ ହାତକୁ ଆସିଲା।

ଆକବର ୫୦ ବର୍ଷ ଧରି ରାଜୁତି କରିଥିଲେ। ନିଜେ ପାଠ ନ ପଢ଼ି ମଧ୍ୟ ୨୪,୦୦୦ ହସ୍ତଲିପି ଥାଇ ଏକ ଲାଇବ୍ରେରୀ କରିଥିଲେ। ଚିତ୍ର କରିବାରେ ତାଙ୍କର ସଉକ ଆଉ ଗୀତ ପାଇଁ ତାଙ୍କର ପ୍ରବଳ ସଉକ।

ସବୁ ଇମାରତକୁ ମରାମତି କରେଇବା ଥିଲା ତାଙ୍କର ସାଧନା। ତାଙ୍କ ଦରବାରରେ ସଂଗୀତାଚାର୍ଯ୍ୟ ତାନେସନ ଥିଲେ। ଆଉ ଥିଲେ ନବରତ୍ନ—ଯେଉଁମାନେ କି ତାଙ୍କ ବିକ୍ରମର ପରିଚୟ ଦେଉଥିଲେ। ରାଜା ମାନସିଂହ, ଟୋଡ଼ରମଲ୍ଲ, ଭଗବାନ ଦାସ, ବୀରବଳ (ଅସଲ ନାଁ ଥିଲା ମହେଶ ଦାସ), ଫୈଜୀ, ଅବଦୁଲ ଫଜଲ ଇତ୍ୟାଦି। ବୀରବଲଙ୍କ ପ୍ରତି ଅଧିକ ସ୍ନେହ ଥିଲା। ଥରେ କାବୁଲକୁ ସାହାଯ୍ୟ ପଠାଇବାର ଥିଲା। ଆକବର ବୀରବଲ୍ଲଙ୍କୁ ଶେଷରେ ତାଙ୍କ ଅନିଚ୍ଛା ସତ୍ୱେ ପଠାଇଲେ। ମୃତ୍ୟୁ ହେଲା ବୀରବଲ୍ଲଙ୍କର ବୀରବଲ ଅନେକ କବିତା ପ୍ରଣୟନ କରିଥିଲେ।

ଆକବରଙ୍କ ଦିଲ୍ଲୀ ସୁବାରେ ପରିଣତ ହେଲା ଓ ସିକ୍ରିରୁ ରାଜଧାନୀ ଆଗ୍ରାକୁ ଉଠାଇ ନିଆଗଲା। ରାଜଗାଦିରେ ବସିବାର ଦୁଇବର୍ଷ ଭିତରେ ସୁର ରାଜବଂଶଙ୍କୁ ହରାଇଲେ। ବଙ୍ଗଳା ଓ ଖଣ୍ଡଦେଶ ଜୟକରି ତାଙ୍କ ସାମ୍ରାଜ୍ୟ ହିମାଳୟଠୁ ନର୍ମଦା ଓ ହିନ୍ଦୁକୁଶଠାରୁ ବ୍ରହ୍ମପୁତ୍ର ପର୍ଯ୍ୟନ୍ତ ବିସ୍ତାର କଲେ । ହିନ୍ଦୁମାନଙ୍କ ପ୍ରତି ଭାତୃଭାବ ପୋଷଣ ଓ ତାଙ୍କର ଧାର୍ମିକ ବୁଝାମଣାକୁ ଗ୍ରହଣ କରି ନେଉଥିଲେ। ଦୁଗ୍ଧ ଦାତ୍ରୀ ମହମ ଅନଗ, ବୈରାମ ଖାଁ, ଅଧମ ଖଁଙ୍କ ଠାରୁ ଦୂରେଇ ଗଲେ।

ତାଙ୍କ ଜୀବନ ଉପରେ ମଧ୍ୟ ଆଘାତ ଆସିଲା। ଓ୍ୱାଲିଆଙ୍କ କବର ପାଖରେ ଫେରୁଥିବା ବେଳେ ରାସ୍ତାରେ ତାଙ୍କ ହାତରେ ତୀର ବାଜିଲା। ଏ ଘଟଣା ପରଠାରୁ

ତାଙ୍କ ବିଚାର ଧାରା ବଦଳିଲା। ସେ ରାଜ୍ୟରେ ଶାନ୍ତି ଆଣିବା ପାଇଁ ଚେଷ୍ଟାରୁ ବିରତ ହେଲେ। ଫଳରେ ଇତିହାସ ବଦଳିଲା।

**ଭୂଲାଭୂଲିଆ ମସଜିଦ :** ମହମ ଅନଗ ଓ ଅଧମ ଖାଁଙ୍କ ପାଇଁ ମସଜିଦ ତୋଳାଇ ଥିଲେ। ଆକବରଙ୍କ ଧର୍ମପିତା ଅଗାତ ଖାଁକୁ ତାଙ୍କ ପୁତ୍ର ଅଧମ ଖାଁ ହତ୍ୟା କରିଥିଲେ। ମହମ ଅନଗ ପାଇଁ ଓ ତାଙ୍କ ପୁତ୍ର ଅଧମ ଖାଁଙ୍କ ପାଇଁ ଯେଉଁ ମସଜିଦ ତୋଳାଇଥିଲେ ତା'ର ନାଁ ଭୂଲାଭୂଲିଆ ମସଜିଦ। ଆକବରଙ୍କ ଏକ ନବାବ ନୌବତ ଖାଁ ଗୋଟେ ମକରବା ବନାଇଥିଲେ। ଏହାର ନାଁ ରଖିଥିଲେ ନୀଲୀ ଛତରୀ। ଗୋଟେ ସମୟରେ ଏହା ଉପରେ ଟାଇନାର କାମ ମଧ୍ୟ ଥିଲା ଓ ବୁରୁଜ ଉପରେ ନୀଳ ଛତରି ଥିଲା। ବର୍ତ୍ତମାନ ନାହିଁ।

ସମ୍ରାଟ ଆକବର କୌଣସି ପରାଜୟ ପାଇନାହାନ୍ତି ଯୁଦ୍ଧ କ୍ଷେତ୍ରରେ କିନ୍ତୁ ସବୁବେଳେ ବିଦ୍ରୋହର ସମ୍ମୁଖୀନ ହୋଇଛନ୍ତି। ଏଇ ବିଦ୍ରୋହର ଉଗ୍ର ରୂପ ଧାରଣ କଲା ବଙ୍ଗଳାରେ। ସେଠିକାର ଗଭର୍ଣ୍ଣର ମୁଜାଫର ଖାଁ ଟୁରବାତି ବଙ୍ଗଳାର ଅମୀରମାନଙ୍କ ଉଚ୍ଛେଦ କରିବାକୁ ବସିଲେ। ଅନେକ ଖରାପ ବ୍ୟବହାର, ଜମିରୁ ଉଚ୍ଛେଦ, ଘୋଡ଼ା ଛଡ଼େଇ ନେଇଯିବା ଓ ଅନ୍ୟାନ୍ୟ ଅନେକ ଅସୁବିଧା କରାଉଥିଲେ।

ଗଭର୍ଣ୍ଣରଙ୍କ ଏ ପ୍ରକାର କ୍ରୁର ମନୋଭାବ ଯେ ଖରାପ ଥିଲା ତା' ନୁହେଁ ବରଂ ଯେତେବେଳେ ମୋଗଲ ସାମ୍ରାଜ୍ୟ ଉପରେ କଳା ବାଦଲ ଛାଇଯାଇଥିଲା– ଏଇଟାହିଁ ତାଙ୍କର ଭ୍ରମ ଥିଲା। ମୁସଲମାନମାନେ ଭାବୁଥିଲେ କି ସୈନ୍ୟବାହିନୀର ଅଧାଲୋକ ହିନ୍ଦୁ ଓ ଜମିଜମାର ଭାଗୀଦାର ମଧ୍ୟ ହିନ୍ଦୁ। ଏପରିକି ମଗୋଲମାନେ ମଧ୍ୟ ହିନ୍ଦୁମାନଙ୍କ ପରି ପ୍ରଭାବଶାଳୀ ନ ଥିଲେ। ସେମାନେ ଭାବୁଥିଲେ କି ଆକବର ଧର୍ମ ପରିତ୍ୟାଗ କରି ଏକ ଏକଛତ୍ରବାଦୀ ସମ୍ରାଟ ଭଳି ଏପରି ଘୃଣ୍ୟ କାମ କରୁଛନ୍ତି। ସଂଭ୍ରାନ୍ତ ବଂଶଜ ମୁସଲମାନମାନେ, ମୁଲ୍ଲାମାନେ ମଧ୍ୟ ଭାବୁଥିଲେ କି ସେ ସଦରସମାନଙ୍କ ହାତରୁ ଶାସନ କାଢ଼ି ନେଇଥିଲେ। ଦାତବ୍ୟ ଅନୁଷ୍ଠାମାନଙ୍କୁ ଦାନ ମଧ୍ୟ କମ କରିଦେଇଥିଲେ। ତାଙ୍କ ଭିତରେ ଉତ୍କୋଚ, ପ୍ରୀୟାପ୍ରୀତି ତୋଷଣ ନୀତି ଚାଲୁ ରହିଥିଲା। ଶେରସାହ ତାଙ୍କ ଅମଳରେ ସଦରସମାନଙ୍କ କ୍ଷମତା କମେଇ ଦେଇଥିଲେ; କିନ୍ତୁ ଆକବରଙ୍କ କ୍ଷେତ୍ରରେ ଧର୍ମଜନିତ ଅନୁଶାସନ ବୋଲି ସେମାନେ ଭାବିଥିଲେ। ଫଳରେ ଏ ବିଦ୍ରୋହ।

ଏହି କାରଣରୁ ମୂଲ୍ଲାମାନେ ୧୫୮୦ ବେଳକୁ ବେଙ୍ଗଲ, ବିହାର ଓ ପୂର୍ବ ଭାରତରେ ଏପରି ବିଦ୍ରୋହ ଆରମ୍ଭ କଲେ। ତୀବ୍ରତର ହେଲା ଏ ବିଦ୍ରୋହ। ଆକବରଙ୍କ ଭାଇ ମହମ୍ମଦ ହକିମ ନାଁରେ ଖୁତୱା ପଢ଼ି ତାଙ୍କୁ ସମ୍ରାଟ ବୋଲି ଗ୍ରହଣ କଲେ। ଆକବର ଟୋଡ଼ରମଲ୍ଲଙ୍କୁ ବିଦ୍ରୋହ ଦମନ ପାଇଁ ପଠାଇଲେ। ନିଜେ ମଧ୍ୟ ଏଥିରେ ଭାଗ ନେଲେ। ଆକବର ନିଜର ସୈନ୍ୟବାହିନୀର ଶକ୍ତି ବଢ଼ାଇ ତାଙ୍କର ପାଳିତ ଭାଇ ଅଜିଜ କୋକାଙ୍କୁ ବିଦ୍ରୋହ ଦମନ କରିବାକୁ ପଠାଇଲେ। ତଥାପି ବିଦ୍ରୋହ ଦମନ ପାଇଁ ତାଙ୍କୁ ୪ ବର୍ଷ ଲାଗିଗଲା। ପରେ ମଧ୍ୟ ଉପଯୁକ୍ତ ସ୍ଥିତିକୁ ଆଣିବା ପାଇଁ ଆହରି ୨ ବର୍ଷ ଲାଗିଲା। ଆକବର ନିଜେ ଏ ଏ ବିଦ୍ରୋହ ଦଉଇବାକୁ ଗଲେ ନାହିଁ। ସେ ଜାଣିବାକୁ ପାଇଲେ ଏ ବିଦ୍ରୋହ ପୂର୍ବଭାରତ ପଟୁ ନୁହେଁ ପ୍ରକୃତରେ ପଶ୍ଚିମ ଭାରତପଟୁ ଆସୁଥିଲା। ତାଙ୍କ ଭାଇ ହାକିମ ୧୫୮୦ରେ ପଞ୍ଜାବ ଆକ୍ରମଣ କଲେ। ହାକିମଙ୍କର ଆକ୍ରମଣ ଉତ୍ତର ବିହାର ଓ ବେଙ୍ଗଲ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା। ୧୫୮୧ରେ ଫେବୃୟାରୀ ମାସରେ ଆକବର ଫତେପୁର ସିକ୍ରିରୁ ତାଙ୍କ ଭାଇଙ୍କୁ ମୁକାବିଲା କରିବା ପାଇଁ ପଞ୍ଜାବ ଗଲେ। ସବୁ ଥର ପରି ଏଥର ମଧ୍ୟ ହାକିମ ଆଫଗାନିସ୍ଥାନ ପଳାଇଲେ।

ହକିମ ପଞ୍ଜାବରୁ ହଟିଲେ। କିନ୍ତୁ ଆକବର ଏକ ବିରାଟ ସେନା ବାହିନୀ ନେଇ ଏହାର ମୂଳପୋଛ କରିବାରେ ଚେଷ୍ଟାରେ ଲାଗି ରହିଲେ। ଆକବରଙ୍କ ପୂର୍ଣ୍ଣ ବିଶ୍ୱାସ ଥିଲା ଐଶରିକ ସାହାଯ୍ୟ ଉପରେ; ତଥାପି କୌଣସି ସାଂସାରିକ ଚେଷ୍ଟାରୁ ସେ ବିରତ ହେଲେ ନାହିଁ।

ସେନାବାହିନୀର ଯେପରି କୌଣସି ଅସୁବିଧା ଛାଉଣୀ ଭିତରେ ନ ହୁଏ, ସେ ସବୁର ବନ୍ଦୋବସ୍ତ କରାଯାଉଥିଲା। ଏପରିକି ସୈନ୍ୟବାହିନୀ ୮ ମାସର ଆଗତୁରା ଦରମା ଦିଆଯାଇସାରିଥିଲା। କେବଳ ମୋଗଲ ସେନାବାହିନୀ କାବୁଲ ଯିବା ପାଇଁ ରାଜି ନ ଥିଲେ। ବାବର ତାଙ୍କ ସେନାବାହିନୀକୁ ଭାରତରେ ରହିବା ପାଇଁ ରାଜି କରାଇ ପାରି ନଥିଲେ। ସେଥିପାଇଁ ହିନ୍ଦୁ ସୈନ୍ୟମାନଙ୍କୁ ଅଧିକା ଜିନିଷ ଯୋଗାଇ ଦିଆଯାଇଥିଲା।

କାବୁଲ ଯିବା ରାସ୍ତାରେ କାରାନୁର ଦେଇ ଗଲେ। ସେଠି ଜଣେ ପିଲା ରାଜା ରାଜୁତି କରୁଥିଲା। କାବୁଲକୁ ସହଜରେ ଜିଣି ନେଲେ କାରଣ ହକିମ ବଣ

ଜଙ୍ଗଲରେ ଲୁଚି ରହିଥିଲେ। ଆକବର ସେଠାରେ କିଛିଦିନ ରହି ତାଙ୍କ ଭଉଣୀ ଭକ୍ତୁନିସା ବେଗମଙ୍କୁ ସେଠି ରାଜଗାଦିରେ ବସେଇ ଭାରତ ଫେରିଲେ।

ଆକବରଙ୍କ କାବୁଲ ଯାତ୍ରା ଠିକ୍ ଥିଲା, କେବଳ ରାସ୍ତାରେ ତାଙ୍କ ରାଜସ୍ୱ ମନ୍ତ୍ରୀ ସାହା ମନସୁରଙ୍କୁ ହତ୍ୟା କରାଗଲା। କାରଣ ଥିଲା ତାଙ୍କର ବିଶ୍ୱାସଘାତକତା। ଘଟଣାଟା ଏତେ ଗମ୍ଭୀର ନ ଥିଲେ ମଧ ମୋଗଲଶାସନ ପାଇଁ ଏହା ଏକ ଧକ୍କା। ଅନ୍ୟମାନଙ୍କ ସହିତ ରାଜସ୍ୱ ନେଇ ଯେଉଁ ଚିଠିପତ୍ରର ଆଦାନ ପ୍ରଦାନ ହୋଇଥିଲା, ସରକାରଙ୍କୁ ନ ଜଣାଇ, ଧରା ପଡ଼ିଲା। ଏପରିକି ମହମ୍ମଦ ହକିମ ସାଙ୍ଗରେ ମଧ ଏଗୁପ୍ତ ମନ୍ତ୍ରଣା ଚାଲୁ ରହିଥିଲା। ସେଥିପାଇଁ ମନସୁର ବିଶ୍ୱାସ ହରାଇଥିଲେ। ଡିସେମ୍ବର ୧୫୮୧ରେ ଆକବର ଫତେପୁର ସିକ୍ରି ଫେରି ଆସିଲେ। ପରେ ପରେ ହାକିମଙ୍କର ମୃତ୍ୟୁ ଘଟିଲା। କାବୁଲ ନିଜର ସ୍ୱାତନ୍ତ୍ରତା ହରାଇ ମୋଗଲ ସମ୍ରାଜ୍ୟର ଏକ ଅଂଶ ହୋଇଗଲା।

ଗୁଜରାଟର ରାଜା ମୁଜାଫର ସାହ ବହୁତ ଦିନ ଧରି ନିର୍ବାସିତ ହୋଇଗଲେ। ପରେ ଧିରେ ଧିରେ ହେଲେ ଏକ ଉଗ୍ର ବିପ୍ଳବୀ। ସେତିକିବେଳେ ମୋଗଲ ସାମ୍ରାଜ୍ୟର ନିୟମ ଦେଖି ସେ ଅହମଦାବାଦରୁ ମୋଗଲଙ୍କୁ ବିଦା କରିଦେଲେ। କିନ୍ତୁ ଠିକ୍ ପରେ ପରେ ବୈରାମ ଖାଁଙ୍କ ପୁଅ ଅବଦୁର ରହିମଙ୍କ ନେତୃତ୍ୱରେ ମୋଗଲମାନେ ଅମହଦବାଦକୁ ପୁଣି ଥରେ ଦଖଲ କଲେ। କୁଚ ଓ କାଥିଆୱାର ବଣ ଜଙ୍ଗଲରେ ଲୁଚି ଯୁଦ୍ଧ ଜାରି ରଖିଲେ। ୧୫୯୩ରେ ପ୍ରାୟ ଦଶବର୍ଷ ପରେ ମୁଜାଫର ଧରାହେଲେ। ପରେ ସେ ଆତ୍ମହତ୍ୟା କଲେ। ଏ ଘଟଣାର ବହୁ ପୂର୍ବରୁ ଆକବର ବିପଦ ଆଶଙ୍କା କରି ପଶ୍ଚିମ ଭାରତ ପଟକୁ ଦୃଷ୍ଟି ରଖିବାକୁ ବାଧ ହେଲେ। ଉଜ୍‌ବେଗୀ ଯେଉଁମାନେ ମୋଗଲଙ୍କର ଚିରଶତ୍ରୁ ତାଙ୍କର ସହାୟତାରେ ଅବଦୁଲା ଖାଁ ଟାନ୍ସିଓନାର ନେଇ ବଦକ୍‌ସାନ ଓ କାବୁଲ ଥରହର କଲେ। ସେଥିରେ ଭାରତ ଉପରେ ମଧ ତାହାର ପ୍ରଭାବ ପଡ଼ିଲା। ସେଥିପାଇଁ ପଶ୍ଚିମ ଭାରତ ରକ୍ଷା କରିବା ଆବଶ୍ୟକ ହେଲା। ଆବଶ୍ୟକ ଥିଲା ଖାଇବର ପାଶର ଯାତାୟତର ସୁବିଧା। କାବୁଲ ଓ ଖାରବାର ପାଶ ଦେଇ କାବୁଲର କାରବାର । ଏଇ ୧୫୮୫ ବେଳର ଘଟଣା। ଆଲ୍ଲାବାଦର ଦୁର୍ଗ ତିଆରି କରି ବେଙ୍ଗଲକୁ ରାସ୍ତା ରକ୍ଷା କରିବା ପାଇଁ ବ୍ୟସ୍ତ ଥିଲେ। ଖବର ପାଇ ସେ ତତ୍‌କ୍ଷଣାତ୍ ପଞ୍ଜାବ ଗଲେ। ରହିଲେ ୧୫୯୮ ପର୍ଯ୍ୟନ୍ତ। ଅନେକ ଜମି

ଦଖଲ କଲେ। କିନ୍ତୁ ପୁଣିଥରେ ବେଙ୍ଗଲ ଫେରିଗଲେ। ୩୦ ବର୍ଷ ଧରି ଆକବର ଯୁଦ୍ଧ ଭିତରେ ବୁଡ଼ି ରହି ପୃଥିବୀର ଏକ ବିରାଟ ସାମ୍ରାଜ୍ୟ ଗଢ଼ିଲେ। ଚାଇନାର ମିଙ୍ଗ ପର୍ଶିଯାନର ସଫାରେଡ ସେ ସମୟରେ ପତନ ଦିଗକୁ ଯାଉଥିଲେ ଆଉ ଇଂରେଜ କ୍ଷମତା ଝୁଲି ରହିଥିଲା। ସେମାନଙ୍କର ପଞ୍ଜାବ ଉପରେ ଦୃଷ୍ଟି ଥିଲା ପରେ ପରେ କାଶ୍ମୀର, ବେଲୁଚିସ୍ତାନ ଓ ସିନ୍ଧ ଉପରେ ପଡ଼ିଲା। ଆକବର ବୟସ ବର୍ତ୍ତମାନ ୪୩। ବାପା, ଜେଜେବାପା ଏଇ ବୟସକୁ ମୃତ୍ୟୁ ବରଣ କରିଥିଲେ। ସେଥିପାଇଁ ସେମାନେ ଜେନେରାଲମାନଙ୍କ ଉପରେ ଯୁଦ୍ଧଭାର ଦେଇଦେଉଥିଲେ। ସବୁଠୁ କଷ୍ଟସାଧ ଥିଲା ଆଫଗାନ ଜନଜାତିର ବିଦ୍ରୋହକୁ ଦମନ କରିବା। ଏ ବିଦ୍ରୋହ ମଧ ଏକ ଅଦଭୂତ ଧରଣର। ବାୟାଜିବ ନାମକ ଜଣେ ବ୍ୟକ୍ତି ନିଜକୁ ଧର୍ମ ପ୍ରବର୍ତ୍ତକ ବୋଲି ଘୋଷଣା କଲେ। ମୁସଲିମ ଓ ହିନ୍ଦୁଧର୍ମର ମିଶ୍ରଣରେ ଅଦ୍ୱୈତବାଦର ଯାଦୁ ମନ୍ତ୍ରରେ ଲୋକମାନଙ୍କୁ ବିଶ୍ୱାସ କରାଇପାରିଥିଲେ। ତାଙ୍କର ଉପଦେଶ ଥିଲା– ଏ ବିଶ୍ୱ ଭଗବାନଙ୍କ ସୃଷ୍ଟି। ତାଙ୍କ ସୃଷ୍ଟିରେ ଭଲମନ୍ଦ, ଠିକ୍‌ଭୁଲର ପ୍ରଭେଦ ନାହିଁ। ମଣିଷ ଯାହା କିଛି କରେ ସେ ସବୁ ଭଗବାନଙ୍କ ନିର୍ଦ୍ଦେଶ। ସେଥିପାଇଁ ଧନସଂପତ୍ତି ଲୁଟ, ଚରାଜ ଉଚ୍ଛେଦ ଆଉ ଯାହା ଯେତେ ଦୁଷ୍କର୍ମ ମଧ ତାଙ୍କର ନିର୍ଦ୍ଦେଶ। ଅଏତବ ଯାହା ଯାହାର କରିବାର ଇଚ୍ଛା ତାହା କର। ଲୋକମାନଙ୍କୁ ଏ ପ୍ରକାର ଉପଦେଶ ପୋଷାଇଲା। ଧର୍ମକୁ ସାକ୍ଷୀ ରଖି ସେମାନେ ଗଣ୍ଡଗୋଳ ଆରମ୍ଭ କରିଦେଲେ। ତାଙ୍କ ଅନୁଚରମାନଙ୍କୁ ରାଓସାନିୟାଜ କୁହାଯାଉଥିଲା।

ଇତି ମଧରେ ବାଜାୟନଙ୍କର ମୃତ୍ୟୁ ଘଟିଲା। ତାଙ୍କ ୧୬ ବର୍ଷର ପୁଅ ଏ ଆନ୍ଦୋଳନର ମୁଖ୍ୟ ଭାବରେ ଏହାକୁ ପରିଚାଳନା କଲେ। ଫଳରେ କାବୁଲ୍‌ରୁ ପଞ୍ଜାବ ପର୍ଯ୍ୟନ୍ତ ରାସ୍ତା ବିପଦ ସଂକୁଳ ହୋଇପଡ଼ିଲା। ଆକବର ଜୟାନ ଖାଁଙ୍କ ନେତୃତ୍ୱରେ ଆଫଗାନଙ୍କର ଏଇ ବିଦ୍ରୋହ ଦମନ କରିବାକୁ ଗଲେ। ସଂଗରେ ଗଲେ ବିରବଲ, ହାକିମ, ଅନୁବଲ ଫତ (ଖ୍ୟାତାନାମା ଚିକିତ୍ସକ) ସବୁ ପ୍ରକାର ମିଲିଟାରୀ ସହାୟତା ନେଇ ଏ ବିଦ୍ରୋହ ଦମନ କରିବାକୁ ଗଲେ। ଅବୁଲ ଫଜଲ ଓ ବୀରବଲଙ୍କ ମଧରୁ ଜଣକୁ ନିଆ ଯିବା ପାଇଁ କଥା ଉଠିଲା। ଶେଷରେ ବୀରବଲ ଗଲେ। ୧୫୮୬ ବେଳକୁ ଆକବରଙ୍କୁ ସେ ପାର୍ବତ୍ୟ ପ୍ରଦେଶରୁ ହାରମାନି ଫେରିବାକୁ ପଡ଼ିଲା। ବୀରବଲ ପଳାଇବାବେଳେ ଧରାଯାଇ ହତ୍ୟାର ସମ୍ମୁଖୀନ ହେଲେ।

ମଟଶରୀର ମଧ୍ୟ ମିଳିଲା ନାହିଁ। ଏ ଦଙ୍ଗାରେ ୮୦୦୦ ସୈନ୍ୟ ନିହତ ହେଲେ। କିନ୍ତୁ ବୀରବଲଙ୍କ ମୃତ୍ୟୁରେ ବ୍ୟଥିତ ହୋଇ ପଡ଼ିଲେ ଆକବର। ଅନେକ ବର୍ଷ ପରେ ମାନସିଂ ଓ ଟୋଡ଼ରମଲ୍ଲଙ୍କ ସାହାଯ୍ୟରେ ବିଦ୍ରୋହ ଦମନ କଲେ।

ଅନେକ ବର୍ଷ କାଶ୍ମୀର ସୁଲତାନ କେତେକ ଉପହାର ସହ ଏକ ରାଜକନ୍ୟା ଆକବରଙ୍କୁ ବିବାହ କରିବାକୁ ତାଙ୍କ ଦରବାରକୁ ପଠାଇଥିଲେ। ଉଦ୍ଦେଶ୍ୟ ବିବାହ ନ ଥିଲା ଏହା ଥିଲା ଏକ ସନ୍ଧି। ଆକବର ବାରଣ କରିଥିଲେ। ପରେ ମୋଗଲ-କାଶ୍ମୀର ସଂପର୍କ ଭଲ ହେଲା। ଆକବରଙ୍କୁ ସମ୍ରାଟ ହିସାବରେ ସମ୍ମାନ ଦେଖାଇ କୁତୁଓ୍ୱା ପଢ଼ାହେଲା, କାଶ୍ମୀର ମୁଦ୍ରାରେ ଆକବରଙ୍କ ନାଁ ମଧ୍ୟ ଛପାହେଲା। ସଲିମଙ୍କ ବିବାହ ପାଇଁ ଆଉ ଜଣେ ରାଜକନ୍ୟା ଓ ଉପହାର କାଶ୍ମୀର ରାଜା ପଠାଇଲେ। ଆକବର ତାହା ସ୍ୱୀକାର କରିଥିଲେ। ୧୫୮୬, ୧୫୯୨, ୧୫୯୭ରେ ଆକବର କାଶ୍ମୀର ବଗିଚାରେ ଦିନ ଦିନ ଧରି ରହିଥିଲେ।

କାଶ୍ମୀର ପରେ ସିନ୍ଧ ଓ ବେଲୁଚିସ୍ଥାନ ମଧ୍ୟ ଅଧିକାର କଲେ। ୧୫୯୫ ବେଳକୁ ମାନସିଂ ଓଡ଼ିଶା ମଧ୍ୟ ଅଧିକାର କଲେ। ଓଡ଼ିଶା ମୋଗଲ ଶାସନକୁ ଆସିଥିଲା। ପରେ ଆକବରଙ୍କ କାନ୍ଦାହାର ଉପରେ ନଜର ପଡ଼ିଲା। ହୁମାୟୁନଙ୍କ ପରେ ଏହା ମୋଗଲ ଶାସନ ଭିତରେ ନ ଥିଲା। ସେତେବେଳେ କାନ୍ଦାହାର ଉଜ୍‌ବେଗର ତୁର୍କୀମାନଙ୍କ ଦ୍ୱାରା ଆତଙ୍କିତ ଥିଲା। ଅତି ସହଜରେ ତାହା ମଧ୍ୟ ହାତକୁ ଆସିଲା। ଏ ସବୁର ବିଜୟ ପରେ, ସେ ଚାଇନା କଥା ଭାବିଲେ। ସେଠାକାର ଖବର ଆକବରଙ୍କ ଜ୍ଞାନରେ ବାହାରେ ଥିଲା। ସେ ଜଣେ ରାଷ୍ଟ୍ରଦୂତ ଚାଇନା ପଠାଇବାକୁ ଇଚ୍ଛା କଲେ। କିନ୍ତୁ ସେଠୁ କିଛି ଖବର ମିଳିଲା ନାହିଁ।

ତୁର୍କୀକୁ ମଧ୍ୟ ବନ୍ଧୁତ୍ୱର ଚିଠି ପଠାଇଲେ। ଚିଠିକୁ ଅଗ୍ରାହ୍ୟ କଲା ତୁର୍କୀ। ଆସ୍ତେ ଆସ୍ତେ ତୁର୍କି ଉପରୁ ସୁଲେମାନର କର୍ତ୍ତୃତ୍ୱ କମି ଆସିଲା ଓ ସେଠି ମୋଗଲ ଶକ୍ତି ବୃଦ୍ଧି ପାଇଲା। ମକ୍କାରେ ତୁର୍କୀର ସୁଲତାନମାନଙ୍କର ନାଁରେ କୁତୁଓ୍ୱା ପଢ଼ା ଯାଉଥିଲା। ସାରା ପୃଥିବୀରେ ସେ ସମୟରେ ଆକବର ସବୁଠୁ ବଡ଼ ମୁସଲମାନ ଶାସକ ଥିଲେ। ୧୫୭୯ରେ ସେ ଇମାମ ଓ ଖଲିଫା ପରି ସର୍ବୋଚ୍ଚ ପଦବୀ ପାଇଥିଲେ। ତୁର୍କୀ ସହିତ ବନ୍ଧୁତା କରିବା କେବଳ ହୁଏତ ଦେଖାଣିଆ ଥିଲା।

ପର୍ତ୍ତୁଗୀଜମାନେ ବାବରଙ୍କ ସମୟରେ ଭାରତରେ ପ୍ରବେଶ କରିସାରିଥିଲେ। କିଛି ଦିନ ପରେ ସେମାନଙ୍କର ଅସ୍ତିତ୍ୱ ମଧ୍ୟ ଦୁର୍ବଳ ହୋଇଆସୁଥିଲା। କିନ୍ତୁ ଆକବର

ଫତେପୁର ସିକ୍ରିରୁ କେତେକ ବିଶିଷ୍ଟ ଶିଳ୍ପୀଙ୍କୁ ଇଂରେଜି ଦ୍ରବ୍ୟ ଆଣିବା ପାଇଁ ଗୋଆ ପଠାଇଲେ। ୧୫୭୮ରେ ପର୍ତ୍ତୁଗୀଜ ରାଜଦୂତ ଫତେପୁର ସିକ୍ରିରେ ପହଞ୍ଚିଲେ। ୧୫୮୦ରେ ଖ୍ରୀଷ୍ଟିୟାନ ଧର୍ମଯାଜକମାନଙ୍କୁ ମୋଗଲ ଦରବାରକୁ ଡକାଗଲା। ମକ୍କା ଯାତ୍ରା ପାଇଁ ଗୋଆହିଁ ଉପଯୁକ୍ତ ସ୍ଥାନ। ପର୍ତ୍ତୁଗୀଜମାନଙ୍କୁ ସେ ଶତ୍ରୁ ଲୋକ ବୋଲି ଭାବୁ ନ ଥିଲେ। କିନ୍ତୁ ଧୀରେ ଧୀରେ ସେମାନେ ମୋଗଲ ନୌବହରକୁ ଓ ମକ୍କା ଯାତ୍ରୀଙ୍କ ଅଟକାଇ ହଇରାଣ କଲେ। ଏ ଘଟଣାକୁ ଆକବର ବେଶି ଗୁରୁତ୍ୱ ଦେଲେ ନାହିଁ। କାରଣ ସ୍ଥଳପଥରେ ଆକବରଙ୍କ କର୍ତ୍ତୃତ୍ୱ ଥିଲା; କିନ୍ତୁ ଜଳପଥରେ ତାଙ୍କର ବଳ ବା ସାହସ ନ ଥିଲା।

୧୫୮୫ରେ ତିନିଜଣ ବ୍ରିଟିଶ ବ୍ୟବସାୟୀ 'ମରଚାଣ୍ଟ ଅଫ ଦି ଲେଭାଣ୍ଟ' ଙ୍କ ତରଫରୁ ଫତେପୁର ସିକ୍ରିରେ ଆକବରଙ୍କ କୋଟରେ ପହଞ୍ଚିଲେ। ରାଣୀ ଏଲିଜାବେଥଙ୍କ ପାଖରୁ ଖଣ୍ଡେ ଚିଠି ମଧ ଆଣିଥିଲେ। ଲେଖାଥିଲା, 'ପତ୍ରବାହକଙ୍କୁ ବ୍ୟବସାୟରେ ସାହାଯ୍ୟ କରିବେ।'

୧୬୦୩ରେ ମିଡ଼ନହାଲ ନାମରେ ଆଉ ଜଣେ ଇଉରୋପୀୟ ଭଦ୍ରଲୋକ 'ଇଷ୍ଟ ଇଣ୍ଡିଆ କମ୍ପାନୀ' ତରଫରୁ ରାଣୀ ଏଲିଜାବେଥଙ୍କ ପାଖରୁ ଆଉ ଖଣ୍ଡେ ଚିଠି ନେଇ ମୋଗଲ ଦରବାରକୁ ଆସିଲେ। ନିଜକୁ ପରିଚୟ ଦେଲେ ବ୍ରିଟିଶ ଆମ୍ବାସଡ଼ର ବୋଲି। ପ୍ରଥମ ଇଂରେଜ ଲୋକ ଯେ କି ମୋଗଲ ଦରବାରରେ ସ୍ଥାନ ପାଇଲେ। ଆଗ୍ରାରେ ଅନେକ ଦିନ ରହିଲେ। ଲୋକେ ତାଙ୍କୁ ବ୍ରିଟିଶ ଗୁପ୍ତଚର ବୋଲି ଭାବିଲେ। ଆଖ୍ୟା ଦେଲେ "ଅବିଶ୍ୱାସୀ ବଦମାସ" ଫେବୃୟାରୀ ୧୫୯୮ରେ ଉଜବେଗର ଅବଦୁଲ୍ଲା ଖାନ ମରିଗଲେ। ସେଥିପାଇଁ ସେଠାରୁ ଆଉ କୌଣସି ଆକ୍ରମଣର ଭୟ ରହିଲା ନାହିଁ। ଆକବର ଦାକ୍ଷିଣାତ୍ୟ ଅଭିଯାନ ପାଇଁ ଇଚ୍ଛା କଲେ।

୧୫୯୯ରେ ସତାବନ ବର୍ଷ ବୟସରେ ଦାକ୍ଷିଣାତ୍ୟ ଅଭିଯାନରେ ଗଲେ। ଅହମ୍ମଦାବାଦ ବିରୁଦ୍ଧରେ ଆକ୍ରମଣ କରି ଚାନ୍ଦବିବିଙ୍କୁ ହତ୍ୟା କରି ସେ ନଗର ନିଜ ହାତରେ ରଖିଲେ। ଦାକ୍ଷିଣାତ୍ୟର ଖାନ୍ଦେଶ ହେଉଛି ପ୍ରଥମ ରାଜ୍ୟ ଯାହା ଆକବରଙ୍କ କବଳକୁ ଆସିଲା। ଖାନ୍ଦେଶ ପରେ ଆକବର ସେଠାରେ ଏକ ବିରାଟ ସାମ୍ରାଜ୍ୟର ଅଧିକାରୀ। ଆଉ ଯୁଦ୍ଧ କରିବେ ନାହିଁ ବୋଲି ଠିକଣା କଲେ।

ଅଶୋକ ଓ ଆକବର ଦୁଇ ଜଣଙ୍କୁ ବଡ଼ ସମ୍ରାଟ ବୋଲି ଗଣାଯାଏ। ଦୁଇଜଣଙ୍କର ଦୂରଦୃଷ୍ଟି ଅନେକ। ଆକବରଙ୍କୁ ଦୈବୀଶକ୍ତିର ମଣିଷ ବୋଲି ମାନି ନିଆଯାଏ ଓ ସେଥିପାଇଁ ସେ ଅଜେୟ।

ଏତେ ବୀରତା, ଏତେ ବିଜୟ ସତ୍ତ୍ୱେ ସଦାସର୍ବଦା ମୁହଁରେ ନୈରାଶ୍ୟର ଭାବ। ତାଙ୍କ ଶରୀରକୁ ହସ ମଧ୍ୟ ମନାଏ ନାହିଁ। ବେଳେ ବେଳେ ସେ ଇଂରେଜି ପୋଷାକ ମଧ୍ୟ ପିନ୍ଧନ୍ତି ଇଂରେଜ ଲୋକଙ୍କ ସାମନାରେ। ସିଲ୍କ ଧୋତି ମଧ୍ୟ ପିନ୍ଧିବାର କେହି କେହି ତାଙ୍କୁ ଦେଖିଛନ୍ତି। ଯେଉଁ ପୋଷାକ ପିନ୍ଧନ୍ତୁ ନା କାହିଁକି ସବୁବେଳେ ଅତର ମଧ୍ୟ ବ୍ୟବହାର କରୁଥିଲେ। ଅନେକ ଫୁଲରୁ ତେଲ ବାହାର କରି ନିଜ ଦେହରେ ବ୍ୟବହାର କରୁଥିଲେ। କୌଣସି ଲୋକ ପାଖରେ ସେ ନିଜକୁ ଉନ୍ମୋଚନ କରନ୍ତି ନାହିଁ। ତାଙ୍କ ବାକ୍ୟ ଓ କାର୍ଯ୍ୟରେ ମଧ୍ୟ ଫରକ ଦେଖାଯାଏ। ଯେତେ ଅନ୍ତରଙ୍ଗ ହେଲେ ମଧ୍ୟ ତାଙ୍କ ଭିତର କଥା ଜାଣିବା ମୁସ୍କିଲ। ନିଜେ ଏତେ ଆତ୍ମଗଭୀର ଯେ କେହି ତାଙ୍କର ପରଦାଫାଶ କରିପାରନ୍ତି ନାହିଁ। ବେଳେ ବେଳେ ତାଙ୍କ ଉଦ୍ଦେଶ୍ୟକୁ ମଧ୍ୟ ଅନ୍ୟମାନେ ଭୁଲ ବୁଝନ୍ତି। 'ଲୋକ କୁହନ୍ତି ଭଗବାନଙ୍କଠୁ ତାଙ୍କର ଏକ ପୁଅ ଅଛି କେହି ମଧ୍ୟ କହନ୍ତି ସେ ଧର୍ମଯାଜକଙ୍କ ଜଣେ ଆନୁଗତ୍ୟ 'ସେ ଭଗବାନ ନୁହଁନ୍ତି ଆଉ ନୁହଁନ୍ତି ବି ଧର୍ମଯାଜକ 'ମଣିଷର ବଦନାମରୁ ମୁକୁଳି ଯାଇଛି ମୁଁ କେମିତି।' ଥରେ ଏ ଉକ୍ତିଟିକୁ ସେ ଉଜବେଗର ଅବଦୁଲା ଖାଁଙ୍କୁ ଲେଖିଥିଲେ।

ଆକବରଙ୍କ ଅଦ୍ଭୂତ ଶକ୍ତି ବିଚ୍ଛୁରି ଦେଇଥିଲେ। ସେ ଲୋକଙ୍କୁ ବିମୋହିତ କରି ରଖୁଥିଲେ। ପ୍ରକୃତରେ ସେ ଜଣେ ସର୍ବଗୁଣସମ୍ପନ୍ନ ରାଜା। ଏକ କ୍ଷୁଦ୍ରଜୀବକୁ ମଧ୍ୟ ବେଖାତିର କରିବା ଉଚିତ ନୁହେଁ। ଛୋଟ ଠୁ ବଡ଼ ଉପହାର ମଧ୍ୟ ସେ ଆନନ୍ଦରେ ଗ୍ରହଣ କରିନିଅନ୍ତି। ସର୍ବଦା ନିଜ ପାଖରେ ସୁନା ଓ ରୂପାର ମୁଦ୍ରା ରଖିଥାନ୍ତି ଅନ୍ୟକୁ ଉପହାର ଦେବାପାଇଁ। ତାଙ୍କ ବାରିପଟେ ଯେତେ ଅପ୍ରୀତିକର ବାତାବରଣ ସୃଷ୍ଟି ହୋଇଥିଲେ ମଧ୍ୟ ସେ ଜଣେ ସମସ୍ତଙ୍କର ପ୍ରୀତିଭାଜନ ରାଜା।

ଭଦ୍ର, ଉଦାର, ବିଚାରବନ୍ତ– ମଣିଷ ରୂପରେ ଜଣେ ଦେବଦୂତ। ଦେବଦୂତ ନୁହଁନ୍ତି ଜଣେ ସୁଦକ୍ଷ ଶାସକ। ଅତି ଭୋରରୁ ଉଠି, କେବଳ ଅଳ୍ପ ସମୟ ପାଇଁ ବିଶ୍ରାମ ଛଡ଼ା ସେ ବେଶି ରାତି ପର୍ଯ୍ୟନ୍ତ କାମରେ ବ୍ୟସ୍ତ ଥାଆନ୍ତି। ତାଙ୍କ ମତରେ ମଣିଷ ଜନମ ଯଦି ଭଗବାନଙ୍କର ବଡ଼ ଉପହାର ତା' ହେଲେ ଉଜାଗର ରହି କର୍ମ କରିଯିବା ତାଙ୍କର ଧର୍ମ। କାର୍ଯ୍ୟ ଦକ୍ଷତା ହିଁ ତାଙ୍କର ମୂଳ ଧର୍ମ। କୌଣସି ସମସ୍ୟାର ଯଦି ବାସ୍ତବ ରୂପ ଦେଖା ନ ଯାଏ ସେ ସ୍ୱପ୍ନରେ ଭାସିଯିବା ଲୋକ ନୁହନ୍ତି। ଖାଦ୍ୟରେ ମଧ୍ୟ ଆଗ୍ରହ ନ ଥାଏ। କିନ୍ତୁ ପାଣି ସଂକ୍ରାନ୍ତରେ ତାଙ୍କର ତୀକ୍ଷ୍ଣ ନଜର – କେବଳ ଗଙ୍ଗାଜଳ ପିଇବାରେ ତାଙ୍କର

ଇଚ୍ଛା। ଅଫିମ ଖାଇବା ଓ ମଦ୍ୟପାନ ତାଙ୍କର ଅଭ୍ୟାସଗତ ଗୁଣ ନୁହେଁ ଯଦିଓ ପ୍ରଥମ ଥର ପାଇଁ ତାଙ୍କ ଦରବାରରେ ଟବାକୋ ବ୍ୟବହାର କରାଯାଇଥିଲା। ସବୁ ଦୃଷ୍ଟିରୁ ଆକବରଙ୍କ ଜୀବନ ସାର୍ଥକ ହୋଇଯାଇଥିଲା। ରାଜନୈତିକ ଇଚ୍ଛା, ଉତ୍ତରାଧିକାରୀ ବାଛିବା ପାଇଁ ତିନୋଟି ପୁତ୍ର ମହଜୁଦ। ସେଥିପାଇଁ ସେ ଧର୍ମ ଓ ସାହିତ୍ୟ ମାର୍ଗରେ ମନ ବଳାଇଲେ।

ସୈନ୍ୟ ବିଭାଗର ପରିଚାଳନା, ଧାର୍ମିକ ବକ୍ତୃତା, ଖେଳ କସରତରେ ତାଙ୍କର ଅନେକ ଆଗ୍ରହ ଥିଲା। କିନ୍ତୁ ସାରାଜୀବନ ଧରି ଲାଳସା ଥିଲା ସଂଗୀତ। ତାନ୍‌ସେନ୍‌ଙ୍କ ଭଳି ଉଚ୍ଚକୋଟୀର ସଂଗୀତଜ୍ଞ ତାଙ୍କ ଦରବାରରେ ମହଜୁଡ ଥିଲେ। ସେ ନିଜେ ମଧ୍ୟ ଉତ୍ତମ ଭାବରେ ଡ୍ରମ ବଜାଇ ପାରୁଥିଲେ। ଗୁରୁ ଲାଲ କଲଓ୍ୱାନ୍ତଙ୍କ ଠାରୁ ସଂଗୀତ ଶିକ୍ଷାକରିଥିଲେ। ପ୍ରକୃତିଠୁ ପ୍ରେରଣା ପାଇଁ ଅନେକ କବିତା ମଧ୍ୟ ରଚନା କରିଛନ୍ତି।

ଆକବର ଯୁକ୍ତି କରନ୍ତି, ଜଣେ ଦଉଡ଼ିରେ ନାଚବାଲି ତା'ର ହାତଗୋଡ଼ର ସାହାଯ୍ୟରେ, ଜଣେ ଗାୟକ ନିଜର ଜିଭ ସାହାଯ୍ୟରେ, କବି ତା'ର ସୃଷ୍ଟି କଳ୍ପନା ଉପରେ ଆଧାରିତ – ଏ ସବୁକୁ କେହି ଗମ୍ଭୀର ଭାବରେ ଆପଣାଇ ନେଇ ପାରିବ ନାହିଁ। ଏ ସମାଲୋଚନାର କାରଣ ଅଛି। ତାଙ୍କ ଦରବାରରେ ଆକବର ଜଣେ ପଣ୍ଡିତ ବୋଲି ଗଣା ଯାଉଥିଲେ। କିନ୍ତୁ ଶିକ୍ଷା ନ ଥିଲା ଏ ପ୍ରକାର ସମ୍ମାନ ପାଇଁ। ନିଜ ନାମ ଦସ୍ତଖତ କରିବା ଛଡ଼ା ଶିକ୍ଷାଦିଗରେ ତାଙ୍କର କିଛି ଦକ୍ଷତା ନ ଥିଲା। କିନ୍ତୁ ଜ୍ଞାନ ପାଇଁ ଥିଲା ଗଭୀର ପିପାସା। ପ୍ରତ୍ୟେକ କ୍ଷେତ୍ରରେ ତାଙ୍କର ଏତେ ଜ୍ଞାନ ଥିଲା ଯେ ତାଙ୍କୁ ଅଶିକ୍ଷିତ ବୋଲି କେହି ଜାଣି ପାରୁ ନ ଥିଲେ। ଅନ୍ୟମାନେ ତାଙ୍କ ପାଇଁ ବହି ପଢ଼ନ୍ତି କିନ୍ତୁ ଶୁଣି ଶୁଣି ସେ ଏତେ ମନେ ରଖନ୍ତି ଯେ ତାଙ୍କୁ ଲୋକେ ଜ୍ଞାନୀ ବୋଲି ଭାବନ୍ତି। ତାଙ୍କର ବହୁତ ବଡ଼ ଲାଇବ୍ରେରୀ ଥିଲା। ତାଙ୍କ ମୃତ୍ୟୁ ପରେ ସେ ଲାଇବ୍ରେରୀର ମୂଲ୍ୟ ୬.୫ ଲକ୍ଷ ବୋଲି ଗଣା ଯାଉଥିଲା। ସେ ଲାଇବ୍ରେରୀରେ ମହାଭାରତ, ରାମାୟଣଠୁ ଆରମ୍ଭ କରି ଲୀଳାବତୀ ସୂତ୍ର ମଧ୍ୟ ମହଜୁଦ ଥିଲା। ଅବବୁଲ ଫଜଲଙ୍କ ଭାଷାରେ ୧୯ ଜଣ ବିଖ୍ୟାତ ଶିଳ୍ପୀଙ୍କ ମଧ୍ୟରୁ ୧୩ ଜଣ ହିନ୍ଦୁ। ପର୍ଶିୟାନ ସ୍ଥାପତ୍ୟକଳାରଙ୍କ ମୋଗଲ ସାମ୍ରାଜ୍ୟରେ ଅଭୂତ ପ୍ରଭାବ। ଇଂରେଜି ପ୍ରଭାବ ମଧ୍ୟ ଅଳ୍ପ ବହୁତେ ଅନୁମାନ ହେଉଥିଲା। ପର୍ଶିୟାରୁ ଅନେକ ନାମଜାଦା ଶିଳ୍ପୀ ମଧ୍ୟ ଦିଲ୍ଲୀ ଆସିଥିଲେ। ମାଡ଼ୋନା ଚିତ୍ରକୁ ଆକବର ନିଜେ ତାଙ୍କ ହାରେମ

ଭିତରକୁ ନେଇ ଯାଇଥିଲେ। ଆକବରଙ୍କ ଦ୍ୱାରା ପ୍ରଚଳିତ ମୁଦ୍ରା ମଧ୍ୟ ଶ୍ରେଷ୍ଠ ମୁଦ୍ରାବୋଲି ଗଣା ଯାଉଥିଲା।

ଦଶୱାନ୍ତୁ ଜଣେ ସବୁଠୁ ବଡ଼ ଚିତ୍ରକାର। ସେ ଜଣେ ପାଲିକି ବାହକର ପୁତ୍ର। ଫତେପୁର ସିକ୍ରିରେ ରାସ୍ତା ଆଲୋକର ଡିଜାଇନ କରିଥିଲେ। ଦଶବର୍ଷ ପରେ ସେ ଆତ୍ମହତ୍ୟା କଲେ।

ଖେଳ କସରତରେ ମଧ୍ୟ ଆକବରଙ୍କ ବହୁତ ଆଗ୍ରହ ଥିଲା। ସେ ନିଜେ ଏକ ଯନ୍ତ୍ର ଆବିଷ୍କାର କରିଥିଲେ ଯେଉଁଥିରେ ଏକାଥରକେ ୧୬ଟା ବ୍ୟାରେଲ ଗନ ଏକାଥରେ ସଫା ହୋଇପାରିବ। ଶିକାର ପାଇଁ ଥିଲା ପ୍ରବଳ ଆଗ୍ରହ। ଶିକାର କରିବା ଯେତେ ବଡ଼ କଥା ନୁହେଁ, ଶିକାରୀ ବିଦ୍ୟାର କୌଶଳଟାହିଁ ସବୁଠୁ ବଡ଼। ଯୁଦ୍ଧ ଯାତ୍ରାକରିବାକୁ ଯିବା ପୂର୍ବରୁ ସେ ସବୁବେଳେ ଶିକାର କରିବାକୁ ଭଲ ପାଉଥିଲେ। ଚିତା ଶିକାର କରିବା ତାଙ୍କର ଶ୍ରେଷ୍ଠ ଖେଳ ଥିଲା। ପକ୍ଷୀ ଓ ହିଂସ୍ରଜନ୍ତୁଙ୍କୁ କାବୁ କରିବାରେ ତାଙ୍କର ସ୍ୱର୍ଗୀୟ ଶକ୍ତି ଅନେକ ଥିଲା। ହିଂସ୍ର ମିରିଗ ତାଙ୍କ ହାତରୁ ଖାଏ। ତାଙ୍କର କହିବାର ଥିଲା କି ଯଦି ଜୀବଜନ୍ତୁଙ୍କୁ ପ୍ରେମରେ କଥାବାର୍ତ୍ତା କରାଯାଏ ତା' ହେଲେ ଏ ପ୍ରକାର ଶକ୍ତିର ଅଭାବ ହେବ ନାହିଁ। ସମ୍ଭ୍ରାନ୍ତ ମୁସଲମାନଙ୍କ ଆଦର୍ଶକୁ ନ ମାନି ସେ ଅନେକ କୁକୁର ମଧ୍ୟ ପାଳିଥିଲେ। ମୁସଲିମମାନେ କୁକୁର ଓ ଘୁସୁରିଙ୍କୁ ବହୁତ ଘୃଣା କରୁଥିଲେ।

ଏହା ଛଡ଼ା ସବୁ ପଶୁମାନଙ୍କ ମଧ୍ୟରୁ ସେ ହାତୀଙ୍କୁ ବହୁତ ଭଲ ପାଉଥିଲେ। ଆସଦ ବେଗ, ଜଣେ ଐତିହାସିକଙ୍କୁ ଆକବରଙ୍କ ଆନନ୍ଦ କେଉଁଥିରେ ବୋଲି ପଚାରିଲେ। ସେ କହିଲେ କି ମୂଲ୍ୟବାନ ପଥର ଆଉ ମନଶାନ୍ତି ଦେବା ହାତୀ। ମଲ୍ଲଯୁଦ୍ଧ ମଧ୍ୟ ତାଙ୍କର ପ୍ରିୟ ଖେଳ ଥିଲା। ସେ ପୋଲୋ ମଧ୍ୟ ଖେଳୁଥିଲେ। ରାତିରେ ପୋଲୋ ଖେଳିବା ପାଇଁ ସେ ପଳାସକାଠର ଆଲୋକବର୍ତ୍ତିକାର ବନ୍ଦୋବସ୍ତ କରିଥିଲେ। ଚନ୍ଦାଲ ମଣ୍ଡଳ ନାମରେ ଏକ ପଶା ଖେଳ ମଧ୍ୟ ଖେଳୁଥିଲେ। ଘରୋଇ ଖେଳର ଅନେକ ସରଞ୍ଜାମ ଧରି ଫତେପୁର ସିକ୍ରିର ହ୍ରଦ କୂଳରେ ନିଜର ପାତ୍ର ମନ୍ତ୍ରୀ ସହ ବସିଯାଉଥିଲେ। ଯୁଦ୍ଧ କ୍ଷେତ୍ରରେ ଲଢ଼ିଲାପରି ସେ ଖେଳରେ ମଧ୍ୟ ମନୋନିବେଶ କରୁଥିଲେ।

କୁରୁକ୍ଷେତ୍ରରେ ଥରେ ନିଜ ଛାଉଣି ପକାଇଲେ। ସାଧୁ ମୁନି, ଋଷିମାନେ ଏ ଯୁଦ୍ଧ କ୍ଷେତ୍ରରେ ଭାଗ ନେଇଥିଲେ କାରଣ ଆକବରଙ୍କ ଠାରୁ ଉପହାର ପାଇବେ

ବୋଲି । ବଗିଚାରେ ତାଙ୍କର ଏତେ ଆଗ୍ରହ ନ ଥିଲା । ବଗିଚା ଅପେକ୍ଷା ସ୍ଥାପତ୍ୟ ବିଦ୍ୟାପରି ସୃଷ୍ଟିକାରି ବିଦ୍ୟା ଉପରେ ତାଙ୍କର ଅଧିକ ଉତ୍ସାହ ଥିଲା ।

୧୫୬୫ ବେଳକୁ ଆଗ୍ରାରେ ଅନେକ ଅଦଳବଦଳ କଲେ । ଏ ଦୁର୍ଗ ସିକନ୍ଦର ଲୋଦି ୫୦ ବର୍ଷ ତଳେ ଗଢ଼ି ଥିଲେ । କିନ୍ତୁ ଏହାର ମରାମତି ପାଇଁ ୩/୪ ହଜାର କର୍ମି କାମ କରୁଥିଲେ । ଆଗ୍ରାରେ ରହିବା ତାଙ୍କ ଭାଗ୍ୟରେ ନ ଥିଲା । ତାଙ୍କର ସବୁ ପିଲା ଆଗ୍ରାରେ ହିଁ ଶିଶୁ ଅବସ୍ଥାରେ ମରିଗଲେ । ସେ ଫେରିଲେ ଫତେପୁର ସିକ୍ରି । ସେଠି କେତେକ ଆଖପାଖର ଲାଲପଥର ଦେଇ ସେ ସିକ୍ରି ତୋଳାଇଲେ । ସିକ୍ରି କିନ୍ତୁ ଏକ ବଡ଼ ସହର ହେବା ପାଇଁ ଯୋଗ୍ୟ ନ ଥିଲା । ଜଙ୍ଗଲ ଓ ପଥର ଘେରା ଏ ଜାଗା ରହିବା ପାଇଁ ଅସୁବିଧା ଥିଲା । ପାଣିର ଅଭାବ ମଧ୍ୟ ଅଧିକ । ଆକବର ନିଜର ଅମିରମାନଙ୍କ ସହିତ ହ୍ରଦକୂଳରେ ଖେଳୁଥିଲା ବେଳେ ବୁରୁଜ ଭାଙ୍ଗିଗଲାନ ଓ ଖେଳଜାଗାଟା ବୁଡ଼ିଗଲା । ବ୍ରିଜ ତିଆରି କରାଗଲା ସତ କିନ୍ତୁ ସହର ରହିପାରିଲା ନାହିଁ ୧୫୮୫ରେ ମାତ୍ର ୧୫ବର୍ଷ ପରେ ବୁରୁଜ ପୁଣି ଭାଙ୍ଗିଗଲା । ବର୍ତ୍ତମାନ ବି ପ୍ରାସାଦ ଅଛି । ସମୟର କ୍ଷୟର ମ୍ରିୟମାଣ ।

''ପୃଥିବୀ ଏକ ବୁରୁଜ । ଏହାକୁ ଅତିକ୍ରମ କରି ଯାଅ । କିନ୍ତୁ ଏହା ଉପରେ କୌଣସି ପ୍ରାସାଦ କର ନାହିଁ ।'' ଏହା ଗୁଜରାଟ ଯୁଦ୍ଧ ଅଭିଯାନରେ ଯିବା ପୂର୍ବରୁ ଫତେପୁର ସିକ୍ରିର ଶୁକ୍ରବାର ମସଜିଦର ମୂଳ ଦରଜା ଉପରେ ଲେଖା ଥିଲା । ପୃଥିବୀ ତୁମକୁ ସହ୍ୟ କରିବ ଗୋଟାଏ ଘଣ୍ଟା ପାଇଁ– ସେଇ ସମୟତକ ପ୍ରାର୍ଥନା କର । ଏ ଆକବରଙ୍କ ନିର୍ଦ୍ଦେଶର ଲେଖା । ଏକ ଲେଖାରୁ ଆକବରଙ୍କ ଅସଲ ରୂପ ଜଣାଯାଏ । ବାହାର କାମରେ ସେ ଖୁସି ଥିଲେ, ଶାନ୍ତି ପାଉଥିଲେ; କିନ୍ତୁ ସବୁବେଳେ ମନରେ ନୈରାଶ୍ୟ । ନିଜର ଯୌବନ ଅବସ୍ଥାରେ ମଧ୍ୟ ତାଙ୍କର ଏ ପ୍ରକାର ମନୋଭାବ ପରିଲକ୍ଷିତ ହେଉଥିଲା ।

ଆକବର ସବୁବେଳେ କହନ୍ତି କେହି ଜଣେ ଧାର୍ମିକ ବ୍ୟକ୍ତିର ସଂଧାନରେ ମୁଁ ଅଛି । ଯିଏ ମୋ ହୃଦୟର ଅଶାନ୍ତିକୁ ଦୂର କରିପାରିବ । ମୋର ଏ ବୃହତ୍ ସାମ୍ରାଜ୍ୟକୁ ଯଦି କେହି ଜଣେ ଚଳେଇ ପାରିବ ମୁଁ ତା' ହେଲେ ଏ ସବୁ ସମର୍ପି ଦେଇ ନିଜେ ଦୂରେଇ ଯିବି ।

ଆକବର ଅନୁଭବ କରୁଥିଲେ ''ଏ ପୃଥିବୀରେ ବଂଚି ରହି ଅମଙ୍ଗଳ ଠାରୁ ଦୂରେଇ ରହିବା ପ୍ରକୃତରେ କଷ୍ଟକର ।'' ତାଙ୍କୁ କେଉଁ ବିଷୟ ଏତେ ବିଚଳିତ

କରୁଥିଲା ଜଣା ନାହିଁ। ୧୫୫୭ରେ ମାତ୍ର ପନ୍ଦର ବର୍ଷ ବୟସରେ ମାନ କୋର୍ଟ ଅଧିକାର ସମୟରେ। ସିଂହାସନରେ ବସିବାର ମାତ୍ର ବର୍ଷକପରେ ମରୁଭୂମି ଭିତରକୁ ଘୋଡ଼ା ଚପଟାଇ ଏକା ଚାଲିଗଲେ। କାରଣ ଗୋଟେ ଅଦୃଶ୍ୟ ଛୋଟ ମଣିଷ ତାଙ୍କୁ ଦେଖାଦେଇ ଆଗକୁ ଆଗକୁ ନେଇଗଲା। ଆଉ ତା' ପଛରେ ଗୋଡ଼ାଇ ସେ ସେତେଦୂର ପର୍ଯ୍ୟନ୍ତ ବାହାରିଗଲେ।

ମାତ୍ର ୨୦ ବର୍ଷ ବୟସରେ ରାଜଧାନୀର ବିସ୍ତାର ପରେ ତାଙ୍କ ମନଦୁଃଖରେ ଭରିଗଲା। ସେ ସବୁବେଳେ ମନର ଶାନ୍ତି ଓ ଧର୍ମର ଆଶ୍ୱାସନା ଖୋଜି ବୁଲିଲେ। ଆକବର ତାଙ୍କ ନିଜର ଅସ୍ୱାଭାବିକ ମନୋଭାବ ପାଇଁ ବାରମ୍ବାର ଦୁଃଖରେ ଭାଙ୍ଗି ପଡୁଥିଲେ। ଥରେ ସେଖ ଦଲାଲ ନାମକ ଜଣେ ମୁସଲମାନ ସନ୍ଥଙ୍କୁ ସେ ପଚାରିଲେ, ''ଆପଣତ ସାରା ଜୀବନ ଲୋକହିତକର କାମ କରି କରି ସୁଦୀର୍ଘ ଜୀବନଯାପନ କଲେ। ଆପଣ ଦୁଃଖ ଦୂର କରିବାର ରାସ୍ତା ବତାଇପାରିବେ ? ହୃଦୟର ବିପରୀତମୁଖୀ ଆକାଂକ୍ଷାକୁ ଦୂର କରିବାର ରାସ୍ତା ଖୋଜି ପାଇଛନ୍ତି କି ?'' ତାଙ୍କୁ ଜଣେ ଅପସ୍ମାର ରୋଗୀ ବୋଲି ମଧ୍ୟ ବାଖ୍ୟା କରିଛନ୍ତି – ଏହା ହୁଏତ ବଂଶଗତ। ତାଙ୍କ ପୁଅ ମୁରାବ ମଧ୍ୟ ଏ ରୋଗରେ ପୀଡ଼ିତ ଥିଲେ। ୧୩ ଶହ ଶତାବ୍ଦୀର ପର୍ଶିୟାନ ଲେଖକ ଜିଲ୍ଲାଉଦ୍ଦିନ ରୁମିଙ୍କ ଭଗବତ୍ ପ୍ରେମୀ କବିତା ସବୁ ଶୁଣିବା ବେଳେ ତାଙ୍କ ଆଖିରେ ଲୁହ ଭରିଯାଉଥିଲା। ନିଜେ ମଧ୍ୟ ରାତାରାତି ଭଗବତ୍ ଚର୍ଚ୍ଚାରେ ମଗ୍ନ ରହି ବିତାଇ ଦେଉଥିଲେ। ଅନେକ ସମୟରେ ପ୍ରାର୍ଥନାରେ ବ୍ୟସ୍ତ ରହୁଥିଲେ। ସ୍ୱପ୍ନ ବି ଦେଖୁଥିଲେ। ଜୀବନର ବୋଝ ଲାଘବ କରିବା ପାଇଁ ଅନେକ ନିଜର ସ୍ୱପ୍ନକୁ ଗପରେ ରୂପାନ୍ତରିତ କରୁଥିଲେ। ସୁଫି ଧର୍ମ ପାଇଁ ତାଙ୍କର ଆଗ୍ରହ ଅନେକ। ଅବଦୁଲ ଲତିଫ୍ ତାଙ୍କ ଶିକ୍ଷକ କହିଥିଲେ ସୁଫି ଧର୍ମର ସହନୀୟତା, ଅନ୍ୟ ଧର୍ମ ପାଇଁ ବିଚାର, ଅନେକ ଉର୍ଦ୍ଧ୍ୱରେ। ସେ ନୀତି ନିୟମକୁ ତାଙ୍କ ପରବର୍ତ୍ତୀ ଜୀବନରେ ମଧ୍ୟ ଗ୍ରହଣ କରି ନେଇଥିଲେ।

ଆକବରଙ୍କ ପରମ୍ପରା ବିଶ୍ୱାସ ନେଇ ସେ ''ଅନ୍ୟ ଧର୍ମ ପ୍ରତି ଅନୁରାଗ''ର ଭାଷା ନିଜ ଭିତରେ ମିଶାଇ ଦେଇଥିଲେ। ଚେଙ୍ଗିଜ ଖାଁ, ନାସଟର ଡ୍ୟାମ, ଖ୍ରୀଷ୍ଟିୟାନ, ମୁସଲିମ୍ ଓ ବୌଦ୍ଧଧର୍ମର ଧାର୍ମିକ ବିଶ୍ୱାସକୁ ପ୍ରତିପାଳନ କରୁଥିଲେ। ତୈମୁର ମଧ୍ୟ ସୁଫି ସଂସ୍କୃତିରେ ଆସ୍ଥା ପ୍ରକଟ କରିଥିଲେ। ବାବର ଓ ହୁମାୟନ ସେମାନଙ୍କ ନିଜ ନିଜର ସାମୟିକ ସୁବିଧା ପାଇଁ ଅନ୍ୟ ଧର୍ମ ପ୍ରତି ବେଖାତିର କରୁ ନ ଥିଲେ।

ଆକବରଙ୍କ ଜଣେ ସଂପର୍କୀୟ ଭାଇ ମଧ୍ୟ ଜଣେ ଭଗବତ୍ ପ୍ରେମୀ ଥିଲେ। ଏଇ ପରମ୍ପରା ନେଇ ଆକବର ଅନୁପ୍ରାଣୀତ ହେବା ସ୍ୱାଭାବିକ । ତାଙ୍କ ନିଜର ଅନେକ ଅଦ୍ଭୁତ ଭାବନା ମଧ୍ୟ ମନକୁ ମନ ଆସେ। ସେ ଜାଣିଲେ ମଣିଷର ଗୋଟାଏ ଜନ୍ମଗତ ଭାଷା ଅଛି, ତଥାକଥିତ ଧର୍ମ ଅଛି। ଏ ଭାଷା, ଏ ଧର୍ମକୁ ସେ ଆପେ ଆପେ ନିଜର କରି ନେଇ ପାରିବେ। ଏହାର ପ୍ରମାଣ ପାଇଁ ସେ ୨୦ଟି ଶିଶୁଙ୍କୁ ନେଇ ଅଲଗା ରଖିଦେଲେ। ଯେଉଁଠାରେ ଭାଷାର ବା ଧର୍ମର ପ୍ରଭାବ ତାଙ୍କ ଉପରେ ପଡ଼ିବ ନାହିଁ ବା କୌଣସି ମଣିଷର ଛାଇ ତାଙ୍କ ଉପରେ ପ୍ରଭାବ ପକାଇ ପାରିବ ନାହିଁ; କିନ୍ତୁ ହାୟ, ଏପରି ପିଲାଙ୍କୁ ୩/୪ ବର୍ଷ ପରେ ବାହାରକୁ ଅଣାଗଲା ଓ ଦେଖାଗଲା। ସେମାନେ ଏକାବେଳକେ ମୂକ ପାଲଟି ଯାଇଛନ୍ତି।

ଥରେ ଜଣେ ଅଦ୍ଭୁତ ପାରଦର୍ଶିତା ଥିବା ଲୋକ ଗର୍ବର ସହିତ କହିଲେ କି ସେ ଗୋଟାଏ ଜାଗାରୁ ଆଉ ଗୋଟାଏ ଜାଗାକୁ ସାଙ୍ଗେ ସାଙ୍ଗେ ଯାଇପାରିବେ। ଆକବର ତାଙ୍କୁ କହିଲେ ଆମର ଏଇ ପ୍ରକାର ଲୋକର ଆବଶ୍ୟକ ଥିଲା। ତମେ ଯଦି ଏ ଭଳି କାର୍ଯ୍ୟ ପ୍ରଦର୍ଶନ କରିପାରିବ। ଏ ସଂପତ୍ତି, ଏ ରାଜ୍ୟ ଏପରିକି ଆମେ ସବୁ ତୁମର ହୋଇଯିବୁ। ସେ ଲୋକ ଜଣକ ଚୁପ୍ ରହିଲେ। ଆକବର କହିଲେ, ହାତ ଗୋଡ଼ ବାନ୍ଧି ଦୁର୍ଗ ଉପରୁ ନଦୀ ଭିତରକୁ ଫୋପାଡ଼ି ଦିଅ। ଯଦି ସେ ଏହା ଭିତରୁ ବାହାର ଆସି ପାରିବ ତେବେ ତ ଅତ୍ୟନ୍ତ ଭଲକଥା। ନ ହେଲେ ସେ ନର୍କକୁ ଯିବ। ଗରୀବ ଲୋକଟି ପେଟ ଦେଖାଇ କହିଲା, ମୋ ନିଜର ନର୍କ ପାଇଁ ମତେ ଏତକ କରିବାକୁ ପଡୁଛି।

ମନୋବିଜ୍ଞାନ ବା ଦର୍ଶନ ଶାସ୍ତ୍ରକୁ ଆଉଡେଇବାରେ ତାଙ୍କର ଆଗ୍ରହ ଅନେକ। ସେ ପ୍ରମାଣ ବିନା କୌଣସି କଥା ବିଶ୍ୱାସ କରୁ ନ ଥିଲେ। ଆଉ ଅନେକ ଗପ ମଧ୍ୟ ତାଙ୍କ ସଂକ୍ରାନ୍ତରେ ଅଛି। ଧର୍ମ ଓ ଦର୍ଶନର ଅନୁସଂଧାନ କରିବା ପାଇଁ ଫତେପୁର ସିକ୍ରି ଠାରେ ଇବାଦାତ୍ ଖାନା ତିଆରି କରାଇଲେ। ନିଜାମୁଦ୍ଦିନ ଅହମ୍ମଦଙ୍କ ଭାଷାର କେହି ସେ ଖାନା ଭିତରକୁ ଯାଇପାରିବେ ନାହିଁ। କେବଳ ଉଚ୍ଚକୋଟୀର ସୟିଦମାନେ, ଉଲେମା ଓ ଶେଖମାନଙ୍କ ବ୍ୟତିତ। ବେଙ୍ଗଲ ଶାସକ ସୁଲେମାନ କରାରାନିଙ୍କ ପ୍ରଭାବ ତାଙ୍କ ଉପରେ ପଡ଼ିଥିଲା। ସେ ଶାସକ ଧର୍ମ ଉପରେ ରାତି ରାତି ଧରି ଆଲୋଚନା କରୁଥିଲେ। ବଡ଼ାଯାନର ପଳାତକ ରାଜା ସୁଲେମାନ ମିର୍ଜାଙ୍କ ଅତର୍କିତ ଆବିର୍ଭାବ ହେଲା। ଆବିର୍ଭାବ ଫଳରେ ଏ ପ୍ରକାର ସଂଘ ଆଗେଇ ପାରିଲା ନାହିଁ।

କାରଣ ଆକବର ନିଜେ ମିର୍ଜାଙ୍କ ସହିତ ଧର୍ମ ସଂକ୍ରାନ୍ତରେ ଆଲୋଚନା କରୁଥିଲେ। ହୁଏତ ଇବାଦାତ୍ ଖାନା ମିର୍ଜାଙ୍କ ପାଇଁ ତିଆରି ହୋଇଥିଲା। ପରେ ଏହା ନଷ୍ଟ ହୋଇଯାଇଥିଲା ବା ନଷ୍ଟ କରି ଦିଆଯାଇଥିଲା। ବନ୍ୟାରେ ନଦୀର କୂଳ ଭାଙ୍ଗି ଯାଇଥିଲା।

ଏହା ବି ବିଶ୍ୱାସ କରାଯାଇପାରେ କି ଦିୱାନ-ଇ-ଖାସ ହିଁ ଇବାଦାତ ଖାନା। ତେର ଓସ୍ତାର ମଟିର ଗଢ଼ା ଏଇ ଖାନା। ମଝିରେ କାରୁକାର୍ଯ୍ୟ ଖଚିତ ଉପରେ ଏକ ଦଶଫୁଟ ଗୋଲେଇ ବସ୍ତୁ ଉପରେ ପଦ୍ମଫୁଲ ଫୁଟିଲା ପରି ଦେଖାଯାଏ ଆଉ ଏହାରି ଉପରେ ସମ୍ରାଟ ବସନ୍ତି। ଇବାଦାତ୍ ଖାନାର ବିବରଣୀ କେଉଁଠାରେ ଦେଖାଯାଏନି। ତେବେବି ତାର ବର୍ଣ୍ଣନା ଅଛି। ଏହାର ଚାରୋଟି ଦ୍ୱାର ଥିଲା। ଗୋଟିଏ ପଟେ ଅଳ୍ପ ସଂଖ୍ୟକ ସ୍ୱତନ୍ତ୍ର ପ୍ରତିନିଧି ଚାରୋଟି ଦଳ ହୋଇ ଏକାଠି ବସନ୍ତି। ପୂର୍ବ ଦିଗରେ ଉଚ୍ଚକୋଟୀର ଅମୀର, ସହିୟାଦ, ପ୍ରଫେଟ୍ ମହମ୍ମଦଙ୍କର ବଂଶଧରମାନେ, ପଶ୍ଚିମ ପଟେ ଉଲେମା ଓ ଦକ୍ଷିଣରେ ଏବଂ ଉତ୍ତରରେଶେଖ ଓ ଅନ୍ୟାନ୍ୟ ଧର୍ମାଧୀକାରୀମାନେ। ଆଲୋଚନା ହୁଏ ସୁଫି ଧର୍ମ, ବିଜ୍ଞାନ, ଦର୍ଶନ ଓ ଆଇନ। ଇବାଦାତ ଖାନାରେ ଗୁରୁବାର ରାତିରୁ ଶୁକ୍ରବାର ଦିନ ଦି'ପହର ପର୍ଯ୍ୟନ୍ତ ଏ ଅଧିବେଶନ ଚାଲେ। ଆକବର କହୁଥିଲେ, ଏହାର ମୁଖ୍ୟ ଉଦେଶ୍ୟ ସତ୍ୟ ଆଧାରିତ ଆଲୋଚନା କରାହେଉ। ଆଉ ପ୍ରକୃତ ଧର୍ମ ପ୍ରଚାରିତ ହେଉ। ଆଉ ଏଇ ସତ୍ୟ ହିଁ ଦୈବୀ ସତ୍ୟର ପ୍ରମାଣ ଦେଖାଉ। ଆଲୋଚନାର କିଛି ଫଳ ହେଲା ନାହିଁ। କାହାରି ବକ୍ତବ୍ୟ କାହାରି ସହିତ ମିଳିଲା ନାହିଁ। ଥକି ଗଲେ ସମ୍ରାଟ। ଏ ଆଲୋଚନାର କୌଣସି ଯୁକ୍ତିସଂଗତ ଫଳାଫଳ ନ ମିଳିବାର ଆକବରଙ୍କର ବିଶ୍ୱାସ ହେଲା।

ଆକବର ମୁସିଲମ ଧର୍ମ ତ୍ୟାଗ କଲେ ନାହିଁ ଓ ମୁସଲିମ ଧର୍ମ ସଂକ୍ରାନ୍ତୀୟ ଯାହା କିଛି କରଣୀୟ କଲେ। ୧୫୭୫ରେ ସେ ତାଙ୍କ ସ୍ତ୍ରୀ ସଲିମା, ଖୁଡ଼ି ଗୁଲବଦନ ଓ ଅନ୍ୟାନ୍ୟ ଉଚ୍ଚଧରଣର ମୋଗଲ ସ୍ତ୍ରୀମାନଙ୍କୁ ହାଜଯାତ୍ରାରେ ପଠାଇଲେ। ନିଜର ଅଧିକ ଇଚ୍ଛା ଥିଲେ ମଧ୍ୟ ପରାମାର୍ଶଦାତାଙ୍କ ଉପଦେଶ ଥିଲା ଯେ ସାମ୍ରାଜ୍ୟ ଛାଡ଼ି ଯାଇପାରିବେ ନାହିଁ। ସେ ଏକ ସିଦ୍ଧ ମୁସଲମାନ ଭାବରେ ରହିଯିବା ଫଳରେ ତାଙ୍କ ଅନ୍ତରର ବିଶ୍ୱାସ ଆସ୍ତେ ଆସ୍ତେ ଶୁଖି ଯାଉଥିଲା।

୧୫୭୮ ବେଳକୁ ଆକବରଙ୍କ ବୟସ ୩୬ ବର୍ଷ। ସେ ପଞ୍ଜାବର ଝେଲମ ନଦୀ କୂଳରେ 'ଡେରା'ରେ ଥିଲେ। ଦଶଦିନ ଧରି ବଜାବଜାଇ ସବୁ ଜନ୍ତୁମାନଙ୍କୁ

ଏକାଠି କରିବା ପ୍ରସ୍ତୁତି ଚାଲିଥାଏ। ଏକାଠି ସବୁ ଜନ୍ତୁଙ୍କୁ ଶିକାର କରି ରକ୍ତ ରଂଜିତ କରିବେ ଖଣ୍ଡାର ଧାର। ଆକବର ନିଜେ ମଧ ପ୍ରସ୍ତୁତ ହୋଇ ସାରିଥିଲେ। କିନ୍ତୁ ହଠାତ୍ ତାଙ୍କ ମନରେ କି ମାନସିକ ଧାରଣା ଆସିଲା କିଏ ଜାଣେ ? ଆଦେଶ ଦେଲେ ସବୁ ଜନ୍ତୁଙ୍କ ମୁକ୍ତ କରି ଛାଡ଼ିଦିଅ। କେହି ସେମାନଙ୍କୁ ଛୁଇଁବେ ନାହିଁ।

ଏପରି ପରିବର୍ତ୍ତନରେ ସେ ଆକ୍ରାନ୍ତ ହେଲେ। ଦେହ ମନ ତାଙ୍କର ଭାଙ୍ଗିଗଲା। ମୃତପ୍ରାୟ ବେହୋସ ହୋଇ ପଡ଼ିରହିଲେ। ବିବଶ କଲା ସମ୍ରାଟଙ୍କୁ। ଅବସ୍ଥା ଏପରି ହେଲା ଯେ ହାମିଦା ବାନୁ ବେଗମ୍ ତାଙ୍କ ପୁଅର ଯତ୍ନ ନେବାପାଇଁ ଫତେପୁର ସିକ୍ରିରୁ ଭେରା ଆସିଲେ।

ସାଧାରଣ ଲୋକଙ୍କ ଭିତରେ ଗୁଜବ ଖେଳିଗଲା। ଭଗବାନଙ୍କ ଅସୀମ ଦୟାରୁ ଆକବର ଏ ପରିସ୍ଥିତିରୁ ମୁକୁଳି ଗଲେ। ଏ ଘଟଣା ତାଙ୍କ ଉପରେ ଅନେକ ପ୍ରଭାବ ପକାଇଲା। ସୁସ୍ଥ ହେଲା ପରେ ଗରୀବ ଲୋକ ଓ ଫକୀରଙ୍କୁ ଦାନ କଲେ। ସେଠାରେ ଗୋଟିଏ ସୁନ୍ଦର ବଗିଚା ଓ ଏକ ସ୍ମୃତିଘର ତିଆରି କଲେ। ଫତେପୁର ସିକ୍ରି ଫେରିବା ପରେ, ସୁନା, ରୂପା ଓ ତମ୍ବାର ମୁଦ୍ରା ଅନୁପ ତଲାଓ୍ବାରେ (ନିଜ ପ୍ରାସାଦ ଭିତରେ) ଭରିଦେଲେ। ସେ ସବୁକୁ ଫକୀର, ସନ୍ୟାସୀ, ଦରିଦ୍ର ଓ ଜ୍ଞାନୀ ଲୋକଙ୍କ ମଧ୍ୟରେ ବାଣ୍ଟି ଦେଲେ। ନିଜାମୁଦ୍ଦିନଙ୍କ କଳନାରେ ଏହାର ପରିମାଣ ଥିଲା ୨୦ କୋଟି ଟଙ୍କା ଥିଲା।

ପରେ ପରେ ସେ ଇବାଦାତ ଖାନା ଖୋଲା ରଖିଲେ। ଭିନ୍ନ ଭିନ୍ନ ଧର୍ମବିଶ୍ୱାସୀ ଲୋକଙ୍କୁ ଆମନ୍ତ୍ରଣ କଲେ। ମୁସଲିମ୍, ହିନ୍ଦୁ, ଜୈନ, ଜିଉଇ, ଜେରୋଷ୍ଟ୍ରିୟାନ, ଖ୍ରୀଷ୍ଟିୟାନ ସବୁ ଧର୍ମର ଲୋକ ଏଥିରେ ଭାଗ ନେଲେ। ଏପରିକି ସାବିୟାନ ଓ ଚରଭକସ୍‌ମାନଙ୍କୁ ମଧ ନିମନ୍ତ୍ରଣ କଲେ। ଆକବର ଏହା ଫଳରେ ସବୁ ଧର୍ମର ପ୍ରତିଭାବାନ ବ୍ୟକ୍ତି, ବିଚାରବନ୍ତ ପୁରୁଷମାନଙ୍କ ଉଚ୍ଚ ଦୃଷ୍ଟିକୋଣ ବିଚାର କରି ପାରିଲେ। ମଣିଷ ଜାତିର ପ୍ରତ୍ୟେକ ଧର୍ମର ବିଶ୍ୱାସ ଓ ଆଶା ଉପରେ ଖୋଲାଖୋଲି ଭାବରେ ବିଚାର ଓ ଆଲୋଚନା ସବୁ ଉଦ୍ଧୃତ କରାଗଲା।

ବୋଧହୁଏ ଆକବରହିଁ ଏକମାତ୍ର ମଣିଷ ଯାହାଙ୍କର କୌଣସି ଧର୍ମଗତ କୁସଂସ୍କାର ନ ଥିଲା। ନ୍ୟାୟହିଁ ଏକମାତ୍ର ପଥପ୍ରଦର୍ଶକ। ''କୌଣସି ଅନ୍ୟ ଧର୍ମକୁ ଅବମାନନା କରିବା ହିଁ ଭଗବାନଙ୍କୁ ଅବମାନନା କରିବା।''

ଜଣେ ବ୍ରିଟିଶ ପରିବ୍ରାଜକ ଥମାସ କୋରିୟାଟଙ୍କ ଉକ୍ତି । ଭଗବାନଙ୍କୁ ଅନୁଧ୍ୟାନ କରିବା ହିଁ ସତ୍ୟଙ୍କୁ ଅନୁଧ୍ୟାନ କରିବା । କୌଣସି ରକ୍ଷଣଶୀଳ ଧର୍ମ ତାଙ୍କୁ ସନ୍ତୋଷ ଦେଇ ପାରି ନଥିଲା । ସେ ନିଜେ ମୁସଲମାନ ଧର୍ମ ଉପରେ ସନ୍ତୁଷ୍ଟ ନ ଥିଲେ । ଇସଲାମ ତାଙ୍କର ନିଜର ଧର୍ମ କିନ୍ତୁ ତାଙ୍କୁ ସେ ଧର୍ମ ସନ୍ତୁଷ୍ଟ କରି ପାରି ନଥିଲା । ସେ ଅନେକ ମୁସଲିମ ଧର୍ମ ଅଭ୍ୟାସକୁ ତ୍ୟାଗ କରିଥିଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବିଚାରପୂର୍ଣ୍ଣ ଧର୍ମ–ପରମ୍ପରାଗତ ଧର୍ମ ନୁହେଁ ।

ଧର୍ମଜନିତ ବିଶ୍ୱାସ ଓ ତା'ର ଉପାୟର ପ୍ରଭାବରେ ସେ ଶାକାହାରୀ ହୋଇଗଲେ । ଭାରତୀୟ ନୀତିନିୟମକୁ ଭଲ ପାଉଥିଲେ । କାବୁଲର ଜଣେ ସେବାକାରୀ ଖ୍ୱାଜା ଅମ୍ବର ନାଜୀଙ୍କ ପାଖରୁ ପିଲାଦିନେ ଏସବୁ ଶିକ୍ଷା କରିଥିଲେ । ହାରମେ ମଧ୍ୟରେ ହିନ୍ଦୁଧର୍ମର ପୂଜାପାଠ କରାଉଥିଲେ । ତାଙ୍କ ହିନ୍ଦୁ ସ୍ତ୍ରୀ ଓ କନ୍ୟାମାନଙ୍କ ସହ ମିଶି ହାରେମ ଭିତରେ ହୋମ ଇତ୍ୟାଦିର ଆୟୋଜନ କରାଇଥିଲେ । ଅନେକ ହିନ୍ଦୁ ପ୍ରଜା ମଧ୍ୟ ଦରବାରରେ ସ୍ଥାନ ପାଉଥିଲେ । ଜଣେ ପୁଅକୁ – ଡାନିୟେଲକୁ ଭାରାମଲଙ୍କ ତତ୍ତ୍ୱାବଧାନରେ ଛାଡ଼ିଥିଲେ ।

ରାଜା ବୀରବର ଆକବରଙ୍କ ଉପରେ ଅନେକ ପ୍ରଭାବ ପକାଇଥିଲେ । ଫଳରେ, ସୂର୍ଯ୍ୟ, ଅଗ୍ନି, ଜଳ, ପଥର, ବୃକ୍ଷ ସବୁ ପ୍ରକାର ପ୍ରାକୃତିକ ବସ୍ତୁର ପୂଜା କରିବା ଆରମ୍ଭ କଲେ । ଅଧିକନ୍ତୁ ଗାଈ ଓ ଗୋବରକୁ ମଧ୍ୟ ସମ୍ମାନ ଦେଲେ । ରାତି ଅଧରେ ଓ ଭୋର ସମୟରେ ମନ୍ତ୍ରପାଠ ମଧ୍ୟ କରୁଥିଲେ । ସୂର୍ଯ୍ୟଙ୍କୁ ଦିନରେ ଚାରିଥର ପୂଜା କରିବା ଓ ସଂସ୍କୃତରେ ସୂର୍ଯ୍ୟ ସହସ୍ରନାମ ପାଠକରିବାକୁ ବି ଭୁଲୁ ନଥିଲେ । ଅନେକ ହିନ୍ଦୁ ପୂଜା ପଦ୍ଧତିକୁ ଆପଣାଉ ନେଇଥିଲେ ।

ଦୀପାବଳି ଉତ୍ସବରେ ଆଲୋକସଜ୍ଜା ଓ ଡଙ୍ଗୀ ଭସେଇବା ପର୍ବ ମଧ୍ୟ ପାଳନ କରୁଥିଲେ । ଅନେକ ହିନ୍ଦୁ ଉତ୍ସବ ପାଇଁ ମୁସଲମାନ ଉତ୍ସବ ବନ୍ଦ କରିଦେଇଥିଲେ ।

ଆକବର ଇସଲାମ ଧର୍ମଠାରୁ ଦୂରେଇ ଯାଇଥିଲେ ହେଁ ଇସଲାମ ଧର୍ମ ବିରୁଦ୍ଧରେ ନ ଥିଲେ । ଅନ୍ୟ କୌଣସି ଧର୍ମ ଗ୍ରହଣ କରି ନଥିଲେ । କାରଣ କୌଣସି ଧର୍ମର ନିୟମାବଳୀ ତାଙ୍କୁ ସନ୍ତୁଷ୍ଟ କରି ପାରି ନଥିଲା । ପ୍ରତ୍ୟେକ ଧର୍ମର ଏକ ଅଣଆଧ୍ୟାତ୍ମିକ ଚରିତ୍ର ତାଙ୍କ ମନ ଓ ଭାବନାରେ ଚିତ୍ରିତ ହୋଇସାରିଥିଲେ । ଧର୍ମ, ଧର୍ମାଧୀକାରୀ, ଧର୍ମ ଗ୍ରହଣ କରିବା ବ୍ୟକ୍ତି । ଅଲୌକିକ ଘଟଣାରେ ବଶବର୍ତ୍ତୀ କରେଇବା ଲୋକ ପ୍ରତ୍ୟେକ ଧର୍ମରେ ପ୍ରତ୍ୟେକ ଦେଶରେ ବିଦ୍ୟମାନ ଅଛନ୍ତି ।

ତା' ହେଲେ କୌଣସି ଧର୍ମର ଅନୁଗ୍ରହଣ କରିବାକୁ ବିଚାର କରିବା ସମ୍ଭବ? କାହାରି କୌଣସି ଯୁକ୍ତି ନାହିଁ ସେଇ ଧର୍ମ ପ୍ରତି ଅନୁରକ୍ତ କରେଇବା ପାଇଁ। ଇବାଦାତ୍ ଖାନାର ପ୍ରତ୍ୟେକ ଭାଗ ନେଉଥିବା ବ୍ୟକ୍ତିଗଣ ନିଜ ନିଜ ଭିତରେ ବିରୋଧାତ୍ମକ। ଆକବରଙ୍କ ଲକ୍ଷ୍ୟର ଉଦ୍ଦେଶ୍ୟ ଓ ସେଠାକାର ବକ୍ତୃତାରେ ଭାଗନେଉଥିବା ବ୍ୟକ୍ତିଗଣଙ୍କ ଉଦ୍ଦେଶ୍ୟ ଏକ ହୋଇପାରିଲା ନାହିଁ। ଧର୍ମଜନିତ ନୂଆ ଉପଲବ୍ଧିର ସତ୍ୟତା ଉପରେ ଆଧାରିତ ଥିଲା ଆକବରଙ୍କ ଚିନ୍ତାଧାରା। କିନ୍ତୁ ଉପସ୍ଥିତ ଭଦ୍ରବ୍ୟକ୍ତିଗଣ ନିଜ ନିଜର ଗାରିମାର ପରିଚୟ ଦେଉଥିଲେ। କୌଣସି ନୂତନ ସତ୍ୟ, ଆଧାରିତ ଜ୍ଞାନର ନୁହେଁ। ନିଜର ପରିବେଷିତ ତଥ୍ୟ ଠିକ୍ ଓ ଅନ୍ୟମାନଙ୍କର ଭୁଲ ବୋଲି ପ୍ରମାଣ କରୁଥିଲେ। ନିଜର ସତ୍ୟ ଓ ତା'ର ଗାରିମା ବଖାଣିବାକୁ ଯାଇଁ ସେମାନେ ଆକବରଙ୍କୁ ଆଗେଇ ନେବାକୁ ଚାହୁଁଥିଲେ କିନ୍ତୁ ତାଙ୍କର ସତ୍ୟ ଅନୁସନ୍ଧାନର ନିଜକୁ ସନ୍ତୋଷ ଦେଇ ପାରୁ ନଥିଲେ। ୧୫୮୨ ପର୍ଯ୍ୟନ୍ତ ଇବାଦାତ ଖାନା ଚାଲିଥିଲେ ମଧ୍ୟ ତାଙ୍କର ଲକ୍ଷ୍ୟ ସ୍ଥଳରେ ଆକବର ପହଞ୍ଚି ପାରି ନ ଥିଲେ।

ଆକବର ସର୍ବସାଧାରଣ ଆଲୋଚନା ଛାଡ଼ି ଗୋପନୀୟ ଆଲୋଚନା ଆରମ୍ଭ କଲେ ତାଙ୍କର ଦାର୍ଶନିକ ତତ୍ତ୍ୱ ପାଇବା ପାଇଁ। ଦେବୀ ନାମକ ଜଣେ ହିନ୍ଦୁ ବ୍ରାହ୍ମଣ ଅନେକ ଚମତ୍କାରିତା ଦେଖାଇଲେ। ଆକବର ଆତ୍ମାର ଅନ୍ୟ ଶରୀର ପ୍ରବେଶରେ ବିଶ୍ୱାସ କଲେ। ଅନେକ ହିନ୍ଦୁ ଯୋଗୀଙ୍କୁ ଦେଖାକଲେ। ଚିଉରୂପ ନାମକ ଜଣେ ବୈଷ୍ଣବ, ଉଜ୍ଜୟିନୀ ପାଖରେ ଗୋଟେ ଛୋଟ ଗୁମ୍ଫାରେ ରହୁଥିଲେ ତାଙ୍କୁ ଦେଖା କଲେ। ଗୁପ୍ତରେ ମଧ୍ୟ ଅନେକ ସାଧୁଙ୍କୁ ଦେଖାକଲେ। ହିନ୍ଦୁ ଧର୍ମର ଗୂଢ଼ତତ୍ତ୍ୱ ସବୁ ସଂକ୍ରାନ୍ତରେ ପ୍ରଶ୍ନ କଲେ। ଏହି ସମୟରେ ହିନ୍ଦୁ ଧର୍ମ ଗ୍ରନ୍ଥ ବେଦ ଓ ଅନ୍ୟ ବୀରତ୍ୱ ରଂଜକ କାହାଣୀ ସବୁ ପର୍ଶିୟାନ ଭାଷାରେ ଅନୁବାଦ କରାଇଲେ। ମହାଭାରତର ଅନୁବାଦ ବାଦୁଇନଙ୍କ ଉପରେ ପଡ଼ିଥିଲା। ଆକବର ଏ ସମୟରେ ହିନ୍ଦୁଧର୍ମ ପ୍ରତି ଏତେ ଆକୃଷ୍ଟ ହୋଇ ଯାଇଥିଲେ ଯେ ଘୋଡ଼ାକୁ ମଧ୍ୟ ଭାବୁଥିଲେ କି ଭଗବାନଙ୍କ ଅବତାର। ଅନ୍ୟ କୌଣସି ଧର୍ମରେ ଦିକ୍ଷୀତ ହୋଇ ନଥିଲେ । ଏଣେ ରକ୍ଷଣଶୀଳ ଇସଲାମ ମଧ୍ୟ ହୋଇ ରହିପାରିଲେ ନାହିଁ। କିନ୍ତୁ ସୁଫି ଧର୍ମ ପ୍ରତି ଆକୃଷ୍ଟ ହୋଇ ରହିଲେ ଜଣେ ସୁଫି ସାଧୁଙ୍କ ଗହଣରେ।

ଗୁରୁ ଟେଜୁବିନଙ୍କୁ ବାଦ ଦେଲେ ତାଙ୍କର ଆଉ ଜଣେ ପ୍ରିୟ ପାର୍ଶି ଗୁରୁ ଥିଲେ –ଦସ୍ତୁର ମାହାୟାରଜୀ ରାଣା । ତାଙ୍କୁ ସେ ୧୫୭୩ରେ ଗୁଜରାଟରେ ଭେଟିଥିଲେ। ୧୫୭୮ରେ ଆକବରଙ୍କ ନିମନ୍ତ୍ରଣ କ୍ରମେ ଫତେପୁର ସିକ୍ରିରେ ପହଞ୍ଚିଲେ। ତାଙ୍କ ପ୍ରାସାଦରେ ଏକ ପବିତ୍ର ଅଗ୍ନି ସଂଯୋଗ କଲେ। ସେ ଅଗ୍ନି ଓ ସୂର୍ଯ୍ୟଙ୍କ ପାଖରେ ଆରାଧନା କଲେ ଲୋକଙ୍କ ସାମନାରେ। ବୀରବଲ ମଧ୍ୟ ସୂର୍ଯ୍ୟ ପୂଜା କରିବା ପାଇଁ ତାଙ୍କୁ ପ୍ରବର୍ତ୍ତାଇଲେ। ସଂଧ୍ୟା ଆଳତି ବେଳେ ଦରବାରର ସବୁ ସଦସ୍ୟ ଠିଆ ହୋଇ ରହିବାର ଦେଖାଦେଇଥିଲା। ପ୍ରତ୍ୟେକ ପାର୍ଶି କୁସ୍ତି ପୋଷାକ ନିୟମ ଅନୁଯାୟୀ ପିନ୍ଧିଥିଲେ।

ମାର୍ଚ୍ଚ ୧୫୮୦ରେ ସର୍ବସାଧାରଣ ଏ ପାର୍ଶି ସୂର୍ଯ୍ୟ ପୂଜା ଗ୍ରହଣ କରିନେଲେ। ସେତିକିବେଳେ ଗୋଆରୁ ତିନିଜଣ ଖ୍ରୀଷ୍ଟିୟାନ ପାଦ୍ରୀ ମାସକ ପୂର୍ବରୁ ଦରବାରରେ ପହଞ୍ଚିଥିଲେ। ଅଗ୍ନିପୂଜା ଘଟଣା ସେମାନଙ୍କୁ ଜଣା ନଥିଲା। ସେମାନେ ବିଶ୍ୱାସ କରୁଥିଲେ କି ଇସଲାମ (ମୋଗଲ ସାମ୍ରାଜ୍ୟରେ) ସେମାନଙ୍କ ଶତ୍ରୁ। ସେଥିରୁ ବାଦଶାହା ଓ ଜନସାଧାରଣଙ୍କ ଠାରୁ ଏ ବିଶ୍ୱାସ ଦୂରେଇ ଦେବେ। କିନ୍ତୁ ସେମାନେ ଜାଣି ନଥିଲେ କି ସମ୍ରାଟ ଇସଲାମ ଧର୍ମଠାରୁ ଦୂରେଇ ଯାଉଛନ୍ତି। ଦଶମାସ ଧରି ମୋଗଲସାମ୍ରାଜ୍ୟ ରହି ମଧ୍ୟ ସେମାନେ ଗୋଆକୁ ଚିଠି ଲେଖିଲେ କି ପ୍ରଫେଟ ମହମ୍ମଦଙ୍କ ନାମ ବ୍ୟତୀତ ସେମାନେ ଆଉ କିଛି ଶୁଣୁନାହାନ୍ତି।

ପାଦ୍ରୀମାନେ ଯେଉଁ ତଥ୍ୟ ଗୋଆକୁ ଦେଉଥିଲେ ତା' ସତ ନ ଥିଲା। କାରଣ ଆକବର ଏହା ଭିତରେ ଅନ୍ୟ ଧର୍ମ ଦ୍ୱାରା ପ୍ରଭାବିତ ହୋଇସାରିଥିଲେ। ସେମାନେ ୨୬ ବର୍ଷ କାଳ ସାମ୍ରାଜ୍ୟରେ ରହିଥିଲେ ହେଁ ଖ୍ରୀଷ୍ଟିୟାନ ଧର୍ମର କୌଣସି ପ୍ରଭାବ ଆକବରଙ୍କ ଉପରେ ପଡ଼ି ନ ଥିଲା ବା କୌଣସି ନୀତିନିୟମ ଆପଣାଇ ପାରି ନ ଥିଲେ। କିଛି ସମୟ ପରେ ଆକବରଙ୍କ ସଂପର୍କ ଖ୍ରୀଷ୍ଟିୟାନ ମାନଙ୍କ ସହ ସ୍ଥାପିତ ହେଲା। ଗୁଜରାଟରେ ଥିଲାବେଳେ କେତେକ ପର୍ତ୍ତୁଗୀଜ ବ୍ୟବସାୟୀ ଓ ଅଫିସର ତାଙ୍କ ସହିତ ଦେଖାକଲେ। ଏଇଟାହିଁ ଖ୍ରୀଷ୍ଟିୟାନମାନଙ୍କ ପାଇଁ କୌତୂହଳର ବିଷୟ। ଇବାଦାତ ଖାନା ତିଆରି କଲେ ଆଉ ଫାଦର ଜୁଲିଆନ ପେରିରା, ବେଙ୍ଗଲର ଉପ-ଜେନେରାଲଙ୍କୁ ଡକାଇଲେ। ତାଙ୍କ ପାଖରୁ ଖ୍ରୀଷ୍ଟଧର୍ମର ଗୂଢ଼ତତ୍ତ୍ୱ ଜାଣିବା ପାଇଁ ଇଚ୍ଛା କଲେ। କିନ୍ତୁ ଏ ଫାଦର ଜଣେ ଧର୍ମପ୍ରଚାରକ, ଗବେଷକ ନୁହଁନ୍ତି। ସେ ଆକବରଙ୍କୁ ସନ୍ତୁଷ୍ଟ କରିପାରିଲେ ନାହିଁ। ଏହା ତ ୧୫୭୨ ବେଳର

କଥା। ଆଉ ଥରେ ୧୫୭୮ରେ ଗୋଆ ଭାଇସରାୟ ଜଣେ ବିଶେଷଦୂତ ସମ୍ରାଟଙ୍କ ପାଖକୁ ପଠାଇଲେ। ସେ ସମୟରେ ଖ୍ରୀଷ୍ଟିୟାନ ଧର୍ମ ପ୍ରତି ଆକୃଷ୍ଟ ହେଲେ ଆକବର। ତାଙ୍କୁ ବିଶେଷ ଅନୁରୋଧ କଲେ କି ଜଣେ ଧର୍ମଗୁରୁ ମୋଗଲ ସମ୍ରାଜ୍ୟକୁ ପଠାଇବା ପାଇଁ – ଫଳରେ ଏ ଧର୍ମର ଗୂଢ଼ ତତ୍ତ୍ୱ ଜାଣିପାରିବେ।

ଏ ଅନୁରୋଧ ଭାଇସରାୟଙ୍କ ପ୍ରତି ଏକ ସମ୍ମାନ। ସେ ୨ ଜଣ ଖ୍ରୀଷ୍ଟଧର୍ମ ସଂସ୍ଥାର ସଦସ୍ୟଙ୍କୁ ପଠାଇଲେ। ତା' ସହିତ ଜଣେ ମୁସଲିମ୍, ଯେ କି ଧର୍ମାନ୍ତକରଣ କରି ଖ୍ରୀଷ୍ଟିୟାନ ହୋଇଥିଲେ ତାଙ୍କୁ ମଧ୍ୟ ପଠାଇଲେ।

ଏମାନେ ୧୫୮୦ ବେଳକୁ ଫତେପୁର ସିକ୍ରିରେ ପହଞ୍ଚିଲେ। ସେମାନଙ୍କ ପୋଷାକ, ପଗଡ଼ିହୀନ ମସ୍ତକ, ଦାଢ଼ିହୀନ ମୁହଁ, ଟୋପି, ଅସ୍ତ୍ରଶସ୍ତ୍ରହୀନ ଶରୀର ଦେଖି ସମସ୍ତେ ଆବାକାବା ହୋଇ ତାଙ୍କୁ ଅନାଇଲେ। ଏମାନଙ୍କୁ ଆକବର ଉତ୍କଣ୍ଠାର ସହ ଅନାଉଥିଲେ। ଗୋଟେ ସୁନ୍ଦର ବନ୍ଧେଇରେ ବାଇବେଲ ଉପହାର ଦେଲେ। ତାଙ୍କ ରହିବାର ସବୁ ବନ୍ଦୋବସ୍ତ ହେଲା ଆଉ ରାତିଦିନ ଆଲୋଚନା ଚାଲିଲା।

ଆକବରଙ୍କ ବ୍ୟବହାର ଦେଖି ସେମାନେ ଆଶା କରିଥିଲେ ଆକବରଙ୍କୁ ଅତି ସହଜରେ ଧର୍ମାନ୍ତକରଣ କରାଇପାରିବେ। ବାଦାଉନଙ୍କ ଭାଷାରେ ଆକବର ଖ୍ରୀଷ୍ଟିୟାନ ଧର୍ମର ସତ୍ୟକୁ ବିଶ୍ୱାସ କରୁଥିଲେ ଆଉ ଏଇ ବିଶ୍ୱାସରେ ଭାବିଥିଲେ କି ରାଜପୁତ୍ର ମୁରାଦ ତାଙ୍କଠାରୁ କିଛି ଶିକ୍ଷା କରିପାରିବେ। ଯୀଶୁଙ୍କର ଅଲୌକିକ ଶକ୍ତି ଦେଖି ସେ ଭାବିଥିଲେ ସେ ଜଣେ ଉପଯୁକ୍ତ ଡାକ୍ତର। କିନ୍ତୁ ଐଶରିକ ଗୁଣକୁ ଗ୍ରହଣ କରିପାରୁ ନ ଥିଲେ। ସେମାନେ କୌଣସି ଅଲୌକିକ ଶକ୍ତିର ପରାକାଷ୍ଠା ଦେଖାଇବାକୁ ଇଚ୍ଛା କରି ମଧ୍ୟ ଦେଖାଇ ପାରି ନଥିଲେ।

ସେମାନେ ବେମାର ପଡ଼ିଲେ। ବଧେଇ ଜଣାଇଲେ ଆକବର। ନିଜ ରାଜ୍ୟରେ ଧର୍ମପ୍ରଚାର ପାଇଁ ତାଙ୍କୁ ଅନୁମତି ଦେଲେ, ଏପରିକି ଆକବରଙ୍କ ପୁଅମାନେ ମଧ୍ୟ ନିଜ ଇଚ୍ଛା ଅନୁସାରେ ଯେ କୌଣସି ଧର୍ମଗ୍ରହଣ କରିପାରିବେ ବୋଲି ଇଚ୍ଛା ପ୍ରକାଶ କଲେ। ଆଉ ନିଜେ ଆଗ୍ରହସହକାରେ ତାଙ୍କ ବାଣୀ ଶୁଣିଲେ ମଧ୍ୟ ଧର୍ମ ଗ୍ରହଣ କରିବାପାଇଁ ଆଗ୍ରହ ଦେଖାଇଲେ ନାହିଁ। କିଛି ଦିନ ପରେ ପାଦ୍ରୀମାନେ ଅନୁଭବ କଲେ ଯେ ସେମାନଙ୍କ ଉଦ୍ଦେଶ୍ୟ ସଫଳ ହୋଇନାହିଁ। ୧୫୮୨ରେ ଜଣେ ଗୋଆ ଫେରିଗଲେ। ଆଉ ଜଣକୁ ସେ ଯିବାକୁ ଦେଲେ ନାହିଁ। ତାଙ୍କ

ଦରବାରରେ ଭିନ୍ନ ଭିନ୍ନ ଦେଶର, ଧର୍ମର ଲୋକ ରହିବା ପାଇଁ ସେ ପସନ୍ଦ କରୁଥିଲେ । ତେଣୁ ଆକ୍ୱାଭିଡା ନାମକ ସେ ପାଦ୍ରୀ ଆଉ ବର୍ଷେ ରହିଲେ । ଖ୍ରୀଷ୍ଟଧର୍ମ ପ୍ରତି ଅନୁରକ୍ତି ହରାଇ ସାରିଥିଲେ ଆକବର । କିନ୍ତୁ ୧୫୯୦ରେ ଗ୍ରୀକ୍ ଚର୍ଚ୍ଚର ଜଣେ ଧର୍ମପ୍ରଚାରକ ତାଙ୍କୁ ଲାହୋରରେ ଭେଟିଲେ । ତାଙ୍କର ଆଗ୍ରହ ପୁଣି ଦେଖା ହେଲା । ସେ ଗ୍ରୀକ୍ ଭାଷାରେ ବହିକୁ ଅନୁବାଦ କରିବା ପାଇଁ ଅନୁମତି ଦେଲେ । ଗ୍ରୀକ୍ ପ୍ରଚାରକ ଯେତେବେଳେ ଫେରିଗଲେ ସେ ତାଙ୍କ ହାତରେ ଗୋଆକୁ ଖଣ୍ଡେ ଚିଠି ପଠାଇଲେ । ଚିଠିରେ ଅନୁରୋଧ କରିଥିଲେ କିଛି ଜ୍ଞାନୀ ଲୋକଙ୍କୁ ତାଙ୍କ ଦରବାରକୁ ପଠାଇବା ପାଇଁ ।

ଏଥର ଗୋଆକୁ ଯେଉଁ ମିଶିନାରୀ ଦଳ ଆକବରଙ୍କ ଦରବାରକୁ ଆସିଲେ ସେମାନଙ୍କୁ ଟିକେ କୁଣ୍ଠା ବୋଧ କରି ପଠାଇଲେ । ୧୫୯୧ରେ ସେମାନେ ଲାହୋରରେ ପହଞ୍ଚିଲେ । ଆକବର ସେମାନଙ୍କୁ ଲାହୋରରେ ଏକ ସ୍କୁଲ ବସାଇବା ପାଇଁ ଅନୁମତି ଦେଇଥିଲେ । ସ୍କୁଲରେ ସେମାନେ ପର୍ତ୍ତୁଗୀଜ ଭାଷା ଶିଖାଇବାର ଠିକଣା ହେଲା । ସେମାନଙ୍କ ଉଦ୍ଦେଶ୍ୟ ଭାଷା ଶିଖେଇବା ପାଇଁ ନ ଥିଲା । ଧର୍ମପ୍ରଚାର ଉଦ୍ଦେଶ୍ୟ ପୂରଣ ନ ହେବାରୁ ସେମାନେ ସେଥିପାଇଁ ଗୋଆ ଫେରିଗଲେ ।

୧୫୯୫ରେ ସ୍ପେନର ମିଶନାରୀ ତରଫରୁ ଜେରୋମ ଜାଭିୟର ଆକବରଙ୍କ ଦରବାରକୁ ଆସିଲେ । ସ୍ୱାଗତ ଜଣାଇଲେ ଆକବର । ସେମାନଙ୍କୁ ତାଙ୍କ ଇଚ୍ଛା ଅନୁଯାୟୀ ଶିକ୍ଷା ଓ ଧର୍ମାନ୍ତକରଣ କରିବାକୁ ଅନୁମତି ଦେଲେ । ଏପରିକି ଜଣେ ଖ୍ରୀଷ୍ଟିୟାନ ରାଜପୁତ୍ର ଭାବରେ ପ୍ରଣିପାତ ମଧ୍ୟ କଲେ । କିନ୍ତୁ ଏ ସବୁ କେବଳ ଅନୁସନ୍ଧିତ୍ସା ଥିଲା– ବିଶ୍ୱାସ ନୁହେଁ ।

ସେମାନେ ଲାହୋରରେ ପହଞ୍ଚି ଲୋକମାନଙ୍କ ମନ ଜିତିବାର ଅନେକ ସୁଯୋଗ ପାଇଲେ । ସେତିକିବେଳେ ପଞ୍ଜାବ ଓ କାଶ୍ମୀରରେ ଦୁର୍ଭିକ୍ଷ ପଡ଼ିଲା । ଦୁର୍ଭିକ୍ଷ ଜନିତ ମୃତପିତାମାତାଙ୍କର ଛାଡ଼ି ଚାଲିଯାଇଥିବା ସନ୍ତାନମାନଙ୍କୁ ଧର୍ମାନ୍ତକରଣ କରି ଭଲ କାମ କରୁଛନ୍ତି ବୋଲି ଭାବିଲେ । ଆଉ ଏହାଦ୍ୱାରା ଭଗବାନଙ୍କର ଆଶିର୍ବାଦ ପାଇବେ ବୋଲି ମଧ୍ୟ ବିଶ୍ୱାସ କଲେ । ସେମାନେ ଆକବର ବା ତାଙ୍କର ପିଲାମାନଙ୍କୁ କୌଣସି ପ୍ରଭାବ ପକାଇ ପାରିଲେ ନାହିଁ । ଯଦିଓ ଜାଭିୟର ଆକବରଙ୍କ ପରେ ଜାହାଙ୍ଗୀରଙ୍କ ସାମ୍ରାଜ୍ୟ ପର୍ଯ୍ୟନ୍ତ ମଧ୍ୟ ମୋଗଲ ଦରବାରରେ ଥିଲେ ପ୍ରାୟ ୨୩ ବର୍ଷ ଧରି ।

ସେମାନେ ଧର୍ମ ପ୍ରଚାର ସଂଗେ ସଂଗେ ମୋଗଲ ଦରବାରେ ରାଜନୈତିକ ପ୍ରଭାବ ମଧ୍ୟ ପକାଇଥିଲେ। ଫଳରେ ଅନ୍ୟାନ୍ୟ ଇଉରୋପୀୟମାନଙ୍କୁ ମୋଗଲ ଦରବାରକୁ ଆସିବା ପାଇଁ ଅନୁମତି ଦେଲେ।

୧୫୮୨ ବେଳକୁ ଜୈନମାନଙ୍କର ତିନିଜଣିଆ ସଦସ୍ୟ ଆକବରଙ୍କ ନିମନ୍ତ୍ରଣ କ୍ରମେ ଗୁଜରାଟରୁ ଆସି ମୋଗଲ ଦରବାରରେ ପହଞ୍ଚିଲେ। ତାଙ୍କ ନୀତି ଅନୁସାରେ କୌଣସି ଯାନବାହନ ବ୍ୟବହାର ନ କରି ପାଦରେ ଚାଲି ଚାଲି ହରଜିଭନ ସୁରିଙ୍କ ନେତୃତ୍ୱରେ ବରବାରରେ ପହଞ୍ଚିଲେ। ତାଙ୍କୁ ପୃଥିବୀର ଶିକ୍ଷକ ବୋଲି ପଦବୀ ଦିଆଗଲା। ସେ ଆକବରଙ୍କ ପାଖରୁ କିଛି ବି ଆଶା କରୁ ନ ଥିଲେ ସେଥିପାଇଁ ଦରବାରେ ବେଶିଦିନ ମଧ୍ୟ ରହିପାରିଲେ ନାହିଁ। ତାଙ୍କ ଜୀବନଶୈଳୀର ପ୍ରଭାବ ଆକବରଙ୍କ ଉପରେ ପଡ଼ିଲା। ସେହିଦିନୁ ସେ ଶିକାର ଛାଡ଼ିଦେଲେ। ପରିତ୍ୟାଗ କଲେ ମାଂସ ଭୋଜନ। ପଶୁବଳି ପ୍ରଥା ଉଠାଇଲେ। ଏପରିକି ମାଛଧରା ମଧ୍ୟ ବନ୍ଦ କରିଦେଲେ। ପଞ୍ଜୁରୀରେ ଥିବା ପକ୍ଷୀମାନଙ୍କୁ ମଧ୍ୟ ଉଡ଼ାଇଦେଲେ। ଜାଭିୟର କହିଲେ ଆକବର ଭଗବାନ ଓ ସୂର୍ଯ୍ୟଙ୍କୁ ଭକ୍ତି କରନ୍ତି। ସେ ବର୍ତ୍ତମାନ ଜୈନମାନଙ୍କର ଆଚରଣ ମଧ୍ୟ ମାନିନେଲେ। ଜୈନମାନଙ୍କ ପ୍ରଭାବ ସତ୍ୱେ ତାଙ୍କ ବିଶ୍ୱାସରେ କୌଣସି ପରିବର୍ତ୍ତନ ହେଲା ନାହିଁ। ପରିବର୍ତ୍ତନ ହେଲା ଜୀବନଶୈଳୀର। ପ୍ରତ୍ୟେକ ଧର୍ମର ଲୋକ ବିଶ୍ୱାସ କରୁଥିଲେ କି ଆକବର ତାଙ୍କରି ଧର୍ମକୁ ଅନୁମୋଦନ କରୁଛନ୍ତି।

୧୬ ଶହ ଶତାବ୍ଦୀର ଐତିହାସକାର ବାରଟୋଲି ଲେଖିଛନ୍ତି କି ତାଙ୍କ ମନୋଭାବ ଜାଣିବା ପାଇଁ ସେ କାହାକୁ ସୁଯୋଗ ଦେଉ ନ ଥିଲେ। କିନ୍ତୁ ସମସ୍ତଙ୍କ ପ୍ରତି ଉତ୍ତମ ବ୍ୟବହାର ଅନ୍ୟ ଧର୍ମ ସଂକ୍ରାନ୍ତରେ ଅଧିକ ଜ୍ଞାନ ଆହରଣ କରିବା ପ୍ରବୃତ୍ତି ଦେଖାଉଥିଲେ। ଆଉ ସେ ଧର୍ମର ଗୁଢ଼ତତ୍ତ୍ୱ ଆହରଣ କରିବାକୁ ଚେଷ୍ଟା କରିଥିଲେ।

କହିବା କଷ୍ଟ କି କେଉଁ ଧର୍ମ ଆକବରଙ୍କ ଉପରେ ପ୍ରଭାବ ପକାଇଥିଲା। ଉଦାହରଣ ସ୍ୱରୂପ ଯେତେବେଳେ ଆକବର ଶୁଣିଲେ କି ତିବତ୍‌ରେ ଲାମା ୨୦୦ ବର୍ଷ ଧରି ବଂଚିଥିଲେ ସେ ତତ୍‌କ୍ଷଣାତ୍ ଲାମାଙ୍କ ଜୀବନଶୈଳୀ ଅନୁଯାୟୀ ହାରେମକୁ ବେଶୀଗଲେ ନାହିଁ। ଖାଦ୍ୟ ଓ ମଦ୍ୟପାନ କମ୍ କରିଦେଲେ। ବିଶେଷକରି ମାଂସ ଖାଇବା। ମୁଣ୍ଡ ବାଳ କଟାଇଲେ। କେବଳ ମୁକୁଟ ତଳେ ଥିବା ବାଳକୁ କଟେଇଲେ

ନାହିଁ । ଶେଷ ପର୍ଯ୍ୟନ୍ତ ଯେଉଁ ଯୁକ୍ତି ଓ ବିଶ୍ୱାସ ସେ ଖୋଜୁଥିଲେ ବୋଧେ ପାଇପାରିଲେ ନାହିଁ ।

ଆଲ୍ଲାହୁ ଆକବର – ଅନ୍ୟ ଧର୍ମରୁ ସାର ଗ୍ରହଣ କରି ଏକ ନୂତନ ରାସ୍ତା ଆବିଷ୍କାର କରିବା ତାଙ୍କର ଲକ୍ଷ୍ୟ ଥିଲା । ତାକୁ କୁହା ଯାଉଥିଲା ସ୍ୱର୍ଗୀୟ ବିଶ୍ୱାସ(ଦିନ ଇଲାହି) । ଦିନ ଇଲାହିର ଉଦ୍ଦେଶ୍ୟ କୌଣସି ଧର୍ମକୁ ସମାଲୋଚନା ବା ଅଶାନ୍ତି କରିବା ନ ଥିଲା ବରଂ ସବୁ ଧର୍ମର ସାରତତ୍ତ୍ୱର ସମନ୍ୱୟରେ ବିଶ୍ୱାସ କରିବାର ଏକ ସାଧୁ ଉଦ୍ଦେଶ୍ୟ ଥିଲା । ଇସଲାମ ଧର୍ମରେ ନିଜର ବିଧିସଂଗତ ପ୍ରଭୁତ୍ୱ କରି ସାରି ଅନ୍ୟ ଧର୍ମର ସାରତତ୍ତ୍ୱ ଗ୍ରହଣ କରି ଧାର୍ମିକ ଏକତ୍ରୀକରଣର କେନ୍ଦ୍ରବିନ୍ଦୁ ଖୋଜୁଥିଲେ ।

୧୫୭୯, ୨୬ ଜୁନ୍‌ରେ ଏ ସଂକ୍ରାନ୍ତରେ ଏକ ପଦକ୍ଷେପ ଆକବର ନେଇଥିଲେ । ସେ ଦିନ ଥିଲା ଶୁକ୍ରବାର । ମହମ୍ମଦ ପ୍ରଫେଟଙ୍କ ଜନ୍ମତିଥି । ଫତେପୁର ସିକ୍ରିଠାରେ ଜାମା ମସଜିଦର ପ୍ରଚାରକ ମଞ୍ଚ ଉପରେ କୁତୁୱା ପଢ଼ି ସାରିବା ପରେ, ଫଏଜୀ, ଅବୁଲ ଫଜଲ ଭାଇଙ୍କ ଦ୍ୱାରା ଲିଖିତ କବିତାଟିଏ ପଢ଼ିଥିଲେ–

''ଯେଉଁ ଭଗବାନ ଆମକୁ ସାର୍ବଭୌମ୍ୟ କ୍ଷମତା
ପ୍ରଦାନ କରିଛନ୍ତି
ଯେ ଆମକୁ ବୁଦ୍ଧିମାନ ହୃଦୟ ଆଉ ସବଳତାକୁ
ଦେଇଛନ୍ତି ।
ନ୍ୟାୟ ଓ ସମାନତା ଦେଖାଇବା ପାଇଁ ଯେ ଆମକୁ
ରାସ୍ତା ଦେଖାନ୍ତି
ଆମ ଭାବନାର ସମାନତାକୁ ରକ୍ଷା କରନ୍ତି
ତାଙ୍କ ବିବରଣୀ ଉଚ୍ଚ ଧରଣର, ଭାବନାଠୁ ବି ଉର୍ଦ୍ଧ୍ୱରେ
ଉଚ୍ଚ ପଦରେ ଅଧିଷ୍ଠିତ ହେ ଭଗବାନ – ଆଲ୍ଲାହୁ ଆକବର ।''

ଆକବର ଏ କବିତାଟି ପଢ଼ିସାରି କୋରାନାରୁ ପଂକ୍ତି ପଢ଼ି ମଞ୍ଚ ଉପରୁ ଓହ୍ଲାଇ ଆସି ସାଧାରଣ ପ୍ରାର୍ଥନା ସଭାରେ ଯୋଗ ଦେଲେ ।

ସମ୍ରାଟ ନିଜେ ଏପରି କୁତୁବା ପଢ଼ିବାରେ କିଛି ଅନ୍ୟାୟ ନ ଥିଲା । ଏ ପ୍ରକାର ଉଦାହରଣ ପୂର୍ବରୁ ଅନେକ ଅଛି । କିନ୍ତୁ ଆକବରଙ୍କ ଶେଷ ଶବ୍ଦ ''ଆଲ୍ଲାହୁ ଆକବର'' ଅନେକ ମତଭେଦ ସୃଷ୍ଟି କଲା । ଆକବର ନିଜେ ମଧ୍ୟ ଏହା ଜାଣିଥିଲେ ।

କୁତୁଓ୍ବା ପଢ଼ିବା ବେଳେ ଆକବରଙ୍କ ଦେହ ମଧ୍ୟ ଥରୁଥିଲା ଓ ପାଟି ଖନି ବାଜିଯାଉଥିଲା। ଯଦିଓ ଅନ୍ୟମାନେ ତାଙ୍କ ସାଙ୍ଗରେ କହୁଥିଲେ। ହେଲେ ବି ତାଙ୍କ ମନ ଭିତରେ ଏକ ଆନ୍ଦୋଳନ ସୃଷ୍ଟି ହୋଇଥିଲା।

ଆକବରଙ୍କ ଦ୍ୱନ୍ଦ୍ୱ ସତ୍ତ୍ୱେ ନିଜକୁ ଏପରି ପଢ଼ାରୁ ବିରତ ରଖିଲେ ନାହିଁ। ପୁଣି ଥରେ ସେପ୍ଟେମ୍ବର ୨୨, ୧୫୭୯ରେ କୁତୁଓ୍ବା ପଢ଼ି ସାରିବା ପରେ ଆକବର ଦ୍ୱିତୀୟରାସ୍ତା ଗ୍ରହଣ କଲେ। ସେଖ ମୁବାରକ (ଅବୁଲ ଫଜଲଙ୍କ ବାପା) ୬ ବର୍ଷ ପୂର୍ବେ ପ୍ରଧାନ ଉଲେମା ପାଖରୁ ଆକବର ନ୍ୟାୟବନ୍ତ ଶାସକ ଭାବରେ ଧର୍ମ ସଂକ୍ରାନ୍ତରେ ପ୍ରଧାନ ମିମାଂସକ ହୋଇପାରିବେ। ଏ ସଂକ୍ରାନ୍ତରେ ସେଖ ମୁବାରକ ଏକ ନିର୍ଦ୍ଦେଶନାମା ଲେଖି ଦେଇଥିଲେ।

ସେ ନିର୍ଦ୍ଦେଶନାମରେ ସେ ଆକବରଙ୍କୁ ସବୁ ପ୍ରକାରର ଦାୟିତ୍ୱ ଦେଇଥିଲେ– ଏକ ବୁଦ୍ଧିମାନ ଧର୍ମ ବିଚାରକ, ନ୍ୟାୟବନ୍ତ ସମ୍ରାଟ ଭାବରେ ତାଙ୍କର ବାକ୍ୟ ଶିରୋଧାର୍ଯ୍ୟ ବୋଲି କହିଥିଲେ। ଉଲେମାଙ୍କ ନିର୍ଦ୍ଦେଶନାମାରେ ଆକବର ଦସ୍ତଗତ କରିବା ପରେ ତାହା ରାଜାଜ୍ଞାରେ ପରିଣତ ହୋଇଥିଲା। ଏହାର ସମାଲୋଚନା ମଧ୍ୟ ଅନେକ କଲେ। କହିଲେ, ରାଜା ଅଦ୍ୱିତୀୟ ମୂର୍ତ୍ତି ପ୍ରଫେଟଙ୍କ ସ୍ଥାନ ନେବା ପାଇଁ ଚେଷ୍ଟା କଲେଣି।

ମୁସଲିମ ବୁଦ୍ଧିଜୀବୀମାନେ, ଧର୍ମାଶାସିତ ରାଜ୍ୟରେ ଯେଉଁମାନେ ବଡ଼ କ୍ଷମତାଶୀଳ ବ୍ୟକ୍ତି ଆକବରଙ୍କ ଯୁଗବତ୍ ବିଶେଷ ଆଗ୍ରହ, ଆଉ ବର୍ତ୍ତମାନର ଧର୍ମ ଅଧିକାରରେ ଅନୁପ୍ରବେଶକୁ ନେଇ ଭୟ ପାଇଲେ କି ସେମାନଙ୍କର ନିଜ ନିଜ ଅଧିକାର ଉପରେ ଆଘାତ ଆସିବ। ଭୟ ଥିଲା ଧର୍ମଶାସିତ ସାମ୍ରାଜ୍ୟକୁ ଆକବର ନଷ୍ଟ କରିଦେବେ। ଆଉ ଆକବରଙ୍କ ସଂସ୍କାର ସେମାନଙ୍କ ଅଧିକାର ଉପରେ ଆଞ୍ଚ ଆଣିବ।

''ଆପଣ ରକ୍ଷଣଶୀଳ ନ ହେଲେ ବି ଜଣେ ମୁସଲିମ୍।'' ଆକବରଙ୍କ ବିରୁଦ୍ଧରେ ଧର୍ମାନ୍ତ ଗ୍ରହଣ ଯୁକ୍ତି ସେଥିପାଇଁ ଠିକ୍ ନୁହେଁ। ଭ୍ରିଭାନ୍ତିକର ରାଜାଜ୍ଞାକୁ ଭିତିକରି ସେ ଆଜମୀରର ଖ୍ୱାଜା ସୁରବୁଦ୍ଧିମ ଚିସ୍ତିଙ୍କ କବର ଦେଖିବାକୁ ଗଲେ। ଏକ ଭ୍ରାମ୍ୟମାଣ ମସଜିଦ ତିଆରି କରି ନିଜ ସାଂଗରେ ନେଇ ଯାଉଥିଲେ ନିଜ ସଂଧ୍ୟାକାଳୀନ ପ୍ରାର୍ଥନା କରିବା ପାଇଁ। ପଥର ଉପରେ ମହମ୍ମଦ ପ୍ରଫେଟଙ୍କ ଏକ ପାଦଚିହ୍ନ ଯେତେବେଳେ ଦରବାରକୁ ଅଣାଗଲା ସେ ସଭକ୍ତି ସମ୍ମାନ ପ୍ରଦର୍ଶନ

କଲେ । ସର୍ବୋପରି 'ହାଜ'କୁ ଯାଉଥିବା ତୀର୍ଥଯାତ୍ରୀମାନଙ୍କୁ ରାଜ୍ୟ ତରଫରୁ ସାହାଯ୍ୟ ଦେବା ପାଇଁ ଜଣେ ଅଫିସରଙ୍କୁ ରଖିଥିଲେ । ଏ ସବୁ କରିବା ଦ୍ୱାରା ଜଣାଯାଉଥିଲା ଯେ ସେ ତାଙ୍କର ନିଜ ଧର୍ମରୁ ବିଚ୍ୟୁତ ହୋଇନାହାନ୍ତି । କିନ୍ତୁ ସେ ମୁସଲିମ ଧର୍ମର ବଳୟ ଭିତରୁ ବାହାରି ଖୋଜି ବୁଲୁଥିଲେ ଅନ୍ୟାନ୍ୟ ଧର୍ମର ମୂଳତତ୍ତ୍ୱ, ଯାହାକୁ ପୁଞ୍ଜିକରି ସେ ନିଜର ଏକ ବିଶ୍ୱାସର ଧାରା ଗଢ଼ିଥାନ୍ତେ । ଏଥିରେ ତାଙ୍କୁ ସାହାଯ୍ୟ କରୁଥିଲେ ଜଣେ ସୁଫି ସନ୍ଥ ସେଖ ତାବୁଦ୍ଦିନ । ସେ 'ଫାରୋହା'ଙ୍କ ବିଶ୍ୱାସ କଥା ଆକବରଙ୍କୁ ଶୁଣାଇଥିଲେ । ଫାରୋହା ଇଖନେଟନ୍ ପୁରୁଣା ଇଜିପ୍ଟର ରାଜା । ସେ ଏହି ପ୍ରକାର ମନୋଭାବ ନେଇ ଖୋଜି ବୁଲୁଥିଲେ ସତ୍ୟର ଧାରା । ଅନୁପ୍ରାଣିତ ହେଲେ ଆକବର ସେହି ଆଦର୍ଶରେ । ଆକବର ମଧ୍ୟ ଏକ ନୂଆରାସ୍ତା ବାହାର କରିବାକୁ ଚାହିଁଲେ–ନିଜ ପାଇଁ, ନିଜ ଯୁଗ ପାଇଁ ଆଉ ମଣିଷ ଧର୍ମ ପାଇଁ ।

୧୫୮୨ରେ 'ଅଭ୍ରାନ୍ତିକର ରାଜାଜ୍ଞା'ର ଘୋଷଣାର ପ୍ରାୟ ଦୁଇ ବର୍ଷ ପରେ 'ଦିନଇଲାହି' ଘୋଷଣା କଲେ । ୧୪ଶ ଶତାବ୍ଦୀର ଶାସକ ସୁଲତାନ ଆଲ୍ଲାଉଦ୍ଦିନ ଖିଲଜୀ ଏ ପ୍ରକାର ପଦକ୍ଷେପ ନେଇଥିଲେ । କିନ୍ତ ସେ କେବଳ ନିଜର ପ୍ରତିଷ୍ଠା ପାଇଁ ଏ ପ୍ରକାର ରାସ୍ତା ଗ୍ରହଣ କରିଥିଲେ । ଆକବରଙ୍କ ପରି ତାଙ୍କର ଏକ ଗଭୀର ସଂବେଦନଶୀଳ ଅନୁସଂଧାନ କରିବାର ଆଗ୍ରହ ନ ଥିଲା । ଆଲ୍ଲାଉଦ୍ଦିନଙ୍କ ଯୋଜନା ଥିଲା ନିଜକୁ ବିଞ୍ଚ କରିବାର ସ୍ୱାର୍ଥ ଆଉ ଆକବରଙ୍କ ଥିଲା ଏକ ନୂଆ ସଭ୍ୟତାର ଦର୍ଶନ ।

ଫତେପୁର ସିକ୍ରିରେ ଏକ ସେମିନାର ଡକାଇଲେ । ଆକବର ତାଙ୍କ ଭାଷଣରେ ଅନ୍ୟାନ୍ୟ ବିଷୟ ସହିତ କହିଲେ କି ପ୍ରତ୍ୟେକ ଧର୍ମର ସାରତତ୍ତ୍ୱ ଖୋଜିବା ଓ ପାଇବାହିଁ ଏ ସେମିନାରର ଲକ୍ଷ୍ୟ । ଫଳରେ ଭଗବାନଙ୍କୁ ସମ୍ମାନ କରିବା ବ୍ୟତିରେକେ ଲୋକମାନଙ୍କୁ ଶାନ୍ତି ଦେଇହେବ ଓ ସାମ୍ରାଜ୍ୟର ସୁରକ୍ଷା ମଧ୍ୟ ସମ୍ଭବ ।

ଅନ୍ୟମାନଙ୍କୁ ମଧ୍ୟ ଭାଷଣ ପାଇଁ ସୁଯୋଗ ଦିଆହେଲା । ସମସ୍ତେ କହିଲେ ସତ, ହେଲେ ଖୋଲା ଖୋଲି ଭାବରେ କୌଣସି ମତ ଦେଲେ ନାହିଁ । ସମାଧାନଟା ବି ଏତେ ସହଜ ନ ଥିଲା । ଅମ୍ବରର ରାଜା ଭଗବାନ ଦାସ କହିଲେ, ମୁଁ ବିଶ୍ୱାସ କରୁଛି କି ହିନ୍ଦୁ ଓ ମୁସଲମାନ ଧର୍ମ ଦୁଇଟି ଯାକ ଖରାପ । କିନ୍ତୁ ଯେଉଁ ନୂଆ କଥାର ଅବତାରଣା କରାଯାଉଛି ବା ଯାହାର ପ୍ରତିଷ୍ଠା ପାଇଁ ଏତେ ଯୋଜନା ହେଉଛି । ତା'ର ରୂପ କ'ଣ ? ମତେ ବର୍ଣ୍ଣନା କରି କୁହ ମୁଁ ବର୍ତ୍ତମାନ ବିଶ୍ୱାସ କରିଯିବି ।

ଆକବରଙ୍କ ପାଖରେ କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନ ଥିଲା। ବାହାରେ ରକ୍ଷଣଶୀଳ ମୁସଲମାନଙ୍କ ମଧ୍ୟରେ ବିଦ୍ୱେଷ ଓ ରାଗ ଭାବ ଉଦ୍ରେକ ହେଲା। ଜଣେ କେହି ଆକବରଙ୍କ ଏ ଚେଷ୍ଟାରୁ ହସରେ ଉଡ଼ାଇଦେଲେ। ଲେଖିଲେ; ''ଏ ବର୍ଷ ସମ୍ରାଟ ନିଜକୁ ପ୍ରଫେଟ ଭାବରେ ଦାବି କଲେ ଆଉ ବର୍ଷକ ପରେ ହେ ପ୍ରଭୁ, ସେ ନିଜେ ଭଗବାନ ବନିଯିବେ।''

ଆକବରଙ୍କ ଏ ଉଦ୍ଦେଶ୍ୟ ଅମୂଳକ ନ ଥିଲା। ଭାବିଲେ ସମ୍ରାଟ ଈଶ୍ୱରତ୍ୱ ଚିନ୍ତାରେ ବ୍ୟସ୍ତ। ଏଥିପାଇଁ ନୁହେଁ କି ସେମାନେ ଈଶ୍ୱର, ସମ୍ରାଟଙ୍କ ଈଶ୍ୱରତ୍ୱ ସାମ୍ରାଜ୍ୟ ମଣିଷର ନୁହେଁ।

ଦିନ ଇଲାହିର ପ୍ରାର୍ଥନା ଥିଲା ଯୁକ୍ତିର, ଦର୍ଶନର – ବିଶ୍ୱାସ ବା ଅନୁରାଗର ନୁହେଁ। ଏହାହିଁ ଥିଲା ତା'ର ଦୁର୍ବଳତା – ଏହା ଲୋକଙ୍କୁ ସେମାନଙ୍କର ଏଇ ଜୀବନରେ ବିଶ୍ୱାସର ଦୃଢ଼ତା ଯୋଗାଇ ପାରିବ ନାହିଁ।

ଦିନ ଇଲାହି ନ ଥିଲା ଏକ ଧର୍ମସଂସ୍ଥା। ଈଶ୍ୱର ଆରାଧନା ପାଇଁ ଥିଲା ଏକ ମାଧ୍ୟମ। ସମ୍ରାଟଙ୍କ ଭିତରେ ଈଶ୍ୱର ଆରାଧନା ତାଙ୍କ ନ୍ୟାୟ ଓ ରାଜ୍ୟ ଶାସନର ଏକ ମାଧ୍ୟମ ଥିଲା। ରାଜା ହେବା ଭଗବାନଙ୍କ ଆର୍ଶିବାଦର ରୂପ। କିନ୍ତୁ ଜନସମୁଦ୍ରଙ୍କୁ ଏହା ସୁବିଧା ଯୋଗାଏ। ଏହା ଥିଲା ଆକବରଙ୍କ ଉକ୍ତି। ସର୍ବସାଧାରଣଙ୍କ ପାଇଁ ଦିନଇଲାହିଁ ନ ଥିଲା। କୁହାଗଲା କି ଆକବର ହିନ୍ଦୁମାନଙ୍କୁ ଅଗ୍ରାଧିକାର ଦେଉଥିଲେ। ଦିନ ଇଲାହିଁରେ ୧୮ ଜଣ ପ୍ରଧାନ ସଭ୍ୟ ଥିଲେ କିନ୍ତୁ ତାଙ୍କ ଭିତରେ ଜଣେ ମାତ୍ର ହିନ୍ଦୁ ଥିଲେ – ରାଜା ବୀରବଲ୍ଲ। ଏ ୧୮ ଜଣଙ୍କ ଛଡ଼ା ଅନ୍ୟ ସଭ୍ୟମାନେ ମଧ୍ୟ ଥିଲେ। କିନ୍ତୁ ସଂଖ୍ୟା ଅଳ୍ପ। କାରଣ ଆକବର କିନ୍ତୁ ଏମାନଙ୍କୁ ବ୍ୟକ୍ତିଗତ ଭାବେ ଯାଞ୍ଚକରି ଅନୁମତି ପ୍ରଦାନ କରୁଥିଲେ।

ଦିନ ଇଲାହି ଅନୁରାଗ ବିହୀନ ବିଶ୍ୱାସ, ଭଗବାନଙ୍କ ବ୍ୟତିତ ଏକଦଳ ସର୍ବ ସାଧାରଣଙ୍କ ପାଇଁ ନ ଥିଲା। ମଣିଷମାତ୍ରେ ହିଁ ନିଜ ନିଜର ଜୀବନଶୈଳୀକୁ ପରିପୁଷ୍ଟ କରିବା ପାଇଁ ଆବଶ୍ୟକ କରନ୍ତି ନିଜର ଅଧିଷ୍ଠାତ୍ରୀ ଦେବୀ। ତାଙ୍କର ପ୍ରାର୍ଥନା, ଧାର୍ମିକ ଅନୁଷ୍ଠାନ, ଉତ୍ସବ ଇତ୍ୟାଦି ଇତ୍ୟାଦି।

ଦିନଇଲାହି ଆକବରଙ୍କ ନିଜସ୍ୱ ଅନୁଷ୍ଠାନ। କିନ୍ତୁ ଭାରତକୁ ଆଧୁନିକ ଢଙ୍ଗରେ ନିୟନ୍ତ୍ରିତ କରିବା, ତା'ର ସାମୂହିକ ଉନ୍ନତି ପାଇଁ ଏ ଅନୁଷ୍ଠାନ ଉଦ୍ଦିଷ୍ଟ ଥିଲା। ଫଳରେ କିଛି ସମୟ ପାଇଁ ହେଲେ ବି ମୋଗଲ ଦରବାରରେ ଇତିହାସ,

ଉପନ୍ୟାସ, କବିତା, ଜ୍ୟୋତିଷଶାସ୍ତ୍ର ପ୍ରସାର ଲାଭ କଲା। ଏ ପ୍ରକାର ଚେଷ୍ଟାରେ ଅନେକ ପରିବାର ପ୍ରଭାବିତ ହୋଇ ଆଲୋଚନାରେ ଭାଗ ନେଲେ। ଯୁକ୍ତି ଆଧାରିତ ଦେଶ ହେବ ଭାରତବର୍ଷ।

**ଆଲ୍ଲାବାଦ ସହର :** ରକ୍ଷଣଶୀଳ ମୁସଲମାନ ଯାହା ଭାବନ୍ତୁ ନା କାହିଁକି ଗଙ୍ଗା ଓ ଯମୁନାରେ ମିଳନ ସ୍ଥାନରେ ଏକ ଦୁର୍ଗ ନିର୍ମାଣ କରାଇଲେ। ନାଁ ଦେଲେ ଆଲ୍ଲାବାଦା– ଆଲ୍ଲାଙ୍କ ସହର। ମକ୍କାର ସେରିଫ ଓ ଉଜବେଗର ପ୍ରଧାନ ଅବଦୁଲ୍ଲାଙ୍କୁ ଦୁଇ ଖଣ୍ଡ ଚିଠି ଲେଖି ଜଣାଇଲେ କି ସେ ଜଣେ ମୁସଲିମ - ଏହାର ଅନ୍ୟ ଅର୍ଥ କିଛି ନାହିଁ। ଇସଲାମ ଧର୍ମର ସୂର୍ଯ୍ୟୋଦୟରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯୋଦ୍ଧାର ବାହୁ ବଳରେ ଯାହା ନ ହୋଇପାରିଥିଲା ତାହା ବିଶ୍ୱାସର ମୂଳଦୂଆ ଉପରେ ଗଢ଼ା ହୋଇପାରିଛି। ଏ ଚିଠି ଆକବରଙ୍କ ଧର୍ମବିଶ୍ୱାସର ପ୍ରତୀକ ଥିଲା। ଏ ବିଷୟରେ ଅନେକ କିଛି ଲେଖିବାର ଥିଲେ ମଧ ଲେଖି ହେଲା ନାହିଁ। ବାଦୁଇନଙ୍କ ଭାଷାରେ ମୁସଲିମ ଧର୍ମକୁ ଆକବର ନିଜେ ଅଗ୍ରାହ୍ୟ ବା ଧର୍ମରୁ ରାଜ୍ୟର ସାହାଯ୍ୟାର୍ଥେ ଦେଖାଦେବା କାମରୁ ଅବ୍ୟାହତି ଛଡ଼ା ମୁସଲିମମାନଙ୍କୁ ଅଗ୍ରାହ୍ୟ କରୁଥିଲେ। ୧୯୫୦ରେ ଗୋଆରେ ସେଠିକା ଖବର ଅନୁଯାୟୀ ପ୍ରଫେଟ ମହମ୍ମଦଙ୍କ ନାଁ ଖ୍ରୀଷ୍ଟିୟାନ ଧର୍ମରେ ଯେତିକି ଘୃଣାର ବସ୍ତୁ ଥିଲା ମୋଗଲ ଦରବାରରେ ମଧ ସେତିକି ଘୃଣାର ପାତ୍ର ହୋଇଥିଲା। ଲାହୋରରେ କେତେକ ମସଜିଦ ଭାଙ୍ଗି ଘୋଡ଼ାଶାଳ କରାହୋଇଥିଲା ଯୁଦ୍ଧ ପାଇଁ ସେ ଘୋଡ଼ାମାନଙ୍କୁ ପ୍ରସ୍ତୁତ କରିବା ପାଇଁ। ଅସିରଗଡ଼ସ୍ଥିତ ମସଜିଦ ଭାଙ୍ଗି ସେଠି ଏକ ମୂର୍ତ୍ତିପୂଜାର ମନ୍ଦିର ତେଲାଇବାର ଆଦେଶ ଆକବର ଦେଇଥିଲେ। ତାଙ୍କର ମୁସଲମାନ ଧର୍ମ ବିରୁଦ୍ଧ କାର୍ଯ୍ୟ ଯାହା ହୋଇଥାଉନା କାହିଁକି ତାଙ୍କ ମତରେ ମୁସଲିମ ଧର୍ମ ତାଙ୍କ ପ୍ରଗତିଶୀଳ ଆଦର୍ଶର ଅନୁସଂଧାନରେ ବାଧା ଦେଉଥିଲା।

**ଅତ୍ୟାଚାର ଆଇନ ବିରୁଦ୍ଧ :** ଅବଦୁଲ ଫଜଲ 'ଆଇନ-ଇ-ଇଲାହୀ'ରେ ମୋଗଲ ସାମ୍ରାଜ୍ୟ ସଂକ୍ରାନ୍ତରେ ଲେଖିଥିଲେ – ଦୈନନ୍ଦିନ ଜୀବନଯାତ୍ରା, ସଂସ୍କୃତି, ଧର୍ମ, ସମାଜ ବିଷୟକ ସମ୍ୟକ ଭାବନା, ରାଜ୍ୟ ଶାସନ ପ୍ରଣାଳୀ, ଆଇନ ଶୃଙ୍ଖଳା, ଚାଷ ପ୍ରଣାଳୀ, ଅର୍ଥନୈତିକ ସ୍ଥିତି, ପାଉଁଶ ଗଦାରୁ ସୁନା ରୂପାର ରୂପାନ୍ତରକରଣ, ଗୃହ ନିର୍ମାଣ, କାଠ ଓଜନ, ଖାଦ୍ୟ ପ୍ରଣାଳୀ, ଖେଳ ଇତ୍ୟାଦି ଇତ୍ୟାଦି। ଆକବରଙ୍କ ପ୍ରାଧାନ୍ୟ ସଂଗଠନରେ ନ ଥିଲା, ଥିଲା ଏହାର ପରିଚାଳନାରେ। ଯେଉଁ ଦକ୍ଷତା

ସଂଗଠମାନଙ୍କରେ କାର୍ଯ୍ୟକାରୀ କରେଇ ପାରୁଥିଲେ, ତାଙ୍କ ମନୁଷ୍ୟତାର ପ୍ରତିଫଳନ ତାଙ୍କ ଶାସନରେ ଦେଖାଦେଇଥିଲା । ମଧ୍ୟଯୁଗୀୟ ରାଜ୍ୟ ଶାସନ ନିର୍ଭର କରୁଥିଲା ପ୍ରଜାଙ୍କର ଉନ୍ନତି ଉପରେ । ପୂର୍ବ ଶାସନ ସବୁ ସବୁବେଳେ ଜାଜ୍ୱଲ୍ୟମାନ ଅବସ୍ଥାରେ ଥିଲା – ରାଜା ଓ ପ୍ରଜାଙ୍କ ଭିତରେ ଭିନ୍ନ ଭିନ୍ନ ବୁଝାମଣା ପାଇଁ । ଧର୍ମ ପାଇଁ ହେଉ ବା ଶାସନ କଳ ପାଇଁ ହେଉ ଆକବରଙ୍କ ରାଜ୍ୟଶାସନର ମହତ୍ତ୍ୱ ଥିଲା ଏହି ଯେ ସବୁଶ୍ରେଣୀର ପ୍ରଜାମାନଙ୍କୁ ସମାନ ଭାବରେ ଦେଖୁଥିଲେ । ତାଙ୍କ ସରକାର ସେ ସମୟରେ ଏକ ନୀରପେକ୍ଷ ଶାସନ ଥିଲା । ୧୫୬୨ରେ ତାଙ୍କର ପ୍ରଥମ ପଦକ୍ଷେପ ହେଲା ସେ ଯୁଦ୍ଧବନ୍ଦୀମାନଙ୍କୁ କ୍ରୀତଦାସ ପ୍ରଥାରୁ ମୁକ୍ତ କଲେ । ତାଙ୍କ ମତରେ ବନ୍ଦୀମାନେ ମଧ ପ୍ରଜା । ମଥୁରାକୁ ଯାଇଥିଲେ ବାଘଶିକାର କରିବାକୁ । ରାସ୍ତାରେ ହିନ୍ଦୁମାନଙ୍କ ଉପରୁ ଯାତ୍ରୀକର ବନ୍ଦ କଲେ । ତାଙ୍କ ମତରେ ଯେଉଁମାନେ ଭଗବାନଙ୍କ ଦର୍ଶନ ଓ ପୂଜା କରିବାକୁ ଯାଉଥିଲାବେଳେ କାହା ଉପରେ କୌଣସି କର ବସାଇବା ଅନୁଚିତ ।

୧୫୬୪ରେ ପ୍ରଥମରୁ ସେ ମୁସଲମାନ ରାଜ୍ୟରେ ହିନ୍ଦୁମାନଙ୍କ ଉପରେ କରାଯାଉଥିବା ଜିଜିୟାକର ଉଠାଇଦେଲେ । ଏହିକର ୮୫୨ ମସିହାରେ ମହମ୍ମଦ ବିନ କାସିମ, ଜଣେ ଆରବ ଆକ୍ରମଣକାରୀଙ୍କ ଦ୍ୱାରା ହିନ୍ଦୁମାନଙ୍କ ଉପରେ ବସା ଯାଇଥିଲା । ଏହା ପୂର୍ବରୁ କାଶ୍ମୀରରେ ସୁଲତାନ ସିକନ୍ଦର, ଗୋଲକୋଣ୍ଡରେ ସୁଲତାନ-କ୍ୱାଲି କୁତୁବ-ଉଲ-ମୁଲ୍କ ଦ୍ୱାରା ଏହି କର ଉଠାଯାଇଥିଲା । ଏହା ଆକବରଙ୍କ ଅମୁସଲମାନ କାର୍ଯ୍ୟକ୍ରମ ନୁହେଁ । କିନ୍ତୁ ରକ୍ଷଣଶୀଳ ମୁସଲିମଙ୍କ ପ୍ରଭାବରେ ୧୫୭୬ରେ କିଛିଦିନ ପାଇଁ ଏହି କର ଚାଲୁ ରଖିଥିଲେ ହେଁ ୧୫୭୯ରେ ଏହା ସଂପୂର୍ଣ୍ଣ ଭାବରେ ଉଠାଇଦେଲେ ।

ଆକବର ଏକ ସୁଶାସନ ପ୍ରତିଷ୍ଠା କଲେ । ପୂର୍ବବର୍ତ୍ତୀ ଅନ୍ୟ କେହି ରାଜା ଏହା କରି ପାରି ନ ଥିଲେ । କେବଳ 'ଏକ ବୁଦ୍ଧିମାନ ହୃଦୟ ଓ ଦକ୍ଷବାହୁବଳବାନ' ମନୁଷ୍ୟ ପକ୍ଷରେ ଏହା ସମ୍ଭବ ।

ଶାସନ ଖୁବ୍ ଧୁରନ୍ଧର ଥିଲା । ସେଇଟା କେବଳ ସମ୍ରାଟଙ୍କ ହିତ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ହୋଇଥିଲା । ପ୍ରାଦେଶିକ ଗଭର୍ଣ୍ଣରମାନେ ସମ୍ରାଟଙ୍କ ଆଦେଶକୁ ନମ୍ରତାର ସହ ଗ୍ରହଣ କରୁଥିଲେ । କିନ୍ତୁ ନିଜ ଇଚ୍ଛା ଅନୁସାରେ ଅନୁଶାସନ ଚଳାନ୍ତି । ତାଙ୍କ ଆଦେଶ ପାଣିରେ ଗାର ପରି ଗୁହେ ।

ତାଙ୍କର ଗର୍ବ ଥିଲା କି ସେ ଶେରସାହଙ୍କ ଭଳି ଜଣେ ଉଚ୍ଚକୋଟୀର ଶାସକ। ମଧ୍ୟଯୁଗୀୟ ସମାଜରେ ପ୍ରତ୍ୟେକ ମଣିଷ ସମାଜର ଏ ଧାରଣା ନ ଥିଲା। ଆଇନ ଅମାନ୍ୟ କଲେ କଠୋରଦଣ୍ଡ ମିଳୁଥିଲା। କିନ୍ତୁ ଏ ପ୍ରକାର ଦଣ୍ଡବିଧାନ ଆକବରଙ୍କ ଅମଳରେ ନ ଥିଲା। ପମ୍ପୁଡ଼ିଟିଏ ମଧ ଆଘାତ ନ ପାଉ ଏଇଟା ତାଙ୍କର ନୀତି ଥିଲା।

ରାଜସ୍ୱ ଆଦାୟ କରିବା ନିୟମ ଅଧିକ ଫଳପ୍ରଦ ଥିଲା। ଆକବରଙ୍କ ଅମଳରେ କୌଣସି ଦକ୍ଷ ଅଫିସର ନ ଥିଲେ। ତେଣୁ ସେମାନଙ୍କ ଭାବନାକୁ ରୂପାନ୍ତର ସମ୍ରାଟ କରୁଛନ୍ତି ବୋଲି କୌଣସି ସୁଯୋଗ ନ ଥିଲା, ସେଥିପାଇଁ ଶାସନ ପ୍ରଣାଳୀର ଦକ୍ଷତା ତାଙ୍କ ଉପରେ ହିଁ ନିର୍ଭର କରୁଥିଲା।

ମଧ୍ୟଯୁଗରେ ସମ୍ରାଟଙ୍କର ଧର୍ମବିଶ୍ୱାସ ଯାହା ହେଉ ନା କାହିଁକି ଧର୍ମକୁ ସାକ୍ଷୀରଖି ଶାସନକଳ ପରିଚାଳନା କରୁଥିଲେ। ଆକବର ଏପରି ଶାସନ ଚଳାଇଥିଲେ। ଦିନଇଲାହିରେ ଅନେକ ନ୍ୟାୟବିଚାର କରାଯାଇଥିଲା ଯେଉଁଟା ସେଠୁ ବାହାରକୁ ଆସୁ ନ ଥିଲା। ଛୋଟଠୁ ବଡ଼ ଅନେକ ଅନେକ ଆଦେଶନାମା ନିଜ ଶିଷ୍ୟମାନଙ୍କ ପାଇଁ ତଥା ଜନସାଧାରଣଙ୍କ ପାଇଁ ଜାରି ରଖୁଥିଲେ।

ଡାକ୍ତରମାନଙ୍କ ପରାମର୍ଶ ନେଇ ମଦ୍ୟପାନ ମଧ କରାଯାଉଥିଲା। ଅତ୍ୟଧିକ ମଦ୍ୟପାନ ଯୋଗୁଁ ଅସାଧୁ ବ୍ୟବହାର ଦେଖାଇ ପାରିବେ ନାହିଁ। ଏପରିକି ପ୍ରାସାଦ ନିକଟରେ ମଦଦୋକାନ ଖୋଲି ପିଇବା ଲୋକଙ୍କ ନାଁ ରେଜିଷ୍ଟ୍ରିଭୁକ୍ତ କରିବାର ବନ୍ଦୋବସ୍ତ କରିଥିଲେ। ବେଶ୍ୟାଗିରୀ ପାଇଁ ଅନେକ ନିୟମକାନୁନ୍ ଲାଗୁ ହୋଇଥିଲା। ଗୋ ମାଂସ ବିକ୍ରି ଉପରେ କଡ଼ା ଆଦେଶ। ଏପରିକି ପିଆଜ ରସୁଣର ବ୍ୟବହାର ଉପରେ କଟକଣା ଥିଲା। ହିଂସ୍ରଜନ୍ତୁଙ୍କ ମାଂସ ଖାଇଲେ ବୀରତ୍ୱ ହାସଲ କରିପାରିବାର ବିଶ୍ୱାସରେ ସେମାନଙ୍କ ମାଂସ ଖାଇବାରେ ମନା ନ ଥିଲା। ରବିବାର ସୂର୍ଯ୍ୟଙ୍କବାର। ସେଥିପାଇଁ ସେ ଦିନ ଗୋ ହତ୍ୟା ବନ୍ଦ ଥିଲା।

କୌଣସି ଶିଶୁକୁ ଯଦି ଧର୍ମାନ୍ତକରଣ କରାଯାଇଥାଏ ସେ ବୟସ ହେଲା ପରେ ନିଜ ଇଚ୍ଛା ଅନୁସାରେ ଧର୍ମ ବଦଳାଇପାରେ। ଦାଢ଼ି ରଖିବା ପାଇଁ ଅନୁଶାସନ, ଯୌତୁକ ବିରୁଦ୍ଧଆଇନ, ସଂପର୍କୀୟମାନଙ୍କ ଭିତରେ ବିବାହ ବନ୍ଦ ଓ ବିବାହ ପାଇଁ ଝିଅର ବୟସ ୧୪ ଓ ପୁଅର ବୟସ ୧୬ ଓ ବାଲ୍ୟ ବିବାହ ବନ୍ଦ ପ୍ରଭୃତି ନିୟମମାନ ଗଢ଼ା ଯାଇଥିଲା।

ବିବାହ ରେଜିଷ୍ଟ୍ରେସନ୍ ସପକ୍ଷରେ ଥିଲେ ଆକବର। ସାମାଜିକ ସଂସ୍କାର ପାଇଁ ଯେତେ ଆଗ୍ରହ ନ ଥିଲା, ସେତେ ଆଗ୍ରହ ଥିଲା ନିଜ ମନର ସନ୍ତୁଷ୍ଟି।

ଆକବରଙ୍କ ରାଜୁତି ଶେଷ ହେଲା ବେଳକୁ ମୋଗଲ ସାମ୍ରାଜ୍ୟ ନାଁକୁ ମାତ୍ର ମୁସଲିମ୍ ରାଜ୍ୟ ଥିଲା। ତଥାପି ତା' ବିରୁଦ୍ଧରେ କେହି ସ୍ୱର ଉତ୍ତୋଳନ କରି ପାରୁ ନ ଥିଲେ। ଆକବର ଥିଲେ ଏକ ଅତିମାନବ ପୁରୁଷ। ତା' ସତ୍ତ୍ୱେ ତାଙ୍କ ପୁଅ ସଲିମ ତାଙ୍କୁ ପସନ୍ଦ କରି ପାରୁ ନ ଥିଲେ।

ଶୋଳଶ ଶତାବ୍ଦୀ ପାଖେଇ ଆସୁଥିଲା। ସଲିମଙ୍କ ବୟସ ୩୧ ବର୍ଷ। ସେତେବେଳେ ପର୍ଯ୍ୟନ୍ତ ସେ ରାଜଗାଦିରେ ବସି ପାରି ନ ଥିଲେ। ଆକବରଙ୍କ ବୟସ ୫୮ ଆଉ ସେ ୪୪ ବର୍ଷ ଧରି ରାଜୁତି କରି ସାରିଲେଣି। ହୁଏତ ଆହୁରି କେତେବର୍ଷ ରାଜୁତି କରିବେ, ହୁଏତ ସଲିମଙ୍କ ଠାରୁ ଆଗକୁ ବାହାରିଯିବେ। ସେତେବେଳକୁ ଭାଇ ମୁରାଦ ମରିସାରିଲେଣି। ଡାନିୟେଲ ମଦ୍ୟପ ଗୋଟାଏ ପାଦ ସମାଧିରେ। ଏଣେ ସଲିମ ଅପେକ୍ଷା କରିପାରିବେ ନାହିଁ। ଏ ପରିସ୍ଥିତିରେ କିଛି ରାସ୍ତା ତାଙ୍କୁ ଖୋଜିବାକୁ ପଡ଼ିବ।

୧୫୯୧ରେ ଆକବର ଭୟ କରୁଥିଲେ କି ସଲିମ କିଛି ଗଣ୍ଡଗୋଳ କରିବେ। ଥରେ ଆକବର ଭୟଙ୍କର ପେଟ ବେମାରୀରେ ଆକ୍ରାନ୍ତ ହେଲେ। ଔଷଧ ରୋଗମୁକ୍ତ କରିପାରିଲା ନାହିଁ। ଭୟ ହେଲା ବିଷପ୍ରୟୋଗ ହୋଇ ପାରିଥାଏ। ସେ ବିଳବିଳେଇ କହିଲେ ''ସବୁ ସୁଲତାନ ତୁମ ପାଦତଳେ ଲୋଟିବେ କିନ୍ତୁ ସଲିମ ମୋ ଉପରେ ଏପରି ଆଘାତ କଲ କାହିଁକି ? '' ସେତେବେଳକୁ ବାପ ପୁଅଙ୍କ ଭିତରେ ତିକ୍ତ ସଂପର୍କ ଗଢ଼ି ଉଠିଥିଲା।

୧୫୯୯ରେ ଦାକ୍ଷିଣାତ୍ୟ ଯିବା ଉଦ୍ଦେଶ୍ୟରେ ଆଗ୍ରାରୁ ବାହାରିଲେ। ଗଲା ପୂର୍ବରୁ ସେ ସଲିମଙ୍କୁ ମେୱାର ବିଦ୍ରୋହ ଦବେଇବା ପାଇଁ କହି ଯାଇଥିଲେ। ସଲିମ ଏ ବିଦ୍ରୋହ ଦବାଇବା ଉଦ୍ଦେଶ୍ୟରେ ଅନେକ ଦିନ ଆଜମୀରରେ ରହିଲେ। ୧୬୦୦ ଖ୍ରୀଷ୍ଟାବ୍ଦ ବେଳକୁ ବିଦ୍ରୋହ ନ କରି ଆଜମୀରରୁ ଆଗ୍ରା ଗଲେ। ଆଗ୍ରାରେ ସେ ରାଜକୋଷ ଅଧିକାର କରିବାକୁ ଚେଷ୍ଟା କଲେ। ବିଫଳ ହୋଇ ସେ ଆଲ୍ଲାବାଦ ଅଭିମୁଖେ ଯାତ୍ରା କଲେ ତାଙ୍କ ଜେଜେମାଙ୍କୁ ଦେଖା ନ କରି। ଆଲ୍ଲାବାଦରେ ପହଞ୍ଚି ସେଠାକାର ରାଜକୋଷ ଅକ୍ତିଆର କଲେ ଓ ସେଠାରେ ନିଜକୁ ରାଜା ବୋଲି ଘୋଷଣା କରି ନିଜ ମନମୁତାବକ ଅଫିସରମାନଙ୍କୁ ନିଯୁକ୍ତି ଦେଲେ। ଏପରିକି ଏକ ସୈନ୍ୟବାହିନୀ ମଧ୍ୟ ଗଢ଼ିଲେ।

ଆକବର ଏ କଥା ଶୁଣିଲେ। ଏହାକୁ ଏକ ଘରୋଇ ଘଟଣା ବୋଲି ଭାବି ସଲିମଙ୍କ ସାଙ୍ଗ ଖ୍ୱାଜା ମହମ୍ମଦ ସରିଫଙ୍କୁ ତାଙ୍କୁ ଫେରାଇ ଆଣିବା ପାଇଁ ପଠାଇଲେ। ସଲିମ ତାଙ୍କୁ ସେଠାରେ ଏକ ମନ୍ତ୍ରୀ ବନାଇଦେଲେ। ଚିନ୍ତିତ ହେଲେ ଆକବର।

୧୬୦୧ ଅଲ୍ଲାବାଦର ଓ ଅସିରଗଡ଼ର ପତନ ହେଲା। ଦାକ୍ଷିଣାତ୍ୟ ଜୟସାରି ଅଗଷ୍ଟରେ ଆକବର ଆଗ୍ରା ଫେରିଲେ। ଆଠ ବା ନ ମାସ ଧରି ଦୁଇପକ୍ଷର ଶାନ୍ତି ସ୍ଥାପନ ପାଇଁ କଥାବାର୍ତ୍ତା କଲେ ସଲିମ। ହଠାତ୍ ସେ ୩୦ ହଜାର ଅଶ୍ୱାରୋହୀଙ୍କୁ ଧରି ଆଗ୍ରା ବାହାରିଲେ। କହିଲେ ଆକବରଙ୍କୁ ସମ୍ମାନ ଦେବା ପାଇଁ ଯାଉଛନ୍ତି। ଆଗ୍ରାରୁ ପ୍ରାୟ ୧୦୦ କିଲୋମିଟର ଏଟହ୍ୱାଠାରେ ଛାଉଣୀ ପକାଇଲେ। ଶାନ୍ତ ଥିଲେ ଆକବର। ସଲିମଙ୍କୁ ଜଣାଇଲେ କି ଅଳ୍ପ ସଂଖ୍ୟକ ସେନା ନେଇ ମତେ ଦେଖା କରିବାକୁ ଆସନ୍ତୁ। ଏ ପ୍ରସ୍ତାବରେ ଯଦି ସେ ରାଜିନାହାନ୍ତି ତା' ହେଲେ ସେନା ନେଇ ଆଲ୍ଲବାଦ ଫେରିଯାନ୍ତୁ। ସଲିମ ବାପାଙ୍କ କଥାକୁ ଅମାନ୍ୟ କରିବା ପାଇଁ ସାହାସ କଲେ ନାହିଁ। ଆଲ୍ଲାବାଦ ଫେରିଗଲେ।

ଆକବର ସଲିମଙ୍କୁ ବଙ୍ଗଳା ଓ ଓଡ଼ିଶାର ଭାରଇସରାୟ କରି ହୁକୁମନାମା ଜାରିକଲେ। ସେ ଆଲ୍ଲାବାଦରେ ରହିବା ପାଇଁ ଇଚ୍ଛା କଲେ। ନିଜ ନାଁରେ ମୁଦ୍ରା ପ୍ରଚଳନ କଲେ। କିଛି ମୁଦ୍ରାର ନମୁନା ଦେଖିବା ପାଇଁ  ସେ ଆକବରଙ୍କ ପାଖକୁ ମଧ୍ୟ ପଠାଇଲେ। ସଲିମର ବିଦ୍ରୋହ ବଢ଼ିବାଲିଛି। ଆକବର ଅବୁଲ ଫଜଲଙ୍କୁ ଦାକ୍ଷିଣାତ୍ୟରୁ ଡକାଇଲେ ସଲିମଙ୍କ ସହିତ କଥାବାର୍ତ୍ତା କରିବା ପାଇଁ। ସଲିମ ଓ ଆବୁଲ ଫଜଲ ଦୁହେଁ ଦୁହିଁଙ୍କୁ ଅବିଶ୍ୱାସ ଓ ଘୃଣା କରନ୍ତି। ସଲିମ ଠିକଣା କଲେ ଅବୁଲ ଫଜଲଙ୍କ କଥା ମାନିବେ ନାହିଁ। ଅବୁଲ ଫଜଲ 'ଆଲ୍ଲାବାଦର ରାଜା'ଙ୍କୁ ଉଠାଇ ଦରବାରକୁ ପଠାଇ ପାରିବେ ନାହିଁ।

ସଲିମ ଠିକଣା କଲେ  ବୀର ସିଂ, ବୁନ୍ଦେଲା ପ୍ରଧାନଙ୍କ ଦ୍ୱାରା ଅବୁଲ ଫଜଲଙ୍କୁ ହତ୍ୟା କରିବେ। ଫଜଲଙ୍କୁ ଏ କଥା ଜଣାଥିଲା। ଆଗ୍ରା ଯିବା ରାସ୍ତାରେ ଓରଛା ପଡ଼େ। ଶେଷରେ ସେଇଆ ହେଲା।

ଅବୁଲ ଫଜଲଙ୍କ ଏ ହତ୍ୟା ଖବର ତାଙ୍କର ଜଣେ ଅଧିନସ୍ଥ କର୍ମଚାରୀ ଆକବରଙ୍କ ଦରବାରରେ ନିୟମ ଅନୁଯାୟୀ ବେକରେ ନେଳି ରୁମାଲ ବାନ୍ଧି ଜଣାଇଲେ। ଖବର ପାଇ ଆକବର ବେହୋସ ହୋଇଗଲେ। ପରେ ଆସାଦ ବେଗମଙ୍କୁ କହିଲେ; ସଲିମ ସମ୍ରାଟ ହେବାକୁ ଯଦି ଚାହୁଁଥିଲା। ସେ ମତେ ହତ୍ୟା

କରି ଅବୁଲ ଫଜଲଙ୍କୁ ଛାଡ଼ି ଦେଇଥାନ୍ତା। ବୀରବଲ ୧୫୮୬ରେ, ରାଜା ଭଗବାନ ଦାସ ଓ ଟୋଡ଼ରମଲ ୧୫୮୯ରେ ଓ ବର୍ତ୍ତମାନ ଅବୁଲ ଫଜଲ ତାଙ୍କୁ ଛାଡ଼ି ସମସ୍ତେ ଚାଲିଗଲେଣି। ବିଦାୟ ବେଳକୁ ସେ ହିଁ କେବଳ ଅଛନ୍ତି।

ଏହା ଅତି ଦୁଃଖକର ଘଟଣା। ତଥାପି ସେ ସଲିମ ବିରୁଦ୍ଧରେ କୌଣସି ପଦକ୍ଷେପ ନେଲେ ନାହିଁ। ହାରେମର ସ୍ତ୍ରୀ ଲୋକମାନେ ମଧ୍ୟ ଚାହିଁଲେ କି ସେ ସଲିମଙ୍କୁ ଦୂରେଇ ନ ଦେଇ ବାପା ପୁଅଙ୍କ ଭିତରେ ମତଭେଦ ଦୂର କରନ୍ତୁ।

ସଲିମା ବେଗମ, ଆକବରଙ୍କ ପ୍ରିୟ ସ୍ତ୍ରୀ ସମ୍ରାଟଙ୍କ ନିକଟରୁ ଫାତ ଲାସ୍କର ନାମକ ହାତୀ, ଘୋଡ଼ା ଓ ସମ୍ମାନର ପୋଷାକ ନେଇ ଆଲ୍ଲାବାଦ ଗଲେ। ଆଲ୍ଲାବାଦରେ ସଲିମଙ୍କୁ ଗାଳି ଆଗ୍ରାକୁ ନେଇ ଆସିଲେ।

ଆଗ୍ରାରେ ହମିବା ବାନୁ ବେଗମ ସଲିମଙ୍କୁ ତାଙ୍କ ମହଲକୁ ଘେନିଗଲେ। ସଲିମ କହିଲେ ପିତାଙ୍କଠାରୁ ଦୟା ପାଇଁ ଏକ ଶୁଭମୁହୂର୍ତ୍ତରେ ଆବଶ୍ୟକ। ଜ୍ୟୋତିଷଙ୍କ ପରାମର୍ଶ ଦରକାର। ଆକବର ଜଣାଇଲେ ପିତା ସଂଗେ ଦେଖା କରିବା ପାଇଁ କୌଣସି ସମୟ ଅଶୁଭ ନୁହେଁ। ଏହା କହି ସେ ପୁତ୍ରଙ୍କ ସହିତ ଦେଖାକରିବା ପାଇଁ ମାତାଙ୍କ ପ୍ରାସାଦକୁ ଆକବରଙ୍କୁ ଦେଖି ହମିଦା ବେଗମ ସଲିମଙ୍କୁ ଆକବରଙ୍କ ପାଦତଳେ ପକାଇ ଦେଲେ। ଆକବର ସଲିମଙ୍କୁ ଉଠାଇ ନେଇ ତାଙ୍କ ମୁଣ୍ଡରୁ ଟରବାନ (ଟୋପି ବା ରାଜମୁକୁଟ) ବୋଲି ସଲିମଙ୍କ ମଥାରେ ଲଗାଇ ଦେଲେ। ଶେଷ ହେଲା ତିନିବର୍ଷର ବିଦ୍ରୋହ। ସମସ୍ତେ ଭାବିଲେ ସବୁ ଶେଷ ହେଲା। କିନ୍ତୁ ଆକବର ସଲିମଙ୍କୁ ମେୱାର ବିଦ୍ରୋହ ଦମନ ପାଇଁ ଯିବାକୁ କହିଲେ। ଆକବରଙ୍କ କଥାମାନି ସଲିମ ଆଗ୍ରାରୁ ବାହାରିଗଲେ କିନ୍ତୁ ଫତେପୁର ସିକ୍ରିରେ ରହି ଖବର ଦେଲେ ଯେ ଯେଉଁ ସେନାବାହିନୀ ବିଦ୍ରୋହ ଦମନ ପାଇଁ ଦିଆଯାଇଛି ତାହା ଯଥେଷ୍ଟ ନୁହେଁ। ସଲିମଙ୍କୁ ଆଲ୍ଲାବାଦ ଫେରି ଯିବା ପାଇଁ ଆଦେଶ ହେଉ। ଆକବର ସାଙ୍ଗେ ସାଙ୍ଗେ ମଙ୍ଗିଗଲେ। ଖବର ପାଇ ସଲିମ ଆନନ୍ଦରେ ବିଭୋର ହୋଇ ମଥୁରା ଦେଇ ଆଲ୍ଲାବାଦ ଫେରିଗଲେ। ସେ ନିଜକୁ ନଷ୍ଟ କରିବା ପାଇଁ ପଣ ନେଇଥିବାର ଆକବର ଅନୁଭବ କଲେ।

ଆକବର ଚିନ୍ତିତ ଥିଲେ ମୋଗଲ ସାମ୍ରାଜ୍ୟର ରକ୍ଷା ପାଇଁ। ସଲିମଙ୍କୁ ରକ୍ଷା କରିବାକୁ ହେବ। ପୁତ୍ରଙ୍କୁ ଦୁଷ୍ଟ ଅବସ୍ଥାରୁ ରକ୍ଷା କରିବା ପାଇଁ ସେ ନିଜେ ସୈନ୍ୟସାମନ୍ତ ନେଇ ବାହାରିଲେ। ରାସ୍ତାରେ ବର୍ଷା ଜନିତ ଦୁରାବସ୍ଥା ହେଲା। ତାଙ୍କ ମା ବେମାର

ପଡ଼ିଲେ। ସେ ପିତାପୁତ୍ରଙ୍କର କନ୍ଦଳ ନ ହେବା ଚିନ୍ତାରେ ଭାଙ୍ଗି ପଡ଼ିଲେ। ଅବଶେଷରେ ଆକବର ଆଗ୍ରା ଫେରିଆସିଲେ। ୧୦ ସେପ୍ଟେମ୍ବର ୧୬୦୪ ଦେହତ୍ୟାଗ କରେ ହମିଦାବାନୁ ବେଗମ। ଭାଙ୍ଗି ପଡ଼ିଲେ ଆକବର। ବାଳ, ନିଶ, ଦାଢ଼ି କାଟି ଦେଲେ। ଟୋପି ଉତାରି ଦେଲେ। ଦୁଃଖର ପୋଷାକ ପିନ୍ଧିଲେ। ମା'ଙ୍କ ମୃତ୍ୟୁ ପରେ ସେ ନିଃସଙ୍ଗ ହୋଇଗଲେ। ଜଣେ କେହି ବି ନାହାନ୍ତି ତାଙ୍କ କଥା ଶୁଣିବା ପାଇଁ। ୧୬୦୪ରେ ସଲିମଙ୍କୁ ଡକାଇଲେ। ଦରବାରରେ ସର୍ବସାଧାରଣଙ୍କ ଆଗରେ ତାଙ୍କୁ କୋଳେଇ ନେଲେ। ଦରବାର ସରିବା ପରେ ତାଙ୍କୁ ଏକ ନିଭୃତ ପ୍ରକୋଷ୍ଟକୁ ନେଇଗଲେ। ରାଗରେ ତାଙ୍କୁ ଥାପଡ଼ ପରେ ଥାପଡ଼ ମାରିଲେ। ତାଙ୍କୁ ଗୃହବନ୍ଦୀ କରି ଜଣେ ଚିକିତ୍ସକଙ୍କ ତତ୍ତ୍ୱାବଧାନରେ ରଖିଲେ। ଆଦେଶ ଦେଲେ ମଦ ବା ଅଫିମ ତାଙ୍କୁ ନ ଦିଆଯିବା ପାଇଁ। ସଲିମଙ୍କ ଅନ୍ୟ ସାଥିମାନେ ମଧ୍ୟ ବନ୍ଦୀ ହେଲେ।

ଦଶଦିନ ପରେ ମୁକ୍ତ ହେଲେ ସଲିମ। ପ୍ରାସାଦ ତାଂକୁ ଦିଆଗଲା। ଉଚ୍ଚ ପଦବୀକୁ ଉନ୍ନତ ହେଲେ। ଯଦିଓ ଆକବରଙ୍କ ଆଖି ଆଗରେ ଓ ଚିକିତ୍ସାରେ ବର୍ଷେ ରହିଲେ। ନିଜକୁ ନିଜେ ଆୟତ୍ତାଧୀନ କଲେ। ଆକବରଙ୍କ ଭବିଷ୍ୟତ ଚିନ୍ତା ଗଲା ନାହିଁ। ସଲିମଙ୍କର ଏ ପରିବର୍ତ୍ତନ କ'ଣ ରହିବ ? ଉତ୍ତରାଧିକାରୀ ପାଇଁ କ'ଣ ଲଢ଼େଇ ହେବ? ସଲିମ ଓ ତାଙ୍କ ବଡ଼ ପୁଅ ଖୁସରୋଉଙ୍କ ମଧ୍ୟରେ ଏ ଲଢ଼େଇ କ'ଣ ସମ୍ଭବ?

ଜିତିବାର ବା ବଂଚିବାର ଆଗ୍ରହ ତାଙ୍କ ଭିତରେ ମରିଯାଇଥିଲା। ୧୬୦୫, ୨ ସେପ୍ଟେମ୍ବର ଆକବର ଅସୁସ୍ଥ ହେଲେ। ସେ ଅସୁସ୍ଥ ଅବସ୍ଥାରେ ଅକ୍ଟୋବର ୧୬୦୫ରେ ସଲିମ ଓ ଖୁସରୋଭ ହାତୀମାନଙ୍କର ଲଢ଼େଇ ହେଲା। ଆଶା ଥିଲା ଏହାରି ଜରିଆରେ ଉତ୍ତରାଧିକାରୀ ଠିକଣା ହୋଇଯିବ କିନ୍ତୁ ଖୁସରୋଭଙ୍କ ହାତୀ ହାରିଗଲା ପରେ ବୃଦ୍ଧ ସମ୍ରାଟଙ୍କ ଉପରକୁ ଝପଟି ଆସିଲେ। ଆକବରଙ୍କ ରାଗ ବଢ଼ି ଯାଇଥିଲା। ସେଥିରେ ତାଙ୍କ ଅସୁସ୍ଥତା ବଢ଼ିଗଲା। ଡାଇରିଆ ରୋଗରେ ଆକ୍ରାନ୍ତ ହେଲେ। ଚିକିତ୍ସା ସତ୍ତ୍ୱେ ଅସୁସ୍ଥତା କମିଲା ନାହିଁ। ମୃତପ୍ରାୟ ଆକବର ପଡ଼ି ରହିଲେ। ଫଳରେ କ୍ଷମତାଶୀଳ ଅମିରମାନେ ଖୁସରୋଭଙ୍କ ଶ୍ୱଶୁର ଅଜିଦ କୋକା, ମାମୁଁ ମାନସିଂ ଷଡ଼ଯନ୍ତ୍ର କଲେ କି ସଲିମଙ୍କୁ ହଟାଇ ଖୁସରୋଭଙ୍କୁ ରାଜଗାଦିରେ ବସାଇବେ। କିନ୍ତୁ ଅନ୍ୟ ଅମୀରମାନେ ପ୍ରତିବାଦ କଲେ। ୨୫ ଅକ୍ଟୋବରରେ ମୁମୂର୍ଷ ଆକବରଙ୍କୁ ଦେଖିବା

ପାଇଁ ଗଲେ। ବାକ୍‌ଶୂନ୍ୟ ଆକବର ଇସାରା ଦେଇ ଅମୀରମାନଙ୍କୁ ଡକାଇଲେ। ସେଇ ଅନୁସାରେ ସଲିମଙ୍କୁ ଖଣ୍ଡା, ପୋଷାକ ଓ ଟରବାନରେ ବେଶ କରାଇଦେଲେ। ଆକବରଙ୍କ ଏହା ଶେଷ ଇସ୍ତାହାର।

ଅକ୍ଟୋବର ୨୫, ୧୬୦୫ର ମଧ୍ୟ ରାତ୍ରରେ ଆକବର ବିଦାୟ ନେଲେ। ବୟସ ୬୩। ତହିଁପର ଦିନ ସକାଳୁ ପରମ୍ପରା ନିୟମ ଅନୁଯାୟୀ ଆକବରଙ୍କ ପ୍ରାସାଦ ଭାଙ୍ଗି ଦିଆଗଲା।

ସିକନ୍ଦରବାଦ ଆଗ୍ରାଠାରୁ ୮ କିଲୋମିଟରରେ ଦୂରରେ। ରୀତିରିଆଜ ଅନୁଯାୟୀ ବୋହି ନିଆଗଲା। ସେଇ କବର ଖାନାକୁ ଆକବର ଆରମ୍ଭ କରିଥିଲେ। କିନ୍ତୁ ୧୬୧୩ରେ ଆକବରଙ୍କ ପରି ଏହାକୁ ଶେଷ କରିଦେଲେ।

ଆକବର କହନ୍ତି, 'ଏହାହିଁ ସ୍ୱର୍ଗର ବଗିଚା, ସେଇମାନଙ୍କୁ ସିଏ ଆପଣାର ନିଏ ଯାହାଙ୍କୁ ସେ ନିଜକୋଳରେ ଚିରଦିନ ରଖି ପାରିବ ?' ସେଠାରେ ମଧ୍ୟ ସେ ଚିରକାଳ ପାଇଁ ଆକବର ରହିପାରିଲେ ନାହିଁ। ୮୬ ବର୍ଷ ପରେ ଔରଙ୍ଗଜେବଙ୍କ ବିରୁଦ୍ଧରେ ଜାଟମାନେ ବିଦ୍ରୋହ କରିବା ସମୟରେ ଏହାର ପ୍ରତ୍ୟେକଟି କବରକୁ ଭାଙ୍ଗି ମାଟିରେ ବିଶାଇ ଦିଆଗଲା। ଆକବରଙ୍କ କବର ଭାଙ୍ଗି ମୂଲ୍ୟବାନ ପଥର, ସୁନାପ୍ଲେଟ ବାହାର କରି ନେଇଗଲେ। ଯାହା ନେଇ ନ ପାରିଲେ ତାକୁ ନଷ୍ଟ କରିଦେଲେ। ଆକବରଙ୍କ ହାଡଗୋଡ଼ ଖପୁରି ଇତ୍ୟାଦି ଯାହା ଥିଲା ତାକୁ ନିଆଁରେ ପକାଇଦେଲେ। ସେ ଯାହାହେଉ ଅବଶେଷରେ ଆକବରଙ୍କ ହିନ୍ଦୁ ମୃତ୍ୟୁହେଲା।

୨୦ ବର୍ଷ ପର୍ଯ୍ୟନ୍ତ ଆକବରଙ୍କର କୌଣସି ଉତ୍ତରାଧିକାରୀ ଜନ୍ମ ହୋଇ ନଥିଲେ। ଆକବର ସେଥିପାଇଁ ଆଗ୍ରାଠାରୁ ୨୩ ମାଇଲ ଦୂରରେ ସିକ୍ରି ଯାଇଁ ଜଣେ ସୁଫି ବା ମୁସଲିମ ସାଧୁଙ୍କ ସହ ବିଚାରବିମର୍ଷ କଲେ। ସେଖ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ କି ତାଙ୍କର ତିନିଜଣ ଉତ୍ତରାଧିକାରୀ ଜନ୍ମନେବେ। କିଛିଦିନ ପରେ (ଅମ୍ବର ରାଜାଙ୍କ ଝିଅ) ତାଙ୍କ ପ୍ରଧାନ ରାଣୀ ଗର୍ଭବତୀ ହେଲେ। ଆକବର ତାଙ୍କ ସ୍ତ୍ରୀଙ୍କୁ ଶେଖଙ୍କ ପାଖକୁ ପଠାଇଦେଲେ ଫଳରେ ଉତ୍ତମ ଭାଗ୍ୟ ଆସିପାରେ।

ସିକ୍ରିରେ ଜନ୍ମନେଲେ ସଲିମ (ପରବର୍ତ୍ତୀ କାଳର ଜାହାଙ୍ଗୀର)। ପରେ ତିନିବର୍ଷ ମଧ୍ୟରେ ଆଉ ଦୁଇସନ୍ତାନ (ମୁରାଦ ଓ ଡାନିୟେଲ) ଜନ୍ମନେଲେ। ସିକ୍ରିର ଯୋଗୀଙ୍କୁ ସମ୍ମାନ ଦେଖାଇ ଓ ପୁତ୍ର ସଲିମଙ୍କର ଉଜ୍ଜ୍ୱଳ ଭବିଷ୍ୟତ ଆଶାରେ ଆକବର ଆଗ୍ରାରୁ ସିକ୍ରି ରାଜଧାନୀ ଉଠାଇ ନେବାକୁ ଇଚ୍ଛା କଲେ। ପରେ ସିକ୍ରି ନାଁ

ଯୋଡ଼ିଲେ ଫତେପୁର। ଫତେପୁର ସିକ୍ରିର ଅର୍ଥ 'ବିଜୟର ସହର'। କାରଣ ଠିକ୍ ତା ପୂର୍ବରୁ ଗୁଜୁରାଟ ଜୟକରି ବୁଲେନ୍ଦ ଦରୱାଜାରେ ବନାଇ ଫେରିଥିଲେ। ଏଇ ବିଜୟର ସ୍ମାରକ ସ୍ୱରୂପ ସେ ଫତେପୁର ସିକ୍ରିରେ ରାଜଧାନୀ ତୋଳିଲେ। ତା' ପୂର୍ବରୁ ସେଠାରେ ହୁମାୟୁନଙ୍କର ଏକ ସମାଧିସ୍ଥଳ ଥିଲା। ଦିଲ୍ଲୀର ଦକ୍ଷିଣ-ପୂର୍ବ କୋଣରେ ଏକ ବିରାଟ ବଗିଚା ଭିତରେ ଏ ସମାଧି ଅବସ୍ଥିତ ଆଉ ସାଧାରଣ ଆଖିରେ ମଧ୍ୟ ଏହା ତାଜମହଲର ବାର୍ତ୍ତାବହ ଅଗ୍ରଜ ବୋଲି ଜଣାଯାଏ। ଏଇଟାହିଁ ଭାରତରେ ମୋଗଲ ସାମ୍ରାଜ୍ୟର ପ୍ରଥମ ଅଟ୍ଟାଳିକା– ଯେଉଁଠି ଧଳା ମାରବଲ ଓ ଲାଲପଥରର ମିଳିତ ସଂଯୋଗ ଦେଖାଯାଏ। ହୋଇପାରେ ଆକବର ମୋଗଲ ସ୍ଥାପତ୍ୟ ବିଦ୍ୟାକୁ ହିନ୍ଦୁ ସାମାଜିକ ସ୍ଥିତି ସହ ମିଶାଇଥିଲେ। ଧଳା ରଙ୍ଗ ହିନ୍ଦୁମାନଙ୍କର ଓ ଲାଲ ଯୁଦ୍ଧରତ କ୍ଷତ୍ରିୟଙ୍କର। ଏହା ସ୍ଥାପତ୍ୟବିଦ୍ୟା ବିଶାରଦ ସୟଦ ମହମ୍ମଦ ଓ ତାଙ୍କ ବାପା ମିରାକ୍ ସୟଦ ଗିୟାସଙ୍କ କୃତ। ଦୁଇଜଣ ଯାକ ପର୍ଶିୟାର।

ଦେଢ଼ମାଇଲ ବିସ୍ତୃତ ଫତେପୁର ସିକ୍ରି। ସହରକୁ ବେଢ଼ି ୩ ପଟେ ପାଚେରୀ ଓ ଚତୁର୍ଥ ପାଖେ ଛୋଟ ପର୍ବତମାଳା। ଯଦିଓ ମୋଗଲ ନୀତିନିୟମ ଅନୁଯାୟୀ ଗଢ଼ା ଏ ଦୁର୍ଗ, ତେବେ ବି ସେଠାରେ ବର୍ତ୍ତମାନ ଯେଉଁ ସବୁ ଅଟ୍ଟାଳିକା ଦେଖାଯାଉଛି ସେମାନଙ୍କର ନିର୍ମାଣ ହିନ୍ଦୁ ଷ୍ଟାଇଲରେ। ମିସ୍ତ୍ରୀଙ୍କର କଟାପଥରର ଢ଼ଳେଇ ସହିତ ବଢ଼େଇଙ୍କ ତିଆରି କାଠ ସହ ମେଳ ଖାଇଯାଉଥିଲା। ନିର୍ମାଣ ସମୟରେ ଆକବର ନିଜେ ପଥର କାଟି ଆନନ୍ଦ ପାଉଥିଲେ। ଏ ସହର ବସେଇବାରେ ୭ବର୍ଷ କଟିଯାଇଥିଲା। ବାଥରୁମ, ବାରକ, ହଲ୍, ରାଜକୀୟ ହଲ, ବଗିଚା, ମସ୍‌ଜିଦ, ନୋବେଲମାନଙ୍କର ଘର, ଆକବରଙ୍କ ନିଜ ପ୍ରାସାଦ ସବୁ ଏକାଧାରରେ ମନୋହର। 'ଅନୁପ ତାଲାବ' ବା 'ପିଅରଲେସ ପୁଲ ପରି ଦେଖାଯାଉଥିଲା। ଏହାର ହାରେମ ଥିଲା ବହୁତ ବଡ଼। ପ୍ରାୟ ୫୦୦୦ ଲୋକ ବସବାସ କରିଥିଲେ। ସାମନାରେ ଦୁଆର ଜଗୁଆଳିଙ୍କ ଘର। ବାହାରେ ଲୁହାର ଗେଟ– ମନେହୁଏ ଦୁର୍ଗ ଭଳି। ପାଚେରୀରେ ଥିବା କଣା ସାହାଯ୍ୟରେ ସ୍ତ୍ରୀ ଲୋକମାନେ କେବଳ ବାହାର ଦୁନିଆ ଦେଖିପାରିବେ। ଭିତର କିନ୍ତୁ ଅତି ସୁନ୍ଦର, ମନୋହର ଓ ମନମୁଗ୍ଧକାରୀ ପ୍ରାସାଦ। ରଙ୍ଗିନ ଫୁଲର ଝରଣା ଉପରେ ଝରଣା ବୋହିଯାଏ। ଆକାଶ ରଙ୍ଗର ନୀଳ ଟାଇଲ ସବୁ ସୂର୍ଯ୍ୟ ଆଲୋକରେ ଝଲସି ଉଠେ। ପବନ ବୋହିଲେ ସ୍ତ୍ରୀ ଲୋକମାନେ ହାୱା ମହଲରେ ଏକାଠି ହୁଅନ୍ତି। ଆନନ୍ଦରେ ବିଭୋର ହୋଇଯାନ୍ତି।

ସବୁଠାରୁ ଆଖି ଦୃଷ୍ଟିଆ ସୁନ୍ଦର ଥିଲା ରୋଟିଏ ବଡ଼ ହଲ। ପ୍ଲାଟଫର୍ମକୁ ଛାବୁଡ଼ି ଧରି ଛନ୍ଦାଛନ୍ଦି ହୋଇ ପୋଲ ଉପରେ ଦର୍ଶକ ମଞ୍ଚ ତିଆରି। ଆକବର କାଳେ ଛନ୍ଦା ଛନ୍ଦି ତିଆରି ମଞ୍ଚ ଉପରେ ସର୍ବସାଧାରଣଙ୍କୁ ଭାଷଣ ଦିଅନ୍ତି। ରାଲ୍ଫ ଫିଚ୍ ଜଣେ ଇଂରେଜ ବ୍ୟବସାୟୀ। ଆଗ୍ରା ଓ ଫତେପୁର ସିକ୍ରି ଦୁଇ ସହର ବିଷୟ ମନ୍ତବ୍ୟ ଦେଇ ଲେଖିଥିଲେ କି ଏ ଦୁଇଟିଯାକ ଲଣ୍ଡନ ସହରଠାରୁ ବଡ଼। ଲୋକସଂଖ୍ୟା ମଧ ଅଧିକ। ଏଠାରେ ଚଉଦବର୍ଷ ପର୍ଯ୍ୟନ୍ତ ଜନବସତି ସଂପୂର୍ଣ୍ଣ ଥିଲା। ତା'ପରେ ଆସ୍ତେ ଆସ୍ତେ ଫତେପୁର ସିକ୍ରିରେ ଲୋକସଂଖ୍ୟା କମିବାକୁ ଲାଗିଲେ। ୧୫୮୬ ବେଳକୁ ସବୁ ଶୂନ୍ୟପ୍ରାୟ। ପ୍ରଥମରେ ଏହା ଗ୍ରାଣ୍ଡ ଟ୍ରଙ୍କ ରାସ୍ତାରେ ଅବସ୍ଥିତ ନୁହେଁ। ଦ୍ୱିତୀୟରେ ଆଗ୍ରା ସହର ପରି ଯମୁନା ନଦୀ ଧାରାର ପାଣି ପାଇ ପାରି ନଥିଲା। ଏସବୁ କାରଣରୁ ସହରର ଅବନତି ଘଟିଲା ପ୍ରାୟ ୧୫୮୬ ବେଳକୁ।

୧୫୮୬ରେ ଆକବର କାଶ୍ମୀର ଦଖଲ କଲେ। ଏହାର ଲମ୍ବ ନବେ ମାଇଲ ଓ ପ୍ରସ୍ଥ ୨୫ ମାଇଲ– ଉତ୍ତର ଭାରତର ପର୍ବତ ଶିଖର ପ୍ରଦେଶ। ଏ ସହର ଦେଇ ଝିଲମ ନଦୀର ଧାରା ବୋହିଯାଏ। ଆକବରଙ୍କର ଶରୀର ଗଠନ ଅତି ଚମତ୍କାର। ଆଜାନୁ ଲମ୍ବିତ ବାହୁ ଗୋଡ଼ର ଗଣ୍ଠିବକ୍ର (ଘୋଡ଼ା ଚଢ଼ାଳି ପାଇଁ ଉତ୍ତମ) ସୁଦୀର୍ଘ ସ୍କନ୍ଧ, ଉଚ୍ଚ ନାସିକା ତାଙ୍କ ବ୍ୟକ୍ତିତ୍ୱ ସାଙ୍ଗରେ ଖାପଖାଉଥାଏ। ରାଜାର ଚେହେରା ସହିତ ବ୍ୟବହାର ଉତ୍ତମ, ମୁଖମଣ୍ଡଳରୁ ଜ୍ଞାନର ପରିଚୟ ଆଉ ତୀକ୍ଷ୍ଣ ଦୂରଦୃଷ୍ଟି ସହିତ ଅନୁସନ୍ଧିତ୍ସୁ ମନ – ସବୁର ସମିଶ୍ରଣ ତାଙ୍କର ବ୍ୟକ୍ତିତ୍ୱର ପରିଚୟ ଦିଏ। ଜାଣି ହୁଏନାହିଁ କି ସେ ଶ୍ରୀଅକ୍ଷର ବିବର୍ଜିତ। ୧୫୭୭ରେ ମିର୍ଜା ଗିୟାସୁଦ୍ଦିନ ବେଗ ନାମରେ ଜଣେ ପର୍ଶିୟାନ ନୋବେଲ ନିଜଦେଶ ତ୍ୟାଗ କରି ଅତି ଦରିଦ୍ର ଅବସ୍ଥାରେ ଆକବରଙ୍କ ଦରବାରରେ ପହଞ୍ଚିଲେ। ତିନୋଟି ଛୋଟ ଛୁଆ, ଗର୍ଭବତୀ ସ୍ତ୍ରୀ ସହ ହିଂସ୍ର ଓ ନିଛାଟିଆ ରାସ୍ତା ପାରହୋଇ ଭାରତରେ ପ୍ରବେଶ କରି ମୋଗଲ ଦରବାର ପହଞ୍ଚିଲେ। ମୋଗଲ ସାମ୍ରାଜ୍ୟରେ ହିଁ ନିଜର ଭବିଷ୍ୟତ ଗଢ଼ିବାର ଆଶା ଧରିଥିଲେ। ରାସ୍ତାରେ ଆସିବା ବାଟରେ ସେ ସବୁକିଛି ହରାଇଥିଲେ। କେବଳ ଦୁଇଟି ଘୋଡ଼ା ଶାବକ (mule)ଙ୍କ ସାହାଯ୍ୟରେ କ୍ଳାନ୍ତ ଶ୍ରାନ୍ତ ହୋଇ କାନ୍ଧାହାରରେ ପହଞ୍ଚିଲେ। କାନ୍ଧାହାରରେ ଜନ୍ମନେଲେ ଏକ କନ୍ୟା। ନା ଦେଲେ 'ମେହେରୁନିସା' ସ୍ତ୍ରୀ ଲୋକଙ୍କର ସୂର୍ଯ୍ୟ। ଜନ୍ମହେଲା ପରେ ବାହାରେ ଶୀତରେ ତାକୁ ଛାଡ଼ିଦେଇ ପଳାଇ ଆସିଥିଲେ ବୋଲି ଲୋକକଥା ଅଛି। ପରେ ପୁଣି କ'ଣ

ଭାବି କନ୍ୟାକୁ ସାଙ୍ଗରେ ଆଣିଲେ। ଅଥବା କୌଣସି ଏକ ତୀର୍ଥଯାତ୍ରୀ ଦଳ ଝିଅକୁ ପାଇ ବାଟରେ ଏମାନଙ୍କୁ ପାଇ ଦେଲେ। କାହାଣୀ ଯାହା ହେଉନା କାହିଁକି ଭାରତରେ ଡାବି ନୂରଜାହାନ ଧରି ଫତେପୁର ସିକ୍ରିରେ ପହଞ୍ଚିଲେ। ତାଙ୍କୁ ଦାଖଲ କରାଗଲା ଆକବରଙ୍କ ଦରବାରରେ। ପ୍ରଥମ ଦେଖାରେହିଁ ଆକବର ତାଙ୍କୁ ନିଜର କରିନେଲେ।

କେହି ଜାଣି ନଥିଲେ କି ଏମାନଙ୍କ ବଂଶଧର ହିଁ ମୋଗଲ ସାମ୍ରାଜ୍ୟରେ ହିଁ ଏତେ ବଡ଼ ସ୍ଥାନ ଅଧିକାର କରିବେ। ପ୍ରଥମରେ ଗିୟାସୁଦ୍ଦିନଙ୍କୁ ଗୋଟିଏ ଛୋଟକୋଟିଆ ଚାକିରୀ ଦେଇ କାବୁଲ ପଠାଇଲେ। କିନ୍ତୁ ୧୫୯୬ରେ ରାଜକୀୟ ଦରବାରରେ ସ୍ଥାନ ପାଇ ଆଗ୍ରାକୁ ଫେରିଲେ। ସେତେବେଳକୁ ତାଙ୍କ ଝିଅ ମେହେରୁନିସା ଗୀତ, ନାଚ, କବିତା ଲେଖା ଓ ଚିତ୍ରକଳାରେ ଧୂରନ୍ଧର ହୋଇସାରିଥିଲେ। ତାଙ୍କୁ ବଳିଯିବା ଭଳିକୌଣସି ନାରୀଚରିତ୍ର ନଥିଲେ। ତାଙ୍କ କଥାକହିବାର ସସଜ୍ଜୀକରଣ ସ୍ଫୁର୍ତ୍ତିଯୁକ୍ତ। ବାକ୍ୟ ପ୍ରାଣବନ୍ତ। ବୁଦ୍ଧି ମହାନ ଓ ଉନ୍ନତ ଆଉ ତା' ଉପରେ କାମଉଦ୍ରେକ ଚେହେରା। ପ୍ରଥମରେ ବିବାହ କରିଥିଲେ ଶେର ଆଫଗାନଙ୍କୁ। ଆଫଗାନ ମଧ୍ୟ ବଙ୍ଗଳାରେ ଆକବରଙ୍କ କ୍ୟାମ୍ପରେ ଯୋଗ ଦେଇଥିଲେ। ଥିଲେ ବଙ୍ଗଳାରେ। ସଲିମ ଆକବରଙ୍କ ବଡ଼ ପୁଅ ଓ ରାଜଗାଦିର ଅଧିକାରୀ। ଯଦିଓ ଆକବର ମୁରାଦ ଓ ଡାନିୟେଲଙ୍କୁ ଅଧିକ ଭଲପାଉଥିଲେ। ସଲିମ ନିଜର ମନର ଦୁଃଖ ମନରେ ମାରିଥିଲେ। ପରେ ପରେ ସେ ଆକବରଙ୍କର ଜଣେ ସୁନ୍ଦରୀ ରକ୍ଷିତା ସହ (ଅନାରକଲି) ପ୍ରେମ ବନ୍ଧନରେ ବାନ୍ଧି ହୋଇପଡ଼ିଲେ। କ୍ରୁଧ ଆକବର ଅନାରକଲିକୁ ଏକ ଘରତୋଳାଇ ତା ଭିତରେ ଅନ୍ଧକୂପ ହତ୍ୟା କଲା ଭଳି ମାରିଦେଲେ। ଭାଙ୍ଗି ପଡ଼ିଲେ ସଲିମ। ସଲିମ ଆବୁଲ ଫଜଲଙ୍କୁ ହତ୍ୟା କଲେ। ହତ୍ୟାପରେ ତାଙ୍କ କଟାମୁଣ୍ଡକୁ ଜନସାଧାରଣଙ୍କ ଲାଟ୍ରିନରେ ପକାଇଦେଲେ। ଆକବର ଆଘାତ ପାଇଲେ। ହୁଏତ ସଲିମଙ୍କୁ ଦଣ୍ଡାଦେଶ ଦେଇପାରିଥାନ୍ତେ। କିନ୍ତୁ ସେତେବେଳକୁ ମୁରାଦ ମରିଯାଇଥିଲେ ଆଉ ଡାନିଏଲ ଅଧିକ ମଦ୍ୟପାନ ଯୋଗୁଁ ଜୀବନମୃତ।

ସଲିମ ମଧ୍ୟ ମଦ୍ୟପାନ ଯୋଗୁଁ ଶରୀରରେ କଷ୍ଟ ପାଇଥିଲେ। ପ୍ରାୟ ୧୮ ବର୍ଷ ବୟସରୁ ମଦ୍ୟପାନ ଫଳରେ ହାତ ପାଦ ଧରିଲା। ଚିକିତ୍ସକଙ୍କ ଉପଦେଶ ଅନୁସାରେ ପିଇବା କମେଇଲେ ସତ କିନ୍ତୁ ସଂପୂର୍ଣ୍ଣ ଛାଡ଼ି ପାରିଲେ ନାହିଁ। ଏ ସବୁ କାରଣ ଆକବର ଅସନ୍ତୁଷ୍ଟ ଥାଇଁ ମଧ୍ୟ ମୋଗଲ ସାମ୍ରାଜ୍ୟର ଏକମାତ୍ର ଦାୟାଦଙ୍କୁ ହାତଛଡ଼ା କରିବାକୁ ଚାହିଁଲେ ନାହିଁ। ୧୬୦୧ ବେଳକୁ ସେ ମଧ୍ୟ ଆକବରଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ। ସବୁ ଜାଣି ମଧ୍ୟ ଚୁପ ରହିଥିଲେ ଆକବର।

୧୬୦୪ରେ ଡାନିୟେଲ ମଧ ପ୍ରାଣତ୍ୟାଗ କଲେ। ମା' ହମିଦା ମଧ ମରିଗଲେ। ସବୁ ଦୁଃଖକୁ ଭୁଲିବାପାଇଁ ଆକବର ହାତୀ ଲଢ଼େଇ ଦେଖିବାପାଇଁ ମନ ବଳାଇଲେ।

ମୋଗଲମାନଙ୍କର ହାତୀଲଢ଼େଇ କରେଇବା ଏକ ଚିରାଚରିତ ପ୍ରଥା। ହାତୀ ଲଢ଼ାଇରେ ବିଜୟୀ ରାଜପୁତ୍ର ସମ୍ରାଟ ହେବାପାଇଁ ଯୋଗ୍ୟ। ହାତୀ ଲଢ଼େଇ ଆରମ୍ଭ ହେଲା। ସଲିମଙ୍କ ହାତୀ ଓ ତାଙ୍କ ବଡ଼ପୁଅ ଖୁସୋରୋଭଙ୍କ ହାତୀ। ଦୁଇ ଦଳ ଲୋକ। ସଲିମ ବିଜୟୀ ହେଲେ ସତ କିନ୍ତୁ ଦୁଇଦଳର ସମର୍ଥକମାନଙ୍କ ମଧ୍ୟରେ ଗଣ୍ଡଗୋଳର ସୂତ୍ରପାତ ହେଲା। ନାତି ଖୁରାମ (ବୟସ ୧୩ ବର୍ଷ ଓ ଭବିଷ୍ୟତର ସମ୍ରାଟ ଶାହାଜାହାନ) ଆକବରଙ୍କ ନିକଟରେ ବସିଥିଲେ। ପରିସ୍ଥିତି ଶାନ୍ତ କରିବାପାଇଁ ଆକବର ଖୁରାମଙ୍କୁ ପଠାଇଲେ। ଆକବର, ସଲିମ, ଖୁସୋରୋଭ ବା ଦୁଇଦଳଙ୍କ ମନରେ କି ଭାବନା ଉଦ୍ରେକ ହେଉଥିଲା ଜଣାନାହିଁ। କିନ୍ତୁ ଖୁରାମ ତାଙ୍କ ଭବିଷ୍ୟତ ଚିନ୍ତାଧାରାରେ ବୁଡ଼ି ରହିଥିଲେ ଏହା ତାଙ୍କ ମୁହଁରୁ ଜଣାଯାଉଥିଲା। ଖୁରାମ ଆକବରଙ୍କ ପ୍ରିୟ ନାତି। ହାତୀ ଲଢ଼େଇର ସପ୍ତାହକ ପରେ ଆକବର ଡାଇରିଆ ଓ ଅନ୍ତରାଳରେ ରକ୍ତାକ୍ଷର ହେବା ଯୋଗୁଁ ଆକ୍ରାନ୍ତ ହୋଇପଡ଼ିଲେ। ଦିନ ରାତି ଖୁରାମ ତାଙ୍କ ପାଦ ପାଖରେ ବସିରହିଲେ। ଅପର ପକ୍ଷରେ ଖୁସୋରୋଭ ଓ ସଲିମଙ୍କ ମଧ୍ୟରେ ସାମ୍ରାଜ୍ୟ ପାଇଁ ଲଢ଼େଇ ଜାରି ରହିଥାଏ। ଦେହ ଖରାପରୁ ଭଲ ନ ହୋଇପାରି ଆକବର ବାଧ ହୋଇ ସବୁ ନୋବେଲ ମାନଙ୍କୁ ଡକାଇଲେ। ମତାମତ ଲୋଡ଼ିଲେ ସମ୍ରାଟଙ୍କ ନାମ ବାଛିବାପାଇଁ। ଅଧିକାଂଶ ସଲିମଙ୍କ ନାଁ ବାଛିଲେ। ରାଜପୋଷାକ ଅଣାହେଲା। ଆସିଲା ଟରବାନ ଓ ପୋଷାକକୁ ଆବଦ୍ଧ କରିବାପାଇଁ କପଡ଼ା। ଯାହାକୁ Gird ବୋଲି କୁହାଯାଏ। ହୁମାୟୁନଙ୍କ ଖଣ୍ଡାଟାତ ଖଟ ପାଖରେ ଝୁଲୁଥାଏ। ଆସିଲା ସେ ଖଣ୍ଡା।

୧୫ ଅକ୍ଟୋବର ୧୬୦୫ ଆକବର ସଲିମଙ୍କୁ ସମ୍ରାଟ ପଦରେ ଅଭିଷିକ୍ତ କଲେ। ତାର ଅଳ୍ପ ସମୟପରେ ଇହଲୀଳା ସମ୍ବରଣ କଲେ। ତହିଁ ପରଦିନ ଭୋରରୁ ସିକାନ୍ଦରାରେ (ଆଗ୍ରାଠାରୁ ୫ ମାଇଲ ଦୂର) ତାଙ୍କ ନିଜ ତିଆରି ଅଧୁରା କବରରେ ତାଙ୍କୁ ସମାଧି ଦିଆଗଲା। ଆକବରଙ୍କ ମୃତ୍ୟୁର ୯ ଦିନପରେ ଛତିଶ ବର୍ଷିୟ ସଲିମ ଆଗ୍ରାର ସର୍ବସାଧାରଣଙ୍କ ନିର୍ମିତ ହଲରେ ଏକ ବିରାଟ ସାମ୍ରାଜ୍ୟର ସମ୍ରାଟ ରୂପରେ ଗଣାହେଲେ। ନିଜକୁ ଜାହାଙ୍ଗୀର ବୋଲାଇଲେ।



# ଜାହାଙ୍ଗୀର

ଆକବରଙ୍କ ମୃତ୍ୟୁର ସପ୍ତାହକ ପରେ ୩ ନଭେମ୍ବର ୧୬୦୫ ଆଗ୍ରାରେ ସଲିମ ରାଜସିଂହାସନ ଆରୋହଣ କଲେ। ଜାହାଙ୍ଗୀର ଏକମାତ୍ର ସମ୍ରାଟ ଯାହାଙ୍କ ଭାଗ୍ୟରେ ଥିଲା ବିଶାଳ ରାଜ୍ୟ, ରାଜଭୋଗ, ବିଳାସ ଓ ଶାସନ ଧାରା। ମୁସଲିମ ଭାବଧାରା ଅନୁସାରେ ରାଜଗାଦୀ ଆରୋହଣ ଏତେ ଆଡ଼ମ୍ବରପୂର୍ଣ୍ଣ ଅନୁଷ୍ଠାନ ନ ଥିଲା। ସେମାନେ ନିଜ ନିଜ  ବାହୁବଳରେ ରାଜଗାଦି ଆରୋହଣ କରୁଥିଲେ – ଆନୁଷ୍ଠାନିକ ଭାବରେ ନୁହେଁ। ଏହା କେବଳ ରାଜପୁତ୍ରରୁ ରାଜା ହେବାର ପରିଚୟର ନିର୍ଦ୍ଦେଶନ।

ଜାହାଙ୍ଗୀର ସିଂହାସନ ଆରୋହଣ ବେଳକୁ ଛତିଶ ବର୍ଷର ହୋଇଥିଲେ। ସମ୍ରାଟମାନେ ପ୍ରାୟ ସ୍ୱଳ୍ପାୟୁ। ବାବରଙ୍କ ବାପାଙ୍କଠାରୁ ଆରମ୍ଭ କରି  ପ୍ରାୟ ସମସ୍ତେ ୪୦ବର୍ଷ ଭିତରେ ପ୍ରାଣତ୍ୟାଗ କରିଥିଲେ।

ଜାହାଙ୍ଗୀର ଉଚ୍ଚଶିକ୍ଷିତ, ସଂସ୍କାରପୂର୍ଣ୍ଣ, ଦକ୍ଷ, ବୁଦ୍ଧିମନ୍ତ ପୁରୁଷ ଥିଲେ। ସବୁବେଳେ ନିଜର ଦକ୍ଷତାର ପରିଚୟ ଦେବାକୁ ଉତ୍ସୁକ ଥିଲେ। ଭୟ ଥିଲା ନିଜର ଦକ୍ଷତାର ପରିଚୟ ଦେବାର ସୁଯୋଗ ସେ ପାଇବେ କି ନାହିଁ। ସେଥିପାଇଁ ସେ ସମ୍ରାଟ ଆକବରଙ୍କ ବିରୁଦ୍ଧରେ ବିଦ୍ରୋହ କରିପାରିଲେ। ଯଦିଓ ସେଇଟା ତାଙ୍କର ବୋକାମୀ ଥିଲା। (ସଲିମ), ଜାହାଙ୍ଗୀରଙ୍କ ଜନ୍ମ ୧୫୬୯ ଅଗଷ୍ଟ ୩୦ରେ। ଆକବର ତାଙ୍କୁ ଆଦରରେ ଶାରଖୁ ବାବା ବୋଲି ମଧ ଡାକୁଥିଲେ। ହମିଦା ବାବୁ ବେଗମ, ତାଙ୍କ ବୁଢ଼ିମା, ସାବତ ମାଆ ସାଲିମା ବେଗମ ଓ ହାରେମର ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ମଧ ସଲିମଙ୍କୁ ଅତିରିକ୍ତ ଭଲ ପାଉଥିଲେ। ତାଙ୍କ ମା, ଅମ୍ବରର ରାଜକନ୍ୟା, ମାରୟନା-ଜାମାନୀ ସଲିମଙ୍କ ଶାସନର ୧୮ ବର୍ଷ ପରେ ମରିଗଲେ। ସେ ଫତେପୁର ସିକ୍ରିରେ ଆଖପାଖରେ ଥାଇଁ ମଧ ତାଙ୍କ ଶେଷକୃତ୍ୟକୁ ଆଗ୍ରା ଯାଇପାରି ନଥିଲେ।

ଚାରିବର୍ଷ ବୟସ ବେଳେ ସଲିମ ସହ ତାଙ୍କର ସାନ ଦୁଇ ଭାଇଙ୍କୁ ନେଇ ଏକ ବିରାଟ ଭୋଜିର ଆୟୋଜନ ହୋଇଥିଲା। ସେହି ସମୟରେ ଅବୁଲ ଫଜଲ

ଗୋଟେ କବିତା ଲେଖିଥିଲେ। ସଲିମଙ୍କର ପ୍ରଥମ ବିଦ୍ୟାଗୁରୁ ସଲିମଙ୍କୁ କାନ୍ଧରେ ବସାଇ ମୁସଲିମ ନୀତି ଅନୁସାରେ ଭଗବାନଙ୍କ ନାଁର ପ୍ରଥମ ଅକ୍ଷର ତାଙ୍କ କାନରେ କୁହାଉଥିଲେ, ସେତିକିବେଳେ ମଣିମୁକ୍ତା ବର୍ଷା ଭଳି ବଣ୍ଟା ଯାଉଥିଲା।

୭ ବର୍ଷ ବୟସରେ ତାଙ୍କୁ ମେଓ୍ୱାର କ୍ୟାମ୍ପର କିଛି ଦାୟିତ୍ୱ ଦିଆଯାଇଥିଲା। ୧୦,୦୦୦ ସୈନିକଙ୍କର ସେ ଥିଲେ ମାଷ୍ଟର। ଶାସନ ଦାୟିତ୍ୱ ରଖିବା ପାଇଁ ନ୍ୟାୟ ଓ ଉତ୍ସବ ସମ୍ଭାଳିବାକୁ ତାଙ୍କୁ ନିଯୁକ୍ତି ଦିଆଗଲା। ତାଙ୍କର ପରିଚାଳକ ଥିଲେ ଅବଦୁଲ ରହିମ ଓ ଖାନ୍-ଇ-ଖାନାଦି। ସଲିମ ଏହାକୁ ସୁଚାରୁ ରୂପେ ପାଳନ କରିଥିଲେ।

ଆକବର ପିଲାମାନଙ୍କୁ ବହୁତ ଭଲ ପାଉଥିଲେ ହେଁ ତାଙ୍କୁ ଶାସନ କଳ ଭିତରେ ପୁରାଇବା ପାଇଁ ଇଚ୍ଛା କଲା ବେଳେ ଅନେକ ଅପ୍ରୀତିକର ସଂପର୍କ ମଧ ଗଢ଼ି ଉଠିଥିଲା। କୁହାଯାଏ ସଲିମ ଓ ଆକବରଙ୍କ ସଂପର୍କ ତିକ୍ତ ହୋଇଥିଲା ସଲିମଙ୍କର ଅନାରକଲି ସହ ପ୍ରେମ ସଂପର୍କ ପାଇଁ। ଅନାରକଲି ଆକବରଙ୍କ ରକ୍ଷିତା ଥିଲେ। ଆକବର ସଲିମଙ୍କ ଉପରେ ରାଗି ଅନାରକଲିଙ୍କୁ ଇଟାର ଘରେ ବନ୍ଦ କରିଦେଇଥିଲେ।

ଆଉ ଏକ ଘଟଣା ନେଇ ସଲିମଙ୍କ ଉପରେ ଆକବରଙ୍କ ରାଗ ହେଲା। ଏ ହେଲା ନୁରଜାହାନଙ୍କ (ମିଥୁନିଶା) ସହ ତାଙ୍କର ପ୍ରେମ ସଂପର୍କ। ଏହାର ସତ୍ୟତାର କୌଣସି ପ୍ରମାଣ ନାହିଁ।

ଜମାନା ବେଗ, ଜାହାଙ୍ଗୀରଙ୍କର ଜଣେ ବିଶ୍ୱସ୍ତ ଅନୁଚର। ୧୫୦୦ ସୈନ୍ୟଙ୍କର କମାଣ୍ଡର ଭାବରେ ତାଙ୍କୁ ନିଯୁକ୍ତି ଦେଇ ମହମତ ଖାନ ନାମରେ ତାଙ୍କୁ ଭୂଷିତ କରାଗଲା। ସାରା ସାମ୍ରାଜ୍ୟରେ ସୈନ୍ୟବାହିନୀର କର୍ତ୍ତୃତ୍ୱ ତାଙ୍କ ଉପରେ ନ୍ୟସ୍ତ ଓ ତାଙ୍କୁ ବୀରସିଂହ ବୁନ୍ଦେଲା ପଦବୀ ପ୍ରଦାନ ହେଲା। ତାଙ୍କର ଏ ପ୍ରକାର ପଦୋନ୍ନତି ପଛରେ ଜାହାଙ୍ଗୀରଙ୍କର ଏକ କୁସଂସ୍କାର, ଉଦ୍ଧତ ନିହିତ ଉଦ୍ଦେଶ୍ୟ ଥିଲା – ଅବଦୁଲ ଫଜେଲଙ୍କୁ ହତ୍ୟା କରିବା।

ନିଜକୁ ଜଣେ ନ୍ୟାୟବନ୍ତ ଶାସକ ବୋଲି ଅଭିହିତ କରିବାର ପ୍ରବଳ ଆଗ୍ରହ ଥିଲା। ଆଗ୍ରାର ଯୁଦ୍ଧକ୍ଷେତ୍ର ପାଖରୁ ଯମୁନା କୂଳ ପର୍ଯ୍ୟନ୍ତ ଗୋଟାଏ ପଥରଖୁମ୍ବ

ଦେହରେ ସୁନାର ଚେନରେ ୬୦ଟି ଘଣ୍ଟି ବନ୍ଧା ହେଲା। କେହି ପ୍ରଜା ଯଦି ଅଫିସରମାନଙ୍କ କବଳରୁ ନ୍ୟାୟ ପାଇବାରୁ ବଂଚିତ ହେଉଥିଲେ ସେମାନେ ଏ ସବୁ ଘଣ୍ଟି ବଜାଇଲେ ସମ୍ରାଟ ଏହାକୁ ଅଭିଯୋଗ ବୋଲି ଜାଣିପାରୁଥିଲେ। ବାରଟି ଅଧ୍ୟାଦେଶ(ଅର୍ଡ଼ିନାନ୍ସ) ଜାରି କଲେ ଜାହାଙ୍ଗୀର। କ୍ଷମତା ନ ଥାଇ କେହି ଟିକସ୍ ଆଦାୟ କରିପାରିବେ ନାହିଁ। ସଡ଼କ ସୁରକ୍ଷା, ଜମି ଉପରେ ଅଧିକାର, ଚାଷୀଙ୍କର ଅଧିକାର, କୌଣସି, ସୈନ୍ୟ ଜନିତ କ୍ଷୟକ୍ଷତି, ମଣିଷ ଶରୀରକୁ ବିକୃତ କରିବାର ପ୍ରବୃତ୍ତି ବିଡ଼ି ସିଗାରେଟ୍ ଟାଣିବା, ମଦ ବିକ୍ରିରେ ଆଇନ ଅମାନ୍ୟ ଇତ୍ୟାଦି ଅଧ୍ୟାଦେଶ ମାନ ଜାରି କରିଥିଲେ। ଏହା ବି ସତ ଯେ ଯେଉଁ ଆଦେଶ ସବୁ ଜାରି କରିଥିଲେ ସେ ସବୁ ଦେଶର ମଙ୍ଗଳ ପାଇଁ କରିଥିଲେ। କିନ୍ତୁ ଏହା ସବୁ କାର୍ଯ୍ୟକାରୀ କରିବା ପାଇଁ ଉପଯୁକ୍ତ ଶାସନକଳ ମଧ୍ୟ ମହଜୁଦ ନ ଥିଲା। ଜାହାଙ୍ଗୀରଙ୍କ ରାଜ୍ୟଶାସନ ଆକବରଙ୍କ ପରବର୍ତ୍ତୀ ରାଜ୍ୟ ଶାସନର ନମୁନା ଥିଲା। ଧର୍ମ ସଂକ୍ରାନ୍ତୀୟ ମନୋବୃତ୍ତି ମଧ୍ୟ ଆକବରଙ୍କ ଭଳି ସହନୀୟ ଥିଲା। ସେ ରାଖିବନ୍ଧନ ଓ ବ୍ରାହ୍ମଣଙ୍କ ବ୍ରତୋପୟନକୁ ପୁନର୍ବାର ପ୍ରଚଳନ କରିଥିଲେ। ଗୋ ହତ୍ୟା ନିଷେଧ ରଖିଥିଲେ।

ମନ୍ଦିର ନଷ୍ଟ କରିବା ମଧ୍ୟ ନିୟମ ବିରୁଦ୍ଧ ଥିଲା। କିନ୍ତୁ ୧୬୨୦ରେ କାଙ୍ଗ୍ରାରେ ଏକ ମନ୍ଦିରର ଦ୍ୱାରପାଖ ମୂର୍ତ୍ତି ନଷ୍ଟ କରିଦିଆଗଲା। ଏ ଖବର ପାଇଁ ଜାହାଙ୍ଗୀର ସାଙ୍ଗେ ସାଙ୍ଗେ କାଜି ଓ ମୁସଲିମ ଧର୍ମ ଦିକ୍ଷୀତ ଲୋକଙ୍କୁ ନେଇ ସେ କାଙ୍ଗ୍ରା ଅଭିମୁଖେ ଯାତ୍ରା କଲେ। ପାହାଡ଼ ଚଢ଼ିଲେ। ପ୍ରାର୍ଥନା କଲେ। କୁତୁୱା ପଢ଼ାହେଲା। ଗୋ ବଧ ହେଲା। ସର୍ବୋପରି ସେଠାରେ ଏକ ମସଜିଦ ତୋଳାଇବା ପାଇଁ ଆଦେଶ ମଧ୍ୟ ଦେଲେ। ଆଜମୀର ପୁଷ୍କରଠାରେ ବରାହମୂର୍ତ୍ତି ବାହାର କରି ପୋଖରୀ ଭିତରକୁ ପକାଇବା, ଜୈନ ମନ୍ଦିର ନଷ୍ଟ କରିବା, ଜୈନ ମୂର୍ତ୍ତିକୁ ମସଜିଦ ପାହାଚ ଉପରେ ପକାଇ ତା' ଉପରେ ମୁସଲମାନମାନଙ୍କ ପାଦ ଦେଇ ଚଲାଇବା ପାଇଁ ଆଦେଶ ଦେବା ଏସବୁ ଜାହାଙ୍ଗୀରଙ୍କ ଅମଳର ବିଶେଷ ଘଟଣା। ଶିଖଗୁରୁ ଅର୍ଜୁନସିଂଙ୍କୁ ହତ୍ୟା କରିଥିଲେ ଯଦିଓ ଏ ହତ୍ୟା ଧର୍ମଜନିତ ନୁହେଁ। ଏଥିରେ ରାଜନୈତିକ କାରଣ ନିହିତ ଥିଲା। କାଶ୍ମୀରରେ ହିନ୍ଦୁମାନେ ମୁସଲମାନ ଧର୍ମଗ୍ରହଣ କରୁଥିଲେ। ପୂର୍ବରୁ ହିନ୍ଦୁ ମୁସଲିମ ଭିତରେ ବିବାହ କାର୍ଯ୍ୟ ମଧ୍ୟ ସମ୍ପନ୍ନ ହେଉଥିଲା। କିନ୍ତୁ ଏ ପ୍ରକାର ବିବାହ ଆଉ ହୋଇପାରିବ ନାହିଁ ବୋଲି ଆଦେଶ ଦେଲେ।

ସବୁ ଧର୍ମରେ ବିଶ୍ୱାସ ରଖୁଥିଲେ। ତାଙ୍କ ଦରବାରରେ ଜଣେ ବ୍ରିଟିଶ ଆମ୍ବାସଡ଼ର ଥିଲେ। ଫ୍ରାନ୍ସର ଜଣେ ଡାକ୍ତର ମଧ୍ୟ ଥିଲେ। ଜାହାଙ୍ଗୀର ତାଙ୍କୁ ନାସ୍ତିକ ବୋଲି ଘୋଷଣା କରି ତାଙ୍କ କବର ସ୍ଥାନରେ ପ୍ରାର୍ଥନା କରିବାକୁ ମନା କରିଦେଇଥିଲେ। ''ବିଶ୍ୱାସ'' ଆଉ ''ଯୁକ୍ତି''ର ସମାଧାନ ଖୋଜି ପାଇବି କି ନାହିଁ ଓ ଯୁକ୍ତି ବିଶ୍ୱାସକୁ ଟଳେଇ ଦେଇପାରିବ କି ନାହିଁ ଏ ପ୍ରଶ୍ନର ଉତ୍ତର ଜାହାଙ୍ଗୀର ଖୋଜି ପାଇ ପାରିଲେ ନାହିଁ। ସାଧାରଣ ଧାର୍ମିକ ବିଶ୍ୱାସକୁ ସେ ପସନ୍ଦ କରୁ ନଥିଲେ। କିନ୍ତୁ ସୁଫି ଧର୍ମରେ ତାଙ୍କର ଅଧିକ ଆଗ୍ରହ ଥିଲା। ସେ ବେଦାନ୍ତକୁ ସୁଫି ଧର୍ମର ବିଜ୍ଞାନ ବୋଲି ବିଶ୍ୱାସ କରୁଥିଲେ। ଧର୍ମ ମାର୍ଗରୁ ସେ ବିଶ୍ୱାସ ଖୋଜୁ ନଥିଲେ ବରଂ ଖୋଜୁଥିଲେ ଧର୍ମର ଗୂଢ଼ତତ୍ତ୍ୱ। ପିଇବାର ଆଗ୍ରହ ଥିଲା ପ୍ରବଳ।

ଜାହାଙ୍ଗୀରଙ୍କ ପିଲାଳିଆ ବୁଦ୍ଧି ତାଙ୍କ ଅନ୍ତର ଭିତରେ ଗଚ୍ଛିତ ଥିଲା। ଥରେ ଲାହୋର ସହର ଦେଇ ଯାଉଥିଲା ବେଳେ କେତେକ ପିଲାଙ୍କୁ ରାସ୍ତା କଡ଼ରେ ଖେଳୁଥିବାର ଦେଖିଲେ। ହାତୀ ଉପରୁ ଓହ୍ଲାଇ ସେମାନଙ୍କ ସହିତ ଧୂଳି ଉପରେ ବସି, ଫୁଲ, ମିଠା, ଲୁଗାପଟା ଓ ସୁନାରୁପାର ମୁଦ୍ରା ସେମାନଙ୍କ ଭିତରେ ବାଣ୍ଟିବାକୁ ଲାଗିଲେ। ଫେରିବା ବେଳକୁ କୋଳାକୋଳି ହେଲେ, ଆଖିରେ ଥିଲା ଲୁହ କହିଲେ, ତୁମମାନଙ୍କ ଭଳି ହୋଇଥିଲେ ମୁଁ ଖୁବ୍ ଖୁସିରେ ଥାନ୍ତି। ମତେ ବିବ୍ରତ-ଜଗତର କାର୍ଯ୍ୟବ୍ୟସ୍ତତାକୁ ନିରୀକ୍ଷଣ କରିବାକୁ ପଡ଼ୁ ନଥାନ୍ତା।

ଆକବର ଓ ଜାହାଙ୍ଗୀରଙ୍କ ଫଟୋଚିତ୍ରକୁ ଲକ୍ଷ୍ୟ କଲେ ଜଣାଯାଏ ଆକବରଙ୍କ ମୁହଁରେ ଦୃଷ୍ଟିର ପ୍ରତିଛବି। ଜଣେ ମଣିଷ ଭାବରେ ନିଜକୁ ପ୍ରମାଣ କରିବାର ତାକରାର ମନୋବୃତ୍ତି ଖେଳୁଥିଲା। କିନ୍ତୁ ଜାହାଙ୍ଗୀରଙ୍କ ପ୍ରତିଛବିରେ ସାରା ବିଶ୍ୱ ଦୃଶ୍ୟମାନ ହେଉଥିଲା। କାରଣ ଏ ମଣିଷଟି ତା' ନିଜର ମଣିଷପଣିଆ ଯୋଗୁଁ ସର୍ବସାଧାରଣଙ୍କ ଆଖିରେ ନାଚୁଥିଲା। ତାଙ୍କ ଦେହର ରଙ୍ଗ ଭାରତୀୟଙ୍କ ପରି। ମୋଗଲ ଜାତିର କୌଣସି ଚେହେରା ପରିଲକ୍ଷିତ ହେଉ ନ ଥିଲା। ଆକବରଙ୍କ ପରି ସେ ବାହାରେ ଏକ ଧନୀବ୍ୟକ୍ତି ପରି ବେଶଭୂଷା ହେଉଥିଲେ। ହୀରା, ନୀଳା, ମୋତି, ମାଣିକ ଖଚିତ ପୋଷାକ ପିନ୍ଧୁଥିଲେ। ଦରବାର ଯିବା ସମୟରେ ସେ ବର୍ଷସାରା ପ୍ରତ୍ୟେକ ଦିନ ଭିନ୍ନ ଭିନ୍ନ ପୋଷାକ ପରିଧାନ କରୁଥିଲେ। ପୋଷାକର ଡିଜାଇନ ମଧ୍ୟ ନିଜର। ଚେହେରାକୁ ସଜେଇବାରେ ତାଙ୍କର ଆନନ୍ଦ ଥିଲା। ଲୋକଙ୍କ ସହିତ ମିଳାମିଶା ଓ କଥାବାର୍ତ୍ତାରେ ମଧ୍ୟ ଅନେକ ଆନନ୍ଦ।

ଜାହାଙ୍ଗୀରଙ୍କ ପୌରୁଷର ଏହା ଥିଲା ଗୋଟିଏ ପଟର କାହାଣୀ। ବିଚାରଧାରାର ମଧ୍ୟ କିଛି ସ୍ଥାୟୀତ୍ୱ ନଥିଲା – କେତେବେଳେ କ୍ରୁର ତ ଆଉ କେତେବେଳେ ନମ୍ର। ଅତ୍ୟଧିକ ମଦ୍ୟପାନ ଓ ଅଫିମ ସେବନ ପାଇଁ ଏପରି ଅସ୍ୱାଭାବିକ ସ୍ୱଭାବ ହୋଇପାରିଥାଏ। ବିଷର୍ଣ୍ଣ ସ୍ୱଭାବ। ଅନେକ ସମୟରେ ବିଚାରଧାରା ଉଗ୍ର। ଥରେ ଗୋଟାଏ ଚାଇନା ଡିସ୍ ଭାଙ୍ଗିଗଲା। ତତ୍ତ୍ୱାବଧାନରେ ଥିବା ଅମୀରଙ୍କୁ ଅନେକ ମାଡ଼ ଦେଇ ଜେଲକୁ ପଠାଗଲା। ଭଲ ବେଳେ ଜେଲରୁ ମୁକୁଳାଇ ଟ୫୦୦୦(ଟଙ୍କା ଦେଇ ଚାଇନା ପଠାଇଦେଲେ। ଯଦିଓ ଭାଙ୍ଗି ଯାଇଥିବା ଡିସର ଦାମ ଥିଲା ଟ.୭୦(ମାତ୍ର)।

ତାଙ୍କ ଉତପ୍ତ ରକ୍ତ ପ୍ରବାହକୁ ଶାନ୍ତ କରିବା ପାଇଁ ଶିକାର ଗୋଟାଏ ମାଧ୍ୟମ ଥିଲା। ଶୀକାର ତାଙ୍କର ଜୀବନ। ଶିକାର ପାଇଁ ଏତେ ମମତା ଥିଲା ଯେ ଦୁର୍ବଳ ଶରୀର, ରୁଗ୍ଣ ସ୍ୱାସ୍ଥ୍ୟ ସତ୍ତ୍ୱେ ସେ ଶିକାରଠୁ ଅବ୍ୟାହତି ନେଇ ପାରୁ ନ ଥିଲେ। ଏପରିକି ମରିବାର କିଛିଦିନ ଆଗରୁ ସେ ବନ୍ଧୁକ ଚାଳନା ପାଇଁ ଯାଇଥିଲେ। ଦେହର ଅବସ୍ଥା କ୍ଷୀଣ ହେବାକୁ ଲାଗିଲା। ଏପରି ହେଲା ମଦ୍ୟପାନ ସମୟରେ ନିଜ କପ୍ ନିଜେ ହାତରେ ଧରି ରଖିପାରିଲେ ନାହିଁ। ଦେହ ପାଇଁ ଜଣେ ହକିମର ଶରଣ ନେଲେ। ହକିମ ଉପଦେଶ ଦେଲେ ଏପରି ଭାବରେ ଯଦି ସ୍ପିରିଟ ସେବନ କରିବେ ତା' ହେଲେ ଛ' ମାସ ପରେ କୌଣସି ଔଷଧ ମଧ୍ୟ କାମ୍ଟୁ କରିବ ନାହିଁ। 'ମୋ ଶରୀର ମୋର ପ୍ରିୟ' ହକିମଙ୍କର ଉପଦେଶ ମଧ୍ୟ ଗ୍ରହଣୀୟ। ଅତଏବ ମୁଁ ମୋର ନିଶାଦ୍ରବ୍ୟ କମାଇଦେଲି।

ଘୁସୁଲ ଖାନାରେ ସଂଧାରେ ମନ୍ତ୍ରୀମାନଙ୍କର ବୈଠକ ବସେ। ଜାହାଙ୍ଗୀର ବିଚରାଳୟରେ ଥାଇ ମଧ୍ୟ ମଦ୍ୟପାନ କରନ୍ତି। କରବାର କାମ ବାଧାପ୍ରାପ୍ତ ହୁଏ। କାରଣ ଜାହାଙ୍ଗୀର ମଦନିଶାରେ ଶୋଇ ପଡ଼ନ୍ତି ଆଉ ସଭାସଦ୍‌ମାନେ ଧୀରେ ଧୀରେ ବାହାରିଯାନ୍ତି। ୨ ଘଣ୍ଟା ପରେ ଖାଇବା ଆସେ ଜାହାଙ୍ଗୀରଙ୍କ ପାଇଁ। ଏତେ ଦୁର୍ବଳ ହୋଇଯାଇଥାନ୍ତି ଯେ ନିଜର ଏ ପ୍ରକାର ଚାଲିଚଳଣ ସତ୍ତ୍ୱେ, ବୈଠକ ଘରକୁ ମଦ ଯୋଗାଇ ଦେବାର ନିୟମ ନ ଥାଇ ମଧ୍ୟ ମଦ୍ୟପାନ କରୁଥିଲେ। ସାଧାରଣ ଲୋକ ମଦ୍ୟପାନ କରି ଘୁସୁଲୁ ଖାନା ଭିତରକୁ ପଶି ପାରୁ ନ ଥିଲେ। ଥରେ ଗୋଟିଏ ଭୋଜି ଭାତରେ ତାଙ୍କ ସେବାକାରୀ ମାନଙ୍କୁ ଖୋଲାଖୋଲି ଭାବରେ

ପିଇବାର ସୁଯୋଗ ଦେଇଥିଲେ। ଆକବରଙ୍କ ପରି ଜାହାଙ୍ଗୀର ମଧ୍ୟ ବହୁତ ଫଳ ପ୍ରିୟ ଥିଲେ। ବିଶେଷକରି ଆମ୍ବ। ସେଥିପାଇଁ ବଗିଚା ଉପରୁ କର ଉଠାଇ ଦେଇଥିଲେ। ଅନ୍ୟାନ୍ୟ ଅନେକ ଜିନିଷ ଜାଣିବାର ଆଗ୍ରହ ମଧ୍ୟ ଥିଲା – ଯଥା ଚିତ୍ରକଳା ଓ ପ୍ରାକୃତିକ ପରିବେଶ ଉପରେ ଜ୍ଞାନ ହାସଲ କରିବା ଇତ୍ୟାଦି। ପ୍ରାଣୀ ନିଦାନ ଉପରେ ତାଙ୍କର ଅନେକ ଦଖଲ। ସେ ବେଳର ସେ ଏକମାତ୍ର ସମ୍ରାଟ ଯାହାଙ୍କର ଏ ବିଷୟରେ ଗଭୀର ଜ୍ଞାନ ଥିଲା। ନିଜ ଲେଖାରେ ସେ ଏ ସବୁ ଲେଖିଯାଇଛନ୍ତି। ସାରସ ବଗ ଅଣ୍ଡାଦେବା, ଛୁଆ ବାହାର କରିବା ପଦ୍ଧତି। ସେମାନଙ୍କର ଯୌନ ପ୍ରକ୍ରିୟା ସବୁ ଉପରେ ତାଙ୍କ ଜ୍ଞାନ ଥିଲା। ଅନେକ ପରୀକ୍ଷା, ନିରୀକ୍ଷା କରି ସେ ପକ୍ଷୀ,ପଶୁ ଓ ସେମାନଙ୍କର ଜୀବନ ପ୍ରଣାଳୀ ସବୁ ଜାଣିବା ତାଙ୍କର ନିତିଦିନିଆ ଅଭ୍ୟାସ। ଥରେ କାଶ୍ମୀର ଯାଉଥିଲେ। ସେଠିକାର ହ୍ରଦରେ ଜଳର ପରିମାଣ ଅତି ଗଭୀର ବୋଲି କୁହାଯାଏ। ପ୍ରକୃତରେ ଜଳର ଗଭୀରତା ଜାଣିବା ପାଇଁ ସେ ଗୋଟେ ଲମ୍ବ ଦଉଡ଼ିର ଅଗରେ ଗୋଟେ ପଥର ବାନ୍ଧି ପାଣିରେ ବୁଡ଼ାଇଲା ପରେ ଜାଣିଲେ ଜଳ ଗଭୀରତା ମାତ୍ର ଦେଢ଼ ପୁରୁଷ। ପର୍ଶିଯାରେ ଗୋଟାଏ ଖଣିରୁ ଏକପ୍ରକାର ତୈଳପଦାର୍ଥ ବାହାରେ ଯେଉଁ ତରଳପଦାର୍ଥକୁ ଭଙ୍ଗା ହାଡ଼ ଗୋଡ଼ ଇତ୍ୟାଦି ଯୋଡ଼ି ହୋଇଯାଏ ଜାହାଙ୍ଗୀର ନିଜେ ପର୍ଶିଯା ଯାଇ ଏହାର ଅନୁସଂଧାନ କରିଥିଲେ। ପ୍ରାମଣିତ ହେଲା ତାହା ସତ ନୁହେଁ।

ଥରେ ଖବର ମିଳିଲା ସାଫ୍ରେନ ଖାଇଲେ ମୁହଁରେ ହସ ଦେଖାଦିଏ। ଅତ୍ୟଧିକ ଖାଇଲେ ସେ ଲୋକ ମରିଯାଏ। ଦିନେ ଜଣେ ଅପରାଧୀକୁ ୧/୨ କିଲୋ ସାଫ୍ରେନ ଖାଇବାକୁ ଦିଆଗଲା। କିନ୍ତୁ ତାଙ୍କ ମୁହଁରେ ହସ ନାହିଁ। ତହିଁପରଦିନ ଅଧିକ ପରିମାଣରେ ଦିଆଗଲା। କିନ୍ତୁ ତା' ମୁହଁରେ କୌଣସି ପରିବର୍ତ୍ତନ ନାହିଁ। ଜଣେ ଯୋଗୀଙ୍କର ଆଶ୍ଚର୍ଯ୍ୟଜନକ ଭାବରେ ସହ୍ୟ ଶକ୍ତି ଥିଲା। ଜାହାଙ୍ଗୀର ତାଙ୍କୁ ହାଣ୍ଡିଆ ପିଆଇଲେ। ଦିନେ ଦୁଇଦିନ ପିଆଇବା ପରେ ତାଙ୍କର ଚେତନାହୀନ ଶରୀର ବାହାରକୁ ଆସିଲା। କିନ୍ତୁ କୌଣସି ଆଶ୍ଚର୍ଯ୍ୟଜନକ ଘଟଣା ଦୃଶ୍ୟମାନ ହେଲା ନାହିଁ। ଜାହାଙ୍ଗୀର ଜଣେ କବି। ତାଙ୍କ ରଚନାର କିଛି ଅଂଶ ଏଠାରେ ଦିଆଗଲା।

ଜାହାଙ୍ଗୀରଙ୍କ ଦରବାରରେ ଅନେକ କବି ଥିଲେ। ତାଙ୍କ ପ୍ରଧାନ ସୁନାରୀ ମଧ୍ୟ ଜଣେ କବି। ତାଲବ ଅମଲି ମଧ୍ୟ ଜଣେ ବିଖ୍ୟାତ କବି। ସେ ଜାହାଙ୍ଗୀରଙ୍କୁ ସୁହାଇଲା ଭଳି ଏପରି କବିତା ଲେଖିଥିଲେ।

''ଓଠ ମୋ ଦୁଇଟି
ଗୋଟିଏ ମଦ୍ୟପାନ ପାଇଁ
ଆଉ ଆରଗୋଟିକ କ୍ଷମା ମାଗିବା ପାଇଁ।''

ତାଙ୍କର କବିତା ସାମୟିକ। କିନ୍ତୁ ଚିତ୍ରଶିଳ୍ପର ଜ୍ଞାନ ଅଦ୍ଭୂତ ଓ ଗଭୀର। ତାଙ୍କ ସମୟରେ ମୋଗଲସାମ୍ରାଜ୍ୟ ଚିତ୍ରକଳା ପାଇଁ ପ୍ରାଧାନ୍ୟ ଲାଭ କରିଥିଲା। ତାଙ୍କର ଜ୍ଞାନ ଏତେ ଗଭୀର ଯେ ଚିତ୍ର ଦେଖି ସେ ଜାଣିପାରୁଥିଲେ ଏହା ପୁରାତନ ବା ନୂତନ। ଜାଣିପାରୁଥିଲେ ଚିତ୍ରକରର ନାମ ଓ ସମୟ। ଅନେକ ଗୁଡ଼ିଏ ଚିତ୍ର ଏକାଠି ଦେଖି ମଧ କହି ଦେଇ ପାରୁଥିଲେ କି ଏହାର ଚିତ୍ରକାର କିଏ?

ସେ ଇଂରେଜ ଚିତ୍ରକଳାକୁ ବେଶି ପସନ୍ଦ କରୁଥିଲେ। ବିଭିନ୍ନ ଦେଶର ଚିତ୍ରପଟ ଆଣି ଦେବା ପାଇଁ ସେ ସବୁ ଦେଶର ବ୍ୟବସାୟୀମାନଙ୍କୁ ଅନୁରୋଧ କରୁଥିଲେ। ତାଙ୍କର କୌଣସି ଆଗ୍ରହ ନ ଥିଲା ସ୍ଥାପତ୍ୟ ବିଦ୍ୟାରେ। ବଡ଼ ବଡ଼ ଦୁର୍ଗ ନିର୍ମାଣ ବଡ଼ କୋଠା ନିର୍ମାଣରେ ତାଙ୍କର ଦୃଷ୍ଟି ନଥିଲା। ଚାହିଁଥିଲେ ନିଜ ପାଇଁ ଏକ ସୁନ୍ଦର ପ୍ରାସାଦ ତିଆରି କରିବେ ବୋଲି। ସିକନ୍ଦରାରେ ଆକବରଙ୍କ ଦ୍ୱାରା ନିର୍ମିତ ପ୍ରାସାଦର ମୂଳ ସ୍ଥାପତ୍ୟକୁ ରଖିବା ପାଇଁ ଇଚ୍ଛା କରିଥିଲେ। ସେହି ସମୟରେ ତାଙ୍କ ପୁଅ କୁସରଭ ବିଦ୍ରୋହ କଲେ। ବିଦ୍ରୋହ ଦମନ କରିବାକୁ ଯାଇ ସମାଧିପୀଠରେ ଗଠନଶୈଳୀ ଉପରେ ନଜର ଦେଇପାରିଲେ ନାହିଁ। ବିଦ୍ରୋହ ଦମନରୁ ଫେରିବାପରେ ଗଠନଶୈଳୀ ମନକୁ ନ ଆସିବାରୁ ସବୁକୁ ଭାଙ୍ଗିଦେଲେ।

ପ୍ରକୃତରେ ଜାହାଙ୍ଗୀର ହିଁ ରାଜଭୋଗ କରିପାରିଥିଲେ। ସାମ୍ରାଜ୍ୟ, ଧନ, ସଂପତ୍ତି ସବୁ କିଛି ହାତମୁଠାରେ ଥିଲା। ତାଙ୍କ ରାଜ୍ୟ ଶାସନ ସୁରକ୍ଷାରେ ଚାଲିଥିଲା। ଆକବରଙ୍କଠୁ ଜାହାଙ୍ଗୀର ପର୍ଯ୍ୟନ୍ତ ଇତିହାସ ମୋଡ଼ ଅତିଗତିଶୀଳରୁ ନିସ୍ତେଜତା ଭିତରକୁ ଚାଲି ଆସିଥିଲା। ତାଙ୍କର ରାଜ୍ୟଜୟର ନିଶା ନ ଥିଲା। କେବଳ ରାଜପୁତଙ୍କର ବିରୋଧକୁ ଦମନ କରିବା ଛଡ଼ା। ବିଦ୍ରୋହର ତିବ୍ରତା ମଧ ନଥିଲା। ଅନ୍ୟ ପକ୍ଷରେ ସେ କାନ୍ଦାହାରକୁ ପର୍ଶିୟାନଙ୍କ ହାତରେ ସମର୍ପି ହେଇଥିଲେ। ଖୁସରଭ ତାଙ୍କର ବଡ଼ ପୁଅ। ଜନସାଧାରଣ ତାଙ୍କୁ ବହୁତ ଭଲ ପାଉଥିଲେ। ମା' ଥିଲେ ରାଜପୁତ। ମା'ଙ୍କ ପ୍ରଭାବ ଅଧିକ ଥିବାରୁ ମଝିରେ ମଝିରେ ସେ ପାଗଳ ପ୍ରାୟ

ହୋଇଯାଉଥିଲେ । ବାପାଙ୍କ ପରେ ରାଜଗାଦି ଆରୋହଣ କରିବାର ପ୍ରତୀକ୍ଷା ତାଙ୍କ ପାଖରେ ନ ଥିଲା । କିନ୍ତୁ ତା ପୂର୍ବରୁ ରାଜଗାଦିରେ ବସିବାର ଆଗ୍ରହ ଥିଲା ପ୍ରବଳ ।

୧୬୦୬ରେ ଜାହାଙ୍ଗୀର ରାଜଗାଦିରେ ବସିଲେ । ୫ ମାସ ପରେ ଖୁସରୋଭ ବିଦ୍ରୋହ ଆରମ୍ଭ କଲେ । ଆକବରଙ୍କ ସମାଧିପୀଠ ଦର୍ଶନ କରିବା ବାହାନାରେ ସେ ଅଳ୍ପ ଘୋଡ଼ାସବାରଙ୍କୁ ନେଇ ଖୁସରୋଭ ଆଗ୍ରା ଅଭିମୁଖେ ଯାତ୍ରା କଲେ । ଜଣେ ଲାଇଟ ଜଳାଇବା ଲୋକ ଖୁସରୋଭଙ୍କ ଶୂନ୍ୟ ବଖରା ଦେଖି ଖବର ଦେଲା । ଏ ଖବର ଜାହାଙ୍ଗର ପାଇ ଯେଉଁ ସୈନ୍ୟଦଳ ମେଓ୍ୱାର ଯାଉଥିଲେ ସେହି ଦଳକୁ ଆଗ୍ରା ରକ୍ଷା କରିବା ଉଦ୍ଦେଶ୍ୟରେ ଯିବା ପାଇଁ ଆଦେଶ ଦେଲେ । ତହିଁ ପରଦିନ ସକାଳୁ ନିଜେ ଜାହାଙ୍ଗୀର ଖୁସରୋଭଙ୍କୁ ଖୋଜିବା ପାଇଁ ବାହାରିଲେ । ଭୟ ଥିଲା ସେ କାଳେ ଉଜବେଗିସ୍ଥାନ ବା ପର୍ଶିୟା ପଳାଇଯାଇଥିବେ ଓ ସେ ପଟରୁ ବିଦ୍ରୋହ ମାଡ଼ି ଆସିବ । ନ ହେଲେ ବଙ୍ଗଳା ଆଡ଼କୁ ଯାଇଁ ସେଠାରେ ମଧ ବିଦ୍ରୋହ ଆରମ୍ଭ କରିଦେବେ । କାରଣ ବଙ୍ଗଳାରେ ମାମୁଁ ମାନସିଂହ ଗଭର୍ଣ୍ଣର ଥିଲେ । ରାସ୍ତାରେ ଅନେକ ଲୋକ ଖୁସରୋଭଙ୍କ ସହିତ ମିଶିଲେ । ଲୁଟଡରାଜ କରି ଘୋଡ଼ା, ସଂପରି ବ୍ୟାଜାପ୍ତ କଲେ । ପଞ୍ଜାବ ଯିବା ରାସ୍ତାରେ ଗୁରୁ ଅର୍ଜୁନ ସିଂ ସିହତ ଦେଖାକରେ । ସାହାଯ୍ୟ ମାଗିଲେ । ପ୍ରଥମେ ଗୁରୁ କହିଲେ; ଯାହା ଟଙ୍କା ମୋ' ପାଖରେ ଅଛି ସେ ସବୁ ଦରିଦ୍ର ମାନଙ୍କ ପାଇଁ, ରାଜପୁତ୍ରଙ୍କ ପାଇଁ ନୁହେଁ । କିନ୍ତୁ ଖୁସରୋଭ ନିଜକୁ ଅନାଥ ବୋଲି କହିଲେ, ଗୁରୁ ତାଙ୍କୁ ଟ୫୦୦ଟଙ୍କା ଦେଲେ ଯଦିଓ ବିଦ୍ରୋହକୁ ସମର୍ଥନ କରୁନଥିଲେ ।

ଲାହୋରଠାରେ ଏହି ବିଦ୍ରୋହୀମାନେ ଧରାହେଲେ । ହାତପାଦରେ ଜଂଜିର ଲଗାହୋଇ ସେମାନଙ୍କୁ ଜାହାଗୀରଙ୍କ ପାଖରେ ହାଜିର କରାଗଲା ।

ଖୁସରୋଭ ଜାହାଙ୍ଗୀରଙ୍କୁ ଭୂମିଷ୍ଟ ପ୍ରମାଣ କରିବା ପାଇଁ ଆଗେଇଲେ । କିନ୍ତୁ ଛିଡ଼ା ହୋଇ ରହିବା ପାଇଁ ଆଦେଶ ହେଲା – ହାତ ପାଦରେ ବେଢ଼ି ସହ । ଦୁଇଜଣ ବିଦ୍ରୋହୀ ଅମିରଙ୍କୁ ଲଙ୍ଗଳାକରି ଗଧ ଉପରେ ବସାଇ ସଦ୍ୟମୃତ ଗଧ ଚମଡ଼ା ଦେହରେ ଗୁଡ଼ାଇ ଲାହୋର ରାସ୍ତାରେ ବୁଲେଇବା ପାଇଁ ଆଦେଶ ଦେଲେ ।

ଖୁସରୋଭ ଜେଲ ଗଲେ । ଖୁସରୋଭ ଜେଲରୁ ଖସି କାବୁଲ ପାଇଁ ଆନ୍ଦୋଳନ ଜାରି ରଖିଲେ । ତାକୁ ମଧ ଜାହାଙ୍ଗୀର ଜବାବ ଦେଲେ । ଏପରିକି ଖୁସରୋଭଙ୍କୁ

ହତ୍ୟା କରିବା ଅଭିପ୍ରାୟରେ ଥିଲେ। ଯଦିଓ ପିତାର ମମତା ପାଇଁ ସେ କାମ କରିପାରିଲେ ନାହିଁ। ୧୪ ବର୍ଷ ଧରି ଖୁସରୋଭ କାରାବରଣ କଲେ। ତାଙ୍କୁ ବାଟକୁ ଆଣିବା ପାଇଁ ଚେଷ୍ଟାରେ ଲାଡ଼ଲି ବେଗମଙ୍କ ସହିତ ବିବାହ କରାଇଦେଲେ। ଲାଡ଼ଲି ନୁରଜାହାନଙ୍କ ପୂର୍ବ ସ୍ୱାମୀଙ୍କ ଔରସରୁ ଜନ୍ମିତ କନ୍ୟା। କିନ୍ତୁ ଖୁସରୋଭ ବିଦ୍ରୋହରୁ କ୍ଷାନ୍ତ ହେଲେନାହିଁ।

ଅବଶେଷରେ ତାଙ୍କର ମୃତ୍ୟୁ ହେଲା ୧୬୨୨ରେ। ଗୁଜବ ଶୁଣାଯାଏ କି ଖୁରାମ ତାଙ୍କୁ ହତ୍ୟା କରିଛନ୍ତି। ଗୁରୁ ଅର୍ଜ୍ଜୁନସିଂଙ୍କୁ ବିଦ୍ରୋହରେ ଲିପ୍ତ ଥିବା ଅଭିଯୋଗରେ ହତ୍ୟା କରାଗଲା। ମୋଗଲ ସାମ୍ରାଜ୍ୟ ସୁରକ୍ଷିତ ଓ ଶକ୍ତ ଥିଲା। ସେଥିପାଇଁ ଜାହାଙ୍ଗୀର ଆଉ ଅଧିକ ରାଜ୍ୟ ଅଧିକାର କରିବା ପାଇଁ ଆଶା କରି ନ ଥିଲେ। ଏଣେ ଖୁସରୋଭଙ୍କ ବିଦ୍ରୋହ ଫଳରେ ଜୟ କରିବାର ଆଶା ମଧ୍ୟ ସୁଦୂର ପରାହତ ଥିଲା। କେବଳ କୁଚ, କାମରୂପ ଜୟ କରିଥିଲେ। ଆସାମ ମଧ୍ୟ ଯାଇଥିଲେ। ପଞ୍ଜାବରେ ରାଜୁତି କଲେ। ଓଡ଼ିଶାକୁ ମଧ୍ୟ ଆସିପାରିଥିଲେ। ମେୱାରର ରାଣାଙ୍କୁ ଅଧିକାର କରିବା ତାଙ୍କ ପାଇଁ ଏକ ଗର୍ବର ବିଜୟ ଥିଲା। କାରଣ ଆକବର ଥିବା ସମୟରେ ଜାହାଙ୍ଗୀରଙ୍କୁ ଦୁଇ ଦୁଇ ଥର ମେୱାର ଜୟ କରିବା ପାଇଁ ପଠାଯାଇଥିଲା। କିନ୍ତୁ ସେ ସମୟରେ ସେ ଦାୟିତ୍ୱ ନେଇ ନ ଥିଲେ। ରାଣା ଓ ସମ୍ରାଟଙ୍କର ବୁଝାମଣା ଦୃଷ୍ଟିରୁ ଏହା ହୋଇଥିଲା। କ୍ଷମତା ପ୍ରୟୋଗ ପାଇଁ ନୁହେଁ ବା ରାଜ୍ୟ ଜୟ ପାଇଁ ନୁହେଁ । ମେୱାର ଜୟକରି ରାଣାଙ୍କୁ ପାର୍ବତ୍ୟ ଅଂଚଳକୁ ପଠାଇ ଦିଆଯାଇଥିଲା। ରାଣାଙ୍କର ସମ୍ମାନ ବ୍ୟତୀତ ଆଉ କିଛି ହରାଇବାର ନ ଥିଲା। ନାନାଦି କଷ୍ଟ ଅସୁବିଧା ଓ ନିର୍ଜନତାକୁ କୋଳେଇ ନେଇ ନିଜର ସମ୍ମାନ ବଳିଦାନ ଦେଇ ନ ଥିଲେ। କିନ୍ତୁ ୧୬୧୫ରେ ରାଣା ଆତ୍ମସମର୍ପଣ କରିବାକୁ ଆଗେଇ ଆସିଲେ। ଜାହାଙ୍ଗୀର ଖୁରାମଙ୍କୁ ରାଣା ଅମର ସିଂଙ୍କୁ ବଂଧୁ ଭାବରେ ସ୍ୱାଗତ କରିବାକୁ କହିଲେ। ମୋଗଲ ସମ୍ରାଟଙ୍କ ପାଦତଳେ ମଥାନତ କଲେ ରାଣା। ପୁରୁଣା ସଂପର୍କ ନ ଭାଙ୍ଗିବା ପାଇଁ ଇଚ୍ଛା କରୁଥିବା ଖୁରାମ ତାଙ୍କୁ କୋଳେଇ ନେଲେ। ତା' ପରେ ରାଜପୁତ୍ର କରନସିଂଙ୍କୁ ୫୦୦୦ ସୈନ୍ୟଙ୍କର କମାଣ୍ଡର ଭାବରେ ନିଯୁକ୍ତି କଲେ। ଆଗ୍ରା ଫେରିବା ପରେ କାହାଙ୍ଗୀରଙ୍କ ମେୱାର ଅଧିକାର ପାଇଁ ଖୁସି ମନାଇଲେ। ସେଇ ଖୁସିରେ ତାଙ୍କ ଦୁର୍ଗର ଝରକା ତଳେ କରଣ ସିଂ ଓ ଅମିର ସିଂହଙ୍କ ବଡ଼ ବଡ଼ ପ୍ରତିମୂର୍ତ୍ତି ରଖିଲେ।

ଆକବରଙ୍କ ଦାକ୍ଷିଣାତ୍ୟ ଅଭିମୁଖେ ଯାତ୍ରା ବାଧା ପାଇଥିଲା । ସେଥିପାଇଁ ଜାହାଙ୍ଗୀର ଦାକ୍ଷିଣାତ୍ୟ ଉଦ୍ଦେଶ୍ୟରେ ଯାତ୍ରା କଲେ । ମଲ୍ଲିକ ଅମ୍ବର ଜଣେ ଆରବିସିନିୟାନ ଦାସ । ସେ ଥିଲେ ତାଙ୍କର ପ୍ରଧାନ ଉପଦେଶଦାତା । ଅମଦାନଗରର ସୁଲତାନ ରୂପେ ଜାହାଙ୍ଗୀର ତାଙ୍କୁ ବସାଇଲେ । କିନ୍ତୁ ଆକବରଙ୍କ ଅହମଦାନଗର ଅଧିକାର କଲାବେଳେ ସେ ଖିରକି ପଳାଇଯାଇ ସେଠରେ ମରହଟ୍ଟା ଗରିଲାଙ୍କୁ ଧରି ନିଜର ହୃତ ରାଜଧାନୀ ଫେରିପାଇବାକୁ ଚେଷ୍ଟା କରେ । ସେ ନିଜ ସୈନ୍ୟବଳର ସୁରକ୍ଷା ପାଇଁ ରାଜ୍ୟର ରାଜସ୍ୱ ଆଦାୟକରି ଅର୍ଥନୈତିକ ବଳ ମଧ୍ୟ ସୁଦୃଢ଼ କରିସାରିଥିଲେ । ଏ ସବୁ ସତ୍ତ୍ୱେ ଖୁରାମ ଦାକ୍ଷିଣାତ୍ୟ ଜୟ କଲେ । ଖୁରାମ ଜାହାଙ୍ଗୀରଙ୍କୁ ଅଭିବାଦନ ଜଣାଇବାପାଇଁ ହାଜିର ହେଲେ । ଖୁସି ହେଲେ ଜାହାଙ୍ଗୀର । ସିଂହାସନରୁ ଉଠି ତାଙ୍କୁ କୋଳେଇନେଲେ । ଅଭିବାଦନ ଜଣାଇଲେ । ପାଖରେ ବସାଇ ଥାଳି ଭରି ସୁନା ଓ ଦାମିକା ପଥର ତାଙ୍କ ମୁଣ୍ଡ ଉପରେ ଅଜାଡ଼ି ଦେଲେ । ତାଙ୍କୁ ଶାହାଜାଁ ଉପାଧିରେ (ବିଶ୍ୱର ରାଜା) ଭୂଷିତ କଲେ । ଦେଓ୍ୱାନି ଆମରେ ସମ୍ରାଟଙ୍କ ପାଖ ଚଉକିରେ ବସିବାର ସୁଯୋଗ ନେଲେ । ୩୦,୦୦୦ ହଜାର ସୈନ୍ୟଙ୍କର କମାଣ୍ଡର କରିଦେଲେ । ଗଭର୍ଣ୍ଣର କରିଦେଲେ ଗୁଜରାଟର ।

୧୬୨୦ ବେଳକୁ ଜାହାଙ୍ଗୀରଙ୍କ ସାମ୍ରାଜ୍ୟରେ ପୁଣି ବିଦ୍ରୋହ ଆରମ୍ଭ ହେଲା । ଏଥର ମଲିକ ଅମ୍ବର ଦାକ୍ଷିଣାତ୍ୟରେ ଅଘଟଣ ସୃଷ୍ଟି କରି ଅହମଦାନଗର, ମାଣ୍ଡୁ ଅଧିକାର କରିବା ଚେଷ୍ଟାରେ ରହିଲେ ।

ଶାହାଜାହାଁଙ୍କୁ ଜାହାଙ୍ଗୀର ପୁଣି ଦାକ୍ଷିଣାତ୍ୟ ପଠାଇବାକୁ ଚାହିଁଲେ । ଶାହାଜାହାଁ ଦାକ୍ଷିଣାତ୍ୟ ଯାଇ ମଲ୍ଲିକ ଅମ୍ବରଙ୍କଠାରୁ ମାଣ୍ଡୁ, ବରହାନପୁର, ଅମଦାନଗର ଛଡ଼ାଇ ନେଲେ । ତାଙ୍କ ସଂଗରେ ସର୍ତ୍ତ କଲେ କି ଅହମଦାନଗର ବଦଳରେ ସେ ମୋଗଲ ସାମ୍ରାଜ୍ୟର ଆଖପାଖ ଅଂଚଳରେ ପ୍ରବେଶ କରିବେ ନାହିଁ । ଆହୁରି ମଧ୍ୟ ସର୍ତ୍ତ କଲେ କି ବିଜାପୁର ଗୋଲକୋଣ୍ଡା ବଦଳରେ ସେ ମୋଗଲଙ୍କୁ ୫ ମିଲିଅନ ଟଙ୍କା ଦେବେ । ଜାହାଙ୍ଗୀରଙ୍କ ଅମଳରେ ଏକ ଅଭୂତପୂର୍ବ ଘଟଣା । ୧୬୨୧ରୁ ୧୬୨୪ ପର୍ଯ୍ୟନ୍ତ ଦିଲ୍ଲୀ ସହରରେ ପ୍ଲେଗ୍ ରୋଗର ଆକ୍ରମଣରେ ଦିଲ୍ଲୀ ଛାରଖାର ହୋଇଗଲା । ସହର ପାଲଟିଲ ଶ୍ମଶାନ ।

ଆଉ ଗୋଟିଏ ପୁଅ – ଆଉ ଜଣେ ବିଦ୍ରୋହୀ : ୧୫୪୫ରେ ହୁମାୟୁନ ପ୍ରଥମେ ପର୍ଶିୟାନଙ୍କୁ କାନ୍ଦହାର ହସ୍ତାନ୍ତର କଲେ । ତା' ଘରଠାରୁ ମୋଗଲ

ଓ ସାହା ମଧ୍ୟରେ କୌଣସି ସଂପର୍କ ତୁଟି ଯାଇନଥିଲା। କାନ୍ଦାହାର ଯୁଦ୍ଧ ଯୋଗ୍ୟ ନୁହେଁ। କିନ୍ତୁ ଏହା ଭାରତ ଓ ମଧ୍ୟ ପୂର୍ବ ଦେଶ ମଝିରେ ସ୍ଥଳପଥରେ ବ୍ୟବସାୟର ଏକ କେନ୍ଦ୍ରସ୍ଥଳ। ଜଳପଥରେ ଯାତାୟତର ସୁଯୋଗ ହେଲା ପରେ ଏହାର ପ୍ରାଧାନ୍ୟ ମଧ୍ୟ କମିଯାଉଥିଲା। ଏପରିକି ତୀର୍ଥଯାତ୍ରା ମଧ୍ୟ ଜଳପଥରେ ହୋଇପାରିଥିଲା।

ଯେତେ ଛୋଟ ହେଲେ ବି କାନ୍ଧାହାର ମୋଗଲ ଓ ପର୍ଶିୟାନଙ୍କ ମଧ୍ୟରେ କଳହର କେନ୍ଦ୍ରସ୍ଥଳ ଥିଲା। ଖୁସରୋଭଙ୍କ କାନ୍ଧାହାର ଆନ୍ଦୋଳନ ପରେ ଜାହାଙ୍ଗୀରଙ୍କ ଆନ୍ଦୋଳନର ଭୟ ଥିଲା। ସେଥିପାଇଁ ତାଙ୍କ ଶାସନର ଶେଷ ଭାଗରେ ସେ କାନ୍ଧାହାର ଉପରେ ନଜର ଦେଲେ। ଜଣେ ଦକ୍ଷ ଜେନେରାଲଙ୍କୁ ସେଠାରେ ନିଯୁକ୍ତି ଦେଲେ। ତାଙ୍କୁ ଯଥେଷ୍ଟ ଅର୍ଥ ମଧ୍ୟ ଶାସନଭାର ସହିତ ଯୋଗାଇ ଦେଇଥିଲେ। ୧୬୨୦ ବେଳକୁ ଜଣେ ପର୍ଶିୟାନ ରାଷ୍ଟ୍ରଦୂତ (ନାମ ଜାମଦିର ବେଗ୍) ମୋଗଲ ଦରବାରରେ ପହଞ୍ଚି ସିଧାସଳଖ ଭାବରେ କାନ୍ଧାହର ଦାବି କଲେ। ଜାହାଙ୍ଗୀରଙ୍କ ଉତ୍ତରକୁ ଅପେକ୍ଷା ନକରି ସାହା ଯୁଦ୍ଧ କରି କାନ୍ଧାହାରକୁ ନିଜ କବଳରୁ ନେଇଗଲେ। ଜାହାଙ୍ଗୀରଙ୍କ ରାଗ ଥଣ୍ଡା କରିବାର ରାସ୍ତା ଭାବିଲେ। ତାଙ୍କ ଦରବାରକୁ ବଂଧୁତ୍ୱର ରାହା ଭାବି ଏକ ରାଷ୍ଟ୍ରଦୂତ ପଠାଇଲେ। ଚିଠି ଲେଖି। ଲେଖିଥିଲେ; ''ପ୍ରିୟ ଭାଇ – ମୋ ଜୀବନ'' ବୋଲି ସମ୍ବୋଧନ କରିଥିଲେ। କେଉଁ ଅବସ୍ଥାରେ ଓ କାହିଁକି ସେ କାନ୍ଧାହାର ଦଖଲ କରିବାକୁ ଆଗ୍ରହ ଦେଖାଇଲେ ତା'ର ଏକ ବିଶଦ୍ ବିବରଣୀ ମଧ୍ୟ ସେ ଚିଠିରେ ଲେଖିଲେ। ଜାହାଙ୍ଗୀର ''କ୍ଷମା ମାଗିବାର ସୁନ୍ଦର ଚିଠି'' ବୋଲି ଭାବିଲେ କିନ୍ତୁ ସାହାଙ୍କୁ ମିଛୁଆ, ଠକ ବୋଲି ମଧ୍ୟ କହିଲେ। ଆଉ ଲେଖିଲେ; ସେ ଛୋଟ ଗାଁ କାନ୍ଧାହାର କ'ଣ ଥିଲା କି ରାଷ୍ଟ୍ରଦୂତ ନ ଫେରିଲା ପୂର୍ବରୁ ଓ ତମ ହୃଦୟର ଭାଇଙ୍କ ପାଖରୁ କୌଣସି ଖବର ନ ପହଞ୍ଚିଲା ପୂର୍ବରୁ କାନ୍ଧାହାର ହାତକୁ ନେଇଗଲେ।

ଜାହାଙ୍ଗୀର ରାଗି ଗଲେ। କାନ୍ଧାହାର ଜୟ କରିବା ବଡ଼ କଥା ନ ଥିଲା। କିନ୍ତୁ ତାଙ୍କ ଆତ୍ମସମ୍ମାନରେ ବାଧା ଆସିଲା। ଆଉ ଭୟ ହେଲା; ପର୍ଶିୟା ସିନ୍ଧ ବାଟେ ଭାରତ ଆକ୍ରମଣ କରିପାରେ। ସେଥିପାଇଁ ସେ କାନ୍ଧାହାର, ଖୁରାସନ ଅଧିକାର କରିବା ଆଶାରେ ବାହାରିଗଲେ ସୈନ୍ୟ ସାମନ୍ତ ନେଇ। ଜାହାଙ୍ଗୀରଙ୍କ ଆଦେଶ ପାଇ ଶାହାଜାହାଁ ମଧ୍ୟ ବରହାମପୁରରୁ ବାହାରିଲେ। କିନ୍ତୁ ଚିନ୍ତାରେ ପଡ଼ିଲେ।

ମାଣ୍ଡୁରେ ପହଞ୍ଚି ଭାବିଲେ କି ବର୍ଷାଋତୁ ପରେ ହିଁ ସେ ଆଗକୁ ଯିବେ। ପୁଣି ଭାବିଲେ ଦୁର୍ବଳ ଶରୀର ପାଇଁ ଜାହାଙ୍ଗୀର ଯଦି ମୃତ୍ୟୁ ବରଣ କରନ୍ତି। ସେ ନିଜର ଦାବି ଉପସ୍ଥାପନ କଲେ। ୧. କାନ୍ଧାହାର ତାଙ୍କ ଅଧିନରେ ହେବ। ୨. ପଞ୍ଜାବର ଗଭର୍ଣ୍ଣର ପଦବୀ ତାଙ୍କୁ ମିଳିବ। ୩. ରଥୋମ୍ବର ଦୁର୍ଗ ନିଜ ଅଧିକାରକୁ ଆସିବ। ଏ ସର୍ତ୍ତ ସବୁ ଜାହାଙ୍ଗୀରଙ୍କୁ ଜଣାଇଦେଲେ।

ଆଶ୍ଚର୍ଯ୍ୟ ହେଲେ ଜାହାଙ୍ଗୀର। କାନ୍ଧାହାର ସମସ୍ୟାର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ଏ ପ୍ରକାର ସର୍ତ୍ତ ତାଙ୍କୁ ବିଶ୍ୱାସଘାତକତା ପରି ଲାଗିଲା। ଶାହାଜାହାଁଙ୍କ ପ୍ରତି ଆନ୍ତରିକ ଭଲପାଇବା ଘୃଣାରେ ପରିଣତ ହେଲା। ଅଗ୍ନି ଉତ୍ସବ ହେଲା ପରି ଲାଗିଲା। ତାଙ୍କ ରାଜ୍ୟର ଶାସନ ନିଜ ହାତମୁଠାରୁ ବାହାରିଗଲା। ଏଣେ ଦରବାରରେ ଖବର ପହଞ୍ଚିଲା; ଜାହାଙ୍ଗୀର ଦ୍ୱିତୀୟ ପୁତ୍ରର ଓ ନୁରଜାହାନଙ୍କ ଜାଗିର ଶାହାଜାହାଁ ନିଜ ହାତକୁ ନେଇଯାଇଛନ୍ତି। ତାଙ୍କର ପ୍ରିୟପୁତ୍ର ଶାହାଜାହାଁଙ୍କ ଉପରୁ ତାଙ୍କ ଆଶା ତୁଟିଗଲା। ସାଙ୍ଗେ ସାଙ୍ଗେ ନିର୍ଦ୍ଦେଶ ଦେଲେ କି ଶାହାଜାହାଁ ଯଦି କାନ୍ଧାହାର ଆକ୍ରମଣ ପାଇଁ ପ୍ରସ୍ତୁତ ନୁହନ୍ତି, ସେ ଲାହୋର ଫେରିଯାନ୍ତୁ। ସାହରାୟାରଙ୍କୁ କାନ୍ଧାହାର ଯିବାକୁ ଆଦେଶ ଦେଲେ। ଶାହାଜାହାଁଙ୍କ ସବୁ ଜାଗିର ସାହାରୟାରଙ୍କୁ ଦେଇଦେଲେ। ଆଉ ନିଜେ ୭୦ ବର୍ଷ ବୟସରେ କାନ୍ଧାହାର ଯିବା ପାଇଁ ପ୍ରସ୍ତୁତ ହେଲେ। ଶାହାଜାହାଁ ତାଙ୍କ ସାମାନ୍ୟତମ ବିଦ୍ରୋହର ଏ ରୂପ ନେବ ବୋଲି ଭାବି ନ ଥିଲେ। କ୍ଷମା ପ୍ରାର୍ଥନା କରି ସେ ଜାହାଙ୍ଗୀରଙ୍କ ଦରବାରକୁ ତାଙ୍କ ଦିୱାନଙ୍କୁ ପଠାଇଲେ। କିନ୍ତୁ ଜାହାଙ୍ଗୀର ତାଙ୍କୁ ନଜରକୁ ନେଲେ ନାହିଁ। ତାଙ୍କ ପ୍ରିୟ ପୁତ୍ର ପାଇଁ ତାଙ୍କର ହୃଦୟ ପଥର ହୋଇଯାଇଥିଲା।

ଜାହାଙ୍ଗୀର ଏପରି କଠୋର ହେବା ପଛରେ ନୁରଜାହାଁଙ୍କର ହାତ ଥିଲା। ସଂପୂର୍ଣ୍ଣଭାବେ ଜାହାଙ୍ଗୀର ନୁରଜାହାଁଙ୍କ କବଳରେ ଥିଲେ ଓ ତାଙ୍କ ସହିତ ବିନା ପରାମର୍ଶରେ କୌଣସି କାର୍ଯ୍ୟପନ୍ଥା ଗ୍ରହଣ କରୁ ନ ଥିଲେ। କିନ୍ତୁ ଏ ପ୍ରକାର କଠୋରତା ସେ ଯେ ପ୍ରକାରେ ମଧ୍ୟ ନେଇଥାନ୍ତେ। ଏଇଟା ତାଙ୍କର ସ୍ୱଭାବଗତ। ଖୁସରୋଭଙ୍କ ବିଦ୍ରୋହ ବେଳେ ମଧ୍ୟ ସେ ଏ ପ୍ରକାର ସିଦ୍ଧାନ୍ତ ନେଇଥିଲେ। ଏପରି ବିଦ୍ରୋହ ଶାହାଜାହାଁ କଲେ କାହିଁକି ? କୌଣସି ମୋଗଲ ରାଜପୁତ୍ର ତାଙ୍କ ପରି ସୁବିଧା ପାଇ ନ ଥିଲେ। ରାଜ୍ୟ, ସଂପତ୍ତି, ଗୌରବ, ସମ୍ମାନ ସବୁ ସେ

ପାଇସାରିଥିଲେ । ସର୍ବୋପରି ବିଶ୍ୱାସ ଓ ପରବର୍ତ୍ତୀ ସମ୍ରାଟ ପଦବୀର ଆଶା କି। ଶାହାଜାହାଁ ବୟସ ସେତେବେଳେ ୩୦ ବର୍ଷ । ଏଇ ବୟସରେ ଜାହାଙ୍ଗୀର ଆକବରଙ୍କ ବିରୁଦ୍ଧରେ ଲଢ଼ିଥିଲେ । କାରଣ ତାଙ୍କର ଉତ୍ତରାଧିକାରୀ ପଦବୀ ଏତେ ବିଶ୍ୱାସଯୋଗ୍ୟ ନ ଥିଲା । କିନ୍ତୁ ଶାହାଜାହାଁଙ୍କ ପାଇଁ ସାମ୍ରାଜ୍ୟ, ପରିବାର ତ ନିଶ୍ଚିତ ଥିଲା ? ତା' ହେଲେ ସେ ଏ ପ୍ରକାର ଆଚରଣ କାହିଁକି ଦେଖାଇଲେ ? ଜାହାଙ୍ଗୀର ପରି ନୁରଜାହାନ ମଧ ତାଙ୍କୁ ଅତି ଭଲ ପାଉଥିଲେ । ଶାହାଜାହାନଙ୍କ ସମ୍ରାଟ ହେବାର ପୂର୍ଣ୍ଣବିଶ୍ୱାସ ଥିଲେ ମଧ ସେ ନୁରଜାହାନଙ୍କ ଆଧିପତ୍ୟକୁ ସ୍ୱୀକାର କରି ପାରୁ ନ ଥିଲେ । ଭୟ ଥିଲା ଜାହାଙ୍ଗୀରଙ୍କ ପରେ ମଧ ସେଇ ଆଧିପତ୍ୟ ବଜାୟ ରଖିବେ । ଫଳରେ ସେ ଜଣେ ଦୁର୍ବଳ ଉତ୍ତରାଧିକାରୀଙ୍କୁ ବାଛିବେ । କ୍ଷମତା ଲୋଭ ପାଇଁ ଦୁହେଁ ଦୁହିଁଙ୍କର ଶତ୍ରୁ ଥିଲେ । ସତ କ'ଣ ଜଣା ନ ଥିଲା । ମୋର ଦରବାରହିଁ ଗୁଜବର ଘର । ସାନ ଘଟଣା ମଧ ବେଳେବେଳେ ବିରାଟ ରୂପ ନିଏ । ରାଜ ଜ୍ୟୋତିଷମାନଙ୍କର ସ୍ଥାନ ମଧ ବହୁତ ଉଚ୍ଚରେ । ଶାହାଜାହାଁଙ୍କ ବିଦ୍ରୋହ ପଛରେ କାହାର ପ୍ରାଧାନ୍ୟ ଥିଲ ଜାଣିବା ମୁଷ୍କିଲ । କିନ୍ତୁ ଜାହାଙ୍ଗୀରଙ୍କ ମତରେ ସୁନ୍ଦର ରାୟ ନାମରେ ଜଣେ ହିନ୍ଦୁ ଗୁଜୁରାଟର ଶାସକ ଥିଲେ । ରାଜା ବିକ୍ରମାଦିତ୍ୟ ନାମ ଧାରଣ କରିଥିଲେ । ଜାହାଙ୍ଗୀର ବିଶ୍ୱାସ କରିଥିଲେ କି ଏ ସବୁର ମୂଳ ଆଧାର ସେ ।

ହାରେମର ପ୍ରଭାବ ମଧ ବିଶେଷ ଥିଲା । ଜାହାଙ୍ଗୀର ନୁରଜାହାଁଙ୍କର ପ୍ରଭାବରେ ଥିଲେ । ଏଣେ ଶାହାଜାହାଁ ମଧ ତାଙ୍କ ସ୍ତ୍ରୀଙ୍କ ପ୍ରଭାବରେ ଥିଲେ । ସ୍ତ୍ରୀ ମମତାଜ ମହଲ ନୁରଜାହାନଙ୍କ ଝିଆରି । ସବୁ ଠିକ ଥିବା ସତ୍ତ୍ୱେ ନୁରଜାହାଁଙ୍କ ଆଗ ସ୍ୱାମୀର ଝିଅ ଲାଡଲି ବେଗମଙ୍କୁ ଜାହାଙ୍ଗୀରଙ୍କ ପୁତ୍ର ସାହରିୟାର ବିବାହ କରିବା ପରଠାରୁ ସବୁ ଘଟଣାର ପରିବର୍ତ୍ତନ ହେଲା । ନୁରଜାହାଁ ଓ ଶାହାଜାଁଙ୍କ ମଧରେ ଦୂରତ୍ୱ ସୃଷ୍ଟି ହେଲା । ଜାହାଙ୍ଗୀର ଆଉ ଶାହାଜାହାଁଙ୍କ ମତରେ ଗଣ୍ଡଗୋଳର ସୂତ୍ରପାତ ହେଲା ।

ପର୍ଶିୟାର ବିଦ୍ରୋହ ଦବାଇବା ପୂର୍ବରୁ ଶାହାଜାଁହାଙ୍କ ବିଦ୍ରୋହ ଦମନ କରିବା ଆବଶ୍ୟକ ହେଲା । କାରଣ ଶାହାଜାହାଁଙ୍କ ବିଦ୍ରୋହ ତାଙ୍କ ସିଂହାସନକୁ ଦୋହଲାଇବାର ଭୟ ଥିଲା । ସେଥିପାଇଁ ସେ ତାଙ୍କ ବିଶ୍ୱସ୍ତ ଜେନେରାଲ ମହବତ୍ ଖାଁଙ୍କୁ କାବୁଲ ବିଦ୍ରୋହ ଦବାଇବା ପାଇଁ ଆଦେଶ ଦେଲେ । ଏପରିକି ଶାହାଜାହାଁଙ୍କୁ ସାମ୍ରାଜ୍ୟରୁ ବାହାର କରି ହେଉ ବା ତାଙ୍କ ମୃତ ଶରୀର ଉପରେ ହେଉ । ତାଙ୍କ ଦ୍ୱିତୀୟ ପୁତ୍ର

ପରଭିଜଙ୍କୁ ସବୁ ଦାୟିତ୍ୱ ଦେଲେ। ସେ ଥିଲେ ଲାହୋରରେ। ସେ ଆଗ୍ରା ଆସି ବିପୁଳ ସୈନ୍ୟବଳ ଏକାଠି କରିବାକୁ ଲାଗିଲେ।

ଅପରପକ୍ଷରେ ଅବଦୁଲ୍ ରହିମଙ୍କ ପରାମର୍ଶରେ ଆଗ୍ରା ଭିତରକୁ ପଶିଲେ। ସହର ଲୁଣ୍ଠନ କଲେ କିନ୍ତୁ ଦୁର୍ଗ ଜୟ କରିପାରିଲେ ନାହିଁ। ଅଥବା ସଂପତ୍ତି ମଧ କବଜା କରି ପାରିଲେ ନାହିଁ। ପରେ ଉତ୍ତରଦିଗକୁ ଯାତ୍ରା ଆରମ୍ଭ କଲେ; ସମ୍ରାଟଙ୍କ ସେନାବାହିନୀର ମୁହଁମୁହିଁ ହେବେ ବୋଲି। ମଥୁରା ପାଖରେ ସେନାବାହିନୀକୁ ଭାଗ କରିଦେଲେ ଓ ମହବତ ଖାଁଙ୍କୁ ମୁକାବିଲା କରିବା ପାଇଁ ସୁନ୍ଦର ରାୟଙ୍କୁ ପଠାଇଲେ। ହୁଏତ ସବୁ ସହଜ ହୋଇପାରିଥାନ୍ତା। କିନ୍ତ ଅବଦୁଲା ଖାଁ ୧୦,୦୦୦ ସୈନ୍ୟ ନେଇ ବିଦ୍ରୋହୀମାନଙ୍କ ସହିତ ମେଳ ହେଲେ। ତେବେ ବି ମହବହତ୍ ଖାଁ ଜିତିଲେ। ଯୁଦ୍ଧରେ ସୁନ୍ଦର ରାୟ ନିହତ ହେଲେ। ଶାହାଜାହାଁ ମଣ୍ଡୁ ଫେରିଗଲେ। ସମ୍ରାଟଙ୍କ ସହ ତାଙ୍କ ସେନାବାହିନୀ ଆଜମୀର ପର୍ଯ୍ୟନ୍ତ ଗଲେ। ଶାହାଜାହାଁ ନର୍ମଦା ନଦୀ ପାର ହୋଇ ଦାକ୍ଷିଣାତ୍ୟ ପଳାଇଗଲେ। ଶାହାଜାହାଁଙ୍କ ଭାଗ୍ୟର ତେଜ କମି କମି ଯାଉଥିଲା। ଅବଦୁଲ ରହିମ ମଧ ସମ୍ରାଟଙ୍କ ବାହିନୀ ସହ ମିଶିଗଲେ। ଗୁଜରାଟ ମଧ ତାଙ୍କ ଅଧିନରୁ ଗଲା, ମଲିକ ଅମ୍ବର ସାହାଯ୍ୟ କରିବା ପାଇଁ ମନା କରିଦେଲେ। ଓଡ଼ିଶା ଦେଇ ପଳାୟନ ପାଇଁ ଗୋଲକୋଣ୍ଡା ତାଙ୍କୁ ସାହାଯ୍ୟ କଲା।

ଓଡ଼ିଶାରେ ଶାହାଜାହାଁଙ୍କ ପ୍ରଥମ ବିଜୟ ହେଲା। ବିନା ଯୁଦ୍ଧରେ ଓଡ଼ିଶାର ମୋଗଲ ଗଭର୍ଣ୍ଣର ତାଙ୍କୁ ରାଜ୍ୟ ଦେଇଦେଲେ। ପରେ ପରେ ସାହସ ପାଇଁ ବିହାର ଓ ବଙ୍ଗଳା ଜୟ କଲେ। ସେଠାରେ ସଂପତ୍ତି, ହାତୀ ଇତ୍ୟାଦି ହାସଲ କଲେ। ପରେ ରୋହଟାସ, ଜୁଅନଗର, ବନାରସ ଓ ଆଲ୍ଲାବାଦ ଜୟ କଲେ। ଶାହାଜାହାଁ ନିଜକୁ ବିଜୟୀ ବୋଲି ଗର୍ବ କଲେ। ମହବତ ଖାଁ ଖୋଜୁଥିଲେ ଶାହାଜାହାଁଙ୍କୁ। ସେଥିପାଇଁ ସେ ମୋଗଲ ଅଧିକୃତ ଅଂଚଳରୁ ବାହାରି ଯାଇ ବେରାରରେ ଆଶ୍ରୟ ନେଲେ। ପର୍ଶିୟା ସାହଙ୍କ ସାହାଯ୍ୟ ମଧ ମାଗିଲେ। ସାହା କିନ୍ତୁ ବାପାଙ୍କ କଥା ମାନିବାପାଇଁ ଉପଦେଶ ଦେଲେ। କିନ୍ତୁ ପରେ ପରେ ସାହା ବେମାର ପଡ଼ିଲେ ଓ ତାଙ୍କର ପ୍ରଧାନ ସେନାନାୟକ ଦୁଃଖରେ ଫକୀର ହୋଇଗଲେ। ତିନିବର୍ଷ କାଳ ବୁଲିବୁଲି ଶେଷରେ ଅନ୍ୟ କିଛି ଉପାୟ ନ ପାଇ ଆତ୍ମସମର୍ପଣ କଲେ। ଜାହାଙ୍ଗୀର-ନିଜ ସମ୍ରାଟ ପିତାଙ୍କୁ ଏକ ଚିଠି ଲେଖିଲେ ଚିଠିପଢ଼ି କୋମଳ ହୋଇ କ୍ଷମାଦେଲେ। ଶାହାଜାହାଁ ଅସିର ଗଡ଼ ଓ ରୋହଟାସ ମଧ ସମର୍ପଣ କରିଦେଲେ।

ଦ୍ୱିତୀୟ ଆଲୋକ : ୪୨ ବର୍ଷ ବୟସରେ ନୁରଜାହାଁ ୩୪ ବର୍ଷୀୟ ଜାହାଙ୍ଗୀରଙ୍କୁ ବିବାହ କଲେ। ପୂର୍ବରୁ ନାମ ଥିଲା ମିଥୁନିଶା। ତାଙ୍କ ଜେଜେବାପା ପର୍ଶିୟାର ଜଣେ ବଡ଼ ସେନାଧ୍ୟକ୍ଷ ଥିଲେ। ପ୍ରଥମେ ସଫାଭିଡିକ୍ସକୁ ବିବାହ କରିଥିଲେ। ପିତାଙ୍କ ମୃତ୍ୟୁପରେ ଗିୟାସ ବେଗ ପର୍ଶିୟାରେ ନିଜର କୌଣସି ଭବିଷ୍ୟତ ନ ଦେଖି ଭାରତ ପଳାଇ ଆସିଥିଲେ। ରାସ୍ତାରେ ୧୫୭୭ରେ ମିଥୁନିଶା ଜନ୍ମନେଲେ। ପର୍ଶିୟାନ ଅଫିସରମାନେ ଭାରତରେ ସମ୍ମାନ ପାଉଥିଲେ। ସେଥିପାଇଁ ଗିୟାସବେଗ ଆକବରଙ୍କ ଦରବାରରେ ଯୋଗ ଦେଲେ ଫତେପୁର ସିକ୍ରିରେ।

ଶାହାଜାହାଁ ବାହାରେ ଅନେକବର୍ଷ ଧରି ରହିଯିବା ଫଳରେ ନୁରଜାହାଁଙ୍କର ଆଧିପତ୍ୟ ବୃଦ୍ଧି ପାଇଲା। ସରକାରଙ୍କ ଡୋରି ରହିଲା ତାଙ୍କ ହାତରେ। ଏପରିକି ତାଙ୍କ ନାମରେ କୁତୁଖ୍ବା ମଧ୍ୟ ପଢ଼ାହେଲା।

ଜାହାଙ୍ଗୀର ଗିୟାସ-ବେଗ୍‌ଙ୍କୁ ରାଜସ୍ୱମନ୍ତ୍ରୀ ଭାବରେ ତାଙ୍କ ଦରବାରରେ ସ୍ଥାନ ଦେଲେ। ନାଁ ଦେଲେ ଇତିମଦ୍‌-ଉଦ୍‌-ଦାଉଲା। ତା' ପରଠାରୁ ତାଙ୍କର ଖ୍ୟାତି ବଢ଼ିଲା। ଅଳ୍ପଦିନ ପାଇଁ ବଦ୍‌ନାମ ମଧ୍ୟ ହୋଇଗଲେ। କାରଣ ଖୁସରୋଙ୍କ ସହିତ ବିଦ୍ରୋହରେ ମିଶିଲେ ଓ ତାଙ୍କ ପୁଅକୁ ହତ୍ୟା କରାଯାଇଥିଲା। କିନ୍ତୁ ପରେ ପରେ ସେ ଉଚ୍ଚତମ ପଦବୀ ''ୱାଜିର''କୁ ଉନ୍ନତ ହେଲେ। ନିଜ ସମ୍ମାନ ଜାରି ରଖିଲେ।

ତାଙ୍କ ଶିଶୁକନ୍ୟା ମିଥୁନିଶା(ନୁରଜାହାଁ) ଏକ ସୁନ୍ଦର, ବୁଦ୍ଧିମତି, ଦକ୍ଷ, ଯୁବତୀ ହୋଇ ବଢ଼ିଲେ। ୧୭ ବର୍ଷ ବୟସରେ ସେ ବିବାହ କଲେ ଜଣେ ଦେଶାନ୍ତରୀ ପର୍ଶିୟାନ ନୋବେଲଙ୍କୁ, ନାମ ଅଲି-କୁଲି-ବେଗ୍ ଇସ୍ତାଜଲୁ। ତାଙ୍କୁ ସେର ଆଫଗାନ ଆଖ୍ୟା ଦେଲେ କାରଣ ସେ ଏକାଏକା ସେରକୁ ମାରିଥିଲେ ବିନା ଅସ୍ତ୍ରରେ। ତାଙ୍କ ବୀରତ୍ୱରେ ମୁଗ୍ଧ ହୋଇ ଜାହାଙ୍ଗୀର ତାଙ୍କୁ ବର୍ଦ୍ଧମାନ (ବେଙ୍ଗଲ) ପଠାଇଲେ। କୁହାଯାଏ ଯେ ଆଫଗାନ ବିଦ୍ରୋହୀଙ୍କ ସହିତ ମେଳ ହେବା ପାଇଁ ଚେଷ୍ଟା କଲେ। ବେଙ୍ଗଲ ଗଭର୍ଣ୍ଣର କୁତୁବଦ୍ଦୀନ ଖାନ ଏ ସଂକ୍ରାନ୍ତରେ ଅନୁସନ୍ଧାନ କରନ୍ତେ ସେର ଆଫଗାନ ତାଙ୍କୁ ଖଣ୍ଡାଦ୍ୱାରା ଆକ୍ରମଣ କଲେ। କିନ୍ତୁ ନିଜେ ନିହତ ହେଲେ ସେର ଆଫଗାନଙ୍କ ଅଙ୍ଗରକ୍ଷୀଙ୍କ ଖଣ୍ଡାମାଡ଼ରେ।

୧୬୦୭ ବେଳର କଥା। ସମସ୍ତେ ଅନୁମାନ କଲେ କି ଜାହାଙ୍ଗୀରଙ୍କ ପ୍ରରୋଚନାରେ ହତ୍ୟା କରାଯାଇଛି। କିନ୍ତୁ କିଛି ପ୍ରମାଣ ନାହିଁ। ତିମୁରୁଦ୍ଦ ସଂସ୍କାର

ଅନୁସାରେ କୌଣସି ସମ୍ରାଟ ଯଦି କୌଣସି ସ୍ତ୍ରୀକୁ ବିବାହ କରିବାକୁ ଇଚ୍ଛା କରନ୍ତି ତା' ହେଲେ ସେ ସ୍ତ୍ରୀର ପୂର୍ବ ସ୍ୱାମୀ ସେ ସ୍ତ୍ରୀକୁ ବିବାହ ବନ୍ଧନରୁ ମୁକ୍ତ କରି ସେ ସ୍ତ୍ରୀକୁ ସମ୍ରାଟଙ୍କୁ ଦେବ। ଏ ପ୍ରଥା ଯଦି ସତ, ଶେର ଆଫଗାନଙ୍କୁ ହତ୍ୟା କରିବା ବିଷୟ ସତ ନୁହେଁ।

ଶେର ଆଫଗାନଙ୍କ ମୃତ୍ୟୁ ପରେ ନୁରଜାହାନ ଆଗ୍ରା ଫେରିଆସିଲେ। ଜାହାଙ୍ଗୀରଙ୍କ ସାବତମା ରୁକୟାବେଗମଙ୍କର ତତ୍ତ୍ୱାବଧାନ ପାଇଁ ତାଙ୍କୁ ନିଯୁକ୍ତି ଦିଆଗଲା। କଟିଗଲା ୪ ବର୍ଷ। ୧୬୧୧ ବେଳକୁ ସମ୍ରାଟଙ୍କ ଗାଦିରେ ବସିବାର ଷଷ୍ଠ ବାର୍ଷିକ ଉତ୍ସବରେ ନୁରଜାହାନଙ୍କୁ ଦେଖି ତାଙ୍କୁ ହାରେମରେ ରଖିଲେ। ଏଇ ହାରେମରେ ପ୍ରାୟ ୧୦୦୦ ଖଣ୍ଡେ ସ୍ତ୍ରୀ ଲୋକ ଥାନ୍ତି – ସ୍ତ୍ରୀଭାବେ, ରକ୍ଷିତା ଭାବେ ଓ ଆନ୍ୟାନ୍ୟ ଭାବରେ। ନୁରଜାହାନ ଜାହାଙ୍ଗୀରଙ୍କ ଶେଷ ସ୍ତ୍ରୀ। କିନ୍ତୁ କୌଣସି ସନ୍ତାନ ସନ୍ତତି ନଥିଲେ। ୧୫ ବର୍ଷରେ ଜାହାଙ୍ଗୀର ପ୍ରଥମ ସ୍ତ୍ରୀ ବିବାହ କରିଥିଲେ। ଆକବର ପୁତ୍ରବଧୂ ରୂପେ କନ୍ୟା ବାଛିଥିଲେ ରାଜପରିବାରରୁ। ମାନାବାଈ ଥିଲେ ଅମ୍ବରରାଜା ଭଗବାନଙ୍କ ଦାସଙ୍କ ପୁତ୍ରୀ। ସୁନ୍ଦର, ଉଦାର ଓ ସର୍ବଗୁଣସମ୍ପନ୍ନା। ଆକବର ଏ ବାହାଘର କରାଇଥିଲେ କାରଣ ଥିଲା ଏକ ଉଜ୍ଜ୍ୱଳ ମେଧାବୀ ସନ୍ତାନ ଆଶାରେ। କିନ୍ତୁ ଭାଗ୍ୟର ବିଡ଼ମ୍ବନା। ରାଜା ଭଗବାନ ଦାସ ଓ ତାଙ୍କ କନ୍ୟା ମାନାବାଈ ଦୁଇଜଣ ଯାକ ଥିଲେ ବିକୃତ ମସ୍ତିଷ୍କ। ଭଗବାନ ଦାସ ଅନେକ ବାର ଆତ୍ମହତ୍ୟା କରିବାର ଚେଷ୍ଟା କରି କରି ଶେଷରେ ସଫଳ ହେଲେ। କନ୍ୟା ମନାବାଈ ମଧ୍ୟ ୩୫ ବର୍ଷ ବୟସରେ ଆତ୍ମହତ୍ୟା କରି ଜାହାଙ୍ଗୀରଙ୍କ ଜୀବନରୁ ବିଦାୟ ନେଲେ। ପୁତ୍ର ଥିଲେ ଖୁସରୋଭ। ସେ ମଧ୍ୟ ସେହିଭଳି ବିକୃତ ମସ୍ତିଷ୍କ ଥିଲେ।

ମିଥୁନିଶା ମାନବାଈଙ୍କର ଠିକ୍ ବିପରୀତ। ପ୍ରଥମ ଦିନରୁ ଜାହାଙ୍ଗୀର ତାଙ୍କୁ ଅନ୍ୟମାନଙ୍କଠୁ ଉଚ୍ଚ ସ୍ଥାନରେ ରଖିଥିଲେ। ବିଭାଘର ପରେ ତାଙ୍କୁ ନୁରମହଲ (ପ୍ରାସାଦର ଆଲୋକ)ର ଆଖ୍ୟା ଦେଇଥିଲେ। ପରେ ତାଙ୍କର କାର୍ଯ୍ୟକଳାପ ଦେଖି ସେ ତାଙ୍କୁ ନୁରଜାହାଁନ(ବିଶ୍ୱର ଆଲୋକ) ନାଁରେ ଅଭିହିତ କଲେ। ସଲିମା ବେଗମଙ୍କ ମୃତ୍ୟୁପରେ ସାମ୍ରାଜ୍ୟର ପ୍ରଥମ ନାରୀ ବୋଲି ଘୋଷଣା କରିଥିଲେ। ଏତେ ସ୍ତ୍ରୀ, ରକ୍ଷିତା ଥାଉଁ ଥାଉଁ ଜାହାଙ୍ଗୀରଙ୍କ ଉପରେ ବି ଆଧିପତ୍ୟ ଥିଲା ? ସେ ଅତି ସୁନ୍ଦର ଓ ଈଶ୍ୱର-ଦତ୍ତ ଗୁଣ ଅଧିକାରୀଣୀ। ଦକ୍ଷ ଚିତ୍ରକାର ଭାବରେ ସେ ଅନେକ ନୂଆ

ଡିଜାଇନର କାରପେଟ, ଲେସ, ଧଡ଼ି, ବର୍ଡ଼ର ସବୁର ପ୍ରଚଳନ କରାଇଥିଲେ। ଆଭ୍ୟନ୍ତରଣୀୟ ଗୃହସାଜସଜ୍ଜାରେ ମଧ୍ୟ ସେ ନିପୂଣ। ନିଜେ ସରଳ ଓ ପବିତ୍ର ପୋଷକରେ ସଜ୍ଜିତ ହେଉଥିଲେ। ବିଶେଷକରି ଧଳା ପୋଷାକ। କିନ୍ତୁ ତାଙ୍କ ପୋଷାକର ଡିଜାଇନ, ଗହଣାର ପରିପାଟୀ ବହୁତ ଦିନ ଧରି ଉଚ୍ଚକୋଟୀର ଫ୍ୟାଶନ୍ ଭାବରେ ଜାରି ରହିଲା। ତାଙ୍କ ରନ୍ଧନ ପ୍ରସ୍ତୁତି ପ୍ରଣାଳୀ ମଧ୍ୟ ଅତି ଉଚ୍ଚଧରଣର ବୋଲି ଉଚ୍ଚ ପ୍ରଶଂସିତ । ନିପୂଣ ଥିଲେ ସ୍ଥାପତ୍ୟ ବିଦ୍ୟାରେ ମଧ୍ୟ। ଚମକ୍ରାର ଧଳା ମାରବେଲରେ ତାଙ୍କ ବାପାଙ୍କ ପାଇଁ ମୁସାଲିୟମ ସେ ବନାଇଥିଲେ। ତାହା ଆଳଙ୍କାରିକ ଓ ତାଜମହଲ ପ୍ରତିକୃତି ପରି। ପର୍ଶିୟାନ ଭାଷାରେ କବିତା ମଧ୍ୟ ଲେଖିପାରୁଥିଲେ।

ସର୍ବୋପରି ଜାହାଙ୍ଗୀରଙ୍କୁ ଖୁସି ରଖିବାକୁ ସଦାସର୍ବଦା ତତ୍ପର। ସେଥିପାଇଁ ଜାହାଙ୍ଗୀର ଥିଲେ ସନ୍ତୁଷ୍ଟ। ଥରେ ମାଣ୍ଡୁଠାରେ ତାଙ୍କ ନିଜ ଘରେ ଏକ ଭୋଜିର ଆୟୋଜନ କରିଥିଲେ। ପ୍ରତ୍ୟେକ ଆଗନ୍ତୁକର ଚାହିଦା ଅନୁସାରେ, ସେମାନଙ୍କୁ ଉନ୍ମାଦ କରିବା ଚେଷ୍ଟାରେ ସବୁପ୍ରକାର ମଦ୍ୟପାନର ଆୟୋଜନ କରିଥିଲେ। ଯେଉଁ ଆଲୋକସଜ୍ଜାର ଆୟୋଜନ ହୋଇଥିଲା। ତାହା କେବେ କେଉଁଠାରେ ହୋଇ ନଥିଲା।

ଶିକାରରେ ମଧ୍ୟ ଦୁଇଜଣଙ୍କର ଏକା ସଉକ। ଥରେ ହାତୀ ଉପରେ ହାଉଦାରେ ଥାଇ ନୁରଜାହାନ ୬ଟି ଗୁଳିରେ ୪ଟି ବାଘ ମାରିଥିଲେ। ସେଇ ଖୁସିରେ ଜାହାଙ୍ଗୀର ତାଙ୍କୁ ହୀରାର ବ୍ରେସଲେଟ ପ୍ରାୟ ଲକ୍ଷେ ଟଙ୍କା ମୂଲ୍ୟର ଉପହାର ଦେଇ ହଜାରେ ରକମର ଅତର ତାଙ୍କ ଉପରେ ଢାଳିଥିଲେ।

ନୁରଜାହାନ ଜାହାଙ୍ଗୀର ସାମ୍ରାଜ୍ୟରେ ନିଜ ସ୍ଥାନ ଉଚ୍ଚରେ ରଖିଥିଲେ। ଜାହାଙ୍ଗୀରଙ୍କର କୌଣସି ପ୍ରତିବାଦ ନ ଥିବା ଯୋଗୁଁ ସେ ସାମ୍ରାଜ୍ୟକୁ ଶାସନ କରିବାର ଦକ୍ଷତା ଅର୍ଜନ କରିଥିଲେ। ସୁଚାରୁରୂପେ ଶାସନ ଚଳାଇ। ଯାହାହେଲେ ବି ସେ ଜଣେ ଉଚ୍ଚାଭିଳାଷୀ ସ୍ତ୍ରୀ ଲୋକ। ସେ ସମୟରେ ସ୍ତ୍ରୀଲୋକଙ୍କର କୌଣସି ରାଜକୀୟ କାର୍ଯ୍ୟରେ ଭାଗ ନେବାର ପ୍ରଚଳନ ନ ଥିଲା। ସେଥିପାଇଁ ଦରବାରରେ ଏ ବିଷୟରେ ଆଲୋଚନା ହେଲା। ଥରେ ଜାହାଙ୍ଗୀରଙ୍କ ପ୍ରଧାନ ସେନାନାୟକ ମୋହବତ ଖାଁ ସାହସ କରି ନୁରଜାହାଁଙ୍କ ବିଷୟ ଜାହାଙ୍ଗୀରଙ୍କୁ ଜଣାଇଲେ କି

କିପରି ଭାବରେ ସମ୍ରାଟ ସ୍ତ୍ରୀଙ୍କ ପ୍ରଭାବରେ ରାଜକାର୍ଯ୍ୟ ପରିଚାଳନା କରୁଛନ୍ତି ? ସାରା ବିଶ୍ୱ ଓ ସର୍ବୋପରି ଉତ୍ତରପିଢ଼ି, ସମ୍ରାଟଙ୍କ ସଂକ୍ରାନ୍ତରେ କ'ଣ ଭାବିବେ ?

ଏ ଅଭିଯୋଗର କୌଣସି ପ୍ରଭାବ ସମ୍ରାଟଙ୍କ ଉପରେ ପଡ଼ିଲା ନାହିଁ। ମୋହବନ୍ତ ଖାଁଙ୍କ ପରି ଅନେକ ଲୋକ ଏପରି ଅଭିଯୋଗ କଲେ ମଧ୍ୟ ତା'ର କୌଣସି ମୂଲ୍ୟ ରହିଲା ନାହିଁ। ଦିନକୁ ଦିନ ତାଙ୍କର କ୍ଷମତା ବଢ଼ିବାରେ ଲାଗିଲା। ସରକାରଙ୍କ ସାର୍ବଭୌମ କ୍ଷମତା ନୁରଜାହାଁଙ୍କୁ ପ୍ରଦାନ କଲେ। ସେ କ୍ଷମତା ବଳରେ ଜାହାଙ୍ଗୀରଙ୍କ ନାମ ସହିତ ମୁଦ୍ରା ପ୍ରଚଳନ କରିବାରେ ଓ ପ୍ରତ୍ୟେକ ସରକାରୀ କାଗଜପତ୍ରରେ ଯୋଡ଼ି ଦେଲେ; ଲେଖିଲେ ନୁରଜାହାଁ ରାଣୀ ବେଗମ। ଏତେ ବିରୋଧ ସତ୍ତ୍ୱେ ସେ ଦିନକୁ ଦିନ କ୍ଷମତାଶାଳୀ ହେବାକୁ ଲାଗିଲେ। ଏ ପ୍ରକାର କାର୍ଯ୍ୟରେ ନୁରଜାହାଁ, ତାଙ୍କ ବାପା ଇତ୍‌ମାଦ୍‌-ଉଦ୍‌-ଦଉଲା, ଭାଇ ଆସଫ ଖାଁ ଓ କିଛି ସମୟ ପାଇଁ ଶାହାଜାହାଁ ନିଜେ ମଧ୍ୟ ଏଥିରେ ମିଳିତ ଥିଲେ। ନୁରଜାହାଁଙ୍କ ବାପା ଓ ଭାଇ ସାମ୍ରାଜ୍ୟର ବଡ଼ ଅଫିସର, ଆଉ ଶାହାଜାହାଁ ନିଜେ ଅସଫ ଖାଁଙ୍କ ଝିଅକୁ ବାହା ହୋଇଥିଲେ ଓ ସାମ୍ରାଜ୍ୟର ନିଶ୍ଚିତ ଉତ୍ତରାଧିକାରୀ ବୋଲି ଗଣା ହୋଇଥିଲେ। ଏହା ଭିତରେ ନୁରଜାହାଁଙ୍କ ବାପା ମରିଗଲେ। ଶାହାଜାହାଁ ବିଦ୍ରୋହ କରିବା ସମୟରେ ନୁରଜାହାଁ ଓ ଅସଫ ଖାଁ ରାଜ୍ୟ ଭାର ନିଜ ହାତରେ ରଖି ପାରିଲେ। ସମ୍ରାଟ ନିଜେ ଏ ବିଷୟରେ କୌଣସି ମତାମତ ଦିଅନ୍ତି ନାହିଁ – ଗମ୍ଭୀର ବିଷୟ ସଂକ୍ରାନ୍ତରେ ମଧ୍ୟ ନୁହେଁ। ନୁରଜାହାଁ ସମ୍ରାଟଙ୍କ ଇଚ୍ଛା ବିରୁଦ୍ଧରେ କିଛି କରନ୍ତି ନାହିଁ। ସମ୍ରାଟ ନିଜେ ମଧ୍ୟ ପ୍ରତ୍ୟେକ ଦିନର ରୁଟିନ ସୁଚାରୁରୂପେ ପରିଚାଳନା କରୁଥିଲେ – ଦରବାରକୁ ଯିବା, ରହିବା ଓ ଫେରିବାରେ କୌଣସି ବ୍ୟତିକ୍ରମ ଘଟେ ନାହିଁ।

ଥରେ ଦେହ ଅତିରିକ୍ତ ଖରାପ ହେଲା। ସମ୍ରାଟ କହିଲେ ନିଦ୍ରାଠୁ ସଜାଗ ରହି ଚଳୁଥାଅ କାରଣ ଆଶ୍ଚର୍ଯ୍ୟ ନିଦ୍ରା ପାଖେଇ ଆସୁଛି।

ମହବତ୍ ଖାଁ ଜାହାଙ୍ଗୀରଙ୍କର ଜଣେ ବିଶ୍ୱସ୍ତ ପୁରୁଣା ଅନୁଚର ବିଦ୍ରୋହ କରିବା ଆରମ୍ଭ କଲେ। ମୋହବତ ଖାଁ ସବୁବେଳେ ନୁରଜାହାଁଙ୍କ ଅଧିନତା ସ୍ୱୀକାର କରିଥିଲେ। ଭୟ କରୁଥିଲେ ଅସଫ ଖାଁଙ୍କୁ – ତାଙ୍କ ଚିରଶତ୍ରୁ। ଏ ପାଖେ ନୁରଜାହାଁ ଓ ଅସଫ ଖାଁ ମଧ୍ୟ ମହବତ ଖାଁଙ୍କୁ ଡରୁଥିଲେ। କାରଣ ଶାହାଜାହାଁଙ୍କ ବିଦ୍ରୋହ

ଦବାଇଲା । ପରେ ମହବତ ଖାଁ ସାରା ସାମ୍ରାଜ୍ୟରେ ଏକ କ୍ଷମତାଶୀଳ ଅମିର ବନିଯାଇଥିଲେ । ପ୍ରିନ୍ସ ପରଭିଜ ସହ ଜାହାଙ୍ଗୀରଙ୍କ ବଡ଼ ପୁଅ ମଧ ମିଶିଥିଲେ । ଖୁସରୋଭ ମୃତ, ଶାହାଜାହାଁ ଶକ୍ତିହୀନ । ମଝିରେ ପରଭିଜଙ୍କ ସିଂହାସନ ଆରୋହଣର ସମ୍ଭାବନା ଯଥେଷ୍ଟ ବେଶି । ପରଭିଜ ସିଂହାସନ ଆରୋହଣ କଲେ ମହବତ୍ ଖାଁ ଆହୁରି ଶକ୍ତିଶାଳୀ ହୋଇଯିବେ । ସେ ଅବସ୍ଥାରେ ନୁରଜାହାଁ ଓ ଅସଫ ଖାଁ ଦୁଇଜଣଙ୍କର ସ୍ଥାନ କେଉଁଠି ? ସେଥିପାଇଁ ମୂଳ ଉଦ୍ଦେଶ୍ୟ ହେଲା ମହବତ ଖାଁଙ୍କୁ ପରଭିଜଠାରୁ ଦୂରେଇ ରଖିବେ ।

ପ୍ରଥମରେ ପରଭିଜଙ୍କୁ ଗୁଜରାଟ ଓ ମହମବତ ଖାଁଙ୍କୁ ବେଙ୍ଗଲ ପଠାଗଲା । ଶାହାଜାହାଁଙ୍କ ବିଦ୍ରୋହ ଦମନ ବେଳେ ଲୁଣ୍ଠନ କରିଥିବା ଧନସଂପତ୍ତି, ହାତୀ ସବୁ ଫେରାଇବା ପାଇଁ ଓ ସମ୍ରାଟଙ୍କ ଦରବାରରେ ଅଭିଯୋଗର ଖଣ୍ଡନ ପାଇଁ ଦରବାରରେ ହାଜିର ହେବାକୁ କୁହାଗଲା । ମହବତ୍ ଖାଁ ଜାଣିଥିଲେ କି ଏ ସବୁ ଯୋଜନା ଅସଫ ଖାଁଙ୍କର । ବିଧିସଂଗତ ରାଜକୀୟ ଅନୁମତି ବିନା ସେ ତାଙ୍କ ଝିଅକୁ ସାମ୍ରାଜ୍ୟର ଜଣେ ଅଫିସରଙ୍କୁ ବିବାହ କରାଇବା ଆହୁରି ଅବସ୍ଥାକୁ ଖରାପ ଆଡ଼କୁ ନେଲା । ସମ୍ରାଟ ସେ ଅଫିସରଙ୍କୁ ବିନା ଦୋଷରେ ହାତଗୋଡ଼ ବାନ୍ଧି ଜେଲକୁ ପଠାଇଦେଲେ । ଯେଉଁ ଧନସଂପତ୍ତି ମହବତ୍ ଖାଁ ତାଙ୍କ ଜ୍ୱାଇଁଙ୍କୁ ଦେଇଥିଲେ ସେ ସବୁ ବାଜ୍ୟାପ୍ତ କରାଗଲା ।

ସବୁ ସହିନେଲେ ମହବତ୍ ଖାଁ । କାବୁଲ ଯିବା ରାସ୍ତାରେ ଜାହାଙ୍ଗୀର ଝେଲମ ନଦୀ କୂଳରେ ଛାଉଣୀ ପକାଇଥିଲେ । ଅସନ୍ତୁଷ୍ଟ ଥିଲେ ମହତଖାଁଙ୍କ ଉପରେ । ସେଥିପାଇଁ ମହବତ୍ ଖାଁ ଝେଲମ ନଦୀ କୂଳରେ ପହଞ୍ଚିବା କ୍ଷଣି ରାଜ ପରିବାରଙ୍କୁ ଛାଡ଼ି ଅନ୍ୟ ସମସ୍ତେ ନଦୀର ପୂର୍ବକୂଳକୁ ଚାଲିଗଲେ । ମହବତ୍ ଜାଣିଲେ କି ଜାହାଙ୍ଗୀର ବିନା ରକ୍ଷକରେ ଛାଉଣୀରେ ଅଛନ୍ତି । ତୁରନ୍ତ ଏ ପରିସ୍ଥିତିର ସୁଯୋଗ ଉଠାଇଲେ । ୨୦୦ ରାଜପୁତ ସୈନିକଙ୍କୁ ନଈକୂଳ ଜଗିବାକୁ ପଠାଇଲେ । ଫଳରେ ସୈନ୍ୟମାନେ ଅବରୋଧ ହୋଇଯିବେ । ଏ ପାଖେ ଅନ୍ୟ କେତେକ ସୈନ୍ୟ ନେଇ ସମ୍ରାଟଙ୍କ ଛାଉଣୀକୁ ଗଲେ ।

ମୁତାମିଦ୍ ଖାଁ – ସମ୍ରାଟଙ୍କର ଘରୋଇ ଆଦି ଅଫିସର ନିଜ ସକାଳ ପ୍ରାର୍ଥନା ସାରି ଉଠିଲା ବେଳକୁ ଶୁଣିଲେ ମହବତ୍ ଖାଁ ଆସୁଛନ୍ତି । ସେ ନିଜ ଖଣ୍ଡା ଉନ୍ମୁକ୍ତ

ରଖିବାକୁ ଉଦ୍ୟତ ହେଲାବେଳକୁ ଦେଖିଲେ ମହବତ୍ ଖାଁ ୧୦୦ ଜଣ ଖଣ୍ଡ ରାଜପୁତ ସୈନ୍ୟଙ୍କୁ ନେଇ ଭିତତରକୁ ପଶୁଛନ୍ତି। ସେମାନଙ୍କ ହାତରେ ବର୍ଚ୍ଛା, ଶର ଇତ୍ୟାଦି। ମୁତାମିଦ ଖାଁଙ୍କ କଥାର କୌଣସି ଉଉର ନ ଦେଇ ସେ ଛାଉଣୀ ଭିତରକୁ ପଶିଲେ।

ଜାହାଙ୍ଗୀର ପାଲିଙ୍କିରେ ବସି ନଦୀ ପାରିହେବାକୁ ଯାଉଥିଲେ। ମହବତ୍ ଖାଁ ସମ୍ରାଟଙ୍କୁ କହିଲେ; ଆପଣଙ୍କ ଉପସ୍ଥିତିରେ ମତେ ଦଣ୍ଡ ଦିଅନ୍ତୁ। ଜାହାଙ୍ଗୀର ଖଣ୍ଡା ବାହାର କରିବାକୁ ଯିବା ସମୟରେ ଅନୁଚର ଜଣେ ତାଙ୍କୁ ବାରଣ କଲେ। କୌଣସି ଅପ୍ରତିକର ପରିସ୍ଥିତି ଘଟି ନାହିଁ ବୋଲି ଛଳନା କରି ସମ୍ରାଟଙ୍କୁ ବାହାରକୁ ଘେନି ଗଲେ। ପରେ ତାଙ୍କୁ ହାତୀରେ ବସାଇ ମହବତ୍ ଖାଁଙ୍କ ପୁଅମାନଙ୍କ ଛାଉଣୀକୁ ନେଇଗଲେ।

ମହବତ୍ ଖାଁଙ୍କ ହଠାତ୍ ମନେ ପଡ଼ିଲା ନୁରଜାହାନଙ୍କ କଥା। ସମ୍ରାଟଙ୍କୁ ତାଙ୍କ ପୁଅମାନଙ୍କ ଛାଉଣୀରେ ଛାଡ଼ିଦେଇ ସେ ନୁରଜାହାନଙ୍କ ଉପରେ ପ୍ରତିଶୋଧ ନେବେ ବୋଲି ବାହାରିଗଲେ। ନୁରଜାହାଁ ସେତେବେଳକୁ ଜାଣତରେ ବା ଅଜାଣତରେ ନଦୀ ପାର ହୋଇ ଫେରି ଆସିଲେଣି। ମହବତ ଖାଁଙ୍କ ସୈନ୍ୟଙ୍କୁ ଆଦେଶ ନ ଥିବା ଦୃଷ୍ଟିରୁ ସେମାନେ ତାଙ୍କୁ ପ୍ରତିରୋଧ ମଧ୍ୟ କଲେ ନାହିଁ। ନୁରଜାହାଁ ସିଧା ଅସଫ-ଖାଁଙ୍କ ଛାଉଣୀକୁ ଗଲେ। ବୁଦ୍ଧିଭ୍ରମ ହେଲା ମହବତ୍ ଖାଁଙ୍କର। ସବୁ ଅମୀରଙ୍କୁ ଡକାଇ ତାଙ୍କ ବୁଦ୍ଧିହୀନ ଯୋଜନା ପାଇଁ ଅଭିଯୋଗ କଲେ। ଭାବିଲେ ବି ପରଦିନ ନଦୀ ପାର ହୋଇ ସମ୍ରାଟଙ୍କୁ ମୁକୁଳେଇବା ଉଚିତ ହେବ। ସମ୍ରାଟଙ୍କ ବାରଣ ସତ୍ୱେ ସେମାନେ ବାହାରିଗଲେ।

କିନ୍ତୁ ଏ ଯୋଜନାର ଫଳାଫଳ ହେଲା ସାଂଘାତିକ। ଠିକ୍ ପରେ ପରେ ଅସଫ ଖାଁଙ୍କ ପଳାୟନ କଲେ ନିଜ ଜୀବନ ରକ୍ଷା କରିବା ପାଇଁ। ନୁରଜାହାଁ ଅସହାୟ ଅବସ୍ଥାରେ ପଡ଼ି ନଦୀ ପାର ହୋଇ ବନ୍ଦୀ ଭାବରେ ସମ୍ରାଟଙ୍କ ପାଖକୁ ଚାଲିଗଲେ। ସେ ପର୍ଯ୍ୟନ୍ତ ମହବତ ଖାଁ ଜଣେ ଆଜ୍ଞାକାରୀ ଭୃତ୍ୟ ଭାବରେ ସମ୍ରାଟଙ୍କ ପାଖରେ ଛଳନା କରୁଥାନ୍ତି। ଅସଫ ଖାଁ ମହବତ୍ ଖାଁଙ୍କ ଆଶ୍ୱାସନା ପାଇ ମହବତ୍ ଖାଁଙ୍କ ସହିତ ହାତ ମିଳେଇଲେ।

ପରଦିନ ସମ୍ରାଟଙ୍କ ପଟୁଆର କାବୁଲ ଅଭିମୁଖେ ଯାତ୍ରା କଲେ। ନୁରଜାହାଁ ଓ ସମ୍ରାଟ ତାଙ୍କ ତଥାକଥିତ ସମ୍ମାନରେ ପଟୁଆରରେ ନେଲେ ମହବତ୍ ଖାଁ ସମ୍ରାଟଙ୍କୁ

କାବୁଲ ନେଇ ଭୁଲ କଲେ। ସାଙ୍ଗରେ କେବଳ ରାଜପୁତ ସୈନ୍ୟ। ହିନ୍ଦୁସ୍ତାନରେ ରାଜପୁତ ସୈନ୍ୟଙ୍କର ଆଧିପତ୍ୟ ଥିଲା।

ମହବତ୍ ଖାଁଙ୍କ ଯୋଜନାକୁ ବିଫଳ କରିବାକୁ ଜାହାଙ୍ଗୀର ଓ ନୁରଜାହାନ ରାସ୍ତା ଖୋଜିଲେ। ଜାହାଙ୍ଗୀର ମହବତ୍ ଖାଁଙ୍କୁ ଶାନ୍ତ କରିବା ପାଇଁ ଛଳନା କଲେ। କୌଣସି ବିପରୀତାତ୍ମକ କାର୍ଯ୍ୟକଳାପ ଦେଖାଇଲେ ନାହିଁ। ଏଣେ ନୁରଜାହାଁ ତାଙ୍କ ସପକ୍ଷରେ ଓ ମହବତ୍ ଖାଁଙ୍କ ବିରୁଦ୍ଧରେ ସୈନ୍ୟବଳ ଯୋଗାଡ଼ କରୁଥିଲେ। ୧୬୨୬ରେ ସେମାନେ କାବୁଲରୁ ଫେରିଲେ। ଝେଲମର ରୋହଟାସ ପାଖରେ ନୁରାଜାହାଁ ସମ୍ରାଟଙ୍କ ସୈନ୍ୟମାନଙ୍କ ସହାୟତାରେ ମହବତ୍ ଖାଁଙ୍କୁ ନିର୍ଦ୍ଦେଶ ଦେଲେ ସବୁ ପଣବନ୍ଦୀଙ୍କୁ ମୁକ୍ତ କରିବା ପାଇଁ। ମହବତ୍ ଖାଁ ପ୍ରଥମରେ ଅମାନ୍ୟ କଲେ କିନ୍ତୁ ପରେ ଅନ୍ୟ ଉପାୟ ନ ଦେଖି ସମସ୍ତଙ୍କୁ ମୁକ୍ତ କରି ପଳାୟନ କଲେ।

ଏଣେ ଶାହାଜାହାଁ ମହବତ୍‌ଖାଁଙ୍କ ଆୟୋଜନ ଶୁଣି ଅଳ୍ପ ସଂଖ୍ୟକ ସୈନ୍ୟନେଇ ଜାହାଙ୍ଗୀରଙ୍କୁ ମୁକ୍ତ କରିବାକୁ ବାହାରି ଆସିଲେ। କେତେକ ଘୋଡ଼ାସବାର ତାଙ୍କ ପାଖରେ ଥିଲେ। ସିନ୍ଧରେ ପହଞ୍ଚିଲା ବେଳକୁ ନୁରଜାହାଁ ସବୁ କ୍ଷମତା ହାତକୁ ନେଇ ସାରିଥିଲେ। ସାଙ୍ଗେ ସାଙ୍ଗେ ନୁରଜାହାଁ ଶାହାଜାହାଁଙ୍କୁ ଦାକ୍ଷିଣାତ୍ୟ ଫେରିବା ପାଇଁ ନିର୍ଦ୍ଦେଶ ଦେଲେ। ଶାହାଜାହାଁ ଭାବିଥିଲେ ପର୍ଶିଯା ପଳାଇବେ। କିନ୍ତୁ ସିନ୍ଧର ଗଭର୍ଣ୍ଣର ବାଧା ଦେଲେ। ସେ ବାଧ ହୋଇ ଦାକ୍ଷିଣାତ୍ୟ ଫେରିଲେ। ଗୋଟିଏ ମାତ୍ର ଭଲ ଖବର ଥିଲା କି ଭାଇ ପରଭିଜ ଅତ୍ୟଧିକ ମଦ୍ୟପାନ ଯୋଗୁଁ ମୃତ୍ୟୁବରଣ କରିଛନ୍ତି ବରହାନପୁରଠାରେ। ବର୍ତ୍ତମାନ ଉତ୍ତରାଧିକାରୀ ହେଲେ ଶାହାଜାହାଁ ଓ ସାରୟାର। ଏ ପରିସ୍ଥିତିରେ ନୁରଜାହାଁ ପଳାତକ ମହବତ୍ ଖାଁଙ୍କୁ ସିନ୍ଧ ପାଇଁ ଶାହାଜାହାଁଙ୍କ ପଥ ଅବରୋଧ ପାଇଁ ଆଦେଶ ଦେଲେ; କିନ୍ତୁ ମହବତ୍ ଖାଁ ପୂର୍ବଦିଗକୁ ଗଲେ। ଆଶା ଥିଲା ବେଙ୍ଗଲରୁ ଆସୁଥିବା ଲୁଣ୍ଠିତ ଧନ ପାଇଯିବେ। ସେଥିରେ ବିଫଳ ହୋଇ ସେ ମେୱାରରେ ଆଶ୍ରୟ ନେଲେ। ସେଠୁ ୨୦୦୦ ସୈନ୍ୟ ସଂଗ୍ରହ କରି ଜୁନାରଠାରେ ଶାହାଜାହାଁଙ୍କୁ ଭେଟିଲେ। ସବୁ ଯୋଜନା ବିଫଳ ହେଲା।

ନୁରଜାହାଁ ଫେରି ପାଇଲେ ତାଙ୍କ ଅଧିକାର। ଭାଇ ଅସଫ ଖାଁ ସାହାଯ୍ୟ କଲେ। ଉକିଲ ଭାବରେ ନିଯୁକ୍ତି ଦେଲେ। ଉକିଲଙ୍କ ହାତରେ ସମୁଦାୟ ଶାସନର ଭାର ଦେଲେ। ଏପରିକି ରାଜସ୍ୱ ଓ ରାଜନୀତି। ଜାହାଙ୍ଗୀର ଅସୁସ୍ଥ ହେଲେ।

ପଞ୍ଜାବରୁ କାଶ୍ମୀର ଗଲେ। ୮ ବର୍ଷ ଧରି ଭୋଗୁଥିବା ଆଜମା ରୋଗରୁ ମୁକ୍ତି ପାଇବା ଆଶାରେ। ଉପକାର ପାଇଲେ ନାହିଁ। କାଶ୍ମୀରରେ ଥିଲାବେଳେ ରାଜପରିବାରକୁ ଆଉ ଏକ ଧକ୍କା ଆସିଲା। ସାହାୟାର ବେମାର ପଡ଼ିଲେ ଯେଉଁଥିରେ କି ଶରୀରର ପ୍ରତ୍ୟେକ ଅଂଗରୁ ବାଳ ଝଡ଼ିଗଲା। ତାଙ୍କର ଉତ୍ତରାଧିକାରୀ ହେବାର ଆଶା ଧୂଳିସାତ ହେଲା।

ଜାହାଙ୍ଗୀର ବାହାରିଲେ ଲାହୋର ଯିବାକୁ। ରାସ୍ତାରେ ବୈରାମକାଲାଠାରେ ଅଟକିଲେ। ସେଇଟା ତାଙ୍କ ଶିକାରର ପ୍ରିୟ ସ୍ଥଳ। ଶିକାର କରିବାକୁ ଇଚ୍ଛା କରି ସେ ବଂଧୁକ ଚଳେଇବା ପାଇଁ ଚାହିଁଲେ। କିନ୍ତୁ ଏକ ଜନ୍ତୁ ଭାବି ଭୁଲରେ ଗୁଳି ଚାଳନା କଲେ ଏକ ମଣିଷ ଉପରେ। ମଣିଷର ମୃତ୍ୟୁହିଁ ତାଙ୍କ ମନରେ ଆଘାତ ସୃଷ୍ଟିକଲା ଆଉ ମୃତ୍ୟୁ ଭୟ ତାଙ୍କୁ ଗୋଡ଼ାଇଲା।

ମନ ଓ ଦେହ ଉଭୟ ଭାଙ୍ଗିଗଲା। ସେ ଯାତ୍ରା ଆରମ୍ଭ କଲେ। ଭିମବାର ନିକଟରେ ଚିନଗିଜ ହାଡ଼ଲିଠାରେ ରହିବା ବେଳେ ତଣ୍ଟିରେ ତାଙ୍କର ଗ୍ରେଡ଼ୱାଇନ ମଧ ଚାଲିଲା ନାହିଁ। ତହିଁପରଦିନ ୭ ନଭେମ୍ବର ୧୬୨୭ରେ ସୂର୍ଯ୍ୟୋଦୟ ପୂର୍ବରୁ ମୃତ୍ୟୁ ବରଣ କଲେ। ପୂର୍ବରୁ ଅନେକ ଯୋଜନା ହୋଇଥିଲା ଉତ୍ତରାଧିକାରୀ ସଂକ୍ରାନ୍ତରେ। ଜାହାଙ୍ଗୀରଙ୍କ ମୃତ୍ୟୁରେ ପ୍ରଥମ ଆଘାତ ପାଇଲେ ନୁରଜାହାନ। ଜାହାଙ୍ଗୀରଙ୍କ ମୃତ୍ୟୁ ସହିତ ତାଙ୍କ କ୍ଷମତାର ମୃତ୍ୟୁ ହେଲା।

ଜାହାଙ୍ଗୀରଙ୍କ ମୃତ୍ୟୁପରେ ଅମିରମାନଙ୍କର ଏକ ସଭା ଡକାଇଲେ ଉତ୍ତରାଧିକାରୀ ଠିକଣା କରିବା ଉଦ୍ଦେଶ୍ୟରେ। କିନ୍ତୁ ସେ ସଭାକୁ କେହି ଆସିଲେ ନାହିଁ। ହୁଏତ ଅସଫ ଖାଁଙ୍କ ପ୍ରରୋଚନାରେ। ସେମାନେ ନୁରଜାହାଁଙ୍କ ସଙ୍ଗେ ଆଲୋଚନା କରିବା ବନ୍ଦ କଲେ ଓ ଶାହଜାହାଁଙ୍କ ପୁତ୍ରମାନଙ୍କୁ ମଧ ବାଦ ଦେଲେ।

ସବୁ ଘଟଣାର ପରିବର୍ତ୍ତନ ସତ୍ତ୍ୱେ ନୁରଜାହାଁ ଚୁପ ରହିଲେ। ସାହାୟାରଙ୍କୁ ଗାଦିରେ ବସାଇବା ତାଙ୍କର ଭିତରି ଉଦ୍ଦେଶ୍ୟ ଥିଲା। ସମ୍ରାଟ ଥିବା ସମୟରେ ଶାସନ ଡୋରି ଯାହାଙ୍କ ହାତରେ ଥିଲା, ସେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ନାହିଁ। ହୁଏତ ଯୁଦ୍ଧ କରିବାର କ୍ଷମତା ତାଙ୍କ ପାଖରୁ ଚାଲିଯାଇଥିଲା। ଏଣେ ଅସଫ ଖାଁ ଭିତରେ ଭିତରେ ଶାହଜାହାଁଙ୍କୁ ଗାଦିରେ ବସାଇବାର ବନ୍ଦୋବସ୍ତର ବ୍ୟସ୍ତ ଥିଲେ। ଅନେକ ଅମିର ମଧ ଶାହାଜାହାଁଙ୍କୁ ସମର୍ଥନ କରୁଥିଲେ। ସାହାୟାର ସମର୍ଥନ

ନୁରଜାହାଁଙ୍କ ଠାରୁ। ସାହାୟାର ସେତେବେଳେ ଥିଲେ ଲାହୋରରେ। ଶାହାଜାହାଁ ମଧ୍ୟ ଦାକ୍ଷିଣଶତ୍ୟରେ। ଖବର ପାଇବା ବେଳକୁ ସପ୍ତାହେ। କିନ୍ତୁ ଏତେ ଦିନ ଧରି ଗାଦି ଖାଲି ପଡ଼ିବ ନାହିଁ ଆଉ କୁତୁଓ୍ୱା ପଢ଼ା ମଧ୍ୟ ବନ୍ଦ ହୋଇପାରିବ ନାହିଁ। ଠିକଣା ହେଲା ଦାଓ୍ୱାର ବକ୍ସ (ଖୁସରୋଭଙ୍କ ପୁଅ)ଙ୍କୁ ଗାଦିରେ ବସାଇବେ। ସେ ଆତଙ୍କିତ ହୋଇପଡୁଥିଲେ କାରଣ ତାଙ୍କୁ ଲାଗୁଥିଲା ସେ ନିଜେ ତାଙ୍କର ମୃତ୍ୟୁପତ୍ରରେ ନାମାଙ୍କନ କରୁଛନ୍ତି।

ଅଳ୍ପ କେତେ ଘଣ୍ଟା ପରେ ଦାଓ୍ୱାର ବକ୍ସ ଗାଦିରେ ବସିଲେ। ରାଜପରିବାର ଭିମବାର ସେଠାରୁ ଲାହୋର ଗଲେ। ସେଠାରେ ସମ୍ରାଟଙ୍କର ଶେଷକୃତ୍ୟ ସଂପନ୍ନ ହେଲା। ନୁରଜାହାଁଙ୍କ ଦ୍ୱାରା ଗଠିତ ସାହନାରା ବଗିଚାରେ ତାଙ୍କର କବର ଦିଆଗଲା। ଦାଓ୍ୱାର ବକ୍ସଙ୍କ ନାଁରେ କୁତୁଓ୍ୱା ପଢ଼ାହେଲା।

ଅନ୍ୟ ଦିଗରେ ଲାହୋରରେ ସମ୍ରାଟଙ୍କ ମୃତ୍ୟୁ ଖବର ପାଇ ସାହାୟାର ନିଜକୁ ସମ୍ରାଟ ବୋଲି ଘୋଷଣା କଲେ। ସେ ରାଜକୋଷ ମାଡ଼ି ବସିଲେ ଓ ପ୍ରାୟ ସାତ ମିଲିଅନ ଟଙ୍କା ନୋବଲମାନଙ୍କର ସମର୍ଥନ ପାଇବେ ବୋଲି ତାଙ୍କ ପାଇଁ ଖର୍ଚ୍ଚ କଲେ। ଆସଫ ଖାଁଙ୍କ ପ୍ରରୋଚନାରେ ଲାହୋର ଅକ୍ତିଆର କଲେ ଓ ସାହାୟାର ନିଜକୁ ହାରେମ ଭିତରେ ଲୁଚେଇ ରଖିଥିବା ସତ୍ତ୍ୱେ ତାଙ୍କୁ ବାହାରକୁ ଦାନିଏଲ୍‌ଙ୍କୁ ସଲାମ ଜଣାଇବାକୁ ବାଧ କରାଗଲା। ପରେ ତାଙ୍କୁ ବନ୍ଦୀ କରି ଅନ୍ଧ କରି ଦିଆଗଲା। ଏ ସବୁ ପରଦା ଅନ୍ତରାଳରେ।

ଆସଫ ଖାଁଙ୍କ ଜଣେ ବିଶେଷ ସମ୍ବାଦଦାତାଙ୍କୁ ଦେଇ ଶାହଜାହାଁଙ୍କ ପାଖକୁ ସମ୍ରାଟଙ୍କ ମୃତ୍ୟୁ ଖବର ପଠାଇଲେ। ୨୦ ଦିନ ଲାଗିଗଲା ଦାକ୍ଷିଣାତ୍ୟର ପହଞ୍ଚିବାକୁ। ମଲିକ ଅମ୍ବର ଦ୍ୱାରା ନିର୍ମିତ ସୁନ୍ଦର ପ୍ରାସାଦରେ ରହିଥିଲେ। ସେଠି ଆନୁଷ୍ଠାନିକ କ୍ରିୟାକର୍ମ ସାରି ମହବତ୍ ଖାଁଙ୍କୁ ସାଙ୍ଗରେ ଧରି ଆଗ୍ରା ଉଦ୍ଦେଶ୍ୟରେ ବାହାରିଲେ। ବରହାନପୁର ବାଟେ ନ ଯାଇଁ ଗୁଜରାଟ ବାଟେ ଗଲେ।

ଆସଫ ଖାଁଙ୍କୁ ଶାହାଜାହାଁ ଖବର ଦେଲେ ସବୁ ଉତ୍ତରାଧିକାରୀଙ୍କୁ ମୂଳପୋଛ କରିବା ପାଇଁ। ସେ ରାସ୍ତାରେ ହିଁ ଶାହାଜାହାଁ ନିଜ ଗାଦି ସୁଦୃଢ଼ ରଖିପାରିବେ। ୧୬୨୮ ଫେବୃୟାରୀ ୨ ତାରିଖ ରାତିରେ ଶାହାଜାହାଁଙ୍କୁ ଲାହୋରରେ ସମ୍ରାଟ ବୋଲି ଘୋଷଣା କଲାପରେ ସମସ୍ତଙ୍କୁ – ସାହାୟାର, ଦଓ୍ୱାରବକ୍ସ, ଘାଆରକ୍ସ ଓ

ଦାନିଏଲଙ୍କ ଦୁଇପୁତ୍ରଙ୍କୁ ବନ୍ଦୀ କରି ହତ୍ୟାକରାଗଲା। ରକ୍ତମୁଖା ହୋଇଥିଲେ ଶାହାଜାହାଁ। ହାତୀରେ ଚଢ଼ି ବଡ଼ ଯାକଯମକରେ ଶାହାଜାହାଁ ଆଗ୍ରାରେ ପହଞ୍ଚିଲେ। ସମସ୍ତେ ଅଭିନନ୍ଦନ ଜଣାଇଲେ। କିଛିଦିନ ପରେ ଅସଫ ଖାଁ ନିଯୁକ୍ତି ପାଇଲେ ଉକିଲ ଭାବରେ।

ନୁରଜାହାଁ ଲାହୋରରେ ରହିଲେ ତାଙ୍କ ଝିଅ ଲାଡ଼ଲି ବେଗମ୍‌ଙ୍କ ସହ। ତାଙ୍କୁ ଶାହଜାହାନ ୨ ଲକ୍ଷ ଟଙ୍କାର ବାର୍ଷିକ ଦେୟ ଦେଉଥିଲେ। ତାଙ୍କ ସ୍ୱାମୀଙ୍କର କବରଖାନା ତୋଳାଇଲେ ନିଜ ଖର୍ଚ୍ଚରେ। ସେ ରାଜନୀତି, ଶାସନନୀତିକୁ ମନ ବଳାଇଲେ ନାହିଁ। ୧୬୪୫ ୧୮ ନଭେମ୍ବରରେ ତାଙ୍କର ମୃତ୍ୟୁ ହେଲା। ଦଫନ ଦିଆଗଲା ତାଙ୍କ ନିଜ ତିଆରି କବର ଖାନାରେ।

ଜାହାଙ୍ଗୀରଙ୍କ ଅମଳରେ ରୋ ସୁରଟରୁ ଯାତ୍ରା କଲେ ଆଜମୀର ଉଦ୍ଦେଶ୍ୟରେ। ବାଟରେ ରାଜପୁତ୍ରଙ୍କୁ (ପରଭିଜ) ବରବାନପୁରଠାରେ ଭେଟିଲେ। ଦରବାରରେ ମୋଗଲ ଆଦାବ କାଇଦାର ସେ ମାନିନେବାକୁ ମଙ୍ଗିରେ ନାହିଁ। ଖଣ୍ଡେ ଚଉକି ପାଇଁ ଅନୁମତି ମାଗିଲେ, ଫଳରେ ସେଥିରେ ବସି ସେ ରାଜପୁତ୍ରଙ୍କ ସହିତ କଥାବାର୍ତ୍ତା କରିପାରିବେ। ତାହା ମଧ୍ୟ ମଞ୍ଜୁର ହେଲାନି। ଶେଷରେ ଗୋଟେ ଖୁମ୍ବରେ ଆଉଜି ଠିଆ ହୋଇ କଥାବାର୍ତ୍ତା କରିବାର ସୁଯୋଗ ମିଳିଲା। ସାଧାରଣତଃ ମୋଗଲ ଦରବାରରେ ସେ ନିୟନମଧ୍ୟ ନଥାଏ। କିନ୍ତୁ ଯେହେତୁ ସେ ଜଣେ ଫିରଙ୍ଗି ଓ ମୋଗଲ ଆଦାବକାଇଦା ତାଙ୍କୁ ଜଣାନାହିଁ ସେଥିପାଇଁ ତାଙ୍କ ଉପରେ କୌଣସି ନିୟମ ଲଦି ଦିଆଗଲା ନାହିଁ।

ଖ୍ରୀଷ୍ଟମାସ ପୂର୍ବରୁ ରୋ ଆଜମୀରରେ ପହଞ୍ଚିଲେ। ପହଞ୍ଚିବା ପରେ ଦେହ ଖରାପ ଦୃଷ୍ଟିରୁ ଜାନୁୟାରୀ ୧୦ ୧୬୧୬ ମସିହାରେ ସେ ମୋଗଲ ଦରବାରକୁ ମିବାକୁ ମନସ୍ଥ କଲେ। ମାନସିକ ଜଟିଳତା ଭିତରେ ଗତି ନ କରିବା ପାଇଁ ସେ ଆଗତୁରା ସମ୍ରାଟଙ୍କୁ ଇଂରେଜି କାଇଦାରେ ଅଭିବାଦନ ଜଣାଇବାକୁ ମାଗିନେଲେ। କେବେଳ ରୋଙ୍କୁ ଏ ପ୍ରକାର ଅନୁମତି ଦିଆଗଲା ତା' ନୁହେଁ ଅନ୍ୟାନ୍ୟ ଅନେକ ଅନେକ ଇଂରେଜ ଲୋକଙ୍କୁ ଏପରି ଅନୁମତି ଦିଆଯିବାର ପ୍ରମାଣ ଥିଲା।

ରାଜ ଜେମ୍‌ସଙ୍କର ଚିଠି ମୋଗଲ ସମ୍ରାଟ ଜାହାଙ୍ଗୀରଙ୍କୁ ଇଂରେଜ ଆଦାବକାଇଦାରେ ହସ୍ତାନ୍ତର କରାଗଲା। ରୋ ଡେଙ୍ଗା ଓ ସୁନ୍ଦର। ତାଙ୍କର ତଳକୁ ଓହଳି ଆସିଥିବା ନିଶ ଦେଖାଯାଉଥିଲା ଉଡ଼ନ୍ତା ପକ୍ଷୀ ଡେଣାପରି। ଦାଢ଼ି ତାଙ୍କର

ଦେଖାଯାଉଥିଲା କୌଣସି ଏକ ସିଛ ପକ୍ଷୀର ଲାଞ୍ଜ ପରି। ତାଙ୍କର ବିଦେଶୀୟ ଆକର୍ଷଣୀୟ ଚେହେରା ଦେଖିବା ପାଇଁ ବେଗମମାନେ ମଧ୍ଯ ପରଦା ଅନ୍ତରାଳରେ ଉତ୍ସୁକ ହୋଇଯାଇଥିଲେ।

ବନ୍ଧୁତ୍ୱ ଘନିଷ୍ଠତର ହେଲା ରୋ ଙ୍କର ଜାହାଙ୍ଗୀରଙ୍କ ସହିତ। ବେଳେ ବେଳେ ଅନେକ ମତଭେଦ ମଧ୍ଯ ଘଟେ। ଥରେ ରାତି ଦଶଟାବେଳେ ଜାହାଙ୍ଗୀର ରୋ ଙ୍କୁ ଡକାଇ ଗୋଟାଏ ଫଟୋଚିତ୍ର ସେ କାହିଁକି ଦେଖାଇ ନାହାନ୍ତି ବୋଲି ଅଭିଯୋଗ କଲେ। ସେ ତା'ର କପି ରଖି ରେ ଚିତ୍ର ରୋଙ୍କୁ ଫେରାଇ ଦେଇଥିଲେ। ପରେ ସେ ଅନେକ ସ୍ଥାନୀୟ ପାର୍ଟିରେ ମଧ୍ଯ ଯୋଗ ଦେଇଥିଲେ। ରୋ ଙ୍କର ମୂଳଉଦ୍ଦେଶ୍ୟ ଥିଲା ଇଂରେଜ ବ୍ୟବସାୟକୁ ମୋଗଲ ସାମ୍ରାଜ୍ୟରେ ଆରମ୍ଭ କରିବେ। ଏତେ ଆନ୍ତରିକତା ସତ୍ତ୍ୱେ ସେ ସେଇ ବିଷୟଟି ଉପସ୍ଥାପିତ କରିପାରି ନଥିଲେ। ଜାହାଙ୍ଗୀର ଓ ତାଙ୍କ ଦରବାର ଭାବୁଥିଲେ କି ଇଂଲଣ୍ଡ ସହ ବ୍ୟବସାୟ ତମସାଛନ୍ନ ଆଉ ଦୂରତା ମଧ୍ଯ ଅଧିକ। ଶାହାଜାହାଁ ସେତେବେଳେ ଗୁଜରାଟର ଗଭର୍ଣ୍ଣର ଥିଲେ। ୧୬୧୮ ବେଳକୁ ତାଙ୍କଠାରୁ ବ୍ୟବସାୟ ଆରମ୍ଭ କରିବା ପାଇଁ ଅନୁମତି ନେଇ ଆସିଥିଲେ। ସର୍ତ୍ତ ଥିଲା ସେମାନେ ସ୍ଥାୟୀଘର କିଣିପାରିବେ ନାହିଁ ବା ଜମି କିଣି ଘର ତୋଳାଇ ପାରିବେ ନି। ସର୍ବୋପରି କୌଣସି ଅସ୍ତ୍ରଶସ୍ତ୍ର ମଧ୍ଯ ଭାରତରୁ ନେଇ ପାରିବେ ନାହିଁ। ରୋ ସବୁ ସର୍ତ୍ତରେ ରାଜି ହେଲେ। ଶାହାଜାହାଁ ତାଙ୍କୁ ଭଲଦୃଷ୍ଟିରେ ଦେଖୁ ନ ଥିଲେ। ବରଂ ଅସଫ ଖାଁ ପର୍ତ୍ତୁଗୀଜଙ୍କ ବ୍ୟବସାୟ ପାଇଁ ଅଗ୍ରାହୀ ଥିଲେ ଓ ସେମାନଙ୍କ ସହିତ ବେଶି ଖୁସି ଥିଲେ। ଆଉ ପର୍ତ୍ତୁଗୀଜମାନେ ବ୍ରିଟିଶରମାନଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ। ରୋ ଙ୍କ ପ୍ରେରିତ ଉପହାର ସବୁ ମଧ୍ଯ ଉଚ୍ଚକୋଟୀର ନ ଥିଲା। ରୋ ଉତ୍ତରରେ କହିଲେ କି ମୋ ମାଷ୍ଟ ଜାଣିଛନ୍ତି କି ସମ୍ରାଟ ସାରା ଏଶିଆର ମାଲିକ। ତାଙ୍କୁ କୌଣସି ଦାମୀ ଉପହାର ଦେବା ଅର୍ଥ ହୀରା ସମୁଦ୍ରରେ ଫୋପାଡ଼ିଲା ପରି ହେବ।

୧୬୧୬ରେ ଜାହାଙ୍ଗୀର ରାଜସ୍ଥାନର ଆଜମୀରରେ ଥିଲେ। ସାର ଥମାସ ରୋ ପ୍ରଥମ ବ୍ରିଟିଶ ରାଜଦୂତ ମୋଗଲ ଦରବାରକୁ ଆସିଥିଲେ। ସମ୍ରାଟଙ୍କୁ ନିଜର ଉପଯୁକ୍ତ ପରିଚୟ ପତ୍ର ଦେଇ ସାରିବା ପରେ ସେ ୩ ବର୍ଷ ଧରି ପାହାଡ଼, ବଣ, ଜଙ୍ଗଲରେ ଘୁରି ବୁଲିଲେ। ସେ ମାଣ୍ଡୁ, ମାଲୱା ଓ ପରିଶେଷରେ ଗୁଜରାଟର ଅହମଦାବାଦରେ ପହଞ୍ଚିଲେ।

ରୋ ଙ୍କର ୩ ବର୍ଷର ରହଣି ଭିତରେ ଜାହାଙ୍ଗୀରଙ୍କର ଅତି ନିକଟତର ହୋଇଗଲେ। ତାଙ୍କ ସାନିଧ ଲାଭ କଲେ। କିନ୍ତୁ ମୋଗଲ ସାମ୍ରାଜ୍ୟର ଟିପ୍ପଣୀ ଭିତରେ ତାଙ୍କ ରହଣିର କୌଣସି ଲେଖା ନାହିଁ।

ରୋ ଙ୍କ ପୂର୍ବରୁ ଇଂରେଜ ବ୍ୟବସାୟୀ ଓ ଭ୍ରମଣକାରୀମାନେ ମୋଗଲ ଦରବାରକୁ ଆସିଥିଲେ। ସର୍ବପ୍ରଥମ ଥିଲେ ଉଇଲିୟମ ହକିନ୍ସ – ଇଷ୍ଟ ଇଣ୍ଡିଆ କଂପାନୀର ପ୍ରତିନିଧି। ୧୬୦୯ରେ ରାଜା ଜେମସ୍‌ଙ୍କର ଏକ ଚିଠି ଧରି ମୋଗଲ ଦରବାରକୁ ଆସିଥିଲେ। ଲେଭାଣ୍ଟ ବ୍ୟବସାୟର ସେ ଜଣେ ପୁରୁଖା ଲୋକ। ତୁର୍କୀ ଓ ପର୍ଶିୟାନ ଭାଷାରେ ଦକ୍ଷତା ଥିବାରୁ ଜାହାଙ୍ଗୀରଙ୍କ ସହିତ ସଂପର୍କ ରଖି ପାରିଲେ। ଜାହାଙ୍ଗୀର ତାଙ୍କୁ ୪୦୦ ଲୋକଙ୍କର ମାନସୁବେଦାର ଭାବରେ ନିଯୁକ୍ତି ଦେଲେ– ଡାକିଲେ ଇଂଲିଶ ଖାନ୍। ହକିନ୍ସ ବ୍ୟବସାୟ ପାଇଁ ଅନୁମତି ପାଇଲେ ନାହିଁ କାରଣ ପର୍ତ୍ତୁଗୀଜମାନେ ଜାହାଙ୍ଗୀରଙ୍କୁ ଡରାଇ ଦେଇଥିଲେ କି ବ୍ରିଟିଶରମାନେ ମୋଗଲ ସାମ୍ରାଜ୍ୟର ବନ୍ଦର ସବୁ ଅଧିକାର କରିବା ଇଚ୍ଛାରେ ଅଛନ୍ତି।

ପ୍ରକୃତରେ ଜାହାଙ୍ଗୀରଙ୍କର ଜଳଯୁଦ୍ଧର କୌଣସି ଆଗ୍ରହ ନ ଥିଲା। କେବଳ ଆରବିୟାନ ସମୁଦ୍ରକୁ ରକ୍ଷା କରିବା ତାଙ୍କର ଦାୟିତ୍ୱ ଥିଲା – ଦୀର୍ଥଯାତ୍ରୀଙ୍କୁ ରକ୍ଷା କରିବା ପାଇଁ। ସେତେବେଳେ ଆରବିୟାନମାନେ ଏହାକୁ ଅଧିକାର କରିଥିଲେ। ତା' ଛଡ଼ା ସୁରଟରରେ ଥିବା ଭାରତୀୟ ବ୍ୟବସାୟୀମାନେ ବ୍ରିଟିଶରମାନଙ୍କ ସହିତ କୌଣସି ବ୍ୟବସାୟଗତ ସଂପର୍କ ରଖିବାକୁ ଇଚ୍ଛା କରୁ ନ ଥିଲେ। ୧୬୧୧ରେ ହକିନ୍ସ ଖାଲି ହାତରେ ଫେରିଗଲେ। ପରେ ପରେ ଆସିଲେ ପଲ କ୍ୟାନିଙ୍ଗ ଓ ଉଇଲିୟମ ଏଡ଼ୱାଡ଼। କ୍ୟାନିଂ ଜାହାଙ୍ଗୀରଙ୍କୁ ପ୍ରଭାବିତ କରିପାରିଥିଲେ। ଏପାଖେ ଆରବିୟାନ ସମୁଦ୍ର ଉପରୁ ପର୍ତ୍ତୁଗୀଜମାନଙ୍କର ଅଧିକାର ଚାଲିଯାଇଁ ବ୍ରିଟିଶର ହାତକୁ ଥିଲା ୧୬୧୨ରେ। ଦୁଇଜଣଙ୍କ ମଧ୍ୟରେ ଜଳଯୁଦ୍ଧ ହେଲା। ଶେଷରେ ବ୍ରିଟିଶମାନେ ଜିତିଲେ।

ସେହି ସମୟକୁ ପର୍ତ୍ତୁଗୀଜମାନେ ଗୋଟିଏ ଭାରତୀୟ ଜାହାଜକୁ ପର୍ତ୍ତୁଗୀଜ ଲାଇସେନ୍ସ ପାଇଁ ମଧ୍ୟ ସମୁଦ୍ର ଭିତରେ ଧରି ରଖିଲେ। ସେଥିରେ ଅନେକ ଜିନିଷ ବୋଝେଇ ହୋଇ ଆସୁଥିଲା। ଏଥିରେ କ୍ଷୁବ୍ଧ ହେଲେ ଜାହାଙ୍ଗୀର ବିମାତା ସଲିମା ବେଗମ। ତାଙ୍କର ଏ ବ୍ୟବସାରେ ଅନେକ ଆଗ୍ରହ ଥିଲା। ଜାହାଙ୍ଗୀରଙ୍କ ପର୍ତ୍ତୁଗୀଜକୁ

ବହୁତ ଭାରି କ୍ଷତିପୂରଣ ଦାବି କଲେ । ଅନ୍ୟଥା ଫାଦର ଜେରୋମ ଜାଭିୟରଙ୍କୁ ବନ୍ଦୀ କଲେ । ଡାମନ ଦଖଲ କଲେ । Jesuits କାଢ଼ି ନିଆଗଲା । କାମ ବ୍ୟାନ କରିଦିଆଗଲା । ଏ କାର୍ଯ୍ୟକଳାପର ପର୍ତ୍ତୁଗୀଜମାନେ ଶାନ୍ତି ପ୍ରତିଷ୍ଠା ପାଇଁ ବାଧ ହେଲେ । ଅନେକଦିନ ଧରି ଆଲୋଚନା ପରେ ପର୍ତ୍ତୁଗୀଜ କ୍ଷତିପୂରଣ ଦେବାକୁ ରାଜି ହେଲେ ।

ଏହା ରୋ ଙ୍କ ପାଇଁ ଏକ ଅନୁକୂଳ ବାତାବରଣ ଥିଲା । ମୋଗଲ ସମ୍ରାଟଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଉପଯୁକ୍ତ ଥିଲା । ହକିନ୍ସ ଥିଲେ କେବଳ ବ୍ୟବସାୟୀଙ୍କ ପ୍ରତିନିଧି । ରୋ କିନ୍ତୁ ବ୍ରିଟିଶ ରାଜଦୂତ । ବ୍ରିଟେନ୍‌ରେ ତାଙ୍କର ନିଜସ୍ୱ ପ୍ରତିଷ୍ଠା ଥିଲା ।

୧୬୧୫ ଫେବୃୟାରୀ ୨ ରେ ରୋ ଓ ତାଙ୍କ ଲୋକେ ଇଂଲଣ୍ଡରୁ ବାହାରି ୧୮ ସେପ୍ଟେମ୍ବରରେ ସୁରଟରେ ପହଞ୍ଚିଲେ । ଅହମଦାନଗରରୁ ରୋ ତାଙ୍କ ଦେଶକୁ ଫେରିଲେ । ସମ୍ରାଟ ରାଜା ଜେମସ୍‌ଙ୍କୁ ଏକ ଚିଠି ଲେଖିଲେ । ''ହେ ରାଜନ୍ ! ରାଜବଂଶୋନୁଭବ, ମିଲିଟାରୀ ଟେନ୍ନିଂ ପ୍ରାପ୍ତ ଓ ମାନ୍ୟତା ଓ ନ୍ୟାୟରେ ସହିତ ରାଜା ବୋଲି ସମ୍ବୋଧନ କରିଥିଲେ । ରୋ ଙ୍କ ପ୍ରସ୍ଥାନ ପରେ ଜାହାଙ୍ଗୀର ନିଜେ ଗୁଜରାଟରେ ୨ ବର୍ଷ ରହଣିପରେ ଆଗ୍ରା ଯିବା ପାଇଁ ଯୋଜନା କଲେ । କିଛିଦିନ କାମ୍ବେରେ ରହି, ଜଳଯାତ୍ରା ପାଇଁ ସମୁଦ୍ରରେ କିଛି ସମୟ ପାଇଁ ଘୁରି ବୁଲିଲେ । ସେଠାରୁ ଗଲେ ଅହମଦାବାଦ । ସେଠାକାର ରହଣି ଥିଲା ଅପ୍ରୀତିକର । ଜାହାଙ୍ଗୀର ଓ ଶାହାଜାଁ ଦୁହେଁ ସଂକ୍ରାମିତ ହେଲେ ଜ୍ୱରରେ । ସେ ସମୟରେ ବୁବୋନିକ ପ୍ଲେଗର ସଂକ୍ରମଣରେ ଭାରତବର୍ଷ ଆଘାତ ପାଇଲା । ଆରମ୍ଭ ହେଲା ୧୬୧୬ରେ ଆଉ ୧୬୧୮ ପର୍ଯ୍ୟନ୍ତ ଏହାର ପ୍ରଭାବ ସରି ନଥାଏ । ୧୬୧୯ର ପ୍ରଥମ ଭାଗରେ ଆଗ୍ରାରେ ଦିନକୁ ଶହେ ଲୋକଙ୍କର ମୃତ୍ୟୁ ହେଉଥିଲା । ସେଥିପାଇଁ ଜାହାଙ୍ଗୀର ଆଗ୍ରା ନ ଯାଇଁ ଫତେପୁର ସିକ୍ରିରେ କିଛି ଦିନ ରହିଗଲେ । ଆଗ୍ରାର ଜଳବାୟୁ ଅତି ଗରମ ଥିବାରୁ ଜାହାଙ୍ଗୀର କୌଣସି ଏକ ଶୀତଳ ଜାଗାରେ ରାଜଧାନୀ ବନାଇବାର ଯୋଜନା କରୁଥିଲେ । କିନ୍ତୁ ଉପଯୁକ୍ତ ଜାଗାର ଅଭାବରେ ଆରମ୍ଭ କରି ପାରିଲେ ନାହିଁ । ଅତ୍ୟଧିକ ଗରମ ହେବାରୁ ୧୬୧୯ରେ କାଶ୍ମୀର ଅଭିମୁଖେ ଯାତ୍ରା କଲେ । ସମ୍ରାଟ ଭାବରେ କାଶ୍ମୀର ଯାତ୍ରା ତାଙ୍କର ପ୍ରଥମ ହିଁ ଥିଲା । ସାମ୍ରାଜ୍ୟରେ ସବୁକିଛି ଶାନ୍ତିପୂର୍ଣ୍ଣ ଥିଲା । ସେଥିପାଇଁ ସେ ସେଠାରେ କାଶ୍ମୀର ଭାଲିରେ ଅକ୍ଟୋବର ୨୦,

୧୬୨୦ ପର୍ଯ୍ୟନ୍ତ ରହିଲେ। ଅତି ଭଲ ପାଇଲେ। କାରଣ ଅତିରିକ୍ତ କଡ଼ାମଦ୍ୟପାନ ଓ ଅଫିମର ପ୍ରଭାବ ଖରାଦିନେ ଭାରତରେ ଦେହର ଉତ୍ତାପ ବଢ଼ି ଯାଇଥିଲା। କାଶ୍ମୀରରେ ଥିଲାବେଳେ ସେ ଆଜମା ରୋଗରେ ଆକ୍ରାନ୍ତ ହେଲେ।

ନୁରଜାହାନଙ୍କ ଯତ୍ନ, ସମବେଦନା ପାଇଁ ତାଙ୍କ ପିଇବାର ପରିମାଣ କମାଇ ଦେଲେ। ଆସ୍ତେ ଆସ୍ତେ ଭଲ ହୋଇ ଆସିଲେ। ସେଥିପାଇଁ ନୁରଜାହାନ ଏକ ଭୋଜିରେ ଆୟୋଜନ କଲେ – ଖର୍ଚ୍ଚ ହେଲା ଦୁଇ ଲକ୍ଷ ଟଙ୍କା।

୧୬୧୧ ରୁ ୧୬୨୦ ପର୍ଯ୍ୟନ୍ତ ନୁରଜାହାନଙ୍କ ତତ୍ତ୍ୱାବଧାନରେ ଥିଲେ। ଶାସନ କଳ ହେଉ ବା ନିଜର ପାରିବାରିକ ଯନ୍ତ୍ରଣା ହେଉ ଶାହାଜାହାନ ମୁକ୍ତ ଥିଲେ। ୧୬୨୦ରେ ନୁରଜାହାନଙ୍କ ପ୍ରଭାବ କମି ଆସିଲା। ୧୬୨୧ରେ ନୁରଜାହାନଙ୍କ ମା ଅସମତ ବେଗମ ମରିଗଲେ। ଇତ୍ମିଦ୍‌-ଉଦ-ଦଉଲା ଜାନୁୟାରୀ ୧୬୨୨ରେ ମରିଗଲେ। ବାପା ମାଙ୍କ ମୃତ୍ୟୁ ପରେ ତାଙ୍କର ପ୍ରଭାବ ହୁଗୁଳା ହୋଇଗଲା। ଜାହାଙ୍ଗୀରଙ୍କ ମୃତ୍ୟୁ ହେଲା। ଶାହାଜାହାଁ ରାଜଗାଦିରେ ବସିଲେ ଆଉ ଶାସନକଳର ଦାୟିତ୍ୱ ତାଙ୍କୁ ଦେଲେ ନାହିଁ। ଅସଫ ଖାଁ କାହାକୁ ସମର୍ଥନ କରିବେ – ଭଉଣୀ ନୁରଜାହାଁଙ୍କୁ ନା ଜାମାତା ଶାହାଜାହାଁଙ୍କୁ ?

ଏଇ ଅବସ୍ଥାରୁ ମୁକୁଳିବା ପାଇଁ ତାଙ୍କ ଝିଅ ଲାଡ୍‌ଲି ବେଗମର ବିବାହ ସାହାୟାର ସହିତ କରାଇଲେ। ଶାହାଜାହାଁ ଏପରି କିଛି ଆଶା କରୁଥିଲେ। ନୁରଜାହାଁ ଅସଫ ଖାଁଙ୍କୁ କିଛି ସମ୍ଭାଳି ନେଇ ବିଦ୍ରୋହ ଦମନ କଲେ। ନୁରଜାହାଁ ଚାହିଁଥିଲେ ଶାହାଜାଁଙ୍କୁ ପୁରା ନଷ୍ଟ କରି ଦେଇ ପାରିଥାନ୍ତେ କିନ୍ତୁ ତାହା ସେ କଲେନି।

ଭାରତରେ ଇଷ୍ଟ ଇଣ୍ଡିଆ କମ୍ପାନୀ ୧୬୦୦ ଖ୍ରୀଷ୍ଟାବ୍ଦରେ ବ୍ୟବସାୟ ଆରମ୍ଭ କଲେ। ୧୫୧୦ବେଳକୁ ପର୍ତ୍ତୁଗୀଜମାନେ ଭାରତରେ ପ୍ରତିଷ୍ଠିତ ବ୍ୟବସାୟୀ। କିନ୍ତୁ ମୋଗଲ ଦରବାରରେ ସେମାନଙ୍କର କୌଣସି ସ୍ଥାନ ନ ଥିଲା କହିଲେ ଚଳେ। ଗୋଟିଏ ଛୋଟ ଚିତ୍ରପଟରୁ ଜଣାଯାଏ କି ସେ ସାରା ବିଶ୍ୱରେ ରାଜୁତି କରୁଛନ୍ତି। ସେଇ ଚିତ୍ରପଟ ତଳକୁ ଇଂଲଣ୍ଡ ରାଜା ଜେମ୍‌ସ-ପ୍ରଥମଙ୍କର ଛୋଟ ଫଟଟିଏ। ଜାହାଙ୍ଗୀର ଚିତ୍ରପଟ ପାଖରେ ତାଙ୍କ ଚିତ୍ରପଟ ଫିକାଦେଖାଯାଉଥିଲା। ଜାହାଙ୍ଗୀରଙ୍କ ତୁଳନାରେ ସେ କମ୍ ମୁଣିମୁକ୍ତ ପ୍ରଭୃତି ପିନ୍ଧିଥିଲେ। ଖୁରାମ (ଶାହାଜାହାଁ) ପୁଣିଥରେ ଦାକ୍ଷିଣାତ୍ୟରେ ତାଙ୍କ ବାପାଙ୍କ ଶତ୍ରୁଙ୍କୁ ମୁକାବିଲା କଲେ।

ଶହାଜାହାଁ ଦାକ୍ଷିଣାତ୍ୟରେ ରାଜ୍ୟଶାସନର ମନୋନିବେଶ କଲାବେଳେ, ଜାହାଙ୍ଗୀର ଆଗ୍ରାଠାରେ ସମ୍ରାଟଙ୍କ ରାଜ୍ୟ ନୂରଜାହାଁଙ୍କର ପ୍ରରୋଚନାରେ ଚଳାଇଥିଲେ। ଶାହାଜାହାଁଙ୍କ ପାଇଁ ତାହାହିଁ ଚିନ୍ତାର ବିଷୟ ଥିଲା। ଜାହାଙ୍ଗୀରଙ୍କ ଶରୀର ମଧ ଭଲଆଡ଼କୁ ଗତି କରୁଥିଲା।

ଶାହାଜାହାଁ (ଗୁଲାମ) ରାଜସ୍ଥାନର ପାର୍ବତ୍ୟ ଅଞ୍ଚଳକୁ ଯିବା ସମୟରେ ରାସ୍ତାରେ ଅନେକ ମିଲିଟାରୀ କ୍ୟାମ୍ପ ବସାଇଥିଲେ। ଖୁରାମଙ୍କ ସ୍ୱଭାବ କ୍ରୁର ଯେ କି ନିଜର ସୈନ୍ୟମାନଙ୍କୁ ମଧ ଭୋକ ଉପାସରେ ରଖି ଦିଅନ୍ତି। ମେୱାର ଆକ୍ରମଣ କରିବାପରେ ରାଣା ସନ୍ଧିପ୍ରସ୍ତାବ ଦେଲେ। ଶତ୍ରୁର ସନ୍ଧି ପ୍ରସ୍ତାବକୁ ଅସ୍ୱୀକାର କରିବା ଉଚିତ ନୁହେଁ। ଜାହାଙ୍ଗୀରଙ୍କୁ ଆଖିରେ ରଖି ସେ ରାଣାଙ୍କ ସହ କୌଣସି ସର୍ତ୍ତ ରଖିଲେ ନାହିଁ। ରାଣାଙ୍କ ପୁଅ କରନ ସିଂଙ୍କୁ ସମ୍ରାଟଙ୍କ ପାଖରେ ପେଶ କରିବାପାଇଁ ସର୍ତ୍ତ ରଖିଲେ। ସର୍ତ୍ତ ଅନୁଯାୟୀ କରଣ ସିଂଙ୍କୁ ଜାହାଙ୍ଗୀରଙ୍କ କୋର୍ଟରେ ହାଜିର କରାଗଲା। ତାର ବ୍ୟବହାର, ଚାଲିଚଳଣରେ ଜାହାଙ୍ଗୀର ବହୁତ ସନ୍ତୁଷ୍ଟ ହେଲେ। ଜାହାଙ୍ଗୀର ଯେଉଁଟା ବାହୁବଳରେ କରିପାରି ନଥିଲେ, ଶାହାଜାହାଁ ତାଙ୍କ ଚତୁରତା ବଳରେ କରିପାରିଲେ– ମେବାର ରାଣାଙ୍କ ସହ ସନ୍ଧି।

ମେୱାର କ୍ୟାମ୍ପ ବେଳେ ୨ ଏପ୍ରିଲ ୧୬୧୪ରେ ମମତାଜ ଦୁଇ କନ୍ୟା ଜନ୍ମଦେଲେ ଓ ୧୬୧୫, ୩୦ ମାର୍ଚ୍ଚରେ ତାଙ୍କର ପ୍ରଥମ ପୁତ୍ର ଦାରା ସୁଖୋ ଜନ୍ମନେଲେ। ଦରବାରର ଲୋକେ ଓ ସର୍ବସାଧାରଣ ଖୁସି ମନାଇଲେ। କନ୍ୟା ଜନ୍ମ ନେଲେ କେବଳ ମହଲ ଓ ହାରେମ ସ୍ତ୍ରୀ ଲୋକମାନେ ଖୁସି ମନାନ୍ତି। କିନ୍ତୁ ରାଜପୁତ୍ର ହେଲେ ସାରା ଦରବାର ନାଚନ୍ତି। ଆନନ୍ଦର ଲୁଆର ଛୁଟେ। ନାଚ ହୁଏ, ଗୀତ ବାଜେ। ଏ ଆନନ୍ଦ ଉତ୍ସବ ସତ୍ତ୍ୱେ ମମତାଜ ଓ ଶାହାଜାହାଁ ଶାନ୍ତିରେ ସେମାନଙ୍କର ପାରିବାରିକ ଜୀବନ କଟାଇପାରିଲେ ନାହିଁ। କାରଣ ଜାହାଙ୍ଗୀର ତାଙ୍କ ବଡ଼ପୁଅ ସୁଲତାନ ପରଭେଜଙ୍କୁ ଦାକ୍ଷିଣାତ୍ୟର ଦାୟିତ୍ୱ ନେବାକୁ ପଠାଇଥିଲେ। ସେ ଦାୟିତ୍ୱ ପରଭେଜ ସମ୍ଭାଳି ପାରିଲେ ନାହିଁ। ସେଥିପାଇଁ ଦକ୍ଷ ଶାହାଜାହାଁଙ୍କୁ ପୁଣିଥରେ ଦାକ୍ଷିଣାତ୍ୟ ଦାୟିତ୍ୱରେ ପଠାଇଲେ। ଅହମଦନଗର, ବିଜାପୁର, ଗୋଲକୋଣ୍ଡା ରାଜ୍ୟସବୁ ନିଜ ନିଜ ଭିତରେ ଲଢ଼ାଇ କରୁଥିଲେହେଁ ମୋଗଲ ସାମ୍ରାଜ୍ୟକୁ ଥରହର କରି ରଖିଥିଲେ। ଅହମଦାନଗରର ସୁଲତାନ ମଲିକ ଅମ୍ବର ମୋଗଲମାନଙ୍କ ପାଖରୁ

ନିଜ ରାଜ୍ୟ ଫେରାଇବା ଆଣିବା ଉଦ୍ଦେଶ୍ୟରେ ସବୁବେଳେ ତାଙ୍କ ପାଖ ରାଜ୍ୟମାନଙ୍କୁ ଆମନ୍ତ୍ରଣ କରୁଥିଲେ । ଏସବୁ ବିଦ୍ରୋହର ଦମନ ପାଇଁ ସେ ଜାହାଙ୍ଗୀର ଶାହାଜାହାଁଙ୍କୁ ଦାକ୍ଷିଣତ୍ୟ ପଠାଇଲେ ।

ମେଓ୍ବାର ସହ ସନ୍ଧିପରେ, ଜାହାଙ୍ଗୀର ଦରବାରରେ ପହଞ୍ଚିବା ପରେ ଖୁରାମ ବାପାଙ୍କୁ ଏକ ମୂଲ୍ୟବାନ ପଥର (ଯାହାରଦାମ ପ୍ରାୟ ଟ.୬୦,୦୦୦ ହେବ) ଭେଟି ଦେଇଥିଲେ । ଜାହାଙ୍ଗୀର ଇଚ୍ଛା କଲେ ସେ ପଥରକୁ ନିଜର ବାହୁରେ ପିନ୍ଧିବେ । କିନ୍ତୁ ଭାବିଲେ କି ସେହିପରି ଦୁଇଟି ଉଜ୍ଜ୍ୱଳ ମନୋହର ସୁନ୍ଦର ମୁକ୍ତା (ସେଇ ଆକାରର) ଦେଇ ପିନ୍ଧିଲେବହୁତ ସୁନ୍ଦର ଦେଖାଯିବ । ଶେଷରେ ବହୁତ ଖୋଜା ହେଲାପରେ ସେଟ କରିବାପାଇଁ ଗୋଟିଏ ମୁକ୍ତା ମିଳିଲା । ଚିନ୍ତାରେ ପଡ଼ିଲେ । ଆଉଟି କେଉଁଠି ମିଳିବ ? ଏହିପରି ଚିନ୍ତା ଥିବାବେଳେ ଖୁରାମ ମନେ ପକାଇଲେ କି ଆକବରଙ୍କ ରାଜୁତିବେଳେ ସେ ଯେତେବେଳେ ପିଲାଥିଲେ ସମାନ ଅନୁପାତର ମୁକ୍ତାସେ କେଉଁ ଏକ ମୁଣ୍ଡବନ୍ଧା ବ୍ୟାଣ୍ଡ ଭିତରେ ଦେଖିଥିଲେ । ମିଳିଗଲା ସେଇ ପୁରୁଣା ଅଳଙ୍କାର ଭିତରୁ ଏକା ଅନୁପାତର ଖଣ୍ଡେ ମୁକ୍ତା । ସମସ୍ତେ କାବା ହୋଇଗଲେ । ଆଶ୍ଚର୍ଯ୍ୟ ହେଲେ ଖୁରାମ ମନେ ରଖିବାର ବୁଦ୍ଧି ଉପରେ । ପିଲାଦିନୁ ସେ ଜାଣିଥିଲେ କି ମୂଲ୍ୟବାନ ପଥର, ହୀରା, ନୀଳା, ମୋତି ମାଣିକ୍ୟ ସଂକ୍ରାନ୍ତରେ ତାଙ୍କର କେତେ ନଜର । କେତେ ସେ ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ ।

ମଲ୍ଲିକ ଅମ୍ବରଙ୍କୁ ଦମନ କରିବାପାଇଁ ଜାହାଙ୍ଗୀର ଶାହାଜାହାଁଙ୍କୁ ଦାକ୍ଷିଣାତ୍ୟ ଯିବାପାଇଁ ଆଦେଶ ଦେଲେ । ସମୟ ବୋଧେ ଠିକ୍ ନଥିଲା । ସେତିକିବେଳେ ଶାହାଜାହାଁଙ୍କ ଝିଅ ହୁର-ଆଲ-ନିସା ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲା । ମମତାଜ ନିଜେ ଆଠମାସର ଗର୍ଭବତୀ । କନ୍ୟାର ମୃତ୍ୟୁରେ ଶାହାଜାହାଁ ଓ ମମତାଜ ଦୁହେଁ ଭାଙ୍ଗିପଡ଼ିଲେ । ନିଜେ ଜାହାଙ୍ଗୀର ମଧ୍ୟ ଏ ଘଟଣାକୁ ସହ୍ୟ କରିପାରିଲେ ନାହିଁ । ଏପରିକି ନିଜେ ଲେଖିବାର କ୍ଷମତା ମଧ୍ୟ ହରାଇ ବସିଲେ । ଶେଷରେ ସେ ଇତିମଦ୍-ଉଦ୍-ଦୁଆଲାଙ୍କୁ (ନୁରଙ୍କ ବାପା) ମନ ଦୁଃଖର ବର୍ଣ୍ଣନା ଲେଖିବାକୁ ଅନୁରୋଧ କଲେ । ନାତୁଣୀର ମୃତ୍ୟୁ ଦିବସକୁ (ପ୍ରତ୍ୟେକ ବୁଧବାର) 'ହଜିବା ଦିନ' ବୋଲି ଘୋଷଣା କଲେ । ତିନି ସପ୍ତାହ ପରେ ମମତାଜ ଦ୍ୱିତୀୟ ପୁତ୍ରକୁ ଜନ୍ମ ଦେଲେ । ନାଁ ରଖିଲେ ସାହ ସୁଜା । ପୁତ୍ର ଜନ୍ମର କିଛିଦିନ ପରେ

ମମତାଜ ମଧ୍ୟ ଶାହାଜାହାଁଙ୍କ ସଙ୍ଗେ ଦାକ୍ଷିଣାତ୍ୟ ଯାତ୍ରା କଲେ। ତାପ୍ତି ନଦୀ କୂଳରେ ବରହାନପୁର ସହରରେ ତାଙ୍କର ରହିବାର ଠିକଣା ହୋଇଥିଲା।

ଜୁନ ୧୬୨୧ରେ ମମତାଜଙ୍କ ଅଷ୍ଟମ ଗର୍ଭରେ ଗୋଟେ କନ୍ୟା ଜାତ ହେଲା। ନାଁ ଦେଇଥିଲେ ସୋରେୟା ବାନୁ। ଏ ଘଟଣା ପାଇଁ ଶାହାଜାହାଁ ଖୁସି ହେବା କଥା। କିନ୍ତୁ ତାଙ୍କ ଚିନ୍ତାର ଅନେକ କାରଣ ଥିଲା ଏ ସମୟକୁ। ପ୍ରଥମ କାରଣ; ସେ ଦାକ୍ଷିଣାତ୍ୟରେ ଥିବାବେଳେ ନୁରଜାହାଁଙ୍କ ପରାମର୍ଶରେ ସାହିୟାର (ଶାହାଜାହାଁଙ୍କ ଛୋଟ ଭାଇ) ସହିତ ଲାଲଡିଙ୍କ ଆଗ୍ରାରେ ବାହାଘର ହୋଇସାରିଥିଲା। ଆଉ ଏକ କାରଣ ଥିଲା ଜାହାଙ୍ଗୀର ପୁଣି ଥରେ ଆଜ୍‌ମା ରୋଗରେ ଆକ୍ରାନ୍ତହେଲେ। ଅନେକ ଯତ୍ନ ଦେଇ ସେବା କଲେ ନୁରଜାହାଁ ମଦ କମାଇଦେଲେ। ଉପଯୁକ୍ତ ଖାଦ୍ୟ ଖାଇବାକୁ ଦେଲେ। ସେଇ ସମୟକୁ ତାଙ୍କ ମା ମଧ୍ୟ ମୃତ୍ୟୁବରଣ କଲେ।

ତିନିମାସ ପରେ ନୁରଜାହାଁ ଓ ଜାହାଙ୍ଗୀର ଥଣ୍ଡା ଜାଗାକୁ ଯିବାପାଇଁ ମନସ୍ଥ କଲେ। ଭାଗ୍ୟକୁ ତାଙ୍କ ବାପା ମଧ୍ୟ ମା' ବିୟୋଗରେ ବେମାର ପଡ଼ିଲେ। ସେ ଥିଲେ ଦରବାରର ମଝିଖୁଣ୍ଟ। ଜାହାଙ୍ଗୀର ଓ ନୁରଜାହାଁ ତାଙ୍କର ଅନେକ ଯତ୍ନ ନେଲେ। ଶେଷରେ ୧୬୨୨ ଜାନୁୟାରୀରେ ଭାରତକୁ ଆସିବାର ୪୪ ବର୍ଷ ପରେ ଦେହତ୍ୟାଗ କଲେ। ଦୁଃଖରେ ବୁଡି ରହିଲେ ନୁରଜାହାଁ। ଶେଷରେ ଆଗ୍ରାରେ ଧଳା ମାର୍ବଲ ପଥରରେ ଏକ ସମାଧି ବନାଇଲେ। ସପ୍ତାହକ ପରେ ଆଉ ଏକ ଅତ୍ୟାଶ୍ଚର୍ଯ୍ୟ ମୃତ୍ୟୁ ଖବର। ଖୁରାମଙ୍କ (ଶାହାଜାହାଁଙ୍କ) ପାଖରୁ ଚିଠି ଆସିଲା ଖୁସୁରାଓଙ୍କ ମୃତ୍ୟୁ ହୋଇଛି। ସେ ଚିଠିରେ ଶାହାଜାହାଁଙ୍କ ଦସ୍ତଖତ ନଥିଲା। କିନ୍ତୁ ଦସ୍ତଖତ କରିଥିଲେ ତାଙ୍କ ନୋବେଲମାନେ। ଏ ଦୁଃଖକୁ ସହ୍ୟ କରିବାପାଇଁ ଶରୀର ବ୍ୟତିତ ମନର ସାହସ ଓ ଧୈର୍ଯ୍ୟ ମଧ୍ୟ ନଥିଲା। ଆଉ ବିଶ୍ୱାସ ଥିଲା କି (ସମସ୍ତଙ୍କର ମଧ୍ୟ ସେଇ ବିଶ୍ୱାସ) ଶାହାଜାହାଁ ସାମ୍ରାଜ୍ୟ ପାଇବା ଉଦ୍ଦେଶ୍ୟରେ ଖୁସୁରାଓଙ୍କୁ ହତ୍ୟା କରିଛି। ଏ ଘଟଣା ସତ୍ୟ ବୋଲି ପ୍ରତିପାଦିତ ହେଲା।

ଦୁଃଖ ଆଉ ରାଗର ବଶବର୍ତ୍ତୀ ହୋଇ ଜାହାଙ୍ଗୀର ବରହାନପୁର ନୋବେଲମାନଙ୍କୁ ଧିକ୍କାର କରି କହିଲେ ଏଡ଼େ ବଡ଼ ସତ୍ୟକୁ ସେମାନେ ଲୁଚାଇ ରଖିଲେ କାହିଁକି ? ଆଦେଶ ଦେଲେ ଖୁସୁରାଓଙ୍କ ମୃତଶରୀରକୁ କବରରୁ ବାହାର କରି ଆଲ୍ଲାବାଦ ପଠାଇ ଖୁସୁରାଓଙ୍କ ମା'ଙ୍କ କବର ନିକଟରେ କବର ଦିଆଯାଉ।

ଆଉ କହିଲେ ଖୁସୁରାଓଙ୍କ ବିଧବା ପତ୍ନୀ ଓ ପୁଅକୁ ରାଜକୀୟ ଦରବାର ଲାହୋରକୁ ପଠାଯାଉ। ଆଉ ଏକ ଅଘଟଣ। ୧୫୪୫ରେ ହୁମାୟୁନଙ୍କୁ ପୁନର୍ବାର ଭାରତ ସମ୍ରାଟ ହେବାରେ ସାହାଯ୍ୟ କରିଥିବାରୁ ସାହା ଆବାସଙ୍କୁ ପର୍ଶିୟା ଦାନ କରିଥିଲେ। ସେ ସାହା ଆବାସ ବର୍ତ୍ତମାନ କାନ୍ଧାହାର ଆକ୍ରମଣ କରିବା ପାଇଁ ବାହାରିଛନ୍ତି। କାନ୍ଧାହାର ମୋଗଲ ସାମ୍ରାଜ୍ୟ କାବୁଲଠାରୁ ୩୦୦ ମାଇଲ ଦୂରରେ ଅବସ୍ଥିତ। ଭୟ ଥିଲା କାଳେ ପର୍ଶିୟାନ ସାହା ଏଇ ସୁଯୋଗରେ ଭାରତ ଆକ୍ରମଣ କରିବେ। ମାର୍ଚ୍ଚ ୧୬୨୨ ଜାହାଙ୍ଗୀର ସୈନ୍ୟସାମନ୍ତ ଧରି ପର୍ଶିୟା ଆକ୍ରମଣ ଉଦ୍ଦେଶ୍ୟରେ ବାହାରିଲେ। ଶାହାଜାହାନଙ୍କୁ ମଧ୍ୟ ଏ ଆକ୍ରମଣରେ ସାମିଲ ହେବାପାଇଁ ନିମନ୍ତ୍ରଣ କଲେ। ଶାହାଜାହାନ ମଧ୍ୟ ଜାହାଙ୍ଗୀରଙ୍କ ନିର୍ଦ୍ଦେଶକ୍ରମେ ପର୍ଶିୟା ଆକ୍ରମଣ ଉଦ୍ଦେଶ୍ୟରେ ବାହାରିଲେ ବାରହାନପୁରରୁ। ସାଙ୍ଗରେ ଗର୍ଭବତୀ ସ୍ତ୍ରୀ ମମତାଜ। ବରହାନପୁରର ଉତ୍ତରପଶ୍ଚିମ ଦିଗର ୧୦୦ ମାଇଲ ଅତିକ୍ରମ କରି ମାଣ୍ଡୁରେ ପହଞ୍ଚିଲେ। ସେଠି ଥାଇଁ ଜାହାଙ୍ଗୀରଙ୍କୁ ଖବର ଦେଲେ କି ବର୍ଷାଋତୁ ସରିବା ପର୍ଯ୍ୟନ୍ତ ସେ ମାଣ୍ଡୁଠାରେ ହିଁ ଅପେକ୍ଷା କରିବେ। ଜାହାଙ୍ଗୀରଙ୍କ ମତରେ ଏହାଥିଲା ଏକ ଶହାଜାହାଁଙ୍କର ବାହାନା। ପ୍ରାୟ ସେତେବେଳକୁ ୨ ବର୍ଷର ଶିଶୁପୁତ୍ର ଉମିଦ୍-ବକ୍ସଙ୍କୁ (ଯେ କି କାଶ୍ମୀର ଉପତ୍ୟକାରେ ଜନ୍ମ ନେଇଥିଲେ) ସପ୍ତାହେ ଖଣ୍ଡେ ଆଗରୁ ହରାଇଥାନ୍ତି ଶାହାଜାହାନ।

ଶାହାଜାହାଁ ଆଉ କିଛି ଦାବି ପୂରଣ ପାଇଁ ଇଚ୍ଛା କଲେ। ଦାବି କଲେ କି ପୁରା କାନ୍ଧାହାର ଆକ୍ରମଣର ଦାୟିତ୍ୱ ତାଙ୍କୁ ଦିଆଯାଉ। ଦ୍ୱିତୀୟରେ ତାଙ୍କୁ ପଞ୍ଜାବର ଗଭର୍ଣ୍ଣର କରାଯାଉ। ପଞ୍ଜାବ ଗଭର୍ଣ୍ଣର ହେବାର ଯେତେ ଲୋଭ ନ ଥିଲା, ଲୋଭ ଥିଲା ରାଜପୁତଙ୍କର ରଥୋମ୍ବର ଦୁର୍ଗ। ଏ ଦୁର୍ଗକୁ ଆକବର ୫୦ ବର୍ଷ ତଳେ ଅଧିକାରକୁ ଆଣିଥିଲେ। ସେଇ ଦୁର୍ଗକୁ ଅଧିକାରକୁ ଆଣିବାପାଇଁ ଶାହାଜାହାଁଙ୍କର ଲକ୍ଷ୍ୟ ଥିଲା। ଫଳରେ ସେଠାରେ ମମତାଜଙ୍କ ସହ ପିଲାମାନଙ୍କୁ ଧରି ରହିପାରିବେ। ଆହୁରି ଏକ ବଡ଼ ଭୟଥିଲା କି କାନ୍ଧାହାର ଆକ୍ରମଣପାଇଁ ତାଙ୍କୁ ରାଜଧାନୀ ଆଗ୍ରାଠାରୁ ଦୂରରେ ରଖିବ। ସେ ପାଖେ ଆଗ୍ରାରେ ନୁରଜାହାଁଙ୍କ ପ୍ରଭାବ ମଧ୍ୟ ବଢ଼ିଚାଲିବ। ନୁରଜାହାଁ ତାଙ୍କର ବାପାଙ୍କ ସଂପତ୍ତି ସବୁ ପାଇସାରିଥିଲେ। ସାଧାରଣତଃ ପିତାଙ୍କ ସଂପତ୍ତି ସବୁ ସନ୍ତାନ ସନ୍ତତିମାନେ ପାଇବା କଥା। ଅପରନ୍ତୁ ନୁରଜାହାଁ ଦରବାର

କାର୍ଯ୍ୟକଳାପ ସବୁ ହାତକୁନେଇ ସାରିଲେଣି। ଏହି ସମୟରେ ଯଦି ଶାହାଜାହାଁ ମମତାଜଙ୍କୁ ନେଇ ଯୁଦ୍ଧକ୍ଷେତ୍ରକୁ ଯା'ନ୍ତି, ତା'ହେଲେ ନିର୍ଦ୍ୱନ୍ଦରେ ନୁରଜାହାଁଙ୍କ ପ୍ରଭୁତ୍ୱ ବଢ଼ିଯିବ।

ଶାହାଜାହାଁଙ୍କ ଅନୁରୋଧକୁ ଜାହାଙ୍ଗୀର ଗ୍ରହଣ କରିପାରିଲେ ନାହିଁ। ଜାହାଙ୍ଗୀର ଆହୁରି ମଧ ଖବର ପାଇଥିଲେ କି ସାହାୟାର ଓ ନୁରଙ୍କ ନାଁରେ ଥିବା ସବୁ ସଂପତ୍ତି ଶାହାଜାହାଁ ନିଜ ଅକ୍ତିଆରକୁ ନେଇଯାଇଛନ୍ତି। ଏ ବୈରାତ୍ମକ ଭାବନାକୁ ସେ ସହ୍ୟ କରିପାରିଲେନି। ଆଦେଶ ଦେଲେ ଯେତକ ସୈନ୍ୟସାମନ୍ତ ଯନ୍ତ୍ରପାତି, ଘୋଡ଼ାହାତୀ ଯାହାସବୁ କାନ୍ଧାହାର ଆକ୍ରମଣ ପାଇଁ ଶାହାଜାହାଁଙ୍କୁ ଦିଆଯାଇଛି ସେ ସବୁକୁ ଫେରାଇଦିଅନ୍ତୁ। ଅଧିକନ୍ତୁ ଶାହାଜାହାଁଙ୍କୁ ତାଙ୍କ ସହିତ ଦେଖା କରିବାକୁ ବାରଣ କଲେ। ଏଇ ରାଗ ମନୋଭାବ ନେଇ ପାଞ୍ଚବର୍ଷ ତଳେ ନେଇଥିବା ପ୍ରତିଜ୍ଞା ଭାଙ୍ଗିଲେ। ପାଞ୍ଚବର୍ଷ ତଳେ ସାହାଜାହାଁଙ୍କ ପୁଅ ସାହାସୁଜା ବେମାର ପଡ଼ିଥିଲେ। ସେତିକିବେଳେ ସେ ବନ୍ଧୁକ ଚାଳନା ଛାଡ଼ି ଦେଇଥିଲେ। ପ୍ରତିଜ୍ଞା ଭାଙ୍ଗି ସେ ପୁଣି ବନ୍ଧୁକ ଧରିବାକୁ ଇଚ୍ଛା କଲେ। ଅଗଷ୍ଟ ୧୬୨୨ରେ କାନ୍ଧାହାର ଅଭିଯାନର ଦାୟିତ୍ୱ ସେ ସାହାୟରଙ୍କୁ ଦେବାକୁ ଚାହିଁଥିଲେ। ଏ ଖବର ଶୁଣି ନୂରଜାହାଁ ତାଙ୍କ ସ୍ୱାମୀଙ୍କୁ ଏକ ମୂଲ୍ୟବାନ ଟର୍କିସ ପର୍ଲ ଉପହାର ଦେଇଥିଲେ।। ପରେ ପରେ ଜାହାଙ୍ଗୀର ୧୪ ବର୍ଷ ତଳେ ଜାଗିର ସୂତ୍ରରେ ଦେଇଥିବା ଶାହାଜାହାଁଙ୍କ ଜାଗିର ଛଡ଼େଇନେଇ ସାହିୟାରଙ୍କୁ ଦେଇଥିଲେ। ଏସବୁ ତାଙ୍କର ରାଗର ଲକ୍ଷଣ ଥିଲା। ଏସବୁକୁ ପର୍ଯ୍ୟାଲୋଚନା କରି ଶାହାଜାହାଁ ତାଙ୍କ ନିଜ ଭୁଲ ବୁଝିପାରିଲେ। ସେ ଭୂଲ ସ୍ୱୀକାର କରି ଜାହାଙ୍ଗୀରଙ୍କୁ ଚିଠି ଲେଖିଲେ। କିନ୍ତୁ ସେତେବେଳକୁ ଡେରି ହୋଇଯାଇଥିଲା। ଖୁସୁରାଓଙ୍କୁ ଯେଉଁ ଅନ୍ୟାୟ ଶାହାଜାହାଁ କରିଥିଲେ, ସେ ଘଟଣା ମନେପକାଇ ଜାହାଙ୍ଗୀର ଶାହାଜାହାଁଙ୍କ ପ୍ରତି କଠୋର ହୋଇଯାଇଥିଲେ। ଯଦିଓ ଏଇ ବୟସରେ ଜାହାଙ୍ଗୀର ନିଜେ ମଧ ତାଙ୍କ ବାପାଙ୍କ ବିରୁଦ୍ଧରେ ଏପରି ଅନ୍ୟାୟ କରିଥିଲେ। ଆଗ୍ରାର ରାଜକୋଷ କାନ୍ଧାହାର ଅଭିଯାନରେ ଖର୍ଚ୍ଚ ହେବାପାଇଁ ଆଗ୍ରାରୁ ଲାହୋରକୁ ସ୍ଥାନାନ୍ତରିତ ହେଉଥିବାର ଖବର ଶାହାଜାହାଁ ପାଇଲେ। ଏଣେ ଆସଫ ଖାଁ (ମମତାଜଙ୍କ ବାପା) ନିଜେ ତାଙ୍କ ବାପାଙ୍କ ସଂପତ୍ତିରୁ କୌଣସି ଭାଗ ପାଇ ନଥିଲେ। ତାଙ୍କର ଭୟ ଥିଲା କି ଆଗ୍ରା ରାଜଧାନୀ ଲାଡଲି (ନୁରଙ୍କ ନିଜ କନ୍ୟା)

ଓ ସାହାଯିର ଅଧିକାରୀ ହୋଇଯାଇପାରନ୍ତି ଆଉ ତାଙ୍କ କନ୍ୟା ମମତାଜ ଓ ଜାମାତା ଶାହାଜାହାଁ କିଛି ପାଇବେ ନାହିଁ। ଏସବୁ ଖବର ପାଇ ଶାହାଜାହାଁ ଜାନୁୟାରୀ ୧୬୨୩ରେ ମମତାଜ ଓ ପିଲାଙ୍କୁନେଇ ଆଗ୍ରା ଯିବାକୁ ଇଚ୍ଛା କଲେ। ସେତେବେଳକୁ ସେ ଗୁଜରାଟର ଗଭର୍ଣ୍ଣର ଥିଲେ ଆଉ ଭାବିଥିଲେ ଦାକ୍ଷିଣାତ୍ୟରୁ ମଧ୍ୟ ଅମିର ଓ ଫିସରମାନଙ୍କ ସମର୍ଥନ ମଧ୍ୟ ପାଇଯିବେ। ସେ ମାଣ୍ଡୁରୁ ଆଗ୍ରା ଯିବାକୁ ମନ କଲେ।

ଶାହାଜାହାଁଙ୍କ ଆସିବା ଖବର ପାଇ ବିବ୍ରତ ହେଲେ ଜାହାଙ୍ଗୀର। ରାଗରେ କହିଲେ; 'ମୋ ବିଦ୍ରୋହୀପୁତ୍ର ଅଭିଶପ୍ତ ଜୀବନର ରାସ୍ତା ବାଛିନେଇଛି। ମୁଣ୍ଡକୁ ତାର ନିଆଁ ଚଢ଼ିଯାଇଛି। ନିଜ ହାତରେ ନିଜ ପାଇଁ ଗାତ ଖୋଳୁଛି।' ସେ କ୍ରୋଧାନ୍ୱିତ ହୋଇ ଶାହାଜାହାଁଙ୍କୁ ସାମନା କରିବାକୁ ଆଗେଇଲେ। ଜାହାଙ୍ଗୀର ଶାହାଜାହାଁଙ୍କୁ "Bi-daulat-the wretch" ମଧ୍ୟ ସମ୍ବୋଧନ କଲେ। 'ଆଜି ପର୍ଯ୍ୟନ୍ତ କୌଣସି ରାଜା ତା' ପୁଅକୁ ଏପରି ସମ୍ବୋଧନ କରିପାରି ନଥିବେ'' ଜାହାଙ୍ଗୀର କହିଲେ। କାନ୍ଦାହାର ଅଭିଯାନ ବନ୍ଦ କରି ଜାହାଙ୍ଗୀର ଆଗ୍ରା ଫେରିଲେ। କିନ୍ତୁ ଠିକ୍ ସମୟରେ ପହଞ୍ଚି ପାରି ନଥିଲେ। ସେତେବେଳକୁ ଶାହାଜାହାଁ ଆଗ୍ରାରେ ପହଞ୍ଚି ସହର ଲୁଟତରାଜ କରିଥିଲେ ମଧ୍ୟ ରାଜକୋଷ ପାଇପାରି ନଥିଲେ। ଜାହାଙ୍ଗୀରଙ୍କ ମନ୍ତ୍ରୀମାନେ ରାଜକୋଷ ଲାହୋର ନ ପଠାଇ ଦୁର୍ଗ ରକ୍ଷାକରି ଚତୁରତାର ସହିତ ରାଜକୋଷ ରକ୍ଷା କରିପାରିଥିଲେ। କେବଳ ସୈନ୍ୟମାନଙ୍କ ସହ ମୁକାବିଲା କରିପାରିଥିଲେ ଶାହାଜାହାଁ।

ମାର୍ଚ୍ଚ ୨୯, ୧୬୨୩ରେ ଦୁଇଦଳ ଯୁଦ୍ଧରେ ମିଳିତ ହେଲେ। ୫୦,୦୦୦ ସୈନ୍ୟଙ୍କର ମିଳିତ ଯୁଦ୍ଧ। ଏ ଯୁଦ୍ଧରେ ଜାହାଙ୍ଗୀର ବା ଶାହାଜାହାଁ କେହି ଯୋଗ ଦେଇ ନଥିଲେ। ଜାହାଙ୍ଗୀରଙ୍କର ଅନେକ କମାଣ୍ଡର ଓ ସୈନ୍ୟ ନିହତ ହେଲେ। ଅନେକ କେତେକ କମାଣ୍ଡର ପ୍ରାୟ ୧୦ ହଜାର ସୈନ୍ୟଙ୍କୁ ଆଦେଶଦେଲେ କି ସେମାନେ ଜାହାଙ୍ଗୀର ପକ୍ଷ ଛାଡ଼ି ଚାଲିଯାନ୍ତୁ। ଏହା ହୁଏତ ଆସଫ ଖାଁଙ୍କର ଚାଲାକି ମଧ୍ୟ ହୋଇପାରିଥାଏ।

ଜାହାଙ୍ଗୀର ଓ ନୁରଜାହାଁ ପଳାୟନ କଲେ। ରାଜସ୍ଥାନର ମେୱାରରେ ପହଞ୍ଚିଲେ। ସେତେବେଳକୁ ଉଦୟପୁରରେ କରଣ ସିଂ ରାଣା ଥିଲେ। କରଣ ସିଂ ଏମାନଙ୍କୁ ସତ୍କାର କଲେ। ଏକ ମାର୍ବଲ ମଣ୍ଡପ ଘର ଭିତରେ ସେମାନଙ୍କୁ ରଖିଲେ।

ମଣ୍ଡପରନାମ ଗୁଲମହଲ। ନିକଟରେ ଗୋଟେ ଛୋଟ ହ୍ରଦ। ଆଖପାଖର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତି ମନୋରମ। ଶାହାଜାହାଁ ଓ ମମତାଜଙ୍କ ପାଇଁ ଏହା ତିଆରି ହୋଇଥିଲା। ୧୬୨୩ରେ ଜାହାଙ୍ଗୀର ପରଭେଜଙ୍କୁଶାହାଜାହାଁଙ୍କୁ ଦମନ କରିବାର ଦାୟିତ୍ୱ ଦେଲେ। ପରଭେଜଙ୍କ କମାଣ୍ଡର ଥିଲେ ମହବତ୍ ଖାଁ। ସେ ବି ପର୍ଶିୟାର ଆଉ ଗୋଟାଏ ପରିବାରର। ମୋଗଲ ଦରବାରରେ ଥିଲେ। ତାଙ୍କୁ ଜାହାଙ୍ଗୀର ଆଦେଶ ଦେଇଥିଲେ କି ଶାହାଜାହାଁଙ୍କୁ ଜୀବନ୍ତ ବା ମୃତ ଦେଖା କରାଇବେ ଜାହାଙ୍ଗୀରଙ୍କୁ।

ଶାହାଜାହାଁ ଓ ମମତାଜଙ୍କ ପ୍ରଥମ ଶତ୍ରୁ ଥିଲେ ନୁରଜାହାଁ। ମୋଗଲ ସାମ୍ରାଜ୍ୟର ସମ୍ରାଟମାନଙ୍କୁ ସ୍ତ୍ରୀ ଲୋକଙ୍କ ମମତା, ସୌନ୍ଦର୍ଯ୍ୟ ପ୍ରାୟ ତିରିଶ ବର୍ଷ ପର୍ଯ୍ୟନ୍ତ ଆକର୍ଷିତ କରିଥାଏ– ସେମାନଙ୍କର ଯୌବନ ଉଜ୍ଜ୍ୱଳ ଥିଲା ପର୍ଯ୍ୟନ୍ତ। କିନ୍ତୁ ନୁରଜାହାନଙ୍କ କ୍ଷେତ୍ରରେ ଏହା ଥିଲା ବିପରୀତ। ତାଙ୍କୁ ୪୦ ବର୍ଷ ଅତିକ୍ରମ କରିଥିଲେହେଁ ତାଙ୍କର ସମ୍ରାଟ ଉପରେ ଆଧିପତ୍ୟ ଥିଲା। ସେ ସେତେବେଳକୁ ଜେଜେମା ହେବାକୁ ଯାଉଥିଲେ ମଧ ତାଙ୍କର ଦେହର ଗଠନ ଓ ସୌନ୍ଦର୍ଯ୍ୟ ବେଶ୍ ଶୋଭା ପାଉଥିଲା।

ମନେ ପଡ଼େ ଥରେ ଦକ୍ଷିଣ ଦିଗକୁ ଯାଉଥିଲେ। ସାଙ୍ଗରେ ଥିଲେ ନୁରଜାହାଁ। ରାସ୍ତାରେ ଶିକାରର ବ୍ୟବସ୍ଥା ମଧ ଥିଲା। ଶିକାର ବେଳେ ନୁରଜାହାଁ ଗୋଟିଏ ଗୁଳିରେ ଦୁଇଟି ବାଘ ଶିକାର କରିଥିଲେ। ଆଉ ଅନ୍ୟ ଚାରୋଟି ଗୋଳି ଚଳାଇ ଆଉ ଦୁଇଟି ବାଘ ଶିକାର ହୋଇଥିଲେ। ଏପରି ଶିକାର ଆଗେ କେବେ ଜଣା ନଥିଲା। ତାହା ପୁଣି ହାତୀ ଉପରେ ହାଉଦାରୁ। ୬ଟି ଗୋଳିରୁ ଗୋଟିଏ ମଧ ଲକ୍ଷ୍ୟଭ୍ରଷ୍ଟ ହୋଇ ନଥିଲା। ନୁରଜାହାଁଙ୍କ ପ୍ରଭାବ ମଧ ଅନ୍ୟଭାବରେ ଦୃଷ୍ଟିଗୋଚର ଥିଲା। ଏଇଟା ବି ସାଧାରଣ କଥା। ଜାହାଙ୍ଗୀରଙ୍କ ଶରୀର ଓ ମନ ଦୁର୍ବଳ ହୋଇଆସୁଥିଲା ସେ ସମୟରେ। ପରେ ପରେ ଜାହାଙ୍ଗୀରଙ୍କ ହିନ୍ଦୁ ମାତାଙ୍କର ମୃତ୍ୟୁ ହୋଇଥିଲା। ଏପରି ଅବସ୍ଥାରେ ନୁରଜାହାଁ ହିଁ ମନୋବଳ ଓ ସାହସ ଯୋଗାଉଥିଲେ। ସେ କାରଣରୁ ରାଜଗାଦି ଉପରେ ନୁରଜାହାଁଙ୍କ ଆଧିପତ୍ୟ ଅନୁମେୟ।

ଏସବୁ ଜଣାଥିଲା ଶାହାଜାହାଁ ଓ ମମତାଜଙ୍କୁ। ସେମାନେ ବୁରହାନପୁର ନିକଟବର୍ତ୍ତୀ ଆସିର ଦୁର୍ଗକୁ ଚାଲିଗଲେ ରହିବାପାଇଁ। ସେ ଦୁର୍ଗରେ ମଧ ନୁରଜାହାଁଙ୍କର ଆଧିପତ୍ୟ ଥିଲା। କାରଣ ସେଠିକାର ଚିଫ୍ ମହବତ୍ ଖାଁ ମଧ ନୁରଙ୍କ ସମର୍ଥନକାରୀ।

ଶାହାଜାହାଁ ସେଠି ମଧ୍ୟ କୌଣସି ସାହାର୍ଯ୍ୟ ପାଇଲେ ନାହିଁ। ଦାକ୍ଷିଣାତ୍ୟରେ ମଧ୍ୟ କୌଣସି ସମର୍ଥନ ନାହିଁ। କେବଳ କିଛି ସାହାଯ୍ୟ ମିଳିଲା ଗୋଲକୋଣ୍ଡାରୁ। କାରଣ ଗୋଲକୋଣ୍ଡା ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ଯାଉଥିବା କୌଣସି ଗଣ୍ଡଗୋଳକୁ ସମର୍ଥନ କରିବାକୁ ଆଗେଇ ଆସେ। ଗୋଲକୋଣ୍ଡା ସାହାଯ୍ୟ କରି ତାଙ୍କୁ ଜଙ୍ଗଲ ପାହାଡ଼ ପର୍ବତ ନଦୀ ଦେଇ ଓଡ଼ିଶା ଚାଲିଯିବାକୁ ସାହାଯ୍ୟ କଲା। ଓଡ଼ିଶାରେ ହିଁ ତାଙ୍କର ଭାଗ୍ୟ ପରିବର୍ତ୍ତନ ହେଲା। କାରଣ ଏଠାରେ ଗଭର୍ଣ୍ଣର ନୂର ଓ ମମତାଜଙ୍କର ଜଣେ ସଂପର୍କୀୟ। ସେ ଶାହାଜାହାଁଙ୍କର ଆସିବା କଥା ଜାଣି ଧନସଂପତ୍ତି, ରାଜଗାଦି ସବୁ ଛାଡ଼ି ପଳାଇଲେ। ଶାହାଜାହାଁ ଏହାର ଉପଯୁକ୍ତ ବିନିଯୋଗ କଲେ। ଓଡ଼ିଶାର ଧନସଂପତ୍ତି, ଦେଇ ଗଢ଼ିଲେ ସେନାବାହିନୀ, ଯୁଦ୍ଧହାତୀ ଗୋଳାବାରୁଦ। ସବୁକୁ ଏକତ୍ର କରି ବେଙ୍ଗଲ, ବିହାର ଓ ଅନ୍ୟାନ୍ୟ କେତେକ ସହର କରାଗତ କଲେ। ୧୬୨୪ରେ ବଙ୍ଗଳାର ଗଭର୍ଣ୍ଣର ସହ ମୁହାଁମୁହିଁ ଯୁଦ୍ଧ ଗଙ୍ଗା କୂଳରେ ହେଲା। ଗଭର୍ଣ୍ଣର ଯୁଦ୍ଧକ୍ଷେତ୍ରରେ ନିହତହେଲେ।

ସେଇ ସମୟରେ ମହବତ୍ ଖାଁ ତାଙ୍କ ଉପରେ ଆକ୍ରମଣ କରିବା ଫଳରେ ଶାହାଜାହାଁ ପୁଣି ଓଡ଼ିଶା ଫେରିଗଲେ। ତା'ପରେ ଅନେକ ଚେଷ୍ଟା କରି ଗୋଲକୋଣ୍ଡା ଫେରିଗଲେ। ପୁଣି ଥରେ ଉପସ୍ଥିତ ହେଲେ ଦାକ୍ଷିଣାତ୍ୟରେ। ଅହମଦନଗର ସୁଲତାନ ମଲିକ ଅମ୍ବର ତାଙ୍କର ବନ୍ଧୁ ହୋଇଗଲେ। କାରଣ ସୁଲତାନ ସମ୍ରାଟଙ୍କ ବିରୁଦ୍ଧରେ ଯିବାପାଇଁ ଜଣେ ଏକକ ଶତ୍ରୁ ଖୋଜୁଥିଲେ। ମହବତ୍ ଖାଁ ଗତ ତିନିବର୍ଷ ଧରି ଶାହାଜାହାଁ ଓ ତାଙ୍କ ପରିବାରକୁ ପଶ୍ଚିମରେ ରାଜସ୍ଥାନର ମରୁଭୂମିରେ, ଦକ୍ଷିଣରେ ଦାକ୍ଷିଣାତ୍ୟରେ, ପୂର୍ବରେ ଓଡ଼ିଶା ଓ ବଙ୍ଗଳାରେ ଖୋଜିଥିଲେ। ସବୁ ସମୟରେ ହାରେମର ଆମୋଦ ପ୍ରମୋଦର ଆବହାଓ୍ବାର କୋମଳତା ଭିତରେ ଶାହାଜାହାଁଙ୍କ ସହିତ ଆନନ୍ଦରେ ଭାଗ ନେଉଥିଲେ ମମତାଜ, ଦୁଃଖ, କଷ୍ଟ ଯନ୍ତ୍ରଣାର ଅନ୍ଧକାର ଗୁହା ମଧ୍ୟରେ ବି ସେଇ ମମତାଜ, ଶାହାଜାହାଁଙ୍କର ସାଥୀ ହୋଇପାରିଥିଲେ। ଅବଶେଷରେ ୧୬୨୫ରେ ଶାହାଜାହାଁ ନିଜର ଶାରୀରିକ ଅସୁସ୍ଥତା ଭିତରେ ଧରାହେଲେ। ଅନ୍ୟ କୌଣସି ଉପାୟ ନଥିଲା।

ଜାହାଙ୍ଗୀରଙ୍କୁ ତାଙ୍କର ସବୁ ଦୋଷ କ୍ଷମା କରିବାପାଇଁ ଚିଠି ଲେଖିଲେ। ଉତ୍ତର ଅପେକ୍ଷାରେ ଅନାଇଁ ରହିଲେ। ଗତ ୨୦ ବର୍ଷ ଧରି ଜାହାଙ୍ଗୀର ଶାହାଜାହାଁଙ୍କୁ

ଅନେକ କଷ୍ଟ ଦେଇଥିଲେ। ନୁରଜାହାଁ ଭାବିଥିଲେ ପିତାପୁତ୍ରଙ୍କ ମିଳନ ସମ୍ଭବ ହୋଇ ନପାରେ। ଆସଫ ଅଲ୍ଲିଙ୍କ ପ୍ରତି ମଧ ଜାହାଙ୍ଗୀର ଅନ୍ୟାୟ କରି ଜାହାଙ୍ଗୀର ଆସଫ ଅଲ୍ଲିଙ୍କୁ ଶାହାଜାହାଁଙ୍କ ପ୍ରତି ଆନୁଗତ୍ୟ ଦେଖାଇବାରେ ସାହାଯ୍ୟ କରିଥିଲେ। ଏ ସବୁ ଭାବି ଜାହାଙ୍ଗୀର ଚିଠିର କି ଉତ୍ତର ଦେବେ ତାହାହିଁ ନୁରଜାହାନ ଅପେକ୍ଷା କରିଥିଲେ। କିନ୍ତୁ ଜାହାଙ୍ଗୀର ଶାହାଜାହାଁଙ୍କୁ ସବୁ ଅପରାଧର କ୍ଷମାଦେଲେ। ଖାଲି ସେତିକି ନୁହେଁ, ମଧ ଭାରତର ବାଲାଘାଟରେ ସେ ତାଙ୍କୁ ଗଭର୍ଣ୍ଣର କଲେ। କିନ୍ତୁ ଶାହାଜାହାଁଙ୍କୁ ରୋହଟାସ ଓ ଆଶିର ଦୁର୍ଗ ଜାହାଙ୍ଗୀରଙ୍କୁ ଫେରାଇଦେବେ। ତା'ଛଡ଼ା ଶାହାଜାହାଁଙ୍କ ପୁତ୍ର ଦାରାସୁଖୋ (୧୦ ବର୍ଷ) ଓ ୭ ବର୍ଷର ପୁଅ ଔରଙ୍ଗଜେବଙ୍କୁ ନାମକୁ ମାତ୍ର ରାଜବନ୍ଦୀ କରି ଦରବାରକୁ ପଠାଇବେ। ବଦ୍‌ରାଗୀ ପୁତ୍ରକୁ ଶାନ୍ତ କରିବାପାଇଁ ରତ୍ନଖଚିତ ଅଳଙ୍କାର ପ୍ରୀୟ ପୁତ୍ରଙ୍କ ପାଖକୁ ନୀଳା, ହୀରା, ମଣି, ମୁକ୍ତା ଖଚିତ ଏକ ଯଷ୍ଟୀ ପଠାଇଲେ। ଦୁଇ ପୁତ୍ରଙ୍କୁ ଅଶ୍ରୁଳ ନୟନରେ ବିଦାୟ ଦେଲେ ମମତାଜ ଓ ଶାହାଜାହାଁ। ବିଶ୍ୱାସ ରଖିଲେ ତୈମୁରଙ୍କ ବଂଶଧରଙ୍କ ଉପରେ କି ତାଙ୍କ ପୁତ୍ରଙ୍କର କୌଣସି କ୍ଷତି ସେମାନେ କରିବେନାହିଁ।



# ଶାହାଜାହାଁ

୧୫ ଜାନୁୟାରୀ ୧୫୯୨ରେ ଲାହୋରରେ ଜନ୍ମ ଗ୍ରହଣ କରିଥିଲେ । ମାତା ରାଜପୁତ ରମଣୀ ଜଗତ୍ ଗୋସାୟିନ । ତାଙ୍କ ନାଁ ଯୋଧାବାଈ । ଯୋଧାବାଈ ଉଦୟସିଂ ରାଥୋର, ମାଲୱାର ରାଜାଙ୍କ ଝିଅ । ଆକବର ନାଁ ରଖିଥିଲେ ଖୁରାମ(ହସଖୁସି) । ପୋଷ୍ୟପୁତ୍ର ହେଲେ ଅନ୍ୟତମ ରାଣୀ ରୁକୟା ବେଗମଙ୍କର ଆକବରଙ୍କର ସନ୍ତାନହୀନା ସ୍ତ୍ରୀଙ୍କର ମୁସଲିମ ପରମ୍ପରା ଅନୁଯାୟୀ ୪ ବର୍ଷ, ୪ ମାସ, ୪ ଦିନରେ ବିଦ୍ୟାରମ୍ଭ ହେଲା ।

ପିଲାଦିନ ଅଜଣା । ସାତବର୍ଷ ବୟସରେ ପିତା ଜାହାଙ୍ଗୀର ଓ ବଡ଼ ଭାଇ ଖୁସରୋଭଙ୍କ ହାତୀ ଲଢ଼େଇ ଆକବରଙ୍କ ସହ ଆଗ୍ରା ପ୍ରାସାଦର ଝରୋକୋ ବାଟିକାରେ ନିରୀକ୍ଷଣ କରିଥିଲେ । ଆକବରଙ୍କ ପ୍ରିୟ ନାତି ଭାବରେ ସେ ଆକବରଙ୍କ ମୃତ୍ୟୁ ଶଯ୍ୟା ପାଖରେ ଜଗି ବସି ରହିଥିଲେ ।

ଖୁସରୋଭଙ୍କ ବିଦ୍ରୋହ ବେଳେ ଖୁରାମଙ୍କ ଜୀବନରେ ପରିବର୍ତ୍ତନ ଆସିଲା । ଜାହାଙ୍ଗୀର, ପୁତ୍ର ଖୁସରୋଭଙ୍କ ବିଦ୍ରୋହ ଦମନ କରିବା ପାଇଁ ବାହାରକୁ ଗଲେ । କିନ୍ତୁ ଖୁରାମଙ୍କୁ ନାମକୁ ମାତ୍ର ରାଜା କରି ଆଗ୍ରାରେ ରଖାଇଲେ । ପରେ କାବୁଲରେ ଖୁରାମ ପିତାଙ୍କ ସହ ଯୋଗ ଦେଲେ । ସେଇଠି ଖୁସରୋଭ ଜାହାଙ୍ଗୀରଙ୍କୁ ମାରିବାର ଯୋଜନା ବିଷୟରେ ଜଣାଇଥିଲେ ।

୧୬୦୭ରେ ୧୬ ବର୍ଷ ଖୁରାମ(ଶାହାଜାହାଁ)ଙ୍କ ବିବାହ ସ୍ଥିର ହେଲା ଅସଫ ଖାଁଙ୍କ ଝିଅ ଅର୍ଜୁମନ ବାନୁ ବେଗମଙ୍କ ସହିତ । ପରେ ଏ ବେଗମ ମମତାଜ ମହଲ ନାମରେ ନାମିତ ହେଲେ । ଏହାପରେ ଶାହାଜାହାଁ ୮୦୦୦ ସୈନ୍ୟଙ୍କର କମାଣ୍ଡର ହେଲେ ଓ ମାସିକ ଭତ୍ତା ମଧ୍ୟ ପାଇଲେ । ପରେ ସେ ଉତ୍ତରାଧିକାରୀ ରୂପରେ ପରିଗଣିତ ହୋଇ ପରମ୍ପରା ଅନୁଯାୟୀ ହିସାର ଫିରୋଜା ପାଇଲେ । ତାଙ୍କୁ ସ୍ଥିର ପତାକା ମଧ୍ୟ ଦିଆଗଲା । ଶାହାଜାହାଁଙ୍କ ପ୍ରଥମ ସ୍ତ୍ରୀ ଥିଲେ ପର୍ଶିୟାର ସାହାଙ୍କ କନ୍ୟା । ଅର୍ଜୁମନଙ୍କ ସହିତ ବିବାହ ପରେ ମଧ୍ୟ ଖୁରାମ ୩ୟ ସ୍ତ୍ରୀ ଗ୍ରହଣ କରିଥିଲେ

– ଅବଦୂର ରହମନଙ୍କ ନାତୁଣୀଙ୍କୁ । ଅଞ୍ଜୁମନ ଖୁରାମଙ୍କୁ ପ୍ରତିଜ୍ଞା କରାଇଥିଲେ କି ସେ ଅନ୍ୟ କୌଣସି ସ୍ତ୍ରୀ କରିଆରେ କୌଣସି ସନ୍ତାନ କରାଇବେ ନାହିଁ । କାରଣ ରାଜଗାଦି ପାଇଁ ସଂଘର୍ଷ ହେବ । ତାଙ୍କୁ ଅଞ୍ଜୁମନ ୮ଟି ପୁଅ ଓ ୬ଟି ଝିଅ ଦେଇଥିଲେ । ୩୮ ବର୍ଷ ବୟସରେ ଅଞ୍ଜୁମନ ପ୍ରାଣତ୍ୟାଗ କଲେ । ୪ଟି ପୁଅ ଓ ୩ଟି ଝିଅ ବଞ୍ଚିଥିଲେ ।

ତାଙ୍କ ଜନ୍ମିତ ପିଲାମାନଙ୍କ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଖ୍ୟାତି ମଧ ତାଙ୍କର ବଢ଼ିବାରେ ଲାଗିଥିଲା । ମେୱାରର ରାଣାଙ୍କୁ ଜିତିବା ପରେ ଖୁରାମଙ୍କୁ ୧୫,୦୦୦ ଓ ପରେ ପରେ ୨୦,୦୦୦ ସୈନ୍ୟଙ୍କ ଦାୟିତ୍ୱରେ ରଖାଗଲା । ୧୬୧୭ ବେଳକୁ ଦାକ୍ଷିଣାତ୍ୟ ବିଜୟ ପରେ ଖୁରାମ ଶାହାଜାହାଁ ପଦବୀରେ ଭୂଷିତ ହେଲେ । ପରେ ସମ୍ରାଟଙ୍କ ନିକଟରେ ରାଜଦରବାରରେ ତାଙ୍କୁ ବସିବାର ଅଧିକାର ମଧ ମିଳିଲା । ୬ ବର୍ଷ କାଳ ଏହିପରି ରାଜଦୟାରେ ଜୀବନ ବିତାଇବା ପରେ ହଠାତ୍ ୧୬୨୨ରେ ବିଦ୍ରୋହୀ ହୋଇଗଲେ ।

ବିଦ୍ରୋହ କରିବା ଭୁଲ ଥିଲା । ଶାହାଜାହାଁ ହାରିଗଲେ । ନିରସ୍ତ୍ର ଭାବରେ ତାଙ୍କୁ ଦୂର ଜାଗାକୁ ପଠାହେଲା ସତ କିନ୍ତୁ ଚିନ୍ତାଧାରା ଥିଲା ସ୍ୱାଧୀନ । ଜାହାଙ୍ଗୀର ତାଙ୍କୁ ବନ୍ଦୀ କରି ନ ଥିଲେ । ଖୁସରୋଭଙ୍କ ପରି ସେ ଦାକ୍ଷିଣାତ୍ୟ ପରେ ପର୍ଶିଯାନ ଓ ଉଜବେଗଙ୍କ ସହ ହାତମିଳାଇ ନ ଥିଲେ । ଜାହାଙ୍ଗୀର ଶାହାଜାହାଁଙ୍କୁ ବିତାଡ଼ିତ କରିପାରି ନ ଥାନ୍ତେ କାରଣ ଅନ୍ୟ ଦୁଇ ପୁଅ ଅପଦାର୍ଥ । ନୁରଜାହାଁଙ୍କୁ ମଧ ଶାହାଜାହାଁ ନଷ୍ଟ କରିବାର ସାହସ କଲେ ନାହିଁ । ସେଥିପାଇଁ ଶାହାଜାହାଁ ସାହସକରି ଜାହାଙ୍ଗୀରଙ୍କ ପରେ ସିଂହାସନ ପାଇଁ ଆଗ୍ରାରେ ପଶିଲେ ।

୧୬୨୮ରେ ଆଗ୍ରାରେ ମୋଗଲ ସାମ୍ରାଜ୍ୟର ସମ୍ରାଟ ହେଲେ । ଲାହୋରରେ ସମ୍ରାଟ ହୋଇ ତାଙ୍କ ନାଁରେ କୁତୱା ମଧ ପଢ଼ା ସରିଥିଲା । ଅଞ୍ଜୁମନଙ୍କୁ ମମତଜାମହଲ ନାମରେ ଭୂଷିତ କଲେ । ଦୁଇଲକ୍ଷ ଅସରଫି, ଛ' ଲକ୍ଷ ଟଙ୍କା ଓ ବର୍ଷକୁ ଏକ ମିଲିୟନ ଟଙ୍କା ଦେବାକୁ ପ୍ରତିଶ୍ରୁତି ଦେଲେ । ଅନେକ ସୁନା, ରୂପା ଦାନ ସ୍ୱରୂପ ବଣ୍ଟା ହେଲା ।

ସେବେଳର ସବୁ ସାଜସଜ୍ଜାକୁ ଭାଷା ବର୍ଣ୍ଣନା କରିପାରିବ ନାହିଁ । ତାଙ୍କ ପୋଷାକ – ହିରା, ନୀଳା, ସୁନା, ରୂପର ସଜିତ, ମୁକୁଟ ରତ୍ନମାଳା ଖଚିତ, ଗାଦି ସିଲ୍କ ଓ ସୁନାର ଚଡ଼ରରେ ମଣ୍ଡିତ । ସେ ବଡ଼ ମୋଗଲ । ଏହାକୁ ପ୍ରତିପାଦନ

କରିବା ଚେଷ୍ଟାରେ ସେ ଥିଲେ। ମନଦୁଃଖ ହେବାର କିଛିଟା କାରଣ ଥିଲେ ମଧ୍ୟ ତାଙ୍କର ସମ୍ମାନପ୍ରଦ ବ୍ୟକ୍ତିତ୍ୱ ଦେଖି ଆଶ୍ଚର୍ଯ୍ୟ ଲାଗୁଥିଲା। ଯାହାହେଉ ଶାହାଜାହାଁ ହିଁ ଟର୍କୀ-ମଙ୍ଗୋଲିୟାନ ସଭ୍ୟତା ଓ ପର୍ଶିୟାନ-ମୋଗଲ ସଭ୍ୟତାର ପ୍ରତିଷ୍ଠାତା। ବାବରଙ୍କ ଠାରୁ ଆରମ୍ଭ କରି ସବୁ ମୋଗଲ ସମ୍ରାଟ ଥିଲେ ପ୍ରବାସୀ। ମୋଗଲ-ପର୍ଶିୟାନ ପଦ୍ଧତି ତ୍ୱରାନ୍ୱିତ ହେଲା ମୋଗଲ ଦରବାରରେ ପର୍ଶିୟାନ ସ୍ତ୍ରୀମାନଙ୍କ ପ୍ରବେଶ ପାଇଁ। ମହମ ବେଗମ (ହୁମାୟୁନଙ୍କ ମା) ପର୍ଶିୟାନ ଥିଲେ। ହାମିଦା ବାନୁ ବେଗମ, ନୁରଜାହାନ, ମମତାଜ ମହଲ ଆଉ ଅନ୍ୟାନ୍ୟ ଅନେକ ପର୍ଶିୟାନ ବଂଶୋଦ୍ଭବ । ଏହା ବ୍ୟତୀତ ଅନେକ ପର୍ଶିୟାନ ଅଫିସର ମଧ୍ୟ ମୋଗଲ ଦରବାରରେ ବଡ଼ ପଦବୀରେ ଥିଲେ। ବୈରାମ ଖାଁ, ଅବଦୁର ରହିମ, ଇତିମା-ଉଦ-ଦଉଲା ଓ ଅସଫ ଖାଁଙ୍କ ପ୍ରଭାବରେ ପର୍ଶିୟାନ ଥିଲ ମୋଗଲ ସଂସ୍କୃତିର ଓ ମୋଗଲ ଦରବାରର ମଧ୍ୟ ଭାଷା। ବାବରଙ୍କ ମାତୃଭାଷା ଥିଲ ଟର୍କୀ। ଜାହାଙ୍ଗୀର ମଧ୍ୟ ଟର୍କୀରେ ଲେଖୁଥିଲେ। କିନ୍ତୁ ଶାହାଜାହାଁ ସେ ଭାଷା ବ୍ୟବହାର କଲେ ନାହିଁ। କାରଣ ତାଙ୍କ ମତେର ଟର୍କୀ ହେଉଛି ଅମାର୍ଜିତ ଭାଷା।

ପର୍ଶିୟାନ ଦରବାରର ପ୍ରଚଳିତ ନିୟମ ଶାହାଜାହାଁଙ୍କ ସ୍ୱଭାବ ସହିତ ମେଳ ଖାଉଥିଲା। ଶାହାଜାହାଁ ଭଦ୍ର, ମୃଦୁ ଭାଷୀ, ସର୍ବଦା ଠିକ୍ କଥାର ଆଶ୍ରୟ ନେବା, ଭାଷା ଓ ବ୍ୟବହାର ସଂଯତ ଓ ଆତ୍ମ ସଂଯମୀ। ଏ ସବୁ ତାଙ୍କର ନିଜସ୍ୱ ଗୁଣ। ଏ ଭଳି ସଂଯମତା କରି ମଦ୍ୟପାନରେ ମଧ୍ୟ ମାନୁଥିଲେ। ୨୪ତମ ଜନ୍ମବାର୍ଷିକିରେ ସେ ପ୍ରଥମେ ମଦ ଚାଖିଲେ। ତା' ମଧ୍ୟ ବାପାଙ୍କ କହିବା ଅନୁସାରେ। ପରେ ମଧ୍ୟ ସେ କେତେବେଳେ କେମିତି ମଦ୍ୟପାନ କରୁଥିଲେ କିନ୍ତୁ ପରିମାଣ ଅଳ୍ପ।

ଉତ୍ସବାଦିରେ ସମବେତ ଜନତା ସହିତ ଓ ମେଘୁଆ ଦିନମାନଙ୍କରେ ମଦ୍ୟପାନ ପରିତ୍ୟାଗ କରିବା ଉଦ୍ଦେଶ୍ୟରେ ସବୁ ମଦନେଇ ଚମ୍ବଲ ନଈପାଣିରେ ଢାଳିଦେଲେ। ଏ ପ୍ରକାର ଆଚରଣରେ ରାଜନୈତିକ ଓ ଧର୍ମଗତ କାରଣ ନିଶ୍ଚୟ ଥିଲା। ପ୍ରଥମରେ ଉତ୍ତରାଧିକାରୀ ସତ୍ତ୍ୱ ନିପୁଣତାର ସହ ପାଳିବା ଓ ନିଜର ଆତ୍ମସମ୍ମାନ ଉପରେ ଆଞ୍ଚ ଆଣିବାକୁ ଚାହୁଁ ନ ଥିଲେ। ଶାହାଜାହାଁ ସାଧୁ ନୁହଁନ୍ତି କିନ୍ତୁ ଜଣେ ରକ୍ଷଣଶୀଳ ମୁସଲମାନ। ନାଚ ଗୀତରେ ମଧ୍ୟ ବହୁତ ସଉକ। ନିଜେ ମଧ୍ୟ ଜଣେ ଗାୟକ। ବାଦ୍ୟଯନ୍ତ୍ର ଶୁଣିବାରେ ଅଧିକ ଆଗ୍ରହ। ତାଙ୍କ ଗୀତର ସ୍ୱରଲାଳିତ୍ୟରେ ଅନେକ ସୁଫି ଅବଚେତନାରେ ବୁଡି ଯା'ନ୍ତି।

ମୋଗଲ ଦରବାର ଏକ ରକ୍ଷଣଶୀଳ ମୁକ୍ତ ଦରବାର। କେନଚେନ୍ନ ଦଳ ଗୋଟେ ଜନସାଧାରଣ ଚିତ୍ତବିନୋଦନ ସଂସ୍ଥା। ଶାହାଜାହାଁ ସେଇ ଦଳର ଗୋଟେ ଝିଅକୁ ରକ୍ଷିତା ଭାବରେ ଗ୍ରହଣ କଲେ। ଆପତ୍ତି ଉଠିଲା ଦରବାରରୁ। ସମ୍ରାଟ ଉତ୍ତର ଦେଲେ; ମିଠା ତ ଖାଇବାକୁ ଭଲ। ଯେଉଁ ଦୋକାନରୁ ଆସୁ ନା କାହିଁକି ?

ମମତାଜ ମହଲ ବଂଚିଥିବା ପର୍ଯ୍ୟନ୍ତ ଶାହାଜାହାଁ ଆଉ କୌଣସି ନାରୀ ପ୍ରତି ଆକୃଷ୍ଟ ହୋଇ ନଥିଲେ। ଏପରିକି ଅନ୍ୟ ବିବାହିତା ସ୍ତ୍ରୀ, ରକ୍ଷିତା, ହାରେମର ଅନ୍ୟ ସ୍ତ୍ରୀ ଲୋକମାନଙ୍କ ସହିତ ତାଙ୍କର କିଛି ସ୍ନେହ ମମତା ନ ଥିଲା। କେବଳ ମମତାଜହିଁ ଥିଲେ ଶାହାଜାହାଁଙ୍କ ଅନ୍ତରଙ୍ଗ ବନ୍ଧୁ, ପରାମର୍ଶଦାତା, ଦାର୍ଶନିକ। ଦୁଃଖରେ, ସୁଖରେ, ଘରେ ବାହାରେ ସବୁଠାରେ ମମତାଜ ତାଙ୍କ ପାଖେ ପାଖେ ରହିଥିଲେ। ସେ କେବଳ ସୁନ୍ଦରୀ ନ ଥିଲେ। ଥିଲେ ବୁଦ୍ଧିମତି ଯାହାଫଳରେ କି ଶାହାଜାହାଁ ଜାହାଙ୍ଗୀର ନୁରଜାହାଁଙ୍କ ଉପରେ ନିର୍ଭର କଲା ପରି କାମ କରିପାରୁଥିଲେ। ରାଜ୍ୟର ସମସ୍ୟା ଉପରେ ମଧ୍ୟ ସେ ମମତଜାଙ୍କ ଉପରେ ନିର୍ଭର କରୁଥିଲେ। ଏପରିକି ରାଜ୍ୟ ସଂକ୍ରାନ୍ତୀୟ ଲେଖା ମଧ୍ୟ ତାଙ୍କୁ ପଢ଼ିବାକୁ ଦେଉଥିଲେ। ଦୁଃଖ ଏତିକି ଯେ ଶାହାଜାହାଁ ଗାଦିରେ ବସିବାର ମାତ୍ର ୪ ବର୍ଷ ପରେ ମମତାଜ ମରିଗଲେ ବରହାନପୁରରେ ୧୭ ଜୁନ୍ ୧୬୩୧ରେ।

ଚଉଦଟି ସନ୍ତାନଙ୍କୁ ପ୍ରସବ କରିଥିବା ଜନନୀ ଶେଷ ପ୍ରସବ ବେଦନାରେ ହିଁ ପ୍ରାଣତ୍ୟାଗ କଲେ। ଶାହାଜାହାଁଙ୍କ ଜୀବନରେ ମସ୍ତବଡ଼ ଆଘାତ। ସେ ରାଜକାର୍ଯ୍ୟ ବୁଝିବା ମଧ୍ୟ କିଛିଦିନ ପାଇଁ ଛାଡ଼ିଦେଲେ। ନାଚ, ଗୀତ, ବାଦ୍ୟଯନ୍ତ୍ର ଚାଳଣାରେ କେଉଁଥିରେ ବି ଆଗ୍ରହ ଦେଖାଇଲେ ନାହିଁ। ଲୁହଧାର ଲୁଚେଇବା ପାଇଁ ସେ ଚଷମା ବ୍ୟବହାର କଲେ। ସୁନ୍ଦର ପୋଷାକ ପିନ୍ଧିଲେ ନାହିଁ। ବାଳ, ଦାଢ଼ି, ନିଶ ପାଚିଯାଇଁ ଧଳା ପଡ଼ିଆସିଲା। ବ୍ୟକ୍ତିଗତ ଦୁଃଖରେ ସମ୍ରାଟଙ୍କ ରାଜକାର୍ଯ୍ୟ ହେଳା ହେବା ଉଚିତ ନୁହେଁ ଜାଣି ମଧ୍ୟ ସେ କୌଣସି କାମରେମନ ଦେଇ ପାରିଲେ ନାହିଁ।

ବରହାନପୁରର ତାପ୍ତିନଦୀ ଧାରରେ ବଗିଚାରେ ମମତାଜଙ୍କୁ ଦଫନ କରାଯାଇଥିଲା। ୬ ମାସ ପରେ ରାଜପୁତ୍ର ସୁଜାଙ୍କ ନେତୃତ୍ୱରେ ଜାନୁୟାରୀ ୮, ୧୬୩୨ରେ ଆଗ୍ରା ନିଆଯାଇ ଯମୁନା ନଦୀ କୂଳରେ ଦଫନ କରାହେଲା। ସେଇ ଜାଗାରେ ହିଁ 'କାଳର କପାଳରେ ଏକ ଶୁଭ୍ରଟୀକା ପରି ବିଶ୍ୱସୁନ୍ଦର ତାଜମହଲ

ଦଣ୍ଡାୟମାନ। ସେତେବେଳେ ତା ନାଁ ଦେଇଥିଲେ ରାଉଜା-ମୁନାଭାରା। ଏ ଦୁଃଖରୁ ଉଦ୍ଧାର ପାଇବା ପରେ ସେ ସବୁ ବ୍ୟକ୍ତିଗତ ବଂଧନରୁ ନିଜକୁ ମୁକ୍ତ କଲେ। ଯଦିଓ ପରେ ସେ ବିବାହ କରିନାହାନ୍ତି ତଥାପି ତାଙ୍କର ବ୍ୟଭିଚାର ବଢ଼ିଗଲା। ଏପରିକି ପରଦାରା ସମ୍ଭୋଗ ମଧ୍ୟ ତାଙ୍କୁ ଘେରି ରହିଲା।

ସେ କାଳରେ ସପ୍ତାହରେ ଥରେ ଦୁର୍ଗ ଭିତରେ ମୀନା-ବଜାର ଉତ୍ସବ ପାଳିତ ହେଉଥିଲା। ଅମିରମାନଙ୍କର ସ୍ତ୍ରୀ ଓ ଝିଅମାନେ ଅଂଶ ଗ୍ରହଣ କରୁଥିଲେ। ସ୍ତ୍ରୀ ଲୋକଙ୍କ ବ୍ୟତୀତ ଅନ୍ୟ କାହାରିକୁ କେହି ମିନାବଜାର ଦୁର୍ଗ ଭିତରକୁ ଯିବାକୁ ଅନୁମତି ନ ଥିଲା। ଆଠଦିନ ବ୍ୟାପୀ ଏହି ଉତ୍ସବରେ ସମ୍ରାଟଙ୍କୁ ହାଉଦାରେ ବସାଇ ଦୋକାନରୁ ଦୋକାନ ବୁଲାଇବା, ସ୍ତ୍ରୀ ଲୋକମାନେ ଆଗରେ ପଛରେ ସୁନା ଛଡ଼ି ଧରି ଯିବା, ଏପରିକି ସ୍ତ୍ରୀ ଗାୟିକାମାନେ ସେଥିରେ ଭାଗନେବା । ଏ ଉତ୍ସବର ଏକ ଅଙ୍ଗ ଥିଲା । ଏ ଦୋକାନ ମାନଙ୍କରୁ ସମ୍ରାଟଙ୍କ ଆଖିରେ ପଡ଼ିଥିବା ସ୍ତ୍ରୀଲୋକ ପରେ ସମ୍ରାଟଙ୍କ ସମ୍ମୁଖରେ ଉପସ୍ଥାପିତ କରାହେଉଥିଲେ। ଜାହାନ୍ନାରା, ଶାହାଜାହାଁଙ୍କ କନ୍ୟା ମଧ୍ୟ ଏହିପ୍ରକାର କାମରେ ସମ୍ରାଟଙ୍କୁ ସାହାଯ୍ୟ କରୁଥିଲେ।

ସବୁଠୁ ବଡ଼ ଲଜ୍ଜାକର ବଦନାମ ହେଲା ଶାହାଜାହାଁଙ୍କର ନିନ୍ଦନୀୟ ସଂପର୍କ ତାଙ୍କର ନିଜ ଝିଅ ହାହାନ୍ନାରା ସହିତ। ମମତାଜଙ୍କ ମରିବାର ୬ ମାସ ପରେ ସେ ଜାହାନ୍ନାରାଙ୍କୁ ମମତାଜଙ୍କ ଅସ୍ଥାବର ସଂପତ୍ତିରୁ ଅଧା ଦେଇଦେଲେ। ଯାହାର ମୂଲ୍ୟହେବ ଦଶ ମିଲିୟନ୍ ଟଙ୍କା। ବାକି ଅଧା ତାଙ୍କର ଅନ୍ୟ ସନ୍ତାନମାନଙ୍କ ଭିତରେ ବାଣ୍ଟିଲେ। ଜାହାନ୍ନାରାଙ୍କ ବାର୍ଷିକ ଦେୟ ୬ ଲକ୍ଷ ଟଙ୍କା। ତାକୁ ୧ ମିଲିଅନକୁ ବଢ଼ାଇ ଦେଲେ। ସମ୍ରାଟଙ୍କ ଅତ୍ୟନ୍ତ ପ୍ରିୟପାତ୍ର ଭାବରେ ଅନ୍ୟାନ୍ୟ ଅନେକ ଫାଇଦା ମଧ୍ୟ ସେ ଉଠାଇଥିଲେ। ଅନେକ ବଦନାମର କାହାଣୀ ମଧ୍ୟ ଏହା ସହିତ ଜଡ଼ିତ। ଜାହାନ୍ନାରାଙ୍କ ଅନେକ ପ୍ରେମିକ ମଧ୍ୟ ଥିଲେ। ସେମାନେ ରାତିର ନିସ୍ତବ୍ଧତା ଭିତରେ, ନାଚଗୀତର ସୁଅ ଛୁଟି ଥିବା ସମୟରେ ଯେଉଁ ଆସର ଜମୁଥିଲା ସେଥିରେ ଭାଗ ନେଇଥିଲେ। ବେଳେ ବେଳେ ଜାହାନ୍ନାରାଙ୍କୁ ଏଇ ଆସର ଜାଗାରୁ ଶୋଇବା ଘରକୁ ଟେକା ହୋଇ ନିଆଯାଉଥିଲା। ଯାହା ହେଲେ ବି ଜାହାନ୍ନାରା ଜଣେ ଅତି ସୁନ୍ଦରୀ, ସୁଶିକ୍ଷିତ, ସଂସ୍କୃତି ସଂପନ୍ନ, ଉଦାର ସ୍ୱଭାବର ସ୍ତ୍ରୀଲୋକ। ସୁଫି ସଭ୍ୟତ ଦ୍ୱାରା ଆକୃଷ୍ଟ। ମୋଗଲ ଦରବାରରେ ତାଙ୍କର ଆଦର ଅନେକ।

ଥରେ ଜାହାନ୍ନାରାଙ୍କ ପୋଷାକରେ ନିଆଁ ଲାଗିଯିବା ଫଳରେ ତାଙ୍କ ଶରୀରର ଅଧିକାଂଶ ଅଂଶ ପୋଡ଼ିଯାଇଥିଲା । ମମତାଜ ମରିବାର ୧୩ ବର୍ଷ ପରର ଘଟଣା । ଶାହାଜାହାଁ ଭାଙ୍ଗି ପଡ଼ିଲେ । ସାରା ହିନ୍ଦୁସ୍ଥାନରେ, ହିନ୍ଦୁ, ମୁସଲିମ୍, ଇଂରେଜ ଯେତେ ଭଲ ଚିକିତ୍ସକ ଥିଲେ ସମସ୍ତଙ୍କୁ ଡକାଇଲେ । ଦିନରାତି ତାଙ୍କ ପାଖେ ଜଗିବସିଲେ । ଅତ୍ୟଧିକ ମମତା ଫଳରେ ସେ ନିଜେ ଜାହାନ୍ନାରାଙ୍କ ଖାଦ୍ୟ, ଔଷଧ ଏପରିକି ଦେହରୁ ପଟି ଖୋଲିବା ଦାୟିତ୍ୱ ମଧ୍ୟ ନେଇଥିଲେ । ସେଥିପାଇଁ ରାଜକାର୍ଯ୍ୟରେ ମଧ୍ୟ ଅଧିକ ମନ ଦେଇ ପାରୁ ନଥିଲେ । ଏହି ସମୟରେ ପର୍ଶିୟାର ଜଣେ ଚିକିତ୍ସକଙ୍କ ତତ୍ତ୍ୱାବଧାନରେ ଜାହାନ୍ନାରାଙ୍କ ଅବସ୍ଥାର ଉନ୍ନତି ହେଲା । କିନ୍ତୁ ପରେ ୪ ମାସ ଧରି ଆଉ ଅଧିକ ଉନ୍ନତି ହେଲାନାହିଁ । ବହୁତ ଦିନର ଅସୁସ୍ଥତା ପରେ ଆରାମ ମିଳିଲା । ଆଜମୀର ଯିବା ରାସ୍ତାରେ ଅଚାନକ ସେ ଘା'ର ପଟି ସବୁ ପୁଣି ଖୋଲିଗଲା । କିନ୍ତ ହାମୁନ୍ ନାମରେ ଜଣେ ଚିକିତ୍ସକଙ୍କ ମଲମ ଲଗାଇବାରେ ତିନି ସପ୍ତାହରେ ସଂପୂର୍ଣ୍ଣ ସୁସ୍ଥ ହୋଇଗଲେ । ସେ ଚିକିତ୍ସକ ଥିଲେ ଗରୀବ । କିନ୍ତୁ ଏ ଘଟଣା ପରେ ସମ୍ରାଟ ତାଙ୍କ ନାଁରେ ଗୋଟେ ଗାଁ ବସାଇ ଦେଲେ । ଆଉ ତାଙ୍କ ନିଜ ଶରୀର ଓଜନର ସୁନା ତାଙ୍କୁ ଦାନ କଲେ ।

ମମତାଜଙ୍କ ମୃତ୍ୟୁ, ଜାହାନ୍ନାରାଙ୍କ ଯତ୍ନକୁ ଲକ୍ଷ୍ୟ କଲେ ସମ୍ରାଟଙ୍କ ଏକ ଭିନ୍ନ ରୂପ ଆଖି ଆଗକୁ ଆସେ । ତାଙ୍କୁ ଆଶ୍ଚର୍ଯ୍ୟଭାବରେ ନିଜର ଭାବ ପ୍ରବଣତା, ଆବେଗପୂର୍ଣ୍ଣ ଅସୁରକ୍ଷିତା, ଘେରି ରହିଥିବାର ଅନୁମାନ କରାଯାଏ । ସେ ନିଜେ ନିଜକୁ ତାଙ୍କର ସ୍ୱଭାବର ଏ ଭାବପ୍ରବଣତା ତଳେ ନଷ୍ଟ ନ କରିବାର ଇଛା କରି ଆତ୍ମ ସଂଯମ ଆୟତ୍ତ କରିବା ଚେଷ୍ଟାରେ ରହିଲେ । ଶକ୍ତି, ସ୍ଥିରିକୃତ,, ପୂର୍ଣ୍ଣତା ଶାହାଜାହାଁଙ୍କର ଆଦର୍ଶ । ଏ ପ୍ରକାର ପୂର୍ଣ୍ଣତାର ଚିତ୍ର ଆମେ ତାଙ୍କ ସାଂସ୍କୃତିକ ବର୍ଣ୍ଣନାରେ ଦେଖିବାକୁ ପାଇଛୁ – ବିଶେଷକରି ତାଜମହଲ ସୃଷ୍ଟିରେ କେବଳ ଶାହାଜାହାଁ ହିଁ ତାଜ ତୋଳାଇବାର ଦକ୍ଷତା ହାସଲ କରିଥିଲେ । ତାଜ ଆଶ୍ଚର୍ଯ୍ୟଜନକ ଭାବରେ ସୁନ୍ଦର ଐଶ୍ୱର୍ଯ୍ୟପୂର୍ଣ୍ଣ । ତେବେ ବି ସରଳ, ସୁଢ଼ଳ, ସମଗୁରୁତ୍ୱର ପରାକାଷ୍ଠା, ଯତ୍ନ ଓ ପରିଶ୍ରମର ଉତ୍କର୍ଷତାର ପରିଚୟ ଦିଏ । ଏହା ବଳରେ ଶାହାଜାହାଁଙ୍କର ନିଜ ଜୀବନ ଦର୍ଶନର ପ୍ରମାଣ ମିଳେ । ୧୫ ବର୍ଷ ବୟସରେ କାବୁଲରେ ତାଙ୍କୁ ଏକ ପ୍ରାସାଦ ଦିଆଯାଇଥିଲା । ସେ ତା'ର ପୁର୍ନନିର୍ମାଣ କରାଇ ନିଜର ସ୍ଥାପତ୍ୟ ବିଦ୍ୟାର

ଚାରୁକଳା ପ୍ରଦର୍ଶନ କରାଇଥିଲେ। ସେ ନିଜେ ଜଣେ ସୌନ୍ଦର୍ଯ୍ୟ ଉପାସକ। ରାଜ୍ୟର ଅନେକ ଅଟ୍ଟାଳିକାର ଡ୍ରଇଂ ନିଜେ କରୁଥିଲେ। ସ୍ଥାପତ୍ୟକଳାର ଅନେକ ବିଚକ୍ଷଣ ବ୍ୟକ୍ତି ତାଙ୍କ ଦରବାରରେ ମଧ୍ୟ ଥିଲେ। ତାଜର ଗଠନ ପ୍ରଣାଳୀ ପାଇଁ ଅନେକଙ୍କର ଦାନ ଅଛି। ଏପରିକି ଭେନିସର ଜଣେ ଗହଣା କାରିଗର, ନାମ ଜେରେନିମୋ ଭେରୋନିଓଙ୍କ ଦାନ ମଧ୍ୟ ଅତୁଳନୀୟ। ଯେତେ ଅନ୍ୟମାନଙ୍କ ଦାନ ଥିଲେ ବି ଶାହାଜାହାଁଙ୍କର ବ୍ୟକ୍ତିତ୍ୱର ପରିଚୟ-ତାଜମହଲ।

ତାଜ ଯେଉଁ ଜାଗାରେ ଗଢ଼ି ଉଠିଛି ସେ ଜାଗା ରାଜା ମାନସିଂଙ୍କର। ଶାହାଜାହାଁନ ତାଙ୍କ ନାତି ରାଜା ଜୟସିଂଙ୍କ ଠାରୁ ଆଣିଥିଲେ। ୧୬୩୨ରେ ତାଜର କାମ ଆରମ୍ଭ ହୋଇ ଷୋଳବର୍ଷରେ ସଂପୂର୍ଣ୍ଣ ହେଲା। ପୁରାପୁରି ଶେଷ ହେବା ପାଇଁ ଆହୁରି କିଛି ବର୍ଷ ଲାଗିଲା। ତା'ର ରକ୍ଷଣାବେକ୍ଷଣ ପାଇଁ ଟ୨୦୦,୦୦୦ ଖର୍ଚ୍ଚ ହୋଇଥିବାର ଅଟକଳ କରାଯାଇଥିଲା।

ଏହା ବି କୁହାଯାଏ କି ଶାହାଜାହାନ ନିଜ ପାଇଁ ମଧ୍ୟ ନମୁନା ତାଜମହଲ (କଳା ମାରବଲ ଷ୍ଟୋନରେ) ଗଢ଼ିବା ପାଇଁ ଯୋଜନା କରିଥିଲେ। ଏ ଦୁଇ ମହଲକୁ ଏକ ପୋଲ ନିର୍ମାଣ କରି ସଂଯୋଗ କରିବାର ଯୋଜନା ମଧ୍ୟ ଥିଲା। ତାହା ସମ୍ଭବ ହୋଇପାରିଲା ନାହିଁ—ପୁତ୍ରମାନଙ୍କ ନିଜ ନିଜ ଭିତରେ କଳହରୁ। ଗଢ଼ା ହୋଇଥିଲେ ଚିତ୍ତାକର୍ଷକ ହୋଇପାରିଥାନ୍ତା। ରହିଗଲା କେବଳ ଏକ କାହାଣୀରେ।

ତାଜ ସବୁ ମୋଗଲ ସ୍ଥାପତ୍ୟକୁ ଡଳେଇ ଦେଲା। ଦିଲ୍ଲୀର ପ୍ରାସାଦ, ଜାମା ମସଜିଦ, ଆଗ୍ରାରେ ପର୍ଲ ମସଜିଦ, ତାତା ଓ ସିନ୍ଧରେ ଆଉ ଦୁଇଟି ମସଜିଦ, ଲାହୋରର ସାଲିମାର ବଗିଚା, ସବୁ ସ୍ଥାପତ୍ୟ କଳାର ଉର୍ଦ୍ଧ୍ୱକୁ ଚାଲିଗଲା। ପରିତାପର ବିଷୟ ଏହି ଦୁଇ ସହରର ଆକବରଙ୍କ ସମୟର ନିର୍ମିତ ଅନ୍ୟାନ୍ୟ କୋଠାବାଡ଼ିକୁ ଲାଲପଥର ଦେଇ ପୁଣିଥରେ ତୋଳାଇଥିଲେ, କିନ୍ତୁ ୧୮୫୭ର ସିପାହୀ ବିଦ୍ରୋହ ବେଳେ ଶାହାଜାହାଁଙ୍କ ସୁନିର୍ମିତ କୋଠାବାଡ଼ିକୁ ଭାଙ୍ଗି ଦିଆଗଲା। ଶାହାଜାହାଁଙ୍କ ବିଖ୍ୟାତ ମାର୍ବେଲ ପ୍ରାସାଦ ଶାହାଜାହାଁର ଦିୱାନ-ଖାସରେ ଭିତର ଦରଜାରେ ଲେଖାଅଛି,

> ଅଗର ଫିସରଡ ବର ରୁ-ଏ ଯମିନ ଅସ୍ତ
> ହାମିନ ଅସ୍ତ ଓ୍ୱ ହାମିନ ଅସ୍ତ, ଓ୍ୱାହାମିନ ଅସ୍ତ
> (ଯଦି ପୃଥିବୀରେ କିଛି ବି ସ୍ୱର୍ଗ ଅଛି
> ସେ ଏଇଠି, ସେ ଏଇଠି, ସେ ଏଇଠି।)

ସତର-ଶତାବ୍ଦୀରେ ଏହି ପଂକ୍ତିଟି ସତ ଥିଲା। ଆଶା କରାଯାଉଥିଲା ଶାହାଜାହାଁଙ୍କ ଏକାନ୍ତ ନିଜସ୍ୱ ଇଚ୍ଛା ଥିଲା କି ସେ ଏକ ସହର ବସାଇବେ ନିଜର ସ୍ମୃତିରକ୍ଷା ପାଇଁ।

ଦୁର୍ଗ ନିର୍ମାଣକୁ ମିଶାଇ ୬.୫ ମିଲିଅନ ଟଙ୍କାରେ ଶାହାଜାହାଁବାଦ ତୋଳାଇବାରେ ଖର୍ଚ୍ଚ ହୋଇଥିଲା। ତିଆରି ସରିବା ପରେ ଶାହାଜାହାଁ ଦଶ ଦିନ ବ୍ୟାପୀ ଉତ୍ସବର ଆୟୋଜନ କରିଥିଲେ। ୬୪ ମିଟର ଲମ୍ବ ଓ ୪୧ ମିଟର ଚଉଡ଼ାରେ ଏକ ବଡ଼ ଏମ୍ବ୍ରୋଡେରି କରା ଭେଲଭେଟ ଚାନ୍ଦୁଆ ଗୁଜରାଟରୁ ମଗାଇଲେ। ଦିୱାନି-ଆମ ଦରବାର ହଲରେ ଏହା ଲାଗିବାର ଆୟୋଜନ କରାଗଲା। ଏହାକୁ ଟାଙ୍ଗିବା ପାଇଁ ମାସେ ଧରି ୩୦୦ ଶ୍ରମିକ କାମ କରିଥିଲେ। ଏହି ଚାନ୍ଦୁଆ ତଳେ ୧୦,୦୦୦ ଲୋକ ବସିପାରିବେ। ଏଥିରେ ନୂଆ ଧରଣର ମେସିନାରି ଟାଙ୍ଗିବା ପାଇଁ ଲଗା ହୋଇଥିଲା। ଆଗ୍ରାରୁ ଜ୍ୟୋତିଷ ଗଣନାର ସମୟ ଅନୁସାରେ ସମ୍ରାଟଙ୍କ ରାଜକୀୟ ନୌକାରେ ଯମୁନାକୂଳରେ ପହଞ୍ଚି, ରତ୍ନଖଚିତ ସିଂହାସନରେ ୧୮ ଏପ୍ରିଲ୍ ୧୬୪୮ ବସିବାର ଆୟୋଜନ କରିଥିଲେ।

**ମୟୂର ସିଂହାସନ :** ଏହି ରତ୍ନ ଖଚିତ ସିଂହାସନହିଁ 'ମୟୂର ସିଂହାସନ'। ମୋଗଲ ସମ୍ରାଟମାନେ ରତ୍ନ ସଂଗ୍ରହ କରିବାରେ ଅଦ୍ୱିତୀୟ। ଆକବର ଜଣେ ଲୋଭି ସଂଗ୍ରହାକାର। ଜାହାଙ୍ଗୀର ରତ୍ନ ସଂଗ୍ରହ କରିବାରେ ଦକ୍ଷ। କିନ୍ତୁ ଶାହାଜାହାଁ ପ୍ରତ୍ୟେକ ରତ୍ନର ଖଚିତ ମୂଲ୍ୟାଙ୍କନ କରିବାରେ ଏକମାତ୍ର ସମ୍ରାଟ। ସାରା ପୃଥିବୀରେ ଏହା ଏକ ଆଶ୍ଚର୍ଯ୍ୟ ଓ ମୂଲ୍ୟବାନ ସିଂହାସନ। ରତ୍ନ ସଂଗ୍ରହ କରିବାର କାର୍ଯ୍ୟକୁଶଳତା ପୃଥିବୀରେ ବିରଳ। ସମ୍ରାଟଙ୍କ ଅନୁସନ୍ଧାନ ପାଇଁ କୋଡ଼ିଏ ମିଲିଅନ ଟଙ୍କାର ହୀରା, ନୀଳା, ମୋତି, ମାଣିକ, ପୋଖରାଜ ଇତ୍ୟାଦି ରତ୍ନ ମଗା ହୋଇଥିଲା। ଅଧିକ ମୂଲ୍ୟର ବଡ଼ ବଡ଼ ଖଣ୍ଡ ମୂଲ୍ୟବାନ ରତ୍ନ ସବୁ ବଛାଯାଇ ବେ-ବାଦଲଖାଁ ବୋଲି ସୁନାରି ପାଖରେ ଜମା ରଖାଯାଇଥିଲା। ସେ ବଣିକ-ସଂଘର ସୁପରିନ୍‌ଟେଣ୍ଡେଟ୍ ଥିଲେ। ଖାଣ୍ଟି ସୁନା (ପ୍ରାୟ ଲକ୍ଷେ ତୋଳାର) ମଧ୍ୟ ତାଙ୍କୁ ଦିଆଯାଇଥିଲା।

ଦଶ ମିଲିଅନ ଟଙ୍କା କେବଳ ମୟୁର ସିଂହାସନରେ ଲଗା ଯାଇଥିଲା ତା' କେବଳ ମୟୁର ସିଂହାସନ ଜିନିଷର ଦାମ ସମୁଦାୟ ଖର୍ଚ୍ଚ ୩୦ ରୁ ୪୦ ମିଲିୟନ ଟଙ୍କାରୁ ବେଶି ଥିଲା। ସିଂହାସନର ଦାମ ୧୦୭ ମିଲିଅନ ଟଙ୍କା ବୋଲି ଅଟକଳ

କରାଯାଇଛି । ଶାହାଜାହାଁ ତାଙ୍କ ସାମ୍ରାଜ୍ୟର ୮ ବର୍ଷ ପରେ ୧୬୩୪ରେ ମୟୁର ସିଂହାସନରେ ପ୍ରଥମଥର ପାଇଁ ଆଗ୍ରାରେ ବସିଲେ । ପରେ ଏ ସିଂହାସନ ଦିଲ୍ଲୀକୁ ନିଆଗଲା, ଯେତେବେଳେ ରାଜଧାନୀ ଶାହାଜାହାଁବାଦକୁ ସ୍ଥାନାନ୍ତରିତ ହେଲା ।

ଶାହାଜାହାଁ ହୁଏତ ପୃଥିବୀର ସର୍ବଶ୍ରେଷ୍ଠ ଧନୀ ଲୋକ । ସବୁ ଧନକୁ ସୁରକ୍ଷିତ ରଖିବାପାଇଁ ସେ ଦୁଇଟି ଗୁପ୍ତଘର ବନାଇଥିଲେ । ଗୋଟିଏ ସୁନା ଗଚ୍ଛିତ ରଖିବାପାଇଁ ଓ ଆଉଟି ରୂପା ପାଇଁ ।

ସିଂହାସନରେ ରତ୍ନଖଞ୍ଜା ହେବାରେ ଅନେକ ବିବରଣୀ ଅଛି । ୧୬୪୭ରେ ତାଙ୍କ ରାଜସ୍ୱ ଥିଲା ୨୨୦ ମିଲିୟନ ଟଙ୍କା । ପ୍ରିଭିପର୍ସରୁ ସେ ପାଉଥିଲେ ୩୦ ମିଲିଅନ ଟଙ୍କା । ଯଦୁନଥା ସରକାରଙ୍କ ଉକ୍ତି ଅନୁସାରେ ପାଞ୍ଚଟି ରୁବି ଓ ୩୦ଟି ମୁକ୍ତାର ମୂଲ୍ୟ ୮ ମିଲିୟନ ଟଙ୍କା । ତାଙ୍କ ପିନ୍ଧିଥିବା ଟରବାନରେ ୧.୨୪ ମିଲିୟନ ଟଙ୍କାର ରତ୍ନ ସବୁ ଲଗା ହୋଇଥିଲା । ସେ ୯୫ ମିଲିୟନ ଟଙ୍କା ତାଙ୍କ ୨୦ ବର୍ଷର ରାଜୁତି ଭିତରେ ଦାନ ସ୍ୱରୂପ ଦେଉଥିଲେ ।

ଏହାର କୁପ୍ରଭାବ ଲୋକଙ୍କ ଉପରେ ପଡ଼ିଥିଲା । ଗରୀବ ଓ ଧନହୀନ ପ୍ରଜାଙ୍କୁ ଅଧିକ ଟିକସ ଦେବାକୁ ପଡ଼ିଥିଲା । କୌଣସି ଅର୍ଥନୈତିକ ଉନ୍ନତ ନ କରାଇ ଜୋର ଜବରଦସ୍ତି ଏ ଟିକସ୍ ଆଦାୟ କରାଯାଉଥିଲା । ଆକବରଙ୍କ ସମୟରେ ଯାହା ରାଜସ୍ୱ ଆଦାୟ ହେଉଥିଲା ତା'ର ତିନିଡବଲ ରାଜସ୍ୱ ଆଦୟା ହେଲା ସତ କିନ୍ତୁ ଖର୍ଚ୍ଚ ହେଲା ଚାରିଡବଲ । ଧନୀ, ବ୍ୟବସାୟୀ ଓ ଗରୀବ ଲୋକଙ୍କର ଦୈନନ୍ଦିନ ଜୀବନଯାତ୍ରାର ପ୍ରଭେଦ ଦେଖାହେଲା ।

ନ୍ୟାୟର ମାନଦଣ୍ଡ ମଧ କମିଗଲା । ଏତେ ବଡ଼ ସାମ୍ରାଜ୍ୟକୁ ଆଖି ଆଗରେ ନ ରଖି କେବଳ ସପ୍ତାହରେ ଗୋଟାଏ ଦିନ (କେବଳ ଶୁକ୍ରବାର) ନ୍ୟାୟ ବିଚାର ପାଇଁ ଉଦ୍ଦିଷ୍ଟ ଥିଲା । ହଜାର ହଜାର ଅଭିଯୋଗପତ୍ର ଥିଲେ ମଧ ୨୦ଟି ଅଭିଯୋଗପତ୍ରର ଦରବାରରେ ପେଶ୍ କରାଯାଇଥିଲା । ମୋଗଲ ନ୍ୟାୟ ଦରବାରରେ ଉତ୍କୋଚ ସର୍ବଶ୍ରେଷ୍ଠ ସୀମାରେ ପହଞ୍ଚିଥିଲା । ଆଉ ସମ୍ରାଟଙ୍କ ପାଖକୁ ନ୍ୟାୟ ପାଇଁ ଆସିବାର ରାସ୍ତା ମଧ ବନ୍ଦ ଥିଲା । ସମ୍ରାଟଙ୍କ ଅମଳରେ ବାହାରୁ କେହି ଦକ୍ଷନ୍ୟାୟ ମୂର୍ତ୍ତି ମଧ ଭାରତକୁ ଆସି ପାରିଲେ ନାହିଁ—ଏପରିକି ପର୍ଶିଆରୁ ମଧ ନୁହେଁ । ଅନ୍ୟ କାରଣ ଥିଲା ପର୍ଶିଆ ଓ ଉଜ୍‌ବେଗ ମଧରେ ଯୁଦ୍ଧ ଲାଗି ରହିଥିଲା । ଭାରତୀୟ ଦକ୍ଷ

ଲୋକ ମଧ ଦରବାରକୁ ଆସିବା କମିଗଲେ । କେବଳ ସାମ୍ରାଜ୍ୟ ବିସ୍ତାର ହିଁ ଏକମାତ୍ର କାମ । ଉତ୍ସୁକତା ଓ ଧାରାରେ ଚାଲୁଥିବା ସମ୍ରାଟ ଶାହାଜାହାଁ ସୁରକ୍ଷା ଓ କ୍ଷମତା ପାଇ ଖୁସି ଥିଲେ । ସେ ଥିଲେ ରକ୍ଷଣଶୀଳ ମୁସଲମାନ । ତାଙ୍କର ବିଶ୍ୱାସ ଥିଲା ଅଣମୁସଲମାନମାନେ ସେମାନଙ୍କର ନିଜ ନିଜର ପ୍ରର୍ଥନାଧାରାରେ ଜୀବନ ଚଳାଇଲେ ମଧ କୌଣସି ମନ୍ଦିର ନିର୍ମାଣ ବା ମରାମତି କରାଇପାରିବେ ନାହିଁ । ସୁତରାଂ ୧୬୩୩ରେ ନିର୍ମାଣଧୀନ ସୁବ ମନ୍ଦିର ଭାଙ୍ଗିବାକୁ ଆଦେଶ ଦେଲେ ।

ମୁସଲମାନମାନେ ଧର୍ମପରିବର୍ତ୍ତନ ନ କରିବାର କଠୋର ଆଦେଶ ଦେଲେ । କିନ୍ତୁ ମୁସଲିମ ଧର୍ମ ଗ୍ରହଣ କରିବା ପାଇଁ ଅନ୍ୟ ଧର୍ମର ଲୋକଙ୍କୁ ଉତ୍କୋଚ ଇତ୍ୟାଦି ଦେଇ ପ୍ରବର୍ତ୍ତାଇଲେ । ହିନ୍ଦୁ ସ୍ତ୍ରୀଲୋକ ଧର୍ମାନ୍ତକରଣ ନ କରାଇ ମୁସଲମାନ ଲୋକଙ୍କୁ ବାହା ହୋଇପାରିବେ ନାହିଁ । ହୁଗୁଳିରୁ ପର୍ତ୍ତୁଗୀଜମାନେ, ବୁନ୍ଦେଲଖଣ୍ଡରୁ ରାଜପୁତମାନେ ମୁସଲମାନ ଧର୍ମ ଗ୍ରହଣ କଲେ ସବୁ ଦଣ୍ଡରୁ ମୁକ୍ତି ପାଇପାରିବେ । ପୋଷାକ ପରିଧାନରେ ମଧ କଠୋର ଆଦେଶ ଦେଇଥିଲେ । କୌଣସି ମୁସଲିମଧର୍ମ ବିରୋଧି କାମ କରିପାରିବେ ନାହିଁ, ଯଥା ମଦବିକିବା, ମୃତମାନଙ୍କୁ କବର ଦେବା, ମୁସଲିମ କବର ପାଖରେ ସତୀଦାହ କରେଇବା ଇତ୍ୟାଦି । ଶାହାଜାହାଁ ନିଜେ ମଧ ମୁସଲମାନ ନିୟମକୁ ନେଇ ନିଜର ରକ୍ଷଣଶୀଳତାର ପରିଚୟ ଦେଉଥିଲେ । ଦାଢ଼ି ଛାଡ଼ିବା, ଅମୀରମାନଙ୍କୁ ସମ୍ରାଟଙ୍କର ଫଟୋ ତାଙ୍କ ଟରବାନ ଭିତରେ ରଖିବା, ଶପଥ ନେଇ ମଦ୍ୟପାନ ତ୍ୟାଗକରିବା ପ୍ରଭୃତି ଦୃଢ଼ତାର ସହିତ ମାନୁଥିଲେ ।

ଶାହାଜାହାଁ ତାଙ୍କ ଶାସନର ଶେଷ ଆଡ଼କୁ କିଛିଟା ନିୟମକାନୁନ କୋହଳ କରିଦେଇଥିଲେ । ବୀର ସିଂ ବୁନ୍ଦେଲା ପ୍ରଧାନ, ଜାହାଙ୍ଗୀରଙ୍କ ଶାସନ କାଳରେ ମଥୁରାରେ ଗୋଟିଏ ମନ୍ଦିର ସ୍ଥାପନା କରିଥିଲେ ଓ ସେ ମନ୍ଦିରରେ ପଥର ରେଲିଂ ଲଗାଇବା ପାଇଁ ପଥର ବରାଦ ଦେଇଥିଲେ । ପର୍ଶୟାନ ସଂସ୍କୃତି ପାଇଁ ଅନେକ ଆଗ୍ରହ ଥାଇଁ ମଧ ସେ ହିନ୍ଦୁଗୀତ ଓ କବିତା ପାଇଁ ମମତା ରଖିଥିଲେ । ତାଙ୍କ ଅମଳରେ ହିନ୍ଦୁମାନେ ମଧ ଉଚ୍ଚ ଅଫିସର ପଦବୀରେ ଥିଲେ । ଏ ସବୁ ସତ୍ତ୍ୱେ ଆକବରଙ୍କ ଅମଳର ଶାସନ ଆଶ୍ଚର୍ଯ୍ୟଜନକ ଭାବରେ ହୁଗୁଳା ହୋଇଆସିଥିଲା ।

ଶାହାଜାହାଁଙ୍କ ବିବାହ ୧୪ ବର୍ଷ ପରେ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହେଲା । ମୃତ୍ୟୁ ସମୟରେ ସେ ସ୍ୱାମୀଙ୍କୁ ନିଜର ଦୁଟି ଇଚ୍ଛା ପୂରଣ କରିବାକୁ ଅନୁରୋଧ

କରିଥିଲେ। ଗୋଟିଏ ସେ ଅନ୍ୟ ପତ୍ନୀ ଗ୍ରହଣ କରିବେ ନାହିଁ ଓ ଦ୍ୱିତୀୟରେ ଏପରି ଏକ ମହଲ ତିଆରି କରିବେ ଯାହାକୁ ଦେଖି ପୃଥିବୀବାସୀ ଆଶ୍ଚର୍ଯ୍ୟ ହୋଇଯିବେ। ଦୁଇଟି ଯାକ ଇଚ୍ଛା ସେ ପୂରଣ କରିଥିଲେ।

ଶାହାଜାହାଁଙ୍କ ରାଜଧାନୀ ପ୍ରଥମେ ଆଗ୍ରାରେ ହିଁ ଥିଲା। ସେ ସମୟରେ ସମ୍ରାଟଙ୍କର ପଟୁଆର ବାହାରୁ ଥିଲା। କିନ୍ତୁ ଆଗ୍ରାର ରାସ୍ତା ସବୁର ଚଉଡ଼ା କମ୍ ଥିଲା। ପଟୁଆର ଯିବାରେ ବାଧା ଆସୁଥିଲା। ରାସ୍ତା ଚଉଡ଼ା କରିବା ପାଇଁ ସେଠିକାର ବାସିନ୍ଦାମାନେ ରାଜି ହେଲେ ନାହିଁ। ସେଥିପାଇଁ ଶାହାଜାହାଁ ନିଜର ରାଜଧାନୀ ଦିଲ୍ଲୀକୁ ଉଠାଇ ଆଣିବା ପାଇଁ ବାଧ ହେଲେ। ନିଜେ ରହିବା ପାଇଁ ଅଟ୍ଟାଳିକା ଗଢ଼ିଲେ। ନାଁ ଦେଲେ ଶାହାଜାହାଁବାଦ। ୧୬୩୮ରୁ ୧୬୪୮ ପର୍ଯ୍ୟନ୍ତ ଏହାର ନିର୍ମାଣକାର୍ଯ୍ୟ । ଏ ପ୍ରାସାଦର କାନ୍ଥ ତିଆରି ହେବା ପାଇଁ ଶାହାଜାହାଁ ଫିରୋଜାବାଦ ଓ ଶେରସାହ ସୁରିଙ୍କର ପ୍ରାସାଦ ଭାଙ୍ଗି ସେଇ ସାମଗ୍ରୀରେ ରାଜଧାନୀର କାନ୍ଥ ତିଆରି କଲେ। ୧୬୫୬ରେ ଏକ ସଂକ୍ରାମକ ରୋଗ ଦିଲ୍ଲୀକୁ ମାଡ଼ି ବସିଲା ସେଇ ସମୟରେ ଗଡ଼ମୁକ୍ତେଶ୍ୱର ଓ ଫଇଜାବାଦରେ ରହିଲେ।

ଦୀନପନାହ(ପୁରୁଣାକିଲ୍ଲା)କୁ କେତେଥର ଶାହାଜାହାଁ ବାଦଶାହା କିଲ୍ଲା ଓ ସହର ବସାଇବା ପାଇଁ ଆସିଥିଲେ। ଜ୍ୟୋତିଷଙ୍କ ସଂଗରେ ପରାମର୍ଶ ମଧ୍ୟ କରିଥିଲେ। ଶେଷରେ କିଲ୍ଲା ପାଇଁ ଲାଲକିଲ୍ଲା ଜାଗା ବାଛିଲେ। ସହର ପାଇଁ ବାଛିଲେ ଶାହାଜାହାଁବାଦ। କିଲ୍ଲା ଏପରି ଭାବରେ ତିଆରି ହେବାର ଯୋଜନା ହେଲା କି ଆଗ୍ରା କିଲାଠୁ ଦୁଇଗୁଣ ହେବ ଓ ଲାହୋର କିଲ୍ଲାଠାରୁ ବି ଅଧିକ ଅନେକ ଗୁଣ ବଡ଼ ହେବ। ଏହାକୁ କିଲମୋଆଲାପୁର ମଧ୍ୟ କହୁଥିଲେ। କିଲ୍ଲା କାମ ସରିଲାବେଳକୁ ବାଦଶାହା କାବୁଲରେ ଥିଲେ। ଖବର ପାଇ ଘୋଡ଼ାରେ ସବାର ହୋଇ ବିରାଟ ଶୋଭାଯାତ୍ରାରେ ଦରିଆ ଦରଜାବାଟେ ଦାଖଲ ହେଲେ। ବାଦଶାହା ଦରବାରରେ ନ ପହଞ୍ଚିଲା ପର୍ଯ୍ୟନ୍ତ ତାଙ୍କ ଉପରେ ଚାନ୍ଦି ଓ ସୁନାର ମୁଦ୍ରାସବୁ ପକାଯାଇଥିଲା। ତଳେ ଲାଲ ରଙ୍ଗର କପଡ଼ା ବିଛା ଯାଇଥିଲା। ଦିବାନୀ ଆମରେ ଛାତ ତଳେ ଚିନ୍‌ମଖମଲ ଓ ରେଶମ କପଡ଼ାରେ ଢଙ୍କା ହୋଇଥିଲା। ମଝିରେ ଏକ ଶାମିୟାନା। ନା ଥିଲା ଦଉଲବାଦଲ। ଅହମଦାବାଦର ଶାହୀ କାରଖାନରେ ତିଆରି ହୋଇ ମଗାଯାଇଥିଲା। ଦାମ ଥିଲା ଲକ୍ଷେ ଟଙ୍କା। ତିଆରି କରିବା ପାଇଁ ସାତବର୍ଷ ଲାଗିଥିଲା।

ରୂପାର ଖୁଣ୍ଟ ଉପରେ ଶାମିୟାନା ବନ୍ଧା ଯାଇଥିଲା । ଦିବାନୀ ଆମରେ ସୁନାର କଟହରା ଲଗାଯାଇଥିଲା । ତଖ୍ତ ଉପରେ ଯେଉଁ ଚଦର ବନ୍ଧାଯାଇଥିଲା । ସେଥିରେ ମୋତି ଓ ସୁନାର କାମ ହୋଇଥିଲା । ହୀରା ବି ଖଞ୍ଜା ଯାଇଥିଲା । ଅନ୍ୟମାନଙ୍କ ପାଇଁ ପୋଷାକ ବନାହେବାରେ ଅନେକ ଟଙ୍କା ମଧ୍ୟ ଖର୍ଚ୍ଚ ହୋଇଥିଲା ।

ଲାଲକିଲ୍ଲା : କିଲ୍ଲାର ଗଠନ ଅଷ୍ଟକୋଣ ଥିଲା । ବହୁତ ସାମଗ୍ରୀ ଥରକୁ ଥର ଫତେପୁର ସିକ୍ରିରୁ ଅଣାଯାଇଥିଲା । ପୂର୍ବରେ ଯମୁନା ନଦୀରୁ ଆରମ୍ଭ କରି ପରିଖ ଖୋଳା ଯାଇଥିଲା । ସେଥିରେ ରଙ୍ଗବେରଙ୍ଗର ମାଛ । କଡ଼ରେ ସୁନ୍ଦର ବଗିଚା ଯେଉଁଥିରେ ରଙ୍ଗବେରଙ୍‌ଗର ଫୁଲ ଲଗା ହୋଇଥିଲା । ଆଉ ଭିତର ଇମାରତ ଅତିସୁନ୍ଦର । ଦରଜା ଥିଲା ପାଞ୍ଚଟି । ଲାହୋର ଦରଜା ଓ ଦିଲ୍ଲୀ ଦରଜା ଦେଇ ସହରକୁ ଯାତାୟତ କରାଯାଉଥିଲା । ଆଉ ଗୋଟେ ଦରଜା ଦରିଆ ଆଡ଼କୁ ସଲିମଗଡ଼ ଯିବା ପାଇଁ ଥିଲା । ଦରିଆ ଉପରେ ପୋଲ ତିଆରି ହୋଇଥିଲା । ୪ର୍ଥଟି ସୁସମ୍ମନ ପୋଇ ତଳେ ଥିଲା ଆଉ ପାଞ୍ଚଟି ଅସଦପୋଲ ତଳେ । ସେଇ ଦରଜା ଦେଇ ଆଗ୍ରା ଯାଉଥିଲେ ।

୧୯୪୭ ଅଗଷ୍ଟ ୧୫ରେ ଜବାହାରଲାଲ ନେହୁରୁ ଏଠି ପ୍ରଥମ ସ୍ୱାଧୀନତା ଦିବସ ମନେଇବା ପାଇଁ ପତାକା ଉତ୍ତୋଳନ କରିଥିଲେ । ତା' ପରଠୁ ଅଗଷ୍ଟ ୧୫ରେ ଏ ଜାଗାରେ ହିଁ ପତକା ଉତ୍ତୋଳନର ଉତ୍ସବ ପାଳିତ ହେଉଛି । ଲାଲକିଲ୍ଲା ତିଆରି ହେବାର ଦଶବର୍ଷ ପରେ ଶାହାଜାହାଁବାଦ ସହର ତିଆରି ଆରମ୍ଭ ହୋଇଥିଲା ।

ସମୟର ସୁଗନ୍ଧ ବୋହି ଶାହାଜାହାନ ଆଗ୍ରାରେ ଆଉ ଗୋଟାଏ ଲାଲକିଲ୍ଲା ତିଆରି କଲେ । ଦିୱାନି ଆମ ବହୁତ ବଡ଼ ବଡ଼ ଖୁମ୍ବ ସହ ବନାଇଲେ । ସଫେଦ ମାରବଲରେ ତିଆରି ବଖରା ଓ ପାଭେଲିଅନ ମଧ୍ୟ ଉପର ମହଲାରେ ଶୋଭା ପାଉଥିଲା । ସେଇଠି ନିଜ ସୃଷ୍ଟିରେ ଆବଦ୍ଧ ରହି, ସମ୍ରାଟ ବନ୍ଦୀ ରହି ତାଙ୍କ ଶେଷ ଜୀବନ କଟାଇଲେ ପୁତ୍ର ଔରଙ୍ଗଜେବଙ୍କ ଦ୍ୱାରା । ସେ ସେଠାରୁ ଯମୁନା ନଦୀରେ ସୂର୍ଯ୍ୟୋଦୟ, ଆକାଶର ବଡ଼ ବଡ଼ ଧଳା ବାଦଲକୁ ମୁଗ୍ଧ ଚିତ୍ତରେ ଦେଖୁଥିଲେ । ପାଖରେ ତାଙ୍କର ମନମୁଗ୍ଧକର ବାଜଣା । କଟାଇଲେ ବନ୍ଦୀ ଜୀବନ । ଶାହାଜାହାଁଙ୍କ ଝିଅ ଜାହାଁନ୍ନାରା ବେଗମ, ଶାହାଜାହାଁ ବନ୍ଦୀ ହେବ ଦିନରୁ ତାଙ୍କ ପାଖେ ପାଖେ ଥିଲେ ତାଙ୍କ ବନ୍ଦୀ ଅବସ୍ଥାରେ ଜାହାନ୍ନାରା ଅନୁରୋଧ କରିଥିଲେ କି ନିଜାମୁଦ୍ଦିନ

ଯାଲିଆଙ୍କ କବର ନିକଟରେ ତାଙ୍କ ମୃତ୍ୟୁପରେ ତାଙ୍କୁ ଦଫନ କରିବା ପାଇଁ। ଆଉ କହିଥିଲେ କି ତାଙ୍କ କବର ଉପରେ କେବଳ ଘାସ ବ୍ୟତିତ ଆଉ କୌଣସି ସ୍ମୃତିଚିହ୍ନ ରହିବ ନାହିଁ। ନାରୀ ସୁଲଭ ଗୁଣ, ବୁଦ୍ଧିମତୀ, ସୁନ୍ଦରୀ ଥିଲେ ଜାହାନ୍ନାରା। ଶାହାଜାହାଁଙ୍କ ସାନଝିଅ ରୋଶନାରୀ ଔରଙ୍ଗଜେବ ସହ ରହିଥିଲେ।

ଜାହାଙ୍ଗୀର ସମ୍ରାଜ୍ୟରେ ଶାନ୍ତ ପରିବେଶରେ ଯୁଦ୍ଧର ଗତି ପୁଣି ଉଗ୍ର ହୋଇଉଠିଲା। ପୂର୍ବ ସମ୍ରାଟମାନଙ୍କ ପରି ନିଜେ ଯୁଦ୍ଧକ୍ଷେତ୍ରକୁ ନ ଯାଇ ଯୁଦ୍ଧକ୍ଷେତ୍ରର ପାଖାପାଖି ରହି ଯୁଦ୍ଧର ବିବରଣୀ ଅନୁଧ୍ୟାନ କରୁଥିଲେ।

ବୁନ୍ଦେଲାର ବିରସିଂଙ୍କ ଉତ୍ତରାଧିକାରୀ ଭାବେରେ ଜୁଝାର ସିଂ ବିଦ୍ରୋହ ଆରମ୍ଭ କଲେ। ବିଦ୍ରୋହ ଦମନ କଲେ ସତ କିନ୍ତୁ ସଂପୂର୍ଣ୍ଣ ଭାବରେ ବନ୍ଦ କରିପାରିଲେ ନାହିଁ। ସେଥିପାଇଁ ଦ୍ୱିତୀୟଥର ୧୬୩୫ବେଳକୁ ଅଭିଯାନ ଆରମ୍ଭ କଲେ। ଏଥିରେ ନେତୃତ୍ୱ ନେଲେ ୧୭ ବର୍ଷିୟ ପୁତ୍ର ଔରଙ୍ଗଜେବ। ଆକବରଙ୍କ ଧର୍ମ ଥିଲା ସହନୀୟ ନୀତି। ତାକୁ ଖଣ୍ଡନ କଲେ ଶାହାଜାହାଁ। ଶେଷ ଆଡ଼କୁ ଔରଙ୍ଗଜେବଙ୍କ ସହ ଯୁଦ୍ଧକ୍ଷେତ୍ରରେ ମିଳିଲେ– ବୁନ୍ଦେଲାର ରାଜଧାନୀ ଓରଚ୍ଛାରେ। ବେଟଓ୍ୱା ନଦୀ କୂଳରେ ବିରସିଂ ଦ୍ୱାରା ନିର୍ମିତ ବିରାଟ ମନ୍ଦିରକୁ ଭାଙ୍ଗି–ମସଜିଦ ତୋଳାଇଲେ। ଜୁଝାରସିଂ ପରିବାରକୁ ଆୟତ୍ତ କରି ଆଗ୍ରା ନେଇଗଲେ। ସ୍ତ୍ରୀଲୋକଙ୍କୁ ହାରେମ ପଠାଇ ଦେଇ ଯୁବତୀ ଝିଅଙ୍କୁ ମୁସଲିମ ନୀତି ଅବଲମ୍ବନ କରିବା ପାଇଁ ବାଧ୍ୟ କଲେ।

ସବୁଠୁ ବଡ଼କଥା ହେଲା ବୁନ୍ଦେଲା ବିଦ୍ରୋହ ଆରମ୍ଭ ହେଲା ଖାଁ ଜାହାନଙ୍କ ପ୍ରରୋଚନାରେ। ସାରା ଦାକ୍ଷିଣ୍ୟକୁ ବ୍ୟାପିଲା। ମାଲଓ୍ୱାରର ମୋଗଲ ଗଭର୍ଣ୍ଣର ନୁରଜାହାଁଙ୍କ ପ୍ରିୟ ଥିଲେ। ଭୟ ଥିଲା ସେ ଶାହାଜାହାଁଙ୍କ ବିରୁଦ୍ଧରେ ଯିବେ। ଶାହାଜାହାଁଙ୍କ ସିଂହାସନରେ ବସିବା ସମୟରେ ସେ ଦେହ ଖରାପର ବାହାନା କରି ଆଗ୍ରା ଯାଇ ନ ଥିଲେ। ତାଙ୍କର ଏ ପ୍ରକାର ବ୍ୟବହାର ଅସୌଜନ୍ୟ, ଅକ୍ଷମଣୀୟ ମଧ୍ୟ। ଖାନ ଜାହାନଙ୍କୁ ଆଗ୍ରା ଡକାହେଲା। ସେ ଦୁଃଖି ରହିଲେ ଅନେକ ଦିନ ଧରି। ସମ୍ରାଟଙ୍କ ମନୋଭାବ ଉପରେ ନିର୍ଭର୍ ନ କରି ନିର୍ଭର କଲେ ନିଜର ଶକ୍ତି ଉପରେ। ୧୬୨୯ରେ ୨୦୦ ଶକ୍ତିବାନ ଆଫଗାନ ସୈନ୍ୟଙ୍କୁ ଧରି ସେ ଦାକ୍ଷିଣାତ୍ୟ ଅଭିମୁଖେ ଯାତ୍ରା କଲେ। ଶାହାଜାହାଁ ଅନୁମାନ କରିଥିଲେ ଏ ପ୍ରକାର ଜୟଯାତ୍ରାର ଉଦ୍ଦେଶ୍ୟ।

ସାଙ୍ଗେ ସାଙ୍ଗେ ସୈନ୍ୟ ପଠାଇଲେ। ରାସ୍ତାରେ ଚମ୍ବଲ ନଦୀ ନିକଟରେ ସେମାନଙ୍କର ଗତିରୋଧ କଲେ। କିନ୍ତୁ ଖାଁ ଜାହାନ୍ ଅଳ୍ପ ସଂଖ୍ୟକ ସୈନ୍ୟ ଧରି ଖସି ପଳାଇ ବୁନ୍ଦେଲଖଣ୍ଡ ଓ ଗଣ୍ଡୱାନା ଦେଇ ଅହମ୍ମଦାନଗରରେ ପହଞ୍ଚିଲେ।

ଦାକ୍ଷିଣାତ୍ୟ ଅଭିଯାନ ବହୁତ ଭାରି ପଡ଼ିଲା। ହିନ୍ଦୁସ୍ଥାନ ଅଭିଯାନଠୁ ଅନେକ ବେଶୀ। ତ୍ରିକୋଣ ଧାରାରେ ଯୁଦ୍ଧ ହେଲା। ଜାଣି ହେଉ ନଥିଲା କିଏ ଶତ୍ରୁ ଆଉ କିଏ ମିତ୍ର। ଉପରନ୍ତୁ ମରହଟ୍ଟାମାନଙ୍କର ମଝିରେ ମଝିରେ ଆକ୍ରମଣ ମଧ୍ୟ କଷ୍ଟକର ଥିଲା। ଏହାକୁ ଜିଣିଲେ ଶାହାଜାହାଁ।

ଘମୋଘୋଟ ଆନ୍ଦୋଳନ ଓ ଯୁଦ୍ଧ କରିବାରେ କଟିଗଲା ବର୍ଷେ। ଯେତେ କଷ୍ଟ ପଡୁ ପଛେ ୧୬୩୦ ବେଳକୁ ଅହମ୍ମଦାନଗରରେ ଦୁର୍ଭିକ୍ଷ ଓ କ୍ରମାଗତ ଯୁଦ୍ଧ ଫଳରେ ଖାଁଙ୍କ ଶକ୍ତି କମିଗଲା। ଅହମ୍ମଦାନଗର ଶାନ୍ତିବାର୍ତ୍ତା ପଠାଇଲା। ଖାଁ ଜାହାଁନ ପଂଜାବ ଖସି ପଳାଉଥିବା ଅବସ୍ଥାରେ ମୋଗଲ ସୈନ୍ୟମାନଙ୍କ ଦ୍ୱାରା ନିହତ ହେଲେ। ବିଜାପୁର ଓ ଗୋଲକୋଣ୍ଡାରେ ଯୁଦ୍ଧ ଲାଗିରହିଥିଲା। ଅହମ୍ମଦାନଗର ଜୟ କରି ଓ ବିଜାପୁରର ବିଦ୍ରୋହ ଦମନ ପରେ ପ୍ରାୟ ବିଜୟର ଚୂଡ଼ାନ୍ତରେ ପହଞ୍ଚିଥିଲେ। ହଠାତ୍ ବିଜାପୁର ରାଜା ଅନୁଭବ କଲେ କି ମୋଗଲ ଦଳଙ୍କର ବଳ କମିଯାଇଛି। ଇଚ୍ଛା କଲେ ଏହି ଅବସ୍ଥାରେ ସେମାନଙ୍କୁ ଦେଶରୁ ବାହାର କରିଦେଇ ହେବ। ୧୬୩୧ରେ ଭୟଙ୍କର ଦୁର୍ଭିକ୍ଷ ଓ ମମତାଜ ମହଲଙ୍କ ମୃତ୍ୟୁରେ ଭାଙ୍ଗି ପଡ଼ିଲେ ଶାହାଜାହାଁ। ସେ ତାଙ୍କର ଜେନେରାଲମାନଙ୍କ ହାତରେ ଯୁଦ୍ଧଡୋରି ଛାଡ଼ିଦେଇ ଆଗ୍ରା ଫେରିଗଲେ। ପରେ ବର୍ଷକ ପର୍ଯ୍ୟନ୍ତ ଯୁଦ୍ଧ ଚାଲୁ ରହିଲା। ପରେ ମହବତ୍ ଖାଁ ଅହମ୍ମଦାନଗରର ବାଳୁତ ରାଜା ହୁସେନ ସାହାଙ୍କୁ ଆୟାତ୍ତ କଲେ। ଅହମ୍ମଦନଗରରେ ହୁସେନ ସାହାଙ୍କ ରାଜୁତି ଶେଷ ହେଲା। ବାଳୁତ ରାଜା ଗୋଓ୍ୱାଲିୟରର ରାଜବନ୍ଦୀମାନଙ୍କ ସହିତ ସାରାଜୀବନ କାଳ ବିତାଇଲେ।

କିନ୍ତୁ ଶେଷ ହେଲା ବିଦ୍ରୋହ। ଅହମ୍ମଦାନଗର ବିରୁଦ୍ଧରେ ମୋଗଲ ସହିତ ହାତ ମିଳାଇଥିଲେ ଶାହାଜୀ-ଭୋଁସଲେ- ଜଣେ ମରହଟ୍ଟା ପ୍ରଧାନସେନା ନାୟକ। ମୋଗଲମାନଙ୍କ ବିରୁଦ୍ଧରେ ଆଗେଇ ଆସିଲେ। ବିଜାପୁର ମୋଗଲମାନଙ୍କ ଦଖଲର ବାହାରେ। ଜଣା ଯାଉଥିଲା ଏ ଯୁଦ୍ଧର ଶେଷ ହେବ ନାହିଁ। ମହବତ୍ ଖାଁ ବିବ୍ରତ ହୋଇ ପଡୁଥିଲେ। ମଳକଣ୍ଟକ ରୋଗରେ ଆକ୍ରାନ୍ତ ହୋଇ ଅକ୍ଟୋବର ୧୬୩୪ରେ

ମୃତ୍ୟୁବରଣ କଲେ। ଦାକ୍ଷିଣାତ୍ୟକୁ ଫେରିଲେ ଶାହାଜାହାଁ। ମୋଗଲ ସାମ୍ରାଜ୍ୟର ଇଜ୍ଜତ ରକ୍ଷା କରିବା ପାଇଁ। ୧୬୩୬ରେ ଦୌଲତାବାଦରେ ପହଞ୍ଚିଥିଲା ପରେ ଗୋଲାକୋଣ୍ଡା ବାର୍ଷିକ ଛ'ଲକ୍ଷ ଖଜଣା ଦେବାକୁ ରାଜି ହେଲା। ଆଦିଲ ସାହ, ବିଜାପୁରର ସୁଲତାନ ଶାନ୍ତି ପ୍ରତିଷ୍ଠା କରିବାକୁ ଆଗେଇ ଆସିଲେ। ୨ ମିଲିଅନ ଟଙ୍କା ଦେବାକୁ ରାଜି ହେଲେ। ବଦଳରେ ଅହମ୍ମଦାନଗର ରାଜ୍ୟର ୫୦ଟି ରାଜ୍ୟ ନେଲେ।

ସୁନାପ୍ଲେଟରେ ଶାହାଜାହାଁଙ୍କ ହାତଚିହ୍ନ ରହି ଚୁକ୍ତିନାମା ନାମାଙ୍କିତ ହୋଇ ବିଜାପୁର ପଠାଗଲା। ୧୬୩୬ରେ ଶାନ୍ତି ଚୁକ୍ତିନାମା କୋଡ଼ିଏ ବର୍ଷ ଧରି କାଏମ ରହିଲା। ସେଇ ବର୍ଷ ଜୁଲାଇରେ ଶାହାଜାହାଁ ଆଗ୍ରାକୁ ଫେରିଲେ। ଛାଡ଼ିଦେଇ ଆସିଲେ ଔରଙ୍ଗଜେବଙ୍କୁ ସେଠାକାର ଶାସନ ଦାୟିତ୍ୱ। ପରେ ଉତ୍ତରପଶ୍ଚିମ ପଟେ ଛୋଟ ଛୋଟ ସୈନ୍ୟବାହିନୀଙ୍କ ଅଧିକାରରେ ଛାଡ଼ିଲେ।

ମଙ୍ଗୋଲିୟାନ ଜନଜାତି ଅଧିନରେ ଥିବା ଆସାମ, ବାଗଲାନ, ଗରଓ୍ୱାର ନିଜ ଅଧିନକୁ ଆଣିଲେ। ଚିତ୍ତୋର, ହୁଗୁଳି, ଡାମନ ଡିଉ, କାଙ୍ଗ୍ରା, ତିବତ୍, ବୁନ୍ଦେଲଖଣ୍ଡ, ବିହାର, ମାଲଓ୍ୱା ଏ ସବୁ ରାଜ୍ୟ ତାଙ୍କ ଅଧିନକୁ ଆସିଲା। ଐତିହାସିକ ଦୃଷ୍ଟିକୋଣରୁ ଦେଖିଲେ ଏ ପ୍ରକାର ଛୋଟ ଛୋଟ ସୈନ୍ୟ ଆକ୍ରମଣ ଥିଲା ପର୍ତ୍ତୁଗୀଜଙ୍କ ବିପକ୍ଷରେ। ହୁଗୁଳିରେ ଯେଉଁ ଆକ୍ରମଣ ଘଟିଲା ତାହା ଇଂରେଜମାନଙ୍କ ବିରୁଦ୍ଧରେ। ଭାରତର ସବୁଠୁ ବଡ଼ ଶତ୍ରୁ। ପର୍ତ୍ତୁଗୀଜମାନେ ସମୁଦ୍ର କୂଳରେ ଅନେକ ଛୋଟ ଛୋଟ ବନ୍ଦର ଭଳି ଜାଗାମାନଙ୍କର ଅଧିକାର ପାତିଥିଲେ। ସେଠାରୁ ସେମାନେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ବ୍ୟବସାୟ କରିପାରୁଥିଲେ। ସବୁଠୁ ବଡ଼ ବନ୍ଦର ହେଲା ଗୋଆ। ଗୋଆ ମୋଗଲ ସାମ୍ରାଜ୍ୟଠାରୁ ବହୁତ ଦୂରରେ। ଗୋଆ ଛଡ଼ା ଅନେକ ଛୋଟ ଛୋଟ ସମୁଦ୍ରକୂଳିଆ ଜାଗା ମଧ୍ୟ ଥିଲା। କିନ୍ତୁ ସାମ୍ରାଜ୍ୟ ଭିତରେ, ଗୁଜରାଟ ଓ ବଙ୍ଗଳାରେ ଅନେକ ନୌବାହିନୀକୁ ଶକ୍ତି ମଧ୍ୟ ପରଖୁ ଥିଲେ। ଏଠାରେ ମଧ୍ୟ ପର୍ତ୍ତୁଗୀଜମାନଙ୍କର ଅଧିକାର ଥିଲା। ଷୋଡ଼ଶ ଶତାବ୍ଦୀ ବେଳକୁ ମୋଗଲମାନେ ହିନ୍ଦୁସ୍ଥାନରେ ତାଙ୍କ ଅଧିକାର ଏକାଠି କରୁଥିଲେ। ସେତେବେଳେ ହୁଗୁଳି ନଦୀ କୂଳରେ ତାଙ୍କର ବେପାର ବଣିଜ କରୁଥିଲେ ପର୍ତ୍ତୁଗୀଜମାନେ। ସେମାନେ ହୁଗୁଳି ନଦୀରେ ଯାତାୟତ କରୁଥିବା ଜାହାଜମାନଙ୍କ ଉପରେ ଟୋଲ ଟିକସ ବସାଥିଲେ।

ବଙ୍ଗଳାର ପର୍ତ୍ତୁଗୀଜମାନଙ୍କ ଉପରେ ବ୍ୟକ୍ତିଗତ ରାଗ ଥିଲା । କାରଣ ପର୍ତ୍ତୁଗୀଜମାନେ ଜାହାଙ୍ଗୀର ବିରୁଦ୍ଧରେ ଶାହାଜାହାଁ ବିଦ୍ରୋହ କରୁଥିବାବେଳେ ସେମାନେ ଜାହାଙ୍ଗୀରଙ୍କୁ ସାହାଯ୍ୟ କରିଥିଲେ ଓ ତାଙ୍କର କିଛି ନୌକା ମଧ୍ୟ ନେଇଯାଇଥିଲେ । ସାଙ୍ଗରେ ଦାସ ହିସାବରେ କେତେକ ଝିଅଙ୍କୁ ମଧ୍ୟ ନେଇଯାଇଥିଲେ । ଶାହାଜାହାଁ ସମ୍ରାଟ ହେଲାପରେ ବି କୌଣସି ପାରମ୍ପାରିକ ଶୁଭେଚ୍ଛା ଜଣାଇ ନଥିଲେ ।

ଅଧିକନ୍ତୁ ପର୍ତ୍ତୁଗୀଜମାନେ ମୋଗଲ ସାମ୍ରାଜ୍ୟର ପ୍ରାଦେଶିକ ରାଜଧାନୀର ଗୋଟେ ଗାଁ ଉପରେ ଚଢ଼ାଉ କରିଥିଲେ । ଆଉ ଜଣେ ରାଜସଂଭ୍ରାନ୍ତୀୟ ନାରୀ ଉପରେ ଅତ୍ୟାଚାର କରିଥିଲେ । ଗଭର୍ଣ୍ଣର (ବଙ୍ଗଳାର) କସିମ ଖାଁ ଜାଣିଥିଲେ କି ହୁଗୁଳିରୁ ଅନେକ ଧନରତ୍ନ, ସୈନ୍ୟଦଳ ମିଳିପାରିବ । ମୋଗଲଙ୍କ ତରଫରୁ ସେ ୧୪୦୦ ଘୋଡ଼ା, ୯୦ ହାତୀ ଓ ୬୦୦ ନୌକା ଧରି ସେମାନଙ୍କୁ ଆକ୍ରମଣ କରି ହୁଗୁଳି ଜିଲ୍ଲା ଚଢ଼ାଉ କଲେ । ତିନିମାସ ଧରି ଅନେକ କଥାବାର୍ତ୍ତା ପରେ ମଧ୍ୟ ବୁଝାମଣା ହୋଇପାରିଲା ନାହିଁ । ଫଳରେ କସିମ ଖାଁ ଆକ୍ରମଣରେ ହଜାର ହଜାର ମଲେ, ଅନେକ ନୌକାରେ ପଳାଇଗଲେ । କେତେକ ପର୍ତ୍ତୁଗୀଜ ସ୍ତ୍ରୀଲୋକ ଓ ପିଲା ଧରା ହେଲେ । ଶାହାଜାହାଁ ଆଦେଶ ଦେଲେ କି ଅଧିକୃତ ହୋଇଥିବା ଲୋକମାନେ ମୁସଲମାନ ଧର୍ମ ଗ୍ରହଣ କରିବେ । ଯେଉଁମାନେ ମୁସଲମାନ ଧର୍ମ ଗ୍ରହଣ କଲେ ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କୁ ବନ୍ଦୀଶାଳାରୁ ପାତାଳକୁ ପଠାଇଦିଆଗଲା ।

କାନ୍ଧାହାର ଘଟଣାବଳୀ ପୁଣି ଏକ ମାଇଲଖୁଣ୍ଟି । ଶାହାଜାହାଁ ସମ୍ରାଟ ହେବା ପରେ ପର୍ଶିୟା ସହିତ କୂଟନୈତିକ ସଂପର୍କ ରଖିବା ପାଇଁ ୧୬୨୯ରେ ପର୍ଶିୟାକୁ ପ୍ରଥମ ରାଷ୍ଟ୍ରଦୂତ ପଠାଇଲେ । ସାହା ଆବାସଙ୍କ ମୃତ୍ୟୁରେ ଶୋକ ପ୍ରକାଶ କଲେ । ସାହା ଆବାସ ୨ୟ ମଧ୍ୟ ଏସବୁକୁ ଗ୍ରହଣ କରିନେଲେ । ଆନ୍ତରିକତାର ଓଢ଼ଣା ତଳେ ସବୁ ଲୁଚି ରହିଲା ।

ଶାହାଜାହାଁଙ୍କ ବିଦ୍ରୋହ ଯୋଗୁ ଜାହାଙ୍ଗୀର କାନ୍ଧାହାର ଅକ୍ତିଆର କରି ପାରି ନ ଥିଲେ । ୧୬୩୮ରେ କାନ୍ଧାହାର ଫେରିପାଇଲେ । କାନ୍ଧାହାରର ଗଭର୍ଣ୍ଣର ଅଲି ମର୍ଦ୍ଦନ ଖାଁ ସାହାଙ୍କ ସହିତ ମତାନ୍ତର ଯୋଗୁ ଶାହାଜାହାଁଙ୍କୁ କାନ୍ଧାହାର ହସ୍ତାନ୍ତର

କରିଦେଲେ। ଅବଶ୍ୟ ତା' ବଦଳରେ ତାଙ୍କୁ କାଶ୍ମୀର ଗଭର୍ଣ୍ଣର କରି ଅନ୍ୟାନ୍ୟ ଅନେକ ଉପହାର ମଧ ଦେଲେ। ଶାହାଜାହାଁଙ୍କର ବାବରଙ୍କ ଜନ୍ମସ୍ଥାନ ଫରଗନା ଅକ୍ତିଆର କରିବା ଇଚ୍ଛା ଥିଲା। ସେଥିପାଇଁ ସେ ସମରକନ୍ଦ ଆଗେଇଲେ। ସେତେବେଳକୁ ପର୍ଶିୟା ଓ ଉଜବେଗ ମଧ୍ୟରେ ଅନ୍ତର୍ଦ୍ୱନ୍ଦ୍ୱ ଲାଗି ରହିଥିଲା। ତଥାପି ପର୍ଶିୟା ଅଧିକାର କରିବା ପାଇଁ ୮ ବର୍ଷ ଲାଗିଗଲା। ୧୬୪୬ରେ ସୁଯୋଗ ପାଇ ଶାହାଜାହାଁଙ୍କ ପୁଅ ୨୨ ବର୍ଷିୟ ମୁରାଦଙ୍କୁ ଆଲି ମର୍ଦ୍ଦନ ଖାଁଙ୍କ ସହିତ ୫୦,୦୦୦ ଘୋଡ଼ାସବାର, ବନ୍ଧୁ ବନ୍ଧୁକଧାରୀ ପଦାତିକ, ରକେଟ୍‌ଧାରୀ ସେନା ଦେଇ ପଠାଇଲେ। ମୋଗଲର ବିରାଟ ସୈନ୍ୟବାହିନୀ ଦେଖି ଡରିଗଲେ ପର୍ଶିୟାର ସାହାଁ। ସେ ପର୍ଶିୟାରୁ ପଳାଇଲେ। କିନ୍ତୁ ମୁରାଦ ଆଉ ଯିବାକୁ ରାଜି ହେଲେ ନାହିଁ। ଶାହାଜାହାଁ ତାଙ୍କୁ ସମରକନ୍ଦର ଗଭର୍ଣ୍ଣର ହେବାକୁ ପ୍ରବର୍ତ୍ତାଇଲେ। ମାନିଲେ ନାହିଁ ମୁରାଦ, ଫେରି ଆସିଲେ ଲାହୋର। ଶାହାଜାହାଁ ମୁରାଦଙ୍କୁ ତାଙ୍କ ପଦବୀରୁ ଓହରାଇଲେ ଓ ମୋଗଲ ଦରବାର ଭିତରକୁ ପ୍ରବେଶ କରିବାକୁ ନିଷେଧାଜ୍ଞା ଜାରିକଲେ।

ମୋଗଲଙ୍କ ସହ ଉଜବେଗ ଓ ତର୍କୀଙ୍କ ଜନଜାତିର ସବୁବେଳେ କନ୍ଦଳ ଲାଗିଥିଲା। ମୋଗଲ ସୈନ୍ୟମାନେ ମଧ ଏସିଆ ରାଜ୍ୟକୁ ଘୃଣା କରନ୍ତି ଓ ସବୁବେଳେ ଭାରତ ଫେରିଆସିବାକୁ ଇଚ୍ଛା କରନ୍ତି।

ମୁଦରାଦଙ୍କ ଫେରିବା ପରେ ଶାହାଜାହାଁ ଔରଙ୍ଗଜେବଙ୍କୁ ଗୁଜରାଟରୁ ଡକାଇ ବଲ୍ଲ ପଠାଇଲେ। ବିନା ପରିଶ୍ରମରେ ବଲ୍ଲରେ ପହଞ୍ଚିଲେ ଔରଙ୍ଗଜେବ। ୧୬୪୭ରେ ଫେରିବାକୁ ଆରମ୍ଭ କଲେ। ଯୁଦ୍ଧରେ ମୋଟେ ୫୦୦ ସୈନ୍ୟ ହରାଇଥିଲେ। ଯଦୁନାଥ ସରକାରଙ୍କ ଭାଷାରେ କୌଣସି ରାଜ୍ୟ ମିଳିଲା ନାହିଁ। ସାମ୍ରାଜ୍ୟ ବଦଳିଲା ନାହିଁ। କୌଣସି ଶତ୍ରୁ ବା ମିତ୍ର ବଲ୍ଲ ସିଂହାସନରେ ନ ଥିଲେ। ଶାହାଜାହାଁ, ଏ ଯୁଦ୍ଧରେ ୨୦ ମିଲିୟନ ଟଙ୍କା ଖର୍ଚ୍ଚ କରିଥିଲେ। କାନ୍ଧାହାର କ୍ଷୟକ୍ଷତିର ହିସାବରେ ପୂର୍ବ ସୂଚନା ଶାହାଜାହାଁ ପାଇଥିଲେ। ସେ ସାହାଙ୍କୁ ଚିଠି ଲେଖିଥିଲେ କି କାନ୍ଧାହାର ଓ ବଲ୍ଲଅଧିକାର କରିଛନ୍ତି । କିନ୍ତୁ ଉତ୍ତରରେ ସାହା କହିଲେ କି କାନ୍ଧାହାର ତାଙ୍କୁ ଓ ଉଜବେଗଙ୍କୁ ବଲ୍ଲ ଦେଇଦିଅନ୍ତୁ।

୧୬୪୮ରେ ଡିସେମ୍ବରରେ ସାହା କାନ୍ଧାହାର ଆକ୍ରମଣ କଲେ । ପରବର୍ଷ ଅର୍ଥାତ୍ ୧୬୪୯ରେ କାନ୍ଧାହାର କବଳିତ କଲେ । ଶାହାଜାହାଁଙ୍କୁ ତାଙ୍କ ଅମୀରମାନେ ୧୬୪୯ ଜାନୁୟାରୀ ପୂର୍ବରୁ ସୈନ୍ୟ ପଠାଇବା ପାଇଁ ବାରଣ କଲେ । ପରେ ଖବର ମିଳିଲା କି ଦୁର୍ଗ ପର୍ଶିୟାନ ମାନଙ୍କ ହାତରେ ଅଛି । ସେ ଔରଙ୍ଗଜେବଙ୍କୁ ଆଦେଶଦେଲେ ପର୍ଶିୟାନ ଉଦ୍ଧାର କରିବା ପାଇଁ । ଔରଙ୍ଗଜେବ ସୁଲତାନର ଗଭର୍ଣ୍ଣର ଥିଲେ । ଶାହାଜାହାଁ ନିଜେ କାବୁଲ ଗଲେ । ଔରଙ୍ଗଜେବ ତିନିମାସ ଅପେକ୍ଷା କଲେ । ମେ' ମାସ ମଧ୍ୟ ଭାଗରେ କାନ୍ଧାହାରରେ ପହଞ୍ଚିଥିଲେ ।

କାନ୍ଧାହାର ପହଞ୍ଚି ଅସ୍ତ୍ର ଅଭାବରୁ ଦୁର୍ଗକାନ୍ଥ ମଧ୍ୟ ଭାଙ୍ଗି ପାରିଲେ ନାହିଁ । ପ୍ରାୟ ନ' ମିଟର ଚଉଡ଼ାର କାନ୍ଥ ସବୁ ଶକ୍ତ ପଥରରେ ଆଲେକଜାଣ୍ଡରଙ୍କ ଦ୍ୱାରା ନିର୍ମିତ । ଜଣେ ନଗର ରକ୍ଷକ ଏ ଦୁର୍ଗ ରକ୍ଷା କରିବା ପାଇଁ ଖୋଲାଇ ଥିଲେ । କାନ୍ଧାହାର ପର୍ଶିୟାନମାନଙ୍କ ହାତରୁ ଛଡ଼ାଇ ଆଣିବା କଷ୍ଟକର ଥିଲା । ଭୟ ଥିଲା ଆଉ ଅଧିକ ସୈନ୍ୟ ପର୍ଶିୟାରୁ ଚାଲି ଆସିବେ । ସେଥିପାଇଁ ୧୧୦ ଦିନର ରହଣି ପରେ ଆଫଗାନ ଶୀତକୁ ଡରି ପଳାଇ ଆସିଲେ ।

ତିନିବର୍ଷ ପରେ ଔରଙ୍ଗଜେବ ୫୦,୦୦୦ ସୈନ୍ୟ ଓ ଅସ୍ତ୍ର ଆଦି ନେଇ ପୁଣି କାନ୍ଧାହାର ଗଲେ । ଶାହାଜାହାଁ ମଧ୍ୟ ୪୦,୦୦୦ ସୈନ୍ୟ ନେଇ କାବୁଲରେ ପହଞ୍ଚିଲେ । ତଥାପି କାନ୍ଥ ଭାଙ୍ଗିବା ସମ୍ଭବପର ହୋଇନଥିଲା । ଫେରିଆସିଲେ । ଶାହାଜାହାଁଙ୍କ ବଡ଼ପୁଅ ଦାରାସିକୋଙ୍କ ନେତୃତ୍ୱରେ ଆଉ ଏକ ଦଳ ୭୦,୦୦୦ ଲୋକ ଓ ଇଂରେଜ ଦକ୍ଷ ଲୋକ କାନ୍ଧାହାର ପଠାଇଲେ । ସେ ମଧ୍ୟ କାନ୍ଥ ଭାଙ୍ଗି ନ ପାରିବାରୁ ୫ମାସ ଧରି ଅନୁସନ୍ଧାନ କରି ଫେରିଆସିଲେ । ସାହା କହିଲେ ମୋଗଲମାନେ କେବଳ ଲାଞ୍ଚନେଇ ସହର ଲୁଣ୍ଠନ କରି ଶିଖିଛନ୍ତି କିନ୍ତୁ ଶକ୍ତି ଖଟାଇ, ଅଧିକାର କରି ଶିଖି ନାହାନ୍ତି । ତିନିଥରର କାନ୍ଧାହାର ଆକ୍ରମଣର ପ୍ରସ୍ତୁତିରେ ୧୨୦ ମିଲିୟନ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା । ଏତେ ରାଗି ସତ୍ତ୍ୱେ ଶାହାଜାହାଁ ଏହା ସହିଗଲେ । ବାଧା ଆସିଲା ତାଙ୍କ ଆତ୍ମ ସମ୍ମାନରେ ସେ ରାଜନୈତିକ ବାତାବରଣରୁ ଓହ୍ଲାଇ ଆସି ପୁତ୍ର ଦାରାଙ୍କୁ ଅଧିକ ଅଧିକ କ୍ଷମତା ଦେଲେ । ମୋଗଲ ଭାବଧାରା ବଦଳିଗଲା – କାନ୍ଧାହାରରେ ପରାଜୟ ପରେ ଔରଙ୍ଗଜେବ ଓ ଶାହାଜାହାଁ

ମୁହାଁ ଚାହାଁଚାହିଁ ହେବାରେ ଇଚ୍ଛୁକ ନ ଥିଲେ । ଶାହାଜାହାଁ ଔରଙ୍ଗଜେବଙ୍କୁ ଦାକ୍ଷିଣାତ୍ୟର ଗଭର୍ଣ୍ଣର କରି ପଠାଇଦେଲେ ।

ଦ୍ୱିତୀୟବାର ଦଶବର୍ଷପରେ ଔରଙ୍ଗଜେବ ଦାକ୍ଷିଣାତ୍ୟର ଗଭର୍ଣ୍ଣର ହେଲେ । ଦାକ୍ଷିଣାତ୍ୟର ଅର୍ଥନୈତିକ ଅବସ୍ଥା ଠିକ୍ ନ ଥିଲା । ଶାହାଜାହାଁଙ୍କୁ ସହାୟତା ମାଗିଲେ । ଦଶବର୍ଷ ଭିତରେ ୬ଟା ଗଭର୍ଣ୍ଣର ବଦଳି ହୋଇ ସାରିଥିଲେ । କିନ୍ତୁ ଖାନ-ଇ-ଖାନ ଗଭର୍ଣ୍ଣର ଥିଲା ବେଳେ କିଛି ଟଙ୍କା ରାଜକୋଷକୁ ପଠାଇଥିଲେ । ସେଥିପାଇଁ ଶାହାଜାହାଁ କୌଣସି ଆର୍ଥିକ ସାହାଯ୍ୟ ଦେଲେ ନାହିଁ ।

ଔରଙ୍ଗଜେବ ଟୋଡ଼ରମଲ୍ଲଙ୍କ ନୀତି ଅନୁସରଣ କଲେ । ଗରିବ ଚାଷୀଙ୍କୁ ଚାଷ ପାଇଁ ଋଣ ଦେଲେ । ଦକ୍ଷତାହୀନ ଅଫିସରଙ୍କୁ ବାହାର କରିଦେଲେ । ଆବଶ୍ୟକ ଥିଲା ଜରୁରୀ କିନ୍ତୁ ଏ ବ୍ୟବସ୍ଥା ଠିକ୍ ନ ଥିଲା । ତା' ପରେ ଦେଶ ଜୟ କରିବା ଆରମ୍ଭ କଲେ । ଯାହା ଫଳରେ କି ବିଜୟ ପରେ ଅନ୍ୟ ରାଜ୍ୟର ରାଜସ୍ୱ ଏଥିସହିତ ମିଶିପାରିବ । ଏହି ପ୍ରଣାଳୀରେ ପ୍ରଥମ ନଜର ତାଙ୍କର ଗୋଲକୋଣ୍ଡା ଉପରେ ପଡ଼ିଲା । ଗୋଲକୋଣ୍ଡା ଧନସଂପତ୍ତିର ଖଣି । ଜମି ଉର୍ବର ଓ ବାସୋପଯୁକ୍ତ । ସୁନା ଓ ହୀରା ଖଣି ମହଜୁଦ ଅଛି । ହସ୍ତଶିଳ୍ପ ଓ କାରଖାନାରେ ପରିପୂର୍ଣ୍ଣ । ହୀରା ବ୍ୟବସାୟ ପାଇଁ ବିଶ୍ୱବିଖ୍ୟାତ । ମଛଲିଟପଟନମ୍‌ରେ ଏକ ବନ୍ଦର ମଧ୍ୟ ଅଛି ।

୧୬୩୬ରୁ ଗୋଲାକୋଣ୍ଡାରୁ ଆସୁଥିବା ରାଜସ୍ୱ ଅତି କମ୍ ଥିଲା । ମିର-ଜୁମଲା, ଗୋଲକଣ୍ଡାର ଜଣେ ବ୍ୟବସାୟୀଙ୍କୁ ଆକ୍ରମଣ କରିବା ପ୍ରଧାନ ଇଚ୍ଛା ଥିଲା । ନିଜର ବ୍ୟବସାୟ ଛଡ଼ା ସେ ବ୍ୟବସାୟୀଜଣକ ଅନେକ ଗୁପ୍ତଧନ ମନ୍ଦିରମାନଙ୍କରୁ ଓ ରାଜପରିବାରରୁ ଉଦ୍ଧାର କରିଥିଲେ । ତାଙ୍କ ପାଖରେ କୋଡ଼ିଏ ମହଣ ହୀରା ମହଜୁଦ ଥିଲା । ବ୍ୟକ୍ତିଗତ ଭାବରେ ତାଙ୍କର ୫୦୦୦ ଘୋଡ଼ା ସବାର ସୈନ୍ୟ ମଧ୍ୟ ଥିଲେ ।

ସେତେବେଳେ ଗୋଲକୋଣ୍ଡାର ସୁଲତାନ ଅବଦୁଲା କୁତୁବ ସାହ ଥିଲେ । ମିର ଜୁମଲାଙ୍କ ପୁଅଙ୍କୁ ସୁଲତାନ ବହୁତ ସାହାଯ୍ୟ କରିଥିଲେ । ଥରେ ମହମ୍ମଦ ଅମିନ ଅତ୍ୟଧିକ ମଦ୍ୟପାନ ପାଇଁ ସୁଲତାନଙ୍କ ସିଂହାସନରେ କାରପେଟ ଉପରେ ପଡ଼ିଯାଇ ବାନ୍ତି କଲେ । ଏପରି ଆଚରଣ ଅତ୍ୟଧିକ ଅସହ୍ୟ ଥିଲା । ସେଥିପାଇଁ ସେ ତାଙ୍କୁ ଜେଲ ପଠାଇ ତାଙ୍କର ସବୁ ସଂପତ୍ତି ବାଜ୍ୟାପ୍ତି କଲେ ।

ଶାହାଜାହାଁ– ଏଇ ଘଟଣା ନେଇ ଜୁମଲାଙ୍କୁ ଔରଙ୍ଗଜେବଙ୍କ ସୁରକ୍ଷା ପାଇଁ ସାହାଯ୍ୟ ମାଗିଲେ। ଔରଙ୍ଗଜେବଙ୍କ ଅନୁରୋଧ କ୍ରମେ ଶାହାଜାହାଁ ମିର ଜୁମଲା ଓ ତାଙ୍କ ପୁଅକୁ ଅଫିସର ହିସାବରେ ନିଯୁକ୍ତି ଦେଲେ ଓ ଅବଦୁଲାଙ୍କୁ ସେମାନଙ୍କୁ ହଇରାଣ କରିବାକୁ ବାରଣ କଲେ। ଏ ପ୍ରକାର ହସ୍ତକ୍ଷେପ ଅବଦୁଲା ସହ୍ୟ କରିପାରିଲେ ନାହିଁ। ୧୬୫୬ରେ ହାଇଦ୍ରାବାଦକୁ ଔରଙ୍ଗଜେବ ତାଙ୍କ ପୁଅ ମହମ୍ମଦ ସୁଲତାନ ସହିତ ଏକ ଶକ୍ତିଶାଳୀ ବାହିନୀ ପଠାଇଲେ। ଯଦିଓ ଅବଦୁଲା ମୋଗଲଙ୍କ କଥା ସ୍ୱୀକାର କରିନେଇଥିଲେ।

କୁତୁବ-ଉଲ-ମୁଲ୍କ ଜଣେ କାପୁରୁଷ। ପ୍ରତିରୋଧ କରିବାର ଆଗ୍ରହ ନାହିଁ। ସେଥିପାଇଁ ତାଙ୍କ ପ୍ରାସାଦ ଘେରାଉ କରିଥିଲେ ଯେପରିକି ସେ ଗୋଲକୋଣ୍ଡା ପଳାଇ ଯାଇ ନ ପାରନ୍ତି। ଏଣେ ତାଙ୍କୁ ଖବର ଦେଲେ କି ସେ ଅବଦୁଲାଙ୍କ ଅତିଥି ହୋଇଛନ୍ତି। ଯୋଜନା ଥିଲା କି ଆତିଥ୍ୟର ସୁଯୋଗ ନେଇ ବେକରେ ଆଘାତ କରି ତାଙ୍କୁ ମାରିଦିଆଯିବ। ଅବଦୁଲା କିନ୍ତୁ ଗୋଲକୁଣ୍ଡା ପଳାଇଯାଇ ସାରିଥିଲେ। ସେଠାରେ ଔରଙ୍ଗଜେବ ତାଙ୍କୁ ଧରିଲେ। ସୁଲତାନ ତାଙ୍କୁ ଖୁସାମତ ସ୍ୱରୂପ ଅନେକ ଉପହାର ଦେଲେ। ଏପରିକି ତାଙ୍କ ମା'ଙ୍କୁ ପଠାଇଲେ ତାଙ୍କୁ କ୍ଷମା କରିବା ପାଇଁ। କାରଣ ଥିଲା ଦାରା ଓ ଔରଙ୍ଗଜେବଙ୍କୁ ବାଧା ଦେବେ ଓ ଶାହାଜାହାଁଙ୍କ ସାହାଯ୍ୟ କରିବେ।

ଗୋଲକୋଣ୍ଡା ଅଧିକାର କରିବା ଔରଙ୍ଗଜେବଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା। ଶାହାଜାହାଁଙ୍କୁ ଚିଠି ଲେଖି ଜଣାଇଲେ କି ସେଠାରେ ଅନେକ ଧନସଂପତ୍ତି ଲୁଚି ରହିଛି ଓ ଲୁଚି ରହିଛି ଅଖଣ୍ଡ ପ୍ରାକୃତିକ ସୌନ୍ଦର୍ଯ୍ୟ। ଆଶା କରୁଛି ସମ୍ରାଟ ଏହାକୁ ରାଜ୍ୟରେ ମିଶାଇବା ପାଇଁ ଅନୁମତି ଦେବେ। କିନ୍ତୁ ଶାହାଜାହାଁ ଗୋଲକୋଣ୍ଡାକୁ ମିଶାଇବା ପାଇଁ ବାରଣ କଲେ। ବରଂ ଗୋଲକୋଣ୍ଡାକୁ ମୁକ୍ତ କରି ଫେରି ଆସନ୍ତୁ ବୋଲି ଆଦେଶ ଦେଲେ। ଏ ଆଦେଶ ଅନୁସାରେ ଔରଙ୍ଗଜେବ ଫେରିଲେ କିନ୍ତୁ ସେତେବେଳକୁ ଗୋଲକୋଣ୍ଡାରୁ ଯାହା ପାଇବା କଥା ପାଇସାରିଥିଲେ। ଏପରିକି ରାମଗଡ଼ ରାଜ୍ୟ ଓ ବର୍ଷକୁ ୧୦ ମିଲିୟନ ଟଙ୍କାଦେବାର ପ୍ରତିଶ୍ରୁତି। ଆଉ ମହମ୍ମଦ ସୁଲତାନଙ୍କୁ ତାଙ୍କ ଝିଅକୁ ବାହା ଦେଲେ। ଅବଦୁଲାଙ୍କ ପୁଅ ନ ଥିବା ଦୃଷ୍ଟିରୁ ମହମ୍ମଦ ସୁଲତାନଙ୍କୁ ଗୋଲକୋଣ୍ଡାର ଉତ୍ତରାଧିକାରୀ ହେବା ପାଇଁ ପ୍ରତିଶ୍ରୁତି ଦେବାକୁ ରାଜି କରାଇଲେ।

ଠିକ୍ ଏଇ ସମୟରେ ଚନ୍ଦ୍ରଗିରି, ବିଜୟନଗର ଇତିହାସରୁ ମୋଗଲମାନେ ବିଦାୟ ନେଇଗଲେ। ନେଲୋର ଓ ପଣ୍ଡିଚେରୀ ଭିତରେ ହଜିଯିବା ଭୟରେ ଜୟଗିରି ରାଜା ଶ୍ରୀ ରଙ୍ଗାରୟାଲ ମୋଗଲମାନଙ୍କର ସହାୟତା ଲୋଡ଼ିଲେ। ଶାହାଜାହାଁଙ୍କୁ ୨୫ ମିଲିୟନ ଟଙ୍କା, ୨୦୦ ହାତୀ, ଗଚ୍ଛିତ ରତ୍ନଭଣ୍ଡାର ଏବଂ ବାର୍ଷିକ ଦେୟ ଦେବାକୁ ରାଜି ହେଲେ। ତାଙ୍କ ରାଜ୍ୟ ମୋଗଲ ରାଜ୍ୟ ସହିତ ମିଶାଇବାକୁ ଅନୁରୋଧ କଲେ ଓ ନିଜକୁ ଜାଗିର ହିସାବରେ ନିଯୁକ୍ତି ଦେବାକୁ କହିଲେ।

କିନ୍ତୁ ଔରଙ୍ଗଜେବ ରାଜି ହେଲେ ନାହିଁ। ବିଶ୍ୱାସ ହେଲା ନାହିଁ ରାଜାଙ୍କର ଏ ବିସ୍ତାର ଦାନ ଉପରେ। ରାଙ୍ଗାରାଜା ମହୀଶୂର ରାଜାଙ୍କ ପାଖକୁ ପଳାଇଲେ। ପରେ ରବର୍ଟ କ୍ଲାଇବଙ୍କ ସହିତ ମିଶି ବ୍ରିଟିଶ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କଲେ – ମାନ୍ଦ୍ରାସରେ । ଗୋଲକୋଣ୍ଡାରୁ ଔରଙ୍ଗଜେବ ବିଜାପୁର ଗଲେ। ସେତେବେଳକୁ ମୋଗଲ ସାମ୍ରାଜ୍ୟ ଦାକ୍ଷିଣାତ୍ୟରେ ବ୍ୟାପି ଯାଇଥିଲା। ବିଜାପୁରରେ ମହମ୍ମଦ ଅଲି ସାହା ମୋଗଲଙ୍କ ସହିତ ଆନ୍ତରିକତାର ସହ ତାଙ୍କ ସଂପର୍କ ବଜାୟ ରଖିଲେ।

ଅନେକ ଷଡ଼ଯନ୍ତ୍ର କରି ଭୁଲାଇ ଶେଷ ଆଡ଼କୁ ବିଜାପୁର ହାତକୁ ନେଲେ। ଶାହାଜାହାଁଙ୍କର ସବୁ ବାରଣ ସତ୍ତ୍ୱେ ଔରଙ୍ଗଜେବ ଦାକ୍ଷିଣାତ୍ୟ ଅଧିକାର କଲେ। ଔରଙ୍ଗଜେବଙ୍କୁ ବିଜାପୁରରୁ ଫେରି ଆସିବାକୁ ଆଦେଶ ଦେବା ହିଁ ସମ୍ରାଟ ଶାହାଜାହାଁଙ୍କ ଶେଷ ଆଦେଶ ଥିଲା। ତା ପରର ଘଟଣା ତାଙ୍କ ପୁଅମାନଙ୍କର।

ତ୍ରୟୋଦଶତମ ବର୍ଷ ଶାହାଜାହାଁ ସମ୍ରାଟ ହେବାର। ସମ୍ରାଟ ରହୁଥିଲେ ସିରମୁର ପର୍ବତର ପାଦଦେଶରେ ତାଙ୍କ ଗ୍ରୀଷ୍ମନିବାସରେ। ଦିଲ୍ଲୀରେ ପ୍ଲେଗ୍ ରୋଗର ସଂକ୍ରମଣ। ୧୬୫୭ରେ ଦିଲ୍ଲୀ ଫେରିଲେ। ସେପ୍ଟେମ୍ବର ୧୬ରେ ବେମାର ପଡ଼ିଲେ। ମଳକଣ୍ଟକ, ପେଟଯନ୍ତ୍ରଣା ଓ ଅନ୍ୟାନ୍ୟ ଆନୁସଂଗିକ ରେଗରେ ପୀଡ଼ିତ ହେଲେ। ବୟସ ୬୫। ମୋଗଲ ସାମ୍ରାଜ୍ୟରେ ସେ ବେଳରେ ଅନ୍ୟାନ୍ୟ ସମ୍ରାଟମାନଙ୍କଠୁ ଅଧିକ ବର୍ଷ ରାଜୁତି କରିଥିଲେ। ସପ୍ତାହେ ଖଣ୍ଡେ ଜନସାଧାରଣଙ୍କୁ ଦେଖାଦେଲେ ନାହିଁ ବା ଦରବାରରେ ଯୋଗ ଦେଲେ ନାହିଁ। ସମ୍ରାଟ ମୃତ ବୋଲି ମଧ ଗୁଜବ ହେଲା। ଦାରା ବିଷ ପିଆଇ ମାରି ଦେଇଛି ବୋଲି ମଧ କୁହାଗଲା। ଏ ପ୍ରକାର ଗୁଜବ ତିନିଦିନ ପର୍ଯ୍ୟନ୍ତ ଚାଲୁ ରହିଲା। ବିଦ୍ରୋହ ଆଶଙ୍କା କରି

ବ୍ୟବସାୟୀମାନେ ଦୋକାନ ମଧ୍ୟ ବନ୍ଦ କଲେ। ଅନ୍ୟାନ୍ୟ ପ୍ରଦେଶକୁ ମଧ୍ୟ ଏ ଗୁଜବ ବ୍ୟାପିଗଲା। ପାଖ ପ୍ରଦେଶରେ ଆଇନ ଅମାନ୍ୟ କଲେ। ଚାଷୀମାନେ ରାଜସ୍ୱ ଦେବାକୁ ଅସ୍ୱୀକାର କଲେ। ସମ୍ରାଟଙ୍କ ଅଫିସରଙ୍କୁ ଜମୀଦାର ମାନିଲେ ନାହିଁ। ସାରା ଦେଶରେ ଅରାଜକତାର ଭୟାଭୟ ଦୃଶ୍ୟ ଦେଖିବାକୁ ମିଳିଲା।

ପରେ ପରେ ଶାହାଜାହାନ ତାଙ୍କ ଶୋଇବା ଘର ଝରକାରୁ ଦେଖା ଦେଲେ ଜନସାଧାରଣଙ୍କୁ। ପ୍ରଥମେ ବିଶ୍ୱାସ କଲେ ନାହିଁ । କହିଲେ, ଦାରା ଅନ୍ୟ କେଉଁ ଲୋକଙ୍କୁ ସଜାଇ ତାଙ୍କ ଜାଗାରେ ଚସେଇ ଦେଇଛି। ଆସ୍ତେ ଆସ୍ତେ ସୁସ୍ଥ ହେଲେ ଶାହାଜାହାଁ। ଆଗ୍ରା ଗଲେ। ସେଠାରେ ଚିକିତ୍ସକ ଓ ଦାରାଙ୍କ ସହିତ ଜାହାନ୍ନାରାଙ୍କ ସେବା ଫଳରେ ନଭେମ୍ବର ଶେଷ ସୁଦ୍ଧା ପ୍ରାୟ ପୂର୍ଣ୍ଣ ସୁସ୍ଥ ହେଲେ। ସୁସ୍ଥ ହେଲେ ସତ କିନ୍ତୁ କ୍ଷମତା ଫେରିପାଇଲେ ନାହିଁ। ଏ ଖବର ଅନ୍ୟାନ୍ୟ ରାଜପୁତ୍ରଙ୍କ ମାନଙ୍କ ପାଖରେ ପହଞ୍ଚିଲା। ସେମାନେ ଦୂରରେ ରହୁଥିଲେ। ସମ୍ରାଟ ପଦ ତ ଯିବ ଓ ତା ସହିତ ତାଙ୍କ ପ୍ରାଣ ମଧ୍ୟ।

ଦେହଜନିତ ସୁସ୍ଥ ହେବା ପରେ ସେ ଆଗ୍ରା ଯିବା ପୂର୍ବରୁ ଦାରାଙ୍କୁ ଦରବାରର କ୍ଷମତା ସମ୍ଭାଳିବାକୁ ଉତ୍ତରାଧିକାରୀ ରୂପେ ମାନିନେବାକୁ ଅମୀରମାନଙ୍କୁ ଜଣାଇଲେ। ଅନ୍ୟ ପୁଅମାନଙ୍କର କୌଣସି ବନ୍ଦୋବସ୍ତର ଆଦେଶ ଦେଲେ ନାହିଁ। ସମସ୍ତେ କ୍ଷମତାଶାଳୀ। ଏଣେ ନିଜ ନିଜ ସୈନ୍ୟବାହିନୀକୁ ମଧ୍ୟ ସଜାଗ ରଖିଲେ ନାହିଁ। ଏହା ହିଁ ଥିଲା ସମ୍ରାଟଙ୍କ ବଡ଼ ଭୁଲ୍।

ସମ୍ରାଟଙ୍କର ୪ ପୁତ୍ର। ଦାରା-୪୨ ବର୍ଷ, ସୁଜା-୪୧ ବର୍ଷ, ଔରଙ୍ଗଜେବ-୩୯ ବର୍ଷ ଓ ମୁରାଦ-୩୩ ବର୍ଷ। ସମ୍ରାଟଙ୍କର ଅସୁସ୍ଥତା ସମୟରେ ଦାରା ଦିଲ୍ଲୀରେ, ସୁଜା ବଙ୍ଗଳାରେ, ଔରଙ୍ଗଜେବ ଦାକ୍ଷିଣାତ୍ୟରେ ଓ ମୁରାଦ ଗୁଜରାଟରେ ଥିଲେ। ଦାରାଙ୍କ ସ୍ଥିତି ଅନୁକୂଳ ଥିଲା। ସମ୍ରାଟଙ୍କର ନିକଟତମ, ସାମ୍ରାଜ୍ୟର ଅମାପ ଧନରତ୍ନର ଅଧିକାରୀ। ଶାହାଜାହାଁ ମଧ୍ୟ ଜାଣିଥିଲେ କି ଔରଙ୍ଗଜେବ ହିଁ ସିଂହାସନ ଛଡ଼େଇ ନେବାରେ ଦକ୍ଷ। ବଡ଼ପୁଅ ଦାରା ଅନେକ ଲୋକଙ୍କ ଶତ୍ରୁ ହୋଇସାରିଥିଲା। ସୁଜା ଶାନ୍ତି ଉପଭୋଗ କରିବା ବ୍ୟତୀତ ଅନ୍ୟ କୌଣସି ଆଗ୍ରହ ନ ଥିଲା। ଆଉ ମଦ୍ୟପାନରେ ବ୍ୟସ୍ତ ଥିଲା ମୁରାଦ। କିନ୍ତୁ ଔରଙ୍ଗଜେବଙ୍କ ବୁଦ୍ଧିମତ୍ତା ଓ ଯୋଜନା ସହ କ୍ଷମତାର ପ୍ରୟୋଗରୁ ଜଣାଯାଉଥିଲା କି ସେ ହିଁ ସମ୍ରାଟ ହେବା ପାଇଁ ଯୋଗ୍ୟ।

ଦାରା ସାମ୍ରାଜ୍ୟ ଶାସନ କାର୍ଯ୍ୟରେ ଦକ୍ଷହେବାର କାରଣ କି ଶାହାଜାହାଁ ତାଙ୍କୁ ଅନେକ ସୁଯୋଗ ଦେଇଥିଲେ। ଦରବାରରେ ସିଂହାସନ ତଳେ ଏକ ସୁନାଚଉକିରେ ବସି ରାଜକାର୍ଯ୍ୟ ସଂପାଦନା ଅନୁଧ୍ୟାନ କରିବା ପାଇଁ ସୁଯୋଗ ଦେଇଥିଲେ। ତାଙ୍କ ହାତରେ ଥିଲା ୪୦,୦୦୦ ସୈନ୍ୟ ଓ ସେମାନଙ୍କୁ ପରିଚାଳନା କରିବା ପାଇଁ ବର୍ଷକୁ ୧୫ ମିଲିୟନ ଟଙ୍କା ଦିଆଯାଉଥିଲା। ସମ୍ରାଟଙ୍କ ଅସୁସ୍ଥତା ସମୟରେ ଦାରାଙ୍କୁ ୫୦,୦୦୦ ସୈନ୍ୟ ଓ ପରେ ପୁଣି ତାଙ୍କୁ ବଢ଼ାଇ ୬୦,୦୦୦ ସୈନ୍ୟ କରାଯାଇଥିଲା। ଖର୍ଚ୍ଚ ବାବଦରେ ୨୦ ମିଲିୟନ ଟଙ୍କା ବର୍ଷକୁ ଦିଆଯାଉଥିଲା। ଦାରାଙ୍କ ପୁଅକୁ ମଧ୍ୟ ୧୫,୦୦୦ ସୈନ୍ୟ ଯୋଗାଇ ଦିଆଯାଇଥିଲା।

ଗୁଜବ ଥିଲା ଏ ସବୁ ଦାରା ନିଜେ ଯୋଗାଡ଼ କରି ହାସଲ କରିଛନ୍ତି। ସମ୍ରାଟଙ୍କର ଧାରଣା ଥିଲା କି ମୋଗଲ ସାମ୍ରାଜ୍ୟ କେବଳ ଦାରା ହିଁ ସମ୍ଭାଳି ପାରିବେ। ଦାରା ସ୍ୱଭାବରେ ଗର୍ବୀ। ତାଙ୍କ ଧାରଣା କି ସେ ନିଜ ଭାବନା ବଳରେ ସବୁକିଛି କରିପାରିବେ। ଅନ୍ୟ କାହାରି ପରାମର୍ଶ ଯେ ତାଙ୍କୁ ସାହାଯ୍ୟ କରିପାରିବ ଏ ବିଶ୍ୱାସ ତାଙ୍କର ନ ଥିଲା। ଦରବାରରେ ଅମିର ଓ ନୋବେଲମାନଙ୍କୁ ବିଶେଷ ଭଲ ବ୍ୟବହାର ଦେଖାଉ ନଥିଲେ। ଧର୍ମ ଓ ଦର୍ଶନ ପାଇଁ ଅଧିକ ମମତା, କ୍ଷମତା ଓ ଯଶ ପାଇଁ ଆକର୍ଷଣ ଅଳ୍ପ। ଯୋଗୀମାନଙ୍କ ମେଳରେ ଅଧିକ ସୁଖ ପାଉଥିଲେ। ମୋଗଲମାନେ ଏହାକୁ ପାଗଳାମି ବୋଲି ଭାବନ୍ତି। ଏହା ଅମୀରମାନେ ବୁଝିଥିଲେ ଓ ପସନ୍ଦ କରିପାରୁ ନଥିଲେ। ଯୁଦ୍ଧକ୍ଷେତ୍ରକୁ ନ ଯାଇ ସେ ବଡ଼ ଯୋଦ୍ଧା। କୌଣସି ବିପଦର ସମ୍ମୁଖୀନ ହୋଇ ଯୋଜନା କରି ସମସ୍ୟାର ସମାଧାନ କରି କୌଣସି ଯୁଦ୍ଧ ଜିଣିବାର ସଫଳତା ତାଙ୍କ ଭାଗ୍ୟରେ ଘଟି ନଥିଲା।

ଦାରା ସଦାସର୍ବଦା ବ୍ରାହ୍ମଣମାନଙ୍କ ଗହଣରେ ଦିନ କାଟୁଛନ୍ତି ବୋଲି ଖବର ଅଫିସର ମିର୍ଜା ମହମ୍ମଦ କାସିମ ଔରଙ୍ଗଜେବଙ୍କୁ ଜଣାଉଥିଲେ। ଦାରାଙ୍କ ମତରେ ବେଦହିଁ ଭଗବାନଙ୍କ ମୁଖ ନିସୃତ ବାଣୀ। ବେଦକୁ ପର୍ଶିୟାନ ଭାଷାରେ ଅନୁବାଦ ମଧ୍ୟ କରିଥିଲେ। ଏହାରି ଉପରେ ସେ ସାରାଜୀବନ ବିତାଇ ଦେଇଥିଲେ। ସେ ମୁସଲିମ ବିଶ୍ୱାସର ଧାର୍ମିକ ବ୍ରତ ଉପାସନା ସବୁ ବନ୍ଦ କରିଦେଇଥିଲେ। ସମସ୍ତଙ୍କର ଧାରଣା ଥିଲା କି ଦାରାଙ୍କ ସିଂହାସନ ଆରୋହଣ ହୁଏତ ମୁସଲିମ ଧର୍ମ ଓ ବିଶ୍ୱାସ ଉପରେ ଆଘାତ ଆସିବ।

ଏଇଟାହିଁ ଏକ ପ୍ରଶ୍ନବାଚି ଥିଲା । ଯଦିଓ ଦାରା ମୁସଲିମ ଧର୍ମ ମଧ୍ୟ ପାଳୁଥିଲେ । ମୁସଲମାନ ସାଧୁମାନଙ୍କ ଉପରେ ଜୀବନଚରିତକୋଷ ମଧ୍ୟ ଲେଖିଥିଲେ । ଦାରା ନିଜେ ଲେଖିଥିଲେ; 'ସୂର୍ଯ୍ୟଙ୍କ କିରଣ ସୂର୍ଯ୍ୟଙ୍କଠାରୁ କୌଣସି ଗୁଣରେ ଅଲଗା ନୁହେଁ, ସମୁଦ୍ରର ପ୍ରତ୍ୟେକ ଜଳକଣା ସମୁଦ୍ର ବୋଲି ଧରାଯାଏ । ଏ ସତ୍ୟକୁ କେଉଁ ନାମରେ ନାମିତ କରିବ ପ୍ରତ୍ୟେକ ନାମର ଅସ୍ତିତ୍ୱ ଭଗବାନଙ୍କ ନାମରେ ନିହିତ ।

ସେ ପଢ଼ିଥିଲେ ତାଲମୁଦ୍, ନିଉଟେଷ୍ଟାମେଣ୍ଟ, ଉପନିଷଦ, ଆଉ ସୁଫୀଙ୍କର ବାଣୀ ଓ ସବୁ ଧର୍ମରେ ସମନ୍ୱୟରେ ଏକ ସମଧର୍ମୀ ସତ୍ୟ ଖୋଜିବାକୁ ବସିଥିଲେ । ବହି ଲେଖିଥିଲେ ମଜମୁଆ-ଉଲ-ବାହାରେନ (ଦୁଇ ସମୁଦ୍ରର ମିଳନ), ଯେଉଁଥିରେ ସେ ଦୁଇଧର୍ମର ମିଳନ ଚାହିଁଥିଲେ । ଜାହାଙ୍ଗୀର ପରି ଏ ପ୍ରକାର ମନୋଭାବ ଯେ କୌଣସି ଉଦାର ପକ୍ଷପାତହୀନ ମୁସଲିମ ପାଖରେ ସମ୍ଭବ କିନ୍ତୁ ରକ୍ଷଣଶୀଳ ମୁସଲମାନ ଏହାକୁ ମାନିନେବା ସମ୍ଭବ ନୁହେଁ । ଫଳରେ କେହି ଏହା ଗ୍ରହଣ କରି ପାରିଲେ ନାହିଁ । ଆକବରଙ୍କ ଧାର୍ମିକ ଭାବନା ଏହିପରି ଥିଲା । କିନ୍ତୁ ପ୍ରଭେଦ ଏହି ଯେ ଆକବର ରାଜା ଭାବରେ ଏ କଥା ବିଶ୍ୱାସ କରିଥିଲେ ଦାରା ଜଣେ ରହସ୍ୟମୟ ଯୋଗୀ, ଯଦିଓ ସେ ରାଜପୁତ୍ର ଭାବରେ ଜନ୍ମ ଗ୍ରହଣ କରିଥିଲେ, ଭାବରେ ଏହାକୁ ସ୍ୱୀକାର କରିବାକୁ ଲୋକଙ୍କୁ କହିଥିଲେ । ଦାରାଙ୍କ ମତରେ ଗୋଟେ ଜଳକଣା ଯଦି ସମୁଦ୍ରର ଅଂଶ ହୋଇପାରେ ସେ କାହିଁକି ମୁକ୍ତା ହେବାକୁ ଇଚ୍ଛା କରିବ ? ତମେ କାହିଁକି ସାଂସାରିକ ରାଜସିଂହାସନ ଆଶା କରିବ, ଯଦି ତମେ ସତ୍ୟ, ଜ୍ଞାନ, ବୁଦ୍ଧିମତ୍ତା ହାସଲ କରିପାରିଚ ।

ଦାରାଙ୍କର ଭାରତ ସଂକ୍ରାନ୍ତରେ କି ସ୍ୱପ୍ନ ଥିଲା ଜଣାନାହିଁ କିନ୍ତୁ ପରିଶେଷରେ ଭାଗ୍ୟ ଔରଙ୍ଗଜେବଙ୍କ ହାତରେ ବନ୍ଧା ପଡ଼ିଥିଲା ।

ଦାରା ଚାଲୁଥିଲେ ସଂସ୍କୃତିର ଧାରାରେ କିନ୍ତୁ ଔରଙ୍ଗଜେବ ଥିଲେ ଖଣ୍ଡାଧାରରେ । ଦୁହେଁ ଦୁହିଁଙ୍କର ବିପରୀତ ଥିଲେ ଚିନ୍ତା ଧାରାରେ । କୌଣସି ନିଜସ୍ୱ ଆକାଂକ୍ଷା ନେଇ ସେ ସାମ୍ରାଜ୍ୟ ଅଧିକାର କରି ନ ଥିଲେ । ତାଙ୍କ ମତରେ ଇସଲାମଧର୍ମ ଓ ସାମ୍ରାଜ୍ୟ ରକ୍ଷା ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ସେ ପିତାଙ୍କୁ ବନ୍ଦୀ କରିଥିଲେ ଆଉ ଭାଇମାନଙ୍କୁ ହତ୍ୟା । ଯାହା ହେଉ ନା କାହିଁକି ଶାହାଜାହାଁ ଔରଙ୍ଗଜେବଙ୍କୁ ଅନ୍ତରର ସହିତ ଭଲ ପାଉ ନଥିଲେ । ଦାରା ଥିଲେ ତାଙ୍କର

ପ୍ରିୟପୁତ୍ର । ଦ୍ୱିତୀୟ ଥର ପାଇଁ ଔରଙ୍ଗଜେବ ଯେତେବେଳେ ଗଭର୍ଣ୍ଣର ହେଲେ, ସେ ସମୟରେ ସରକାରୀ କାମରେ ଅବହେଳା, ନିଜର ଅପାରଗତା, ଗୋଲକୋଣ୍ଡାରେ ପାଉଥିବା ସଂପତ୍ତିରୁ କିଛି ଅଂଶ ହାତପଇଠ କରିବା, ବରାହାନପୁରର କିଛି ଦକ୍ଷଶିଳ୍ପୀଙ୍କୁ ସାମ୍ରାଜ୍ୟର କାରଖାନାରୁ ନିଜ କାରଖାନାକୁ ନେଇଯିବା ଇତ୍ୟାଦି କରିଥିଲେ । ଏପରିକି ଦାକ୍ଷିଣାତ୍ୟର ସୁଆଦିଆ ଆମ୍ବରୁ କେତେକ ଫଳ ନିଜ ପାଇଁ ରଖିଦେବା, ଏ ସବୁର ସମ୍ମିଳିତ ଅଭିଯୋଗମାନ ଶାହାଜାହାଁଙ୍କ ମନର ଘୃଣାକୁ ଖୋରାକ ଯୋଗାଇଥିଲା । ଶାହାଜାହାଁଙ୍କ ବିରୁଦ୍ଧରେ ଅନେକ ଅଭିଯୋଗ ମଧ୍ୟ ଔରଙ୍ଗଜେବ ନିଜେ କହି ବୁଲୁଥିଲେ । ଔରଙ୍ଗଜେବ ଜନ୍ମନେଲା ବେଳେ ଜଣେ ଜ୍ୟୋତିଷ କହିଥିଲେ କି ଏ ପିଲା ଶାହାଜାହାଁ ଓ ତାଙ୍କ ବଂଶଧରଙ୍କ ପାଇଁ ଶୁଭସଂକେତ ନୁହେଁ । ଶାହାଜାହାଁଙ୍କ ମନରେ ମଧ୍ୟ ସେ କଥା ଗାଦିମାଡ଼ି ବସିଥିଲା । ବାପାଙ୍କ ସ୍ନେହ ଶ୍ରଦ୍ଧାରୁ ବଂଚିତ ହୋଇଥିଲେ ଔରଙ୍ଗଜେବ । ଦାରା ପିତୃସ୍ନେହ ସବୁ ପାଉଥିବାରୁ ସେ ଦାରାଙ୍କୁ ଘୃଣା ମଧ୍ୟ କରୁଥିଲେ ।

ସୁଜା ନିଜ ସୁଖରେ ନିଜକୁ ବୁଡ଼ାଇ ରଖିଥିଲେ । ଗୀତ, ନାଚ, ନାରୀ ସବୁ ଉପଭୋଗ କରିବା ତାଙ୍କର ଧର୍ମ ଥିଲା । ବିଶ୍ୱାସ ମଧ୍ୟ କରୁଥିଲେ କି ଏ ସବୁ ସତ୍ତ୍ୱେ ସେ ନିଜ ବାହୁବଳରେ ସବୁ କିଛି ଜୟ କରିପାରିବେ ।

ଶାହାଜାହାଁ ଜାହାଙ୍ଗୀର ବିରୁଦ୍ଧରେ ବିଦ୍ରୋହରେ ମାତିଥିବା ବେଳେ ଜନ୍ମନେଲେ ତାଙ୍କ କନିଷ୍ଠପୁତ୍ର ମୁରାଦ । ତାଙ୍କ ରାଜ୍ୟ ନିଶା ନଥିଲା । ସିଂହାସନ ପାଇଁ ଭାଇମାନଙ୍କ ବିରୁଦ୍ଧ ମତ ଥିବାବେଳେ ରାଜ୍ୟ ନିଶା ହାରେମର ଦୁଇ ଭଉଣୀ ଜାହାଁନାରା ଓ ରୋଷନାରାଙ୍କୁ ମଧ୍ୟ ବିବ୍ରତ କରୁଥିଲା । ଜାହାଁନାରା ଦାରାଙ୍କୁ ସମର୍ଥନ କରୁଥିବା ବେଳେ ରୋଷନାରା ଔରଙ୍ଗଜେବଙ୍କ ପ୍ରତି ମମତା ଥିଲା । ଦାରାଙ୍କ ପରି ଜାହାନ୍ନାରା ମଧ୍ୟ ସୁଫି ସଭ୍ୟତା ପ୍ରତି ଆକୃଷ୍ଟ ଥିଲେ । ଦୁହିଁଙ୍କର ଦର୍ଶନ ଓ ସାହିତ୍ୟ ପ୍ରତି ମଧ୍ୟ ମମତା ଥିଲା । ସେ ନିଜେ ମଧ୍ୟ ଜଣେ ଲେଖିକା ଥିଲେ ଦାରାଙ୍କ ଭଳି । ମୁନିସ-ଉଲ-ଆରାଓ୍ୱା, ସେଖ ମିନୁଉଦ୍ଦିନ ଚିସ୍ତୀଙ୍କର ଜୀବନୀ ମଧ୍ୟ ସେ ଲେଖିଥିଲେ ।

ରୋଶନାରା ଜାହାଁନାରାଙ୍କ ଭଳି ସୁନ୍ଦରୀ ନ ଥିଲେ । କିନ୍ତୁ ଔରଙ୍ଗଜେବ ଓ ରୋଷାନାରା ଦୁହେଁ ଦାରାଙ୍କୁ ଘୃଣା କରୁଥିଲେ । ଜାହାଁନାରାଙ୍କ ଠାରୁ ରୋଷନାରା ବୁଦ୍ଧିମତି, ଛଳନାପ୍ରୀୟ, ଉଜ୍ଜ୍ୱଳ ଓ ଆନନ୍ଦ ଉଲ୍ଲାସ ପାଇଁ ଲାଳାୟିତ । ଔରଙ୍ଗଜେବଙ୍କ

କଠୋର ଯୋଗୀ ସ୍ୱଭାବକୁ ସେ ସହଯୋଗ କରୁଥିଲେ। କିଛି ବର୍ଷ ପରେ ଔରଙ୍ଗଜେବ ତାଙ୍କୁ ବିଷଦେଇ ମାରିଦେଲେ– ଏକ ପ୍ରେମଜନିତ ନିନ୍ଦା ପାଇଁ। ନାଁ ଦେଲେ କାମୁକ।

ଏହା ପଛରେ ଏକ ଗୂଢ଼ତତ୍ତ୍ୱ ଅଛି ବୋଲି ଅନେକ କହନ୍ତି। ୧୬୫୦ରେ ରୋଷନାରୀ ବଗିଚା ରୋଷନାରାଙ୍କ ଦ୍ୱାରା ତିଆରି ହୋଇଥିଲା। ଔରଙ୍ଗଜେବଙ୍କୁ ସମର୍ଥନ କରି ସେ ଭାଇଙ୍କ ପାଖେ ପାଖେ ରହି ପ୍ରାୟ ସବୁ ରାଜକାର୍ଯ୍ୟରେ ଭାଗ ନେଉଥିଲେ। ସେହି କାରଣରୁ ତାଙ୍କୁ ରାଣୀ ପରି ପ୍ରଥମ ସ୍ଥାନୀୟ ସମ୍ମାନ ଦିଆଯାଉଥିଲା। ୧୬୬୪ରେ ଔରଙ୍ଗଜେବ ଥରେ ବେମାର ପଡ଼ିଲେ। ରୋଷନାରା ଭାବିଲେ ସେ ଆଉ ସେ ବେମାରରୁ ଉଠିବେ ନାହିଁ। ରୋଷନାରା ଔରଙ୍ଗଜେବଙ୍କ ବଡ଼ପୁଅଙ୍କୁ (ଯେ କି ସିଂହାସନର ଅଧିକାରୀ) ନ ବସାଇବା ପାଇଁ ଯୋଜନା କଲେ। ଯାହା ଫଳରେ କି ସେ ନିଜେ ଅଧିକ ଭାଳ ରାଜଗାଦି ଚଳେଇ ପାରିବେ। ତାଙ୍କ ଦୁର୍ଭାଗ୍ୟକୁ ଔରଙ୍ଗଜେବ ଭଲ ହୋଇଗଲେ। ଯୋଜନା ତାଙ୍କର ବ୍ୟର୍ଥ ହେଲା। ଔରଙ୍ଗଜେବ ରୋଷନାରାଙ୍କୁ ବିଷଦେଇ ମାରିଦେଲେ। ୧୬୭୧, ରୋଷନାରା ବାଗରେ ହିଁ ଦଫନ କରାହୋଇଥିଲା।

ଏ ବଗିଚାର ସୌନ୍ଦର୍ଯ୍ୟ ଉପଭୋଗ ଯୋଗ୍ୟ। ହାରେମରୁ ହାତୀ ଦୋଳାରେ ସୁନା ଛାଉଣୀ ହାଇଦାରେ ମନୋରଂଜନ ପାଇଁ ଏ ବଗିଚାକୁ ବୁଲିବାକୁ ଆସନ୍ତି ରୋଷନ୍ନାରା। ଏଠାରେ ଝରଣା, ରହିବା ଘର ଛୋଟ ନାଳ, ପଥରରେ ଜାପାନିଜ ଧରଣର ତିଆରି ଲଣ୍ଠନ ଶୋଭାପାଉଥିଲା। ଏ ବଗିଚା ତିଆରି ହୋଇଥିଲା ଜାପାନିଜ ଢଙ୍ଗରେ। ଆଗ୍ରାରେ ଥାଇଁ ଶାହାଜାହାଁ ଦାରାଙ୍କୁ ସବୁବେଳେ ପରାମର୍ଶ କରୁଥିଲେ। ଖୁସି ଥିଲେ। ଦାରା ମଧ ବାପାଙ୍କ ପରାମର୍ଶ ବିନା କୌଣସି ରାଜକାର୍ଯ୍ୟ କରୁ ନ ଥିଲେ। କେବଳ ଦାରା ହିଁ ପିତାଙ୍କ ମୃତ୍ୟୁ ଚାହୁଁ ନଥିଲେ କିନ୍ତ ଅନ୍ୟ ପୁତ୍ରମାନେ ସମ୍ରାଟ ବଂଚିଥିବା ଅବସ୍ଥାରେ ନିଜକୁ ସମ୍ରାଟ ବୋଲି ଅଭିହିତ କରିବା ଅତି ହାସ୍ୟାସ୍ପଦ ବ୍ୟାପାର ଥିଲା।

ଶାହାଜାହାଁଙ୍କ ଅସୁସ୍ଥତା ସମୟରେ ଦାରା ନିଜକୁ ପ୍ରକୃତ ସମ୍ରାଟ ବୋଲି ଭାବିଲେ। ନିଜକୁ ଅଦକ୍ଷ, ଅଯୋଗ୍ୟ ଜାଣି ମଧ ସେ ହିନ୍ଦୁସ୍ଥାନର ବିରାଟ ସାମ୍ରାଜ୍ୟକୁ ନିଜ ଇଚ୍ଛା ଅନୁସାରେ ଚାରିପଟୁ ସଂକୁଚିତ କରି, ଅନେକ ଅଦରକାରୀ ଓ ବେନିୟମ

କାର୍ଯ୍ୟ ସମ୍ରାଟଙ୍କ ଦ୍ୱାରା କରେଇନେବାକୁ ଚାହିଁଲେ। ଫଳରେ ଶାସନ ଭିତରେ ଅନ୍ତର୍ଦ୍ୱନ୍ଦ ଲାଗିରହିଥିଲା। ଦାରା ସମ୍ରାଟଙ୍କଠୁ କ୍ଷମତା ଛଡ଼ାଇ ଆଣି ନ ଥିଲେ କିନ୍ତୁ ତାଙ୍କୁ କ୍ଷମତା ଅର୍ପଣ କରାଯାଇଥିଲା। ସେ କନ୍ଦୋଳ ଭିତରେ ପଶିବାକୁ ଚାହୁଁ ନ ଥିଲେ କିନ୍ତୁ କନ୍ଦୋଳ ତାଙ୍କ ଉପରେ ଲଦି ଦିଆଯାଇଥିଲା। ତାଙ୍କ ନିୟମ ଓ ବନ୍ଦୋବସ୍ତ ଠିକ୍ ଥିବା ସତ୍ୱେ ଭାଗ୍ୟ ତାଙ୍କୁ ଧ୍ୱଂସ କଲା। ଦାରା ପ୍ରଥମେ ବିଜାପୁର ବିରୁଦ୍ଧରେ ଯୁଦ୍ଧ ଅଭିଯାନ କରିଥିବା ସୈନ୍ୟବାହିନୀଙ୍କୁ ଡକାଇଲେ। ଔରଙ୍ଗଜେବଙ୍କୁ ନ ଜଣାଇ ସେ ବାହିନୀ ଆଗ୍ରାରେ ପହଞ୍ଚିଗଲେ। ମୀର ଜୁମଲାଙ୍କୁ ସିଧା ନ ଡକାଇ (ବିଜାପୁରର ଗୋଟେ ଛୋଟ ଦୁର୍ଗ) ପାରେଣ୍ଡାକୁ ଜୟ କରିବାକୁ ଆଦେଶ ଦେଲେ। କିନ୍ତୁ ଔରଙ୍ଗଜେବ ମିର ଜୁମଲାଙ୍କୁ ଅଟକାଇ ତାଙ୍କଠାରୁ ପାରେଣ୍ଡା ଦୁର୍ଗ ଓ ସଂପରି ଛଡ଼ାଇ ନେଲେ।

ଦ୍ୱିତୀୟରେ ଶାହାଜାହାଁଙ୍କୁ ପରାମର୍ଶଦେଲେ କି ସେ ମୁରାଦଙ୍କୁ ଗୁଜରାଟ (ଏକ ଧନୀ ପ୍ରଦେଶ)ରୁ ବେରାରକୁ ପଠେଇବା ପାଇଁ। ଇଚ୍ଛା ଥିଲା ଯଦି ମୁରାଦ ରାଜି ହୁଅନ୍ତି ତେବେ ଦାରା ମୁରାଦଙ୍କୁ ଔରଙ୍ଗଜେବଙ୍କ ବିରୁଦ୍ଧରେ ପଠାଇବେ। ସେତେବେଳେ ବେରାର ଔରଙ୍ଗଜେବଙ୍କ ଅଧିନରେ ଥିଲା। ମୁରାଦ ରାଜି ନ ହୋଇ ନିଜକୁ ସମ୍ରାଟ ବୋଲି ଘୋଷଣା କଲେ।

ଏ ପଟେ ସୁଜା ଭାବିଲେ କି ଦାରା ତାଙ୍କ ପିତାଙ୍କୁ ବିଷ ନେଇଛନ୍ତି। ଫଳରେ ସେ ନିଜକୁ ସମ୍ରାଟ ବୋଲି ଘୋଷଣା କଲେ। ନିଜ ନାଁରେ କୁତୁୱା ପଢ଼ାଇ ନିଜ ନାଁରେ ମୁଦ୍ରା ମଧ ପ୍ରଚଳନ କରିଦେଲେ। ପରେ ଆଗ୍ରା ଅଭିମୁଖେ ଯାତ୍ରା କଲେ। ଅଭିପ୍ରାୟ 'ଯା ତକ୍ତ-ଯା ତାବୁତ୍' ଅର୍ଥାତ୍ ସିଂହାସନ ଅଥବା କବର।

ମୁରାଦଙ୍କ ପାଖରେ ଏତେ ଅର୍ଥ ନ ଥିଲା। ସେ ସୁରଟର ରାଜକୋଷରୁ ଅର୍ଥ ଓ ସୁରଟ ଲୁଣ୍ଠନ କରି ଟଙ୍କା ଆଣିବା ପାଇଁ ଗୋଟେ ଦଳ ପଠାଇଲେ। ସେ ଦଳ ଫେରିଲା ପୂର୍ବରୁ ଜ୍ୟୋତିଷଙ୍କ ପରାମର୍ଶ ଅନୁଯାୟୀ ସେ ଅଳ୍ପ କିଛି ଅମୀରଙ୍କୁ ନେଇ ସେ ନିଜକୁ ସମ୍ରାଟ ଘୋଷଣା କଲେ ଓ ନିଜ ନାଁରେ କୁତୁୱା ପଢ଼ାଇ, ମୁଦ୍ରା ମଧ ପ୍ରଚଳନ କଲେ। ଏପରିକି ପର୍ଶିଆକୁ ରାଜଦୂତ ପଠାଇ ତାଙ୍କୁ ସମ୍ରାଟ ବୋଲି ମାନିବା ପାଇଁ ଆଦେଶ ଦେଲେ। ଔରଙ୍ଗଜେବ ଚାଲାକି କରି ହଠାତ୍ କୌଣସି ପଦକ୍ଷେପ ନେଲେ ନାହିଁ। ବିଦ୍ରୋହ ଦେଖିବା ପାଇଁ ଅପେକ୍ଷା କଲେ। ତାଙ୍କ

ପାଖରେ ପ୍ରଚୁର ଅର୍ଥ ଓ ଯୁଦ୍ଧ ପାଇଁ ଅଧିକ ସାମର୍ଥ୍ୟ ଥିଲା । ତା' ସତ୍ତ୍ୱେ ସେ ନୀରବ ରହିଥିଲେ । ଘଟଣାଚକ୍ର ଶୀଘ୍ର ଘୁରିଯାଉଥିଲା । ଔରଙ୍ଗଜେବ ମୀର ଜୁମଲାଙ୍କ ଉପଦେଶ ଲୋଡ଼ିଲେ । ପାରେଣ୍ଡା ଅଧିକାର କଲେ । ମୀର ଜୁମଲା ତାଙ୍କର ଅତି ବିଶ୍ୱସ୍ତ ବୋଲି ତାଙ୍କର ସାହାଯ୍ୟ ଏକାନ୍ତ ଆବଶ୍ୟକ ବୋଲି ତାଙ୍କୁ ଚିଠି ଲେଖିଲେ ।

ଔରଙ୍ଗଜେବ ଅପେକ୍ଷା କଲେ । ଶାହାଜାହାଁଙ୍କ ମୃତ୍ୟୁର ସତ୍ୟତା ପ୍ରଚାରିତ ହେବା ପର୍ଯ୍ୟନ୍ତ । ତଥାପି ସନ୍ଦେହ ଥିଲା କି ବେଶୀ ସମୟ ଅପେକ୍ଷା କଲେ ଦାରାଙ୍କ ପାଇଁ ସବୁ ଅଫିସର ଆକୃଷ୍ଟ ହେବେ । ମୀର ଜୁମଲାଙ୍କୁ ଚିଠି ଲେଖିଲେ କି ମୋ ଅଫିସରମାନେ ସରକାରଙ୍କୁ ଦେଖା କରିବାକୁ ଚାହୁଁଛନ୍ତି ।

ନଭେମ୍ବର ମଧଭାଗକୁ ସେ କଲ୍ୟାଣୀରୁ ଔରଙ୍ଗାବାଦ ଫେରିଗଲେ । ସବୁ ଘଟଣାଚକ୍ରକୁ ଅନୁଧ୍ୟାନ କରିବା ପାଇଁ । ଦାକ୍ଷିଣାତ୍ୟରୁ ସୁଲତାନମାନଙ୍କ ସହିତ ବୁଝାମଣା କଲେ । ସେମାନଙ୍କ ସହିତ ବୁଝାମଣା ଜରୁରୀ ଥିଲା । ଦାକ୍ଷିଣାତ୍ୟରେ ତାଙ୍କ ଆଧିପତ୍ୟ ବଜାୟ ରଖିବାକୁ ଇଚ୍ଛା କଲେ । ନଚେତ୍ ଉତ୍ତର ଭାରତରୁ ଫେରିବାବେଳକୁ ଦାକ୍ଷିଣାତ୍ୟ ମଧ ଚାଲି ଯାଇଥାନ୍ତା ।

ସବୁ ଦିଗରୁ ଶାନ୍ତି ଓ ସହାନୁଭୂତିର ବାତାବରଣ ପାଇଁ ଅପେକ୍ଷା କଲେ । ଦରବାରରେ ଅନେକ ମିତ୍ର ମଧ ଔରଙ୍ଗଜେବଙ୍କର ଥିଲେ । ହଠାତ୍ ଘଟଣାର ମୋଡ଼ ବଦଳିଗଲା । ଡିସେମ୍ବର ୧୬୫୭ରେ ଶେଷ ଆଡ଼କୁ ଜୁମଲା ଶାହାଜାହାଁ ଠାରୁ ଆଗ୍ରା ଯିବାପାଇଁ ଆଦେଶ ପାଇଲେ । ଔରଙ୍ଗଜେବ ଅନ୍ଧକାରରେ ଭାସିଲେ । କ'ଣ କରିବେ ମିର ଜୁମଲା । ଦାରା ତାଙ୍କୁ ଭିଜିୟର ପଦବୀରୁ ହଟାଇ ନେଇଥିଲେ । ତାଙ୍କ ପରିବାର ମଧ ଆଗ୍ରାରେ । ସେମାନଙ୍କ ଉପରେ ବିପଦ ଆସିପାରେ । ଏ କଥା ଭାବି ସେ ଆଗ୍ରା ଫେରିବାକୁ ଇଚ୍ଛାକଲେ ।

ମୀର ଜୁମଲାଙ୍କୁ ଔରଙ୍ଗଜେବ ବୁଝାଇବା ପାଇଁ ଚେଷ୍ଟା କଲେ । ପରେ ଅବସ୍ଥା ଦେଇ ତାଙ୍କୁ ବନ୍ଦୀ କଲେ । ଏ ବନ୍ଦୀ ହେବା ଘଟଣା ସମସ୍ତଙ୍କୁ ନାଟକ ପରି ଲାଗିଲା । ମୁରାଦ ଓ ଔରଙ୍ଗଜେବ ଏ ସମୟରେ ଚିଠିପତ୍ର ଆଦାନ ପ୍ରଦାନ କରୁଥିଲେ । ଶାହାଜାହାଁଙ୍କ ନିଜ ହସ୍ତାକ୍ଷର ଦେଖି ଜାଣିଲେ କି ସମ୍ରାଟ ଭଲ ଅଛନ୍ତି । ସୁଜା ମଧ ମିଶିଲେ । ଦାରାଙ୍କୁ ଦୂରେଇ ନେଇ ସେ ତିନିଭାଇ ସାମ୍ରାଜ୍ୟ ବାଣ୍ଟିନେବେ ବୋଲି ଠିକଣାକଲେ । ସେଇ ଅନୁଯାୟୀ ସୈନ୍ୟବଳ ଦୃଢ଼ କଲେ । ଯୁଦ୍ଧ ଏକ ବିଭୀଷିକା ।

ଜୟ ପରାଜୟର ସ୍ଥିରତା ନାହିଁ। ୩ ଭାଇ କେହି ବି ନିଜକୁ ସମ୍ରାଟ ବୋଲି ଘୋଷଣା କଲେ ନାହିଁ। ବାପାଙ୍କୁ ଦେଖିବା ଉଦ୍ଦେଶ୍ୟରେ ତିନିଭାଇ ଆଗ୍ରା ଅଭିମୁଖେ ଯାତ୍ରା କଲେ। ଯୁଦ୍ଧର ନାଁ ବି ନେଲେ ନାହିଁ।

**ଶାହାଜାହାଁବାଦ :** ଏ ସହର ଯମୁନାକୂଳରେ ତିଆରି ହୋଇଥିଲା। ଅସପୂର୍ଣ୍ଣ ଅର୍ଦ୍ଧ-ଚନ୍ଦ୍ର ଆକାରରେ ଗଠିତ। ୧୬୩୮ ଖ୍ରୀ:ଅରୁ ୧୬୪୮ ଖ୍ରୀ:ଅ ମଧ୍ୟରେ। ମାତ୍ର ବାରଗୋଟି ଦ୍ୱାର ଏ ସହର ଭିତରକୁ ଯିବା ପାଇଁ। ପାଖରେ ଦିଲ୍ଲୀର ପୁରୁଣା ସହର। ଇଟା ଓ ପଥରରେ ଗଢ଼ା ଏହାର କାନ୍ଥ। ପ୍ରତ୍ୟେକ ୧୦୦ ଫୁଟ ଦୂରରେ ଗୋଟିଏ ଲେଖାଏଁ ଖୁଣ୍ଟ। ଖୁଣ୍ଟ ଉପରେ କୌଣସି ଚିତ୍ର କରାଯାଇନି। ମୂଳ ଗେଟ ଦୁଇଟି – ଗୋଟିଏ ଆଗ୍ରାକୁ ଓ ଦ୍ୱିତୀୟଟି ଲାହୋରକୁ ସହର ଭିତରେ ଅନେକ ବଜାର। ନୋବଲ ଓ ଅଫିସରମାନଙ୍କ ପାଇଁ ଅନେକ ସୁନ୍ଦର ସୁନ୍ଦର ଘର। ଅନ୍ୟମାନଙ୍କ ଛପର ଘର ବି ଦୃଶ୍ୟମାନ। ଭିତରର ସାଜସଜ୍ଜା ଅତି ସୁନ୍ଦର। ଯମୁନା ଧାର ନିକଟରେ ଏସହରର କାନ୍ଥ ନାହିଁ। ଉତରପଟକୁ ରାଜପ୍ରାସାଦ ଠିଆ। ମୁହଁ ପୂର୍ବଦିଗକୁ। ସାମନାରେ ପ୍ରାସାଦ ଓ ନଈ ମଝି ଜାଗାଟା ଖୋଲା। ଏ ସ୍ଥାନ ହାତୀ ଲଢ଼େଇ ପାଇଁ। ବାଦଶାହା ଝରକାପାଖେ ବସି ଏ ହାତୀ ଲଢ଼େଇ ଦେଖିପାରିବେ। ସ୍ତ୍ରୀଲୋକମାନେ ମଧ୍ୟ ଏ ଦୃଶ୍ୟ ଜାଫ୍ରିଲ ପଛରେ ଥାଇ ଦେଖିବାର ବ୍ୟବସ୍ଥା ଥିଲା। ଦୁର୍ଗଟି ଲାଲପଥରରେ ତିଆରି କାନ୍ଥରେ ଆବୃତ। ବାରଟି ଅର୍ଦ୍ଧ ଗୋଲାକାର ତୋରଣ ଉପରେ ଗୋଟେ ପୋଲ। ସଲିମଗଡ଼ ସହ ଏହି ପୋଲର ଯୋଗାଯୋଗ। ସଲମଗଡ଼ ସଲିମସାହାଙ୍କ ଦ୍ୱାରା ନିର୍ମିତ ଆଉ ଏହାର ଅବସ୍ଥିତି ଗୋଟେ ଟାପୁ ଉପରେ। ରାଜପ୍ରାସାଦର ଦୁଇଟି ଗେଟ ସହର ଭିତରକୁ ଯିବା ପାଇଁ। ମଝି ଜାଗାଟି ଖୋଲା। ଉତ୍ତର ଓ ଦକ୍ଷିଣ ଦିଗରେ ଏ ଗେଟ ଅବସ୍ଥିତ। ବଗିଚାକୁ ପାଣି ଯୋଗାଇବା ପାଇଁ ଯମୁନାର ପାଣି ଉପରକୁ ଉଠିଯିବ ନାହିଁ। ସେଥିପାଇଁ ଶାହାଜାହାଁ ଅନେକ ପଇସା ଓ ପରିଶ୍ରମ କରାଇ ଗଭୀର କେନାଲଟିଏ ଯମୁନାକୂଳରୁ ସିରହିନ୍ଦ ପର୍ଯ୍ୟନ୍ତ ଖୋଳାଇଥିଲେ। ଏ କେନାଲ ଦୁର୍ଗ ଭିତରକୁ ବୋହିଯାଏ। କେନାଲରେ ସବୁବେଳେ ପାଣି। ଶାହାଜାହାଁଙ୍କ ଆଦେଶରେ ତା' ଭିତରେ ସୁନ୍ଦର ସୁନ୍ଦର ମାଛକୁ ବେକରେ ସୁନାର ହାର ପିନ୍ଧାଇ ଛାଡ଼ି ଦେଇଥିଲେ। ପ୍ରତ୍ୟେକ ହାରରେ ଗୋଟିଏ ରୁବି ଓ ଆଉ ଗୋଟିଏ ପର୍ଲ ଖଞ୍ଜି ଦିଆଯାଇଥିଲା। ଦୁର୍ଗର ବିପରୀତ ଦିଗରେ, ପଶ୍ଚିମକୁ

ରାଜ ପରିବାରର ମସଜିଦ୍ ଦଣ୍ଡାୟମାନ। ବାଦଶାହା ସପ୍ତାହରେ ଥରେ ଏଠାକୁ ପ୍ରାର୍ଥନା କରିବାକୁ ଯାଉଥିଲେ।

ରାଜପ୍ରାସାଦ(ଦୁର୍ଗ)ର ଅବତାରଣା ମଧ ସେଇ ଧରଣର। ଏକ ପ୍ରାକୃତିକ ପରିବେଶହିଁ ଆବଶ୍ୟକ। ଦୁର୍ଗର ତଳେ ତଳେ ନଦୀର ଧାରା ଓ ଉପରେ ଏକ ଚଉତରା। ଏପରି ଏକ ଦୁର୍ଗ ଅନୁସନ୍ଧାନରେ ଥିଲେ ବାଦଶାହା। ଅବଶେଷରେ ସଲିମଗଡ଼ ବଛାଗଲା।

ଦକ୍ଷ କାରିଗର ଓ ସୁଦକ୍ଷ ଶ୍ରେଣୀର ନିତ୍ୟବେତନ ଭୋଗି ଖୋଜା ହୋଇ ଆସିଲେ। ଶୁକ୍ରବାର, ମୋହରମର ନବମ ଦିବସ। ୧୬୩୯ ଖ୍ରୀ:ଅ:ରେ ଶୁଭଅବସରରେ ଏ ପ୍ରାସାଦର ଶୁଭ ଭିତ୍ତି ସ୍ଥାପନ କରାହେଲା। ଚୂଡ଼ାନ୍ତ ହେଲା ଏହାର ନିର୍ମାଣ। ରାଜତ୍ୱର ୨୧ ବର୍ଷରେ। ଲାଗିଲା ନ'ବର୍ଷ ତିନିମାସ ଓ ଆଉ କିଛି ଦିନ। ଖର୍ଚ୍ଚ ହେଲା ୬୦ ଲକ୍ଷ ଟଙ୍କା।

ବାଗଦାଦ୍‌ର ପ୍ରାସାଦ ଶୈଳୀରେ ଏ ପ୍ରାସାଦ ଗଢ଼ି ଉଠିଲା। ଲମ୍ବ ୧୦୦୦ ଗଜ ଓ ୩୦୦ ଗଜ ଚଉଡ଼ା। ଫତେପୁରର ଲାଲପଥରରେ ତିଆରି ଏ ପ୍ରାସାଦ। ଆଗ୍ରାର ପ୍ରାସାଦରୁ ଏହା ଦୁଇଗୁଣ। କାନ୍ଥ ଚାରିପଟେ। ୧୨½ ଗଜର ପରିଖା। ଏହାର ପେରିମିଟର ଏକ ହଜାର ୬ ଶହ ପଚାଶ ଗଜ। ୨୧ଟି (ବାଷ୍ଟିଲିୟନ), ୭ଟି ଗୋଲାକାର ଓ ୧୪ଟି ଅଷ୍ଟପଦ। ୪ଟି ଗେଟ ଓ ୨ଟି ଝରକା। ଏହାକୁ ଘେରି ୨୦ ଗଜ ଚଉଡ଼ା ଓ ୧୦ ଗଜ ଗଭୀର ଗଡ଼ଖାଇ। ୨୧ ଲକ୍ଷ ଟଙ୍କାରେ ଖର୍ଚ୍ଚ ହୋଇଥିଲା। ଭିତରେ ଶାହାମହଲ (ଯାହାର ଛାତ ରୂପାରେ ତିଆରି) ଇମତିୟାଜ ମହଲରେ ଗୋଟେ ଶୋଇବା ଘର ବୁର୍ଜ-ଇ-ତାଲା ନାମରେ ନାମିତ (ଏହା ସୁନାରେ ତିଆରି)। ଜନସାଧାରଣ ଓ ନିଜସ୍ୱ ଦଉଲତ ଖାନା, ହାୟାତ୍ ବକ୍ସ ବଗିଚା ଯାହା ପାଇଁ ଖର୍ଚ୍ଚ ହୋଇଥିଲା ୨୮ ଲକ୍ଷ ଟଙ୍କା। ବେଗମ ସାହିବାଙ୍କର ପ୍ରାସାଦ ଓ ହାରେମର ଅନ୍ୟମାନଙ୍କ ପାଇଁ ନିର୍ମିତ ପ୍ରାସାଦରେ ଖର୍ଚ୍ଚ ୭ ଲକ୍ଷ। ଏହା ବ୍ୟତୀତ ବଜାର, ଗାର୍ଡ଼ରୁମର ନିର୍ମାଣ ପାଇଁ ୪ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା। ଏହାର ନିର୍ମାଣରେ ଏତେ ଦକ୍ଷତା ଖର୍ଚ୍ଚ ହୋଇଥିଲା। ଯେ ଦକ୍ଷତାର ଆତ୍ମଦର୍ଶନ ନିର୍ମାଣ କଳା ସହ ଯୋଡ଼ି ହୋଇଯାଇଥିଲା।

ଶାହାଜାହାଁବାଦ : ବର୍ତ୍ତମାନର ଚିତ୍ର

୧୬୪୮ରେ ଚନ୍ଦ୍ରଭାନୁ ନାମରେ ଜଣେ ବ୍ରାହ୍ମଣ ଲେଖିଥିଲେ ଏହା ସ୍ୱର୍ଗକୁ ରାସ୍ତା। ଗଳି ସବୁ ଆନନ୍ଦର ପରିଭାଷା ପ୍ରକାଶ କରେ। ଗୁଲାମ ମହମ୍ମଦ ଖାଁଙ୍କ ଭାଷାରେ ଏଡ଼େନ ବଗିଚା ଯେଉଁଟା ଲୋକ ବସତିରେ ପରିପୂର୍ଣ୍ଣ।

ଏହା ଅଷ୍ଟମ ସ୍ୱର୍ଗର ମୁଳଦୂଆ।

ଏ ସହରରେ ଗୋଟିଏ ମାତ୍ର ଗେଟଘର। ପଛକୁ ଅଗଣା ଆଉ ପଛକୁ ଛୋଟ ସୁନ୍ଦର ବଗିଚା। ପରେ ପରେ ହାରେମ ଆଉ ଛୋଟ ଛୋଟ ମସଜିଦ୍, ହାଭେଲି ଲାଇବ୍ରେରୀ। ପରେ ପରେ କାଚ ଘର (ଶିଶମହଲ)। ଏ ହାଭେଲି ତା' ନିଜ ଗଠନଶୈଳୀରେ ପରିପୂର୍ଣ୍ଣ। ବାହାରର କୌଣସି ବାଟଚଲା ଲୋକର ଦୃଷ୍ଟି ଅନ୍ତରାଳେ ଏହାର ଅବସ୍ଥିତି। କିନ୍ତୁ ବର୍ତ୍ତମାନ ପାର୍କିଂ ପାଇଁ ଗାଡ଼ି ରଖିବାର ଜାଗା। ଆଉ କାଚର ଘରକୁ ତ ଚିହ୍ନିବାର ଉପାୟ ନାହିଁ। ଏହି ଜାଗାରେ କ୍ଷୁଦ୍ର ଶିଳ୍ପାନୁଷ୍ଠାନମାନ ଗଢ଼ି ଉଠିଛି। କେବଳ ଛୋଟ ଛୋଟ କାରୁକାର୍ଯ୍ୟ ଖଚିତ କାନ୍ଥ ଓ ଅଧା ଭୁଟି ରହିଥିବା ଜାଗା ସବୁ ମୋଗଲ ସାମ୍ରାଜ୍ୟର କଳାସ୍ଥାପତ୍ୟର ପରିଚୟ ଦିଏ।

ସୀତାରାମ ବଜାର ପଛକୁ ହକ୍‌ସାର ହାଭେଲି ଠିଆ ହୋଇଛି। ଅନେକ ବର୍ଷ ତଳେ ଭାରତର ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ ଏ ଜାଗାରେ କମଳା ନେହେରଙ୍କ ବିବାହ କରିଥିଲେ। ଏ ଜାଗା କାଶ୍ମୀରର ହକସାର ନାମରେ ଗୋଟିଏ ପଣ୍ଡିତ ପରିବାରଙ୍କର କରାଗତ ହୋଇଛି। ଏଠିକାର ଗେଷ୍ଟହାଉସ ପୂର୍ବପରି ଅକ୍ଷତ ରହି ମୂକସାକ୍ଷୀ ରୂପେ ଛିଡ଼ା ହୋଇଛି। ଏଠିକାର ବାଲକୋନି, ମାବ ଲାଞ୍ଚ ପରି ଝରକା ସବୁ ଏବେ ବି ଅଧିକ ରୁଚିପୂର୍ଣ୍ଣ।

ଅନ୍ୟ ଏକ ଅଂଶ ବେଗମ ହମିଦା ସୁଲତାନ, ଆଲି ମନଜିଲ ଘର ପୁରୁଣା ଢାଞ୍ଚାରେ ଠିଆ ହୋଇରହିଛି। ଏଠାରେ ରାଷ୍ଟ୍ରପତି ଫକୀରୁଦ୍ଦିନ ଅଲି ଅହମଦ ରହିଥିଲେ ଆଉ ସେଥିପାଇଁ ନିଷ୍ଠୁର କ୍ରମକ୍ଷୟିଷ୍ଣୁ ବାତାବରଣରୁ ବଞ୍ଚି ଯାଇଛି। ମୋଗଲ ରକ୍ତ, ମୋଗଲ ଚେହେରା ଆଉ ମୋଗଲ ପ୍ରତିଭାର ଛାୟା ସ୍ୱରୂପ ସେଠରେ ବସବାସ୍ କରୁଛନ୍ତି ଜଣେ ମୋଗଲ। ନାମ ବେଗମ ହାମିଦା ସୁଲତାନ।

ଦିନେ ଏଇଠି, କବି ଲେଖକ ଗାୟକ, ରାଜନୀତିଜ୍ଞମାନଙ୍କ ସଭାରେ ଯୋଗଦେବା ପାଇଁ ପୂର୍ବରୁ ସମୟ ନେବା ପାଇଁ ପଡୁଥିଲା। ହମିଦା କହୁଥିଲେ

ଦିନକୁ ୫୦ଜଣ ଅଭ୍ୟାଗତ ଏଠାକୁ ଆସୁଥିଲେ। ଗଳା ପଡ଼ି ପଡ଼ି ଆସୁଥିଲା ତାଙ୍କର। କହିଲେ ଦେଶ ବିଭାଜନ ଦିଲ୍ଲୀକୁ ନଷ୍ଟ କରିଦେଲା। ଆଉ କହିଲେ ମୁଁ ଦିଲ୍ଲୀକୁ ବହୁତ ଭଲପାଏ। ବିଭାଜନ ପରେ ଆମେ ସିଲଂରୁ ଫେରି ଦେଖିଲୁ ଦିଲ୍ଲୀ ନଷ୍ଟ ଭ୍ରଷ୍ଟ ଆଉ ମୃତପ୍ରାୟ ବର୍ତ୍ତମାନ ମଧ୍ୟ ଦିଲ୍ଲୀର ଜନତା ଉର୍ଦ୍ଦୁଭାଷା ବ୍ୟବହାର କରନ୍ତି। ଉର୍ଦ୍ଦୁ ଏକ ସଂଭ୍ରାନ୍ତବଂଶୀୟ ଭାଷା। କିନ୍ତୁ କବିଙ୍କର ଉଦ୍ଧୃତ ଭାଷା ମରିଯାଇଛି। ନିଜକୁ ହମିଦା ବିସ୍ମୃତ ହେବା ଅଶାରେ ସେଠି ଅବସ୍ଥାନ୍ କରୁଛନ୍ତି।

ପ୍ରଥମ ମହାଯୁଦ୍ଧ ଆଉ ସଂକ୍ରାମକ ରୋଗ ସମୟର କଥା। ଶାହାଜାହାଁଙ୍କ ଦରବାରର ବିଖ୍ୟାତକବି ହକ୍‌ଙ୍କ ବଂଶଧରର ଜଣେ ପାଇପ୍ ଟଣା ଉର୍ଦ୍ଦୁକବି ୧୯୪୭ରେ ଦେଶ ବିଭାଜନ ସମୟରେ ପାକିସ୍ଥାନ ପଳାଇଲେ। ଉଦ୍ଦେଶ୍ୟ ଥିଲା ଗଣ୍ଡଗୋଳ ସରିବା ପରେ ଫେରି ଆସିବେ ଦିଲ୍ଲୀ। କିନ୍ତୁ ଆଉ ଫେରିବାର ସୁଯୋଗ ପାଇଲେ ନାହିଁ। ପ୍ରାୟ ୭୦୦ ବର୍ଷ ତଳେ ତୁର୍କିସ୍ଥାନରୁ ତାଙ୍କର କେହିଜଣେ ବଂଶଧର ଆଲ୍ଲାଉଦ୍ଦିନ ଖିଲଜିଙ୍କ ସମୟରେ ଦିଲ୍ଲୀ ଆସିଥିଲେ।

ଥରେ ଏହି କବି ଭାଷଣ ଦେବା ପାଇଁ ଅଷ୍ଟ୍ରେଲିୟା ଯାଉଥିଲେ। ଉଡ଼ାଜାହାଜରେ କୌଣସି ଯାନ୍ତ୍ରିକ ତ୍ରୁଟି ଯୋଗୁଁ ତାଙ୍କୁ ଦିଲ୍ଲୀରେ ଓହ୍ଲାଇବାକୁ ପଡ଼ିଲା। ସେ କିନ୍ତୁ ଉଡ଼ାଜାହାଜରୁ ବାହାରି ଦିଲ୍ଲୀ ମାଟି ଛୁଇଁବାକୁ ରାଜି ନ ଥିଲେ। ବାଧ୍ୟ କରାଯିବାରୁ ସେ ମୀର ଜାକିଙ୍କର କବିତା ଆବୃତ୍ତି କଲେ।

'ହେ ମୃଦୁ୍ୟ ପବନ କ'ଣ ବା ଯାଏ ଆସେ
ଯଦି ବସନ୍ତ ଋତୁ ଏବେ ବି ଆସେ,
କାରଣ ମୁଁ ବର୍ତ୍ତମାନ ଦୁଇଟି ଯାକ ହିଁ ହରାଇସାରିଛି
ମୋର ବଗିଚା ଆଉ ମୋ .ରହିବା ବସା'

ଏ ଆବୃତ୍ତି ଶୁଣିବା ପରେ କ'ଣ ଘଟିଲା ବୋଲି ତାଙ୍କୁ ପ୍ରଶ୍ନ ହେଲା ?

କବି ଶାନ୍ତକଣ୍ଠରେ ଉତ୍ତର ଦେଲେ କି ସେମାନେ ହୁଏତ ବୁଝି ପାରିଲେ ନାହିଁ ଏ କବିତାର ମର୍ମ।

୧୭୯୫ରେ ଲେଫ୍ଟନାଣ୍ଟ ଉଇଲିୟମ ଫ୍ରାଙ୍କଲିନ୍ ଇଉରୋପରୁ ଇଷ୍ଟ ଇଣ୍ଡିଆ କଂପାନୀର ନିର୍ଦ୍ଦେଶକ ଭାବରେ ବିରାଟ ମୋଗଲ ସାମ୍ରାଜ୍ୟକୁ ନିରୀକ୍ଷଣ କରିବା

ପାଇଁ ନିର୍ଦ୍ଦେଶ ଦେଇଥିଲେ। ଏହା ବୋଧେ ସାହା ଆଲମଙ୍କ ବେଳର ଘଟଣା। ଆବୃତିହୀନ ଧ୍ୱଂସର ଗଦା ଭିତରୁ ଅତୀତର ସ୍ମୃତିର ଚିତ୍ର କିଛି ଜାଣିବା ମୁସ୍କିଲ। ଆଉ ସବୁଠୁ ବେଶି ଧ୍ୱଂସ ହୋଇଥିଲା ନୋବଲମାନଙ୍କର ପ୍ରାସାଦସବୁ।

କିଛି ମାସ ପରେ ଜେମ୍ସ ଫୋର୍ବ୍ସ ଶାହାଜାହାଁବାଦରେ ପହଞ୍ଚି ଜାଣିଲେ କି ସମ୍ରାଟ ନିଜେ ସଫଦରଜଙ୍ଗ ପ୍ରାସାଦରେ ରହିବାର ବନ୍ଦୋବସ୍ତ କରିଛନ୍ତି ସତ ହେଲେ ସମୁଦାୟ ପ୍ରାସାଦରେ ନୁହେଁ।

ପ୍ରାୟ ଆଠବର୍ଷ ପରେ ଦିଲ୍ଲୀ ଯୁଦ୍ଧ ପରେ ୧୮୦୩ ବେଳକୁ ଜଣେ ସ୍ଥାୟୀ ରେସିଡେଣ୍ଟ ଦିଲ୍ଲୀରେ ସ୍ଥାପନା କରାଗଲା ଆଉ ସେ ବସବାସ କଲେ ରେଡ଼ ଫୋର୍ଟ ଖଣ୍ଡହରର ଉପକଣ୍ଠରେ। ସେତେବେଳେ ବ୍ରିଟିଶ ରାଜଧାନୀ କଲିକତାରେ ଥିଲା। ରେସିଡେଣ୍ଟଙ୍କ କ୍ଷମତା ଏତେ ନ ଥିଲା। ସେ ମୋଗଲ ସାମ୍ରାଜ୍ୟର ରାଷ୍ଟ୍ରଦୂତ ଭାବରେ କାମ କରୁଥିଲେ। ସମ୍ରାଟ ପୂର୍ବପରି ନିଜ ଦରବାର ସମ୍ଭାଳୁ ଥିଲେ।

ପରେ ପରେ ଆସିଲେ ସାର ଡେଭିଡ୍ ଅଷ୍ଟରୋଲୋନି ତାଙ୍କର ହୁକା ପାଇଁ ଆଗ୍ରହ ଓ ନାଚବାଲିଙ୍କ ପ୍ରତି ମମତା ଅଧିକ ଥିଲା। ମୋଗଲମାନଙ୍କ ତରଫରୁ ତାଙ୍କୁ ଏକ ପଦବୀ 'ନାସିର-ଉଦ୍-ଦ୍ଦିନ' (ରାଜ୍ୟ ପ୍ରତିରକ୍ଷାକାରୀ) ଦିଆଯାଇଥିଲା। ଦିଲ୍ଲୀ ଜନତା ତାଙ୍କୁ 'ଲୋନି ଅକତାର' ବା 'ପାଗଳ ତାରକା' ବୋଲି ସମ୍ବୋଧନ କରୁଥିଲେ। ପ୍ରତ୍ୟେକ ଦିନ ସଂଧ୍ୟାରେ ୧୩ ଜଣ ଭାରତୀୟ ସ୍ତ୍ରୀଙ୍କୁ ଅଲଗା ଅଲଗା ହାତୀ ଉପରେ ବସାଇ ସାରା ଦିଲ୍ଲୀ ପରିଭ୍ରମଣ କରୁଥିଲେ।

ସବୁଠୁ ମନମୁଗ୍ଧକର ଭଦ୍ରଲୋକ ଥିଲେ ସାର ଉଇଲିୟମ ଫ୍ରେଜର। ସେ ଇନ୍‌ଭରନେସର ଜଣେ ପର୍ଶିୟାନ ସ୍କଲାର ଥିଲେ। ୧୮୦୫ରେ କଲିକତାରୁ ଦିଲ୍ଲୀକୁ ପଠାଗଲେ। ସେ ରେସିଡେଣ୍ଟଙ୍କ ସହାୟକ ଅଫିସର ଭାବରେ ଚାକିରୀ ପାଇଲେ। ଦିଲ୍ଲୀରେ ତାଙ୍କର ଚେହେରା ତାଙ୍କର ଜାତୀୟତା ସବୁ କିଛି ବଦଳିଗଲା। ସେ ରାଜସ୍ଥାନୀ ଢଙ୍ଗରେ ନିଶ ରଖିଥିଲେ। ପର୍ଶିୟାର ସମ୍ରାଟଙ୍କ ପରି ଅନେକ ପିଲାଙ୍କର ବାପା ହୋଇଥିଲେ। ତାଙ୍କର ସବୁଠୁ ପ୍ରୀୟ ଥିଲା ଏସିଆର ସିଂହକୁ ତୀର ସାହାଯ୍ୟରେ ଶିକାର କରିବା।

ଦୁଇଶହ ବର୍ଷ ଧରି ଭାରତ ବ୍ରିଟିଶର କରାଗତ ହୋଇସାରିଥିଲା – ପ୍ରଥମେ East India କଂପାନୀ ଓ ପରେ ବ୍ରିଟିଶ ରାଜମୁକୁଟର ଶାସକ। ଚିତ୍ରିତ ଗମ୍ବୁଜ,

ସର୍ବୋପରି ଯୋଜନାବଦ୍ଧ ଏହାର ତିଆରି ପ୍ରଣାଳୀ ଖୁବ୍ ସୁନ୍ଦର ମନମୁଗ୍ଧକର ପ୍ରଭାବ ମନରେ ପକାଏ। ଏହା ରୋମର ପ୍ରାସାଦ ସବୁ ଚିତ୍ର ପରି ଆନ୍ଦୋଳିତ କରେ ଦର୍ଶକର ହୃଦୟକୁ। ଏ ସବୁ ଉକ୍ତି ଜଣେ ସୁଦକ୍ଷ ପତ୍ରକାର ଷ୍ଟାନ୍‌ଲେ ଗିତ୍‌ଙ୍କର।

**ଲାଲକିଲ୍ଲା :** ମୋଗଲ ସ୍ଥାପତ୍ୟ ବିଦ୍ୟାର ଆଉ ଏକ ଅବଦାନ ଲାଲକିଲ୍ଲା। ପୃଥିବୀର ସବୁଠାରୁ ସୁନ୍ଦର କାରୁକାର୍ଯ୍ୟ ବୋଲି ଗଣାଯାଏ। ଦିଲ୍ଲୀ ତା'ର ସୌନ୍ଦର୍ଯ୍ୟ ଶାହାଜାହାଁଙ୍କ ରାଜୁତିରେ ହିଁ ଫେରି ପାଇଲା। ୧୧ ବର୍ଷ ଆଗ୍ରାରେ ରାଜଧାନୀ ରଖିଲା ପରେ ସେ ଦିଲ୍ଲୀକୁ ରାଜଧାନୀ ଭାବରେ ତୋଳିବାକୁ ଚାହିଁଲେ। ଆଗ୍ରା ଓ ଲାହୋରଠାରୁ ଅଧିକ ସୁନ୍ଦର କରିବାକୁ ଇଚ୍ଛା କଲେ। ୧୬୩୮ରେ ଭିତ୍ତିପ୍ରସ୍ତର ସ୍ଥାପନ କରାହେଲା। ପ୍ରାୟ ୧୦ ବର୍ଷ ୧୬୪୮ ବେଳକୁ ଏହା ସଂପୂର୍ଣ୍ଣ ହେଲା।

ଦୂରରୁ ଏହା ଦୃଷ୍ଟି ଗୋଚର ହୁଏ। ଦିୱାନି-ଆମର ଖୋଲାଦରବାର ଜାଗା ଏହାର ମୁଖ୍ୟ। ଜବତଖାନା ଆଗରେ ଖୋଲାଦରବାରରୁ ଦୁଇଟି ଶାଖା ମେଳିଯାଇ ଦକ୍ଷିଣ ଓ ଉତ୍ତରକୁ ଗତି କରିଛି। ପରେ ପରେ ପୁଣି ଦୁଇ ଦିଗକୁ ଯାଇଁ ପ୍ରାସାଦର ପ୍ରଧାନ କକ୍ଷ ସବୁ ନିର୍ମାଣ କରାଯାଇଛି। ମହମ୍ମଦ ସଲିହ, ଜଣେ ଐତିହାସିକ ଏହାର ଗଠନ ପ୍ରଣାଳୀ ଉପରେ ଏକ ସୁନ୍ଦର ବୟାନ ଦେଇଛନ୍ତି।

ଶାହାଜାହାଁ ସିଂହାସନ ଆରୋହଣ କରିବାର ୨୧ତମ ବର୍ଷରେ ସେ ଲାଲକିଲ୍ଲାରେ ନିଜର ରାଜଧାନୀ ପାଇଁ ପ୍ରାସାଦ ଗଢ଼ିଲେ।

ଦିୱାନିଆମରେ ଯେଉଁ ବର୍ଡ଼ରବାଲା ଭେଲଭେଟ କପଡ଼ା ଲାଗିଥିଲା, ଆସିଥିଲା ଟର୍କିରୁ। ସିଲ୍କ କପଡ଼ା ଆସିଥିଲା ଚାଇନାରୁ ଦୁଇଟି ଗେଟ– ଦିଲ୍ଲୀ ଗେଟ ଓ ଲାହୋର ଗେଟର ଗଢ଼ଣ-ପ୍ରଣାଳୀ କହିଲେ ନ ସରେ। ଲାହୋର ଗେଟର ମୁହଁ ଚାନ୍ଦିନୀଚୌକ ପାଖକୁ। ଆକବରଙ୍କ ଦ୍ୱାରା ନିର୍ମିତ ଆଗ୍ରାର ହାତୀପଲ ଗେଟଠାରୁ ଆହୁରି ସୁନ୍ଦର। ଲାହୋର ଗେଟ ସାମନାରେ ସୁନ୍ଦର ବଗିଚା। ଆଉ ବଗିଚାକୁ ଲାଗି ଏକ ମନୋହର ଚବୁତର ନିର୍ମିତ ହୋଇଥିଲା। ଏ ଜାଗାରେ ନୋବେଲ ଓ ଅଫିସିଆଲମାନେ ଏକାଠି ହେଉଥିଲେ। ଦରବାର-ଇ-ଆମର ଆସେମ୍ଲିରେ ଯୋଗଦେବା ପାଇଁ ଏଇଠୁ ଯାଉଥିଲେ। ଏହାର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ। ପୂର୍ବ ଦିଗକୁ ଆଉ ଏକ ଛୋଟ ଚବୁତରାରେ ନକରଖାନା (ସଂଗୀତ ହଲ) ଗଢ଼ା ଯାଇଥିଲା।

ରାଜକୀୟ ବ୍ୟାଣ୍ଡ ଏହିଠାରେ ହିଁ ଦିନକୁ ୫ ଥର ବାଜେ। କିନ୍ତୁ ରବିବାର ଓ ସମ୍ରାଟଙ୍କ ଜନ୍ମତିଥିରେ ଏହା ସାରାଦିନ ରାତି ବାଜେ। ଏହି ଠାରୁ ଦିୱାନି ଆମକୁ ଯିବା ପାଇଁ (ରାଜପୁତ୍ର ଓ ରାଜପରିବାରର ଲୋକଙ୍କ ବ୍ୟତୀତ) ସମସ୍ତେ ଏହିଠାରୁ ଯାନବାହାନ, ଘୋଡ଼ା, ହାତୀ ପ୍ରଭୃତି ସବାରରୁ ଓହ୍ଲାଇ ପାଦରେ ଚାଲିଚାଲି ଦିୱାନିଆମକୁ ଯିବାର ନିୟମ। ଦିୱାନି ଆମ ହଲ ସର୍ବସାଧାରଣଙ୍କ ନିମନ୍ତେ ଉଦ୍ଦିଷ୍ଟ।

ପରକୁ ଦିୱାନ-ଇ-ଖାସ(ଘରୋଇ ବ୍ୟକ୍ତିଗତ ହଲ)। ଉଚ୍ଚଧରଣର ଆଳଙ୍କାରିକ ଢଙ୍ଗରେ ତିଆରି। 'ଆଦର୍ଶନୀୟ ସ୍ଥାପତ୍ୟ ବିଦ୍ୟାର ଧନ୍ୟାଢ୍ୟ ରୂପ' ବୋଲି କୁହାଯାଇପାରେ। ଏହାର ଛାତରେ ଲେଖା ଏହିପରି। ଯଦି ପୃଥିବୀରେ କୌଣସି ସ୍ୱର୍ଗ ଥାଏ, ତାହାହେଲେ ତାହା ଏହିଠାରେ, ଏହିଠାରେ ଆଉ ଏହିଠାରେ। ମାର୍ବଲ ତିଆରି ଡାଏସ ମୟୂରସିଂହାସନକୁ ଧରି ରଖି ଗଢ଼ା ଯାଇଥିଲା। ମୟୁର ସିଂହାସନ ଗଢ଼ିବାରେ ଶାହାଜାହାଁ ୬ ମିଲିୟନ ଷ୍ଟର୍ଲିଂ ଖର୍ଚ୍ଚ କରିଥିଲେ। ୧୭୩୯ରେ ନାଜିର ସାହା ଏହାକୁ ସ୍ଥାନାନ୍ତରିତ କରିଥିଲେ।

ଏ ପ୍ରାସାଦ ମୋଗଲ ସାମ୍ରାଜ୍ୟର ଅନେକ ଦୁଃଖ ଘଟଣା ସହିତ ଜଡ଼ିତ। ୧୭୩୯ରେ ସମ୍ରାଟ ମହମ୍ମଦ ସାହାଙ୍କ ନିକଟରୁ ଏହାକୁ ଛଡ଼ାଇ ନେଇଥିଲେ।

୧୭୫୭ରେ ଅହମ୍ମଦ ସାହା ଅବବାଲି ଆଉ ଯାହା କିଛି ସଂପଦ ବାକି ଥିଲା ନେଇଯାଇ ମୋଗଲ ରାଜକନ୍ୟାଙ୍କୁ ବିବାହ ସୂତ୍ରରେ ବାନ୍ଧି ନେଇଯାଇଥିଲେ। ୧୭୮୮ରେ ରୋହିଲା ନେତା ଗୁଲାମ କାଦିର ସମ୍ରାଟ ସାହା ଆଲାମଙ୍କୁ ଅନ୍ଧ କରିଦେଇଥିଲେ। ୧୮୦୩ରେ ଲର୍ଡ ଲେକଙ୍କୁ ସାହା ଆଲାମ ଧନ୍ୟବାଦ ଦେଇଥିଲେ। କାରଣ ସିନ୍ଧିଆଙ୍କ ହାତରୁ ଏକ ଭଗ୍ନ ସାମ୍ରାଜ୍ୟ ତାଙ୍କୁ ହସ୍ତାନ୍ତର କରିଥିଲେ। ୧୮୫୭ରେ ବାହାଦୂର ସାହା ଜଫରଙ୍କୁ ଇଂରେଜ ବିଦ୍ରୋହୀମାନେ ହିନ୍ଦୁସ୍ଥାନର ସମ୍ରାଟ ବୋଲି ଘୋଷଣା କରିଥିଲେ। ପୁନଶ୍ଚ ୧୮୫୭ରେ ଏହିଠାରେ ହିଁ ବାହାଦୂର ସାହାଙ୍କର ବିଚାର ହୋଇ ତାଙ୍କୁ ରେଙ୍ଗୁନକୁ ସ୍ଥାନାନ୍ତରିତ କରାଯାଇଥିଲା। ଦିୱାନି-ଇ-ଖାସ ମୋଗଲ ସାମ୍ରାଜ୍ୟର ଯଶ ଓ ଅପଯଶ ଦୁଇଟିରୁ ଏକ ସମ୍ମିଳିତ କ୍ଷେତ୍ର।

ଅନ୍ୟାନ୍ୟ ପ୍ରାସାଦର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ। ଫରଗୁସନଙ୍କ ଭାଷାରେ ଲାଲକିଲ୍ଲା ପୂର୍ବ ଦେଶରେ ପୃଥିବୀର ସବୁଠୁ ସୁନ୍ଦର ଆକର୍ଷଣୀୟ ପ୍ରାସାଦ ବୋଲି ଗଣାଯାଏ। ଲାଲକିଲ୍ଲା ଭାରତର ସ୍ୱାଧୀନତା ସଂଗ୍ରାମର ସ୍ମୃତିଚିହ୍ନ ହୋଇ ରହିଲା।

ଜାମାମସଜିଦ : ଜାମା ମସଜିଦ୍ ଭାରତର ସବୁଠୁ ବଡ଼ ମସଜିଦ୍ । ଲାଲକିଲ୍ଲା ପୃଥିବୀର ସବୁଠାରୁ ଐଶ୍ୱର୍ଯ୍ୟଶାଳୀ ମୋଗଲ ପ୍ରାସାଦ । ଶାହାଜାହାଁ ୧୧ ବର୍ଷ ଆଗ୍ରାରେ ରାଜୁତି କରିବା ପରେ ନିଜ ରାଜଧାନୀ ଦିଲ୍ଲୀକୁ ଆଣିବା ପାଇଁ ଯୋଜନା କଲେ । ସବୁ ଇଞ୍ଜିନିୟର ଓ ସ୍ଥାପତ୍ୟ ବିଦ୍ୟାର ଅଭିଜ୍ଞ ଲୋକମାନଙ୍କୁ ଆଦେଶ ଦେଲେ କି ଆଗ୍ରା ଓ ଲାହୋରରେ ଥିବା ପ୍ରାସାଦ ନମୁନାରେ ପ୍ରାସାଦ ତୋଳାଇବା ପାଇଁ । ୧୬୫୦ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୪ ରେ ଭିତ୍ତିସ୍ଥାପନ କରାହେଲା । ସୁପରିଟେଣ୍ଡେଣ୍ଟ ଥିଲେ ସାଦୁଲା ଖାନ, ସେତେବେଳର ପ୍ରଧାନମନ୍ତ୍ରୀ ଫଜିଲ ଖାଁ । ବାସ୍ତୁକାର ନିର୍ମାଣ ଥିଲେ ଓସ୍ତାଦ ଖଲିଲ । ୫୦୦୦ ଶ୍ରମିକ ପ୍ରତ୍ୟେକ ଦିନ କାମ କରି ୬ ବର୍ଷ ପରେ ଏହାକୁ ସମାପ୍ତ କଲେ । ଏହାର ପଶ୍ଚିମରେ ପ୍ରକୃତ ମସଜିଦ ଦଣ୍ଡାୟମାନ । ୩ ଧଳା ମାର୍ବଲର କପୋଲା ଦଣ୍ଡାୟମାନ । ଏଥିରେ ସିଧାସିଧା କଳା ସ୍ଲେଟ ସବୁ ଦିଆଯାଇ ମୂଳ ମଜସିଦର ମହତ୍ତ୍ୱ ବଢ଼ାଉଛି । ଉତ୍ତର ଓ ଦକ୍ଷିଣ ପଟେ ଦୁଇଟି ସୁନ୍ଦର କାରୁକାର୍ଯ୍ୟ ଖଚିତ ମହମବତୀର ଧାର ପରି ଆଲେକାସଜା ଯାଇଛି । ପ୍ରତ୍ୟେକ (ମିନାରେଟ) ୧୩୦ଟି ପାହାଚ୍‌ରେ ସିଧା ସିଧା ଧଳାର ମାରବଲ ଓ ଲାଲ ପଥର ଖଞ୍ଜା ଯାଇଛି । ଯୋଜନା ଅନୁଯାୟୀ ଆଗ୍ରାର ମୋତି ମସଜିଦ ଢାଞ୍ଚାରେ ଏହା ତିଆରି । କିନ୍ତୁ ଆୟତନ ସାମାନ୍ୟ ବଡ଼ । ଏହାର ମୁଖ୍ୟ ପାଖୁଡ଼ା ଫତେପୁର ସିକ୍ରିଠାରୁ ଟିକେ ନିମ୍ନଧରଣର ହେଲେ ମଧ ଖୁବ୍ ସୁନ୍ଦର । ମୋଗଲ ସ୍ଥାପତ୍ୟର ମନମୁଗ୍ଧକର କାରୁକାର୍ଯ୍ୟ । ମୁଖ୍ୟ ଆକର୍ଷଣ ଲାଲ ପଥରରେ ଧଳା କଳା ମାର୍ବଲର ଲମ୍ୱାଲମ୍ୱା ଗାର । ଦରକାରର ବିସ୍ତାରତା, ଅନେକ ଜାଗାରେ ଅର୍ଦ୍ଧଗୋଲାକାର ଗଢ଼ଣ, ଶୋଭାପାଉଛି ।

ତାଜମହଲ : ରାଜାଧିରାଜ ଶାହାଜାହାଁଙ୍କ ଅପୂର୍ବ ସୃଷ୍ଟି ଯାହାର ସାମ୍ରାଜ୍ୟ ପଶ୍ଚିମରେ ଇନ୍ଦସ୍ର ଆଫଗାନିସ୍ତାନ ଓ ବର୍ତ୍ତମାନର ପାକିସ୍ତାନ, ପୂର୍ବରେ ବଙ୍ଗଳା , ଦକ୍ଷିଣରେ କେନ୍ଦ୍ରଭାରତୀୟ ପ୍ଲେଟୋ ପର୍ଯ୍ୟନ୍ତ ବିସ୍ତୃତ । ସେ ଏକ ଐଶ୍ୱର୍ଯ୍ୟଶାଳୀ ସମ୍ରାଟ । ଶକ୍ତି ତାଙ୍କର ଅଖଣ୍ଡ, ପ୍ରେମ ମହାନ ଓ ଅକ୍ଷୁର୍ଣ୍ଣ ଆଉ ସୃଷ୍ଟି ଅନବଦ୍ୟ ।

୧୫୯୨ରୁ ୧୬୬୬ ପର୍ଯ୍ୟନ୍ତ ମୋଗଲ ସାମ୍ରାଜ୍ୟର ଭାଗ୍ୟାକାଶରେ ଉଚ୍ଚକୋଟୀର ସମୟ ଆଉ ଏ ସମୟଟା ମଧ ସାମ୍ରାଜ୍ୟର ଅବକ୍ଷୟର ପରିପ୍ରକାଶ । ଶାହାଜାହାଁ ତାଙ୍କ ଜୀବନକାଳ ମଧରେ ମୋଗଲସାମ୍ରାଜ୍ୟର କ୍ଷମତା ସହ

ଇଂରେଜଙ୍କର କ୍ଷମତା ସମାନ ସମାନ ଭାବରେ ଚାଲିଚାର ଦେଖିଥିଲେ। ସେହି ସମୟକୁ ଇଂରେଜମାନଙ୍କ କ୍ଷମତା ଇଉରୋପରେ ମଧ୍ୟ ବଢ଼ିବାରେ ଲାଗିଲା। ୧୬୪୯ ବେଳକୁ ଇଂରେଜ ପାର୍ଲିଆମେଣ୍ଟ ଚାର୍ଲସ୍ ପ୍ରଥମଙ୍କୁ ବହିଷ୍କାର କରିଥିଲେ। ୧୬୦୭ ଇଂରେଜ ଆମେରିକାରେ ସେମାନେ ପ୍ରଥମେ ପାଦ ଦେଲେ। ଆଉ ସେଇ ବର୍ଷ ମମତାଜମହଲଙ୍କ ସହିତ ଶାହାଜାହାଁଙ୍କର ବିବାହ ହେଲା।

୧୬୬୪ରେ ଡଚ୍‌ମାନଙ୍କ ପାଖରୁ ନୂଆ ଆମଷ୍ଟରଡ୍ୟାମ ଦଖଲ କରି ତାକୁ 'ନିଉୟର୍କ' ନାମରେ ନାମିତ କଲେ। ନିଜ ରାଜ୍ୟ ହରାଇ ଡଚମାନେ ତାଙ୍କର ମସଲା ବ୍ୟବସାୟରେ ମନୋନିବେଶ କଲେ। ଡଚରେ ଇଷ୍ଟଇଣ୍ଡିଆ କମ୍ପାନୀ ଗଢ଼ି ଜାକର୍ତ୍ତାଠାରେ 'ମସଲା' ବ୍ୟବସାୟର ଆସ୍ଥାନ ଜମାଇ ସାରିଥିଲେ। ସେନ୍‌ରେ ଭାରତୀୟ ଅନୁଷ୍ଠାନମାନଙ୍କୁ ମଧ୍ୟ ଇଂରେଜମାନେ ଅଧିକାର କରି ନେଇଥିଲେ। ଆଫ୍ରିକା ଓ ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ଇଂରେଜମାନେ ତାଙ୍କର ବ୍ୟବସାୟଗତ ସଂପର୍କ ସ୍ଥାପନ କରି ସାରିଥିଲେ।

ସେକ୍ସପିଅରଙ୍କ ଅମଳର କ୍ରିଷ୍ଟଫର ମାରଲୱେ ମଧ୍ୟ ସଂପତ୍ତି, ମୁକ୍ତା ଓ ମସଲା ବ୍ୟବସାୟରେ ଭାରତ ସହିତ ସଂପୃକ୍ତ ରଖିଥିଲେ। ପର୍ତ୍ତୁଗୀଜମାନଙ୍କର ବ୍ୟବସାୟ ୧୫୧୦ରେ ଭାରତର ପଶ୍ଚିମ ଉପକୂଳବର୍ତ୍ତୀ ଅଂଚଳରେ ଆରମ୍ଭ ହୋଇଥିଲା। ୧୬୦୦ ବେଳକୁ ଇଷ୍ଟ ଇଣ୍ଡିଆ କଂପାନୀ ଭାରତର ଉକ୍ତ ଉପକୂଳରେ ବ୍ୟବସାୟ ଆରମ୍ଭ କଲେ। ଜାହାଙ୍ଗୀରଙ୍କ ଅମଳରୁ ଏହାର ଆରମ୍ଭ ହୋଇସାରିଥିଲା।

ଶାହାଜାହାଁ ଜନ୍ମନେଲା ବେଳକୁ ରୋମରେ ସେଣ୍ଟପିଟରସ୍ ତିଆରି ଶେଷ ହୋଇ ସାରିଥିଲା। ସେତିକିବେଳକୁ ଲଣ୍ଡନର ପ୍ରଥମ ପ୍ରୋଟେଷ୍ଟାଣ୍ଟ ଗୀର୍ଜା ସେଣ୍ଟପଲର ତିଆରି ଆରମ୍ଭ କରିଥିଲେ କ୍ରିଷ୍ଟୋଫର ଚରନ। ୧୬୧୧ ରୁ ୧୬୩୦ ମଧ୍ୟରେ ପର୍ଶିଆର ଦକ୍ଷିଣତମ ସହର ଇସ୍‌ଫାହାନରେ ସାହା ଆବାସ୍ ଗୋଟେ ଚମତ୍କାର ସାହ ମସଜିଦ୍ ତେଳାଇଲେ। ନିର୍ମାଣକଳାର ସାମଞ୍ଜସ୍ୟ ତାଜମହଲର ନିର୍ମାଣ ପ୍ରଣାଳୀ ସହିତ ମେଳ ଅଛି।

ମୋଗଲର ଚିତ୍ରକଳା ଆଉ ଡ୍ରଇଂ ରିମେବ୍ରାଣ୍ଟ ଭଳି ଜଣେ ବିଖ୍ୟାତ ଚିତ୍ରକାର ମଧ୍ୟ ସଂଗ୍ରହ କରିଥିଲେ। ସେ ଶାହାଜାହାଁଙ୍କ ଚିତ୍ରକାରଙ୍କ ଚିତ୍ରକଳାକୁ ନକଲ କରି ରଖୁଥିଲେ। ସେଥିପାଇଁ ଚିତ୍ରକଳା, ସ୍ଥାପତ୍ୟକଳାର ମନୋବୃତ୍ତି ଓ ଆଦର ବିଶ୍ୱରେ

ଖେଳିଯାଉଥିଲା । ଏପରିକି ଅନେକ ଐତିହାସିକମାନେ ତାଜମହଲର ଖ୍ୟାତି ଶୁଣି ଦାବି କରୁଥିଲେ କି ଇଉରୋପିଆନମାନେ ଏହାର ଭିତ୍ତିସ୍ଥାପନ କରିଛନ୍ତି ବୋଲି ।

ଅନେକ ମଧ୍ୟ ବିଶ୍ୱାସ କରନ୍ତି କି ତାଜମହଲ ହିନ୍ଦୁମାନଙ୍କ ଦ୍ୱାରା ଗଠିତ । ପ୍ରକୃତରେ ମୋଗଲମାନଙ୍କର ଏ ସୃଷ୍ଟି ଓ ମୁସଲମାନଙ୍କ ସାହାରିଆ ଆଇନ ଅନୁଯାୟୀ ଏହା ପରିଚାଳିତ ବୋଲି କଥିତ । ମୋଗଲ ସମ୍ରାଟ ବାବର, ଜାହାଙ୍ଗୀର ଡାଏରୀ ଲେଖୁଥିଲେ । ଆକବର ଓ ଶାହାଜାହାଁ ଦରବାରର ଘଟଣାପଞ୍ଜିକା ଲେଖିଥିଲେ । ଆଉ ଏ ଘଟଣାପଞ୍ଜିକାରେ ତାଜମହଲ ଉପରେ ତାଙ୍କର ଦାବି ବୋଲି ଉଲ୍ଲେଖ ଅଛି ।

ସେତେବେଳେ ତାଜମହଲ ସୃଷ୍ଟିର ପ୍ରେମକାହାଣୀ ଗ୍ରୀକ୍ ସାହିତ୍ୟରେ ଟ୍ରାଜେଡ଼ି ଭାବରେ ଦେଖାଦେଇଥିଲା । ମମତାଜ ମହଲଙ୍କର ପିତାମହ ପର୍ଶିଯାନରୁ ପଳେଇଆସି ମୋଗଲ ଦରବାରରେ ଆଶ୍ରୟ ନେଇଥିଲେ । କିନ୍ତୁ ନିଜର କ୍ଷମତାବଳରେ ଜାହାଙ୍ଗୀରଙ୍କ ଦରବାରରେ ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ । ବଗିଚା ତିଆରି କରିବାରେ ମୋଗଲମାନେ ଅଦ୍ୱିତୀୟ । ସେ ସମୟର ଭାରତର ଅଖଣ୍ଡ ସଂପତ୍ତି ଭର୍ତ୍ତି ହୋଇରହିଥିଲା । ମୋଗଲ ରାଜକୋଷରେ । ଏ ବଳରେ ବଳିୟାନ ହୋଇ ଏପରି ସୁଶୋଭିତ ବୃହତ୍ ସମାଧି ଗଢ଼ିବା ପାଇଁ ଆଗଭର ହୋଇପାରିଥିଲେ । ଟର୍କିମାନେ ମଧ୍ୟପୂର୍ବ ଏସିଆରେ ସେମାନଙ୍କର ଶକ୍ତି ସଂଚୟ କରି ରଖିଥିଲେ । ଭାରତରେ ମୋଗଲସମ୍ରାଟଙ୍କର ଯାଯାବର ଗୁଣ ସତ୍ତ୍ୱେ ନିଜର ସାଂସ୍କୃତିକ ପରମ୍ପରା ପାଇଁ ପର୍ଶିୟାକୁ ଅଗ୍ରାଧିକାର ଦେଉଥିଲେ । ସେମାନଙ୍କ ମଧ୍ୟରେ ଅମାନତ୍ ଖାଁ ଅନ୍ୟତମ । ଶାହାଜାହାଁ ସିରାଜର କଲିଗ୍ରାଫର ଓ ଅମାନତ୍ ଖାଁଙ୍କୁ ତାଜମହଲ ତିଆରି କାମରେ ସାହାଯ୍ୟ କରିବା ପାଇଁ ଅନୁମତି ଦେଇଥିଲେ ।

ମମତାଜଙ୍କର ମୃତ୍ୟୁ ହୁଏ ବରହାନପୁରରେ ୧୪ ତମ ସନ୍ତାନ ଜନ୍ମ ନେବା ସମୟରେ । କବିଙ୍କ ଭାଷାରେ 'ଯେତେବେଳେ ସେ ଶେଷ ଏକକ ମୁକ୍ତା ନିଷ୍କାସନ କଲେ, ଅୟସ୍କର ଭଳି ନିଜ ଶରୀରକୁ ଦୂରେଇ ଦେଲେ ।' ତହିଁପର ଦିନ ତପ୍ତିନଦୀରେ ଏକ ଛୋଟ ଡଙ୍ଗା ନେଇ ନଦୀକୂଳର ଏକ ବଗିଚାରେ ଦଫନ କଲେ । ଅନେକ ଅନେକ ପରିମାଣରେ ଚାକଚକ୍ୟ ମଣିମୁକ୍ତା । କବରରେ ଭରିଦେଇ କାନ୍ଦି କାନ୍ଦି ବେହୋସ ହୋଇଗଲେ ଶାହାଜାହାଁ ।

ମମତାଜ୍ଙ୍କ ପରେ ଜାହାନ୍ଆରା ହେଲେ 'ମୋଗଲ ସାମ୍ରାଜ୍ୟର ପ୍ରଥମ ନାରୀ'। ଅନ୍ୟ ଦୁଇ ସ୍ତ୍ରୀଙ୍କୁ କିଛି ବି ମିଳିଲା ନାହିଁ। ମମତାଜ ୧୭ବର୍ଷର ବିବାହ ବଂଧନରେ ୧୪ ସନ୍ତାନ ଶାହାଜାହାନଙ୍କୁ ଉପହାର ଦେଇଥିଲେ। ତା' ମଧ୍ୟରୁ ୭ଟି ପାରାଡାଇଜକୁ ଚାଲିଯାଇଥିଲେ ଆଉ ବାକି ସାତୋଟି କୁଳପ୍ରଦୀପ ପରି ଜ୍ୱାଜଲ୍ୟମାନ ଥିଲେ। ମମତାଜଙ୍କ ମୃତ୍ୟୁରେ ଭାଙ୍ଗି ପଡ଼ିଲେ ଶାହାଜାହାଁ। ବିତୃଷ୍ଣା ହେଲା ରାଜସିଂହାସନ ପ୍ରତି। ଭାବିଲେ, ଭଗବାନ ଯଦି ନିଜର ଭାଗ୍ୟ ନିୟନ୍ତ୍ରଣ କରିବାର ଅଧିକାରରୁ ବଂଚିତ କରିଛନ୍ତି, ସେପରି ସ୍ଥଳେ ରାଜଭୋଗ ତ୍ୟାଗକରି ସନ୍ୟାସ ନେବା ବିଧେୟ। ଲୁହର ଅଜସ୍ର ଧାରାରେ ଧଳାପୋଷାକ ବ୍ୟତୀତ ଅନ୍ୟ କିଛି ପରିଧାନ କରି ପାରିଲେ ନାହିଁ। ଭାରତରେ ଧଳା ପୋଷାକ ହିଁ ଦୁଃଖର ପରିଚୟ।

ପୋଷାକ ଧଳା କଲା ପରେ ଆଖିର ଲୁହ ଲୁଚିଲା ନାହିଁ। ଚେହେରା ହେଲା ମ୍ଳାନ। ସେ ସବୁକୁ ଲୁଚାଇବା ପାଇଁ ସେ ଚଷମା ବ୍ୟବହାର କଲେ। ଦାଢ଼ି ମଧ୍ୟ ଶୁକ୍ଳବର୍ଣ୍ଣ ଧାରଣ କଲା। ଯୌବନର ରୂପ ବଦଳିଗଲା। ଏପରିକି ଜନସାଧାରଣଙ୍କୁ ନିଜର ଚେହେରା ଝରୋକାରେ ଦେଖାଇବାକୁ ସାହସ କଲେ ନାହିଁ। ଜୁଲାଇ ୪ ରେ ରୋଜ-ୱାଟର ଉତ୍ସବ ପାଳିତ ହେଲା। ସେଥିରେ ମମତାଜଙ୍କ ପିତା ଆସଫ ଅଲି ଖାଁ ଆଉ ମମତାଜଙ୍କ ଛୋଟ ଛୋଟ ପିଲାମାନେ ଅତିଦୁଃଖରେ ଏ ଉତ୍ସବ ପାଳନ କଲେ। ତାଜମହଲ ତୋଳାଇବାରେ ତିନୋଟି ପ୍ରଧାନ କାରଣ ଥାଇପାରେ। ପ୍ରଥମ ଓ ପ୍ରଧାନ ହେଉଛି ମମତାଜଙ୍କ ପାଇଁ ଅସୀମ, ଅକଥନୀୟ ଭଲ ପାଇବା। ଦ୍ୱିତୀୟରେ ନିଜର ସାମ୍ରାଜ୍ୟର କ୍ଷମତାର ଚିହ୍ନ ଦେଖାଇ ଏକ ଅପାର୍ଥିକ କବର ତୋଳାଇବାର ଆଗ୍ରହ।

ତୃତୀୟରେ ନିଜ ସ୍ଥାପତ୍ୟ ବିଦ୍ୟାର ଗଭୀରତମ ବାସନାକୁ ପ୍ରଦର୍ଶନ କରିବାର ପ୍ରବଳ ଇଚ୍ଛା। ତାଜମହଲ ମୋଗଲ ସାମ୍ରାଜ୍ୟ ଚିତ୍ରକଳାର ଅନ୍ତିମ ତ୍ରୁଟିପୂର୍ଣ୍ଣ ପରିପ୍ରକାଶ। ଏହାର ପ୍ରତିଯୋଗୀତା ସମ୍ଭବ କିନ୍ତୁ ଅନୁରୂପ କଳା ଅସମ୍ଭବ । 'ପୃଥିବୀରେ ଏପରି ସ୍ୱର୍ଗ' ଗଢ଼ିବାରେ ସବୁ ଦୃଷ୍ଟିରୁ ବନ୍ଦନୀୟ ସମ୍ରାଟ ଶାହାଜାହାଁ। ମମତାଜ କେବଳ ରୂପମତୀ ନ ଥିଲେ। ଥିଲେ ବୁଦ୍ଧିମତୀ ଓ ଗୁଣବତୀ। ଚେସ୍ ଖେ଼ ହେଉ, ନୌକା ବିହାରରେ ହେଉ ଏପରି ବିଭିନ୍ନ ଯୁଦ୍ଧକ୍ଷେତ୍ରରେ ମଧ୍ୟ ସେ ଥିଲେ ସହଗାମିନୀ। ଆଶା କରିଥିଲେ ମୁହୂର୍ତ୍ତକ ପାଇଁ ଶାହାଜାହାନଙ୍କ ଠାରୁ ଦୂରେଇ ଯାଇପାରିବେ ନାହିଁ।

ତାଜମହଲର ସୃଷ୍ଟି ଦେଖି ଅନେକ ପ୍ରଶ୍ନ ମନରେ ଉଠେ। ଭଲପାଇବାର ରୂପ, ଦୁଃଖର ଚେହେରା ଆଉ ସୌନ୍ଦର୍ଯ୍ୟଭରା ଅପରୂପ ସ୍ମୃତି ମନ୍ଦିରର ସମାହାର ଏପରି ଏକ ଅଦୃଶ୍ୟ ଗୁଣର ପରିପ୍ରକାଶ ସମ୍ଭବ କି ?

ରାଜଗାଦି ପାଇଁ ଯୁଦ୍ଧ ସମୟରେ, ଭାଇମାନଙ୍କ ସହ କଳହ ସମୟରେ, କାନ୍ଧାହାର ଲୁଚି ଚାଲିଯିବା ସମୟରେ, ଶାହାଜାହାଁଙ୍କୁ ମମତାଜହିଁ ପରାମର୍ଶ ଓ ସାହାଯ୍ୟ ଦେଇଆସିଥିଲେ। ସୁତରାଂ ଶୟନେ, ସପନେ କିମ୍ବା ଜାଗରଣେ ମମତାଜହିଁ ଶାହାଜାହାଁଙ୍କର ସହଗାମିନୀ ଥିଲେ। ନୁରଜାହାନ ଶେଷ ପର୍ଯ୍ୟନ୍ତ ଜାହାଙ୍ଗୀରଙ୍କ ପରାମର୍ଶଦାତା ଥିଲେ। ଶାହାଜାହାନ ବିରୁଦ୍ଧରେ ଗଢ଼ି ଉଠିଥିବା ତାଙ୍କର ମନୋବୃତ୍ତି ଠିକ୍ ନ ଥିଲା। ଶାହାଜହାନଙ୍କୁ ସାହଚର୍ଯ୍ୟ ଦେଇ ମମତାଜ ଦାକ୍ଷିଣାତ୍ୟ ବି ଗଲେ। ଶାହାଜାହାନଙ୍କର ଭାଗ୍ୟ ବଦଳିଗଲା, ଯେତେବେଳେ ଓଡ଼ିଶାର ଗଭର୍ଣ୍ଣର, (ଯେ କି ନୁରଜାହାନ ଓ ମମତାଜଙ୍କ ସଂପର୍କୀୟ) ଶାହାଜାହାନ ଓଡ଼ିଶାରେ ପହଞ୍ଚିବା ମାତ୍ରେ ଓଡ଼ିଶା ଛାଡ଼ି ପଳେଇଗଲେ। ଗଭର୍ଣ୍ଣରଙ୍କ ମୂଲ୍ୟବାନ ରାଜକୋଷ, ତାଙ୍କ ସୈନ୍ୟବଳ, ଘୋଡ଼ା, ପଦାତିକ, ଯୁଦ୍ଧହାତୀ ସବୁ ଶାହାଜାହାନଙ୍କ ହାତକୁ ଆସିଗଲା। ବେଙ୍ଗଲ ଗଭର୍ଣ୍ଣରଙ୍କ ସହ ଗଙ୍ଗାକୂଳରେ ଯୁଦ୍ଧ ହେଲା। ସାହଚର୍ଯ୍ୟ ଦେଇଥିଲେ ମମତାଜ।

୧୬୨୪ରେ ଶାହାଜାହାଁ ଯୁଦ୍ଧ କରି କରି ଥକି ଯାଇଁ ସ୍ତ୍ରୀପିଲା ସହ ଜାହାଙ୍ଗୀରଙ୍କ ଶରଣ ନେବାର ଆଶାରେ ତାଙ୍କୁ କ୍ଷମା ମାଗି ପତ୍ର ଲେଖିଲେ। ଗ୍ରହଣ କରିନେଲେ ଜାହାଙ୍ଗୀର ପୁତ୍ର ଶାହାଜାହାଁଙ୍କୁ। ଶାହାଜାହାଁଙ୍କ ସଂପର୍କ ମମତାଜଙ୍କ ସହ ଥିଲା ନିବିଡ଼ ଓ ଅଭେଦ୍ୟ।

ଶାହାଜାହାଁ ବୁହାରାନପୁରରେ ମମତାଜଙ୍କ କବର ବେଶିଦିନ ରଖିବାକୁ ଚାହୁଁ ନଥିଲେ। ଡିସେମ୍ବର ୧୬୩୧ରେ ଆଗ୍ରା ଆଣିବା ପାଇଁ ବନ୍ଦୋବସ୍ତ କରାଗଲା। ଯେଉଁ ସୁନାର ଦଫନ ବାକ୍ସ ଭିତରେ ମମତାଜଙ୍କ ମୃତ ଶରୀର ଆସିଥିଲା ତାକୁ ସାହାସୁଜା, ମମତାଜଙ୍କ ସାଂଗଙ୍କ ତତ୍ତ୍ୱାବଧାନରେ ଥିଲା। ଶହ ଶହ ସଂଖ୍ୟାରେ ଲୋକ ଯୋଗ ଦେଇଥିଲେ। ରାସ୍ତାସାରା ଲୋକଙ୍କୁ ଖାଦ୍ୟ, ପାଣି ଦିଆଯାଉଥିଲା। ଟଙ୍କା, ପଇସା, ସୁନା, ରୂପା ଗରିବମାନଙ୍କ ମଧ୍ୟରେ ବଣ୍ଟା ଯାଇଥିଲା। କୋରାନରୁ ପଂକ୍ତି ବୋଲାଗଲା ସାରା ରାସ୍ତାରେ ଗଲାବେଳକୁ। ଲାହୋରରେ ଶାହାଜାହାଁ

ହିନ୍ଦୁନାରୀ ଯୋଧାବାଈ (ଯୋଧପୁର ରାଜକୁମାରୀଙ୍କ) ପୁତ୍ର ପ୍ରଫେଟ ମହମ୍ମଦଙ୍କର ଜନ୍ମକୁଣ୍ଡଳି ସହ ମିଳିଯାଉଥିଲା। ଜନ୍ମ ୫ ଜାନୁୟାରୀ ୧୫୯୨। ଆକବରଙ୍କ ପ୍ରିୟ ନାତି। ଆଉ ତୈମୁରଙ୍କ ଜାତକର ପ୍ରତିଫଳନ। ଗିୟାସୁଦ୍ଦିନ ବେଗ୍‌ଙ୍କର ନାତୁଣୀ ଜନ୍ମ ନେଲା ତା ପର ବର୍ଷ। ତା'ର ଜନ୍ମ ଉତ୍ସବ ପାଳିତ ହେଲା। ନାଁ ଦିଆହେଲା ଅଂଜୁମନ ବେଗମ। ଭବିଷ୍ୟତରେ ମମତାଜ ବେଗମ। ବୟସ ବଢ଼ିବା ସଙ୍ଗେ ସଙ୍ଗେ ବଂଶ ପରମ୍ପରାର ଇତିହାସ ଧରି ନିଜର ସୌନ୍ଦର୍ଯ୍ୟ, ଐତିହ୍ୟ, ବୁଦ୍ଧିମତା, ସର୍ବଗୁଣା ସଂପନ୍ନା ଅଂଜୁମନ ୧୪ ବର୍ଷରେ ବିବାହ ବଂଧନରେ ବାନ୍ଧି ହୋଇଗଲେ ଶାହାଜାହାଁଙ୍କ ସହ।

ଦେଖାହେଲା ରାଜପରିବାର ଦ୍ୱାରା ଆୟୋଜିତ ମୀନାବଜାରରେ। ଏ ମୀନାବଜାର ବସେ ରାତିର ମାଦକତା ଭିତରେ। ସବୁ ରାଜପରିବାରର ନାରୀ, ହାରେମର ସୁସଜ୍ଜିତ ଯୁବତୀଗଣ ପରିଚାଳନା କରନ୍ତି ମୀନାବଜାରକୁ। ସୁଶୋଭିତ ବଗିଚା, ସୁଗନ୍ଧିତ ପୁଷ୍ପ, ଗଛର ଡାଳରୁ ଝୁଲିଥିବା ଆଲୋକମାଳା, ଦୀପ ଆଲୁଅରେ ସଜା ହୋଇଥିବା ଦୋକାନ ସବୁ। ଏଇ ପରିବେଶରେ ଅଂଜୁମନଙ୍କ ସହ ଦେଖାହୁଏ ଶାହାଜାହାଁଙ୍କର ଖସିଯାଉଥିବା ପଣତକାନି ଲୁଚେଇବାକୁ ଯାଇଁ ଚାରିଚକ୍ଷୁର ମିଳନ ହୁଏ। ଚକ୍ଷୁର ବଂଧନ ତଳେ ଗଢ଼ିଉଠେ ପ୍ରେମର ବଂଧନ। ଶେଷରେ ପିତା ଜାହାଙ୍ଗୀରଙ୍କ ଆଦେଶରେ ବିବାହ ସମ୍ପନ୍ନ ହୁଏ। ରାଜପରିବାରର ପରିବେଷ୍ଟନୀ ଭିତରେ ସୌନ୍ଦର୍ଯ୍ୟର ଊଣା ନଥିବା ପରିବେଶରେ ମମତାଜର ସୌନ୍ଦର୍ଯ୍ୟ ଯେ କେତେ ମନମୁଗ୍ଧକର ତାହ ଅବର୍ଣ୍ଣନୀୟ।

ମୋଗଲ ଚିତ୍ରଶିଳ୍ପୀ ତାଙ୍କୁ ତୁଳି ଦେବା ପାଇଁ ଚେଷ୍ଟା କରିଛନ୍ତି। ସୁନାର ପତଳା ଓଢ଼ଣୀ ତଳେ ଲମ୍ବା କଳା ବାଳ ଅଧା ଲୁଚେ ଆଉ ଅଧା ଖୋଲା, ଦୃଶ୍ୟ ଚକ୍ଷୁଯୁଗଳ, ଲମ୍ବା ବାଳର ମଝିରେ ମୁକ୍ତାର ମାଳା, ଗଳାରେ ମଣିମୁକ୍ତାର କଣ୍ଠିମାଳ, ନାସାରେ ହୀରାର ବସଣି। ପଦ୍ମଫୁଲପାଖୁଡ଼ା ପରି ଚକ୍ଷୁର ମଝିରେ ଟୀକା। ଆଖିପତା ଆଉ ଭ୍ରୁଲତା ଭିତରେ ଚକ୍ଷୁର ଚୋରା ଚାହାଣୀର ଆଲେଖ୍ୟ ଅତି ମନୋହର।

ଶାହାଜାହାନ ଏ ସୌନ୍ଦର୍ଯ୍ୟ ପ୍ରତିମାକୁ ବାହା ହୋଇପାରିନଥିଲେ ୪ ବର୍ଷ ପର୍ଯ୍ୟନ୍ତ। କାରଣ ଅଂଜୁମନଙ୍କ ପରିବାରରେ ବିପଦର ଛାୟା ଘନେଇଲା। ଯାହାହେଉ ୧୦ ମେ ୧୬୧୨ରେ ବିବାହ ବନ୍ଧନରେ ବାନ୍ଧି ହେଲେ। ବାହାଘର ରାତି

ସାଜସଜ୍ଜା ଅବର୍ଣ୍ଣନୀୟ । ଆଲୋକ ସଜ୍ଜା, ଦୀପମାଳା, ଟର୍ଚ୍ଚ ଆଲୁଅର ସାଜସଜ୍ଜା ସବୁ ଦେଖି ଆକାଶର ରାତି ପୃଥିବୀ ପୃଷ୍ଠରେ ଅବତରଣ କରିଛି ବୋଲି ମନେ ହେଲା । ଯୌବନର ଦିପ୍ତିମାଳାଠାରୁ ଏ ରାତିର ଆଲୋକମାଳା ଆହୁରି ଦିପ୍ତିମନ୍ତ । ଜଣାଯାଉଥାଏ ୪ବର୍ଷର ଅପେକ୍ଷାକୁ ଭରଣା କରିବା ପାଇଁ ଏ ସବୁର ଆୟୋଜନ ଖୁବ୍ ଆଡ଼ମ୍ବର ସହକାରେ କରାଯାଇଥିଲା । ସର୍ବୋପରି ଆୟୋଜନକୁ ମୂର୍ତ୍ତିମନ୍ତ କରିବା ପାଇଁ ସାମ୍ରାଜ୍ୟର ରାଜକୋଷ ମଧ ପ୍ରସ୍ତୁତ । ଶାହାଜାହାଁଙ୍କର ହିନ୍ଦୁ ସଂପର୍କ ଥିବାରୁ ସେ ଥିଲେ ସୁନି ମୁସଲମାନ ଓ ଅର୍ଜୁମନ ଥିଲେ ସିଆ ମୁସଲମାନ । ଦୁଇ ସଂପ୍ରଦାୟର ମିଳନ ହେଲା ଘନିଷ୍ଠ ।

ଶାହାଜାହାନଙ୍କ ଲେଖା ଅନୁସାର ଅର୍ଜୁମନ ଯେ ପୃଥିବୀର ସବୁଠୁ ସୁନ୍ଦର । ତା'ର ପରୀକ୍ଷା ହୋଇ ସାରିଥିଲା, ସେ କାରଣରୁ ଶାହାଜାହାଁ ତାଙ୍କୁ 'ମମତାଜ ମହଲ ବେଗମ' ପଦବୀ ପ୍ରଦାନ କରିଥିଲେ ବିବାହ ଉତ୍ସବର ରାତିରେ । ଗୋଟେ ପାଖରେ ଗର୍ବ ଓ ଗୌରବର ଗାଥା ଆଉ ଆରପଟେ ଲୋକମୁଖରେ ଏହାର ଉଚ୍ଚାରଣ ଦିଗବିଦିଗ ପ୍ରସାରିତ ହେବ । ଏପରି ପଦବୀ ପ୍ରଦାନ ମୋଗଲ ସାମ୍ରାଜ୍ୟ ପଦ୍ଧତିରେ କିଛି ନୂଆ ନୁହେଁ । କାରଣ ପଦବୀ ପ୍ରଦାନ ଅର୍ଥ ହିଁ ସେ ଲୋକଙ୍କୁ ସାଧାରଣଙ୍କ ଠାରୁ ଅଲଗା କରିବା । ଶାହାଜାହାଁଙ୍କ ବିବାହିତ ଜୀବନ ଆରମ୍ଭ ମୋଗଲ ସମ୍ରାଜ୍ୟର ରାଜଧାନୀ ଆଗ୍ରାରେ । ତା' ପରଠୁ ଦୁହିଁଙ୍କର ବିଚ୍ଛେଦ ନାହିଁ । ମୋଗଲ ସାମ୍ରାଜ୍ୟର ନିୟମ ଭାଙ୍ଗି ଯୁଦ୍ଧ କ୍ୟାମ୍ପକୁ ମଧ ମମତାଜଙ୍କୁ ସାଙ୍ଗରେ ନେଇଯାଉଥିଲେ ।

ମମତାଜଙ୍କ ପ୍ରତି ପ୍ରଗାଢ଼ ପ୍ରେମପାଇଁ ତାଙ୍କ ମରଶରୀରକୁ ନେଇ ଆଗ୍ରାରେ ପହଞ୍ଚିଲେ ଏ ବିରାଟ ଶୋଭାଯାତ୍ରା ନେଇ । ଶାହାଜାହାଁ ଦରବାରର କବି ଲେଖିଥିଲେ–

"ପୃଥିବୀବାସୀ ଘନ ଅନ୍ଧକାରରେ ବୁଡ଼ି ରହିଲେ ସାରାଦେଶରେ ନାରୀ ଓ ପୁରୁଷ, ରାଜା ଓ ପ୍ରଜା ଆଉ ସେବାକାରୀ ଦଳ ଦୁଃଖର ନୀଳବର୍ଣ୍ଣ ସମସ୍ତଙ୍କ ମୁଖମଣ୍ଡଳକୁ କରିଛି ବିବର୍ଣ୍ଣ । ଯମୁନାକୂଳର ଏକ ଛୋଟ ଘରେ ମମତାଜଙ୍କୁ ରଖାଗଲା । ଛୋଟ ଘର ମଧ ମମତାଜଙ୍କ ପାଇଁ ପ୍ରଯୁଜ୍ୟ ନ ଥିଲା । 'ଯୁଗର ରାଣୀ'ଙ୍କ ପାଇଁ ଶାହାଜାହାଁ ବୁରହାନପୁରରେ ଥିଲା ବେଳେହିଁ ଆଲୋକିତ ସୁସଜ୍ଜିତ କବର ପାଇଁ କଳ୍ପନା ଓ ଯୋଜନା କରିଥିଲେ ।

ଇଂଲଣ୍ଡର ରାଜା ଏଡ୍‌ୱାର୍ଡ଼ ପ୍ରଥମ ତେରଶହ ଶତାବ୍ଦୀର ଶେଷବେଳକୁ ସ୍ତ୍ରୀ ଏଲିଆନରଙ୍କୁ ରାଜାଥିବା ସମୟରେ ହିଁ ହରାଇଥିଲେ। ତାଙ୍କର ମଧ୍ୟ ସ୍ଥିରିକୃତ ବିବାହ ହୋଇଥିଲା। କିନ୍ତୁ ପରେ ଏହା ଘନିଷ୍ଠ ପ୍ରେମରେ ପରିଣତ ହେଲା। ୩୬ ବର୍ଷ ଭିତରେ ସେ ୧୬ଟି ସନ୍ତାନର ଜନନୀ ହୋଇଥିଲେ। ଏଡ୍‌ୱାର୍ଡ଼ ଏଲିଆନରଙ୍କ ମୃତ୍ୟୁକୁ ବିଶ୍ୱବିଖ୍ୟାତ କରିବା ଉଦ୍ଦେଶ୍ୟରେ ୨୦୦ ମାଇଲ ଯାତ୍ରାକରି ୱେଷ୍ଟମିନିଷ୍ଟର ଆବେରେ ପହଞ୍ଚି ଏକ ଅଳଙ୍କାର ଖଚିତ ପଥରର କ୍ରସ ତୋଳାଇଥିଲେ– ନିଜର ପ୍ରେମର ନିଦର୍ଶନ ସ୍ୱରୂପ। ସେ ସମୟରେ ଏଡ୍‌ୱାର୍ଡ଼ ୧୯ ମିଲିୟନ ଡଲାର ଖର୍ଚ୍ଚ କରିଥିଲେ।

ଶାହାଜାହାଁ ନିଜର ଶକ୍ତି ଓ ଦକ୍ଷତା ଉପରେ ବେଶ୍ ଜ୍ଞାତ ଥିଲେ। ଅବୁଲ ଫଜଲ ଲେଖିଲେ। ଭଗବାନ ଦତ୍ତ ଉତ୍କୃଷ୍ଟ ଭାଗ୍ୟ ପରୀକ୍ଷା କରିବା ସମ୍ରାଟଙ୍କର ଅଭିଳାଷା ଥିଲା। ତାଜମହଲଙ୍କ ସ୍ମୃତିପୀଠ ଶାହାଜାହାଁଙ୍କର ଆକାଶଛୁଆଁ ଆକାଂକ୍ଷାର ପରିଚୟ। ଏକ ଅଦ୍ୱିତୀୟ ପ୍ରେମର କାହାଣୀକୁ ମୂର୍ତ୍ତିମନ୍ତ କରିବା ପାଇଁ ଶାହାଜାହାଁ ଥିଲେ ଦୃଢ଼ ପ୍ରତିଜ୍ଞ।

ଏସିଆ ଓ ଭାରତ କବରଖାନାର ଗଠନପ୍ରଣାଳୀର ପରମ୍ପରା ସବୁ ଲିପିବଦ୍ଧ କରିଥିଲେ। ଚେଙ୍ଗିଜଖାଁଙ୍କ ଶବାଧାରର ଶୋଭାଯାତ୍ରାଠୁ ଆରମ୍ଭ କରି ମଙ୍ଗୋଲ ରାଜପୁତ୍ର ଉଲଜୈୟତୁଙ୍କ ପର୍ଯ୍ୟନ୍ତ ସବୁର ଐତିହ ଲକ୍ଷ୍ୟ କରି ମନରେ ସବୁକୁ ଏକାଠି ଗୁନ୍ଥି ଦେଇଥିଲେ। ସବୁର ମୂଳଭିତ୍ତି ଉପରେ ତୀକ୍ଷ୍ଣ ନଜର ଥିଲା ଶାହାଜାହାଁଙ୍କର। ତୈମୁର ରାଜକୀୟ ବୃହତ ସମାଧି ଗଠନ କରିବାରେ ଦକ୍ଷତା, ସମରକନ୍ଦରେ ନିଜ ପାଇଁ ଗଢ଼ିଥିବା ସମାଧି ସବୁଠାରୁ ବୃହତ୍ ଓ ମନୋହର। ଇସଲାମ ଧର୍ମରେ ଓ କୋରାନର ଲିଖିତ ନିୟମ ଅନୁସାରେ ସମାଧିପୀଠ ସବୁ ଆକାଶକୁ ଖୋଲା ରହେ। ସବୁ ସମାଧିର ମୁହଁ କାବେ ଦିଗକୁ କରାହୋଇଥାଏ। ଶାହାଜାହାଁ ନିଜ ପ୍ରେମର ନିଦର୍ଶନ ଓ ନିଜ ସାମ୍ରାଜ୍ୟର କ୍ଷମତା, ଦକ୍ଷତା, ଗର୍ବ ଓ ଗୌରବ ଦେଇ ମମତାଜ ମହଲଙ୍କ ପାଇଁ ସମାଧିସ୍ଥଳ ତୋଳାଇବାର ଆଶାରେ ଥିଲେ।

ପ୍ରଥମରେ ଆବଶ୍ୟକ ଉପଯୁକ୍ତ ଜାଗା। ଯମୁନା ନଦୀ କୂଳରେ ଏ ସମାଧି ତିଆରି କରିବାର ପରିକଳ୍ପନା। କାରଣ ଯମୁନା ଧାରର ପାଣି ସବୁବେଳେ ପାଇପାରିବେ। ପରିବେଶ ଶାନ୍ତ, କିନ୍ତୁ ଲୋକବସତିଠାରୁ ଅନତିଦୂର। ପରେ ନିଜ

ପାଇଁ ମଧ୍ୟ ଏକ ସ୍ମୃତିମନ୍ଦିର ତୋଳାଇବାର ଆଶା। ସର୍ବୋପରି ଆଗ୍ରାର ରେଡ଼ଫୋର୍ଟରୁ ଏ ସମାଧିକୁ ସବୁ ସମୟରେ ଦେଖିପାରିବେ।

ଇସଲାମ ଧର୍ମରେ ବିଶ୍ୱାସ କି ମମତାଜଙ୍କ ପରି ଯେଉଁମାନେ ଛୁଆଜନମ କରିବା ସମୟରେ ମୃତ୍ୟୁବରଣ କରିଥାନ୍ତି ସେମାନେ ହୁଅନ୍ତି ଶହୀଦ। ସେମାନଙ୍କର ସମାଧିପୀଠ ଏକ ଧର୍ମପୀଠ ଭାବରେ ବନ୍ଦନୀୟ ହୁଏ।

୧୬୩୨ ବେଳକୁ ଜାଗା ମିଳିଗଲା। ଏ ଜାଗା ତାଙ୍କ ମାମୁଁଙ୍କର ବୁରାହାନପୁରରେ ତାଙ୍କ ପାଇଁ ରହିବା ଅସମ୍ଭବ – ମମତାଜଙ୍କ ବିନା। ଦାକ୍ଷିଣାତ୍ୟର ରହଣି ମଧ୍ୟ ତାଙ୍କ ପାଇଁ ସୁଖପ୍ରଦ ନ ଥିଲା। ଯୁଦ୍ଧର ବିଭୀଷିକା ମଧ୍ୟରେ ହରାଇଲେ ଅନେକ ସୈନ୍ୟ। ପରେ ପରେ ଦୁର୍ଭିକ୍ଷ ପାଇଁ ନାନାଦି ଅସୁବିଧା। ଏ ସବୁର ବଦଳରେ କେତେକ ଦୁର୍ଗ ଅଧିକାର କରିଥିଲେ। କିନ୍ତୁ ହରାଇଥିଲେ ନିଜର ମନର ଶାନ୍ତି।

ମୀର ଅବଦୁଲ କରିମ, ବୟସ ୬୦, ଜାହାଙ୍ଗୀରଙ୍କ ସମୟରେ ଲାହୋରରେ ସମାଧି ତିଆରି କରିବାରେ ନିଯୁକ୍ତି ପାଇଥିଲେ। ସେ ବେଳକୁ ମୁକାମ୍ମର ଖାଁ ପର୍ଶିଆରୁ ଏ କାମ ପାଇଁ ନିମନ୍ତ୍ରିତ ହୋଇ ଆସିଥିଲେ। ଶାହାଜାହାଁ ଏ ଦୁଇଜଣଙ୍କୁ ନିଯୁକ୍ତି ଦେଲେ ତାଜମହଲର ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ। ଇଂରେଜ ଓ ପର୍ତ୍ତୁଗୀଜ ଫାଦର ଦାବି କରୁଥିଲେ କି ଏ ବିଦ୍ୟା କେବଳ ସେମାନଙ୍କର । ସତ୍ୟାସତ୍ୟ ନିର୍ଭରଯୋଗ୍ୟ ନୁହେଁ। ଯୋଜନାର ପ୍ରସ୍ତୁତି ପାଇଁ ଲୋକ ଖୋଜୁ ଖୋଜୁ ବ୍ୟସ୍ତ ହୋଇପଡ଼ିଲେ ଶାହାଜାହାଁ। ସେଇ ଅନୁମାନ ମୁହୂର୍ତ୍ତରେ ଜଣେ ସୁଫିସାଧୁ ସମ୍ରାଟଙ୍କୁ ଭେଟିଲେ। ତାଙ୍କ ସ୍ୱପ୍ନର ସଂପୂର୍ଣ୍ଣ ବିବରଣୀ ସେ ସମ୍ରାଟଙ୍କୁ ବଖାଣିଲେ। ଏ ମହାତ୍ମାଙ୍କର ସ୍ୱପ୍ନରେ ତାଜମହଲର ସଂପୂର୍ଣ୍ଣ ରୂପ ପ୍ରତିଫଳିତ ହୋଇଥିଲା। କିନ୍ତୁ ଐତିହାସିକ ଲାହୋରୀଙ୍କ ମତ ଭିନ୍ନ। ତାଙ୍କ ମତରେ ସମ୍ରାଟଙ୍କର ରାଜକୀୟ ମନ ସୂର୍ଯ୍ୟଙ୍କଠାରୁ ଆହୁରି ଉଜ୍ଜ୍ୱଳ। ତାଙ୍କ ମତରେ ସମ୍ରାଟ ନିଜେହିଁ ଏହାର ଯୋଜନା କରିଥିଲେ। ଆଗ୍ରାରେ ପହଞ୍ଚିଲା ବେଳକୁ ମୂଳଦୂଆ ପାଇଁ ମାଟି ଖୋଳା ଚାଲିଥାଏ। ନିଜ ବ୍ୟକ୍ତିଗତ ଶୋକର ମହଲ ତିଆରି ହେବାର ଯୋଜନା, ଦୃଢ଼ କଳ୍ପନାର ରୂପରେଖର ସମୟ ପାଖେଇ ଆସୁଥିଲା। ଶାହାଜାହାନ ବୁଡ଼ି ରହିଲେ ନିଜ ଦୁଃଖର ସାମୁଦ୍ରିକ ଝଡ଼ ଭିତରେ।

କାମ ଆରମ୍ଭ ବେଳକୁ ଶିଳ୍ପାୟନ ସଂକ୍ରାନ୍ତୀୟ କବର ଦୋଳାଇବାରେ ସଂକୀର୍ଣ୍ଣତା ଦେଖାଦେଲା । ଗମ୍ବୁଜକୁ ଏକ ଅଟ୍ଟାଳିକା ଭିତରେ କିପରି ସଜାଯାଇପାରିବ ? କାରଣ ଗମ୍ବୁଜ ଉଚ୍ଚତମ ଅଟ୍ଟାଳିକା ଠାରୁ ବଡ଼ । ତୃତୀୟ ଶତାବ୍ଦୀବେଳକୁ ପର୍ଶିୟାନ ଗଠନକାରୀ ଏହାର ସମାଧାନ କରିସାରିଥିଲେ । ଗମ୍ବୁଜକୁ ଟେକି ଧରିବା ପାଇଁ ଦୁଇପଟେ କେବଳ ଦୁଇ କାନ୍ଥର ଆବଶ୍ୟକ । ଏ ପ୍ରକାରର ଗଠନ ପ୍ରଣାଳୀ କନ୍‌ଷ୍ଟାଣ୍ଟିନୋପଲ୍‌ର ସେଣ୍ଟ ସୋଫିଆ, ଫ୍ଲରେନ୍ସର ଶାନ୍ତା ମେରିଆ ଡେଲ ଫାଇଲୋ, ଓ ରୋମର ସେଣ୍ଟ ପିଟରସ୍‌ରେ ଦେଖାଯାଏ ।

ମନୋଲିସାର ହସ ପଛରେ କ'ଣ ରହସ୍ୟ ନିହିତ ଥିଲା ଜଣା ନାହିଁ । ତାଜମହଲ ସଂକ୍ରାନ୍ତରେ ମଧ୍ୟ କୌଣସି ପ୍ରଶ୍ନର ନିର୍ଦ୍ଦିଷ୍ଟ ଉତ୍ତର ନାହିଁ । ଖାଲି ଏତିକି ଜଣା ଅଛି ଯେ ତାଜମହଲର ସୌନ୍ଦର୍ଯ୍ୟ ପୃଥିବୀରେ ସ୍ୱର୍ଗର ଅବତାରଣା । ସ୍ୱର୍ଗଦେବତାଙ୍କ ଆସନର ପ୍ରତିନିଧିତ୍ୱ କରେ ଏ ସମାଧି । ସ୍ୱର୍ଗର ଉଚ୍ଚତମ ପ୍ରଦେଶରେ ତାଜମହଲ ଏକ ରୂପକ ଅହଙ୍କାର ଆଉ ଅନ୍ୟ ଦୃଷ୍ଟିରୁ ସୁଫି ଧର୍ମଭାବନାର ଏକ ରୂପାନ୍ତର । ତାଜମହଲ ତଳେ ବଗିଚାମାନ ଅଛି । ସେ ସୂଚନା ଦିଏ କି ଏଠି ସ୍ୱର୍ଗ ପୁନର୍ଜୀବୀତ ହୋଇଛି । ଭଗବାନ ତଳକୁ ଅନାଇ ଏ ସୁଢ଼ଳ, ସୁନ୍ଦର, ଶୁଭ୍ର ମହଲକୁ ଦେଖିପାରିବେ ।

ମୋଗଲ ସାମ୍ରାଜ୍ୟର ସୃଷ୍ଟି ଅନେକ ବଗିଚାକୁ ଅନୁଧ୍ୟାନ କରି ତାଜମହଲ ବଗିଚାର ପରିକଳ୍ପନା କରାଯାଇଛି । ଏ ବଗିଚାର ନାମ ମହତାବ ବାଗ । ଏହାର ପରିଧି ୨୪ ଏକର । ତାଜମହଲର ଭିତ୍ତିମଣ୍ଡପ ଉପରେ ଦଣ୍ଡାୟମାନ ।

'ମୁନଲାଇଟ ଗାର୍ଡ଼ନ' ମୁସଲମାନଙ୍କର କଳ୍ପନା ନୁହେଁ । ହିନ୍ଦୁ ଶାସକମାନେ ଏହାର ପରିକଳ୍ପନା ଓ ସୃଜନା କରିଥିଲେ । ଏ ବଗିଚାରେ ଧଳା ଓ ଫିକା ରଙ୍ଗର ମିଶ୍ରଣର ପରିକଳ୍ପନା କରିଥିଲେ । ମୁସଲିମ ଏହାର ଧାରା ବଦଳାଇ ଦେଲେ । ସେମାନେ ଶାନ୍ତ, ଶୀତଳ, କ୍ଷୁଦ୍ର ଲହଡ଼ି ଥିବା ପାଣିଧାରା ସୃଷ୍ଟି କଲେ । ଆଉ ସୃଷ୍ଟି କଲେ ଛୋଟ ଛୋଟ ଝରଣା । ବଦଳାଇଲେ ଫୁଲର ରଂଗ ।

ଏପରି ବଗିଚାର ମହତ୍ତ୍ୱ ମଧ୍ୟ ଅଛି । ଏ ଅଷ୍ଟକୋଣୀ ବଗିଚାରେ ଅପ୍ରାକୃତିକ ଝରଣା ଦେଇ ପାଣି ଭର୍ତ୍ତି ହୋଇଯାଏ । ଆଉ ପରିପୂର୍ଣ୍ଣ ଜଳାଶୟରେ ତାଜମହଲର ପ୍ରତିବିମ୍ବ ପରିଲକ୍ଷିତ ହୁଏ । ଶାହାଜାହାଁ ନିଶ୍ଚୟ ଉତ୍ତର ଦିଗର ବାଲକୋନିରୁ

ତାଜହମଲର ସୌନ୍ଦର୍ଯ୍ୟ ଉପଭୋଗ କରିଥିବେ। ଦେଖିଥିବେ ମହତାବ ବାଗର ଝରଣା ଉପରେ ତାଜମହଲ ଝୁଲିବା ଦୃଶ୍ୟ।

ଡିସେମ୍ବର ୯, ୧୬୫୨ରେ ଦେଖାଗଲା କି ଯମୂନା ନଦୀରେ ବନ୍ୟା ପାଇଁ ବଗିଚା ଓ ତାଜମହଲ ଅନେକ କ୍ଷତି ଘଟିଛି। ଚାରିପଟରେ ବଗିଚା ମଝିରେ ତାଜମହଲ ଅବସ୍ଥିତ। ଯମୁନାନଦୀର ଧାରା ପୂର୍ବରୁ ପଶ୍ଚିମକୁ। ଆଉ ଅପ୍ରାକୃତିକ ଜଳଧାରା ଉତ୍ତରରୁ ଦକ୍ଷିଣକୁ। ତାଜହମଲ କେବଳ ଗଢ଼ା ଯାଇଥିଲା ମମତାଜ ମହଲଙ୍କ ପାଇଁ। ଶାହାଜାହାଁ ନିଜକୁ ସେଥିରେ କବର ଦେବାର ଆଶା ରଖି ନ ଥିଲେ। କାରଣ ଯମୁନା ଆରପଟେ ଆଉ ଏକ ସ୍ମୃତି ମନ୍ଦିର କଳା ମାରବଲର ତିଆରି କରାଇବାର ଯୋଜନାରେ ଥିଲେ। ଖାଲି ଯୋଜନାରେ ନ ଥିଲେ ତିଆରି ଆରମ୍ଭ କରାଇ ଦେଇଥିଲେ ମଧ୍ୟ। ଫ୍ରାନ୍ସର ଭ୍ରମଣକାରୀ ଜିନ୍-ବ୍ୟାପଟାଇକ ଟାଭେନି ଅୟର ଲେଖିଥିଲେ; ସେତିକିବେଳକୁ ଶାହାଜାହାଁଙ୍କ ପୁଅମାନଙ୍କର ରାଜଗାଦି ପାଇଁ କଳହ ଆରମ୍ଭ ହୋଇଯାଇଥିଲା। ସେଥିପାଇଁ କଳାପଥର ତାଜମହଲ ତିଆରି ବାଧାପ୍ରାପ୍ତ ହେଲା।

ଭାଗ୍ୟର ବିଡ଼ମ୍ବନା - ଶାହାଜାହାଁ କଟାଇଲେ ବନ୍ଦୀ ଜୀବନ – ଯେଉଁ ଜୀବନରେ କଳ୍ପନା ଓ ସ୍ମୃତି ଛଡ଼ା ଆଉ କୌଣସଟାର ସମ୍ଭାବନା ନ ଥିଲା। ତାଜମହଲଙ୍କୁ ଦର୍ଶନ କରି କରି ସେ ଭାବୁଥିଲେ 'ଯଦି ମମତାଜ ବଂଚିଥାନ୍ତେ ତା' ହେଲେ କି ଯନ୍ତ୍ରଣା, କଷ୍ଟ ସେ ପାଇଥାନ୍ତେ ?

ତାଜମହଲଙ୍କୁ ହିନ୍ଦୁମନ୍ଦିର ବୋଲି ଦାବି କରାଯାଏ। କିନ୍ତୁ ସେ ସମୟରେ ହିନ୍ଦୁ ମୁସଲିମଙ୍କର ସ୍ଥାପତ୍ୟ ବିଦ୍ୟାର ମିଶ୍ରଣର ପରିପ୍ରକାଶ କିଛି ନୂଆ ନୁହେଁ। ମୋଗଲ ସାମ୍ରାଜ୍ୟରେ ବଗିଚା ଭିତରେ ଏ ଭଳି ସ୍ମୃତିମନ୍ଦିର ତୋଳାହେବାର ଇତିହାସ ବିଦ୍ୟମାନ। ନୁରଜାହାଁ ମଧ୍ୟ ଜାହାଙ୍ଗୀରଙ୍କ ପାଇଁ ଲାହୋରରେ ବଗିଚା ଭିତରେ ତୋଳାଇ ଥିଲେ। ଆକବର ମଧ୍ୟ ନିଜ ତିଆରି ବଗିଚା ଭିତରେ ନିଜର କବର ତୋଳାଇଥିଲେ। ଶାହାଜାହାଁ ଏକମାତ୍ର ସମ୍ରାଟ ଯେ ତାଙ୍କର କଳାକାର୍ଯ୍ୟକୁ ବିରାଟ କାନଭାସ ଉପରେ ରୂପଦେବାର ଆଗ୍ରହ କରିଥିଲେ। କଳାପଥରର ମହଲ ସୃଷ୍ଟି କରି ସେପରି ଗଭୀରତା ଫୁଟେଇ ପାରିଥାନ୍ତେ କି ନାହିଁ କିଏ ଜାଣେ ?

ଅନ୍ୟଠୁ ନକଲ କରି ହେଉ ବା ନିଜ କଳ୍ପନାର ସୃଷ୍ଟି ହେଉ ତାଜମହଲ 'ପୃଥିବୀର ଅନ୍ୟତମ ଆଶ୍ଚର୍ଯ୍ୟଜନକ ବସ୍ତୁ' ତାହା ନିଃସନ୍ଦେହ। ବର୍ତ୍ତମାନ ଆର୍ନ୍ତଦେଶୀୟ ସୌନ୍ଦର୍ଯ୍ୟ ବସ୍ତୁ ଷ୍ଟାଚ୍ୟୁ ଅଫ ଲବିର୍ଟି, ଆଇଫେଲ ଟାୱାର, ପିଶାର ଲିନିଂ ଟାୱାର, ଗ୍ରେଟ ୱାଲ ଅଫ ଚାଇନା ଓ ସିଡ଼୍‌ନିର ଅପେରା ହାଉସ ଭଳି ଆଶ୍ଚର୍ଯ୍ୟଜନକ। ୧୨,୦୦୦ ଟନ ଓଜନର ତାଜମହଲ ଓ ତା'ର ଆଖପାଖ ଅଗଣା। ଦର୍ପଣ ଭଳି ଜଳଧାରା, ଘନ ସବୁଜ ବଗିଚା ଭିତରେ ଝୁଲୁଛି। ଅତି ସାଧାରଣ ଲୋକର ମଧ୍ୟ ତା'ର ସୌନ୍ଦର୍ଯ୍ୟ ଆଖିକୁ ଝଲସାଇ ଦେବ ଓ ମନପ୍ରାଣ ଦୋହଲି ଯିବ।

ତାଜମହଲ ଦେଖି, ସୂର୍ଯ୍ୟ ତାଙ୍କ କିରଣର ଲୁହ ଦେଇ ନିଜର ଅନ୍ତରର ଆର୍ଶୀବାଦ ଢାଳିଦିଅନ୍ତି। ଟେନିସନଙ୍କ ଭାଷାରେ – ସବୁ ପବିତ୍ର ସବୁ ଧାର୍ମିକ ଆଉ ବିଷାଦପୂର୍ଣ୍ଣର ଏକ ସମୂହ ଚିତ୍ର। ଭଲ ପାଇବାର ପ୍ରକୃତ ରୂପ, ବେଦନାର ଅନ୍ତିମ ପ୍ରତିଛବି ଓ ସୌନ୍ଦର୍ଯ୍ୟର ପରିପ୍ରକାଶ – ଏ ସବୁ ଅଦୃଶ୍ୟ ମନୋଭାବ ଏକତ୍ରିତ ହୋଇ ପାର୍ଥିବ ସୃଷ୍ଟି ସାଧନ ହୋଇପାରିବ କି ନା ତାହାହିଁ ଥିଲା ପ୍ରଶ୍ନ ?

ତାଜମହଲ ସୌନ୍ଦର୍ଯ୍ୟର ବର୍ଣ୍ଣନା ପାଇଁ ଭାଷା ନାହିଁ। ହେଲେ ମନର ହିଲ୍ଲୋଳିତ ଭାବନାକୁ ଏପରି ରୂପକ ପରିକଳ୍ପନା କିନ୍ତୁ ବର୍ଣ୍ଣନାତୀତ 'କାଳର କପାଳରେ ଏକ ଶୁଭ୍ର ଟିକା।'

ଶାହାଜାହାଁ କାଶ୍ମୀରର ଅନାଶ୍ରିତ ସାଲିମାର ବଗିଚାରେ କଳା ମାରବଲର ମଣ୍ଡପ, ଆଜମୀରର ଅନାଦୃତ ପ୍ରାସାଦ ଧଳା ମାରବଲରେ ତିଆରି କରିଥିଲେ। ଲାହୋରରେ ମଧ୍ୟ ଅନେକ ମସଜିଦ୍ ତୋଳାଇଥିଲେ ଏପରିକି ଜାହାଙ୍ଗୀର ସ୍ମୃତିପୀଠ ମଧ୍ୟ। (ଯଦିଓ ତାଙ୍କ ନାମରେ ତିଆରି ବୋଲି କୌଣସି ରେକର୍ଡ ନାହିଁ।) କିନ୍ତୁ ଆଗ୍ରା ଓ ଦିଲ୍ଲୀର ତାଙ୍କ ଚମତ୍କାରିତା ଦେଖାଇଲେ ଶାହାଜାହାଁ। ଗଠନ ପ୍ରଣାଳୀରେ ଏକୁ ଆରେକ ବଳିୟାର। ଜଣେ ଆତ୍ମବିଶ୍ୱାସୀ ରାଜାର ମୁକ୍ତ ପରମ୍ପରା। ଭରି ରହିଥିଲା ସ୍ୱର୍ଗୀୟ ଚାରୁକଳା। ବାବରଙ୍କ ପରିଭ୍ରମଣର ଦର୍ଶନୀୟ ଚିନ୍ତାଧାର ଓ ଆକବରଙ୍କ ଚେତନାଶୀଳ ମନୋଭାବର ଏକ ସମ୍ମିଳିତ ସ୍ୱର ଶାହାଜାହାଁଙ୍କର ସ୍ଥାପତ୍ୟକଳାରେ ଫୁଟିଉଠିଲା। 'ବିଶ୍ୱର ରାଜା'ଙ୍କର ଅଧ୍ୟବସାୟ ଆତ୍ମପ୍ରକାଶ ନେଲା ନିଜର ଅନ୍ତରର ଲୁକ୍କାୟିତ ବାସନା। ମୟୂର ସିଂହାସନର ଗଠନ ପ୍ରଣାଳୀ ଆହୁରି

ଦ୍ୱିଗୁଣିତ କଲା ଶାହାଜାହାଁଙ୍କ କଳାପ୍ରେମର କଳାଚାତୁରୀ। ଏହି ସିଂହାସନର ଚାରୁଚନ୍ଦ୍ରାତପ ତଳେ ଚନ୍ଦ୍ରମାର ପ୍ରସ୍ଫୁଟିତ ରୂପ ଦେଖି ମନେ ହେଉଥିଲା ଯେପରି ଆକାଶର ଚାନ୍ଦ ପୃଥିବୀପୃଷ୍ଠରେ ଅବତରଣ କରିଛନ୍ତି। ଚନ୍ଦ୍ରମାର ଗୋଲାକାର ଛତ୍ରଛାୟା ତଳେ ଖଞ୍ଜିଦେଇଥିଲେ ଅସଂଖ୍ୟ ମୂଲ୍ୟବାନ ହୀରା, ନୀଳା, ମୋତି, ମାଣିକ୍ୟ, ପୋଖରାଜ ଇତ୍ୟାଦି ଇତ୍ୟାଦି। ପ୍ରାୟ ୧୦ ମିଲିୟନ ମୂଲ୍ୟର ପଥରସବୁ। ଧାରାବାହିକ ଝିକମିକ୍ ଆଲୋକ ଦେଖିବାକୁ ମିଳିଥିଲା।

ତାଙ୍କର ଆଉ ଏକ ସ୍ମୃତିଚିହ୍ନ ଶାହାଜାହାଁବାଦ। ତୋଗଲକାବାଦ ପରି ଏହା କେବଳ ଗୋଟେ ଦୁର୍ଗ ନୁହେଁ ଅଥବା ଫତେପୁର ସିକ୍ରି ପରି ଏହା ଏକ ପ୍ରାସାଦ ବି ନୁହେଁ। ଏ ଏକ ସଂପୂର୍ଣ୍ଣ ସହର। ଏହା ଭିତରେ ରାସ୍ତାଘାଟ, ବଜାର, ବାଣିଜ୍ୟ ବ୍ୟବସାୟର ବିସ୍ତୃତ କ୍ଷେତ୍ର, ପାଣିପାଇଁ ଘର, ବଡ଼ ବଡ଼ ଛକ ଆଉ ସହରକୁ ଘେରି ବିରାଟ ପଥରର କାନ୍ଥ। ୬୪୦୦ ଏକର ଜମି ଉପରେ ତିଆରି ଏ ସହର। ଚାରି ଲକ୍ଷ ଲୋକଙ୍କର ରହିବା ଚଳିବାର ବନ୍ଦୋବସ୍ତ କରାଯାଇଥିଲା। ବାହାରର କାନ୍ଥ ମଝିରେ ମଝିରେ ୨୭ଟି ଖୁମ୍ବ ତିଆରି ହୋଇଥିଲା। ଜାମା ମସଜିଦ୍ ଓ ଲାଲ କିଲ୍ଲାର ଗଢଣ ଅବର୍ଣ୍ଣନୀୟ। ଆଗ୍ରାରେ ମଧ ଆଉ ଗୋଟିଏ ଲାଲକିଲ୍ଲାର ପୁର୍ନନିର୍ମାଣ କରାଇଥିଲେ ଶାହାଜାହାଁ। ଭିତରେ ଦିୱାନ-ଇ-ଆମ ପରି ବିରାଟ ହଲ। ଉପର ମହଲାରେ ଧଳା ମାରବଲର କୋଠରୀ ଓ ମଣ୍ଡପ। ଏହିଠାରେ ଔରଙ୍ଗଜେବଙ୍କ ଦ୍ୱାରା ବନ୍ଦୀ ଜୀବନ କଟାଇଥିଲେ। ନିଜକୁ କାରାରୁଦ୍ଧ କରି ରଖିଥିଲେ ଏହିଠାରେ।

**ହାରେମ–**

ଆରବିକ ଭାଷା 'ହାରିମ୍' ଶବ୍ଦରୁ ହାରେମ ଶବ୍ଦ ଉତ୍ପନ୍ନ। ଅର୍ଥ କିଛି ଗୋଟାଏ ପବିତ୍ର ଓ ନିଷିଦ୍ଧ। ସେର ଆଫଗାନଙ୍କ ମୃତ୍ୟୁପରେ (ନୂରଜାହାନଙ୍କ ପର୍ଣ୍ଣୟାନ ସ୍ୱାମୀ) ନୂରଜାହାଁ ରାଜକୀୟ ହାରେମ୍‌ରେ ରହିଲେ ଏକ ବିଧବା ରୂପରେ। ଜାହାଙ୍ଗୀରଙ୍କ ସହିତ ଦେଖା ହୋଇଥିଲା ମୀନାବଜାରରେ। ଏ ମୀନାବଜାର 'ନଉରଜ' ଉତ୍ସବ ଦିନ ଅନୁଷ୍ଠିତ ହୁଏ। ଏ ବଜାରରେ ସାଧାରଣ ବଜାରପରି କିଣା ବିକା ଚାଲେ। ହୀରା, ନୀଳା, ମୋତି, ମାଣିକ୍ୟ ଠାରୁ ଆରମ୍ଭ କରି ଛୋଟ ଛୋଟ ଜିନିଷ ପ୍ରଭୃତିର କାରବାର ଚାଲେ। ଅନେକ ଦୋକାନ ବସେ। ସ୍ତ୍ରୀ ଲୋକମାନେ,

ହାରେମର ସ୍ତ୍ରୀ ଲୋକମାନେ ଏ ବଜାର ଚଳାନ୍ତି। ସବୁଠି ସ୍ତ୍ରୀଲୋକ। ବିକ୍ରେତା ଓ ଗ୍ରହିତା। ପୁରୁଷମାନଙ୍କର ପ୍ରବେଶ ନଥାଏ। କେବଳ ରାଜପୁତ୍ର ଓ ସମ୍ରାଟଙ୍କ ପାଇଁ ପ୍ରତିବନ୍ଧକ ନାହିଁ। ଏଠି ସ୍ତ୍ରୀ ଲୋକମାନେ ବିନା ଓଢ଼ଣାରେ ବୁଲାବୁଲି କରନ୍ତି। ସମ୍ରାଟ ଜାହାଙ୍ଗୀରଙ୍କ ନିର୍ଦ୍ଦେଶରେ ନୁରଜାହାନଙ୍କୁ ବଙ୍ଗଳାରୁ ଆଗ୍ରାକୁ ଡକାଇ ଆକବରଙ୍କ ସିନିଅର ବିଧବା ପତ୍ନୀମାନଙ୍କ ସହ ହାରେମରେ ରହିବାକୁ ଅନୁମତି ଦେଲେ। ସେଠାରେ ସେ ଅନେକଦିନ ବିନା କୌଣସି କାମରେ ରହିଲେ। ୧୬୧୧ରେ 'ନଉରଜ' ଦିନରେ ଦୂରରୁ ନୁରଜାହାଁଙ୍କୁ ଦେଖିଲେ ସମ୍ରାଟ ଜାହାଙ୍ଗୀର। ମୁଗ୍ଧ ହୋଇ ଆଦେଶ ଦେଲେ ତାଙ୍କ ନିଜ ହାରେମରେ ରହିବାକୁ। କେହି କେହି କହନ୍ତି ଦିନେ ରାତିରେ ସମ୍ରାଟ ହଠାତ୍ ନିଦରୁ ଉଠିଲାପରି ନୁରଜାହାଁଙ୍କୁ ବିବାହ ପାଇଁ ସ୍ଥିରକଲେ। ଦୁଇମାସ ଭିତରେ ରାଜକୀୟ ଆଡ଼ମ୍ବରରେ ବିବାହ ସମ୍ପନ୍ନ ହେଲା। ଜାହାଙ୍ଗୀର ବହୁମୂଲ୍ୟ ବିଳାସ ସାମଗ୍ରୀ ଓ ବହୁମୂଲ୍ୟ ଅଳଙ୍କାର ପ୍ରିୟ। ଉତ୍ତରାଧିକାରୀ ସୂତ୍ରରେ ସେ ୧୨୫ କିଲୋଗ୍ରାମର ହୀରା, ରୁବି, ନୀଳା, ମୋତିମାଣିକ ଇତ୍ୟାଦି, ପ୍ରାୟ ୬୨୫,୦୦୦ କ୍ୟାରେଟର ମୂଲ୍ୟବାନ ପଥର ପାଇଥିଲେ। ସେ ସବୁକୁ ଉପଯୋଗ କରିବାପାଇଁ ଆଗ୍ରହୀ ଥିଲେ। ଏ ସବୁ ରତ୍ନ ତାଙ୍କ ପୋଷାକରେ ଉପଯୋଗ ପ୍ରାୟ ବର୍ଷକ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ଗୋଟାଏ ଗୋଟାଏ ନୂଆ ପୋଷାକ ପିନ୍ଧିଥିଲେ। ନୂରଜାହାନଙ୍କୁ ନୂଆ ପଦବୀ ଦେଲେ 'ନୂରମହଲ' ଅର୍ଥାତ୍ 'ପ୍ରାସାଦର ଆଲୋକ' ୧୬୧୬ରେ ଆଉ ଗୋଟିଏ ପଦବୀ ଦେଲେ। 'ନୂରଜାହାନ' ଅର୍ଥାତ୍ 'ବିଶ୍ୱର ଆଲୋକ'।

ହାରେମ– ଆମୋଦ ପ୍ରମୋଦ ଭରା, କାମପ୍ରବଣ, ବିଷୟାସକ୍ତ, ପ୍ରମତ୍ତ ମତ୍ତ ବ୍ୟକ୍ତିମାନଙ୍କର ଜାଗା। ଅବ୍ୟବସ୍ଥିତ ଚିତ୍ତବାନ ପୁରୁଷମାନଙ୍କର ଖେଳାମଣ୍ଡପ। ନାରୀମାନଙ୍କର ରାଜୁତି। ସେଥିପାଇଁ ବିଦେଶୀ ପରିବ୍ରାଜକମାନଙ୍କର ଆକର୍ଷଣୀୟ ସ୍ଥଳ। ମୋଗଲ ସାମ୍ରାଜ୍ୟକୁ ପ୍ରବେଶକରି ଯେ କୌଣସି ବିଦେଶୀ ନାଗରିକ ଏ ନାରୀଜଗତ ଭିତରେ କଣ ହେଉଛି ଜାଣିବାପାଇଁ ଅଧିକ ବ୍ୟଗ୍ର। ଏ ପ୍ରକାର ନିଷିଦ୍ଧାଞ୍ଚଳରେ ଅନ୍ୟାନ୍ୟ ଅନେକ ସାମାଜିକ ନିୟମ ଓ ସମସ୍ୟା ମଧ୍ୟ ଜଡ଼ିତ। ରାଜକୀୟ ବିରାଟ ପରିବାରର ଏହା ଆଶ୍ରୟ ସ୍ଥଳ। ମା, ଖୁଡ଼ି, ପିଉସି, ଭଉଣୀ, ବିଧବା ନାରୀ, କୁଟୁମ୍ବର ଅନ୍ୟ ନାରୀ ସଦସ୍ୟମାନେ ଏକାଠି ଥାନ୍ତି। ଆଉଥା'ନ୍ତି

ସମ୍ରାଟଙ୍କର ରକ୍ଷିତାମାନେ। ମୈଥୁନ ଶକ୍ତି ହ୍ରାସ ପାଇବାପରେ ସମସ୍ତେ ଆଶ୍ରୟ ନିଅନ୍ତି ଏଇ ହାରେମ୍‌ରେ। ହାରେମ୍‌ରେ ଥାନ୍ତି ରାଜପୁତ୍ର, ରାଜକନ୍ୟାଙ୍କର ଦୁଗ୍ଧଦାତ୍ରୀମାନେ। ସମସ୍ତଙ୍କର ଲାଳନ ପାଳନ ଏମାନଙ୍କ ଉପରେ। ଜନ୍ମ ନେବା ପରେ ଏମାନଙ୍କୁ ନିଜ ନିଜ ମାତାମାନଙ୍କଠାରୁ ଅଲଗା ରଖାଯାଏ। ଏପରିକି ମା' କ୍ଷୀର ଖାଇବାକୁ ମଧ୍ୟ ଦିଆଯାଏ ନାହିଁ। ଆକବରଙ୍କ ହାରେମରେ ପ୍ରାୟ ୫୦୦୦ ସ୍ତ୍ରୀ ଲୋକ ଥିଲେ। ପରମ୍ପରା ଅନୁଯାୟୀ ଚଳିତ ଶାସକଙ୍କର ମା' ମାନେ ଏପରି ହାରେମକୁ ଚଳାଇଥାନ୍ତି। ସେମାନେ ଥାନ୍ତି ମୁଖ୍ୟ ପରିଚାଳିକା। ତା ପରର ଅନ୍ୟ ମା'ମାନେ ଥାନ୍ତି। ସବୁ ସ୍ତ୍ରୀ ଲୋକମାନଙ୍କୁ ସେମାନଙ୍କର ନିଜ ନିଜର ପରିଶ୍ରମ ଅନୁସାରେ ପାରିଶ୍ରମିକ ମଧ୍ୟ ଦିଆଯାଏ। ଦକ୍ଷ ସୁପରିଚାଳନା ପାଇଁ ସେମାନଙ୍କୁ ଅଧିକ ଭତ୍ତା ମଧ୍ୟ ଦିଆଯାଏ। ପ୍ରଥମରେ ଗୋଟାଏ ବର୍ଷପାଇଁ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରାହୁଏ। ଆଗ୍ରା ଦୁର୍ଗର ଅନ୍ଦରମହଲ ବହୁତ ବଡ଼। ସୂର୍ଯ୍ୟାଲୋକ ଓ ପବନ ଯାତାୟତ ପାଇଁ ଅନେକ ଟେରାସ, ବଗିଚା, ଗଛ ଭର୍ତ୍ତି ଥାଏ। ଏପରିକି ସ୍ୱିମିଂ ପୁଲର ମଧ୍ୟ ବ୍ୟବସ୍ଥା ଅଛି। ଭିତରେ ବଡ଼ ବଡ଼ ହଲ ଓ କୋଠରୀ ସବୁ ରୁଚିପୂର୍ଣ୍ଣ ଆସବାବ ପତ୍ରରେ ସଜ୍ଜିତ। ଚଟାଣରେ ଦାମିକା କାରପେଟ। ଖରାଦିନ ଓ ଶୀତଦିନ ପାଇଁ ଅଲଗା ଅଲଗା କାରପେଟ। କବାଟ ଝରକାରେ ଉଜ୍ଜ୍ୱଳ ରଙ୍ଗର ପରଦା। ରକମାରି ପରଫ୍ୟୁମରେ କୋଠରୀସବୁ ସୁବାସିତ। ଗାଧୋଇବାପାଇଁ ସୁଗନ୍ଧଯୁକ୍ତ ପାଣିର ବ୍ୟବସ୍ଥା। ସାବୁ, ସୁବାସିତ ତେଲ ପାଇଁ ସ୍ତ୍ରୀ ଲୋକମାନଙ୍କର ଚର୍ମ ରହେ ନରମ, ସୁନ୍ଦର ଓ ପରିଷ୍କାର। ଏଠାରେ ସ୍ତ୍ରୀଲୋକମାନେ ସୁନ୍ଦରୀ ଓ ବୁଦ୍ଧିମତି। ମନେହେଉଥିଲା ପୃଥିବୀର ସବୁ ସୌନ୍ଦର୍ଯ୍ୟ ଏହାର ସ୍ତ୍ରୀଲୋକମାନଙ୍କ ମଧ୍ୟରେ ଏକାଠି ହୋଇଛି। ଆଉ ବୁଦ୍ଧି– ସମ୍ରାଟ ଓ ରାଜପୁତ୍ରମାନଙ୍କର ମନହରଣ କରିବାର ପ୍ରବୃତ୍ତି ଏଠି ସଦାସର୍ବଦା ଜାଗ୍ରତ। ମମତାଜଙ୍କ ଜେଜେମା ଅସବର ବେଗମ ଏକରକମ ଗୋଲାପ ଜଳର ଆବିଷ୍କାର କରିଥିଲେ। ଜାହାଙ୍ଗୀରଙ୍କ ଅମଳରେ। ଏହାର ସୁଗନ୍ଧ ହୃଦୟ ଓ ଶରୀରକୁ ଥଣ୍ଡା ରଖେ। ହାରେମ ହିଁ ସମ୍ରାଟମାନଙ୍କର ଏକ ସୁରକ୍ଷିତ ସ୍ଥଳ। ହାରେମ ସେମାନେ ମାଷ୍ଟ ଓ ଅତିଥିବି। ପିଲାଦିନେ ସେମାନଙ୍କର କଟିଥାଏ ଏହିଠାରେ। ମନେହୁଏ ସେମାନେ ଫେରିଛନ୍ତି ନିଜ ନିଜର ପିଲାଦିନର ଜାଗାକୁ। ସେମାନଙ୍କ ଉତ୍ତମ ଖାଦ୍ୟ ପରିବେଷଣ କରାଯାଏ। ଆଉ ସେ ଖାଦ୍ୟ

ପରିବେଷଣ ପୂର୍ବରୁ ଚଖାଯାଇଥାଏ। ପିଇବା ପାଣି ମଧ୍ୟ ସୁରକ୍ଷିତ। ହାରେମର ଶାନ୍ତିଶୃଙ୍ଖଳା କଠୋର ନିୟମ ଭରା। ବାହାର ପ୍ରବେଶ ଦ୍ୱାର ଛଡ଼ା ଭିତର ପଟେ ଅନେକ ଗୋପନୀୟ ପାହାଚ ମଧ୍ୟ ଅଛି। ମଝିରେ ମଝିରେ ସମ୍ରାଟ ଏଇ ରାସ୍ତାଦେଇ ଭିତରକୁ ଯା' ଆସ କରନ୍ତି। ଏ ସ୍ତ୍ରୀ ଲୋକମାନଙ୍କ ମେଳରେ ଅନେକ ଗୁପ୍ତଚର (ସ୍ତ୍ରୀଲୋମ ମାନଙ୍କ ମଧ୍ୟରୁ) ମଧ୍ୟ ନିଯୁକ୍ତି ପାଇଥାନ୍ତି। ହାରେମର ହାଲଚାଲ ସବୁ ସମ୍ରାଟଙ୍କୁ ଗୁପ୍ତରେ ଜଣାଇ ଦିଆଯାଏ। ବାହାରର ଜଗୁଆଳିମାନଙ୍କ ମଧ୍ୟରୁ ଅନେକ ସ୍ତ୍ରୀ ଲୋକ-ଜଗୁଆଳି ମଧ୍ୟ ଥାନ୍ତି। ସେମାନେ ହୃଷ୍ଟପୃଷ୍ଟ ଓ ଧନୁ ତୀର ଚଳାଇବାରେ ସିଦ୍ଧହସ୍ତ। କର୍ତ୍ତବ୍ୟରେ ହେଳା କଲେ କଠୋର ଦଣ୍ଡ ମଧ୍ୟ ତାଙ୍କୁ ମିଳେ। ଏ ପ୍ରକାର କର୍ତ୍ତବ୍ୟହୀନତା ଖ୍ୱାଜାସରାଙ୍କୁ (ହାରେମର ଜଣେ ଉଚ୍ଚପଦବୀ ଅଫିସର) ଜଣାଇ ଦିଆଯାଏ। ସାଧାରଣତଃ ଏପରି ସ୍ତ୍ରୀ ଲୋକମାନେ ଉଜ୍‌ବେକ, ଟର୍କି ଓ ଆବିସିନିଆନରୁ ଅଣାଯାଇ ଏଠାରେ ନିଯୁକ୍ତି ପାଇଥାନ୍ତି। ହାରେମର ମୁଖ୍ୟ ଫାଟକ ସୂର୍ଯ୍ୟାସ୍ତ ପୂର୍ବରୁ ବନ୍ଦ ହୋଇଯାଏ। ସାରା ରାତି ଦ୍ୱାର ଫାଟକରେ ଆଲୁଅ ଜଳୁଥାଏ। ହିଜଡ଼ାମାନେ ଏ ହାରେମର ମୁଖ୍ୟ ତତ୍ତ୍ୱାବଧାରକ। ସେମାନେ ପ୍ରବେଶଦ୍ୱାରର ଜଗୁଆଳି। ନୋବେଲ ଅଫିସରମାନଙ୍କ ସ୍ତ୍ରୀମାନେ ସମୟ ସମୟରେ ହାରେମକୁ ଯିବାକୁ ଇଚ୍ଛା କରନ୍ତି। ସେପରି ହେଲେ ସେ ପ୍ରଥମରେ ହାରେମ ଅଫିସକୁ ଅନୁମତି ପାଇବାପାଇଁ ଅନୁମତିପତ୍ର ଦିଅନ୍ତି। ଅନୁମତି ପତ୍ର ସ୍ୱିକୃତି ପର୍ଯ୍ୟନ୍ତ ସେମାନଙ୍କୁ ଅପେକ୍ଷାକରିବାକୁ ପଡ଼େ। ଅନ୍ତେବାସୀଙ୍କ ଦେହର ଯତ୍ନନୋବପାଇଁ ଡାକ୍ତର ନିଯୁକ୍ତ ହୋଇଥାନ୍ତି। ମାଇନା ପାଇଁ ଅନ୍ତେବାସୀମାନଙ୍କୁ ଗେଟ ବାହାରକୁ ଅଣାଯାଏ। ଯେଉଁ ରୋଗୀ ବାହାରକୁ ଆସିବାପାଇଁ ଅସମର୍ଥ ସେମାନଙ୍କ ପାଇଁ ଡାକ୍ତର ହାରେମ ଭିତରକୁ ଯାନ୍ତି। ଜଣେ ଉଇରୋପିଆନ ଡାକ୍ତର ଫ୍ରାନସିସ୍ ବରନିଅର ତାଙ୍କ ନିଜ ଅଭିଜ୍ଞତା ବର୍ଣ୍ଣନା କରି କହିଥିଲେ କି ତାଙ୍କୁ ହାରେମ ଭିତରକୁ ନେବା ସମୟରେ ମୁଣ୍ଡଠାରୁ ପାଦ ପର୍ଯ୍ୟନ୍ତ ମୋଟା ଚାଦରରେ ଘୋଡ଼ାଇ, ଅନ୍ଧଲୋକ ଭଳି ହାତଧରି ଭିତରକୁ ନିଆଗଲା। ଡାକ୍ତରମାନଙ୍କୁ ଉଚିତ ଭରଣା ମଧ୍ୟ କରାଯାଇଥାଏ।

ହାରେମ୍‌ରେ ଥିବା ସ୍ତ୍ରୀ ଲୋକଙ୍କ ମନ ମୋହିବାପାଇଁ ନାଚବାଲି, ଗୀତବାଲିର ବନ୍ଦୋବସ୍ତ ହୋଇଥାଏ। ବୟସ୍କ ପାର ହୋଇଯାଇଥିବା ସ୍ତ୍ରୀଲୋକେ ଗୀତ ଶୁଣି, ପାନଚୋବାଇ ଅନ୍ୟମାନଙ୍କୁ ଗପ କହି, ନିଜ ମୁହଁକୁ ଦର୍ପଣଲଗା ଆଙ୍ଗୁଠି ମୁଦିରେ

ଦେଖି ଦିନ କାଟନ୍ତି। ଅନ୍ୟ ସ୍ତ୍ରୀ ଲୋକମାନେ, ପରସାବାଲା, ଶିକ୍ଷିତ, ବାହାର ଦୁନିଆ ସହିତ ସଂପର୍କ ରଖି ହାରେମ୍ ଭିତରେ ବ୍ୟବସାୟରେ ମଧ୍ୟ ଲିପ୍ତ ଥାନ୍ତି। ଦୂର ପୁରୁଷ ସଂପର୍କୀୟମାନେ, ବିଶେଷ ଭାବରେ ନିଯୁକ୍ତି ପାଇଥିବା ଅଫିସରମାନଙ୍କ ସହ ବାହାର ଦୁନିଆରେ ବ୍ୟବସାୟ ସୂତ୍ରରେ ବାନ୍ଧି ହୋଇଯାନ୍ତି। ଦେଶ ଭିତରେ ବ୍ୟବସାୟ ଛଡ଼ା ବାହାର ଦେଶରେ ମଧ୍ୟ ବ୍ୟବସାୟ ପାଇଁ ସଂପର୍କ ରଖିଥାନ୍ତି। ଜାହାଜ ବ୍ୟବସାୟ ମଧ୍ୟ କରିପାରନ୍ତି। କ୍ୟାପଟେନମାନଙ୍କ ସାହାଯ୍ୟରେ ଆରବିୟ ଓ ଅନ୍ୟାନ୍ୟ ଦେଶ ସହିତ ଭାରତୀୟ ଦ୍ରବ୍ୟର ବ୍ୟବସାୟ ମଧ୍ୟ ଚଳାଇ ପାରନ୍ତି।

ନୁରଜାହାଁ ଜଣେ ଦକ୍ଷ, ଶିକ୍ଷିତ, ବ୍ୟବସାୟୀ, ବୁଦ୍ଧିମତୀ ନାରୀ। ଅନ୍ୟମାନେ ମଧ୍ୟ ନିଜ ଦେଶାରୁ ବ୍ୟବସାୟଗତ କାର୍ଯ୍ୟ ଚଳାଇପାରନ୍ତି। ସମୟ ସମୟରେ ଜମି ମଧ୍ୟ ସେମାନେ ଦାନ ହିସାବରେ ଗ୍ରହଣ କରିଥାନ୍ତି। ଏ ଜମିର କ୍ରୟ ବିକ୍ରୟ ମଧ୍ୟ ହାରେମରେ ଥାଇଁ କରିପାରନ୍ତି। ଏ ପ୍ରକାର ଦେଣନେଣରେ ଯେଉଁ ଲାଭ ମିଳେ, ସେ ଲାଭକୁ ମଧ୍ୟ ପୁଣି ବ୍ୟବସାୟରେ ଲଗାନ୍ତି। ଭାଗ୍ୟଲକ୍ଷ୍ମୀ ତାଙ୍କ ହାତ ମୁଠାରେ। ପ୍ରାୟ ସମସ୍ତେ ଧନୀ। ଅନେକ ଆମୋଦ ପ୍ରମୋଦ, ଖାଇବା ପିଇବା, ବଡ଼ ବଡ଼ ପାର୍ଟି କରି ପଇସା ମଧ୍ୟ ଖର୍ଚ୍ଚ କରନ୍ତି। ଅନ୍ୟମାନଙ୍କୁ ଦାନ ଧର୍ମ ମଧ୍ୟ କରନ୍ତି। ନିଜ ନିଜ ନାଁରେ ନୂଆ ଘର ତୋଳାଇବାରେ ମଧ୍ୟ ଏମାନେ ସମର୍ଥ। ଏ ହାରେମ ନିଜ ନିୟମରେ ନିଜେ ବିତ୍ତଶାଳୀ। ବିତ୍ତର ତତ୍ତ୍ୱାବଧାରକ ଜଣେ ଉଚ୍ଚ ପରିବ୍ରାଜକ କହିଛନ୍ତି ନୁରଜାହାଁ ଦାମି ଦାମି ଅଟ୍ଟାଳିକା ବିଭିନ୍ନ ଜାଗାରେ ତିଆରି କରାଇଛନ୍ତି। ପରିବ୍ରାଜକ ଓ ବ୍ୟବସାୟୀମାନଙ୍କ ପାଇଁ ଆନନ୍ଦଦାୟକ ବଗିଚା ମଧ୍ୟ ତିଆରି କରିଛନ୍ତି। ପ୍ରାସାଦ ମଧ୍ୟ ଗଢ଼ାଇଛନ୍ତି ଏପରି ପ୍ରାସାଦ ଆଜିପର୍ଯ୍ୟନ୍ତ କେହି ଗଢ଼ାଇ ପାରିନାହାନ୍ତି। ଆଗ୍ରା ରେଡଫୋର୍ଟର ରାଜକୀୟ ହାରେମର ମନୋହର ଅଟ୍ଟାଳିକା ଭିତରେ ମମତାଜ ଶାନ୍ତିରେ ବସବାସ କଲେ। ଶାହାଜାହାଁଙ୍କ ଅନେକ ଜାଗା ପରିଭ୍ରମଣ କରିବାର ଆନନ୍ଦ ଲାଭ କଲେ। ପରେ ଏ ହାରେମର ସୁରକ୍ଷିତ ଶାନ୍ତିପୂରଣ ବାତାବରଣ ଭିତରେ ରହିଲେ। ପ୍ରାୟ ୧୦୦ ଜଣ ଖଣ୍ଡ ସ୍ତ୍ରୀ ଦାସୀଙ୍କ ଗହଣରେ। ନୁରଜାହାଁ ଯେଉଁଠି ରାଜୁତି କରିଥିଲେ ସେ ସ୍ଥଳ ବର୍ତ୍ତମାନ ମମତାଜଙ୍କର। ଶାହାଜାହାଁ ଥିଲେ କଳାର ଉପାସକ। ବସ୍ତୁବିଦ୍ୟାର ପ୍ରୋତ୍ସାହକ। ନିଜ ଇଚ୍ଛା ମୁତାବକ ସବୁ ଅଟ୍ଟାଳିକା, ପ୍ରାସାଦ ସବୁ ପୁର୍ନନିର୍ମାଣ ଆଗ୍ରହ ଅନେକ ବେଶି। ଏହି ଯୋଜନାପାଇଁ ସେ

ଆଗ୍ରାଫୋର୍ଟରେ ମଧ୍ୟ ଅନେକ ବଡ଼ ବଡ଼ ଅଗଣା, ଅନେକ ଅପ୍ରାକୃତିକ ପାଣିଝର ମଧ୍ୟ ତିଆରି କରିଥିଲେ। ମମତାଜ ମଧ୍ୟ ହାରେମର ଛାତଉପରେ ଯମୁନାକୁ ମୁହଁକରି ଏକ ଆନନ୍ଦପ୍ରଦ ଘର ତିଆରି କଲେ। ତାଙ୍କ ବସ୍ତୁବିଦ୍ୟାର ଜ୍ଞାନର ଏକମାତ୍ର ନମୁନା। ବର୍ତ୍ତମାନ ଏହାର ନାମ ଜାହାରାବାଗ, ରାମବାଗର ଦକ୍ଷିଣରେ ଅବସ୍ଥିତ। ମମତାଜଙ୍କ ପିଲାମାନଙ୍କର ଲଗାଲଗି ଅନେକ କୋଠରୀ ହାରେମରେ ଥିଲା। ହାରେମର ନିଜସ୍ୱ ଜୀବନଶୈଳୀ, ଶାସନପ୍ରଣାଳୀ, ଅର୍ଥନୀତି, ରାଜନୀତି ସବୁ ସେହିଠାରେ ବିଦ୍ୟମାନ ଥିଲା। କେବଳ ସବୁ ଥିଲା ସମ୍ରାଟଙ୍କ ନିର୍ଦ୍ଦେଶ ଅନୁସାରେ।

**ସମ୍ରାଟ ଶାହାଜାହାଁଙ୍କ ମୃତ୍ୟୁ–**

ବନ୍ଦୀ ଜୀବନ ଦିନପରେ ଦିନ ଗଡ଼ିଚାଲିଲା। ଭାବିଲେ 'ଏ ଜୀବନର ଧାରା ଅନ୍ୟଥା ସମ୍ଭବ ନୁହେଁ। ଉପଯୋଗ କରିବାପାଇଁ ଚେଷ୍ଟା କଲେ।' ବାହାରକୁ ଯିବା, ବାହାର ଦୁନିଆ ସହିତ ସଂପର୍କ ରଖିବା କୌଣସି ଚିଠିପତ୍ର ଆଦାନ ପ୍ରଦାନ କରିବା ସମ୍ଭବ ନ ଥିଲା। କିନ୍ତୁ ଯୋଗାଇ ଦିଆଯାଇଥିଲା କୋରାନ ଆବୃତ୍ତି ଶୁଣିବାପାଇଁ ମୌଲବୀ ଗୀତର ସୁରେ ସୁରେ ନିଜକୁ ହଜାଇ ଦେବାପାଇଁ ଗୀତବାଲି, ନାଚର ଉନ୍ମାଦନା ଭିତରେ ସମୟ ବିତାଇବାପାଇଁ ନାଚବାଲି, ଭୋଜନ ପାଇଁ ବ୍ୟବସ୍ଥା। ଆଉ ଯତ୍ନ ନେବାପାଇଁ ଜାହାନ୍ନାରା। ଏଇଟା ଥିଲା Bernierଙ୍କ ମତ। କିନ୍ତୁ ମାନୁସିଙ୍କ ଥିଲା ଅନ୍ୟରକମର। ସମ୍ରାଟ କେବଳ ଗୋଟାଏ ଝରକାରୁ ଦେଖୁଥିଲେ ତାଜମହଲର ଅପରୂପ ସୌନ୍ଦର୍ଯ୍ୟ ଆଉ ହୁଏତ ସ୍ମୃତିପଟରେ ଝଲସି ଉଠୁଥିବ ମମତାଜଙ୍କ ଚେହେରା। ଆଉ ଅନାଉଥିଲେ ଯମୁନା ନଦୀର ବୋହିଯାଉଥିବା ପାଣିର ଧାରାକୁ। ଶୁଣୁଥିଲେ ସେ ଧାରାର କଳକଳ ନାଦ। ଅନୁଭବ କରୁଥିଲେ ତାଙ୍କ ଆଖି ଲୁହ ଦେଇ ଦୁଃଖର ମୁକ୍ତା ସବୁ ସେ ପାଣିରେ ବୋହିଯାଉଥିଲା। ପୁଣି ଦେଖୁଥିଲେ ତାଜମହଲ ଉପରେ ସୂର୍ଯ୍ୟ ଦେବତାଙ୍କ ବିମୋହିତ କରୁଣା ଚାରି। ତନ୍ମୟ ହୋଇଯାଉଥିଲେ ବନ୍ଦୀ ସମ୍ରାଟ ଶାହାଜାହାଁ। ଏ ତନ୍ମୟତାକୁ ହୃଦୟ ଓ ମନ ଗ୍ରହଣ କରି ନେଇଥାଇପାରେ। କିନ୍ତୁ ବୟସ ଓ ଶରୀର କେତେଦିନ ତା ସହ୍ୟ କରିପାରିଥାନ୍ତା ? କେତେଦିନ ଆଉ ତାଜମହଲର ସୌନ୍ଦର୍ଯ୍ୟର ଉପାସନା ଆଖି ଲୁହରେ ଜତାଇ ଧରି ରଖିପାରିଥାନ୍ତେ ? କେତେଦିନ ପଦେ ପଦେ ବଧୂ ବିଧୁରା ହୋଇ ସ୍ୱପ୍ନରେ ଭାସି ଭାସି ଜୀବନକାଟି ପାରିଥାନ୍ତେ ? ନିଜକୁ ନିଜର ସୃଷ୍ଟିର ଏ ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ କରିପାରିଥାନ୍ତେ ?

ବିଦ୍ରୋହ କଲା ଶରୀର। ୧୬୬୬ ମସିହାର କଥା। ଜ୍ୱର ଓ ଡିସେଣ୍ଟ୍ରି ରୋଗରେ ଆକ୍ରାନ୍ତ ହେଲେ ସମ୍ରାଟ। ବୟସ ୭୩। ମନ ବିବ୍ରତ। ନିଜ ପିଲାଙ୍କର ରାଜ୍ୟପାଇଁ କଳହରେ ଶରୀରଟାକୁ କେତେଦିନ ଆଉ ସମ୍ଭାଳି ରଖିପାରିଥାନ୍ତେ। ଜ୍ୱର ବା ଡିସେଣ୍ଟ୍ରି– ଉପଶମ ନାହିଁ। ୨୨ ଜାନୁୟାରୀ ୧୬୬୬। ପରିଚାରିକାମାନଙ୍କୁ ବିନମ୍ର ନିବେଦନ କଲେ ତାଙ୍କୁ ସ୍ଥାନାନ୍ତରିତ କରି ଆଉ ଏକ ଝରକା ପାଖକୁ ନେଇଯିବାପାଇଁ। ନିକଟରେ କ୍ରନ୍ଦନରତା ଜାହାନ୍ନାରା। ଭାବନାରେ ତାଜମହଲର ମନୋହରା ସୌନ୍ଦର୍ଯ୍ୟ। ହୃଦୟରେ ମମତାଜଙ୍କ ସ୍ମୃତିରଖି ପ୍ରାଣତ୍ୟାଗ କଲେ ସମ୍ରାଟ ଶାହାଜାହାଁ। ପଛରେ ରହିଲା ନିଜର କଳାକୃତି ଭବିଷ୍ୟତ ବଂଶଧରଙ୍କ ପାଇଁ। ସକାଳର ସୂର୍ଯ୍ୟ ସବୁଦିନ ପରି ଦେଖାଦେଲେ ଆକାଶରେ। କିନ୍ତୁ ଅନୁଭବ କରିବାପାଇଁ ନ ଥିଲେ ଶାହାଜାହାନ। ସେ ବି ଶୋଇଗଲେ ମମତାଜଙ୍କ ପାଖରେ। ପରିବାର ଭିତରୁ ଥିଲେ ଜାହାନ୍ନାରା। ଔରଙ୍ଗଜେବ ମଧ୍ୟ ଆସିଲେ ନାହିଁ।



# ଔରଙ୍ଗଜେବ

ଔରଙ୍ଗଜେବ ଦାରାଙ୍କ ଶତ୍ରୁ ଥିଲେ କେବଳ କ୍ଷମତା ଆଶା ପାଇଁ ନୁହେଁ। ଔରଙ୍ଗଜେବ ବିଶ୍ୱାସ କରୁଥିଲେ ଯେ ଇସଲାମ ଧର୍ମବିଶ୍ୱାସକୁ ଦାରା କୁଠାରଘାତ କରୁଛନ୍ତି।

ସମ୍ରାଟ ଶାହାଜାହାଙ୍କ ପାଇଁ ଉପଯୁକ୍ତ ରାଜପୁତ୍ର ଭାବରେ ଦାରାଙ୍କ ଦାୟିତ୍ୱ ଥିଲା ବିଦ୍ରୋହ ଦମନ କରିବା। ସେଥିପାଇଁ ତାଙ୍କ ପାଖରେ ସବୁ ସୁଯୋଗ ଥିଲା ବୋଲି ସେ ବିଶ୍ୱାସ କରୁଥିଲେ। ତାଙ୍କର ଯୋଜନା ଥିଲା ପ୍ରଥମେ ଦାକ୍ଷିଣାତ୍ୟରେ ମୁରାଦ ଓ ଔରଙ୍ଗଜେବଙ୍କୁ ଦବାଇବେ। ପରେ ପୂର୍ବପଟେ ସୁଜାଙ୍କ ସଂଗେ ଲଢ଼ିବେ। ତାଙ୍କୁ ସମୟ ମିଳିଥିଲା ତିନିମାସ।

ଯେତେବେଳେ ସୁଜା ଆଗ୍ରାକୁ ଆସୁଛନ୍ତି ବୋଲି ଖବର ମିଳିଲା ଦାରା ଶାହାଜାହାଁଙ୍କ ଅନୁମତି ନେଇ ମୋଗଲ ସେନା ସୁଜାଙ୍କ ବିରୁଦ୍ଧରେ ପଠାଇଲେ। ମୋଗଲ ସେନା ବେଶି ବଡ଼ ନଥିଲା। ୨୦,୦୦୦ ଘୋଡ଼ା ସବାର, ୨୦୦୦ ସୈନ୍ୟ ତାଙ୍କ ହାତରେ ଥିଲା। କମାଣ୍ଡର ଥିଲେ ଦାରାଙ୍କ ବଡ଼ପୁଅ. ସୁଲେମାନ।

ମୁରାଦ ଓ ଔରଙ୍ଗଜେବ, ସେ ପର୍ଯ୍ୟନ୍ତ ବିଦ୍ରୋହ କରି ନଥିଲେ। ସେ ଦୃଷ୍ଟିରୁ ସୁଜାହିଁ ଏକମାତ୍ର ଶତ୍ରୁ।

ସୁଜାଙ୍କୁ ଦମନ କରିବା ପରେ, ଅନ୍ୟ ଦୁଇଭାଇଙ୍କ ପାଇଁ ସେ ସମୟ ପାଇବେ ବୋଲି ଆଶା କରିଥିଲେ। ସେଥିପାଇଁ ଅଳ୍ପ ସଂଖ୍ୟକ ସେନା ଦେଇ ଦୁଇଟା ବାହିନୀ ପଠାଇଲେ। କାସିମ ଖାଁଙ୍କ ନେତୃତ୍ୱରେ ଗୁଜରାଟକୁ ଗୋଟାଏ ଦଳ ଓ ରାଜା ଯଶୋବନ୍ତ ସିଂଙ୍କ ନେତୃତ୍ୱରେ ମାଲୱାକୁ ଆଉ ଗୋଟାଏ ଦଳ ପଠାଇଲେ। ମାଲୱାରେ ସାୟସ୍ତ ଖାଁ ରାଜୁତି କରିଥିଲେ ଓ ଔରଙ୍ଗଜେବଙ୍କ ଖାସ ଦୋସ୍ତ ଥିଲେ। ସୁଜାଙ୍କ ଉପରେ ସୁଲେମାନ ଆକ୍ରମଣ କଲେ। ସୁଜାଙ୍କୁ ଗୋଡ଼ାଇ ଗୋଡ଼ାଇ ପ୍ରାୟ ଦଶସପ୍ତାହ ସମୟ କଟିଗଲା। ସେଥିପାଇଁ ସୁଲେମାନ ଦାରାଙ୍କୁ ସାହାଯ୍ୟ କରିବା ପାଇଁ ଫେରି ପାରିଲେ ନାହିଁ। କୁହାଯାଏ କି ଶାହାଜାହାଁଙ୍କ ଭୂଲ ନିର୍ଦ୍ଦେଶ ଦାରାଙ୍କୁ ସମ୍ରାଟ ହେବାର ଅନ୍ତରାୟ ହେଲା।

ସୁଜାଙ୍କୁ ଗୋଡାଇ ଗୋଡ଼ାଇ ସୁଲେମାନ ମୁଙ୍ଗେରରେ ପହଞ୍ଚିଲେ। ଠିକ୍ ସେତିକିବେଳେ ଦାରାଙ୍କଠାରୁ ନିର୍ଦ୍ଦେଶ ହେଲା ସୁଲେମାନଙ୍କୁ ସୁଜାଙ୍କ ସହିତ ସନ୍ଧି କରି ଆଗ୍ରା ଫେରି ଆସନ୍ତୁ। କାରଣ ଔରଙ୍ଗଜେବଙ୍କୁ ଦମନ କରିବା ଆବଶ୍ୟକ ଥିଲା।

ସୁଲେମାନ ବଙ୍ଗଳା, ଓଡ଼ିଶା, ପୂର୍ବ ବିହାର ସୁଜାଙ୍କୁ ସମର୍ପଣ କରି ଆଗ୍ରା ଫେରି ଆସିଲେ। କିନ୍ତୁ ସେତେବେଳକୁ ଅନେକ ଡେରି ହୋଇଯାଇଥିଲା। ଔରଙ୍ଗଜେବଙ୍କ ଗତି ମନ୍ଥର ଥିଲା। କିନ୍ତୁ ହଠାତ୍ ଗତି ଚଞ୍ଚଳ ହୋଇଉଠିଲା। ଆଗ୍ରାରୁ ଦକ୍ଷିଣପଟେ  ଚମ୍ବଲ ନଦୀ ଦେଇ ପହଞ୍ଚିଗଲେ। ସେତେବେଳ ପର୍ଯ୍ୟନ୍ତ ସୁଲେମାନ ପହଞ୍ଚି ପାରି ନ ଥିଲେ। ଆଗ୍ରାରୁ ୩୩୦ କିଲୋମିଟର ଦୂରରୁ ସୁଲେମାନ ଖବର ପାଇଲେ କି ଔରଙ୍ଗଜେବଙ୍କ ସହିତ ଦାରାଙ୍କ ଯୁଦ୍ଧ ହେବା ଯୋଗୁଁ ଦାରା ହାରିଯାଇ ଦିଲ୍ଲୀ ପଳାଇ ଯାଇଛନ୍ତି। ସୁଲେମାନ ରାଜା ଜୟସିଂଙ୍କ ଉପଦେଶ ଲୋଡ଼ିଲେ। ରାଜା ଜୟ ସିଂ ଉପଦେଶ ଦେଲେ କି ସେ ଦିଲ୍ଲୀ ଯାନ୍ତୁ ଅଥବା ଆଲ୍ଲାବାଦ ଫେରିଯାନ୍ତୁ। ସେ ନିଜେ କିନ୍ତୁ ସୁଲେମାନଙ୍କ ସହିତ ଗଲେ ନାହିଁ। ଔରଙ୍ଗଜେବଙ୍କ ସହିତ ମିଶିବା ପାଇଁ ଆଗ୍ରା ଗଲେ।

ସୁଲେମାନ ଅନ୍ୟ ଉପାୟ ନ ପାଇ ଅଳ୍ପ ସଂଖ୍ୟକ ସୈନ୍ୟଧରି ଆଲ୍ଲାବାଦ ଗଲେ। ଔରଙ୍ଗଜେବଙ୍କୁ କେହି ରାସ୍ତାରେ ଅଟକେଇ ପାରିଲେ ନାହିଁ। ସୁଲେମାନ ଭାବିଥିଲେ ଗଙ୍ଗା ପାର ହୋଇ ପଂଜାବରେ ଦାରାଙ୍କୁ ମୁକାବିଲା କରିବେ। ତା' ମଧ୍ୟ ହୋଇପାରିଲା ନାହିଁ। ସୁଲେମାନ ପାର୍ବତ୍ୟ ପ୍ରଦେଶକୁ ପଳାଇ ଯାଇଁ ରାଜା ଗରୱାଲଙ୍କ ଆଶ୍ରୟ ନେଲେ।

ରାଜା ଗରେୱାଲ ଆଦର ଅଭ୍ୟର୍ଥନା କରି ସୁଲେମାନଙ୍କୁ ରଖିଥିଲେ। ଏପରିକି ତାଙ୍କର ଜଣେ ସମ୍ପର୍କୀୟଙ୍କ ସହିତ ସୁଲେମାନଙ୍କ ବିବାହ କରାଇ ପ୍ରାୟ ବର୍ଷେ ପର୍ଯ୍ୟନ୍ତ ସୁରକ୍ଷିତ ରହିଥିଲେ।

୧୬୬୧ ବେଳକୁ ଔରଙ୍ଗଜେବଙ୍କ ସିଂହାସନ ଆରୋହଣ ପରେ ଗରେୱାଲ ରାଜାଙ୍କୁ ସୁଲେମାନଙ୍କୁ ହସ୍ତାନ୍ତର କରିବା ପାଇଁ ବାଧ୍ୟ କଲେ।

ସୁଲେମାନଙ୍କୁ ବେନରେ ବାନ୍ଧି ଦରବାରକୁ ଅଣାଗଲା। ଦେଖଣାହାରୀଙ୍କ ହୃଦୟ ବିଦାରିତ ହେଲା। ରାଜପୁତ୍ର ଚେହେରା। ଏପରିକି ହାରେମର ସ୍ତ୍ରୀ ଲୋକମାନେ ପରଦା ଆଢୁଆଳରେ ଥାଇ ଦେଖିଲେ। ଶାହାଜାହାଁଙ୍କ ପ୍ରିୟ ନାତି

ସୁଲେମାନଙ୍କ ଏକମାତ୍ର ଅନୁରୋଧ ଥିଲା । ସାଙ୍ଗେ ସାଙ୍ଗେ ତାଙ୍କୁ ମାରି ଦିଆଯାଉ । ଏପରି ପୌସ୍ତା ପିଆଇ ପିଆଇ ମଣିଷରୁ ପନିପରିବା ପରି କରି ମାରିବାକୁ ଆଦେଶ ଦିଅନ୍ତୁ ନାହିଁ । ଔରଙ୍ଗଜେବ ଶେଷ ଶତ୍ରୁକୁ ହଟାଇ ନେବାକୁ ଇଚ୍ଛୁକ ଥିଲେ । ଦରବାର ସାମନାରେ ମନା କଲେ ବି ତାଙ୍କୁ ପୌସ୍ତା ଦିଆଯିବ ନାହିଁ । କିନ୍ତୁ ଆଦେଶ ଦେଲେ ଗୋଓ୍ୱାଲିଅର ଦୁର୍ଗରେ ତାଙ୍କୁ ଅଟକ ରଖାଯାଇ ପ୍ରତ୍ୟେକ ଦିନ ପୌସ୍ତା ପିଆଇବାକୁ ବାଧ କରାଗଲା ।

ବର୍ଷେ ପର୍ଯ୍ୟନ୍ତ ଏ ଦୌରତ୍ମ୍ୟ ସହି ୧୬୨୨ରେ ମୃତ୍ୟୁ ବରଣ କଲେ । ମଣିଷ ଚେହେରା ନେଇ ପନିପରିବା ମେଣ୍ଢାପରି ମାରିବାକୁ ଦିଆଗଲା । ଶାହାଜାହାଁ କୌଣସି ଉପାୟରେ ଦାରାଙ୍କୁ ପାଖଛଡ଼ା କରିବାକୁ ଇଚ୍ଛୁକ ନଥିଲେ । ବିଦ୍ରୋହୀ ପୁତ୍ରମାନଙ୍କୁ ଆଗ୍ରାକୁ ଆସି ଶାନ୍ତିରେ ଚୁକ୍ତି କରିବା ଇଚ୍ଛାରେ ଥିଲେ । ସେଥିପାଇଁ ସେ ମଝିରେ ରହି ନିଜର ଭାଷଣ ଓ ଦକ୍ଷ ପରିଚାଳନା ଦ୍ୱାରା ଏହା କରିପାରିବେ ବୋଲି ଆଶା ପୋଷଣ କରିଥିଲେ । କିନ୍ତୁ ଏ ଯୋଜନା ସଫଳ ହେଲା ନାହିଁ ।

ଔରଙ୍ଗଜେବ ଆଗ୍ରାକୁ ଆସିବା ରାସ୍ତାରେ ଜାହାନ୍ଆରାଙ୍କ ପାଖରୁ ଏକ ଚିଠି ପାଇଲେ ଲେଖାଥିଲା; ଶାହାଜାହାଁ ଭଲ ଅଛନ୍ତି । ତୁମେମାନେ ଆସି ତାଙ୍କୁ ଶାନ୍ତିରେ ଦେଖା କରିପାର । ଉତ୍ତରରେ ଔରଙ୍ଗଜେବ ଲେଖିଲେ; ଦାରା ବିରୁଦ୍ଧରେ ଯୁଦ୍ଧ ନ କଲେ ମଧ୍ୟ ମୋ' ନିଜର ପ୍ରତିରକ୍ଷା ପାଇଁ ମୁଁ ଏପରି ଯୁଦ୍ଧର ଯୋଗାଡ଼ କରୁଛି । ମୁଁ ବାପାଙ୍କ ସହିତ ଦେଖା କରିବି କିନ୍ତୁ ରାସ୍ତାରେ କୌଣସି ବାଧା ଆସିବାକୁ ଦେବି ନାହିଁ ।

ତାଙ୍କର ଦାବି ଥିଲା କି ଦାରାଙ୍କୁ ପଞ୍ଜାବ ପଠାଇ ଦିଆଯାଉ ।ଶାହାଜାହାଁ ଦାରାଙ୍କ ଠାରୁ ବିଚ୍ୟୁତ ହେବା ପାଇଁ ଇଚ୍ଛା କଲେ ନାହିଁ । ଦାରା ଯୁଦ୍ଧରେ ଜୟଲାଭ କରିବେ ଏ ବିଶ୍ୱାସ ଶାହାଜାହାଁଙ୍କର ନ ଥିଲା । ଯଦି ଓ ଦାରାଙ୍କ ପାଖରେ ୫୦,୦୦୦ ସୈନ୍ୟ ଓ ଅନେକ ବନ୍ଧୁକ ଓ ହାତୀ ଥିଲେ । ତେବେ ବି କେହି ଯୋଦ୍ଧା ବା ସୈନିକ ନ ଥିଲେ । ବାହାରୁ ସେନା ଭଳି ଦେଖାଯାଉଥିଲେ ମଧ୍ୟ ସୈନିକମାନେ ଯୁଦ୍ଧ ବିଦ୍ୟାରେ ନିପୁଣ ନ ଥିଲେ । ଆଉ ଦାରାଙ୍କ ଛାଉଣୀରେ ଔରଙ୍ଗଜେବଙ୍କ ବହୁତ ବନ୍ଧୁ ଥିଲେ ।

ମେ ୨୮ରେ ଦାରା ଅଭିଯାନ ଆରମ୍ଭ କଲେ । ଶେଷଥର ପାଇଁ ଶାହାଜାହାଁଙ୍କ କଥା ଅମାନ୍ୟ କଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ସୁଲେମାନ ମଧ୍ୟ ଆଗ୍ରାକୁ ଫେରି ନଥିଲେ ।

ଦାରାଙ୍କ ଯୁଦ୍ଧଯାତ୍ରା ଆରମ୍ଭ ହେଲା। ୪ ଦିନ ପରେ ଚମ୍ବଲର ଉତ୍ତରରେ ଦଲାଲପୁରରେ ପହଞ୍ଚିଲେ। ସୁଲେମାନ ନ ଫେରିବା ପର୍ଯ୍ୟନ୍ତ ଔରଙ୍ଗଜେବଙ୍କୁ ଆକ୍ରମଣ ନ କରିବାର ଯୋଜନାରେ ଥିଲେ ଦାରା।

ଗୋଓ୍ୱାଲିୟର ପୂର୍ବପଟେ ୬୫ କିଲୋମିଟର ଯାତ୍ରା କଲେ ଓ୍ୱରଙ୍ଗଜେବ। ରାସ୍ତାରେ ଅନେକ ସୈନ୍ୟଙ୍କୁ ହରାଇଲେ। କିନ୍ତୁ କୌଣସି ପ୍ରତିଆକ୍ରମଣର ସମ୍ମୁଖୀନ ନ ହୋଇ ସେ ଆଗେଇ ଚାଲିଲେ। ଆଶା ଥିଲା ଏପରି କୌଣସି ପ୍ରତି ଆକ୍ରମଣ ସମ୍ମୁଖୀନ ନହୋଇ ସେ ଆଗ୍ରାରେ ପହଞ୍ଚିଯିବେ। ସାମୋଗଡ଼ ପାଖରେ ଆଗ୍ରାଠାରୁ ୧୩ କିଲୋମିଟର ଦୂରତାରେ ଦାରା ଔରଙ୍ଗଜେବଙ୍କ ସୈନ୍ୟବାହିନୀଙ୍କୁ ଆକ୍ରମଣ କଲେ।

୭ ଜୁନରେ ଔରଙ୍ଗଜେବ ମଧ୍ୟ ତାଙ୍କ ବିରାଟ ସେନାବାହିନୀ ନେଇ ସେଠାରେ ପହଞ୍ଚିଲେ। ଦାରା ହଠାତ୍ ଆକ୍ରମଣ କଲେ। ହୁଏତ ଏ ଆକ୍ରମଣଟା ଭଲ ହୋଇଥାନ୍ତା। କିନ୍ତୁ ଦାରାଙ୍କ ସ୍ୱଭାବ ଜାଣି ସେଇଟା ଶୁଭମହୂର୍ତ୍ତ ନୁହେଁ ବୋଲି କେତେକ ଲୋକ ତାଙ୍କୁ ବାରଣ କଲେ।

ଦାରା ଯୁଦ୍ଧ ବନ୍ଦ କଲେ। କିନ୍ତୁ ତାଙ୍କୁ ଯୁଦ୍ଧର ସଠିକ୍ ପ୍ରଣାଳୀ ଜଣା ନ ଥିଲା। ତା' ଛଡ଼ା ବାପାଙ୍କ ଠାରୁ ଚିଠି ପାଇଲେ କି ସୁଲେମାନ ଆସିବା ପର୍ଯ୍ୟନ୍ତ ଦାରା ଆଗ୍ରାରେ ହିଁ ରୁହନ୍ତୁ। ଅପେକ୍ଷା କଲେ ଦାରା। ଔରଙ୍ଗଜେବ ମଧ୍ୟ ଅପେକ୍ଷା କଲେ। ସେ ଦିନର ତାପମାତ୍ରା ଅନେକ ବେଶି ଥିଲା। ବହୁତ ବଳବାନ ଲୋକମଧ୍ୟ ସେ ଗରମରେ ପ୍ରାଣ ହରାଇଲେ।

ଆରମ୍ଭ ହେଲା ଦୁଇଭାଇଙ୍କର ବନ୍ଧୁକ ଚାଳନା। କିଛି ସମୟ ପାଇଁ ଯୁଦ୍ଧ ହେବା ପରେ ଦୁଇପଟର ଯୁଦ୍ଧ ବନ୍ଦ ହେଲା। କିନ୍ତୁ ହଠାତ୍ ଦାରାଙ୍କ ପଟୁ ତାଙ୍କ ସିପିଅର ସୁକୋଙ୍କ ଓ ଯୋଦ୍ଧା ରୁସ୍ତମ ଖାଁଙ୍କ ନେତୃତ୍ୱରେ ୧୦,୦୦୦ ସୈନ୍ୟ ଧରି ଯୁଦ୍ଧ ଆରମ୍ଭ କରିଦେଲେ। ଝପଟି ପଡ଼ିଲେ ଔରଙ୍ଗଜେବ ସୈନ୍ୟବାହିନୀ ଉପରେ ପ୍ରତି ଆକ୍ରମଣ କରିବା ପାଇଁ। କ୍ଷୟକ୍ଷତି ହେଲା। ରୁସ୍ତମ ସୈନ୍ୟ ବାହିନୀ ଭିତରକୁ ପଶିଆସି ଔରଙ୍ଗଜେବଙ୍କ ଉପରକୁ ମାଡ଼ି ଆସିଲେ। ହୁଏତ ଏଇଠି ଯୁଦ୍ଧ ଶେଷ ହୋଇଯାଇଥାନ୍ତା। କିନ୍ତୁ କ'ଣ ଘଟିଲା କିଏ ଜାଣେ। ରୁସ୍ତମଙ୍କୁ ହତ୍ୟା କରାଗଲା। ଓ ସିପିଅର ପଛକୁ ହଟିଗଲେ।

ଔରଙ୍ଗଜେବଙ୍କ ସହ ଥିଲେ ମୁରାଦ। ଏ ସମୟରେ ରାଜପୁତମାନଙ୍କ ନେତୃତ୍ୱରେ ମୁରାଦଙ୍କ ଉପରେ ତୀର କ୍ଷେପଣ କଲେ। ଅନେକ ତୀର ତାଙ୍କ ଦେହରେ ବାଜିଲା। ତାଙ୍କ ହାଉଦାରେ ତୀରର ଛାଉଣୀ ହୋଇଗଲା। ଭୟ ହେଲା ମୁରାଦ ଫେରିଯିବେ। ଏତିକିବେଳେ ଔରଙ୍ଗଜେବ ମୁରାଦଙ୍କ ରକ୍ଷା ପାଇଁ ଚାଲିଆସିଲେ।

ହାତୀ ଉପରେ ବସିଥିବା ଔରଙ୍ଗଜେବଙ୍କୁ ଆକ୍ରମଣ କଲେ ରାଜା ରୂପ ସିଂହ। ହାଉଦା ରକ୍ଷାକାରି ବନ୍ଧା ରସି ଉପରେ ଆଘାତ କଲେ। କିନ୍ତୁ ଗାର୍ଡ଼ ସୈନିକମାନେ ରୂପସିଂକୁ ଦଳି ଚକଟି ଦେଲେ।

ପରକ୍ଷଣରେ ଦାରା ପ୍ରାୟ ୨୦,୦୦୦ ଅଶ୍ୱାରୋହୀଙ୍କୁ ନେଇ ଯୁଦ୍ଧକ୍ଷେତ୍ରରେ ମଝିକୁ ପଶିଆସିଲେ। ନିର୍ଦ୍ଦେଶ ଦେବାର ଦକ୍ଷତା ଅଥବା ଯୁଦ୍ଧ କ୍ଷେତ୍ରର ନିୟମ ସବୁ ଜଣା ନଥିଲା ଦାରାଙ୍କୁ। ସେ ରୁସ୍ତମଙ୍କ ପରେ ପରେ ନିଜ ସେନାବାହିନୀ ଠିଆ କରିଦେଲେ। ଦାରା ହୁଏତ ବିଜୟ ସନ୍ଦେଶ ପାଇଥିଲେ। ନିଜର ଜୟଯାତ୍ରା ଘୋଷଣା ପାଇଁ ନିଜକୁ ସାମିଲ କରିବା ପାଇଁ ଏ ପଦକ୍ଷେପ ନେଇ ପାରିଥାନ୍ତି।

ଯୁଦ୍ଧ ଜୟ ହୁଏତ ତାଙ୍କ ସପକ୍ଷରେ ହୋଇପାରିଥାନ୍ତା। ରୁସ୍ତମକୁ ସାହାଯ୍ୟ କରିବା ପାଇଁ ସେ ବାଁ ପଟକୁ ଢଳିଗଲେ। ଠିକ୍ ସେ ସମୟରେ ଶତ୍ରୁପକ୍ଷର ବାଣମାଡ଼ରେ ସେ ଅସ୍ତବ୍ୟସ୍ତ ହୋଇପଡ଼ିଲେ। ତାଙ୍କ ସୈନ୍ୟବାହିନୀଙ୍କୁ ଆଗେଇବା ପାଇଁ ଆଦେଶ ଦେଲେ। କିନ୍ତୁ ତାଙ୍କ ସୈନ୍ୟମାନେ (ଯେଉଁମାନଙ୍କ ପ୍ରକୃତରେ ଜନ ସାଧାରଣ- ମାଂସକଟାଳି, ବଢ଼େଇ, ବାରିକ ଇତ୍ୟାଦି ଶ୍ରେଣୀୟ ଲୋକ) ସେନାବାହିନୀ ଛାଡ଼ି ପଳାଇଲେ। ଦାରାଙ୍କର ଇଚ୍ଛାଥିଲା ଔରଙ୍ଗଜେବଙ୍କୁ ମୁହାଁ ମୁହିଁ କରିବେ।

ପରିବର୍ତ୍ତନ ହେଲା ଯୁଦ୍ଧର।

ସବୁ ଘଟଣା ହେଲା ଅଘଟଣା। ରାଜପୁତ ସୈନ୍ୟିକମାନେ ଆକ୍ରମଣରେ ହାତହତ, ରୁସ୍ତକ ମୃତ, ସେନାବାହିନୀ ପଳାତକ, ଏ ଅବସ୍ଥାରେ ତାଙ୍କ ଯୁଦ୍ଧଜୟର ଆଶା କ୍ଷୀଣରୁ କ୍ଷୀଣତର ହୋଇଆସିଲା। ତେବେ ବି ଦାରା ଯୁଦ୍ଧରତ।

ଗୋଟେ ରକେଟ ତାଙ୍କ ହାଉଦାରେ ପଶିଗଲା। ତାଙ୍କ କୁଚକ୍ରୀ ଜେନେରାଲମାନେ ତାଙ୍କୁ ଉପଦେଶ ଦେଲେ କି ସେ ହାତୀରୁ ଓହ୍ଲାଇପଡି ଘୋଡ଼ାରେ ସବାର ହୁଅନ୍ତୁ। ସେମାନଙ୍କ କଥାମାନି ହାତୀରୁ ଓହ୍ଲାଇ ଆସିଲେ ସତ କିନ୍ତୁ ଘୋଡ଼ା ଆଣିବାକୁ ଭୂଲି ଗଲେ।

ଏଇଟା ଗୋଟିଏ ସିଦ୍ଧାନ୍ତର ମୁହୂର୍ତ୍ତ। ଆକବରଙ୍କ ଭଳି ପରାକ୍ରମୀ ବୀର ମଧ୍ୟ ଏପରି କରିଥିଲେ। ଉଚ୍ଚବେଗ ସହିତ ଯୁଦ୍ଧ କଲାବେଳେ। ଏହା ଏକ ବୀରତ୍ୱର ଲକ୍ଷଣ। କିନ୍ତୁ ଦାରାଙ୍କ ଅବସ୍ଥା ଅଲଗା ଥିଲା। ହାତୀରୁ ଓହ୍ଲାଇ ପଡ଼ିବା ତାଙ୍କର ଆତଙ୍କର ଲକ୍ଷଣ -ବୀରର ନୁହେଁ।

ଔରଙ୍ଗଜେବଙ୍କର ବିଜୟର ଲକ୍ଷଣ ଦେଖାଦେଲା। ମନେହେଲା ଦାରାଙ୍କୁ ଔରଙ୍ଗଜେବଙ୍କ ସୈନ୍ୟମାନେ ହାସଲ କରିନେଇଛନ୍ତି। ସମ୍ରାଟଙ୍କ ସେନାବାହିନୀ ପଳାୟନ କଲେ।

ବିଜୟର ଲକ୍ଷଣ ପରାଜୟ ଗ୍ଲାନିରେ ଦେଖାଦେଲା।। ସକାଳେ ଆରମ୍ଭ ହେଇ ଦିପରହବେଳକୁ ବିଜୟ ଔରଙ୍ଗଜେବ ପକ୍ଷରେ। ଦାରା ହରାଇଲେ ୧୦,୦୦୦ ସୈନ୍ୟ।

ଦାରା ଆଗ୍ରାଆଡ଼କୁ ପଳାଇଗଲେ। ପହଞ୍ଚିଲେ ରାତି ଅଧକୁ। ଆଗ୍ରରେ ଶୋକର ଛାୟା। ଯୁଦ୍ଧକ୍ଷେତ୍ରରେ ପରାଜିତ ହୋଇ ଦାରା ଫେରି ଆସିଲେ। ଆଗ୍ରାରେ ଦାରାଙ୍କୁ ଆଶ୍ୱାସନା ଦେଲେ। ଦାରା କିନ୍ତୁ ଏ ଲଜ୍ଜାକର ପରିସ୍ଥିତିରେ ବାପାଙ୍କୁ ମୁହାମୁହି କରିପାରିଲେ ନାହିଁ। ଶହାଜାହାଁଙ୍କୁ କହିଲେ ମୁଁ ଏଠାରେ ରହିଲେ ମୃତ୍ୟୁ ଓ ଲଜ୍ୟା ମୋ ପଛରେ ଗୋଡ଼ାଇବ। ମତେ ବିଦାୟ କାଳୀନ ସମ୍ଭାଷଣ ଦିଅନ୍ତୁ।

ଦାରା ତାଙ୍କ ସ୍ତ୍ରୀ ନଦିରା ବାନୁ ଓ ପିଲାମାନଙ୍କୁ ନେଇ ଅଳ୍ପ କିଛି ସହଚରଙ୍କ ସହିତ ଶାହାଜାହାଁଙ୍କଠୁ ବିଦାୟ ନେଇ ଦିଲ୍ଲୀ ଅଭିମୂଖେ ଯାତ୍ରା କଲେ। ଶାହାଜାହାଁ ଦାରାଙ୍କୁ ଅନେକ ସ୍ୱର୍ଣ୍ଣ ଓ ଅନ୍ୟାନ୍ୟ ସାମଗ୍ରୀ ଦେଇ ବିଦା କଲେ। ଦିଲ୍ଲୀର ଗଭର୍ଣ୍ଣରଙ୍କୁ ଖବର ଦେଲେ କି ସେ ଦାରାଙ୍କୁ ପାଇଁ ରାଜକୋଷ ଉନ୍ମୁକ୍ତ କରିଦେବେ।

ଦିଲ୍ଲୀ ଯିବା ରାସ୍ତାରେ ୫୦୦୦ ଲୋକ ତାଙ୍କ ସହିତ ଯୋଗ ଦେଲେ। ଔରଙ୍ଗଜେବ ସମାଗଡ଼ରେ ବିଜୟର ଧ୍ୱଜା ଉଡ଼ାଇଲେ। ଯୁଦ୍ଧକ୍ଷେତ୍ର ମଝିରେ କାରାପେଟ ପକାଇ ପ୍ରାର୍ଥନା କଲେ। ପରେ ମୁରାଦଙ୍କ ଛାଉଣୀକୁ ଯାଇଁ ତାଙ୍କୁ ପ୍ରଂଶସା କଲେ। ତାଙ୍କପାଇଁ ଔରଙ୍ଗଜେବ ଯୁଦ୍ଧ ଜିଣିଛନ୍ତି ବୋଲି ଜଣାଇଲେ। ପରେ ସେ ଆଗ୍ରା ଅଭିମୁଖେ ଯାତ୍ରା କରେ। ବୋଧହୁଏ ଦାରାଙ୍କ ପାଇଁ। ନୁର-ମନଦିଲ ବଗିଚାରେ ଆଗ୍ରାରେ ରହିଲେ। ଦାରାଙ୍କର ଅନେକ ସୈନ୍ୟ ଔରଙ୍ଗଜେବ ସହିତ ମିଶିଲେ।

ମୂଳ ଲକ୍ଷ ଥିଲା ଶାହାଜାହାଁଙ୍କୁ କିପରି ବ୍ୟବହାର କରିବେ ? ଯୁଦ୍ଧକ୍ଷେତ୍ରରେ ଖଣ୍ଡେ ଚିଠି ଶାହାଜାହାଁଙ୍କ ପାଖକୁ ଲେଖିଥିଲେ। ଲେଥିଥିଲେ କି ଯାହାସବୁ ଘଟିଗଲା

ସେ ସବୁ ଭଗବାନଙ୍କର ନିର୍ଦ୍ଦେଶ ଥିଲା। ଶାହଜାହାଁ ଏହାର ଉତ୍ତରରେ ଔରଙ୍ଗଜେବଙ୍କୁ ଆଲାମଗିରି ଖଣ୍ଡା (ବିଶ୍ୱ ବିଜେତା ଖଣ୍ଡା) ଉପହାର ସ୍ୱରୂପ ପଠାଇଲେ। ଆଉ ଆଗ୍ରାକୁ ନିମନ୍ତ୍ରଣ ଜଣାଇଲେ। କିନ୍ତୁ ଔରଙ୍ଗଜେବ ଭାବିଲେ ଆଗ୍ରାକୁ ତାଙ୍କୁ ନେବା ପାଇଁ ଏହା ଏକ କୌଶଳ ଗଲେ ନାହିଁ। ବଦଳରେ ଦୁର୍ଗ ସମର୍ପଣ କରିଦେବାକୁ ଦାବି କଲେ। ଏ ପ୍ରକାର ଦାବି ଆଗ୍ରାହ୍ୟ କରି ଶାହାଜାହାଁ ଦୁର୍ଗ ଦ୍ୱାର ବନ୍ଦ କରିଦେଲେ। ସେ ସେତେବେଳେ ପୁଅର ଦୟାର ପାତ୍ର ହେବା ପାଇଁ ରାଜି ନ ଥିଲେ।

ଔରଙ୍ଗଜେବ ପିତା ଶାହାଜାହାଁଙ୍କୁ ଦାରାର ଅସତ୍ ବନ୍ଧନରୁ ମୁକ୍ତ କରିବାକୁ ଚାହିଁଥିଲେ। ବର୍ତ୍ତମାନ ତାହା ଅସମ୍ଭବ ଦେଖି ସାମ୍ରାଜ୍ୟକୁ ତାଙ୍କ ଅନୁପଯୁକ୍ତ ବାପାଙ୍କଠୁ ବଞ୍ଚୋଇବା ପାଇଁ ଇଚ୍ଛା କଲେ। ଭାବିଲେ ବର୍ତ୍ତମାନର ଏ ସମସ୍ୟା କେବଳ ତୋପ ଗୁଳିଗୁଳା ବିନିମୟରେ ଜୟ ହୋଇପାରିବ। ଦୁର୍ଗ ଭିତରକୁ ତୋପ ପକାଇବା ଆରମ୍ଭ କଲେ। ଉତ୍ତର ଦିଗରେ ତୋପ ଭିତରୁ ମଧ୍ୟ ତୋପର ଶବ୍ଦ ଶୁଣିଲେ। ଔରଙ୍ଗଜେବଙ୍କ ତୋପଶବ୍ଦ ବନ୍ଦ ହେବାର ବହୁତ ସମୟ ପର୍ଯ୍ୟନ୍ତ ଦୁର୍ଗ ଭିତରୁ ତୋପର ଶବ୍ଦ ଶୁଣାଯାଇଥିଲା।

ଔରଙ୍ଗଜେବ ତାଙ୍କ ଯୋଜନା ବଦଳାଇ ଦେଲେ। ସେଥିରେ ମଧ୍ୟ ଦୁର୍ଗ ଭିତରକୁ ପଶିପାରିଲେ ନାହିଁ। ଶେଷରେ ଦୁର୍ଗ ଭିତରକୁ ଯାଇଥିବା ପାଣିର ସୁବିଧାକୁ କାଟିଦେଲେ। ଶାହାଜାହାଁ ଔରଙ୍ଗଜେବଙ୍କୁ ଲେଖିଲେ;

"ମୋ' ପୁଅ, ମୋ ହିରୋ
କାହିଁକି ମୋ' ଦୁର୍ଭାଗ୍ୟକୁ କରିବ ବିଚାର
ଭଗବାନଙ୍କ ଇଚ୍ଛା ବିରୁଦ୍ଧରେ ପତର ବି ଖସେନ
ଗତକାଲି ମୋ' ପାଖରେ ଥିଲେ ସୈନ୍ୟ ନଅଶହ ହଜାର
ଆଜି ମୁଁ ଖୋଜିବୁଲେ ଚୁନ୍ଦାଏ ଜଳ
ହେ ମୋର ବିଖ୍ୟାତ ପୁତ୍ର, ଗର୍ବ କର ନାହିଁ
ନିଜର ଭଲଭାଗ୍ୟ ପାଇଁ, ଅତି ବିଚିତ୍ର ଏ ସଂସାର।

ଶାହାଜାହାଁଙ୍କ ଲେଖା ପଛରେ ଔରଙ୍ଗଜେବ ଲେଖିଲେ; "ଯେ ଫଳ ବୁଣିବ, ସେ ଫଳ କାଟିବ।" ତା'ପରେ ଲେଖିଲେ ଦୁର୍ଗ ମୋ ଲୋକଙ୍କୁ ସମର୍ପଣ କରିଦିଅ, ତୁମ ଇଚ୍ଛା ମୁଁ ପୁରଣ କରିବି, ତୁମ ଯତ୍ନ ନେବ, ତୁମ କଥାରୁ ବାହାରି ଯିବ ନାହିଁ।

ଶାହାଜାହାଁ ଦୁର୍ଗ ହସ୍ତାନ୍ତର କଲେ ନାହିଁ। ୩ ଦିନ ପର୍ଯ୍ୟନ୍ତ ନିଜେ ଓ ଦୁର୍ଗର ବାସିନ୍ଦାମାନେ ବିନା ପାଣିରେ ରହିଲେ। ତା'ପରେ ଦୁର୍ଗ ହସ୍ତାନ୍ତର କଲେ। ଔରଙ୍ଗଜେବ ଦୁର୍ଗ ଅଧିକାର ପାଇଁ ପୁତ୍ର ମହମ୍ମଦ ସୁଲତାନଙ୍କୁ ପଠାଇଲେ। ଆଦେଶ ଦେଲେ ରାଜକୋଷ ହାତକୁ ନେବେ। ଧନସଂପତ୍ତିକୁ ଅକ୍ତିଆର କରିବେ। ବ୍ୟକ୍ତିଗତ ଘରେ ନଜରବନ୍ଦୀ ରଖିବେ ଶାହାଜାହାଁଙ୍କୁ ଯେପରି କୌଣସି ଭାବରେ ସେ ବାହାର ଦୁନିଆ ସହିତ ସଂପର୍କ ରଖି ପାରିବେ ନାହିଁ। ପୁତ୍ର ମହମ୍ମଦ ତାଙ୍କ ବାପାଙ୍କ ଉପହାର ଶାହାଜାହାଁଙ୍କୁ ଦେଲେ, ଶାହାଜାହାଁ କାନ୍ଦି ପକାଇଲେ। ଔରଙ୍ଗଜେବ କେବେହେଲେ ତାଙ୍କ ବାପାଙ୍କୁ ଦେଖିବାକୁ ଯାଇନାହାନ୍ତି। ଆଠବର୍ଷ ପରେ ଶାହାଜାହାଁଙ୍କ ମୃତ୍ୟୁ ପରେ ତାଙ୍କ କବର ପାଖକୁ ମଧ୍ୟ ଯାଇନାହାନ୍ତି। କିଛି ଦିନ ପରେ ଜାହାନ୍ନାର। ଔରଙ୍ଗଜେବଙ୍କ ନିକଟକୁ ୪ ଭାଇଙ୍କ ମଧ୍ୟରେ ସାମ୍ରାଜ୍ୟ ବାଣ୍ଟିଦେବାର ଯୋଜନାର ପ୍ରସ୍ତାବ ପଠାଇଲେ। ଦାରାଙ୍କ କୌଣସି ଭାଗ ଦେବାପାଇଁ ଔରଙ୍ଗଜେବ ରାଜି ନ ଥିଲେ।

୨୦ ଜୁନରେ ଔରଙ୍ଗଜେବ ଏକ ବିରାଟ ଦରବାର ଡକାଇଲେ। ସେତେଦିନ ପର୍ଯ୍ୟନ୍ତ ସେ ନିଜକୁ ସମ୍ରାଟ ବୋଲି ଘୋଷଣା କରି ନଥିଲେ। ମୁରାଦଙ୍କୁ ଦୃଷ୍ଟିକୋଣକୁ ଆଣିବାର ଆବଶ୍ୟକତା ନଥିଲା ଔରଙ୍ଗଜେବଙ୍କର।

ମୁରାଦଙ୍କୁ ଔରଙ୍ଗଜେବ ବିଶ୍ୱାସ କରାଇଛନ୍ତି କି ଦାରାଙ୍କୁ ରାସ୍ତାରୁ ହଟାଇ ସେ ତାଙ୍କୁ ସିଂହାସନ ଦେବେ। ଆଉ ମୁରାଦ ସମ୍ରାଟ ଭାବରେ ସୁରକ୍ଷିତ ହେଲା ପରେ ସେ ଧର୍ମମାର୍ଗରେ ଚାଲିଯିବେ। ଥରେ ମୁରାଦଙ୍କୁ ଗୋଟେ ଚିଠିରେ ପହସାହଜୀ (ମହାମହିମ ସମ୍ରାଟ) ବୋଲି ସମ୍ବୋଧନ କରି, ନିଜକୁ ହଜରତଜୀ (ଧର୍ମଗୁରୁ) ବୋଲି ଲେଖିଥିଲେ।

ଔରଙ୍ଗଜେବ ସାମ୍ରାଜ୍ୟକୁ ଭାଗ ଭାଗ କରିବାକୁ ଇଚ୍ଛା କରିଥିଲେ। ଭାବିଥିଲେ ମୁରାଦଙ୍କୁ ଆଫଗାନିସ୍ଥାନ, କାଶ୍ମୀର, ପଂଜାବ ଓ ସିନ୍ଧ ଦେଇ ବାକି ଦୁଇତୃତୀୟାଂଶ ନିଜେ ଅଧିକାର କରିବେ ତାଙ୍କ ଭାଗରୁ ଅଧା ସୁଜାଙ୍କୁ ଦେବେ। ଫଳରେ ସମାନ ସମାନ ହୋଇଯିବ। ମୁରାଦ ପ୍ରମାଦ ଗଣିଲେ। ଫଳରେ ଔରଙ୍ଗଜେବଙ୍କ ସହିତ ଦେଖା କରିବା ବନ୍ଦ କରିଦେଲେ।

ମୁରାଦଙ୍କୁ ନେଇ ଦୁଇଭାଇ ଦାରାଙ୍କ ବିରୁଦ୍ଧରେ ଅଭିଯାନ କରିବେ ବୋଲି ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ। କିନ୍ତୁ ମୁରାଦ ଔରଙ୍ଗଜେବଙ୍କ କାର୍ଯ୍ୟକଳାପରେ

ଭୟଭୀତ ଥିଲେ। ସେଥିପାଇଁ ଔରଙ୍ଗଜେବଙ୍କଠୁ କିଛି କିଲୋମିଟର ଦୂରରେ ରହୁଥିଲେ।

ମଥୁରା ପାଖରେ ରହଣିର କଥା। ଦୁଇ ଦଳ ବିଶ୍ରାମ ନେଲେ। ଦିନେ ମୁରାଦ ଶିକାରରୁ ଫେରିବା ବାଟରେ ଔରଙ୍ଗଜେବଙ୍କ ଛାଉଣୀ ବାଟେ ଯାଉଥିଲେ। ଔରଙ୍ଗଜେବଙ୍କ ଲୋକ ପ୍ରତାରଣା କରି ତାଙ୍କୁ ଔରଙ୍ଗଜେବଙ୍କ ନିକଟକୁ ଘେନିଗଲେ। ଭାଇ ଭାଇର ମିଳନ ହେଲା। ବହୁତ ଆଦର ଅଭ୍ୟର୍ଥନା ପାଇଲେ ମୁରାଦ। ଖିଆ ପିଆ ହେଲା। ସାଂଙ୍ଗରେ ମଦ୍ୟପାନ ମଧ କଲେ। କ୍ରୀତଦାସ ମଧ ଦେହ ମାଲିସ କରିବା ପାଇଁ ବନ୍ଦୋବସ୍ତ କରିଦେଲେ। ଅତ୍ୟଧିକ ମଦ୍ୟପାନରେ ନିଦ୍ରିତ ମୁରାଦଙ୍କୁ ଅସ୍ତ୍ରହୀନ ମଧ କରିଦେଲେ। ରାଜକୀୟ ସମ୍ମାନ ଦେଇ ତାଙ୍କ ଗୋଡ଼ରେ ବେଢ଼ି ପକାଇଲେ। ନିଦ ଭାଙ୍ଗିଲା ବେଳକୁ ସେ ଅସ୍ତ୍ରହୀନ, ସୈନ୍ୟହୀନ ଓ ନିର୍ବଳ ଆଉ ପାଦରେ ବେଢ଼ି।

ସ୍ତ୍ରୀ ଲୋକଙ୍କ ପାଇଁ ନିର୍ମିତ ପରଦାସୀନ ହାଉଦାରେ ତାଙ୍କୁ ଦିଲ୍ଲୀସ୍ଥିତ ସଲିମଗଡ଼କୁ ପଠାଇଦିଆ ଗଲା। କେହି ଜଣେ ବି ମୁରାଦଙ୍କ ରକ୍ଷା ପାଇଁ ଆଗେଇ ଆସି ପାରିଲେ ନାହିଁ। ପରେ ତାଙ୍କୁ ଗୋୱାଲିୟର ଦୁର୍ଗକୁ ପଠାଇଦେଲେ। ସେଠାରେ ସେ ତିନିବର୍ଷ ରହିଲେ ଓ ରହିବା ଅବସ୍ଥାରେ ସେଠାରେ ଏକ ନ୍ୟାୟାଳୟ ଆଗରେ ଦଣ୍ଡିତ କରାହେଲା। ଆଦେଶ ହେଲା ମୃତ୍ୟୁଦଣ୍ଡ। ୧୬୬୧ରେ ମୃତ୍ୟୁ ହେଲା ଓ ଗୋୱାଲିୟରରେ ତାଙ୍କୁ କବର ଦିଆଗଲା।

ଔରଙ୍ଗଜେବ ମୁରାଦଙ୍କୁ ବନ୍ଦୀ କଲାପରେ ଦିଲ୍ଲୀ ଯାତ୍ରା କଲେ। କିନ୍ତୁ ସେତେବେଳକୁ ଦାରା ଦିଲ୍ଲୀରୁ ଲାହୋର ପଳାଇ ଯାଇଥିଲେ। ସାଢ଼େ ଛ'ମାସ ରାଜସିଂହାସନ ଖାଲି ପଡ଼ିଥିବା ସତ୍ତ୍ୱେ ଔରଙ୍ଗଜେବ ଗାଦିରେ ବସିଲେ ନାହିଁ। କାରଣ ଦାରା ଓ ସୁଜା ହାରି ଯାଇଥିଲେ ମଧ ବିଲୋପ ହୋଇ ନ ଥିଲେ।

କିନ୍ତୁ ସାମ୍ରାଜ୍ୟ ଚାହେଁ ସମ୍ରାଟ। ସେଥିପାଇଁ ୩୧ ଜୁଲାଇ ୧୬୫୮ରେ ସେ ସିଂହାସନ ଆରୋହଣ କଲେ- ଆଡ଼ମ୍ବରହୀନ ଭାବରେ ସାଲିମାର ବଗିଚାରେ। ନିଜ ନାଁରେ କୁତୁବା ପଢ଼ାଇବା ବା ମୁଦ୍ରା ଚଳାଇବାରେ ତାଙ୍କର ଆଗ୍ରହ ନ ଥିଲା। ଦିଲ୍ଲୀରେ ତିନି ସପ୍ତାହ ରହିବା ପରେ ଲାହୋର ଯାତ୍ରା ପାଇଁ ପ୍ରସ୍ତୁତ ହେଲେ। ଦାରା ପୂର୍ବଦିଗକୁ ଗଲେ ନାହିଁ। କାରଣ ଭୟ ଥିଲା ସୁଜା ଓ ଔରଙ୍ଗଜେବଙ୍କ ମିଳିତ ଅଭିଯାନ ସେ ମୁକାବିଲା କରିପାରିବେ ନାହିଁ।

ପଶ୍ଚିମକୁ ଯିବାରେ ଲାଭଥିଲା । କାରଣ କାନ୍ଧାହାରରେ ଅନେକ ଧନ ସଂପତ୍ତି ଥିଲା । ସେ ସବୁକୁ ବ୍ୟବହର କରି ଦାରା ଏକ ନୂଆ ସୈନ୍ୟବାହିନୀ ଗଠନ କରିପାରିବେ । ସୁଲେମାନ ମଧ ତାଙ୍କ ସହିତ ଯୋଗଦେଇ ପାରିବେ ଦିଲ୍ଲୀ ବା ପଂଜାବରେ । ଯଦି ନୂଆ ସେନାବାହିନୀ ଗଠନ ନ କରି ପାରିବେ ଦାରା ସେଠାରୁ କାବୁଲ, ସିନ୍ଧ, ରାଜସ୍ଥାନ ଅଥବା ଗୁଜୁରାଟ ପଳାଇ ଯାଇ ପାରିବେ । ଏପରିକି ଦାକ୍ଷିଣାତ୍ୟ ମଧ ।

ଦାରାଙ୍କ ମନୋବଳ ଦୁର୍ବଳ । ଦର୍ଶନ ଓ ମନୁଷ୍ୟତାର ବଳୟ ଭିତରେ ଯୋଦ୍ଧାର ସାହସ ତାଙ୍କର ନ ଥିଲା । ଦିଲ୍ଲୀରେ ସୁଲେମାନଙ୍କ ପାଇଁ ଅପେକ୍ଷା କଲେ । ତାଙ୍କର ଆସିବା ନ ହେବାରୁ ସେ ପଂଜାବ ପଳାଇ ଗଲେ । ଶତ୍ରୁଠୁ ଦୂରରେ ରହିବା ତାଙ୍କ ଉଦ୍ଦେଶ୍ୟ ଥିଲା ।

ସତଲେଜ ନଦୀ ଦେଇ ସେ ପଂଜାବ ପଳାଇଲେ । ଗଲାବେଳେ ନଦୀର ଫେରି ରାସ୍ତାସବୁ ବନ୍ଦ କରିଦେଲେ । ଭାବିଥିଲେ କି ଔରଙ୍ଗଜେବ ଦୁଇ ଦୁଇଟା ଯୁଦ୍ଧପରେ ଥକି ପଡ଼ିଥିବେ । କିନ୍ତୁ ଏ ଭାବନା ଭୂଲ ଥିଲା ।

ଔରଙ୍ଗଜେବ ପଂଜାବରେ ୨ ସପ୍ତାହ ପରେ ପହଞ୍ଚିଲେ । ଦାରାଙ୍କୁ ଅନୁଧାବନ କରି କରି । ଲାହୋରରେ ଦାରାଙ୍କର ୨୦,୦୦୦ ସୈନ୍ୟ ଥିଲେ ମଧ ସେମାନେ ଔରଙ୍ଗଜେବଙ୍କ ବିରାଟ ସେନାବାହିନୀ ଆଗରେ ଲଢ଼ିବାକୁ ସାହସ କଲେ ନାହିଁ । ଅନ୍ୟ କୌଣସି ପ୍ରସ୍ତୁତି ପାଇଁ ସମୟ ବି ନ ଥିଲା । ଦାରା ମୂଲତାନ ଯାତ୍ରା କଲେ । ମୂଲତାନରେ ପହଞ୍ଚିବା ବେଳକୁ ଦାରାଙ୍କ ଯିବା ଜାଣି ଔରଙ୍ଗଜେବ ଦିଲ୍ଲୀ ଫେରିଆସିଲେ । ଦିଲ୍ଲୀରେ ଗଣ୍ଡଗୋଳ ସୃଷ୍ଟି କରିବା ଉଦ୍ଦେଶ୍ୟରେ ରାଜ ମହଲରୁ ପାଟନା ଆସିଗଲେ । ୩୦ ନଭେମ୍ବରରେ ସେ ଦିଲ୍ଲୀରେ ପହଞ୍ଚିଲେ । ସମୋଗଡ଼ ଯୁଦ୍ଧପରେ ସୁଜାଙ୍କ ସହିତ ଔରଙ୍ଗଜେବଙ୍କର ଚିଠି ଆଦାନ ପ୍ରଦାନ ଥିଲା । ସେଥିରେ ସେ ସୁଜାଙ୍କୁ ଏକ ତୃତୀୟାଂଶ ରାଜ୍ୟ ଦେବେ ବୋଲି ଲେଖିଥିଲେ । କିନ୍ତୁ ବିଶ୍ୱାସ କଲେ ନାହିଁ ସୁଜା । ସାମ୍ରାଜ୍ୟ ବଣ୍ଟନ ଭାଇମାନଙ୍କ ଭିତରେ ସିମୀତ ନଥାଏ । ସେ ଆଗ୍ରା ଯିବେ ବୋଲି ଭାବି ୧୬୫୮ ଅକ୍ଟୋବାରରେ ପାଟନାରେ ପହଞ୍ଚିଲେ । ସୁଜା ଔରଙ୍ଗଜେବଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଆଗ୍ରା ଅଧିକାର କରିପାରିଥାନ୍ତେ । କିନ୍ତୁ ଗତି ଥିଲା ଶିଥିଳ । ଔରଙ୍ଗଜେବ ବିପଦ, ଅନୁମାନ କରି ଫେରିଆସିଲେ । ସୁଜା ବନାରସରେ ପହଞ୍ଚିବା ପୂର୍ବରୁ ସେ ଦିଲ୍ଲୀରେ ପହଞ୍ଚଗଲେ । ସେଠୁ ଆଗ୍ରାରେ ମହମ୍ମଦ ସୁଲତାନଙ୍କୁ ସୁଜାଙ୍କ ରାସ୍ତା ରୋକିବା ପାଇଁ ନିର୍ଦ୍ଦେଶ ଦେଲେ ।

୧୨ ଜାନୁୟାରୀ ଔରଙ୍ଗଜେବ କୋରାରେ ପହଞ୍ଚିଲେ। ମହମ୍ମଦ ସୁଲତାନଙ୍କୁ ସାହାଯ୍ୟ କରିବାପାଇଁ। ଦାକ୍ଷିଣାତ୍ୟରୁ ମିରଜୁମଲା ଦୌଲତାବାଦରୁ ମୁକ୍ତିପାଇ ଔରଙ୍ଗଜେବଙ୍କ ସହିତ ମିଶିବା ପାଇଁ ଆସି ପହଞ୍ଚିଲେ। ଔରଙ୍ଗଜେବଙ୍କ ସେନା ହୋଇଯାଇଥିଲେ ୯୦,୦୦୦ ଅଶ୍ୱାରୋହୀରେ ପହଞ୍ଚିଥିଲେ। ଯୁଦ୍ଧ ଆରମ୍ଭ ପୂର୍ବରୁ ସୁଜା ବିପଦ ଗଣିଲେ। ୧୪ ଜାନୁୟାରୀ ଯୁଦ୍ଧ ଆରମ୍ଭ ହେବାର ୩,୪, ଘଣ୍ଟା ପୂର୍ବରୁ ଯଶବନ୍ତ ସିଂ ଔରଙ୍ଗଜେବଙ୍କ ଦକ୍ଷିଣପଟ ବାହିନୀକୁ ନିର୍ଦ୍ଦେଶ ଦେଉଥିଲେ। ହଠାତ୍ ୧୪୦୦୦ ରାଜପୁତ ସୈନ୍ୟଙ୍କୁ ନେଇ ସୁଜା ସେନାବାହିନୀରୁ ବାହାରିଯାଇ ହତ୍ୟା ଲୁଣ୍ଠନ ଆରମ୍ଭ କରିଦେଲେ। ଅନ୍ୟମାନେ ମଧ୍ୟ ଯୋଗ ଦେଲେ। ହତ୍ୟା ଲୁଣ୍ଠନ ପରେ ପଳାଇବାକୁ ଚେଷ୍ଟାକଲେ। ଯଶବନ୍ତ ସିଂ କିନ୍ତୁ ସୁଜାଙ୍କ ସହିତ ହାତ ମିଳେଇ ନ ଥିଲେ। ସେ ରାଜସ୍ଥାନ ଫେରିଗଲେ। ଯଦି ସୁଦା ସେହି ସମୟରେ ଔରଙ୍ଗଜେବଙ୍କୁ ଆକ୍ରମଣ କରିଥାନ୍ତେ, ତାହା ହେଲେ ଔରଙ୍ଗଜେବ ହାରିଯାଇପାରିଥାନ୍ତେ। କିନ୍ତୁ ଏ ପ୍ରକାର ସମସ୍ୟାରୁ ଔରଙ୍ଗଜେବଙ୍କ ଶାନ୍ତ ସାହସ ତାଙ୍କୁ ବଞ୍ଚେଇ ଦେଲା। ପ୍ରାର୍ଥନା ସମୟରେ ଯଶବନ୍ତ ସିଂଙ୍କ ଖବର ପହଞ୍ଚିଲା ତାଙ୍କ ପାଖରେ। ସେ ଶାନ୍ତ ମନରେ ପ୍ରାଥନା ସାରି ସବୁ ଦିଗକୁ ନଜର ଦେଲେ। ବୁଲି ଦେଖିଲେ କି ତାଙ୍କ ହାତରେ ୬୦,୦୦୦ ସୈନ୍ୟ ମହଜୁଦ ଅଛନ୍ତି- ସୁଜାର ସୈନ୍ୟବଳଠାରୁ ୩ ଗୁଣ ବେଶି।

ସାନ୍ତ୍ୱନା ପାଇଲେ ଔରଙ୍ଗଜେବ। ତାଙ୍କ ସେନାକୁ ୩ ଭାଗରେ ବିଭକ୍ତ କରିଦେଲେ। ଯୁଦ୍ଧ ଆରମ୍ଭ ହେଲା ୮ଟା ବେଳେ। ଘମାଘୋଟ ଯୁଦ୍ଧ।

କିଛି ସମୟ ପରେ ସୁଜାଙ୍କ ବାଁ ପଟ ସୈନ୍ୟ ଛିନଛତର ହୋଇଗଲେ। ମଝିଭାଗ ଥରହର ହେଲେ। ଡାହାଣପଟ ସୈନ୍ୟ ଅଡୁଆରେ ପଡ଼ିଲେ। ତେବେ ବି ଔରଙ୍ଗଜେବଙ୍କୁ ଆକ୍ରମଣ କଲା। ଔରଙ୍ଗଜେବ ହାତୀ ଗୋଡ଼କୁ ଚେନରେ ବାନ୍ଧିଦେବାକୁ ଆଦେଶ ଦେଲେ, ଫଳରେ ହାତି ଦୌଡ଼ିଯାଇ ପାରିବ ନାହିଁ। ଏହାହିଁ ତାଙ୍କର ସାହସ। କିଛି ସମୟ ପରେ ସବୁ ସ୍ଥିର ହୋଇଆସିଲା। ଔରଙ୍ଗଜେବ ତାଙ୍କ ବିରାଟ ସେନାବାହିନୀର ସମସ୍ତ ଓ ଜିନିଆ ଗନପାଉଡ଼ର ଏକାଠି କରି ସୁଜାର ସେନାବାହିନୀ ଉପରକୁ ଗଡ଼େଇ ଗଡ଼େଇ ଫୋପାଡ଼ିଲେ- ସମୁଦାୟ ଶତ୍ରୁକୁ କବଳିତ କରିବା ପାଇଁ।

ସୁଜା ନିଜକୁ ରକ୍ଷା କରିପାରିଲେ। କାରଣ ସେ ହାତୀରୁ ଓହ୍ଲାଇ ଘୋଡ଼ଚଢ଼ି ପଳାୟନ କରିପାରିଲେ।

ସୁଜାଙ୍କୁ ଖୋଜିବାପାଇଁ ଔରଙ୍ଗଜେବ ମହମ୍ମଦ ସୁଲତାନ ଓ ମିରଜୁମଲାଙ୍କ ନେତୃତ୍ୱରେ ୩୦ ହଜାର ସୈନ୍ୟ ଦେଇ ପଠାଇଲେ। ସେତେବେଳେ ସୁଜାଙ୍କ ହାତରେ ମାତ୍ର ୧୦,୦୦୦ ସୈନ୍ୟ। ସେ ବଙ୍ଗଳା ଯିବା ପାଇଁ ପ୍ରସ୍ତୁତ ହେଉଥିଲେ ହେଁ ପ୍ରତ୍ୟେକଥର ଫେରି ଆସୁଥିଲେ। ବାଟରେ ମିର ଜୁମଲା ମଧ୍ୟ ବିପଦରେ ପଡ଼ିଥିଲେ। କାରଣ ମହମ୍ମଦ ସୁଲତାନ ସୁଜାର ଝିଅ ଗୁଲରୁଖ ବେଗମଙ୍କୁ ବିବାହ କରିବା ପାଇଁ ମିର ଜୁମଲାଙ୍କୁ ସାହଯ୍ୟ ମାଗିଥିଲେ ହେଁ ସେ ଯାଇପାରି ନ ଥିଲେ। ଏଥିପାଇଁ ସୁଲତାନ ନିଜର ଦୋଷ ସ୍ୱୀକାର କରି କ୍ଷମା ମାଗିଲେ ମଧ୍ୟ ଔରଙ୍ଗଜେବ ତାଙ୍କୁ ଯାବତ୍‌ଜୀବନ କାରାଦଣ୍ଡ ଦେଇଥିଲେ। ୧୬୬୦ ସୁଜାଙ୍କୁ ବଙ୍ଗଳାରୁ ବାହାର କରାଗଲା। ସୁଜା ବଙ୍ଗଳାର ପୂର୍ବଦିଗକୁ ଆରକାନଙ୍କ ରାଜାଙ୍କ ପାଖେ ଶରଣ ପଶିଲେ। ୧୬ ବର୍ଷପରେ ଏ ଘଟଣା ଘଟିଥିଲେ ହେଁ ତା'ପରେ ସୁଜାଙ୍କର କ'ଣ ହେଲା କେହି ଜାଣନ୍ତି ନାହିଁ।

ଔରଙ୍ଗଜେବ ଖ୍ୱାଜା ଯୁଦ୍ଧରେ ସୁଜାଙ୍କୁ ଗୋଡ଼ାଇଥିବା ବେଳେ ଦାରା ଗୁଜୁରାଟରେ ଥିଲେ। ସୁଲତାନଗ୍ରୁ ଜାମସେଦପୁର ପଳାଇଗଲେ। ଭାବୁଥିଲେ କାନ୍ଧାହାର ଯାଇଁ ପର୍ଶିୟାର ଆଶ୍ରୟ ନେବେ। କିନ୍ତୁ ପରିବାରବର୍ଗ ରାଜି ହେଲେ ନାହିଁ। ଗୁଜୁରାଟ ଅଭିମୂଖେ ଯାତ୍ରା କଲେ। ୧୬୫୯ରେ ଗୁଜୁରାଟ ରାଜଧାନୀ ଅହମଦାନଗରରେ ପହଞ୍ଚିଲେ। ଅହମଦାନଗରର ଗଭର୍ଣ୍ଣର ଯଦି ଓ ଔରଙ୍ଗଜେବଙ୍କ ଶ୍ୱଶୁର, ଦାରାଙ୍କୁ ରାଜକୋଷ ଖୋଲି ଦେଲେ। ଫଳରେ ଦାରା ୨୨,୦୦୦ ସୈନ୍ୟ ମୁତୟନ କରିପାରିଲେ। ୩ ହଜାର ସୈନ୍ୟ ତାଙ୍କ ପାଖରେ ସେତେବେଳକୁ ଥିଲେ।

ଦାରା ସିଂହାସନ ପାଇବାର ଆଶା ରଖିଲେ। ଗୁଜରାଟରେ ଶୁଣିବାକୁ ପାଇଲେ କି ଔରଙ୍ଗଜେବଙ୍କୁ ହଟାଇ ଦିଆଯାଇ ପାରେ। ରାଜା ଦଶବନ୍ତ ସିଂ ଯେ କି ଔରଙ୍ଗଜେବଙ୍କୁ ପ୍ରତାରଣା କରି ଓହରି ଯାଇଥିଲେ, ସେ କାଳେ ଦାରାଙ୍କ ସପକ୍ଷରେ ରାଜପୁତମାନଙ୍କୁ ଏକାଠି କରୁଥିଲେ। ଏ କଥାରେ ବିଶ୍ୱାସ କରି ସେ ମାଲଓବାର ଦିଗକୁ ଯାତ୍ରା କଲେ।

ଦାରାଙ୍କ ସହିତ ସାମିଲ ହେବାପାଇଁ କିଛିବାଟ ଆଗେଇଲା ପରେ ସେ ରାଜା ଯଶୋବନ୍ତ ସିଂଙ୍କ ପାଖରୁ ଖଣ୍ଡେ ଚିଠି ପାଇଲେ। ଲେଖାଥିଲା; ଯଦି ସେ ଦାରାଙ୍କ ସହିତ ନ ମିଶିବେ ତା'ହେଲେ ଔରଙ୍ଗଜେବ ତାଙ୍କୁ କ୍ଷମା କରି ଦେଇପାରନ୍ତି ଓ ତାଙ୍କ

ପୂର୍ବ ଗୌରବ ତାଙ୍କୁ ଫେରାଇଦେଇ ପାରନ୍ତି। ଏ ପ୍ରକାର ପ୍ରତିଶ୍ରୁତି ପାଇ ରାଜା ଯଶବନ୍ତ ସିଂଙ୍କୁ ପୁଣି ଥରେ ରୂପ ବଦଳାଇବା ପାଇଁ ବାଧ୍ୟ କଲେ।

ସୁଜା ସହିତ ଯୁଦ୍ଧ ପରେ ଔରଙ୍ଗଜେବ ଦାରାଙ୍କ ସହିତ ମୁକାବିଲା କଲେ। ଦାରାଙ୍କ ପାଖରେ ଆଉ ସମୟ ନ ଥିଲା ଗୁଜୁରାଟ ପଳାଇବା ପାଇଁ। ଶେଷ ଚେଷ୍ଟା କରିବାକୁ ଚାହିଁ ଦେଓରାଇରେ ଆରବଲୀ ପର୍ବତମାଳା ମଝିରେ ସାମନାରେ ଟ୍ରେଞ୍ଚ ଖୋଳାଇ, ସୈନ୍ୟସାମନ୍ତ ଧରି ଯୁଦ୍ଧ ପାଇଁ ପ୍ରସ୍ତୁତ ଥିଲେ।

୨୧ ମାର୍ଚ୍ଚରେ ଔରଙ୍ଗଜେବ ଦେଓରାଇରେ ପହଞ୍ଚି ମାତ୍ର ତିନିକିଲୋମିଟର ବ୍ୟବଧାନରେ ଛାଉଣୀ ପକାଇଲେ। କୌଶଳ ଶିକ୍ଷା ଦାରାଙ୍କ ସପକ୍ଷରେ ଥିଲା। ଛୋଟ ଗଳି ରାସ୍ତା, ତାରି ଭିତରେର ସୈନ୍ୟମାନେ ନିଜକୁ ସଂଗତ ରଖି ଯୁଦ୍ଧ କରିବା କଷ୍ଟକର ଥିଲା ଔରଙ୍ଗଜେବଙ୍କ ପକ୍ଷରେ। ଦାରାଙ୍କ ପାଇଁ ଯୁଦ୍ଧ ଜିତିବା ସହଜ ଥିଲା। ଯୁଦ୍ଧ କୌଶଳର ଅପାରଗତା ନୁହେଁ କିନ୍ତୁ ଭାଗ୍ୟଥିଲା ପ୍ରତିକୂଳ। ସାମୋଗଡ଼ର ତିନିଘଣ୍ଟାର ଯୁଦ୍ଧ ଦେଓରାରେ ୩ ଦିନ ପର୍ଯ୍ୟନ୍ତ ଚାଲିଲା। ତୃତୀୟ ଦିନ ସନ୍ଧ୍ୟାରେ ଔରଙ୍ଗଜେବ ଦାରାଙ୍କ ଟ୍ରେଞ୍ଚ ପାର ହୋଇ ପାରିଲେ। ମନେହେଲା ଯେପରି ଦୁର୍ଗକୁ ପ୍ରବେଶର ଅଧିକାର ପାଇଛନ୍ତି।

ଦାରା ଅପେକ୍ଷା ନ କରି ୧୫ ବର୍ଷିୟ ପୁଅ ସିଲଫର ସିକୋ ଓ ଅଳ୍ପ ସଂଖ୍ୟକ ଅନୁଚରଙ୍କୁ ଧରି ପଳାୟନ କଲେ। ଏପରିକି ତାଙ୍କ ଧନସଂପତ୍ତି ଧରି ସ୍ତ୍ରୀ ଲୋକମାନେ ତାଙ୍କୁ ଅପେକ୍ଷା କରି ରହିଥିଲେ, ସେମାନଙ୍କୁ ଖବର ନ ଦେଇ ଦାରା ପଳାୟନ କଲେ। ଯେଉଁ ଧନସଂପତ୍ତି ସ୍ତ୍ରୀ ଲୋକମାନଙ୍କ ପାଖରେ ଥିଲା, ମରୁଭୂମି ପାରିହେବାରେ ସବୁ ଲୁଟ ହୋଇଗଲା। ପରେ ସେମାନେ ଦାରାଙ୍କ ସହ ମିଳିତ ହେଲେ ସତ, କିନ୍ତୁ କିଛି ଲାଭ ହେଲାନି।

ଔରଙ୍ଗଜେବ କିନ୍ତୁ ଦାରାଙ୍କୁ ପଳାୟନ କରିବାକୁ ଦେଲେ ନାହିଁ। ରାଜା ଯଶୋବନ୍ତ ସିଂ ଓ ବାହାଦୂର ଖାଁଙ୍କୁ ଦାରାଙ୍କ ପଛରେ ଗୋଡ଼ାଇବା ପାଇଁ ଆଦେଶ ଦେଲେ। ଦାରା ଖସିଯାଇ ଅହମଦାନଗରେ ପହଞ୍ଚିଲେ। କିନ୍ତୁ ସେତେବେଳକୁ ଅହମହଦାନଗହକୁ ଔରଙ୍ଗଜେବ ଅଧିକାର କରି ସାରିଥିଲେ।

ଅବସର ନେବାପାଇଁ ମଧ୍ୟ ବେଳ ନ ଥିଲା। କୁଚ ରାସ୍ତାଦେଇ ସେ ସିନ୍ଧରେ ପହଞ୍ଚିଲେ। ଜୟ ସିଂ ତାଙ୍କୁ ଗୋଡ଼ାଇ ଥିଲେ ସତ କିନ୍ତୁ ଧରି ନ ଥିଲେ। କାରଣ ଜୟ ସିଂ ଦାରାଙ୍କୁ ଦେଶ ବାହାରକୁ ତଡ଼ି ଦେବାପାଇଁ ଚାହୁଁ ଥିଲେ। ଦାରା ନିଜକୁ

ରକ୍ଷା କରିବା ପାଇଁ ପଳାଇଲେ। ଭାବିଲେ କାନ୍ଦାହାରରେ ପହଞ୍ଚିଲା ପରେ ସେ ଭାରତକୁ ଫେରିବାର ରାସ୍ତା ଖୋଜି ପାରନ୍ତି।

ଦୁଃଖ କିନ୍ତୁ ଏତିକିରେ ସରିଲା ନାହିଁ। ବୋଲାନ ପାଖ ପାଖରେ ତାଙ୍କ ପ୍ରିୟ ସ୍ତ୍ରୀ ନଜିରାବାନୁ ପ୍ରାଣତ୍ୟାଗ କଲେ। କୁହଯାଏ ଭାରତ ଛାଡ଼ି ଯିବାକୁ ଚାହୁଁନ ଥିଲେ ନାଜିରାବାନୁ। ସେଥିପାଇଁ ଆତ୍ମହତ୍ୟା କଲେ। ନାଜିରାଙ୍କ ଶେଷ ଇଚ୍ଛା ଥିଲା ଭାରତରେ କବର ନେବାପାଇଁ। ସେଥିପାଇଁ ବିନା କୌଣସି ସୈନ୍ୟଦଳ ନ ନେଇ ତାଙ୍କ ଶରୀରକୁ ଲାହୋର ପଠାଇ ଦେଲେ।

ଶାହାଜାହାଁଙ୍କ ବନ୍ଦୀ ମଲ୍ଲିକ ଦିଓ୍ୱାନଙ୍କ ଜୀବନ ଦାରା ବଞ୍ଚାଇଥିଲେ। ଏ ଆଫଗାନ ଦାରାଙ୍କ ପ୍ରତି କୃତଜ୍ଞ ଥିଲେ। ରାସ୍ତାରେ ସେ ତାଙ୍କ ପାଖରେ ପହଞ୍ଚିଲେ। ସେ ଅତିଥି ସତ୍କାର ପୂର୍ବକ ଦାରାଙ୍କୁ ତାଙ୍କୁ ଦୁର୍ଗ ଭିତରକୁ ନେଇଗଲେ। ସେଠାରେ ସୁଖରେ ରହିଥିଲେ।

ପରେ ମଲ୍ଲିକଙ୍କ ଦୁର୍ଗରୁ ବାହାରି ବୁଲେନ ପାଶ ଆଡ଼କୁ ଚାଲିଲେ। କିନ୍ତୁ କୃତଘ୍ନ ମଲିକ ଦାରା ଓ ତାଙ୍କ ପୁଅଙ୍କୁ ରାଜା ଜୟ ସିଂ ଓ ବାହାଦୂର ଖାଁକୁ ହସ୍ତାନ୍ତର କରିଦେଲେ ୩ ଜୁଲାଇରେ। ୨ ସେପ୍ଟେମ୍ବରରେ ଦାରା ଓ ତାଙ୍କ ପୁଅଙ୍କୁ ଦିଲ୍ଲୀ ନେଇଗଲେ। ୮ ସେପ୍ଟେମ୍ବର ଦିଲ୍ଲୀରେ ମାଇ ହାତୀ ଉପରେ, ଅପରିଷ୍କାର ଖୋଲା ହଉଦାରେ ବସାଇ, ଦାରାଙ୍କ ପାଦରେ ବେଡ଼ି, ଛିଣ୍ଡା ଟରବାନ, ମଇଳା ପୋଷାକ, ପାଖରେ ସଫିର (ପୁତ୍ର)ଙ୍କ ସହ ସହର ସାରା ବୁଲାଇବାର ଆଦେଶ ଦେଲେ। ପଛରେ ଖୋଲାଖଣ୍ଡା ନେଇ ଔରଙ୍ଗଜେବଙ୍କ କ୍ରୀତଦାସ ନଜର ବେଗ ବସିଥିଲେ।

ଶାହାଜାହାଁବାଦର ଲାହୋରଗେଟ ବାଟେ ପଶି ଚାନ୍ଦନୀଚୌକ ବଜାର ଓ ପରେ ଖିଜରିବାଦରେ ପହଞ୍ଚିଲେ।

ଦାରାଙ୍କୁ ଏପରି ଅବସ୍ଥାରେ ଦେଖି ସହରବାସୀ ଗଣ ଦୁଃଖ ଶୋକରେ ଭାଙ୍ଗିପଡ଼ିଲେ। ବଡ଼ ପାଟିରେ କାନ୍ଦିବା ଆରମ୍ଭ କଲେ ଯେପରିକି ତାଙ୍କର କେହି ଅତି ନିଜର ଲୋକଙ୍କର ମୃତ୍ୟୁ ଘଟିଛି। ଏପରି ଆଦରଯତ୍ନ ଜନସାଧାରଣଙ୍କ ଠୁ ପାଇଥିଲେ।

ତହିଁପରି ଦିନ ମଲ୍ଲିକ ଜାଓ୍ୱାନ - ବଦଳା ନାଁ ବକ୍ତିୟାର ଖାଁ- ୧୦୦୦ ଲୋକ ମାନସବାଦର ଆଫଗାନଙ୍କ ଗହଣରେ ସମ୍ରାଟ ଦରବାରରେ ହାଜର

ହେବାକୁ ଯାଉଥିଲେ। ରାସ୍ତାରେ ଛୋଟ ଧରଣର ଗଣ୍ଡଗୋଳ ହେଲା। ସର୍ବ ସାଧାରଣ ତାଙ୍କୁ ଘୃଣା କରୁଥିଲେ। ଅଧିକନ୍ତୁ ଛାତ ଉପରୁ ସ୍ତ୍ରୀ ଲୋକମାନେ ମୂତ୍ର ଓ ପାଉଁଶର ମାଠିଆ ସବୁ ତାଙ୍କ ଉପରକୁ ଫୋପାଡ଼ିଲେ। ଏ ଘଟଣା ପରେ ଜନସାଧାରଣଙ୍କ ଆଗରେ ନିଜକୁ ଦୋଷମୁକ୍ତ କରିବାପାଇଁ ଔରଙ୍ଗଜେବ କୁଟିଳତାର ଶୀର୍ଷରେ ଥାଇଁ ଦାରାଙ୍କୁ ଦରବାର ଜରିଆରେ ଦୋଷୀ ସାବ୍ୟସ୍ତ କରିବାକୁ ଚାହିଁଲେ। ଦିଲ୍ଲୀ ରାସ୍ତାରେ ତାଙ୍କୁ ଦରବାରକୁ ନିଆଗଲା। ଦରବାରରେ କେବଳ ଜଣେ ଅମୀର ଦାନିସମଣ୍ଡ ଖାଁ ଦାରାଙ୍କୁ ଦୟା ଦେଖାଇବା ପାଇଁ ଅନୁରୋଧ କଲେ। ସାହିସ୍ତା ଖାଁ (ଦାଦା) ଓ ଭଉଣୀ ରୋଷନ୍ନାରା ଦାରାଙ୍କର ମୃତ୍ୟୁ ଚାହୁଁଥିଲେ।

ସର୍ବ ସାଧାରଣଙ୍କ ଶାନ୍ତିଭଙ୍ଗ, ବିଶ୍ୱାସ ଓ ଧର୍ମ ଉପରେ କୁଠାର ଘାତ ଓ ଆଉ ଅନେକ ଦୋଷରେ ତାଙ୍କୁ ଦୋଷୀ ସାବସ୍ତ କଲେ। ଆଦେଶ ହେଲା ମୃତ୍ୟୁଦଣ୍ଡ। ଦାରା ନିଜେ ଔରଙ୍ଗଜେବଙ୍କୁ ପ୍ରାଣଭିକ୍ଷା କଲେ। ସବୁ ହେଲା ଅବାନ୍ତର। ନିରୁପାୟ ଦାରା ଲୁଚାଇଥିବା ଛୁରାରେ ତାଙ୍କ ଜଗିଥିବା ଲୋକମାନଙ୍କୁ ଆଘାତ କଲେ। ଶେଷରେ ମୁଣ୍ଡଗଣ୍ଡି ଅଲଗା କରି ଦିଆଗଲା ଆଉ ତାଙ୍କ ମୁଣ୍ଡ ଔରଙ୍ଗଜେବଙ୍କ ପାଖକୁ ପଠାଇ ଦିଆଗଲା।

ରୋଷନାରା ଆନନ୍ଦରେ ସେ ଦିନ ଭୋଜିଭାତର ଆୟୋଜିନ କରିଥିଲେ। ମସ୍ତକ ବିହୀନ ଶରୀର ବଜାରରେ ବୁଲାଇ ଦିଆଗଲା। ପରେ ତାଙ୍କର ଅପରିଷ୍କାର, ଅଗାଧୁଆ ଶରୀର ଡଫନ କରାଗଲା। ହୁମାୟୁନଙ୍କ କବର ପାଖରେ।

ଔରଙ୍ଗଜେବ ଶରୀରବିହୀନ ମୁଣ୍ଡକୁ ଆଗ୍ରାକୁ ଶାହାଜାହାଁଙ୍କ ପାଖକୁ ପଠାଇଦେଲେ। ଖାଦ୍ୟ ପରିବେଷଣ ବେଳେ ଗୋଟେ ନୂଆ ଖାଦ୍ୟ ରୂପରେ ସଜାଇ ଥୁଆହେଲା। ଏହାଁହି ମୋଗଲ ସାମ୍ରାଜ୍ୟର ଇତିହାସ। ଦାରାଙ୍କୁ ଥରେ ପଚରା ଯାଇଥିଲା। କି ଯଦି ସେ ସମ୍ରାଟ ହେବେ ତା'ହେଲେ ଔରଙ୍ଗଜେବଙ୍କୁ କରିଥାନ୍ତେ କ'ଣ ? ଦାରା ଉତ୍ତର ଦେଇଥିଲେ। କି ତାଙ୍କ ଶରୀରକୁ ଚାରିଖଣ୍ଡ କରି ଦିଲ୍ଲୀର ଚାରିଟା ଗେଟ ପାଖରେ ଫିଙ୍ଗି ଦେବି। ଦାରା ମଧ ତାଙ୍କ ଭାଇମାନଙ୍କ ଜୀବନ ଦାନ କରିପାରି ନ ଥାନ୍ତେ।

ଦାରାଙ୍କ ମୃତ୍ୟୁ କେବଳ ରାଜପୁତ୍ରର ମୃତ୍ୟୁ ନୁହେଁ ଏକ ଭବିଷ୍ୟତ ଧର୍ମ ଧାରଣାର ମୃତ୍ୟୁ। ଫାଦର ବୁଜେୟା, ଆଗ୍ରାର ଜଣେ ଇଉରୋପିଆନ ପାଦ୍ରୀ

ଭବିଷ୍ୟତ ବାଣୀ ଶୁଣାଇ ଥିଲେ । ଯେତେ ଯାହା ସୁବିଧା ଥିଲେ ମଧ ଦାରା ଧ୍ୱଂସ ହୋଇଥାନ୍ତେ । କାରଣ ଭାରତକୁ ଏପରି ଜଣେ ମନୁଷ୍ୟତା ଗୁଣଥିବା ବିଶିଷ୍ଟ ବ୍ୟକ୍ତି ଶାସନ କରିପାରି ନଥାନ୍ତେ ।

ଔରଙ୍ଗଜେବଙ୍କୁ ଭଗବାନଙ୍କ ନିର୍ବାଚିତ ତତ୍ତ୍ୱାବଧାରକ ବୋଲି କୁହାଯାଏ । ଦାରାଙ୍କ ଉପରେ ବିଜୟ ହାସଲପରେ କିଛି ଦିନ ଖିଜରିବାଦରେ ରହିଲେ । ଅପେକ୍ଷା କରିଥିଲେ ରାଜଗାଦୀରେ ବସିବାର ଶୁଭ ମୁହୂର୍ତ୍ତକୁ ।

୨୨ ମେ ୧୬୫୯ର ସୂର୍ଯ୍ୟୋଦୟ ପୂର୍ବରୁ ଖିଜିରାବାଦରୁ ଏକ ବିରାଟ ପଟୁଆର ବାହାରିଲା । ବାଜା ପେଁକାଳିବାଲାଙ୍କ ଧାଡ଼ି, ସୁସଜ୍ଜିତ ହାତୀମାନଙ୍କର ପଟୁଆର, ଘୋଡ଼ା ମାନଙ୍କର ଲମ୍ବା ଧାଡ଼ି ଓ ପରେ ସୈନ୍ୟମାନଙ୍କ ବିରାଟ ଶୋଭାଯାତ୍ରା । ସବାପଛକୁ ଆସିଥିଲେ ଔରଙ୍ଗଜେବ, ସୁନା ସିଂହାସନ ଉପରେ, ଗହଣା ସହିତ ହାତୀ ଉପରେ, ସୁନା ଓ ରୂପାର ମୁଦ୍ରା ଜନତାଙ୍କ ଉପରକୁ ଫୋପାଡ଼ି, ଫୋପାଡ଼ି ଯାଉଥିଲେ । ସହର, ବଜାର, ଦୁର୍ଗ, ଅତିକ୍ରମ କରି ଗତି କରୁଥିଲେ ସମ୍ରାଟ ଔରଙ୍ଗଜେବ । ମୋଗଲ ସାମ୍ରାଜ୍ୟର ସବୁଠୁ ମନୋହର ଦୃଶ୍ୟ । ୧୬୫୮ରେ ଯେଉଁ ରାଜଗାଦି ଆରୋହଣ କରିଥିଲେ ସେ କେବଳ ଶାସନ ପାଇଁ ଥିଲା । କିନ୍ତୁ ବର୍ତ୍ତମାନ ତାଙ୍କ ଶତ୍ରୁ- ପିତା ଶାହାଜାହାଁ ବନ୍ଦୀ ଶାଳାରେ, ଦାରା, ସୁଜା, ସୁରାଦ୍, ସମସ୍ତେ ନିହତ । ତେଣୁ ଏ ପଟୁଆରର ମହତ୍ୱ ଅନେକ ବେଶୀ । ଜ୍ୟୋତିଷ ଗଣନା ଅନୁସାରେ ୧୫ ଜୁନ ୧୯୫୯ ସବୁଠାରୁ ଶୁଭ ମୁହୂର୍ତ୍ତ ଥିଲା । ଠିକ୍ ସମୟରେ ସେ (ଓ୍ୱରଙ୍ଗଜେବ) ୪୦ ବର୍ଷରେ ଦିଓ୍ୱାନୀ-ଆମର ବାଲାକୋନିରେ ମୟୂର ସିଂହାସନ ଆରୋହଣ କଲେ ।

ଦିଓ୍ୱାନ-ଆମ ଏ ଶୁଭଅବସରରେ ଏପରି ସୁନ୍ଦର ଭାବରେ ସଜା ହୋଇଥିଲା । ତାହା ଅବର୍ଣ୍ଣନୀୟ । ମୁକ୍ତାର ଝୁଲା ଓହଳିଥିଲା । ମୂଲ୍ୟବାନ କାରପେଟ ତଳେ ବିଛା ହୋଇଥିଲା । ରତ୍ନ ଓ ସୁନା ଖଚିତ ଗହଣାମାନ ଛାତ ଓ ଖୁମ୍ବରେ ଭେଲଭେଟ ଚଦରରେ ଖଞ୍ଜା ହୋଇଥିଲା । ସୁନା ଓ ରୂପା ଝଲସୁ ଥିଲା । ଦରବାର ହଲରେ ତମ୍ବୁ ଲାଗିଥିଲା । ମଝିରେ ମଝିରେ ବଡ଼ ଖୁମ୍ବ ରୂପାରେ ଛାଉଣୀ ହୋଇଥିଲା । ଅମିରମାନେ ସୁସଜ୍ଜିତ ପୋଷାକରେ ସଜ୍ଜିତ ହୋଇ ନିଜ ନିଜର ପଦବୀ ଅନୁସାରେ ଧାଡ଼ି ମାରି ଛିଡ଼ା ହୋଇଥିଲେ । ରୂପା ଓ ସୁନା ପାତ୍ରରେ ଚନ୍ଦନର ଧୂପକାଠି ଥିଲା ।

ସିଂହାସନ ଆରୋହଣ କଲେ ଔରଙ୍ଗଜେବ। ବାଦକମାନେ ବଜାଇବା ଆରମ୍ଭ କଲେ। ଗୀତ୍ ନାଚର ଆନନ୍ଦରେ ଭରିଗଲା ମଣ୍ଡପ। କୁତୁଓ୍ୱା ପଢ଼ାହେଲା। ଔରଙ୍ଗଜେବଙ୍କ ନାଁରେ ନୂଆ ମୁଦ୍ରା ପ୍ରଚଳନ ହେଲା। ମୁଦ୍ରାରେ ଲେଖାଥିଲା।

"ଏ ମୁଦ୍ରା ପୃଥିବୀକୁ ଓହ୍ଲାଇଛି,
ଏକ ପୂର୍ଣ୍ଣଚନ୍ଦ୍ରର ଉଜ୍ଜଳତା ନେଇ
ଆଉ ଏହା ଉପରେ
ବିଶ୍ୱ ବିଜେତା ଔରଙ୍ଗଜେବଙ୍କ ମୋହର ନେଇ"

ଔରଙ୍ଗଜେବ ଦରବାରରେ ପ୍ରାୟ ତିନିଘଣ୍ଟା ରହିଲେ। ଦିନ ରାତି ଆମୋଦ ପ୍ରମୋଦ ଭିତରେ ପ୍ରାୟ ୪ ମାସ ବିତିଗଲା। ମେ ୨୨ ରୁ ଅଗଷ୍ଟ ୨୯ ପର୍ଯ୍ୟନ୍ତ ଏ ସମାରୋହ ଜାରି ରହିଲା।

ବନ୍ଦୀ ଜୀବନ କଟାଇଲେ ଶାହାଜାହାଁ। କଟକଣା ଥିଲା କୌଣସି ଉପାୟରେ ସେ ବାହାରକୁ ପାଇ ପାରିବେ ନାହିଁ। ଅନ୍ୟ କୌଣସି ଥିରେ ତାଙ୍କର କିଛି ଅସୁବିଧା ନ ଥିଲା। - ଖାଇବା ପିଇବା, ରାଣୀ ମହଲକୁ ଯିବା, ଏପରିକି ନମାଜ ପଢ଼ା ପାଇଁ କାଜିର ମଧ୍ୟ ବନ୍ଦୋବସ୍ତ କରାଯାଇ ଥିଲା।

ପ୍ରଥମରେ ମହମ୍ମଦ ସୁଲତାନ ଶାହାଜାହାଁଙ୍କ ଦେଖାଚାହାଁ କରୁଥିଲେ। ସଦା ସର୍ବଦା ବ୍ୟବସ୍ଥା ହୋଇଥିଲା କି ସେ ଶାସନ କାର୍ଯ୍ୟରେ କୌଣସି ହସ୍ତକ୍ଷେପ କରିପାରିବେ ନାହିଁ। ମହମ୍ମଦ ସୁଲତାନଙ୍କ ବିନା ଅନୁମତିରେ କେହି ତାଙ୍କୁ ଦେଖା କରିପାରିବେ ନାହିଁ। କେହି ଦେଖା କରିବାକୁ ଚହିଁଲେ ଔରଙ୍ଗଜେବଙ୍କ ଅନୁମତି ନେବା ଦରକାର। ଜଣାପଡ଼ିଲା ଶାହାଜହାଁ ବାହାରକୁ ଚିଠି ପଠାଇଛନ୍ତି।ବାରଣ କରାହେଲା। ଶାହାଜାହାଁ କହିଲେ, ମୁଁ କ'ଣ ତା ପୁଅ ଯେ ତା' ଆଦେଶ ମାନିବି। ଫଳରେ ଚିଠି ଆଦାନ ପ୍ରଦାନ କରୁଥିବା ଲୋକଙ୍କୁ ଦଣ୍ଡ ଦିଆଗଲା।

ଶାସନ ଭାର ବା ଦେଶର ଅନ୍ୟ କୌଣସି ଦାୟିତ୍ୱ ନେଇ ନିଆଯାଇଛି ବୋଲି ଶାହାଜାହାଁ ଦୁଃଖିତ ନ ଥିଲେ। କାରଣ ସେ ତ ବହୁପୂର୍ବରୁ ସେ ସବୁ ଦାୟିତ୍ୱ ଦାରାଙ୍କୁ ଦେଇସାରିଥିଲେ। କିନ୍ତୁ ବାଧା ଆସିଲା ତାଙ୍କ ଆତ୍ମ ସମ୍ମାନରେ - ଅହଙ୍କାର, ଗର୍ବ ଓ ଦୁଃଖରେ ଭାଙ୍ଗି ପଡୁଥିଲେ ସେ।

ଔରଙ୍ଗଜେବ ଦୁର୍ଗ ଅଧିକାର କରିବା ପରେ ପରେ ରାଜକୋଷ ହାତକୁ ନେଇ ସାରିଥିଲେ। ବର୍ତ୍ତମାନ ସେ ଶାହାଜାହାଁଙ୍କୁ ନିଜ ଅକ୍ତିଆରରେ ଥିବା ସଂପତ୍ତିକୁ

ହସ୍ତାନ୍ତର କରିବାକୁ ବାଧ କରୁଥିଲେ। ଏପରିକି ତାଙ୍କ ହାତର ତାରମଣ୍ଡ ମୁଦି, ଆଉ ଜପମାଳା ଉପରେ ମଧ୍ୟ ଅଧିକାର ପାତିଥିଲେ।

କହିଲେ ଔରଙ୍ଗଜେବ, "ରାଜ୍ୟ ରାଜାଙ୍କର ପରମ୍ପରାଗତ ସଂପତ୍ତି, ବ୍ୟକ୍ତିଗତ ସଂପତ୍ତି ନୁହେଁ ରାଜା କେବଳ ଜଣେ ନିର୍ବାଚିତ ପ୍ରତିନିଧି। ଶାହାଜାହାଁ ମୁଦି ଦେଇଦେଲେ ସତ କିନ୍ତୁ ଜପମାଳା ଦେବାପାଇଁ ବାରଣ କଲେ। ଦାମ ଥିଲା ୪ ଲକ୍ଷ ଟଙ୍କା।

ଶାହାଜାହାଁ ବଞ୍ଚିବା ପର୍ଯ୍ୟନ୍ତ ଔରଙ୍ଗଜେବ ଆଗ୍ରାକୁ ଆସି ନଥିଲେ। କିନ୍ତୁ ଦୁଇଜଣଙ୍କ ମଧ୍ୟରେ ଅନେକ ତିକ୍ତ ପୂର୍ଣ୍ଣ ଚିଠିର ଆଦାନ ପ୍ରଦାନ ହୋଇଥିଲା।

ଶାହାଜାହାଁ ଚିଠି ଲେଖା ମଧ୍ୟ ବନ୍ଦ କରିଦେଲେ। ହୃଦୟର ବ୍ୟଥା ଉପରେ ସମୟକ୍ରମେ ଏକ ପ୍ରଲେପ ଦିଆ ହୋଇଯାଏ। ସେଇଟାହିଁ ଦୁଃଖମାତ୍ରାକୁ କମ କରିଦିଏ। ତାହା ଛଡ଼ା ଜାହାନ୍ନାରାଙ୍କ ପ୍ରେମପୂର୍ଣ୍ଣ ଯତ୍ନ ତାଙ୍କୁ ସବୁକିଛି ଭୁଲିଯିବା ପାଇଁ ସାହଯ୍ୟ କରିଥିଲା। ଲାଘବ ହେଲା ଦୁଃଖ ଆଉ ଅପମାନ। ଅବଶେଷରେ ସେ କୋରାନ ପଢ଼ାରେ ବ୍ୟସ୍ତ ରହିଲେ। ୧୭ ଜାନୁୟାରୀ ୧୬୬୬ରୁ ଜ୍ୱର ପ୍ରାୟ ଲାଗି ରହିଲା। ଅବସ୍ଥା ସଂଘାତିକ ହେଲା। ଅଷ୍ଟକୋଣ ବିଶିଷ୍ଟ ଆଗ୍ରା ଦୁର୍ଗ ଭିତରେ, ଆଖି ଖୋଲିଲା ମାତ୍ରେ ଦେଖାଦିଏ। ନଦୀ ସେପାରେ ଅବସ୍ଥିତ ତାଜମହଲର- ତାଙ୍କ ସୁନାମ, ଖ୍ୟାତି ଓ କାରୁକାର୍ଯ୍ୟ ଖଚିତ ବିଶ୍ୱ ବିଖ୍ୟାତ ତାଜମହଲ। ଆଶା ସେଇ ଜାଗାଟାହିଁ ତାଙ୍କ ପାଇଁ ଶେଷ ବିଶ୍ରମଗାର ହୋଇପାରେ।

ଅବଶେଷରେ ୧ ଫେବୃୟାରୀ ୧୬୬୬ ସୋମବାର ମୃତ୍ୟୁ ପାଖେର ଆସିଥିଲା କିନ୍ତୁ ଚେତାରେ ଥିଲେ ଶାହାଜାହାଁ। ଜାହାନ୍ନାରାଙ୍କ ଅନୁରୋଧ କ୍ରମେ ସେ ଔରଙ୍ଗଜେବଙ୍କୁ କ୍ଷମା ଦେଇ ଚିଠି ଲେଖିସାରିଥିଲେ। ବର୍ତ୍ତମାନ ନିଜର ଶେଷ କୃତ୍ୟ ପାଇଁ ଆଦେଶ ଦେଲେ। ଶେଷ ବିଦାୟ ନେବା ବେଳକୁ କ୍ରନ୍ଦନରତା ଜାହାନ୍ନାରାଙ୍କୁ ସାନ୍ତ୍ୱନା ଦେଇ କହିଲେ; ତାଙ୍କର ଆଉ ଦୁଇଜଣ ସ୍ତ୍ରୀ ଆକବରା ବାଦୀ ମହଲ ଓ ଫତେପୁର ମହଲର ଯତ୍ନ ନେବା ପାଇଁ ଉପଦେଶ ଦେଲେ। ତାଙ୍କ ଝିଅ ପୁରୁନ୍ନାରା ବେଗମଙ୍କୁ ଜାହାନ୍ନାରାଙ୍କ ଜିମା ଦେଇ ପ୍ରାର୍ଥନା କଲେ। "ମୁଁ ଦୁଃଖର କାନ୍ଦଣା କାନ୍ଦିଲି, ବଂଶୀ ଭଳି ପବନର ଲହର ଅନୁଭବ କଲି, ମହମବତୀ ଭଳି ଦୁଃଖରେ ଜଳିଲି, ଧୂଆଁ ଖାଲି ବାହାରେ ମୋ ମଥାରୁ। କିୟତପରିମାଣରେ ଏମାନଙ୍କ ଯତ୍ନର ବନ୍ଦୋବସ୍ତ କରି ନିଜକୁ ଶାନ୍ତି ଦେବି।

ଶେଷ କୃତ୍ୟ ସମ୍ପନ୍ନ ବେଳେ କେହି ଅମିର ନ ଥିଲେ। କେହି ବଂଶଧର ନ ଥିତଲେ। ରାଜ୍ୟ ତରଫରୁ ମଧ୍ୟ କୌଣସି ଭକ୍ତି ପ୍ରଦର୍ଶନ କରାଯଇ ନ ଥିଲା।

ସର୍ବ ପ୍ରଧାନ ମୋଗଲ ସମ୍ରାଟଙ୍କର ସମାଧି ହେଲା ପ୍ରିୟ ମମତାଜମହଲଙ୍କ ସମାଧି ପାଖରେ।

ଇତିହାସ ଚକ ଘୁରିଲା।

ଶାହାଜାହାଁଙ୍କ ସହିତ ଜାହାନାରା ଥିଲେ ମଧ୍ୟ ଔରଙ୍ଗଜେବଙ୍କ ପ୍ରିୟ ଭଉଣୀ ଜାହାନ୍ନାରା ଥିଲେ। ଆଗ୍ରାରେ ଦ୍ୱିତୀୟ ବାର ସମ୍ରାଟ ହେବାପରେ ଜାହାନ୍ନାରାଙ୍କୁ ୧.୪ ମିଲିୟନ ଟଙ୍କାର ସୁନା ଓ ବାର୍ଷିକ ଭତ୍ତା ୧ ମିଲିୟନ ଟଙ୍କାରୁ ୧.୭ ମିଲିୟନ ଟଙ୍କାକୁ ବଢ଼େଇ ଦେଇଥିଲେ।

ତାଙ୍କ ଟ୍ରେଜେରୀ ଦିଲ୍ଲୀକୁ ନେଇଯାଇଥିଲେ। ସେ ଟେଜ୍ରେରୀକୁ ପୁଣି ଆଗ୍ରା ୧୪୦୦ଟା ଗାଡ଼ିରେ ବୋଝାଇ କରି ନେଇ ଆସିଲେ। ସେଥିପାଇଁ ଆଶା କରାଯାଇଥିଲା ସେ ଆଗ୍ରାକୁ ଫେରି ଆସିବେ। କିନ୍ତୁ ସେ ଦିଲ୍ଲୀ ଫେରିଗଲେ। ଜାହାନ୍ନାରାଙ୍କ ମଧ୍ୟ ଦିଲ୍ଲୀ ନେଇଗଲେ। ଦିଲ୍ଲୀରେ ଅଲିମର୍ଦ୍ଦନ ଖାଁଙ୍କ ଘରେ ତାଙ୍କୁ ରଖିଲେ ଓ ଅନେକ ସମୟରେ ତାଙ୍କ ପାଖକୁ ଯାଇଁ ଘଣ୍ଟା ଘଣ୍ଟା ସମୟ ବିତାନ୍ତି।

ରୋଷନାଁରା ୪୭ ବର୍ଷ ବୟସରେ ୧୬୭୧ ରେ ପ୍ରାଣତ୍ୟାଗ କଲେ। ଜାହାନ୍ନାରା ଦିଲ୍ଲୀ ଆସିବା ପରଠାରୁ ସେ ନିଜକୁ ରାଜପରିବାରରୁ ଦୂରେଇ ନେଇଥିଲେ। ୬୭ ବର୍ଷ ବୟସରେ ୧୬୮୧ରେ ସେ ପ୍ରାଣତ୍ୟାଗ କଲେ। ଔରଙ୍ଗଜେବ ସେତେବେଳେ ଆଜମୀରରୁ ଦାକ୍ଷିଣାତ୍ୟ ଅଭିମୂଖେ ଯାତ୍ରା କରୁଥିଲେ। ସେ ଫେରିବା ପର୍ଯ୍ୟନ୍ତ ଜାହାନ୍ନାରାଙ୍କ ମରଶରୀରକୁ ରଖାଗଲା। ପରେ ଯାଲିଆଙ୍କ ନିକଟରେ ତାଙ୍କୁ କବର ଦିଆଗଲା।

ଜାହାନ୍ନାରାଙ୍କ ମୃତ୍ୟୁ ପରେ ସେ ଦାକ୍ଷିଣାତ୍ୟ ଚାଲିଯାଇଥିଲେ। ଅବଶିଷ୍ଟ ୨୬ ବର୍ଷ କାଳ ଦାକ୍ଷିଣାତ୍ୟରେ ରହିଲେ। କିନ୍ତୁ ଉତ୍ତର ଭାରତକୁ ଫେରି ନ ଥିଲେ।

ଔରଙ୍ଗଜେବଙ୍କ ନିଜ ଚରିତ:-

ଶାହାଜାହାଁ ଓ ମମତାଜ ମହଲ ଜାହାଙ୍ଗୀର ଗୁଜରାଟରୁ ଆଗ୍ରା ଆସୁଥିଲେ। ଏଇଠି ତାଙ୍କର ଜନ୍ମ। ୧୬୧୮ ନଭେମ୍ବର ୩। ଆଉ ଏଇଜାଗା ପାଇଁ ତାଙ୍କର ଅଧିକ ମମତା। ଔରଙ୍ଗଜେବଙ୍କ ଜନ୍ମ ବେଳେ ଶାହାଜାହାନ ସାମ୍ରାଜ୍ୟର ଜଣେ ଉଦୀୟମାନ ରାଜପୁତ୍ର। କିନ୍ତୁ ପରେ ପରେ ଅସଫଳ ବିଦ୍ରୋହ ଯୋଗୁଁ ଔରଙ୍ଗଜେବ

ଓ ଦାରାଙ୍କୁ ଜାହାଙ୍ଗୀରଙ୍କ ପାଖକୁ ପଠାଇବାକୁ ବାଧ ହେଲେ । ସେଠାରେ ସେମାନେ ନୂରାଜାହାନଙ୍କ ତତ୍ତ୍ୱାବଧାନରେ ରହିଲେ । ସୁଜା ମଧ ତାଙ୍କ ତତ୍ତ୍ୱାବଧାନରେ ଥିଲେ । ଜାହାଙ୍ଗୀରଙ୍କ ମୃତ୍ୟୁପରେ ସେମାନେ ତାଙ୍କ ବାପାମାଙ୍କ ପାଖକୁ ଫେରିଲେ । ଶାହାଜାହାଁଙ୍କ ସିଂହାସନ ଆରୋହଣ ସମୟରେ ଔରଙ୍ଗଜେବଙ୍କ ବୟସ ମାତ୍ର ଦଶବର୍ଷ । ତାଙ୍କୁ ଦୈନିକ ଖର୍ଚ୍ଚ ବାବଦରେ ଟ୫୦୦ ଦିଆଯାଉଥିଲା । ସେ ଜଣେ ଉପଯୁକ୍ତ ଛାତ୍ର ଥିଲେ ସତ ହେଲେ ସୁଖୀ ନ ଥିଲେ ।

ଔରଙ୍ଗଜେବ ଆରବିକ ଭାଷା ଶିଖିବାକୁ ଇଚ୍ଛୁକ ନ ଥିଲେ । ଦାରା ହୁଏତ ଏ ଶିକ୍ଷା ପାଇବାକୁ ଭଲ ପାଇ ପାରି ଥାନ୍ତେ ।

କିନ୍ତୁ ଔରଙ୍ଗଜେବ ତାଙ୍କ ମୁଲ୍ଲାଙ୍କୁ ଥରେ ପଚାରିଲେ ବି ତୁମର କ'ଣ ମୋଗଲ ରାଜପୁତ୍ରଙ୍କୁ ଯୁଦ୍ଧ ସଂକ୍ରାନ୍ତରେ ଶିକ୍ଷାଦେବା ଉଚିତ ନ ଥିଲା । ହାତରେ ଖଣ୍ଡାଧରି ରାଜମୁକୁଟ ପରିଧାନ କରିବା ଉଦ୍ଦେଶ୍ୟରେ ନ ହେଉ ନିଜକୁ ଭାଇମାନଙ୍କୁ କବଳରୁ ରକ୍ଷା କରିବାର କାମ କ'ଣ ଶିଖାଇବା ଉଚିତ ନ ଥିଲା । ଯଦି ଯୋଦ୍ଧା ହେବାର ଶିକ୍ଷା ତମେ ଜାଣି ନଥିଲ ତା'ହେଲେ ଅନ୍ତତଃ ରାଜ୍ୟ ଶାସନର ପଦ୍ଧତି ତ ଆମକୁ ଶିଖାଇ ପାରିଥାନ୍ତ । ସେଥିପାଇଁ ତୁମ ଶିକ୍ଷକତା ପାଇଁ ମୋର ସେ ଦିନ ସବୁ ନଷ୍ଟ ହୋଇଯାଇଛି । ବର୍ତ୍ତମାନ ମୋର ତୁମ ପାଇଁ କୌଣସି ଦାୟିତ୍ୱ ନାହିଁ । ତାଙ୍କର ଆଉ ଜଣେ ପୁରୁଣା ଶିକ୍ଷକ କିଛି ସାହାଯ୍ୟ ଆଶାରେ ତାଙ୍କୁ ମାଗିବାକୁ ଆସିଥିଲେ । ଏ ପ୍ରକାର ଉତ୍ତର ପାଇ ସେ ସେଠାରୁ ବିଦାୟ ନେଲେ ।

ଲାଲଟେଣ୍ଟ ବ୍ୟବହାରର ଦାୟିତ୍ୱ ସହ ତାଙ୍କୁ ଷୋଳବର୍ଷ ବୟସରେ ୧୦ ହଜାର ଘୋଡ଼ାର କମାଣ୍ଡର କରିଦିଆଗଲା । ୧୬୩୫ରେ ବୁନ୍ଦେଲା ଛାଉଣୀରେ ସେ ଜଣେ କମାଣ୍ଡର । ସେହିବର୍ଷ ସେ ଦାକ୍ଷିଣାତ୍ୟରେ ଗଭର୍ଣ୍ଣର ମଧ ହେଲେ । ୧୬୪୪ ପର୍ଯ୍ୟନ୍ତ ଏ ଦାୟିତ୍ୱ ତୁଲାଇଲେ । ଜାହାନ୍ଆରା ନିଆଁରେ ପୋଡ଼ି ହୋଇଯିବା ଖବର ପାଇଁ ସେ ତାଙ୍କୁ ଆଗ୍ରା ଦେଖିବାକୁ ଗଲେ । ହଠାତ୍ ଚାକିରୀରୁ ବରଖାସ୍ତ କରାଗଲା- ସେ ନିଜେ ବି ଜାଣନ୍ତି ନାହିଁ ବରଖାସ୍ତ ହେବାର କାରଣ କ'ଣ ? ଆଗ୍ରାରେ ପହଞ୍ଚିବା ପରେ ତାଙ୍କର ଭୟ ହେଲା କି ଦାରା ତାଙ୍କୁ ମାରିଦେବେ । ସେ କାରଣରୁ ଆଗ୍ରାଦୁର୍ଗ ମଧରେ ପଶିଲେ ବି ନାହିଁ ।

ବୋଧହୁଏ ଜାହାନ୍ଆରାଙ୍କ ଅନୁରୋଧ କ୍ରମେ ୧୬୪୫ରେ ତାଙ୍କୁ ଗୁଜରାଟର ଗଭର୍ଣ୍ଣର କରିଦେଲେ । ତାଙ୍କର ଦକ୍ଷତା ଦେଖି ସମ୍ରାଟ ତାଙ୍କର ଦରମା ବାର୍ଷିକ ୬

ମିଲିଅନ ଟଙ୍କାକୁ ବୃଦ୍ଧିକଲେ। ସେଣ୍ଟ୍ରାଲ ଏସିଆ କମ୍ପାନୀ ଦାୟିତ୍ୱ ନେବାପରେ ୧୬୪୬ରେ ତାଙ୍କୁ ଡକାହେଲା।

ମାର୍ଚ୍ଚ ୧୬୪୮ ରେ ତାଙ୍କୁ ମୂଲତାନର ଗଭର୍ଣ୍ଣର କରିଦିଆଗଲା। ସେଠୁ ତାଙ୍କ କାହିହାର ଜାଖେନ ଆସୋଲବା ପାଇଁ ଆଦେଶ ପାଇଲେ ଏବଂ ପରେ ୧୬୫୨ରେ ପୁଣିଥରେ ଗଭର୍ଣ୍ଣର ହେଲେ। ସେତେବେଳକୁ ବାପପୁଅଙ୍କର ବିଶ୍ୱାସ ଏକାବେଳକେ ଭାଙ୍ଗିଯାଇଥିଲା। ଗୋଲାକୋଣ୍ଡାରୁ ଅଣାଯାଇଥିବା ସବୁ ସଂପତ୍ତିକୁ ଅକ୍ତିଆର କଲେ। ସମ୍ରାଟ ଶାହାଜାହାଁ ପଚାରନ୍ତେ କହିଲେ କି ମୁଁ ଯେତେବେଳ ସମ୍ରାଟଙ୍କ ଅଧୀନରେ, ଧନ ସମ୍ପତ୍ତି ମୁଁ ସମ୍ରାଟଙ୍କୁ କାହିଁକି ଦେବି? ସେମାନଙ୍କର ସଂପର୍କ ଦୂରେଇଗଲା। ସେ ପରେ ପରେ ଚିଠିର ଆଦାନ ପ୍ରଦାନ ମଧ୍ୟ ବନ୍ଦ କରିଦେଲେ।

ଔରଙ୍ଗଜେବ ନିଜର ବଞ୍ଚିବା ପାଇଁ ସଂଘର୍ଷ ଚଳାଇଲେ। ବାପା, ଭାଇ, ଏପରିକି ନିଜ ତୃତୀୟ ପୁତ୍ର ଆଜାମଙ୍କ ବ୍ୟତିତ ଆଉ କାହା ଉପରେ ନିର୍ଭର କରି ନଥିଲେ। ଔରଙ୍ଗଜେବଙ୍କ ପାଖରେ ତାଙ୍କ ଭାଇ ମୁରାଦ ଓ ସୁଜାଙ୍କ ପରି ସୈନ୍ୟବଳ ନଥିଲା। ଅଥବା ଭାଇ ଦାରାଙ୍କ ପରି ବିପୁଳ ସ୍ନେହ ଓ ଅର୍ଥ ବଳ ମଧ୍ୟ ନଥିଲା। ପିଲାଦିନୁ ଔରଙ୍ଗଜେବ ଜଣେ ରୋଗୀଣା ଛୁଆ ଥିଲେ। କିନ୍ତୁ ତାଙ୍କ ମନୋବଳ ତାଙ୍କର ଶରୀର ଉପରେ ରାଜୁତି କରୁଥିଲା, ଯାହା ଫଳରେ ସେ ମୋଗଲ ସାମ୍ରାଜ୍ୟର ଯେତେ ସବୁ ସଦସ୍ୟ ଥିଲେ ସମସ୍ତଙ୍କଠାରୁ ବେଶି ବର୍ଷ (ଅଣାନବେ ବର୍ଷ) ବଞ୍ଚିଥିଲେ। ତାଙ୍କ ଜୀବନ କାଳ ମଧ୍ୟରେ ସେ ଥରେ ମାତ୍ର ବେମାର ପଡ଼ିଥିଲେ। ୧୬୬୨ ମେ, ତାଙ୍କ ସମ୍ରାଟ ହେବାର ପଞ୍ଚମ ବର୍ଷ, ହୁଏତ ଅତ୍ୟଧିକ ପରିଶ୍ରମ, ରାମଜାନ ଉପାସ ବା ଦିଲ୍ଲୀ ଗରମ ସେ ସହ୍ୟ କରି ପାରିନଥିଲେ। ଜରରେ ପଡ଼ିଲେ। ଜର ଦିନକୁ ଦିନ ବଢ଼ିଲା। ଦିଲ୍ଲୀରେ ଆତଙ୍କ ଖେଳିଗଲା। ଭାବିଲେ ପୁଣି ଥରେ ଗୃହଯୁଦ୍ଧ ହୋଇଯାଇପାରେ। କିନ୍ତୁ ୫ ଦିନପରେ ସେ ଦରବାରକୁ ଯାଇପାରିଲେ। ସଂପୂର୍ଣ୍ଣ ଆରୋଗ୍ୟ ହେବା ପାଇଁ ପ୍ରାୟ ମାସେ ଲାଗିଗଲା। କଥା କହିବା କଷ୍ଟକର ହେଉଥିଲା କାରଣ ପକ୍ଷପାତ ରୋଗରେ ଆକ୍ରାନ୍ତ ଥିଲେ ସେ। କହିବାକୁ ଗଲେ ସମ୍ରାଟ କେବଳ କଥା କହିବା ଶକ୍ତି, ଓ ଦୃଷ୍ଟିଶକ୍ତି ହିଁ ଚାହୁଁଥିଲେ।

ଦାନ୍ତ ବେଶ୍ ମଜବୁତ ଥିଲା। ଈଶ୍ୱର ଦାସ କହୁଥିଲେ କି ପ୍ରକୃତି ତାଙ୍କୁ ଯୋଡ଼ିଏ ବଡ଼ ଜିନିଷ ଦାନ କରିଥିଲା। ତା' ହେଉଛି ତୀକ୍ଷ୍ଣ ସ୍ମରଣ ଶକ୍ତି ଆଉ

ଧାରଣ ଶକ୍ତି। ପୋଷାକ ତାଙ୍କର ସରଳ ଓ ସୁନ୍ଦର ଥିଲା। ଅଳ୍ପ କିଛି ଗହଣା ବ୍ୟତିତ ସେ ଅଧିକ ଗହଣା ମଧ୍ୟ ପିନ୍ଧୁନଥିଲେ। ଟରବାନ ଉପର ସାମନାକୁ ଏକ ଛୋଟ ପର ଭଳି ଜିନିଷ ଓ ଏକ ବିରାଟ ଦାମି ପଥର ଓ ପେଟ ପାଖେ ଆଉ ଏକ ଦାମୀ ପଥର। ମୁକ୍ତା ବା ଅନ୍ୟାନ୍ୟ ପଥରମାଳା ସେ ଶରୀରରେ ଧାରଣ କରନ୍ତି ନାହିଁ। ତାଙ୍କ ଏ ଚେହେରାରେ ପ୍ରତିଫଳିତ ହୁଏ ତାଙ୍କର ହୃଦୟର ବାଣୀ। ଭିତରେ ଭିତରେ ହଜିଯାଇଥାନ୍ତି ତାଙ୍କ କୁକର୍ମର ଭାରାରେ। କିନ୍ତୁ ଆଇନର ଆବଦ୍ଧ, ଆକ୍ରମଣ ଉଦ୍ଦେଶ୍ୟ ନ ଥାଇ, ସବୁଠୁ ସରଳ ମୋଗଲ ସମ୍ରାଟ।

ଥରେ ସେ ବରହାନପୁରରେ ଥିବା ସମୟରେ ଦୁର୍ଗ ନିକଟରେ ନିଆଁ ଲାଗିଯାଇଥିଲା। ତିରିଶ ବସ୍ତା ଗନ ପାଉଡ଼ର ଘରତଳେ ରଖାଯାଇଥିଲା। ଏହା ପଛରେ କୌଣସି ରହସ୍ୟ ନାହିଁ। କିନ୍ତୁ ବହୁତ ଦିନ ଧରି ସେଠାରେ ଥିଲା କିନ୍ତୁ ସେ ବିଷୟ ସମସ୍ତେ ଭୂଲି ଯାଇଛନ୍ତି। ଏ ସମସ୍ୟା କିନ୍ତୁ ଗମ୍ଭୀର। ଔରଙ୍ଗଜେବ ଖାଲି ସେ ଅଫିସରଙ୍କୁ ଦାୟି କଲେ ଓ ତଳପାହ୍ୟାକୁ ଖସାଇ ଦେଲେ। କହିଲେ, ଏପରି ଘଟଣା ଯଦି ଜାହାଙ୍ଗୀରଙ୍କ ଅମଳରେ ଘଟିଥାନ୍ତା। ତା'ହେଲେ ରାଜା ଗନ ପାଉଡ଼ର ସହିତ ଏ ଲୋକଟିକୁ ମଧ୍ୟ ଉଡ଼େଇ ଦେଇଥାନ୍ତେ।

ଔରଙ୍ଗଜେବ ନିଜ ସଂକ୍ରାନ୍ତରେ କହନ୍ତି; ଏ ଦୁର୍ବଳ ବୃଦ୍ଧ ମଣିଷ, ସଙ୍କୁଚିତ ଅସହାୟ ଜୀବ, ଉକ୍ରଣ୍ଠା ଛଡ଼ା ଅନେକ ଦୁଃଖର ଗୀତ ଗାଏ, ରୋଗଗ୍ରସ୍ତ। କିନ୍ତୁ ସେ ଧୈର୍ଯ୍ୟକୁ ଅଭ୍ୟାସରେ ପରିଣତ କରିଥିଲେ।

ଥରେ ଜଣେ ଔରଙ୍ଗଜେବଙ୍କ ସେବକ ତାଙ୍କ ସହିତ ଧକ୍କା ଖାଇ ସମ୍ରାଟଙ୍କୁ ତଳେ ପକାଇଦେଲା। ଆଉ ଡ଼ରରେ ନିଜେ ମଧ୍ୟ ବେହୋସ ହୋଇଗଲା। ତାଙ୍କୁ କହିଲେ; ତୁ ବି ତ ମୋ ପରି ଏକ ଜୀବ, ତୁ ଉଠ।

ରାଜପ୍ରସାଦରୁ ନିଷ୍କାସିତ ପାଣିକୁ ଗୋଟାଏ ନାଳ ଜରିଆରେ ନେଇ ତେଲଘଣା ଜଣେ ଚଳାଉଥିଲେ। ପ୍ରାସାଦର ଅଫିସରମାନେ ପାଣି ବନ୍ଦ କରିଦେଇ ତାଙ୍କୁ ଅସୁବିଧାରେ ପକାଇଲେ। ତାକୁ ଧରି ଆଣି ରାଜାଙ୍କ ଆଗରେ ପେଶ୍ କଲେ। ରାଜା ସେ ଲୋକକୁ କହିଲେ ତୁ ମୋ ପ୍ରତିବେଶୀ। ମୋ ଆସିବାରେ ତୋର ଅନେକ କ୍ଷତି ଘଟିଛି, ମତେ କ୍ଷମା କରିବେ।

କୌଣସି ଅଫିସର ଯଦି କୌଣସି କାରଣରୁ ତାଙ୍କ ଆଦେଶ ଅମାନ୍ୟ କରେ ସେ ରାଗ ନ ଦେଖାଇ ନରମ ଭାଷାରେ କହନ୍ତି, ମୁଁ ଜଣେ ପାପୀ, ମୋ ଆଦେଶ

ଅମାନ୍ୟ ହେବାରେ କୌଣସି ଆଶ୍ଚର୍ଯ୍ୟ ନାହିଁ। ପ୍ରତ୍ୟେକ ଦିନ ଭଗବାନଙ୍କର ଆଦେଶକୁ ଅବମାନନା କରାଯାଇଛି। ହେଲେ ବି ସେ ଆଦେଶ ଦେବାକୁ ଭୂଲନ୍ତି ନାହିଁ ଅମାନ୍ୟ କଲେ ଦଣ୍ଡ ଦେବାକୁ ମଧ୍ୟ ଭୂଲନ୍ତି ନାହିଁ।

ରାଜପୁତ୍ର ଭାବରେ ମଧ୍ୟ ଔରଙ୍ଗଜେବ ସାମ୍ରାଜ୍ୟର ଅଫିସରମାନଙ୍କୁ ଅତି ନରମ ବ୍ୟବହାର ଦେଖାଉଥିଲେ। ଏପରିକି ଶାହାଜାହାଁ ଏ ବିଷୟରେ ଔରଙ୍ଗଜେବ୍‌କୁ ଚିଠି ଲେଖିଥିଲେ। ଶାହାଜାହାଁଙ୍କ ଚିନ୍ତା ଥିଲା କି ଅଫିସରମାନଙ୍କ ପ୍ରିୟପାତ୍ର ହେବାପାଇଁ ଏପରି ନରମ ବ୍ୟବହାର ଦେଖାଉଛନ୍ତି। ଫଳରେ ସେ ଉତ୍ତରାଧିକାରୀ ସଂଘର୍ଷରେ ସେମାନଙ୍କ ସମର୍ଥନ ପାଇବେ।

ବିଶ୍ୱାସ ଘାତକତା ତାଙ୍କ ଚରିତ୍ରର ଏକ ଅଙ୍ଗ। ନିଜ ଚରିତ୍ର ସଂକ୍ରାନ୍ତରେ ତାଙ୍କର କୌଣସି ପ୍ରତାରଣା ନ ଥିଲା। ତାଙ୍କ ଆଦର୍ଶରେ ସେ ଦୃଢ଼। ନିଜ ଆଦର୍ଶକୁ ହାସଲ କରିବା ମଧ୍ୟ ସେ ପଛାନ୍ତି ନାହିଁ। କିନ୍ତୁ ଲୋକଙ୍କ ସଂକ୍ରାନ୍ତରେ ସେ ବେଶ୍ ସଚେତନ। ତାଙ୍କୁ ପୁଅକୁ ସେ ଲେଖିଥିଲେ କି ସାହାସୀ ଅର୍ଥ ଯିଏ ଶତ୍ରୁକୁ ମୁକାବିଲା କରିପାରିବ। ସାଧାରଣ ଲୋକଙ୍କୁ ଚାକିରୀ ଦେବାରେ ସେ ଆଗଭର।

ଥରେ ଶାହାଜାହାଁଙ୍କୁ ଲେଖିଲେ କି ରାଜ୍ୟ ଜୟ କରିଥିବା ରାଜା ଯେ ଭଲ ରାଜା ହୋଇପାରିବ ତା' ନୁହେଁ ଭଲ ରାଜାର ଅର୍ଥ ଯେ ତା'ର ପ୍ରଜାମାନଙ୍କୁ ସମାନ ଭାବରେ ଶାସନ କରିପାରିବ। ପିଲାମାନଙ୍କୁ ବୁଝାଇଥିଲେ କି ଆଇନମାନି ଚଳିବ ଓ କାହାକୁ ଅତ୍ୟାଚାରିତ କରି ଶାସନ କରିବା ଉଚିତ ନୁହେଁ। ଔରଙ୍ଗଜେବଙ୍କୁ ତାଙ୍କ ମୋଗଲ ସମ୍ରାଟ ମାନଙ୍କ ମଧ୍ୟରେ ଗ୍ରନ୍ଥ ବୋଲି କୁହଯାଇଥିଲା। କାରଣ ସେ ଧର୍ମକୁ ସାକ୍ଷୀରଖି ବିଶେଷ ପରିମାଣରେ ଦୟାଶୀଳ ଓ ପରୋପକାରୀ ଥିଲେ।

ଐତିହାସିକମାନେ ଔରଙ୍ଗଜେବଙ୍କୁ ଭିନ୍ନ ଦୃଷ୍ଟିରେ ଦେଖୁଥିଲେ। ସମୟ ବୋହିଯିବା ସଙ୍ଗେ ସଙ୍ଗେ ଛୋଟ ଛୋଟ ଘଟଣାକୁ ନେଇ ତାଙ୍କ ଦାନଶୀଳତା, ପ୍ରତ୍ୟେକ ଦିନର ଘୃଣାରେ ପରିଲକ୍ଷିତ ହୋଇଥିଲା, କିନ୍ତୁ ଆଖି ଦୃଷ୍ଟିଆ କୁକର୍ମ ତାଙ୍କ ଜୀବନରେ ଘଟିଥିଲା। ଧର୍ମ ଜନିତ ଅସହିଷ୍ଣୁତା, ବିଜୟୀ ସମ୍ରାଟ ଭାବରେ କ୍ରୁରତା ଅନ୍ୟ ପାଖରୁ କାମ ହାସଲ କରିବାରେ ଚତୁରତା, ପିତା, ମାତା ଓ ପୁତ୍ରମାନଙ୍କ ପ୍ରତି ଅସଦାଚରଣ ବ୍ୟବହାର ସବୁଥିରେ ତାଙ୍କୁ ତଳକୁ ଟାଣିନେଉଥିଲା। ଅତି ଛୋଟ କରିଦେଇଥିଲା ଔରଙ୍ଗଜେବଙ୍କ କ୍ରୁରକାମ– ଜିଜିୟା କର। ଆଉ ଅନ୍ୟାନ୍ୟ ଅନେକ କାମରେ ମଧ୍ୟ ସେ ନିନ୍ଦନୀୟ। ସେ ବେଶି

ପରିମାଣରେ ଗମ୍ଭୀର ଓ ଗୋପନୀୟ ଭାବରେ ଅନେକ କାର୍ଯ୍ୟ ସମ୍ପନ୍ନ କରିବା ତାଙ୍କର ସ୍ୱଭାବ। ସେ ଥରେ ପୁତ୍ର ଆଜାମକୁ ଚିଠି ଲେଖିଥିଲେ କି ମଣିଷପଣିଆ ଅଧୈର୍ଯ୍ୟ ଓ ଜିଦ୍ ଉପରେ ନିର୍ଭର କରେ ନାହିଁ, ନିର୍ଭର କରେ ନିଜ ଚରିତ୍ରର ନିୟନ୍ତ୍ରଣ ଓ ମନୁଷ୍ୟୋଚିତ କାର୍ଯ୍ୟକଳାପରେ। ତାଙ୍କ ଅଫିସରମାନଙ୍କୁ କହନ୍ତି କି ଦେଶର ମଙ୍ଗଳ କରିବାପାଇଁ ତମେ ମିଥ୍ୟା ସଂକଳ୍ପ ନେଇପାର, କିନ୍ତୁ ଏପରି କଲେ ତୁମଠାରୁ ପାପୀ ଆଉ କେହି ଜନ୍ମ ହୋଇ ନଥିବେ। ଔରଙ୍ଗଜେବ ଥରେ ଲେଖିଥିଲେ, ଭଗବାନ ନିଜେ କହିଛନ୍ତି କି କପଟତା ତାଙ୍କ ଅଙ୍ଗ। ଭଗବାନ ସବୁ ସମାଧାନ କରନ୍ତି ଷଡଯନ୍ତ୍ର କରି। କୋରାନ ଭାଷାରେ ପ୍ରତାରଣା ଓ ଦୋଷଦେଇ ନିନ୍ଦା କରିବା ନିୟମ ବିରୁଦ୍ଧ। କିନ୍ତୁ ମୋଗଲଙ୍କ ନୀତି ସବୁକୁ ପାର କରିଯାଇଛି। ସମ୍ରାଟଙ୍କ ଭାଷାରେ ନିଜକୁ ଜୟଯୁକ୍ତ କରିବାହିଁ ଶ୍ରେଷ୍ଠ ଧର୍ମ– ମିଥ୍ୟା ସଂକଳ୍ପ, ପ୍ରତାରଣା କରି ମଧ୍ୟ। ଜୟଯୁକ୍ତ ହେବାହିଁ ଯୁଦ୍ଧର ନୀତି। ଏ ନୀତି ଇସଲାମ ଧର୍ମ ଖଣ୍ଡନ କରିବା ଉଚିତ ନୁହେଁ। ତାଙ୍କ ଭାଷାରେ ପରିଶ୍ରମ ହିଁ ଇସଲାମ ଧର୍ମର ନିୟମ– ଶେଷ ନିଃଶ୍ୱାସ ଚାଲିଯିବା ପର୍ଯ୍ୟନ୍ତ ଏଥିରୁ ଓହରିଯାଅନି। ତାଙ୍କ ପୁଅ ମୁଜାରମଙ୍କୁ ସେ ଲେଖିଥିଲେ କି କୌଣସି ସମ୍ରାଟ ସହଜ, ସରଳ ଜୀବନଯାପନ କରିବା ବା କାମରୁ ଅବ୍ୟାହତି ନେବାପାଇଁ ଇଚ୍ଛା କରିବା ଉଚିତ ନୁହେଁ। ରକ୍ଷଣଶୀଳ ଇସଲାମ ଧର୍ମର ଟାଣଲୁହା ବାଡ଼କୁ ଔରଙ୍ଗଜେବ ଜାବୁଡ଼ି ରଖିଥିଲେ। ତାଙ୍କ ଧର୍ମନୀତି ରକ୍ଷାକୁ ଅମାନ୍ୟ କରିହେବ ନାହିଁ। ପୁରା କୋରାନ ମୁଖସ୍ଥ କରିଥିଲେ। ପ୍ରାର୍ଥନା କରିବାରେ ଅଧିକ ସମୟ ବିତାଉଥିଲେ। ଏପରିକି ଇସଲାମ ଧର୍ମ ବିରୁଦ୍ଧ ପୋଷାକ ମଧ୍ୟ ପିନ୍ଧୁ ନଥିଲେ। ଆଉ ଫକୀର ହେବାର ପ୍ରତାରଣା ମଧ୍ୟ କରୁଥିଲେ।

ଅଲୌକିକ ଦକ୍ଷତା ମଧ୍ୟ ତାଙ୍କର ଥିଲା। ଥରେ ସତନମି ସଂପ୍ରଦାୟର (ଧର୍ମନ୍ମୋଭ ହିନ୍ଦୁ ସଂପ୍ରଦାୟ) ବିଶ୍ୱାସୀମାନେ ସେମାନଙ୍କର ଅଲୌକିକ ଶକ୍ତି ଅଛି ବୋଲି ବିଶ୍ୱାସ କରି ମୋଗଲ ସେନାଙ୍କ ବିରୁଦ୍ଧରେ ବିଦ୍ରୋହ କଲେ। ଭୟଭୀତ ହେଲେ ମୋଗଲ ସେନା। ଔରଙ୍ଗଜେବ ନିଜ ହାତରେ କିଛି ପ୍ରାର୍ଥନା ଓ ପ୍ରାର୍ଥନାକୁ ଚଳେଇନେବାର ତାଲିକା ପ୍ରସ୍ତୁତ କରି ଏକ ବ୍ୟାନର ଉପରେ ଲେଖି ଚାରିଆଡ଼େ ଲଗାଇଦେଲେ। କ'ଣ ଲେଖା ଥିଲା କେହି ଜାଣନ୍ତି ନାହିଁ। କିନ୍ତୁ ସେ ଲେଖାପଢ଼ି ସତନମି ସଂପ୍ରଦାୟର ଲୋକେ ବିଦ୍ରୋହ ବନ୍ଦ କଲେ।

ଥରେ ଭିମା ନଦୀରେ ବନ୍ୟା ଆସି ମୋଗଲ ଛାଉଣୀ ଜାଗାକୁ ଘେରିଗଲା। ଔରଙ୍ଗଜେବ ନିଜ ହାତରେ ପ୍ରାର୍ଥନା ଲେଖି ପାଣି ଭିତରକୁ ଫୋପାଡ଼ିବାପାଇଁ କହିଲେ– ବନ୍ୟା କମିଯିବା ଆଶାରେ। ସତକୁସତ ବନ୍ୟା କମିଗଲା।

ଔରଙ୍ଗଜେବଙ୍କ ବିଷୟରେ ଯଦୁନାଥ ସରକାର ଲେଖିଥିଲେ କି ସେ ନିଜେ ଟୋପି ତିଆରିକରି ଅମିରମାନଙ୍କୁ ଦେଉଥିଲେ। କୋରାନ ନିଜ ହାତରେ ଲେଖି ସେ ସବୁକୁ ବିକୁଥିଲେ। ତାଙ୍କର ବିଶ୍ୱାସ କି ନିଜେ ପରିଶ୍ରମ କରି ସେ ପରିଶ୍ରମ ଅର୍ଥରେ ଜଣେ ଲୋକ ତାର ଗୁଜରାଣ ମେଣ୍ଟାଇବା ଉଚିତ। ଦିଲ୍ଲୀ ଓ ଆଗ୍ରା ମଝିରେ କୌଣସି ଏକ ଜାଗାରେ ଗୋଟେ ଫାର୍ମ ଖୋଲିଥିଲେ। ଆଉ ଫାର୍ମର ଅର୍ଜିତ ପଇସାରୁ ସେ ଚଳୁଥିଲେ। ସେଥିରୁ ସେ ପ୍ରାୟ ବାର୍ଷିକ ଟ.୨୦୦୦ ପାଉଥିଲେ। ଠିକଣା କରିଥିଲେ କି ଖାଇବା ଖର୍ଚ୍ଚ ବର୍ଷକୁ ଟ.୧୦୦୦ ଓ ଅନ୍ୟାନ୍ୟ ଖର୍ଚ୍ଚ ଏହାରି ଭିତରେ ସିମୀତ ରଖିଥିଲେ। ଗୀତ ନାଚ ପାଇଁ ପିଲାଦିନେ ଅନେକ ସଉକ ଥିଲା। ବଇଁଶୀ, ପଖଉଜ ନ ବାଜିଲେ ସେ ଗୀତ ଶୁଣନ୍ତି ନାହିଁ। ଗୀତ ଉପରେ ଗଭୀର ଜ୍ଞାନ ମଧ୍ୟ ଥିଲା। ତାଙ୍କ ମତରେ କୋରାନ କହେ ଯେ ଯେଉଁ କବିମାନେ ଭଗବାନଙ୍କୁ ଖୁସାମତ କରି କବିତା ଲେଖନ୍ତି ସେମାନଙ୍କ କବିତା ଆଦରଣୀୟ ନୁହେଁ। ସେ ବ୍ରହ୍ମଜ୍ଞାନ ସିଦ୍ଧାନ୍ତ ପଢ଼ିବାକୁ ଭଲପା'ନ୍ତି। ତାଙ୍କ ହସ୍ତାକ୍ଷର ଅତି ସୁନ୍ଦର। କେବଳ ପର୍ଲ ମସଜିଦର ସ୍ଥାପତ୍ୟ ବ୍ୟତିତ ସ୍ଥାପତ୍ୟ ବିଦ୍ୟାର ଆଦର ତାଙ୍କ ପାଖରେ ନଥିଲା।

ଖାଇବାର ନିଶା ଥିଲା ଅନେକ। ରାଜପୁତ୍ର ଆଜାମଙ୍କୁ ସେ ତାଙ୍କ ଖେଚୁଡ଼ି ଓ ବିରିୟାନୀ ପ୍ରସ୍ତୁତ କରୁଥିବା ରୋଷେୟାକୁ ପଠାଇବାପାଇଁ ଅନୁରୋଧ କରିଥିଲେ। ରାଜପୁତ୍ର ବାରଣ କଲେ। ସେଥିପାଇଁ ଔରଙ୍ଗଜେବ ତାଙ୍କୁ ଅନୁରୋଧ କଲେ କି ସେ ରୋଷେୟାର କେହି ଯଦି ଶିଷ୍ୟ ଥାଏ ତେବେ ତାକୁ ମୋ' ପାଖକୁ ପଠାଅ। ଫଳ ବିଶେଷକରି ଆମ୍ବ ପ୍ରୀୟ ଥିଲେ। ତାଙ୍କର ଶାରିରୀକ ବଳ ବିଶେଷ ନଥିଲା କିନ୍ତୁ ସାହସ ଥିଲା ଅତୁଟ। ଯେ କୌଣସି ପ୍ରତିରୋଧକୁ ସାମନା କରିବା ତାଙ୍କର ଧର୍ମ ଥିଲା। ୧୪ ବର୍ଷ ବୟସରେ ଆଗ୍ରାର ଯମୁନା କୂଳରେ ଘୋଡ଼ାସବାର ହୋଇ ଭାଇମାନଙ୍କ ସହିତ ହାତୀ ଲଢ଼େଇ ପଛେ ପଛେ ଗୋଡ଼ାଉଥିଲେ। ହଠାତ୍ ଗୋଟେ ହାତୀ ତାଙ୍କ ଉପରକୁ ମାଡ଼ି ଆସିଲା। ସେ ମୁହାଁମୁହିଁ କଲେ ସାହସର ସହିତ। ପରେ ଅବଶ୍ୟ ସୁଜା ଓ ରାଜା ଜୟସିଂ ତାଙ୍କୁ ଉଦ୍ଧାର କଲେ। କେନ୍ଦ୍ର ଏସିଆରେ ଉଜ୍‌ବେଗମାନଙ୍କ ସଙ୍ଗେ ଲଢ଼ାଇ ବେଳେ ଯୁଦ୍ଧକ୍ଷେତ୍ର ମଝିରେ କାରପେଟ ପକାଇ

ସଂଧ୍ୟା ପ୍ରାର୍ଥନା ଆରମ୍ଭ କରିଥିଲେ। ସେନାବାହିନୀଙ୍କ ମଝିରେ ସେ ସୁରକ୍ଷିତ ଥିଲେ ହେଁ ଅବଦୁଲ ଅଜିଜ (ଉଜବେଗର ସେନାପତି) ପାଟିକରି କହିଲେ ଏପରି ଅବସ୍ଥାରେ ଜଣକ ସହିତ ଯୁଦ୍ଧ କରିବା ଅର୍ଥ ନିଜର ଲୋକସାନକୁ ଆଦରିନେବା।

୧୬୩୭ରେ ପ୍ରଥମ ବିବାହ କରିଥିଲେ। ସେ ଥିଲେ ଦଶଟି ସନ୍ତାନର ଜନକ। ସ୍ତ୍ରୀମାନଙ୍କୁ ସୁଖରେ ରଖିଥିଲେ ହେଲେ କାହାରି ପ୍ରତି କୌଣସି ଆନ୍ତରିକତା ନଥିଲା। ହୀରାବାଈ ନାମକ ଜଣେ ହିନ୍ଦୁ ନାଚବାଳି ସହ ତାଙ୍କର ପ୍ରେମ ହେଲା। ସ୍ୱଳ୍ପ ସମୟପାଇଁ ଓ ଆଡ଼ମ୍ବରପୂର୍ଣ୍ଣ କିନ୍ତୁ ଦୁଃଖଦ। ଔରଙ୍ଗଜେବଙ୍କ ଜଣେ ମାଉସୀଙ୍କର ସେ ରକ୍ଷିତା ହୀରାବାଇ ବୁରହାନପୁରର ତପ୍ତୀ ନଦୀ କୂଳର ଆଖପାଖରେ ପାର୍କରେ ବୁଲି ବୁଲୁଥିଲେ। ଆନନ୍ଦରେ ଗୀତ ଗାଇ ନାଚି ନାଚି ଯାଉଥିଲେ। ଔରଙ୍ଗଜେବ ସେତେବେଳେ ଥିଲେ ରାଜପୁତ୍ର। ହୀରା ବାଈକୁ ଦେଖି ଔରଙ୍ଗଜେବ ଭାବବିହ୍ୱଳ ହୋଇ ସେଠାରେ ବସିପଡ଼ିଲେ। ହୀରାବାଇ କିନ୍ତୁ ରାଜପୁତ୍ରଙ୍କୁ ନଜର କରି ନଥିଲେ। ରାଜପୁତ୍ର ବେହୋସ ହୋଇଗଲେ। ମଶିର-ଉଲ-ଉମାରା, ମୋଗଲ ଲିପି ଅନୁସାରେ ହୀରାବାଈର ସ୍ୱର, ତା ଗୀତର ଛନ୍ଦ ଦେହରେ ସ୍ପନ୍ଦନ ଆଣେ। ହୀରାବାଈ ଗୋଟେ ଆମ୍ବ ଗଛରୁ ଆମ୍ବଟିଏ ତୋଳିବାପାଇଁ ଚେଷ୍ଟା କରୁ କରୁ ଏତେ ମଗ୍ନ ଥିଲା ଯେ ରାଜପୁତ୍ରଙ୍କୁ ଉପଯୁକ୍ତ ସମ୍ମାନ ଦେଇପାରି ନଥିଲା। ଏଇଟାହିଁ ଔରଙ୍ଗଜେବଙ୍କୁ ଉତ୍ତେଜିତ କରାଇଲା। ସେ ହିରାବାଈଙ୍କୁ ତାର ଖୁଡ଼ି ଘରୁ ନେଇଆସି ଜବରଦସ୍ତ କଲେ। ଦିନେ ହୀରାବାଈ ତାଙ୍କୁ ମଦକପ୍ ଧରାଇ ପିଇବାକୁ ଅନୁରୋଧ କଲା। ନିଜ ଇଚ୍ଛା ବିରୁଦ୍ଧରେ ପିଇବାକୁ ଯାନ୍ତେ ହୀରାବାଇ ଗିଲାସଛଡ଼ାଇ ନେଇ କହିଲା 'ମୁଁ ମୋ'ପାଇଁ ତୁମର ଭଲପାଇବା ପରୀକ୍ଷା କରୁଥିଲି ହେଲେ ତୁମକୁ ଏ ଜହର ପିଆଇବାର ଉଦ୍ଦେଶ୍ୟ ମୋର ନଥିଲା। ପରେ ହିରାବାଈର ନାମ ହେଲା ଜୈନାବାନ। କିନ୍ତୁ ବର୍ଷକ ଭିତରେ ସେ ମରିଗଲା। ଏ ଘଟଣାହିଁ ତାଙ୍କ ଜୀବନର ମୋଡ଼ ନେଇଥିଲା। ତା' ପରଠାରୁ ସେ ମଦପିଇ ନାହାନ୍ତି ବା କାହାକୁ ଜବରଦସ୍ତି କରିନାହାନ୍ତି।

ଆକବର ଅମଳରେ ୧୫୬୪ରେ ଜିଜିୟାକର ଉଠାଇ ଦିଆଯାଇଥିଲା। ୧୧୫ ବର୍ଷପରେ ୧୨ ଏପ୍ରିଲ ୧୬୭୯ରେ ଔରଙ୍ଗଜେବ ପୁଣିଥରେ ଏହି କର ବସାଇଲେ। ଏହା ବିରୁଦ୍ଧରେ ଜନସାଧାରଣ ସ୍ୱର ଉତ୍ତୋଳନ କଲେ। କେବଳ ହିନ୍ଦୁ ନୁହଁନ୍ତି ଅନ୍ୟସବୁ ସଂପ୍ରଦାୟର ଲୋକ ବିରୋଧ କଲେ। କର ଦେବାପାଇଁ ଅକ୍ଷମ ଥିଲେ। କିନ୍ତୁ ଔରଙ୍ଗଜେବ କାହାରି କଥା ନ ଶୁଣି ଓ ଏହା ମହମ୍ମଦଙ୍କ

ଧର୍ମପ୍ରଚାରର ଏକମାତ୍ର ଲକ୍ଷ୍ୟ ବୋଲି ଦର୍ଶାଇ ଏ କର ଉଠାଇ ନଥିଲେ। ଜିଜିୟା କର ବସାଇବା ପରେ ପରେ ଦେଶରେ ବଡ଼ଧରଣର ଭୂମିକମ୍ପ ହେଲା। ଏ ଲକ୍ଷଣ ଭଲ ନୁହେଁ ବୋଲି ଭାବି ଲୋକମାନେ ସମ୍ରାଟଙ୍କୁ ପୁଣି ଅନୁରୋଧ କଲେ। ସମ୍ରାଟ କହିଲେ, ପୃଥିବୀ ରାଗରେ ଥରୁନାହିଁ, ମୋ' ବ୍ୟବହାରରେ ଖୁସି ହୋଇ ସେ ଥରୁଛି ଓ ତାର ପ୍ରତିକ୍ରିୟା ଜଣାଉଛି– ଖୁସିରେ କାନ୍ଦୁଛି।' ଜାହାନ୍ନାରା କହିଥିଲେ; ହିନ୍ଦୁସ୍ଥାନ ପରି ଏକ ବିଶାଳ ସମୁଦ୍ରର ଜାହାଜରେ ତୁମେ ନାବିକମାତ୍ର ଆଉ ଏପରି କଲେ ତୁମ ଜାହାଜ ଧ୍ୱଂସ ହୋଇଯିବ। ମାନିଲେ ନାହିଁ ଔରଙ୍ଗଜେବ। କହିଲେ; ପ୍ରଫେଟ ମହମ୍ମଦଙ୍କ ଦ୍ୱାରା ଏହା ଅନୁଗୃହିତ ହୋଇସାରିଛି ଏହାକୁ କାର୍ଯ୍ୟକାରୀ କରିବା ମୋ କର୍ତ୍ତବ୍ୟ। ଜାହାନ୍ନାରାଙ୍କ କଥା ଠିକ୍ ହେଲା। ଇସ୍ତାହାର ବାହାରିବାପରେ ଦିଲ୍ଲୀରେ ହିନ୍ଦୁ ସଂପ୍ରାଦାୟର ଲୋକେ ସମ୍ରାଟଙ୍କ ନିକଟରେ ଦୁଃଖ ଜଣାଇବାକୁ ଏକାଠି ହେଲେ। ଶୁଣିଲେ ନାହିଁ ସମ୍ରାଟ। ଶେଷରେ ଏପରି ହେଲା ସାଧାରଣ ପ୍ରାର୍ଥନା ସଭାରେ ଯୋଗଦେବାକୁ ଯିବାରାସ୍ତାରେ ଦିଲ୍ଲୀ ଜନତା ରାସ୍ତାଅବରୋଧ କଲେ। ବେଳକୁ ବେଳ ସେ ଜନତାଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା। ସମ୍ରାଟ ମସଜିଦରେ ପହଞ୍ଚିପାରିଲେ ନାହିଁ। ସାଙ୍ଗେ ସାଙ୍ଗେ ଆଦେଶ ଦେଲେ ଲୋକଙ୍କ ଉପରେ ହାତୀ ମଡ଼େଇ ଦିଆଯାଉ। ସେୟା ହେଲା। ଅନେକ ଦିନ ଏପରି ଚାଲିଲା। ଅବଶେଷରେ ଜିଜିୟାକର ଦେବାକୁ ବାଧ୍ୟ ହେଲେ। ବ୍ରାହ୍ମଣମାନେ ଅନଶନ କଲେ ଜିଜିୟା କର ନ ଦେବାପାଇଁ। ପରେ ଅନଶନ ପ୍ରତ୍ୟାହାର କଲେ। କାରଣ ଅନ୍ୟମାନେ ଏ ଗରୀବ ବ୍ରାହ୍ମଣଙ୍କ ପାଇଁ କରଦେବାକୁ ଆଗଭର ହେଲେ। ଅନ୍ୟ ପ୍ରଦେଶରୁ ମଧ୍ୟ ଏ କର ନ ଦେବାପାଇଁ ପ୍ରତିରୋଧ ହୋଇଥିଲା।

ହିନ୍ଦୁ ରାଜାଙ୍କ ଭିତରେ ଶିବାଜୀ ଏପରି କର ଦେବାକୁ ବିରୋଧ କଲେ। ଔରଙ୍ଗଜେବଙ୍କ ପାଖକୁ ଏକ ଚିଠି ଲେଖିଥିଲେ। ସେ ଚିଠି ବୋଧେ ଶିବାଜୀଙ୍କ ପର୍ଶିୟାନ ସେକ୍ରେଟେରୀ ନିଲୁ ପ୍ରଭୂ ଲେଖିଥିଲେ। ଏ ଭଦ୍ରଲୋକ ଔରଙ୍ଗଜେବଙ୍କ ସହ ଯୁଦ୍ଧ କରିଥିଲେ। ବିଚଳିତ ହେଲେ ନାହିଁ ଔରଙ୍ଗଜେବ କି ଜିଜିୟା କର ମଧ୍ୟ ଉଠେଇଲେ ନାହିଁ। ବରଂ ସେ କର ଆଦାୟ କରିବାପାଇଁ ୧୬୮୭ରେ ନୂଆ ଅଫିସରମାନଙ୍କୁ ନିଯୁକ୍ତ କଲେ। ଜିଜିୟାକର ବସାଇବାର ଦୁଇଟି କାରଣ ଥିଲା। ଯୁଦ୍ଧରେ ରାଜକୋଷ ଶେଷପ୍ରାୟ। ଦ୍ୱିତୀୟରେ ହିନ୍ଦୁମାନଙ୍କୁ ମୁସଲମାନ ହେବାପାଇଁ ବାଧ୍ୟ କରିବା ଥିଲା ତାଙ୍କ ଉଦ୍ଦେଶ୍ୟ। ଯେଉଁମାନେ ଏ କର ଦେଇ ନ ପାରିବେ

ସେମାନେ ମୁସଲମାନ ଧର୍ମ ଗ୍ରହଣ କରିଯାଉଥିଲେ। ଜିଜିୟା କର ବିରୁଦ୍ଧରେ ମଧ୍ୟ ବଡ଼ଧରଣର ବିଦ୍ରୋହ ହେଉ ନଥିଲା। ରାଜପୁତ ଗହଣରେ ମନ୍ଦିର ଭାଙ୍ଗିବା ସଂକ୍ରାନ୍ତରେ କେତେକ ବିଦ୍ରୋହ ହୋଇଥିଲା। ମସଜିଦମାନ ଭଙ୍ଗା ହୋଇ ମୁସଲମାନମାନଙ୍କ ପ୍ରାର୍ଥନା ବନ୍ଦ କରାଯାଉଥିଲା। କେତେକ ଜାଗାରେ ଜିଜିୟାକର ଆଦାୟ କରୁଥିବା ଅଫିସରଙ୍କ ଦାଢ଼ିଓପାଡ଼ି ତାଙ୍କୁ ସେ ଜାଗାରୁ ବାହାର କରି ଦିଆଯାଉଥିଲା। ଜଣେ ଶିଖ ଜାମାମସଜିଦରୁ ଫେରିବା ରାସ୍ତାରେ ଔରଙ୍ଗଜେବଙ୍କ ଉପରକୁ ଟେକା ଫୋପାଡ଼ିଥିଲା। ଏପରି ଛୋଟମୋଟ ଘଟଣାମାନ ଲାଗିରହିଥାଏ।

ଉତ୍ତର ଭାରତରେ ମନ୍ଦିର ଭଙ୍ଗାର କୌଣସି ପ୍ରଭାବ ରହିଲା ନାହିଁ। କିନ୍ତୁ ଦକ୍ଷିଣ ଭାରତରେ ଏହାର ପ୍ରଭାବ ଅନେକ ବେଶୀ। ହୀରାବାଈ ଘଟଣା ଅନେକ ଦୁର୍ନାମର ପ୍ରଭାବ ପଡ଼ିଥିଲା। ଏପରିକି ଦାରା ଲାହୋରରୁ ଶାହାଜାହାଁଙ୍କ ପାଖକୁ ଚିଠି ଲେଖି ଏ ଘଟଣା ଉପରେ ମନ୍ତବ୍ୟ ପ୍ରକାଶ କରିଥିଲେ। ଆଦେଶ ଦେଲେ ପୁରୁଣା ମନ୍ଦିର ଭଙ୍ଗା ହୋଇପାରିବ ନାହିଁ। କିନ୍ତୁ ନୂଆ ମନ୍ଦିର ନିର୍ମାଣ ହୋଇପାରିବ ନାହିଁ। ହୁଏତ ପୁରୁଣା ମନ୍ଦିର ମରାମତି ହୋଇପାରିବ। ମହମ୍ମଦଙ୍କ ଧର୍ମ ଉପରେ ଆଘାତ ତାଙ୍କର ଅସହ୍ୟ ଥିଲା। ତାଙ୍କ ଅମଳରେ ସୋମନାଥ ମନ୍ଦିର ଯାହାକି ଗଜନିଙ୍କ ଅମଳରେ ଭଙ୍ଗା ଯାଇଥିଲା ତା' ତୋଳାହେଲା। ସେ ବେଳରେ ଓଡ଼ିଶାରେ ମଧ୍ୟ ଅନେକ ମନ୍ଦିର ତୋଳାଯାଇଥିଲା। ୧୬୬୮ରେ ସବୁର ପରିବର୍ତ୍ତନ ହେଲା। ଦଶବର୍ଷର ଶାସନ ଭିତରେ ଔରଙ୍ଗଜେବ ଅନୁଭବ କଲେ କି ହିନ୍ଦୁଧର୍ମକୁ ଆଘାତ କରି ସେ ମୁସଲମାନ ଧର୍ମ ବଢ଼ାଇ ପାରୁନାହାନ୍ତି। ତେବେ ବି ୧୮୬୯ରେ ପ୍ରଦେଶର ଗଭର୍ଣ୍ଣରମାନଙ୍କୁ ସ୍କୁଲ ଓ ମନ୍ଦିର ନଷ୍ଟ କରିବାକୁ ଆଦେଶ ଦେଲେ। ୧୮୭୦ରେ ଉଜ୍ଜୟନୀରେ ସବୁ ମନ୍ଦିର ନଷ୍ଟ କରିଦିଆଗଲା। ସୋମନାଥ ମନ୍ଦିର, ବନାରସର ବିଶ୍ୱନାଥ ମନ୍ଦିର, ମଥୁରାର କେଶବରାଓ ମନ୍ଦିରକୁ ନଷ୍ଟ କରିଦେଲେ। ମନ୍ଦିର ମୂର୍ତ୍ତିକୁ ଶଗଡ଼ରେବୋହି ଦରବାର ତଳେ ପୋତିଦେଲେ, କିମ୍ବା ଜାମା ମସଜିଦର ପାହାଚତଳେ ପକାଇଦେଲେ ଫଳରେ ଲୋକେ ପାଦରେ ଦଳିଚକଟିଦେବେ। ଅନେକ ମନ୍ଦିର ନଷ୍ଟ କଲେ। ହିନ୍ଦୁଧର୍ମକୁ ନଷ୍ଟ କରିବାର ଯେତେ ଆଗ୍ରହ ଦେଖାଇଲେ ମଧ୍ୟ ହିନ୍ଦୁଧର୍ମ ସେତେ ଦୃଢ଼ ହେଉଥିଲା। ତଥାପି ତାଙ୍କ ବ୍ୟବସ୍ଥା ଜାରି ରହିଥିଲା। ଦାକ୍ଷିଣାତ୍ୟରେ ମରହଟ୍ଟାମାନେ ସାଙ୍ଗରେ ଯୁଦ୍ଧରେ ମାତିଥିବାବେଳେ ୧୧ ଜାନୁୟାରୀ ପରେ ୧୭୦୫ରେ ସୋମନାଥ ମନ୍ଦିରକୁ

ସମ୍ପୂର୍ଣ୍ଣ ଧ୍ୱଂସ କରିବାକୁ ଆଦେଶ ଦେଲେ। ପନ୍ଧାରପୁର ମନ୍ଦିର ନଷ୍ଟକରି ସେ ଜାଗାରେ ଗୋ ହତ୍ୟା କରିବାର ଆଦେଶ ଦେଇଥିଲେ। ଧର୍ମଜନିତ ଆଇନ ବ୍ୟତିରେକେ ଉତ୍ତର ଭାରତରେ ଔରଙ୍ଗଜେବଙ୍କ ବିରୁଦ୍ଧରେ ୩ଟି ବଡ଼ଧରଣର ବିଦ୍ରୋହ ହୋଇଥିଲା।

୧୬୬୯ରେ ଜାଟମାନେ ମଥୁରାରେ ବିଦ୍ରୋହ କଲେ। ଜାଟ ସଂପ୍ରଦାୟର ଜମୀଦାର ଗୋକଲା ୨୦ ହଜାର ସୈନ୍ୟନେଇ ଔରଙ୍ଗଜେବଙ୍କ ବିରୁଦ୍ଧରେ ଯାତ୍ରା କଲେ। ଶେଷରେ ଖୋକଲା ହାରିଗଲେ। ସର୍ବସାଧାରଣଙ୍କ ଆଗରେ ଖୋକଲାଙ୍କ ଶରୀରର ପ୍ରତ୍ୟେକ ଅଂଶକୁ ଖଣ୍ଡ ଖଣ୍ଡ କରି ଦିଆଗଲା। ତାଙ୍କ ପରିବାର ବର୍ଗଙ୍କୁ ମୁସଲମାନ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରାଗଲା। ଜାଟମାନେ ସେ ସମୟରେ ଦବିଗଲେ ସତ କିନ୍ତୁ ଦଶବର୍ଷ ପରେ ଔରଙ୍ଗଜେବ ଦାକ୍ଷିଣାତ୍ୟରେ ଥିବାବେଳେ ପୁଣିଥରେ ମାତିଲେ ଓ ଅନେକ ବର୍ଷ ପର୍ଯ୍ୟନ୍ତ ସ୍ୱାଧୀନ ରହିଲେ। ଦଳେ ସତନମି ହିନ୍ଦୁ ତାଙ୍କ ବାଳ କାଟିଦେଲେ ଏପରିକି ଆଖିପତା ମଧ୍ୟ। ସତନାମିର ଅର୍ଥ ଭଦ୍ରଲୋକ। କିନ୍ତୁ ପ୍ରକୃତରେ ଅସନା, ଅଳିଆ। ସେମାନେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ରଖିଲେ ନାହିଁ। ସେମାନେ ଘୁଷୁରି ଓ ଅନ୍ୟାନ୍ୟ ମାଂସ ଖାଇଲେ। କୁକୁର ସହିତ ଖାଇବାପାଇଁ ମଧ୍ୟ ତାଙ୍କୁ ଘୃଣା ଲାଗିଲା ନାହିଁ। ୧୬୭୨ରେ ଦିଲ୍ଲୀ ପାଖ କରନୁଲରେ ଜଣେ କୃଷକ ଓ ସୈନ୍ୟ ସାଙ୍ଗରେ ଯୁଦ୍ଧ ହେଲା। ପରେ ବିରାଟ ରୂପ ଧାରଣ କଲା। କେହି ଜଣେ ତାଙ୍କୁ ବିଶ୍ୱାସ କରାଇଥିଲେ କି ଜଣଙ୍କ ମୃତ ଶରୀରରୁ ଦେବୀଙ୍କ କୃପାରୁ ଅନେକ ଖଣ୍ଡାଧରି ଜନ୍ମ। ଏହି ବିଶ୍ୱାସ ନେଇ ସେମାନେ ଦିଲ୍ଲୀକୁ ଆଗେଇଲେ। ମୋଗଲବାହିନୀ ଏମାନଙ୍କୁ ଦେଖି ଡରିଗଲେ। ଯେତେ ଶର, ଅସ୍ତ୍ର ଶସ୍ତ୍ର ଏମାନଙ୍କ ଉପରକୁ ନିକ୍ଷେପ କଲେ ସେତିକି ନୂଆ ଲୋକ ଆବିର୍ଭାବ ହେଲେ। ସେମାନଙ୍କ ପାଖରେ ମ୍ୟାଜିକ କାଠଘୋଡ଼ା ସତଘୋଡୀ ପରି ମନେ ହେଉଥିଲା। ଏହି ଘୋଡ଼ାମାନଙ୍କ ଉପରେ ସେମାନଙ୍କ ସ୍ତ୍ରୀ ଲୋକମାନେ ବସୁଥିଲେ। ଔରଙ୍ଗଜେବ ଠିକଣା କଲେ ସେ ପ୍ରକାର ଘଟଣାକୁ ମେଜିକକୁ ମ୍ୟାଜିକ ଦେଇ କାଟିବେ। ସେ ତାଙ୍କ ବାନରରେ ଏପରି କିଛି ଲେଖିଲେ ଯାହା ଫଳରେ ମୋଗଲ ବାହିନୀ ଜିତିଗଲେ। କୁହାଯାଏ ରାଜା ବିଷ୍ଣୁ ସିଂ ନାମରେ ଜଣେ ହିନ୍ଦୁରାଜା ମୋଗଲ ବାହିନୀ ପାଇଁ ଲଢୁଥିଲେ। ଶେଷରେ ସତନମିମାନଙ୍କୁ ହତ୍ୟା କଲେ। ଦ୍ୱିତୀୟ ବଡ଼ ଧରଣର ବିଦ୍ରୋହ ହେଲା ଶିଖମାନଙ୍କ ତରଫରୁ। ଅନ୍ୟ ବିଦ୍ରୋହଠାରୁ ଏହା ସ୍ୱତନ୍ତ୍ର। ଏଠାରେ

ଧର୍ମ ଅପେକ୍ଷା ରାଜନୈତିକ ଦୃଷ୍ଟିକୋଣ ଅଧିକ ଥିଲା। ୧୭ଶହ ଖ୍ରୀଷ୍ଟାବ୍ଦର ମଧ୍ୟ ଭାଗରେ ଶିଖମାନେ ଧର୍ମଅନୁଷ୍ଠାନ ଭାବରେ ନୁହଁ ଏକ ରାଜନୈତିକ ଅନୁଷ୍ଠାନ ଭାବରେ କାମ କରୁଥିଲେ। ତାଙ୍କ ଗୁରୁଙ୍କୁ ମୋଗଲମାନେ ଭୟଭୀତ କରାଉଥିଲେ। ଏଇଟାହିଁ ବିଦ୍ରୋହର କାରଣ ଥିଲା। କିନ୍ତୁ ତେଜ ବାହାଦୂର ବନ୍ଦୀ ହେଲେ, ଅତ୍ୟାଚାର ସହିଲେ, ଶେଷରେ ମୁଣ୍ଡକାଟ ହେଲା। ତାଙ୍କ ଅତ୍ୟାଚାରର ବଦଳା ନେବାପାଇଁ ତାଙ୍କ ପୁଅ ଗୋବିନ୍ଦ ରାୟ, ଶେଷ ଶିଖଗୁରୁ, ଶିଖମାନଙ୍କୁ ଖାଲସା– ଏକ ସାମରିକ ଦଳରେ ପରିଣତ କରାଇଲେ। ଖାଲସା ପ୍ରଦେଶ ଦାବି କରିବା ତାଙ୍କର ମୂଳ ଉଦ୍ଦେଶ୍ୟ ଥିଲା ଓ ମୋଗଲମାନଙ୍କୁ ଧ୍ୱଂସ କରିବା ତାଙ୍କର ଲକ୍ଷ୍ୟ ଥିଲା। ଔରଙ୍ଗଜେବ ଏହାକୁ ଏକ ଆହ୍ୱାନ ରୂପେ ଗ୍ରହଣ କରି ଗୁରୁଙ୍କୁ ତାଙ୍କ ଆନନ୍ଦପୁର ବାସସ୍ଥାନରୁ ବିଦା କରି ପର୍ବତମାଳାକୁ ପଠାଇଦେଲେ। ପରେ ପରେ ପଞ୍ଜାବରୁ ମଧ୍ୟ ବିଦାକଲେ। ଔରଙ୍ଗଜେବଙ୍କ ପରେ ଗୁରୁ ପଞ୍ଜାବ ଫେରିଲେ। ଅନ୍ୟମାନଙ୍କୁ ବିପଦରେ ପକାଇବା ଓ ପରେ ସେଇମାନଙ୍କ ଦ୍ୱାରା ବିପଦର ସମ୍ମୁଖୀନ ହେବା ଔରଙ୍ଗଜେବଙ୍କର ନୀତିଗତ ଅଭ୍ୟାସ। ବାପା ଓ ଭାଇମାନଙ୍କ ସହିତ, ରାଜପୁତ ଓ ମରହଟ୍ଟାମାନଙ୍କ ସହିତ ଏପରିକି ମୁସଲମାନଙ୍କ ସହିତ ତାଙ୍କ ସଂପର୍କ ଜଟିଳ ଥିଲା। ସବୁ ନୀତିନିୟମ ଭଗବାନଙ୍କ ନିର୍ଦ୍ଦେଶରେ ରାଜା ତାଙ୍କ ପ୍ରଜାମାନଙ୍କ ଉପରେ ଲାଗୁ କରାଯିବାର ଧାରଣାତାଙ୍କର ଥିଲା। ୧୬୫୯ରେ ସିଂହାସନ ଆରୋହଣ କରିବାପରେ କଲିମା– ମୁସଲମାନମାନଙ୍କ ବିଶ୍ୱାସର ମୋହର ଓ ମୁଦ୍ରା ଉପରେ ଲେଖାଇବାପାଇଁ ବାରଣ କରିଥିଲେ। କାଳେ ଅବିଶ୍ୱାସୀ ଏପରି ଲେଖାକୁ କଳୁଷିତ କରିଦେବେ। ନଉରୁଜ– ପର୍ଶିୟାନ ନୂଆବର୍ଷ ପାଳନ କରିବାକୁ ମନା କରିଦେଇଥିଲେ। ତାଙ୍କ ସିଂହାସନ ଆରୋହଣ ସମୟକୁ ସେଇ ଉତ୍ସବକୁ ପାଳନ କରିବାକୁ ଆଦେଶ ଦେଇଥିଲେ। ୧୬୭୦ରେ ତାଙ୍କ ଜନ୍ମ ଉତ୍ସବ ପାଳନ କରିବାକୁ ମଧ୍ୟ ବାରଣ କରିଥିଲେ। ଇସଲାମ ନୀତିକୁ ନେଇ ଦରବାର ଆଇନର ପରିବର୍ତ୍ତନ କରାଇଲେ। ସୁନା ଓ ରୂପାର ତିଆରି ସେଲିଂରେ ରୂପ ବଦଳିଗଲା– ତା' ବଦଳରେ ଦାମିକା ଦାମିକା ପଥର ସବୁ ଲଗା ହୋଇ ରେଲିଂରେ ଲଗାହେଲା। ଉପହାର ସବୁ ବନ୍ଦ ପ୍ୟାକେଟରେ ଦିଆହେଲା। କିରାନୀମାନେ ପଥରର କାଳି ବୋତଲ (ink bottle) ବଦଳରେ ରୂପାର କାଳିବୋତଲ ବ୍ୟବହାର କରିବାକୁ ନିର୍ଦ୍ଦେଶ ଦେଲେ। ସିଲ୍କ ପୋଷାକ ବଦଳରେ ସୁନାରୂପା କାମର ତିଆରି ହୋଇ ସମ୍ରାଟଙ୍କ ତରଫରୁ ସମସ୍ତଙ୍କୁ ଦିଆହେଲା।

ହିନ୍ଦୁ ରାଜାମାନଙ୍କୁ ତିଳକକରେସୁନା, ରୂପା ଓ ଅନ୍ୟାନ୍ୟ ଦାମିକା ଦ୍ରବ୍ୟମାନ ଓ ସମ୍ରାଟଙ୍କ ଓଜନର ଦ୍ରବ୍ୟସବୁ ଦିଆଯାଇଥିଲା। ପରେ ସେ ମଧ୍ୟ ବନ୍ଦ କରିଦିଆହେଲା। ଦରବାରରେ ପ୍ରଣାମ ବା ନମସ୍ତେ ଉଠାଇଦେଇ ସଲାମ ଆଲେଖମ କରିବାର ପ୍ରଣାଳୀ ଶିକ୍ଷା ଦିଆଗଲା। ୩୦୦ ବର୍ଷ ପୂର୍ବେ ଫିରୋଜ ତୋଗଲକ ସ୍ତ୍ରୀ ଲୋକମାନଙ୍କ ପାଇଁ ତୀର୍ଥ ଦର୍ଶନର ବନ୍ଦୋବସ୍ତ ଥିଲା, ତାକୁ ବନ୍ଦ କରିଦେଲେ। ତାଙ୍କ ମତରେ ଶୀକାର କରିବା ବେକାର ଲୋକଙ୍କ କାମ, ସେଥିପାଇଁ ଶିକାର ମଧ୍ୟ ବନ୍ଦ କରିଦେଲେ। ରାଜ ଅନୁଗ୍ରହ ନ ପାଇ ଅନେକ ଗୀତ, ନାଚ ଓ ବାଦକମାନେ ମିଳିତ ହୋଇ ବିଦ୍ରୋହ କଲେ। ସେ ମଧ୍ୟ ବନ୍ଦ କରିଦିଆଗଲା। ତା'ପରେ ମଦ୍ୟପାନ, ମଦଶାଳା ଖୋଲିବା, ମେଳା, ଯାତ୍ରା ବାରଙ୍ଗନା ଭବନ ଉପରେ କଟକଣା କରାଗଲା। ଔରଙ୍ଗଜେବଙ୍କ ପୂର୍ବରୁ ମଦ୍ୟପାନ ଏକ ଅଭ୍ୟାସରେ ପରିଣତ ହୋଇଥିଲା। ସେ ବନ୍ଦ ହେଲା। ସମ୍ରାଟ କହୁଥିଲେ କି ସାରା ହିନ୍ଦୁସ୍ଥାନରେ ମାତ୍ର ଦୁଇଜଣ ନ ପିଇବା ବାଲା ମିଳିବେ। ସମ୍ରାଟ ନିଜେ ଓ କାଜି ଅବଦୂର ୱାହାବ। ମଦବିକାଳିଙ୍କ ହାତଗୋଡ଼ କାଟି ଦିଆଗଲା। ପୋଲିସ ପଠାଇ ମଦ ତିଆରି ବନ୍ଦ କରାଗଲା। କିନ୍ତୁ ମଦ୍ୟପାନର ପ୍ରଭାବ ଲୋକଙ୍କ ଭିତରେ ଏତେ ପଡ଼ିଯାଇଥିଲା ଯେ ନୀତି କୋହଳ କରିବାକୁ ବାଧ୍ୟ ହେଲେ ସମ୍ରାଟ।

ସ୍ତ୍ରୀ ଲୋକେ ଟାଇଟପୋଷାକ ପିନ୍ଧିପାରିବେ ନାହିଁ। ସରୁକନାର ପୋଷାକ ତିଆରି ବନ୍ଦ କଲେ। ଦାଢ଼ିର ଲମ୍ବ ଠିକଣା ହେଲା। ନିଶ ଓଠକୁ ଘୋଡ଼ାଇ ରଖିପାରିବ ନାହିଁ କାରଣ ଆଲ୍ଲାଙ୍କୁ ଡାକିବାରେ ବାଧା ହେବ ଇତ୍ୟାଦି ଇତ୍ୟାଦି। ଦିଲ୍ଲୀରେ ସେତେବେଳେ ୬୦୦ ମସଜିଦ ଥିଲା। ସବୁ ମରାମତି ହେଲା। ମରାମତିରେ ଖର୍ଚ୍ଚ ହେଲା ଲକ୍ଷେ। ଆଉ ସମୟ ବର୍ଷେ। ମୁସଲମିମ ଧର୍ମପୁସ୍ତକ 'ଫତୱା-ଆଲ-ଆଲାମଗିରିଆ' ଲେଖାହେଲା। ରାଜ୍ୟଶାସନ ଚଳାଇବାର ପଦ୍ଧତି (ଧର୍ମ ରକ୍ଷା ନୀତିରେ) ଶାସନକୁ ଭିନ୍ନ ରୂପ ଦେଲା। ଅନ୍ୟ ସବୁର ସଂଶୋଧନ କରାଗଲା। ଅର୍ନ୍ତବିଦ୍ରୋହ ଫଳରେ ମୋଗଲ ଶାସନ ହୁଗୁଳି ଯାଇଥିଲା। ପ୍ରାଦେଶିକ ପ୍ରଧାନମାନେ କର ଆଦାୟ କରିବା ଆରମ୍ଭ ନିଜେ ନିଜେ କର ଆଦାୟ କରିଦେଲେ। ଫେରି ଆଦାୟ କଲେ ହାଇୱେମାନଙ୍କରେ। ଫଳରେ ବ୍ୟବସାୟ ବାଧାପ୍ରାପ୍ତ ହେଲା। ଔରଙ୍ଗଜେବଙ୍କ ଅମୀରମାନେ କେହି ମରିଗଲେ ତାଙ୍କର ସଂପତ୍ତିକୁ ବ୍ୟାଜାପ୍ତି ନକରି ସେମାନଙ୍କର ଉତ୍ତରାଧିକାରୀଙ୍କୁ ଦେଇ ଦେଉଥିଲେ। ମଧସ୍ଥିଙ୍କ ଦ୍ୱାରା

ଚାଷୀମାନେ ପ୍ରପୀଡିତ ନ ହେବାର ବନ୍ଦୋବସ୍ତ କଲେ । ଅଧିକନ୍ତୁ ପ୍ରାକୃତିକ ବିପର୍ଯ୍ୟୟ ବେଳେ ଚାଷୀମାନଙ୍କୁ ସାହାଯ୍ୟ ମଧ୍ୟ କଲେ । ଚାଷୀଙ୍କୁ ସାହାଯ୍ୟ କରିବାକୁ ଯାଇଁ ନିଜ ନୀତି ଓ ନିୟମର ଅଦଳ ବଦଳ ମଧ୍ୟ କରୁଥିଲେ । ଇସଲାମ ଧର୍ମ ଅନୁଯାୟୀ ରାଜ୍ୟ ଶାସନ ହେଉଥିଲା ।

ସବୁ ଠିକ ନିୟମ ଅନୁସାରେ ଚାଲିଥିଲା । କିନ୍ତୁ ବୋଧେ ଦୂରଦୃଷ୍ଟିର ଅଭାବ ଥିଲା ବୋଲି ଅନୁମାନ କରାହୁଏ । ସମ୍ରାଟଙ୍କର ଥିଲା ଅଭିଳାଷା । କୌଣସି ମୋଗଲ ସମ୍ରାଟ ଆକବରଙ୍କ ବିନା ଯୁଦ୍ଧରେ ଜୀବନ ବିତାଇ ନାହାନ୍ତି । ସେ ବିରାଟ ଭୂଖଣ୍ଡର ସମ୍ରାଟ । ପ୍ରଥମ ୨୩ ବର୍ଷ ଉତ୍ତର ଭାରତରେ ଓ ପରେ ୨୬ ବର୍ଷ ଦାକ୍ଷିଣାତ୍ୟରେ । ୧୬୪୯ରେ ସାହା ଆବାସ ଦ୍ୱିତୀୟ ମୋଗଲମାନଙ୍କୁ କାନ୍ଦାହାରରୁ ବାହାର କରିଦେଇଥିଲେ । ପରେ ମୁରାଦ ଓ ଦାରାଙ୍କୁ ସାହାଯ୍ୟ କରିବାପାଇଁ ସର୍ବଦା ୩୦,୦୦୦ ସୈନ୍ୟ ପାଖରେ ମହଜୁଦ ରଖିଥିଲେ । ଯଦିଓ ସେ କେବେ ଯୁଦ୍ଧ କରିନାହାନ୍ତି । ଇଚ୍ଛା ଥିଲା ଦାକ୍ଷିଣାତ୍ୟର ସିଆଲ ରାଜ୍ୟକୁ କରାଗତ କରି ମୋଗଲମାନଙ୍କ କବଳରୁ ରକ୍ଷା କରିବେ । କିନ୍ତୁ ଏ ଯୁଦ୍ଧରେ ଜିତିଲେ ଔରଙ୍ଗଜେବ ।

ପର୍ଶିୟା ୧୬୬୧ରେ ବୁଦାଗ ବେଗଙ୍କୁ ରାଷ୍ଟ୍ରଦୂତ କରି ଔରଙ୍ଗଜେବଙ୍କ ଦରବାରକୁ ପଠାଇଲେ । ପର୍ଶିୟାକୁ ମୁସଲମାନ ଜଗତର ସାଂସ୍କୃତିକ ସଂଭ୍ରାନ୍ତ ଶାସନ ବୋଲି ଗଣାଯାଉଥିଲା । ଅଥଚ ମୋଗଲମାନେ ଏକ ଆଞ୍ଚଳିକ ଭୂଖଣ୍ଡର ମାଲିକ । ସେଥିପାଇଁ ପର୍ଶିୟାନ ରାଷ୍ଟ୍ରଦୂତ ମୋଗଲ ସାମ୍ରାଜ୍ୟକୁ ଆସିବା ଏକ ଗମ୍ଭୀର ବ୍ୟାପାର ଥିଲା । ରାଷ୍ଟ୍ରଦୂତଙ୍କର ଆଦାବ କାଇଦା ଅନୁସାରେ ବ୍ୟବହାର କରିବା ଉଚିତ । ସେଟା ପର୍ଶିୟାନ ଆଦାବ କାଇଦାରେ ନା ମୋଗଲ ଆଦାବ କାଇଦାରେ ହେବ ଜଣା ନଥିଲା । ରାଷ୍ଟ୍ରଦୂତଙ୍କୁ ମୋଗଲ ଆଦାବ କାଇଦା ଶିକ୍ଷା ଦିଆଗଲା । ରାଷ୍ଟ୍ରଦୂତ କୌଣସି ପ୍ରତିବାଦ ନ କରି ମୋଗଲ ଆଦାବ କାଇଦାରେ ସମ୍ଭାଷଣ ଜଣାଇ ଉପହାର ସବୁ ପ୍ରଦାନ କଲେ । କିଛିମାସ ପରେ ପର୍ଶିୟାନ ରାଷ୍ଟ୍ରଦୂତ ଫେରିଗଲେ । ଦୁଇବର୍ଷ ପରେ ୧୬୬୩ରେ ତର୍ବିୟାତ ଖାଁଙ୍କୁ ମୋଗଲ ରାଷ୍ଟ୍ରଦୂତ ଭାବରେ ପର୍ଶିୟାକୁ ପଠାହେଲା । ସାତଲକ୍ଷ ଟଙ୍କା ମୂଲ୍ୟର ଉପହାର ସାହାଙ୍କ ପାଖକୁ ପଠାଇଥିଲେ । ପାଇବା ଉପହାରଠାରୁ ଦୁଇଗୁଣ ଅଧିକ ।

ସାହାଙ୍କ ପାଖକୁ ଲେଖିଥିବା ଚିଠିରେ ନିଜ ବିଜୟର ବିବରଣୀ । ରୁଷ୍ଟ ହେଲେ ସାହା ସେ ଚିଠିପଢ଼ି । ଉତ୍ତରରେ ସମ୍ରାଟଙ୍କୁ ଗାଳି ଦେଇ ଧମକାଇଥିଲେ

ଭାରତ ଆକ୍ରମଣ କରିବାପାଇଁ। ସମ୍ରାଟ ଟର୍ବିୟାତ ଖାଁଙ୍କୁ ଅନେକ ପ୍ରକାରର ଯନ୍ତ୍ରଣା ଦେଲେ କି ସେ ରାଷ୍ଟ୍ରଦୂତର କର୍ତ୍ତବ୍ୟ ଭଲଭାବରେ ନିଭାଇ ପାରିନାହାଁନ୍ତି। ଦରବାରରେ ପ୍ରବେଶ କରିବାକୁ ବାରଣ କଲେ, ତାଙ୍କ ରାଷ୍ଟ୍ରଦୂତର ମର୍ଯ୍ୟାଦାରୁ ତଳକୁ ଖସାଇଦେଲେ ଓ ପରେ ଓଡ଼ିଶା ପଠାଇଦେଲେ। କିନ୍ତୁ ଭୟହେଲା ପର୍ଶିୟାନମାନେ ଭାରତ ଆକ୍ରମଣ କରିବେ ବୋଲି। ୧୬୬୭ରେ ସାହାଙ୍କର ମୃତ୍ୟୁ ସତ୍ତ୍ୱେ ବି ସମ୍ରାଟଙ୍କରର ସେଇ ଭୟ ଥିଲା।

ରାଜ୍ୟ ଜୟ କରିବାର ନିଶା ପ୍ରବଳ ଥିଲା। କିନ୍ତୁ କେବଳ ଭାରତରେ। ସେତେବେଳକୁ ସେ ଦାକ୍ଷିଣାତ୍ୟ ଚାଲିଗଲେଣି। ଔରଙ୍ଗଜେବଙ୍କ ପୁତ୍ର ସେଠାରେ ବିଦ୍ରୋହ କଲେ ଓ ଦ୍ୱିତୀୟରେ ତାଙ୍କ ବିଜୟ ଅସଂପୂର୍ଣ୍ଣ ଥିଲା ଦାକ୍ଷିଣାତ୍ୟରେ ମରହଟ୍ଟା ଓ ମୁସଲମାନମାନଙ୍କୁ ଜୟ କରିବାରେ। ଆସାମ ଆହୋମମାନଙ୍କର ରାଜ୍ୟ– ସତରଶ ଶତାବ୍ଦୀରେ ଯେଉଁ ଉଗ୍ର ମଙ୍ଗୋଲିୟାନ ଦଳ ଆସିଥିଲେ ସେମାନେ ଭାରତୀୟ ହୋଇସାରିଥିଲେ। ଆକବରଙ୍କ ସମୟରେ ଆସାମ ଆକ୍ରମଣ କରିଥିଲେ। ଭୁଟାନ ମୋଗଲମାନଙ୍କ ଆଧିପତ୍ୟକୁ ଆସିଲା। କାମରୂପ ବାରନଦୀ କୂଳ ପର୍ଯ୍ୟନ୍ତ ଜାହାଙ୍ଗୀରଙ୍କ ଅମଳରେ ମୋଗଲମାନଙ୍କ ହାତକୁ ଆସିଲା। ଏହାହିଁ ଆହୋମମାନଙ୍କ ସହିତ କଳହର ମୂଳ କାରଣ। କାରଣ ସେମାନେ ନଈର ଆରପଟ କୂଳରେ ବସବାସ କରୁଥିଲେ। ୨୬ ବର୍ଷ କାଳ ଏ ଯୁଦ୍ଧ ଲାଗି ରହିଥିଲା। ପ୍ରାୟ ଶାହାଜାହାଁଙ୍କ ପର୍ଯ୍ୟନ୍ତ। ଦୁଇ ଶତାବ୍ଦୀ ପର୍ଯ୍ୟନ୍ତ ଶାନ୍ତି ଥିଲା। କିନ୍ତୁ ମୋଗଲମାନଙ୍କ ମଧ୍ୟରେ ଉତ୍ତରାଧିକାରୀ ଯୁଦ୍ଧ ସମୟରେ ଆସାମ ଓ କୁଚବିହାର ସ୍ୱାଧୀନ ହୋଇଗଲେ। ଔରଙ୍ଗଜେବଙ୍କ ସିଂହାସନ ଆରୋହଣ ପରେ ସେ ମିର-ଜୁମଲାଙ୍କୁ ବିଦ୍ରୋହୀମାନଙ୍କୁ ଅନୁଧାବନ କରିବାପାଇଁ ଆଦେଶ ଦେଲେ। ମୀର ଜୁମଲା ସେତେବେଳେ ବଙ୍ଗଳାର ଗଭର୍ଣ୍ଣର ଥିଲେ। ଅଳ୍ପଦିନ ପରେ କୁଚବିହାର ଅଧିକାର କରି ଆସାମ ଦିଗକୁ ଗତିକଲେ। ପରେ ଆହୋମଙ୍କ ରାଜଧାନୀ ଘରଗାଓଁ ଅଧିକାର କଲେ। ମୋଗଲଙ୍କ ଭାଗ୍ୟକୁ ବର୍ଷା ଯୋଗୁଁ ଅଜଣା ରାଇଜରେ ଅଲଗା ଅଲଗା ହୋଇଗଲେ। ଗୋଟେ ଦଳ ପାଖରେ ଅପର ଦଳର ଖବର ମଧ୍ୟ ପହଞ୍ଚି ପାରିଲା ନାହିଁ। କିନ୍ତୁ ମିର-ଜୁମଲା ସୈନ୍ୟମାନଙ୍କ ସହିତ ନିଜକୁ ମିଶାଇନେଇ ସେମାନଙ୍କର ମନୋବଳ ମଜବୁତ କଲେ। ୬ ମାସ ପରେ ବର୍ଷା ଥମିଲା। ମୋଗଲମାନେ ନିଜର ବଳ, ଏକତା, ଅସ୍ତ୍ରଶସ୍ତ୍ର ଓ

ଖାଦ୍ୟ ପାଇଲେ। ମୋଗଲଙ୍କ ଆକ୍ରମଣରେ ନତମସ୍ତକ ହେଲେ ଅହୋମମାନେ। ତାଙ୍କ ରାଜା ଶାନ୍ତିସ୍ଥାପନ କରିବାକୁ ଆଗେଇ ଆସିଲେ। ରାଜ୍ୟର ଅଂଶ, କ୍ଷତିପୂରଣ ଓ ଏମିତିକି ମୋଗଲ ହାରେମକୁ ରାଜକନ୍ୟାକୁ ମଧ୍ୟ ପ୍ରଦାନ କଲେ। ପ୍ରଥମରେ ରାଜକନ୍ୟା ଓ କ୍ଷତିପୂରଣର କିଛି ଅଂଶ ଜୁମଲାଙ୍କ ପାଖକୁ ପଠାଇଲେ। ମିର ଜୁମଲା ଆସମରୁ ବିଦା ହେବାକୁ ଆରମ୍ଭ କଲେ। ଗୌହାଟୀ ମଧ୍ୟ ଆହୋମମାନେ ଅଧିକାର କଲେ। ଚିଟାଗଙ୍ଗ ବନ୍ଦର, ମାଘରାଜା ଆରାକାନଙ୍କ ଅଧିନରେ ଥିଲା, ସେଥିରେ ଜଳଦସ୍ୟୁ ଓ ଇଂରେଜ ଫିରିଙ୍ଗିମାନେ ବସବାସ କରି ବଙ୍ଗଳାକୁ ଲୁଣ୍ଠନ କରୁଥିଲେ। ଔରଙ୍ଗଜେବଙ୍କ ଜକା ସାୟସ୍ତା ଖାଁ, ବେଙ୍ଗଲର ଗଭର୍ଣ୍ଣର ହେଲାପରେ ଏସବୁ ବନ୍ଦ କଲେ। ଚିଟାଗଙ୍ଗ ଉଦ୍ଧାର ହେଲା ଓ ଆରକାନମାନେ ବିଦାହେଲେ। ପୂର୍ବ ଆଫଗାନର ଟର୍କି-ଇରାନିୟାନ ପାର୍ବତ୍ୟ ଜନଜାତି ଯାହାଙ୍କୁ ଉତ୍ତରରେ ପଠାନ୍ ଓ ଦକ୍ଷିଣରେ ବାଲୁଚି ବୋଲି କହନ୍ତି। ସେମାନେ ଯୁଦ୍ଧରତ ଜନଜାତି ବୋଲି ଧରାଯାନ୍ତି। ନିଜ ନିଜ ଭିତରେ ଯୁଦ୍ଧ ବା ପ୍ରତିବେଶୀମାନଙ୍କୁ ଆକ୍ରମଣରେ ମାତିଥାନ୍ତି। ତାଙ୍କୁ କୌଣସି ପଠାନ୍ ସନ୍ଥ ଆର୍ଶିବାଦ କରିଥିଲେ କି ସେମାନେ ସବୁବେଳେ ସ୍ୱାଧୀନ ରହିବେ କିନ୍ତୁ କେବେହେଁ ଏକତ୍ର ରହିପାରିବେନି। ମୋଗଲ ସମ୍ରାଟ ଏମାନଙ୍କୁ ହାତକୁ ନେଇପାଇପାରନ୍ତି। ୧୬୬୦ର ଶେଷବେଳକୁ ଆଫଗାନମାନେ ଇନ୍ଦସ ଅତିକ୍ରମ କରି ମୋଗଲ ଅଧିକୃତ ଜାଗାଦେଇ ଖାଇବାର ପାଶ ବନ୍ଦ କରିଦେଲେ। କାବୁଲଠୁ ଦୂରେଇଯାଇ ତାଙ୍କ ବିରୁଦ୍ଧରେ ପଠାଯାଇଥିବା ମୋଗଲ ସେନାଙ୍କୁ ଶେଷ କରିଦେଲେ। ଏହା କାବୁଲ ଉପରେ ମୋଗଲ ରାଜତ୍ୱ ପାଇଁ ଏକ ଧକ୍କା। ୧୬୭୫ରେ ଔରଙ୍ଗଜେବ ପେଶୱାର ଯାଇଁ ଏହା ସମାଧାନ କଲେ।

ମାରୱାର ରାଜା ରାଜା ଜୟସିଂ ଡିସେମ୍ବର ୧୬୭୮ରେ ବିଶେଷ ଥଣ୍ଡା ଯୋଗୁଁ ମୃତ୍ୟୁବରଣ କଲେ। ପୂର୍ବରୁ ତାଙ୍କ ପୁତ୍ର ଜଗତସିଂ ଆଫଗାନିସ୍ଥାନରେ ମୃତ୍ୟୁବରଣ କରିଥିଲେ। ତେଣୁ ରାଜ୍ୟର ଦାୟିତ୍ୱ ଔରଙ୍ଗଜେବଙ୍କ ଉପରେ। ଜଶବନ୍ତ ସିଂ ବଡ଼ଭାଇଙ୍କ ନାତି ଇନ୍ଦ୍ରସିଂ ହିଁ ଏହାର ଉତ୍ତରାଧିକାରୀ। କିନ୍ତୁ ରାଥୋରମାନଙ୍କୁ ଏହା ପସନ୍ଦ ନଥିଲା। ଅଧିକନ୍ତୁ ଜଶୟନ୍ତ ସିଂଙ୍କ ଦୁଇ ବିଧବାପତ୍ନୀ ତାଙ୍କ ମୃତ୍ୟୁବେଳକୁ ଗର୍ଭବତୀ ଥିଲେ। କଥା ହେଲା ଏଇ ଦୁଇନାରୀଙ୍କ ଗର୍ଭରୁ ଯେଉଁ ପୁଅ ଜାତ ହେବ ସେ ରାଜ୍ୟର ମାଲିକ ହେବ। ସେ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ।

କିନ୍ତୁ ରାଜାପଦ ଖାଲି ପଡ଼ିବ ନାହିଁ ଓ ରାଜସ୍ୱ ମଧ୍ୟ ଆଦାୟ ହେବ। ସମ୍ରାଟ ଶାସନ ଦାୟିତ୍ୱ ଚଳେଇବାପାଇଁ ଅଫିସରମାନଙ୍କୁ ମାରୱାର ପଠାଇଲେ। ରାଜାଙ୍କର ବ୍ୟକ୍ତିଗତ ସଂପତ୍ତିକୁ ସମ୍ରାଟ ନିଜହାତକୁ ନେଲେ। କାରଣ ରାଜା ରାଜକୋଷରୁ ଅନେକ ଧାର କରିଥିଲେ। ଏଇଟା ଆବଶ୍ୟକ ଓ ଆଇନ ସଂଗତ ଥିଲା। ଶାସନ ଚଳାଇବାପାଇଁ ଯେଉଁ ଅଫିସରମାନେ, ସେମାନେ ଥିଲେ ମୁସଲମାନ। ମନ୍ଦିରସବୁ ଭାଙ୍ଗି ମସଜିଦ ତିଆରି କଲେ। ଏଣେ ଦୁଇରାଣୀ ଦୁଇଟି ପୁତ୍ର ସନ୍ତାନ ଜନ୍ମ କଲେ। ତାଙ୍କ ଭିତରୁ ଜଣକୁ ରାଜା କରିବାପାଇଁ। କିନ୍ତୁ ରାଜି ହେଲେ ନାହିଁ– କହିଲେ ଏହା ଆଇନ ସଂଗତ ହେବନାହିଁ। ୧୬୭୯ ଏପ୍ରିଲରେ ଔରଙ୍ଗଜେବ ଦିଲ୍ଲୀ ଫେରି ରାଜ୍ୟରେ ଜିଜିୟା କର ବସାଇଲେ। ଜାହାଙ୍ଗୀର କୌଣସି ରାଜ୍ୟର କରଇ ଶାସନ ହାତକୁ ନେବାପାଇଁ ଇଚ୍ଛା କରି ନଥିଲେ। କିନ୍ତୁ ଔରଙ୍ଗଜେବଙ୍କ ସ୍ୱପ୍ନ ଥିଲା ସାରା ଭାରତକୁ ମୁସଲମାନ ରାଜ୍ୟରେ ପରିଣତ କରିବେ। ସେଥିପାଇଁ ସେ ମରହଟ୍ଟାମାନଙ୍କୁ ରାଜ୍ୟରୁ ହଟାଇବା ଚେଷ୍ଟାରେ ରହିଲେ।

ଯୋଜନା ଆରମ୍ଭ କଲେ ମାରୱାରରୁ। ଜୁନ ୧୬୭୯ରେ ସେ ଇନ୍ଦ୍ର ସିଂଙ୍କୁ ରାଜା ଘୋଷଣା କଲେ। ଉତ୍ତରାଧୀକାରୀ ଭାବରେ ରାଜ ଆସନରେ ବସାଇବାପାଇଁ ୩.୬ ମିଲିନ ଟଙ୍କା ନେଲେ। ଭାବିଲେ ଏପରି କଲେ ରାଜପୁତମାନଙ୍କର ମନୋବଳ ଭାଙ୍ଗିଯିବ। କିନ୍ତୁ ଇନ୍ଦ୍ର ସିଂଙ୍କ ପାଇଁ ରାଜପୁତମାନଙ୍କର ସମର୍ଥନ ନ ଥିଲା। ଫଳରେ ମୁସଲମାନ ଅଫିସରମାନେ ରାଜ୍ୟ ଶାସନ ପରିଚାଳନା କଲେ। ଏଣେ ଦୁଇରାଣୀ ନିଜ ନିଜର ସନ୍ତାନମାନଙ୍କୁ ଧରି ଦିଲ୍ଲୀରେ ପହଞ୍ଚିଲେ। ଦାବି କଲେ ରାଜପୁତମାନଙ୍କୁ କି ଅଜିତ ସିଂଙ୍କୁ ରାଜ୍ୟ ହସ୍ତାନ୍ତର କରିବାପାଇଁ। କେତେକ ଆଇନ ସଂଗତ କାରଣ ଦର୍ଶାଇ ସେ ଅଜିତ ସିଂଙ୍କୁ ରାଜା କରିବେ ବୋଲି ଘୋଷଣା କଲେ। କିନ୍ତୁ ସର୍ତ୍ତ ରଖିଲେ କି ଅଜିତ ସିଂଙ୍କର ବୟସ୍କ ହେଲେ ସେ ରାଜା ହେବେ ଓ ସେ ମୁସଲମାନ ଧର୍ମ ଗ୍ରହଣ କରିବାକୁ ପଡ଼ିବ। ହାରେମରେ ସେମାନଙ୍କୁ ଯତ୍ନରେ ରଖାଇବାପାଇଁ ଆଦେଶ ଦେଲେ। ଆକବରଙ୍କ ଅମଳରୁ ରାଜପୁତମାନେ ଏକ ଅନ୍ୟରକମର ସୁବିଧା ଉପଭୋଗ କରିଆସୁଥିଲେ। ମୋଗଲ ଅଧିନରେ ଥାଇଁ ମଧ୍ୟ ରାଜପୁତମାନେ ସ୍ୱାଧୀନ ଥିଲେ। ବର୍ତ୍ତମାନ ଔରଙ୍ଗଜେବଙ୍କ ଶାସନ ପ୍ରଣାଳୀ ଉପରେ ବିଶ୍ୱାସ କରିପାରିଲେ ନାହିଁ। ସେଥିପାଇଁ ରାଣୀ ଓ ତାଙ୍କ ଦୁଇ ସନ୍ତାନଙ୍କୁ ହାରେର୍ମରେ ନ ରଖାଇ ମାରୱାର ପଠାଇଦେଲେ। ଆଉ ଦୁଇଜଣ ମହିଳାଙ୍କୁ ରାଣୀ ବେଶ କରାଇ

ଓ ଦୁଇଟି ରାଜପୁତ ପୁତ୍ରଙ୍କୁ ତାଙ୍କ ପାଖରେ ହାରେମରେ ରହିବାପାଇଁ ଦିଲ୍ଲୀରେ ଛାଡ଼ି ଦେଇଗଲେ। ଯୋଜନା ପଛରେ ଯଶୟନ୍ତ ସିଂଙ୍କ ମନ୍ତ୍ରୀ ଦୁର୍ଗାଦାସଙ୍କ ହାତ ଥିଲା।

ଔରଙ୍ଗଜେବ ପୁଣିଥରେ ଆଜମୀର ଗଲେ। ଏକ ବିରାଟ ସେନା ନେଇ ରାଜପୁତ୍ର ଆକବରଙ୍କୁ ମାରୱାର ଦମନ କରିବାପାଇଁ ପଠାଇଲେ। ରାଥୋରମାନେ ମୋଗଲସୈନ୍ୟଙ୍କୁ ବାଧା ଦେବା ସତ୍ତ୍ୱେ ହାରିଗଲେ। ମୋଗଲମାନେ ଯୋଧପୁର (ମାରୱାରର ରାଜଧାନୀ) ଦଖଲ କଲେ। ଯଶୟନ୍ତ ସିଂଙ୍କ ବିଧବା ଔରଙ୍ଗଜେବଙ୍କୁ ଖବର ପଠାଇଲେ କି ଯଦି ସମ୍ରାଟ ତାଙ୍କ ପୁଅ ଅଜିତ ସିଂଙ୍କୁ ରାଜା ବୋଲି ଘୋଷଣା କରିନ୍ତି, ତା ହେଲେ ସେ ମୋଗଲମାନଙ୍କ ନୀତି ଅନୁସାରେ ମାରୱାରକୁ କରିବେ ମନ୍ଦିର ଶୂନ୍ୟ। ପୁଣି କହିଲେ କି ମାରୱାରକୁ ଇନ୍ଦ୍ରସିଂଙ୍କୁ ଦେବା ବଦଳରେ ତାକୁ ମୋଗଲ ସାମ୍ରାଜ୍ୟ ଅନ୍ତର୍ଭୁକ୍ତ କରାଇନିଅନ୍ତୁ। ଦ୍ୱିତୀୟ ପ୍ରସ୍ତାବରେ ସମ୍ରାଟ ରାଜି ହୋଇଯାଇ ଓ ଇନ୍ଦ୍ରସିଂଙ୍କୁ ରାଜକାର୍ଯ୍ୟ ପରିଚାଳନାରେ ଅନୁପଯୁକ୍ତ ବୋଲି ଯୋଜନାକରି ମାରୱାରକୁ ମୋଗଲ ସାମ୍ରାଜ୍ୟ ଅଧିନକୁ ନେଇଗଲେ। ତା'ପରେ ମେୱାର ଉପରେ ଚାପ ପକାଇଲେ। ରାଣା ରାଜା ସିଂଙ୍କୁ ଚିତୋର ଦୁର୍ଗ ପୁନର୍ନିର୍ମାଣ ପାଇଁ ନିଯୁକ୍ତି ଦେଲେ। ଏହା ମୋଗଲ ସହିତ ବୁଝାମଣା ବାହାରେ ଥିଲା। ଜିଜିୟା କର ବସାଇଲେ। ରାଣା ରାଜସିଂ ଜିଜିୟାକର ବାକ୍ତ ମେୱାରର କିଛି ଅଂଶ ଦେଇଦେଲେ ଓ ମାରୱାର ରାଜପୁତ୍ରଙ୍କୁ କୌଣସି ସୁରକ୍ଷା ଦେବେ ନାହିଁ ବୋଲି ଜଣାଇଦେଲେ।

ଖୁସି ହେଲେ ମୋଗଲ ସମ୍ରାଟ। ଭାବିଲେ ରାଜସ୍ଥାନ ସଂକ୍ରାନ୍ତରେ ତାଙ୍କର ଅସୁବିଧା ଦୂର ହେଲା। ଫଳ କିନ୍ତୁ ହେଲା ଓଲଟା। ମାରୱାରର ରାଥୋରମାନେ ମୋଗଲ ବିରୁଦ୍ଧରେ ଗରିଲା ଯୁଦ୍ଧ ଆରମ୍ଭ କଲେ ଓ ମେୱାର ରାଜା ରାଜସିଂ ଔରଙ୍ଗଜେବଙ୍କ ସହିତ ଚୁକ୍ତି ଭାଙ୍ଗି, ଦୁଇ ରାଜାଙ୍କ ମିଳିତ ଉଦ୍ୟମରେ ମୋଗଲମାନଙ୍କୁ ବିରୋଧ କରିବାପାଇଁ ପାର୍ବତ୍ୟଦେଶକୁ ଲୁଚି ପଳାଇଲେ। ରାଜପୁତମାନେ ଆରାବଳି ପର୍ବତ ଭିତରେ ଲୁଚି ରହି ଯୁଦ୍ଧ ଚାଲୁ ରଖିଲେ। ଔରଙ୍ଗଜେବ ଏ ବିଷୟ ଜାଣି ତିନିପୁଅ– ଆକବର, ଆଜାମ ଓ ମଉଜାମଙ୍କୁ ତିନିଦିଗରୁ ଆକ୍ରମଣ କରିବାପାଇଁ ନିର୍ଦ୍ଦେଶ ଦେଲେ। ଆକବର କିଛି ବାଟ ଆଗେଇଲେ ସତ କିନ୍ତୁ ଯଥେଷ୍ଟ ନୁହେ। ଅସନ୍ତୁଷ୍ଟ ରହିଲେ ନିଜେ ଔରଙ୍ଗଜେବଙ୍କ ଉପରେ।

ଆକବର ଔରଙ୍ଗଜେବଙ୍କ ଉପରେ ଅସନ୍ତୁଷ୍ଟ ରହିବା ଦେଖି ରାଜପୁତମାନେ ଆକବରଙ୍କୁ ଫୁସୁଲାଇଲେ। କହିଲେ, ତମେ ଆମ ସାଙ୍ଗରେ ମିଶି ଔରଙ୍ଗଜେବଙ୍କ ବିରୁଦ୍ଧରେ ବିଦ୍ରୋହ କରି, ସାମ୍ରାଜ୍ୟ ଦଖଲ କର। ମଙ୍ଗିଗଲେ ଆକବର। ମୋଗଲ ସାମ୍ରାଜ୍ୟ ଅଧିକାର ଆଶାରେ ହାତମିଳାଇଲେ ରାଜପୁତଙ୍କ ସହ। ଆକବର ଦିଲରାସ ବାନୁ ବେଗମଙ୍କ ସନ୍ତାନ। ଜନ୍ମ ଦେଲା ପରେ ମା' ମୃତ୍ୟୁବରଣ କଲେ। ଔରଙ୍ଗଜେବଙ୍କର ସେ ସାହସୀ ସନ୍ତାନ। ଖୋଲାଖୋଲି ଭାବରେ ବାପାଙ୍କ ବିରୁଦ୍ଧରେ ଯିବାପାଇଁ ତାଙ୍କର ଡର ନ ଥିଲା। ସେ ଥିଲେ ଔରଙ୍ଗଜେବଙ୍କ ପ୍ରିୟ ପୁତ୍ର। ଆକବରଙ୍କ ଶଠତା ବିଷୟରେ ଜଣାଥିଲେ ବି ସେ କୌଣସି ସୁରକ୍ଷା ବ୍ୟବସ୍ଥା କରି ନଥିଲେ। କମାଣ୍ଡର ତାହାବୀର ଖାନ୍‌ଙ୍କ ଜରିଆରେ ରାଜପୁତମାନେ ସଂଯୋଗ କରିଥିଲେ କି ଯଦି ଆକବର ବିଦ୍ରୋହ କରିବା ପାଇଁ ଇଚ୍ଛା ପ୍ରକାଶ କରନ୍ତି ରାଜପୁତମାନେ ସେମାନଙ୍କୁ ସାହାଯ୍ୟ କରିବେ। ଆକବର ତାଙ୍କ ବାପାଙ୍କର ଠକାମି ଅନୁକରଣ କରି ବାପାଙ୍କୁ କହିଲେ କି ସେ ରାଜପୁତମାନଙ୍କୁ ସମ୍ରାଟଙ୍କ ନିକଟରେ ଆତ୍ମସମର୍ପଣ କରାଇବେ ବୋଲି ଚେଷ୍ଟାରେ ଅଛନ୍ତି। କିନ୍ତୁ ପ୍ରକୃତରେ ସେ ବିଦ୍ରୋହ ପାଇଁ ଚେଷ୍ଟିତ ଥିଲେ। ଏ ଖବର ଔରଙ୍ଗଜେବ ପାଇ ଆକବରଙ୍କୁ ଚିଠି ଲେଖିଲେ। ଆକବର ସତ୍ୟତା ପ୍ରକାଶ କରି କହିଲେ କି ସେ ବିଦ୍ରୋହ ଆରମ୍ଭ କରିଛନ୍ତି। ପରେ ଯୁଦ୍ଧ ଡାକରା ଦେଲେ ଔରଙ୍ଗଜେବଙ୍କ ବିରୁଦ୍ଧରେ। ଏକ ଅନୁଶାସନ କରି ସେ ଔରଙ୍ଗଜେବଙ୍କୁ ଗାଦିଚ୍ୟୁତ କଲେ। ୪ ଜଣ ଉଲେମା ଏହାକୁ ଇସଲାମୀ ଆଇନ ସଂଗତ ବୋଲି ଘୋଷଣା କଲେ। ୧୬୮୧, ୧୧ ଜାନୁୟାରୀରେ ସେ ନିଜକୁ ସମ୍ରାଟ ବୋଲି ଘୋଷଣା କରି ତହିଁ ପରଦିନ ରାଜପୁତ ବନ୍ଧୁମାନଙ୍କୁ ନେଇ ଔରଙ୍ଗଜେବଙ୍କୁ ମୁହାଁମୁହିଁ କରିବାକୁ ବାହାରିଲେ।

ଔରଙ୍ଗଜେବ ସେତେବେଳେ ଆଜମୀରରେ ଥିଲେ। ପ୍ରାୟ ୧୭୦ କିଲୋମିଟର ଦୂରରେ। ରାଜପୁତଙ୍କର ସୈନ୍ୟବଳ ଥିଲା ପ୍ରାୟ ୩୦,୦୦୦। ସେ ତୁଳନାରେ ଔରଙ୍ଗଜେବ ହୀନବଳ। ଯୁଦ୍ଧ ସାଙ୍ଗେ ସାଙ୍ଗେ ଆରମ୍ଭ ହୋଇଥିଲେ ବୋଧେ ଆକବରଙ୍କ ବିଜୟ ସୁନିଶ୍ଚିତ ହୋଇପାରିଥାନ୍ତା। ସେତିକିବେଳେ ଆକାଶରେ ଲଞ୍ଜାତାରା ଦେଖାଦେଲା। ରାଜପୁତମାନଙ୍କୁ ଜ୍ୟୋତିଷ ଗଣନା ଅନୁସାରେ ଯୁଦ୍ଧ କରିବାକୁ ଯିବାପାଇଁ ବାରଣ କଲେ। ଯୁଦ୍ଧର ବିଜୟ ସବୁବେଳେ ଏକ ସମ୍ଭାବନା। ତହବୀର ଖାନ୍ ଔରଙ୍ଗଜେବଙ୍କ ଛାଉଣୀକୁ ଯାଉଥିଲେ। ସେତିକିବେଳେ ସମ୍ରାଟ ଓ

ରାଜପୁତ୍ର ଆକବରଙ୍କ ମଧ୍ୟରେ ଚିଠି ଆଦାନ ପ୍ରଦାନ ହେଉଥିଲା। ତହବୁର ଖାଁ ରାଜପୁତ୍ରଙ୍କ ତରଫରୁ ଛାଉଣୀକୁ ଯାଇଥିଲେ। ସେଠାରେ ତାଙ୍କୁ ହତ୍ୟା କରାଗଲା। ଦୁର୍ଗାଦାସ ଦେଖା କରିବାକୁ ଗଲେ ଆକବରଙ୍କୁ। ଖବର ପାଇଲେ ତହବୁର ଖାଁ ଅନ୍ୟ ଛାଉଣୀକୁ ଯାଇଛନ୍ତି। ଭୟ ହେଲା ରାଜପୁତମାନଙ୍କ ବିରୁଦ୍ଧରେ କିଛି ଗୋଟାଏ ଷଡ଼ଯନ୍ତ୍ର ଚାଲିଛି। ଏହି ପରିପ୍ରେକ୍ଷୀରେ ରାଜପୁତମାନେ ଓହରିଗଲେ। ଆକବର ନିଜକୁ ଏକୁଟିଆ ମନେକଲେ। ତାଙ୍କର ଘୋଡ଼ା ସବାର ମାତ୍ର ଥିଲେ ୩୫୦। ସେ ମଧ୍ୟ ପଳାତକ ହୋଇଗଲେ। ଔରଙ୍ଗଜେବ ବୁଦ୍ଧି କାମ କଲା। ଯେଉଁ ଉଲେମାମାନେ ଆକବରଙ୍କୁ ଇସଲାମ ଆଇନ ଅନୁଯାୟୀ ସମ୍ରାଟ ଘୋଷଣା କରିଥିଲେ ସେମାନଙ୍କୁ ଅତ୍ୟାଚାର କରାଗଲା। ଜେବୁନସା, ଆକବରଙ୍କ ପ୍ରିୟ ଭଉଣୀ ଓ ଔରଙ୍ଗଜେବଙ୍କ ପ୍ରିୟକନ୍ୟାଙ୍କ ନିକଟରୁ ଅନେକ ଚିଠି ମିଳିଲା। ସନ୍ଦେହ ହେଲା କି ସେ ମଧ୍ୟ ଏ ଷଡ଼ଯନ୍ତ୍ର ସହିତ ସଂପୃକ୍ତ। ସେଥିପାଇଁ ତାଙ୍କର ବାର୍ଷିକ ଭତ୍ତା କମାଇଦେଲେ ଓ ତାଙ୍କୁ ସଲିମଗଡ଼ରେ ବନ୍ଦୀ କରାଗଲା। ପ୍ରତ୍ୟେକ ସରକାରୀ କାଗଜରେ ଆକବରଙ୍କ ନାମ (ଅତି ବାଜେ ବିଦ୍ରୋହୀ) ବୋଲି ଲେଖାଗଲା।

ପଳାତକ ଆକବରଙ୍କୁ ଧରିବାପାଇଁ ମୁଜାମଙ୍କୁ ପଠାଇଲେ। ମଜାମ ସମ୍ରାଟଙ୍କୁ ଲେଖିଲେ; ଆକବରଙ୍କୁ ଖୋଜିବା ସମୟରେ ଯୁଦ୍ଧ ହୋଇପାରିଥାଏ ଓ ସେ ଯୁଦ୍ଧରେ ଆକବର ମୃତ୍ୟୁବରଣ କରିପାରିଥାନ୍ତି। ଉତ୍ତର ଦେଲେ ସମ୍ରାଟ। ଲେଖିଲେ ବିଦ୍ରୋହୀ ପୁତ୍ରର ବଞ୍ଚିବାର ଅଧିକାର ନାହିଁ। ପରେ ଆକବର ରାଜପୁତ୍ରମାନଙ୍କ ହାତରେ ଧରା ପଡ଼ିଲେ। ଦୁର୍ଗାଦାସ ତାଙ୍କୁ ନେଇଗଲେ ଦାକ୍ଷିଣାତ୍ୟ। ସେଠାରେ ମରହଟ୍ଟା ରାଜା ଶମ୍ଭୁଜୀଙ୍କ ତତ୍ତ୍ୱାବଧାନରେ ରଖିଲେ। ସେ ବିଶ୍ୱାସ ଥିଲା ତାଙ୍କୁ ସମ୍ରାଟ କରିବାରେ ଦିନେ ନା ଦିନେ ମରହଟ୍ଟାମାନେ ସାହାଯ୍ୟ କରିବେ।

ଔରଙ୍ଗଜେବଙ୍କ ପାଇଁ ଆକବର ମରହଟ୍ଟାଙ୍କ ତତ୍ତ୍ୱାବଧାନରେ ରହିବା ବିପଦଜନକ ଥିଲା।। ମରହଟ୍ଟାମାନେ ଔରଙ୍ଗଜେବଙ୍କ ଚିର ଶତ୍ରୁ। ଏଣେ ସେଇମାନଙ୍କ ହାତରେ ପୁତ୍ର ଆକବର। ଆକବରଙ୍କୁ ଦେଖିବାର ଆଶାରଖି ତାଙ୍କୁ ଚିଠି ଲେଖିଲେ। ଆକବର ଏ ଛଳନାରେ ନ ପଶି ଲେଖିଲେ କି ତୁମେ ଶାସନ ଛାଡ଼ିଦେଇ ନିଜ ଆତ୍ମାର ସଂଧାନ କର। ତେବେ ବି ଔରଙ୍ଗଜେବ ପୁଅକୁ ଫେରିଆସିବା ପାଇଁ ଚିଠି ଲେଖିଲେ। ଆକବର ଜିଦ୍ କଲେ। ମୁଁ ନିଶ୍ଚୟ ଫେରିଯିବି କିନ୍ତୁ ହାତରେ ଶାସନର ଡୋର ଧରି। ଶମ୍ଭୁଜୀଙ୍କ ପାଖରେ ୬ ବର୍ଷ କଟାଇଲେ

ଦିନକୁ ଟ.୩୦୦ରେ ଖର୍ଚ୍ଚ ପାଇ। କିନ୍ତୁ ଶେଷରେ ମରହଟ୍ଟାମାନଙ୍କଠୁ କୌଣସି ସାହାଯ୍ୟ ପାଇଲେ ନାହିଁ ସମ୍ରାଟ ହେବାପାଇଁ। ଦୁର୍ଗାଦାସ ତାଙ୍କ ପାଖେ ପାଖେ ଥିଲେ। ୧୬୮୭ ଫେବୃୟାରୀରେ ଆକବର ପର୍ଶିୟା ଚାଲିଗଲେ। ପର୍ଶିୟାର ସାହା ତାଙ୍କୁ ଆଶ୍ରୟ ଦେଲେ ସତ କିନ୍ତୁ ଯୁଦ୍ଧପାଇଁ ସାହାଯ୍ୟ କରିବାକୁ ମନା କରିଦେଲେ। ୧୭୦୪ରେ ଆକବର ପର୍ଶିୟାରେ ମୃତ୍ୟୁବରଣ କଲେ– ତାଙ୍କ ବାପାଙ୍କ ମୃତ୍ୟୁର ୩ ବର୍ଷ ପୂର୍ବରୁ।

ଆକବରଙ୍କ ବିଦ୍ରୋହ ସମୟରେ ମେୱାରର ରାଣା ବିପଦରେ ପଡ଼ିଲେ। ଡରଥିଲା ମୋଗଲମାନଙ୍କ ଦ୍ୱାରା ଦଳିତ ହେବେ। ବିଦ୍ରୋହ ଫଳରେ ତାଙ୍କ ଡର କମିଯାଇଥିଲା। ମୋଗଲ ସାମ୍ରାଜ୍ୟ ଅଧିନର ଥିବା ଗୁଜରାଟ ଓ ମାରୱାରରୁ କିଛି ଲୁଣ୍ଠନ କରିବା ଆରମ୍ଭ କରିଦେଇଥିଲେ। ମେୱାର ମଧ ଦୁର୍ବଳ ହୋଇଯାଇଥିଲା। ରାଣା ଶାନ୍ତି ଚାହୁଁଥିଲେ ମୋଗଲ ସହିତ। ଔରଙ୍ଗଜେବ ଦାକ୍ଷିଣାତ୍ୟ ଘଟଣାରେ ବ୍ୟସ୍ତ ଥିଲେ। ୧୬୮୧ରେ ରାଣା ବନ୍ଧୁତ୍ୱ ପାଇଁ ହାତ ବଢ଼ାଇଲେ। ମୋଗଲ ସମ୍ରାଟ ଅତି ସହଜରେ ଗ୍ରହଣ କରିନେଲେ। ମାରୱାର ମଧ ଶାନ୍ତ ଥିଲା। ଆକବର ଭାରତ ଛାଡ଼ି ଗଲାପରେ ଦୁର୍ଗା ଦାସ ମାରୱାରକୁ ୧୬୮୭ରେ ଫେରିଲେ। ସେ ୮ ବର୍ଷ ବୟସ୍କ ଅଜିତ ସିଂଙ୍କୁ ଲୁଚାଇବା ଜାଗାରୁ ବାହାର କରି ରାଥୋର ବଂଶର ଚିହ୍ନ ବୋଲି ପଦାକୁ ଆଣିଲେ।

ସେଇ ସମୟରେ ସୁଜିତ ଖାଁକୁ ମେୱାରର ଗଭର୍ଣ୍ଣର କରି ଔରଙ୍ଗଜେବ ପଠାଇଲେ। ୧୬୯୪ରେ ସୁଜିତ ଖାଁ ସହିତ ରାଥୋର ସହିତ ଚୁକ୍ତି ହେଲା। ଦୁର୍ଗାଦାସ ଅକବରଙ୍କ କନ୍ୟାକୁ ଔରଙ୍ଗଜେବଙ୍କ ପାଖକୁ ପଠାଇଲେ। ୧୬୯୮ରେ ରାଥୋରଙ୍କ ଯତ୍ନରେ ଅଜିତସିଂଙ୍କର ଗୋଟେ ପୁଅ ମଧ ଜନ୍ମ ହେଲା। ଔରଙ୍ଗଜେବ ଦୁର୍ଗାଦାସ ଓ ଅଜିତସିଂଙ୍କ ଉପରେ ଖୁସି ହୋଇ ରାଜ ଆର୍ଶିବାଦ ସ୍ୱରୂପ ଅଜିତ ସିଂକୁ କିଛି ପ୍ରଗନା ପ୍ରଦାନ କଲେ। ଦକ୍ଷିଣ ରାଜସ୍ଥାନରୁ ଜାଗିର ହିସାବରେ। ରାଥୋରମାନେ ଏହାକୁ ଗ୍ରହଣ କରିନେଲେ। କାରଣ ଯୁଦ୍ଧକରି କରି ସମସ୍ତେ ଥକି ଯାଇଥିଲେ। ଦ୍ୱିତୀୟରେ ନବ ବିବାହିତ ଅଜିତ ମଧ ଗୋଟାଏ ଜାଗାରେ ସ୍ଥିର ହୋଇ ରହିବାକୁ ଚାହୁଁଥିଲେ। ୧୭୦୨ରେ ମୋଗଲ ରାଥୋର ପ୍ରତିଦ୍ୱନ୍ଦିତା ପୁଣି ଥରେ ମୁଣ୍ଡ ଟେକିଲା। କିନ୍ତୁ ସେଇଟା ଅଜିତ ସିଂ ଓ ଦୁର୍ଗାଦାସଙ୍କ ଭିତରି ସଂଘର୍ଷ। ଅଜିତଙ୍କୁ ସେତେବେଳେ ୨୩ ବର୍ଷ ବୟସ। ସେ ନିଜ ବାହୁବଳରେ ନିଜର ପୌରୁଷ ଦେଖାଇବାକୁ ଚାହିଁଲେ।

କିଛିବର୍ଷ ପରେ ଏହା ମଧ ମଉଳି ଗଲା । ୧୭୦୭ରେ ଔରଙ୍ଗଜେବଙ୍କ ମୃତ୍ୟୁର କିଛିମାସ ଆଗରୁ ଦୁର୍ଗାଦାସ ଓ ଅଜିତ ପୁଣିଥରେ ଏକାଠି ହୋଇଗଲେ । ୧୭୦୭ରେ ସମ୍ରାଟ ଔରଙ୍ଗଜେବଙ୍କର ମୃତ୍ୟୁ ହେଲା । ଅଜିତ ସିଂ ମାର୍ଚ୍ଚ ମାସରେ ଯୋଧପୁର ଯାଇଁ ମୋଗଲ ଅଫିସରମାନଙ୍କୁ ବିଦାକରି ନିଜର ପୈତୃକ ରାଜଧାନୀ ଦଖଲ କଲେ । ଶେଷ ହେଲା ରାଥୋର ମୋଗଲ ସଂଘର୍ଷ । ମୋଗଲ ମରହଟ୍ଟା ସଂଘର୍ଷ କିନ୍ତୁ ତୁଟିପାରି ନଥିଲା ।

## ଔରଙ୍ଗଜେବ (ପୂର୍ବର କଥା)

୧୬୨୦ରେ ଜାହାଙ୍ଗୀର-ନୁର, ଶାହାଜାହାଁ ଓ ମମତାଜଙ୍କୁ ନେଇ ଆଗ୍ରାରୁ କାଶ୍ମୀରରେ ପହଞ୍ଚିଲେ । ୫ ମାସର ରାସ୍ତା । ପାହାଡ଼ ପର୍ବତ ଘେରା । ମଝିରେ ମଝିରେ ବର୍ଷା ଓ ବରଫ । ସବୁ ରାସ୍ତା ଭିତରେ ହାତୀ ଘୋଡ଼ା ରାଜକୀୟ ପରିବାରର ସମସ୍ତ ଆବଶ୍ୟକୀୟ ବସ୍ତୁ ଧରି ଯିବା ଆହୁରି ବିପଦ ସଂକୁଳ । ଯାତ୍ରା ସମୟରେ ୨୫ଟି ହାତୀ ମରିଗଲେ । ଡିସେମ୍ବର ୧୬୧୯ରେ ମମତାଜ ତାଙ୍କ ୪ର୍ଥ ପୁତ୍ରଙ୍କୁ ଜନମ ଦେଲେ । ନାମ ରଖିଲେ ଉମିଦ ବକ୍ସ । ମୋଗଲ ସ୍ତ୍ରୀ ଲୋକମାନଙ୍କର ପିଲାଜନ୍ମ କରିବାର ଦକ୍ଷତା ଅନେକ । ରାତିରେ ସନ୍ତାନ ଜନ୍ମର କଷ୍ଟ ପରେ ତହିଁ ପରଦିନ ସକାଳୁ ବିପଦ ସଂକୁଳ ଯାତ୍ରାରେ ଯିବାପାଇଁ ସେ ପ୍ରସ୍ତୁତ ହୋଇଯାନ୍ତି । ସେଥିପାଇଁ ୪ର୍ଥ ପୁତ୍ର ଜନ୍ମ ଦେଲା ପରେ ମଧ ନୁରଜାହାଁ କାଶ୍ମୀର ଯାତ୍ରାରେ ଯୋଗ ଦେଇଥିଲେ । କାଶ୍ମୀରର ଦାଲ ହ୍ରଦର କୁଳେ କୁଳେ ନୌକାବିହାର ଅତି ମନୋହର । ସାରା ହ୍ରଦ ସାଫ୍ରେନ ଫୁଲରେ ଭରା । ଏ ଫୁଲର ପାଞ୍ଚୋଟି ପାଖୁଡ଼ା । ପାଖୁଡ଼ାର ରଙ୍ଗ ବାଇଗିଣିଆ । ମଝିରେ ତିନୋଟି ଶୁଣ୍ଢ ଭଳି ଲମ୍ବା ଲମ୍ବା କାଠି । ଏହାହିଁ ପ୍ରକୃତ ସାଫ୍ରେନ । ଏ ସୌନ୍ଦର୍ଯ୍ୟ ଭରା, ପୁଷ୍ପ ଭରା ହ୍ରଦ ଦେଖି ଜାହାଙ୍ଗୀରଙ୍କ କବିତା ଲେଖିଥିଲେ ।

ଦାଲ ହ୍ରଦ କୂଳରେ ପ୍ରସିଦ୍ଧ ସାଲିମାର ବଗିଚା ଏବେ ବି ଦଣ୍ଡାୟମାନ । ଏ ବଗିଚାକୁ ତିଆରି କରିଥିଲେ ଜାହାଙ୍ଗୀର ଶାହାଜାହାନଙ୍କ ଯୋଜନା ଡାଞ୍ଚାରେ । ବରଫରୁ ନିର୍ଗତ ପାଣିକୁ ଧରି ରଖି ମଝିରେ ଝରଣାର ଧାରା ଗଢ଼ିଥିଲେ । ଏହା ପୂର୍ବରୁ ଜଣେ କେହି ବଗିଚା ପୃଷ୍ଠପୋଷକ ହ୍ରଦ କୂଳରେ ଘର ତୋଳାଇଥିଲେ । ନାଁ ରଖିଥିଲେ ସାଲିମାର ବା 'ପ୍ରେମର ଘର' । ବଗିଚା ସାରା ଲାଗିଥିଲା ଅଫିମ ଗଛ, ଗଞ୍ଜେଇ ଗଛ ଆଉ ଭାଙ୍ଗଗଛ । ୧୬୩୫ରେ ୧୬ ବର୍ଷ ବୟସରେ

ଶାହାଜାହାଁ ଔରଙ୍ଗଜେବଙ୍କୁ ଯୁଦ୍ଧପାଇଁ ପଠାଇଥିଲେ। ଶତ୍ରୁ ଥିଲେ ଜୁଝାର ସିଂ– ଓରଛାର ରାଜା। ଆଗ୍ରାଠୁ ୧୦୦ ମାଇଲ ଦୂର। ଏହା ଏକ ଜଙ୍ଗଲି ରାଜ୍ୟ। ଝୁଝାର ସିଂ ପୂର୍ବରୁ ଶାହାଜାହାଁଙ୍କ ବିରୁଦ୍ଧରେ ଥିଲେ ହେଁ ଶାହାଜାହାଁଙ୍କ ଦାକ୍ଷିଣାତ୍ୟ ଯିବା ପର୍ଯ୍ୟନ୍ତ ତାଙ୍କ ସହିତ ସାଲିସ କରିଥିଲେ। ଔରଙ୍ଗଜେବ ରାଜ୍ୟ ଜୟ କଲେ। କିନ୍ତୁ ରାଜା ଭୟରେ ଜଙ୍ଗଲକୁ ପଳାଇଗଲେ ଓ ଜଙ୍ଗଲି ଲୋକମାନଙ୍କ ଦ୍ୱାରା ନିହତ ହେଲେ। ରାଜପରିବାରର ସ୍ତ୍ରୀଲୋକମାନେ ଧରାହେଲେ। ସେମାନେ ନିଜକୁ ନିଆଁରେ ଜାଳିଦେବାପାଇଁ ଅବସର ପାଇ ନଥିଲେ।

ଝୁଝାର ସିଂଙ୍କ ବାପା ଗୋଟେ ବଡ଼ ହିନ୍ଦୁ ମନ୍ଦିର ତୋଳାଇଥିଲେ। ଶାହାଜାହାଁ ଏ ମନ୍ଦିର ଭାଙ୍ଗି ସେଠି ମସଜିଦ୍ ତୋଳାଇବାର ଆଦେଶ ଦେଇଥିଲେ। ଏ ରାଜା ଜାହାଙ୍ଗୀରଙ୍କ ଉପଦେଶ ଅନୁସାରେ ଅବୁଲ ଫଜଲ (ଆକବରଙ୍କ ପ୍ରିୟସଖା)ଙ୍କୁ ହତ୍ୟା କରିଥିଲେ। ଔରଙ୍ଗଜେବ ଜାଣିଥିଲେ ତାଙ୍କ ଶତ୍ରୁମାନେ ତାଙ୍କୁ ମାରିଦେବାକୁ ଚାହୁଁଛନ୍ତି। କିନ୍ତୁ ସେ ଦାରାସୁଖୋଙ୍କ ନାଁ ଲେଖି ନଥିଲେ, ଜାହାନ୍ଆରାଙ୍କୁ ଲେଖିଥିବା ଚିଠିରେ। ୧୬୩୩ ଶାହାଜାହାଁ ଦାରାଙ୍କୁ ଫିରୋଜା ହିସାର ଦାନ କଲେ। ସନ୍ତୁଷ୍ଟ ନ ହୋଇ ମଧ୍ୟ ଔରଙ୍ଗଜେବ କୌଣସି ପ୍ରତିକ୍ରିୟା ଦେଖାଇ ନଥିଲେ।

ଆଗ୍ରାର ଯମୁନାନଦୀ କୂଳରେ ଦାରା ଏକ ପ୍ରାସାଦ ତୋଳାଇଲେ। ତାକୁ ଦେଖିବାପାଇଁ ଶାହାଜାହାଁଙ୍କ ସହ ଦାରା, ଔରଙ୍ଗଜେବ ମଧ୍ୟ ଯାଇଥିଲେ। ଦାରା ଔରଙ୍ଗଜେବଙ୍କୁ ମାଟିତଳେ ଥିବା ଘର ଦେଖିବାକୁ ଡାକିଲେ। ଔରଙ୍ଗଜେବ ବାରଣ କଲେ କାରଣ ଭୟ ଥିଲା ଦାରା ତାଙ୍କୁ ହତ୍ୟା କରିବାପାଇଁ ନିମନ୍ତ୍ରଣ କରୁଛନ୍ତି। ଶାହାଜାହାଁଙ୍କ ଅନୁରୋଧ କ୍ରମେ ମଧ୍ୟ ସେ ବାରଣ କଲେ। ଏ ଗପ ସତ ହେଉ ବା ନ ହେଉ ଔରଙ୍ଗଜେବ ଦାରାଙ୍କୁ ହିଂସା କରୁଥିଲେ। ତାଙ୍କ ପ୍ରତି ତାଙ୍କ ବାପାଙ୍କର ଆଚରଣକୁ ସେ ଭଲ ପାଉ ନଥିଲେ ଯେଉଁ କାରଣରୁ କି ସେ ପିତୃପ୍ରଦତ୍ତ ପଦବୀରୁ ନିଜକୁ ଓହରାଇ ନେଉଥିଲେ। ଔରଙ୍ଗଜେବଙ୍କ ପ୍ରତି ମନୋବୃତ୍ତି ପାଇଁ ନିଜକୁ ନିଜେ ଦାୟୀ କଲେ ଓ ପରେ ସୁସଂପର୍କ ରଖିବାକୁ ଚେଷ୍ଟା କଲେ। ଡେରି ହୋଇଯାଇଥିଲା ସତ। କିନ୍ତୁ ପରେ ଜାହାନ୍ଆରାଙ୍କ ଅନୁରୋଧ କ୍ରମେ ଶାହାଜାହାଁ ପୁତ୍ର ଔରଙ୍ଗଜେବଙ୍କୁ ୧୬୪୫ରେ ଗୁଜରାଟର ଗଭର୍ଣ୍ଣର କରି ପଠାଇଲେ। ୧୬୪୮ରେ ଯେତେବେଳେ ଶାହାଜାହାଁ

ଶାହାଜାହାଁବାଦରେ ରହିଲେ ସେତେବେଳକୁ ଦାରା ୩୩ ବର୍ଷର, ସାହାସୁଜା-୩୧ ବର୍ଷର, ଔରଙ୍ଗଜେବ ୨୯ ଓ ମୁରାଦ ୨୩ ବର୍ଷର।

ଦାରା ଆକବରଙ୍କ ଧର୍ମନୀତି ଅବଲମ୍ବନ କରୁଥିଲେ। ତାଙ୍କ ଲେଖାରେ ସେ ସୁଫି ଧର୍ମ ଓ ହିନ୍ଦୁଧର୍ମର ମୌଳିକ ତଥ୍ୟ ଉପରେ ତୁଳନା କରୁଥିଲେ। ଆଉ ସୁଫି ଧର୍ମର ମୂଳତତ୍ତ୍ୱ ଖୋଜୁଥିଲେ ଭଉଣୀ ଜାହାନ୍ନାରାଙ୍କ ପରି। ଉପନିଷଦ ଅନୁବାଦ କରିଥିଲେ। ବାପାଙ୍କୁ ଅନୁରୋଧ କରି ଏକ ହିନ୍ଦୁ ମନ୍ଦିରରେ ପଥର ରେଲିଂ ଲଗାଇଥିଲେ। ତାଙ୍କ ହାତ ଅକ୍ଷର ମନୋହର ଓ ସେ ଚମତ୍କାର କବିତା ଲେଖୁଥିଲେ। ସାହା ସୁଜା ସାଙ୍ଗ ସାଥି ପ୍ରିୟ। ନିଜ ଚରିତ୍ରର ନିଜେ ଦାସ। ସ୍ତ୍ରୀ ଲୋକଙ୍କ ମେଳରେ ନାଚ, ଗୀତ, ମଦରେ ବୁଡ଼ି ରହିଥିଲେ। ଔରଙ୍ଗଜେବ ଅନ୍ୟ ଦୁଇଭାଇଙ୍କ ଭଳି ଏତେ ସୁମାର୍ଜିତ ସଭ୍ୟତାକୁ ଯାଇ ନଥିଲେ। ସର୍ବଦା ଦୁଃଖରେ ଭାଙ୍ଗିପଡ଼ିବା ଭଳି ଜଣାଯାଉଥାନ୍ତି। ଗମ୍ଭୀର କିନ୍ତୁ ଚତୁରତାରେ ନିପୁଣ। ନିଜକୁ ସବୁବେଳେ ଅସୁରକ୍ଷିତ ଅନୁଭବ କରନ୍ତି। କପଟ, ଆଶାବାଦୀ, ମାନସିକ ଉନ୍ମାଦନାପୂର୍ଣ୍ଣ ବ୍ୟକ୍ତିତ୍ୱ ତାଙ୍କର। ନିଜକୁ ଚଳେଇ ନେବାରେ ଦକ୍ଷ। ଜଣେ ରକ୍ଷଣଶୀଳ ସୁନି ମୁସଲମାନ। ଗୁଜରାଟରେ ଗଭର୍ଣ୍ଣର ଥିଲାବେଳେ ସେ ଗୋଟେ ଜୈନମନ୍ଦିର ନଷ୍ଟ କରିବାକୁ ଚାହିଁଥିଲେ କିନ୍ତୁ ବାଧାଦେଲେ ଦାରା।

ବାପାଙ୍କ ସହିତ ସଂପର୍କ ଅପ୍ରୀତିକର ଥିଲା। ମଝିରେ ମଝିରେ ଜାହାନ୍ନାରା ପାଖକୁ ଚିଠି ଲେଖି ଜଣାଉଥାନ୍ତି କି ମୋ' ଭାଗ୍ୟ ଅତ୍ୟନ୍ତ ଖରାପ। ଯାହା ଫଳରେ ମୋ' ବାପାଙ୍କର ମୋ ଉପରେ ବିଶ୍ୱାସ ନାହିଁ ଆଉ ସେ ଭାବୁଛନ୍ତି କି ମୁଁ ଅଯୋଗ୍ୟ। ମୁରାଦ ବକ୍ସ। ସେ ନିଜ ଦୁନିଆରେ ନିଜେ ମସଗୁଲ ଥାନ୍ତି। ଶିକାର କରିବାକୁ ଭଲ ପାନ୍ତି। ଶକ୍ତି ଥାଉ ବା ନ ଥାଉ ରାଜନୈତିକ ପରିସ୍ଥିତି ଯାହା ହେଉ ନା କାହିଁକି ସେ ନିଜର ବାହୁବଳ ଓ ଖଣ୍ଡା ଉପରେ ବିଶ୍ୱାସ ରଖନ୍ତି। ୧୬୪୬ରେ ଶାହାଜାହାଁ ସମରକନ୍ଦ ପୁର୍ନଦଖଲ କରିବାପାଇଁ ପ୍ରୟାସୀ ହେଲେ। ସମରକନ୍ଦ ତୈମୁରଙ୍କ ବଂଶଧରଙ୍କ ରାଜ୍ୟ। ସେ ରାଜ୍ୟର ଅଧିକାରୀ ଥିଲେ ଉଜ୍‌ବେଗୀମାନେ। ମୁରାଦଙ୍କୁ ସମର୍ପିଲେ ଏ କାର୍ଯ୍ୟଭାର। ତାଙ୍କୁ ୫୦,୦୦୦ ଅଶ୍ୱାରୋହୀ ଓ ୧୦ ହଜାର ଅନ୍ୟାନ୍ୟ ସୈନ୍ୟଦଳ ଯୋଗାଇଦେଲେ। ମୁରାଦ ଆକ୍ରମଣରେ ବାହାରିଲେ। ଏ ସୈନ୍ୟସାମନ୍ତର ସାଜସଜ୍ଜା ଦେଖି ଆଞ୍ଚଳିକ ରାଜ୍ୟର ରାଜାମାନେ ରାଜ୍ୟଛାଡ଼ି ଅକ୍ସସ ନଦୀ ପାରି ହୋଇ ବାହାରିଗଲେ। ପୁରାତନ ବଲ୍ଖ ରାଜ୍ୟ ମୁରାଦ ଦଖଲ

କଲେ। ହେଲେ ସମରକନ୍ଦ ୧୭୦୦ ମାଇଲ ଦୂରରେ ଥିଲେହେଁ ମୁରାଦ ସମରକନ୍ଦ ଦିଗକୁ ଗଲେ ନାହିଁ। ଶାହାଜାହାଁ ଯିବାପାଇଁ ବାଧ କଲେ ମୁରାଦଙ୍କୁ। ପ୍ରତିଶ୍ରୁତି ଦେଲେ କି ସମରକନ୍ଦରେ ବିଜୟୀ ହେଲେ ସେ ମୁରାଦଙ୍କୁ ସେଠାର ଗଭର୍ଣ୍ଣର ପଦବୀ ପ୍ରଦାନ କରିବେ। ବିଳାସ ବ୍ୟସନ ଓ ଫୁର୍ତ୍ତି ଭଲପାଉଥିବା ମୁରାଦ ଆକ୍ରମଣ ପାଇଁ ନ ପାଇଁ ଲାହୋର ଫେରିଆସିଲେ। ରାଗିଯାଇଁ ଶାହାଜାହାଁମୁରାଦଙ୍କ ପଦବୀ ରଦ୍ଦ କରିଦେଲେ। ଦରବାରରେ ପ୍ରବେଶ ପାଇଁ ବାରଣ କଲେ।

ସାଙ୍ଗେ ସାଙ୍ଗେ ଔରଙ୍ଗଜେବଙ୍କୁ ଗୁଜରାଟରୁ ଡକାଇଲେ। ସମରକନ୍ଦ ଯୁଦ୍ଧରେ ଭାଗ ନେବାପାଇଁ। ସେ ମଧ ଅରାଜି ହେଲେ। ଏଥିରେ ଶାହାଜାହାଁ ନିଜେ ଯୁଦ୍ଧ କରିବାକୁ ବାହାରିଲେ। କାରଣ ସେ ନିଜେ ଉଜ୍‌ବେଗୀ ଓ ତର୍କିମାନଙ୍କ ଦ୍ୱାରା ଲୁଣ୍ଠିତ ଓ ଉତ୍ପିଡିତ ହେଉଥିଲେ। ଏଣେ ଭୟ ଥିଲା ସେମାନେ କାଳେ ଭାରତ ଆକ୍ରମଣ ପାଇଁ ପ୍ରସ୍ତୁତ ହେବେ। ଯୁଦ୍ଧ ହେଲା। ଯୁଦ୍ଧକ୍ଷେତ୍ର ମଝିରେ ସେ ପ୍ରାର୍ଥନା ବଟେଇ ବିଛାଇ ସଂଧ୍ୟାକାଳିନ ପ୍ରାର୍ଥନାପାଇଁ ବସିଲେ। ଏସବୁ ସତ୍ତ୍ୱେ ସେ ଶୀତଦିନ ଆସିବା ପୂର୍ବରୁ ଓ ରାସ୍ତା ବରଫାବୃତ ହୋଇଯିବା ଭୟରେ କାବୁଲ ଫେରିଆସିଲେ। ଏ ଯୁଦ୍ଧଯାତ୍ରାରେ ଟ.୨୦,୦୦୦,୦୦୦ (ଖର୍ଚ୍ଚ କରିବାକୁ ବାଧ ହୋଇଥିଲେ ମଧ ଇଞ୍ଚେ ଜାଗା ମଧ ମୋଗଲ ସାମ୍ରାଜ୍ୟ ସହିତ ଯୋଗ କରିପାରି ନଥିଲେ। ଏହାପରେ ଅନେକ ଯୁଦ୍ଧ ଜନିତ କ୍ଷତି ସହିଲେ ଶାହାଜାହାଁ। ସମରକନ୍ଦ ଅଭିଯାନ କରିବା ଅଭିପ୍ରାୟ ଦେଖି ପର୍ଶିଆର ସାହା କାନ୍ଧାହାର ନେଇଗଲେ ୧୬୪୯ରେ, ୭୦୦୦ ମୋଗଲ ସୈନ୍ୟ ଜୀବନ ହରାଇଥିଲେ। ଶାହାଜାହାଁ ୫୦,୦୦୦ ସୈନ୍ୟଦେଖି ଔରଙ୍ଗଜେବଙ୍କୁ କାନ୍ଧାହାର ରକ୍ଷା କରିବାକୁ ପଠାଇଲେ। ଔରଙ୍ଗଜେବ ବରଫାବୃତ୍ତ ଅଞ୍ଚଳ ଅତିକ୍ରମ କରି ମେ ମାସର ମଧ ଭାଗ ପର୍ଯ୍ୟନ୍ତ କାନ୍ଧାହାରରେ ପହଞ୍ଚି ପାରି ନଥିଲେ। ପରେ କାନ୍ଧାହାର ଘେରାଉ କଲେ। କାନ୍ଧାହାର ପାଚେରୀ କିନ୍ତୁ ସେପ୍ଟେମ୍ବର ପର୍ଯ୍ୟନ୍ତ ଭାଙ୍ଗି ପାରି ନଥିଲେ ଭାଙ୍ଗିବା କାମ ବନ୍ଦ କରିଦେଲେ। ପରେ ଆହୁରି ଦୁଇଥର ଚେଷ୍ଟା କରି ମଧ କୃତକାର୍ଯ୍ୟ ହୋଇପାରିଲେ ନାହିଁ। ସେଥିରେ ଆଉଥରେ ପାଚେରୀ ଭାଙ୍ଗିବାର ଚେଷ୍ଟା କରିବାପାଇଁ ଅନୁମତି ମାଗିବାରୁ ଶାହାଜାହାଁ ବାରଣ କଲେ। ସେହି ବର୍ଷ ଡିସେମ୍ବର ବେଳକୁ ଔରଙ୍ଗଜେବ ଆଗ୍ରା ଦେଇ ଯାଉଥିଲେ। ମା'ଙ୍କ ସମାଧି ନିକଟରେ ମା'ଙ୍କ ପାଖରୁ ଆର୍ଶିବାଦ ଆଣିବାପାଇଁ ଗଲେ। ଦେଖିଲେ ତାଜମହଲକୁ ଯମୁନାନଦୀର ଧାର ଖାଇ ଖାଇ ଯାଉଛି। ସାଙ୍ଗେ ସାଙ୍ଗେ ସତର୍କ

କରାଇଲେ ଶାହାଜାହାଁଙ୍କୁ । ତତ୍‌କ୍ଷଣାତ୍ ଏହାର ମରାମତି ହୋଇ ତାଜମହଲ ଓ ମହତାବ ବାଗ୍‌ର ସୌନ୍ଦର୍ଯ୍ୟ କ୍ଷୁନ୍ନ ହୋଇପାରିଲା ନାହିଁ । ୧୬୫୩ରେ ଦାରା ସୁଖୋଙ୍କୁ କାନ୍ଦାହାର ଆକ୍ରମଣ କରିବାପାଇଁ ଆଦେଶ ଦେଲେ ତୃତୀୟଥର ପାଇଁ ।

୧୬୫୪ରେ ଏକ ସ୍ୱତନ୍ତ୍ର ଉତ୍ସବରେ ଶାହାଜାହାଁ ୬୫ତମ ଜନ୍ମଦିବସରେ ଦାରାଙ୍କୁ ଉତ୍ତରାଧିକାରୀ ଭାବରେ ଘୋଷଣା କଲେ ଓ ତାଙ୍କୁ ରାଜସିଂହାସନ ପାଖରେ ବସିବାକୁ ଅନୁମତି ଦେଲେ । ଏ ଘଟଣା ଔରଙ୍ଗଜେବଙ୍କୁ ଜଣା ନଥିଲେ । ସେ ଦାକ୍ଷିଣାତ୍ୟର ଗଭର୍ଣ୍ଣର ଥିଲେ । ସେତେବେଳକୁ ଔରଙ୍ଗଜେବ ଓ ଶାହାଜାହାଁଙ୍କ ସଂପର୍କ ଫିକା ପଡ଼ିଆସିଲାଣି । ଦାକ୍ଷିଣାତ୍ୟ ଆସିବାବେଳେ ଶାହାଜାହାଁ ଔରଙ୍ଗଜେବଙ୍କ ପ୍ରତି କୌଣସି ସ୍ନେହ ସୌନ୍ଦର୍ଯ୍ୟ ଦେଖାଇ ନ ଥିଲେ । ଉପରନ୍ତୁ ଦାକ୍ଷିଣାତ୍ୟରେ ଥାଇଁ ସେଠାକାର ଶାସନ ଚଳେଇବାପାଇଁ ଅଧିକ ପଇସା ମାଗିଲେ । ଶାହାଜାହାଁ ରାଜି ହେଲେ ନାହିଁ । ବରଂ ଅଧିକ ରାଜସ୍ୱ ଆଦାୟ କରିବାକୁ କହିଲେ । ଆହୁରି ପୁଣି ଶାହାଜାହାଁଙ୍କ ଅନୁରୋଧ ସତ୍ତ୍ୱେ ଔରଙ୍ଗଜେବ ତାଙ୍କ ପାଖକୁ ଦାକ୍ଷିଣାତ୍ୟର ସ୍ୱାଦିଷ୍ଟ ଆମ୍ବ ପଠାଇଲେ ନାହିଁ । ଔରଙ୍ଗଜେବ ସବୁକୁ ଅନୁଧ୍ୟାନ କରି ରାଗିଯାଇଁ ଗୋଲକୋଣ୍ଡା ଆକ୍ରମଣ କରିବାକୁ ମନସ୍ଥ କଲେ । ଗୋଲକୋଣ୍ଡା ମୋଗଲ ସାମ୍ରାଜ୍ୟର ବିନା ଅନୁମତିରେ କ୍ରିଷ୍ଣା ଓ କାବେରୀ ମଝିରେ ଏକ ଛୋଟ ରାଜ୍ୟ ଅଧିକାର କରିଥିଲା । ଏହା ବ୍ୟତିତ ଗୋଲକୋଣ୍ଡା ନିଜେ ମଧ ମୋଗଲମାନଙ୍କ ବିରୁଦ୍ଧରେ । ଗୋଲକୋଣ୍ଡାରେ ସୁନା ଓ ମୁକ୍ତାର ଖଣି ମହଜୁଦ ଅଛି । ସେଥିପାଇଁ ୧୬୩୬ରେ ଗୋଲକୋଣ୍ଡା ଆକ୍ରମଣ ପାଇଁ ଯୋଜନା କଲେ ।

୧୬୫୬ରେ ଔରଙ୍ଗଜେବ ତାଙ୍କ ପୁଅ ମହମ୍ମଦ ସୁଲେମାନଙ୍କୁ (ବୟସ ୧୬ ବର୍ଷ) ଗୋଲକୋଣ୍ଡା ଅଭିଯାନ ପାଇଁ ଅଳ୍ପସଂଖ୍ୟକ ସୈନ୍ୟ ଦେଇ ପଠାଇଲେ । ନିଜେ ମଧ ବହୁତ ବଡ଼ ସେନାବାହିନୀ ଧରି ଗୋଲକୋଣ୍ଡା ଅଭିମୁଖେ ବାହାରିଲେ । ପୁଅଙ୍କୁ ଆଦେଶ ଦେଇଥିଲେ କି ଗୋଲକୋଣ୍ଡା ସୁଲତାନଙ୍କୁ ମୃତ ବା ଜୀବିତ ତାଙ୍କ ସମ୍ମୁଖରେ ହାଜର କରିବେ । ଏ ଘଟଣାରେ ଭୟଭୀତ ହୋଇ ସୁଲତାନ ହାଇଦ୍ରାବାଦ ପଳେଇଲେ । ସେଠୁ ଦାରା ସୁଖୋଙ୍କପାଖକୁ ମଧ ଏପରି ଆକ୍ରମଣର ଖବର ପଠାଇଲେ । ଅନେକ ଭେଟି ମଧ ଔରଙ୍ଗଜେବଙ୍କ ପାଖକୁ ପଠାଇଲେ । ଏପରିକି ଦୟାର ପ୍ରାର୍ଥୀ ହୋଇ ତାଙ୍କ ମା'ଙ୍କୁ ମଧ ଔରଙ୍ଗଜେବଙ୍କ ପାଖକୁ ପଠାଇଲେ ।

ଗୋଲକୋଣ୍ଡାର ବିପୁଳ ସଂପତ୍ତି ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ବିଷୟ ଲେଖି ଶାହାଜାହାଁଙ୍କ ପାଖକୁ ଚିଠି ଲେଖିଲେ । ଏଣେ ଦାରା ଗୋଲକୋଣ୍ଡା ସହ ସନ୍ଧି

କରିବାକୁ ଶାହାଜାହାଁଙ୍କୁ ଅନୁରୋଧ କଲେ। ଶାହାଜାହାଁ ଯୁଦ୍ଧପାଇଁ ବା ସନ୍ଧି ପାଇଁ କେଉଁଥିରେ ରାଜି ହେଲେ ନାହିଁ ବା ଗୋଲକୋଣ୍ଡାକୁ ମୋଗଲ ସାମ୍ରାଜ୍ୟ ସହ ମିଶାଇବାର ଆଗ୍ରହ ଦେଖାଇଲେ ନାହିଁ। ବରଂ ଗୋଲକୋଣ୍ଡାକୁ କ୍ଷତିପୂରଣ ଦେଇ ବାହାରି ଆସିବାପାଇଁ ଔରଙ୍ଗଜେବଙ୍କୁ ଆଦେଶ ଦେଲେ। ଗୋଲକୋଣ୍ଡାର କୌଣସି ମୂଲ୍ୟବାନ ଭେଟି ଗ୍ରହଣ କରିବାକୁ ରାଜି ହେଲେ ନାହିଁ। ଔରଙ୍ଗଜେବଙ୍କର ଯୁଦ୍ଧରୁ ଓହରି ଆସିବା ଛଡ଼ା ଅନ୍ୟ ଉପାୟ ନଥିଲା। କିନ୍ତୁ ସୁଲତାନଙ୍କୁ ବାଧ୍ୟ କଲେ କି ତାଙ୍କ ଝିଅଙ୍କୁ ପୁତ୍ର ସୁଲେମାନ ସହ ବିବାହ କରାଇବେ ଏବଂ ଭବିଷ୍ୟତରେ ଜାମାତା ସୁଲେମାନ ହେବେ ଗୋଲକୋଣ୍ଡାର ଭାବି ଉତ୍ତରାଧିକାରୀ ସୁଲତାନଙ୍କ ପରେ।

ଅଶାନ୍ତ ମନ ତାଙ୍କର ଶାନ୍ତ ହେଲାନାହିଁ। ନଜର ପକାଇଲେ ବିଜାପୁର ଉପରେ। ୧୬୩୬ ବେଳକୁ ବିଜାପୁର ଏକ ଧନୀ ପ୍ରଦେଶ ରୂପେ ଗଣାହୋଇ ସାରିଥିଲା। ଆଉ ୧୬୫୬ରେ ବିଜାପୁର ଶାସକଙ୍କର ମୃତ୍ୟୁ ହେଲା। ମୃତ୍ୟୁ ଖବରରେ ଆନନ୍ଦିତ ହୋଇ ସେ ବିଜାପୁର ଆକ୍ରମଣ କଲେ। ବିଜାପୁର ଆକ୍ରମଣକୁ ଶାହାଜାହାଁ ମାନିନେଲେ। ଠିକ୍ ସେଇ ସମୟକୁ ଜଣେ ପର୍ଶିୟାନ ଧନୀ ମୋଗଲ ଦରବାରରେ ହଠାତ୍ ଦେଖାଦେଲେ। ନାମ ଥିଲା ମିର ଜୁମଲା। ସେ ଗୋଲକୋଣ୍ଡାର ଭିଜିୟର ଥିଲେ। ସେ ଶାହାଜାହାଁଙ୍କୁ ଗୋଲକୋଣ୍ଡା ଓ ବିଜାପୁରରୁ ଯାହାସବୁ ମଣି, ମୁକ୍ତା, ତୋପାଜ, ନୀଳା ଇତ୍ୟାଦି ଅନେକ ମୂଲ୍ୟବାନ ପଥର ଉପହାର ଦେଲେ। ବୋଧହୁଏ ତା' ଭିତରେ କୋହି-ନୁ-ର ଥିଲା। ଏସବୁ ଦେଖି ମିର ଜୁମଲାଙ୍କୁ ଉଚ୍ଚ ପଦବୀରେ ରଖାଇଲେ। ଆଉ ଔରଙ୍ଗଜେବଙ୍କୁ ବିଜାପୁର ଆକ୍ରମଣ ପାଇ ଦରବାରୀ ଆଦେଶ ଦେଲେ।

୧୬୫୭ର ଆରମ୍ଭରେ ମୀର ଜୁମଲାଙ୍କୁ ସାଙ୍ଗରେନେଇ ଔରଙ୍ଗଜେବ ବିଜାପୁର ଅଭିମୁଖେ ଅଭିଯାନ୍ ଆରମ୍ଭ କଲେ। ପ୍ରଥମରୁ ବିଜାପୁରର ସବୁ ଅଫିସରଙ୍କୁ ଟ.୨୯୯୯ ଲେଖାଏଁ ଘୁଷ ଦେଲେ। ପ୍ରାୟ ୨୦୦ ଅଫିସରଙ୍କୁ ଏପରି ହାତପଇଠ କଲେ। ପ୍ରତ୍ୟେକ ଅଫିସର ପ୍ରାୟ ୧୦୦ ଜଣ ଲେଖାଏଁ ସୈନିକଙ୍କୁ ଔରଙ୍ଗଜେବଙ୍କ ପକ୍ଷ ନେବାପାଇଁ ପ୍ରବର୍ତ୍ତାଇଲେ। ତାଙ୍କ ବାପାଙ୍କ ଭଳିଜଣେ ବଡ଼ଯୋଦ୍ଧା। ୧୪ ବର୍ଷ ବୟସରେ ସେ ଗୋଟିଏ ରାଗୀ ହାତୀକୁ ବର୍ଚ୍ଛାମାରି କବଳିତ କରିପାରିଥିଲେ। ସେଥିପାଇଁ ତାଙ୍କର ଯୋଜନାମୂଳକ ଅଭିଯାନକୁ ପ୍ରଶ୍ନ କରିବାର ନୁହେଁ। ହେଲେ ବି ଆଗକୁ ବର୍ଷାଦିନ। ଏଣେ ଦାରାର ପ୍ରଭାବ ମଧ୍ୟ ବିଜାପୁର ଉପରେ ଥିଲା। ଏକଥା

ସବୁ ଭାବି ଶାହାଜାହାଁ ଔରଙ୍ଗଜେବଙ୍କୁ ବିଜାପୁର ସହ ଚୁକ୍ତିନାମା କରିବାକୁ ଉପଦେଶ ଦେଲେ। ସର୍ତ୍ତ ଥିଲା ବିଜାପୁର କେତେକ ଦୁର୍ଗ ଓ ଅନେକ ଧନରତ୍ନ ଦେଇ ନିଜର ସ୍ୱାଧୀନତା ରକ୍ଷା କରିବ। ଏଥର ମଧ୍ୟ ଔରଙ୍ଗଜେବ ବିରକ୍ତିର ସହ ରାଜିହେଲେ।

ଏହି ସମୟକୁ ଶାହାଜାହାଁ ମୂତ୍ରାଶୟରେ କଷ୍ଟ ଯୋଗୁଁ ବହୁତ ବେମାର ପଡ଼ିଲେ। ତାଙ୍କ ତିନିପୁଅ ହୁଏତ ଏ ସମୟକୁ ଅପେକ୍ଷା କରିଥିଲେ। ମୋଗଲ ସାମ୍ରାଜ୍ୟର ସ୍ତ୍ରୀ ଲୋକମାନେ ପରଦା ଆଢୁଆଳରେ ଥାଇଁ ମଧ୍ୟ ମୋଗଲ ସାମ୍ରାଜ୍ୟର ସମସ୍ୟାର ସମାଧାନ କରିବାରେ ତାଙ୍କ ହାତ ଥିଲା। ସେମାନଙ୍କ ଉପଦେଶର ମହତ୍ତ୍ୱ ଥିଲା। ବାବରଙ୍କ ଜେଜେମା ତାଙ୍କ ଶାସନ ଆରମ୍ଭରେ ବାବରଙ୍କୁ ଉପଦେଶ ଦେଇଥିଲେ। ହାମିଦା ଜାହାଙ୍ଗୀର ଓ ଆକବରଙ୍କ ସମ୍ପର୍କ ତିକ୍ତ ହେବାକୁ ଦେଇ ନଥିଲେ। ନୂର ମଧ୍ୟ ଜାହାଙ୍ଗୀରଙ୍କ ଉପରେ ବେଶ୍ କ୍ଷମତା ଜମାଇ ପାରିଥିଲେ। ମମତାଜଙ୍କ ଜେଜେମାଙ୍କର ମଧ୍ୟ ବେଶ୍ କର୍ତ୍ତୃତ୍ୱ ଥିଲା। ଆଉ ମମତାଜଙ୍କ ମା'ଙ୍କର ମଧ୍ୟ ପାରିବାରିକ ସମସ୍ୟାର ସମାଧାନ ଦିଗରେ ଦଖଲ ଥିଲା। ଆଜି ଯଦି ମମତାଜ ବଞ୍ଚିଥାନ୍ତେ ହୁଏତ ପିଲାମାନଙ୍କର ଏ କଳହର ସମାଧାନ କରିପାରିଥାନ୍ତେ।

ଜାହାନ୍ନାରାଙ୍କର ଦକ୍ଷତା ମଧ୍ୟ କିଛି କମ୍ ନଥିଲା। କିନ୍ତୁ ଔରଙ୍ଗଜେବଙ୍କର ସେ ଭଉଣୀ ଆଉ କେତେବା ଦାବି କରିପାରିଥାନ୍ତେ। ୧୬୫୭ ଅକ୍ଟୋବରରେ ଶାହାଜାହାଁ ଦିଲ୍ଲୀରୁ ଆଗ୍ରା ଚଲେ ଦେହ ଖରାପ ଯୋଗୁଁ। ସେତେବେଳକୁ ଦାରାଙ୍କୁ ଅନେକ କ୍ଷମତା ଦେଇସାରିଥିଲେ। ଅନ୍ୟ ପୁଅମାନେ ଶାହାଜାହାଁଙ୍କର ମୃତ୍ୟୁ ଆଶା କରୁଥିଲେ। କିନ୍ତୁ ଦାରାହିଁ ଏକମାତ୍ର ପୁତ୍ର ଯେ କି ଶାହାଜାହାଁଙ୍କ ଆରୋଗ୍ୟ ଆଶା କରୁଥିଲେ। ଶାହାଜାହାଁଙ୍କ ଦେହ ସଂକ୍ରାନ୍ତରେ କୌଣସି ଅଫିସିଆଲ ରିପୋର୍ଟ ମିଳିଲା ନାହିଁ। ଏପରିକି ଭଉଣୀମାନଙ୍କଠାରୁ ମଧ୍ୟ ନୁହେଁ। ପିଲାମାନେ ଭାବିଲେ ସମ୍ରାଟଙ୍କର ମୃତ୍ୟୁ ହୋଇଯାଇଛି। ରାଜଗାଦି ପାଇଁ ସମସ୍ତେ ଉତ୍କଣ୍ଠିତ। ଔରଙ୍ଗଜେବ ସେତେବେଳକୁ ଦାକ୍ଷିଣାତ୍ୟରେ। ସେ ଆଗ୍ରାରୁ କୌଣସି ଖବର ବା ଚିଠିତାଙ୍କ ପାଖରେ ପେଶ୍ ନ କରିବାପାଇଁ ଆଦେଶଦେଲେ। ଏପରିକି ସମ୍ବାଦଦାତାବା ପତ୍ରବାହକର ମୁଣ୍ଡକାଟ ହେବାର ଆଦେଶ ମଧ୍ୟ ଦେଲେ। ସାହା ସୁଜା ଖୋଲା ଖୋଲି ଭାବରେ ନିଜକୁ ସମ୍ରାଟ ବୋଲି ଘୋଷଣା କରି ଖୁତୁୱା ପଢ଼ାଇଲେ। ନିଜ ନାଁରେ ମୁଦ୍ରା ପ୍ରଚଳନ କଲେ। ଆଉ ଶାହାଜାହାଙ୍କ ଅର୍ଥମନ୍ତ୍ରୀଙ୍କୁ ହତ୍ୟା କରି ରାଜକୋଷ ହାତକୁ ନେବାପାଇଁ ଚେଷ୍ଟାକଲେ। ତେଣେ ମୁରାଦ ବକ୍ସ ମଧ୍ୟ ସୁରଟରେ ଥାଇଁ

ନିଜକୁ ସମ୍ରାଟ ବୋଲି ଘୋଷଣା କଲେ। ଔରଙ୍ଗଜେବ ମଧ୍ୟ ପଦକ୍ଷେପ ନେବାକୁ ଆଗ୍ରହୀ ଥିଲେ। କିନ୍ତୁ ତାଙ୍କ ପ୍ରିୟ ସ୍ତ୍ରୀ ପିଲାଜନ୍ମ ବେଳେ ମରିଗଲେ। ତାଙ୍କ ପାଇଁ ଏକ ସମାଧିପୀଠ ତିଆରି କରିବାର ଆଗ୍ରହ ଥିଲା ଅନେକ ବେଶୀ। ତାଜମହଲ ସହିତ ପ୍ରତିଦ୍ୱନ୍ଦୀତା ତ କରିପାରି ନଥାନ୍ତେ କିନ୍ତୁ ସମାଧି ତିଆରି କରିବାରେ ଆଗ୍ରହୀ। ଦାରା ଔରଙ୍ଗଜେବଙ୍କୁ ବିଦ୍ରୂପ କରନ୍ତି ଏକ ପ୍ରାର୍ଥନାରତ ଧର୍ମାନ୍ଧ ବ୍ୟକ୍ତି ଭାବରେ। କିନ୍ତୁ ଔରଙ୍ଗଜେବ ହିଁ ଏକମାତ୍ର ଶତ୍ରୁ ଯେ କି ତାଙ୍କଠାରୁ ରାଜଗାଦି ଛଡ଼େଇ ନେବାର ଭୟ ତାଙ୍କ ମନରେ ଥିଲା। ସେଥିପାଇଁ ଦାରା ମୋଗଲ କମାଣ୍ଡରମାନଙ୍କୁ ଦିଲ୍ଲୀ ଡକାଇଲେ। ଯାହାଫଳରେ କି ଔରଙ୍ଗଜେବଙ୍କ ଅନୁପସ୍ଥିତିରେ ସେ ନିର୍ଣ୍ଣୟ କରିପାରିବେ। ମିର ଜୁମଲା ମଧ୍ୟ ତାଙ୍କ ଶତ୍ରୁ। ଦାରାଙ୍କ ଉଦ୍ଦେଶ୍ୟ ଜାଣି ଔରଙ୍ଗଜେବ ମିରା ଜୁମଲାଙ୍କୁ ଏକ ମିଥ୍ୟା ଅଭିଯୋଗରେ ବନ୍ଦୀକଲେ। ଏଣେ ମୁରାଦ ବକ୍ସଙ୍କୁ ଚିଠି ଲେଖି ସାହାଯ୍ୟ ମାଗିଲେ। କହିଲେ ସାମ୍ରାଜ୍ୟ ଜୟକରି ମୁରାଦଙ୍କୁ ରାଜ୍ୟ ଦାନ କରି ସେ ବାନପ୍ରସ୍ଥରେ ଚାଲିଯିବେ। ଆହୁରି ଲେଖିଲେ କି ଦାରାଙ୍କ ସର୍ବଧର୍ମର ଉପଚାର ପାଇଁ ସେ ସମ୍ରାଟ ହେବାପାଇଁ ଯୋଗ୍ୟ ନୁହନ୍ତି। ପୁଣି ଲେଖିଲେ କି ଦୁଇ ତୃତୀୟାଂଶ ରାଜ୍ୟ ନିଜେ ରଖିବେ ଓ ଆଫଗାନିସ୍ଥାନ, କାଶ୍ମୀର, ପଞ୍ଜାବ ଓ ସିନ୍ଧ ମୁରାଦଙ୍କୁ ଦେବେ। ଏଥିପୂର୍ବରୁ ମଧ୍ୟ ସୁଜା, ମୁରାଦ ଓ ଔରଙ୍ଗଜେବଙ୍କ ମଧ୍ୟରୁ ଏପରି ଏକ ଚୁକ୍ତିନାମା ହୋଇଥିଲା। ସେଥିରେ ମଧ୍ୟ ଦାରାଙ୍କର ଭାଗ ସାମ୍ରାଜ୍ୟରେ ନ ଥିଲା। ଶାହାଜାହାଁ ଦେହ ବିଷୟରେ କେହି ବି ଚିନ୍ତା କରୁନଥିଲେ। ଦାରାଏ ସବୁର ରହସ୍ୟ ଜାଣି ସାହା ସୁଜାଙ୍କ ଆକ୍ରମଣ ରୋକିବା ଉଦ୍ଦେଶ୍ୟରେ ରାଜକୀୟ ସେନାବାହିନୀ ପୁତ୍ର ସୁଲେମାନ ସୁଖୋଙ୍କ ନେତୃତ୍ୱରେ ପଠାଇଲେ। ଦାରାଙ୍କ ପୁତ୍ର ସୈନ୍ୟବାହିନୀ ଧରି ୧୬୫୮ରେ ବନାରସ ଗଲେ। ଯୁଦ୍ଧରେ ସାହା ସୁଜାଙ୍କୁ ହରାଇଲେ ମଧ୍ୟ।

ରାଜ୍ୟର ଏ ପ୍ରକାର କନ୍ଦୋଳ ଜାଣି ଶାହାଜାହାଁ ଭୟ ପାଇଲେ। କିନ୍ତୁ ଏକ ଶାନ୍ତିପୂର୍ଣ୍ଣ ବାତାବରଣ ଭିତରେ ଚାହୁଁଥିଲେ କି ଭାଇମାନଙ୍କ ଭିତରେ ସମାଧାନ କରିବାକୁ ଚାହୁଁଥିଲେ। ଏଣେ ଔରଙ୍ଗଜେବ ଓ ମୁରାଦ ମଧ୍ୟ ସେନାବାହିନୀ ନେଇ ଆଗ୍ରାକୁ ଆସୁଥିବା ଶୁଣି ତାଙ୍କୁ ପ୍ରତିରୋଧ କରିବାପାଇଁ ଦାରା ଏକ ସେନାବାହିନୀ ପଠାଇଲେ। ସୁଲେମାନଙ୍କୁ ମଧ୍ୟ ଡକାଇଲେ। କିନ୍ତୁ ସେତେବେଳକୁ ସୁଲେମାନ ଆଗ୍ରାଠାରୁ ବହୁତ ଦୂରରେ। ତା ପରେ ତିନିଜଣ ଯାକ ପୁତ୍ର ବାପାଙ୍କ ପାଖକୁ ସୁନ୍ଦର

ସୁନ୍ଦର ଚିଠି ଲେଖିବାରେ ଲାଗିଲେ। ଜାହାନ୍ଆରା ଔରଙ୍ଗଜେବଙ୍କୁ ଚିଠି ଲେଖି ଜଣାଇଲେ କି ଶାହାଜାହାଁ ସୁସ୍ଥ ହୋଇ ରାଜକାର୍ଯ୍ୟ ପରିଚାଳନା କରୁଛନ୍ତି। ଏପରି ଅବସ୍ଥାରେ ପୁତ୍ରମାନଙ୍କର ଏ ରଣସଜ୍ଜା ଯୋଜନା ସମ୍ରାଟଙ୍କ ବିରୁଦ୍ଧରେ ହେବ। ଉତ୍ତରରେ ଔରଙ୍ଗଜେବ ଲେଖିଲେ, ''ମୁଁ ବାପାଙ୍କୁ ବହୁତ ଭଲପାଏ। ରଣସଜ୍ଜା ସାମ୍ରାଜ୍ୟ ବିରୁଦ୍ଧରେ ନୁହେଁ। କେବଳ ମୁଁ ନିଜକୁ ନିଜେ ରକ୍ଷା କରିବାପାଇଁ ଏ ଯୁଦ୍ଧଯାତ୍ରା କରୁଛି।'' ଦାରା ଔରଙ୍ଗଜେବଙ୍କୁ ମୁହାଁମୁହିଁ ହେବାପାଇଁ ଶାହାଜାହାଁଙ୍କଠୁ ଅନୁମତି ନେଲେ। ବାଧ ହୋଇ ଶାହାଜାହାଁ ଅନୁମତି ଦେଲେ। ୧୮ ମେ ୧୬୫୮ରେ ଦାରା ଆଗ୍ରା ଛାଡ଼ି ଦକ୍ଷିଣ ଦିଗରେ ଚମ୍ବଲନଦୀ ପାଖରେ ମୁରାଦ ଓ ଔରଙ୍ଗଜେବଙ୍କ ସେନାବାହିନୀକୁ ବାଧା ଦେବାପାଇଁ ବାହାରିଗଲେ। ଆଶା କରିଥିଲେ ପୂର୍ବଦିଗରୁ ସୁଲେମାନ ସୈନ୍ୟସାମନ୍ତ ନେଇଯୋଗ ଦେବାକୁ ଆସିବେ। କିନ୍ତୁ ସୁଲେମାନ ଆଗ୍ରାଠାରୁ ବହୁତ ଦୂରରେ। ୧୬୭୯ରେ ଔରଙ୍ଗଜେବ ଗୋଟିଏ ମିଲିଟାରୀ ଟ୍ରୁପ ଧରି (ରାଜପୁତ୍ରମାନଙ୍କୁ ଦମନ କରିବାପାଇଁ) ଦିଲ୍ଲୀରୁ ବାହାରକୁ ବାହାରିଗଲେ। ୧୬୮୧ରେ ଜାହାନ୍ଆରା (ଭଉଣୀ) ମରିଗଲେ। ଔରଙ୍ଗଜେବ ତାଙ୍କୁ 'ସାହିବାତ୍-ଉଜ-ଜାମାନୀ' ଅର୍ଥାତ ଯୁଗର ମିଷ୍ଟ୍ରେସ୍ ବୋଲି ଆଖ୍ୟା ଦେଇ ଏକ ମରଣୋତ୍ତର ସମ୍ମାନରେ ସମ୍ମାନିତ କଲେ। ସୁଫି ସାଧୁମାନଙ୍କ କବର ମେଳରେ ଏକ ଛୋଟ କବରରେ ତାଙ୍କୁ ଦଫନ କରାଗଲା। ମରହଟ୍ଟାମାନେ ଅକବର (ଔରଙ୍ଗଜେବଙ୍କ ପୁତ୍ର) ସମ୍ପର୍କ ରଖିଲେ। ଦୁଇଟି ବଡ଼ ମୁସଲମାନ ପ୍ରଦେଶ (ବିଜାପୁର ଓ ଗୋଲକୋଣ୍ଡା) ମୋଗଲ ସାମ୍ରାଜ୍ୟର ଶତ୍ରୁ। ସେଥିଲାଗି ୧୬୮୫ରେ ବିଜାପୁର ଆକ୍ରମଣ କଲେ ଔରଙ୍ଗଜେବ। ଆଶାଥିଲା ସହଜରେ ପୁତ୍ର ଆକବରଙ୍କୁ କବଜା କରିପାରିବେ। ବିଜାପୁରକୁ ଅଧିକାର କରିବାପାଇଁ ୧୫ ମାସ ଲାଗିଗଲା। ତା'ପରେ ଗୋଲକୋଣ୍ଡା ଆକ୍ରମଣ କଲେ।

ଗୋଲକୋଣ୍ଡାର ରାଜଧାନୀ ହାଇଦ୍ରାବାଦରେ ପ୍ରାୟ ୨୦,୦୦୦ ଦେହଜିବୀ ରହିଥିଲେ। ଏଇମାନଙ୍କ ଭିତରୁ ଅନେକ ସପ୍ତାହର ଶୁକ୍ରବାର ଦିନ ଶାସକଙ୍କ ଆଗରେ ଗୀତନୃତ୍ୟ ପ୍ରଦର୍ଶନ କରିବାର ବ୍ୟବସ୍ଥା ଥିଲା। ଏହି ଆମୋଦ ଆଡ୍ଡାରେ ହାଇଦ୍ରାବାଦର ଶାସକ ଉପଭୋଗ କରୁଥିଲେ ସେମାନଙ୍କର ପ୍ରଦର୍ଶନୀ। ଶୁଣିଲେ ମୋଗଲମାନେ ଆକ୍ରମଣ କରିଲେଣି। ଭୟରେ ସେ ଏପ୍ରକାର ଆମୋଦ ଆଡ୍ଡାରୁ ଖସିଯାଇ ଗୋଲକୋଣ୍ଡା ପଳାଇଲେ। ଏପରିକି ନୋବେଲମାନଙ୍କୁ ନ ଜଣାଇ, ନିଜର

ଧନସଂପତ୍ତିର ଲୋଭ ନ ରଖି, ଆଉ ପରିବାରର ଲୋକଙ୍କୁକାହାକୁ ନ ନେଇ ଗୋଲକୋଣ୍ଡାର ଯାତ୍ରୀହେଲେ। ଗୋଲକୋଣ୍ଡାରେ ପହଞ୍ଚି ସେ ମୋଗଲମାନଙ୍କୁ ପ୍ରତି ଆକ୍ରମଣ କଲେ। ମୋଗଲଙ୍କ ଚତୁରତା ପାଇଁ ମୋଗଲମାନେ ଦୁର୍ଗ ଅଧିକାର କରିନେଲେ। ସେଇ ସମୟକୁ ମୋଗଲ ସେନା ପ୍ଲେଗ ରୋଗରେ ଆକ୍ରାନ୍ତ ହେଲେ ସତ କିନ୍ତୁ ବିଜାପୁର ଓ ଗୋଲକୋଣ୍ଡାର ଶାସକମାନେ ହେଲେ ବନ୍ଦୀ। କିନ୍ତୁ ଆକବର ସେଠି ନଥିଲେ। ସେ ପର୍ଶିୟା ଖସି ପଳାଇଥିଲେ। ମାନୁସିଙ୍କ ମତରେ ଏ ପଳାୟନ ପଛରେ କେତେକ ଫ୍ରାନ୍ସ ବ୍ୟବସାୟୀଙ୍କ ହାତଥିଲା। ପୁଅକୁ ନ ପାଇ ଔରଙ୍ଗଜେବ ଦୃଢ଼ ପ୍ରତିଜ୍ଞ ଥିଲେ କି ମରହଟ୍ଟାମାନଙ୍କୁ ନଷ୍ଟ କରିବେ। ଏକ ଅଚାନକ ଆକ୍ରମଣ କଲେ। ଧରାହେଲେ ଶମ୍ଭୁଜୀ ଓ ତାଙ୍କ ମନ୍ତ୍ରୀ। ଏ ଦୁଇଜଣ ମନ୍ତ୍ରୀଙ୍କ ବାସଭବନରେ ଏକ ନିଭୃତ କନ୍ଦରରେ ଲୁଚିଥିଲେ। ସୈନ୍ୟମାନେ ଶମ୍ଭୁଜୀ ଓ ତାଙ୍କ ମନ୍ତ୍ରୀଙ୍କୁ ରାସ୍ତାରେ ଓଟ ଉପରେ ବସାଇ, ଟୋପି ପିନ୍ଧାଇ ଔରଙ୍ଗଜେବଙ୍କ ନିକଟରେ ହାଜର କରାଇଲେ। ନାନା ଅତ୍ୟାଚାର ସତ୍ତ୍ୱେ ଶମ୍ଭୁଜୀ ତାଙ୍କର ଗୁପ୍ତଧନର ସନ୍ଧାନ ଦେଲେନାହିଁ। ତାଙ୍କୁ ମୁସଲିମ ଧର୍ମ ଗ୍ରହଣ କରିବାକୁ ବାଧ୍ୟ କରାହେଲା। ଶେଷରେ ମୃତ୍ୟୁଦଣ୍ଡର ଆଦେଶ ହେଲା।

ତିଳ ତିଳ କରି ହତ୍ୟା କରାଗଲା ଶମ୍ଭୁଜୀଙ୍କୁ। ପ୍ରଥମେ ଜିଭ କାଟିଦେଲେ। ତା'ପରେ ଅନ୍ଧ କରିଦେଲେ। ପୁଣି ଦୁଇସପ୍ତାହ ପରେ ଦେହର ଅନ୍ୟ ଅଙ୍ଗସବୁ କାଟି କୁକୁରମାନଙ୍କୁ ଦେଇଦେଲେ। ଖପୁରି ଭିତରେ କୁଟା ପୁରାଇ ଦାକ୍ଷିଣାତ୍ୟର ରାସ୍ତାରେ ଘୁରାଇଲେ। ଜଣାଇଲେ କି ବିଦ୍ରୋହୀଙ୍କ ଦଶା ଏପରି ହୁଏ। କିନ୍ତୁ ଆଶ୍ଚର୍ଯ୍ୟର କଥା ଜନସାଧାରଣ ଏବଂ ଅନ୍ୟ ବିଦ୍ରୋହୀଙ୍କର ଶମ୍ଭୁଜୀଙ୍କ ପ୍ରତି ଏପରି ବ୍ୟବହାରରେ ଔରଙ୍ଗଜେବଙ୍କ ପ୍ରତି ନିଷ୍ଠା ରହିବା ପରିବର୍ତ୍ତେ ମରହଟ୍ଟାମାନଙ୍କ ପ୍ରତି ନିଷ୍ଠା ରହିଲା। ଦାକ୍ଷିଣାତ୍ୟ ଅବସ୍ଥା ଶାନ୍ତ କରିବା ଉଦ୍ଦେଶ୍ୟରେ ଔରଙ୍ଗଜେବ ସେଠାରେ କିଛିଦିନ ରହିଲେ। କିନ୍ତୁ ଗରିଲା ଯୁଦ୍ଧଫଳରେ ଔରଙ୍ଗଜେବଙ୍କ ୧୭୦,୦୦୦ ସୈନ୍ୟ ଆଉ ଅନେକ ଅନୁଚରମାନେ ବିପଦର ସମ୍ମୁଖୀନ ହେଲେ। ଯଦିଓ ମୋଗଲ ସାମ୍ରାଜ୍ୟ କିଛି ପରିମାଣରେ ବୃଦ୍ଧି ପାଇଥିଲା। ଔରଙ୍ଗଜେବଙ୍କ ଦାକ୍ଷିଣାତ୍ୟ, ରାଜସ୍ଥାନ ଓ ଅନ୍ୟାନ୍ୟ ଜାଗାମାନଙ୍କରେ ହିନ୍ଦୁ ପ୍ରଜାଙ୍କ ପ୍ରତି ଆଚରଣ ମୋଗଲ ଶାସନର ନିୟମ କାନୁନ ବଦଳିଗଲା। ହିନ୍ଦୁ ମୁସଲମାନଙ୍କ ନିଜ ନିଜ ଭିତରେ ବୁଝାମଣା, ବିଶ୍ୱାସ ଓ ଆନ୍ତରିକତା ଉପରେ ନିର୍ଭର କଲା ନାହିଁ– ଯେଉଁଟା

ଆକବରଙ୍କ ସମୟରେ ଦେଖାଯାଇଥିଲା । ମୋଗଲମାନେ କେବଳ ଏକ ଶାସନଗୋଷ୍ଠୀ ହୋଇ ରହିଗଲେ । ୧୬ ବର୍ଷରରାକୁତି ପରେ ଔରଙ୍ଗଜେବ ଉତ୍ତରଦିଗକୁ ୧୭୦୫ରେ ଗତିକଲେ । ସେତେବେଳକୁ ତାଙ୍କ ଶରୀର ଅସୁସ୍ଥ ଓ ବୟସ ଅତିକ୍ରାନ୍ତ । ବମ୍ବେର ପୂର୍ବରେ ଥିବା ଅହମଦାନଗରରେ ପହଞ୍ଚିଲେ । ୨୧ ଫେବୃୟାରୀ ୧୭୦୭ରେ ସେହିଠାରେ ହିଁ ପ୍ରାଣତ୍ୟାଗ କଲେ । ଔରଙ୍ଗଜେବଙ୍କ ଆଶା ଅନୁସାରେ ଏ ଥିଲା ଶୁକ୍ରବାର– ମୁସଲମାନମାନଙ୍କ ପାଇଁ ପବିତ୍ର ଦିବସ । ଅହମଦାନଗରଠୁ ୨୦ ମାଇଲ ଦୂରରେ ଖୁଲଦାବାଦରେ ଅନେକ ମୁସଲମାନ ସାଧୁଙ୍କ ସମାଧି ପାଖରେ ତାଙ୍କୁ କବର ଦିଆଗଲା । ତାଙ୍କ ନିଜ ଇଚ୍ଛା ଅନୁସାରେ ଏକ ଷ୍ଟାଣ୍ଡଷ୍ଟୋନ କଭର ଥାଇ ଏବଂ ଆକାଶକୁ ମୁହଁ ମୁକ୍ତ ରଖି– ଏପରି ସରଳ ସମାଧି ତାଙ୍କ ପୂର୍ବପୁରୁଷ ବାବରଙ୍କ କାବୁଲରେ ଥିବା ସମାଧିପରି ଗଢ଼ାହେଲା । ତାଙ୍କ ବାପାମା'ଙ୍କ ବିରାଟ ସୌନ୍ଦର୍ଯ୍ୟଭରା କବରର ବିପରୀତ ଗଢ଼ଣ । ବିପରିତ ଆଭା । ଔରଙ୍ଗଜେବଙ୍କ ଶେଷ ଅନୁଶାସନରେ ସେ ଲେଖିଥିଲେ, ''ନିଜ ପୁଅମାନଙ୍କୁ ବିଶ୍ୱାସ କର ନାହିଁ । ସେମାନଙ୍କୁ ନିଜର ଆନ୍ତରିକତା ଦେଖାଅ ନାହିଁ । କାରଣ ଯଦି ସମ୍ରାଟ ଶାହାଜାହାନ ଦାରା ସୁଖୋଙ୍କୁ ଏତେ ଆନ୍ତରିକତା ଦେଖାଇ ନଥାନ୍ତେ, ତା'ହେଲେ ତାଙ୍କ ଜୀବନ ଏପରି ଦଶା ଭୋଗି ନ ଥାନ୍ତା । ଆଉ ଲେଖାଥିଲା 'ଏକ ରାଜାର ବାକ୍ୟ ଉତ୍ସାହହୀନ' ।

■



# ମରହଟ୍ଟା

ଔରଙ୍ଗଜେବ ୨୩ବର୍ଷ ସମ୍ରାଟ ରହିଥିଲେ – ୧୬୫୮ରୁ ୧୭୦୭ ପର୍ଯ୍ୟନ୍ତ। ୨୬ ବର୍ଷ କାଳ ଯୁଦ୍ଧକ୍ଷେତ୍ର, ଛାଉଣୀରେ କଷ୍ଟ ସ୍ୱୀକାର କରି ଜୀବନ କଟାଇଲେ। ୮୭ ବର୍ଷ ବୟସ ଅବନତ ବୟସରେ ପୁଣି ଉତ୍ତରଦିଗକୁ (ହୁଏତ ଦିଲ୍ଲୀ ଯିବା ଆଶାରେ) ଗତି କଲେ। ଅହମଦାନଗର ପର୍ଯ୍ୟନ୍ତ ଯାଇ, ସେହିଠାରେ ହିଁ ୧୭୦୭ରେ ଦେହ ତ୍ୟାଗ କଲେ।

ଅଧାରୁ ବେଶି ଜୀବନ କଟିଲା ଦାକ୍ଷିଣାତ୍ୟରେ। ସେଠାକାର ଗୋଲକୋଣ୍ଡା, ବିଜାପୁର, ସୁଲତାନମାନେ ଗଣ୍ଡଗୋଳ ସୃଷ୍ଟି କରୁଥିଲେ। ଆକବର ଓ ଶାହାଜାହାଁଙ୍କ ଅମଳରେ ମରହଟ୍ଟାମାନେ ମୋଗଲ ଅଫିସରଙ୍କ ଶାସନ କବଳରେ ଜୀବନ କାଟି ଦେଉଥିଲେ। ସେଥିପାଇଁ କୌଣସି ଗଣ୍ଡଗୋଳର ସୂତ୍ରପାତ ହେଉନଥିବାରୁ ସମ୍ରାଟଙ୍କୁ ଦାକ୍ଷିଣାତ୍ୟରେ ରହିବାକୁ ପଡୁ ନଥିଲା।

୧୬୮୧ ବେଳର କଥା। ଔରଙ୍ଗଜେବଙ୍କ ବିରୁଦ୍ଧରେ ରାଜପୁତ୍ର ଆକବର ଓ ମରହଟ୍ଟାମାନଙ୍କର ମିଳିତ ବିଦ୍ରୋହ ଆରମ୍ଭ ହୋଇ ୬ ବର୍ଷ ପର୍ଯ୍ୟନ୍ତ ଲାଗି ରହିଲା। ଶେଷରେ ରାଜପୁତ୍ର ଆକବର ପର୍ଶିୟାର ଆଶ୍ରୟ ନେଇ ପର୍ଶିୟା ପଳାଇଗଲେ। ୧୬୮୭ରେ ଗୋଲକୋଣ୍ଡା ଓ ବିଜାପୁର ମୋଗଲ ସାମ୍ରାଜ୍ୟ ହାତକୁ ଆସିଲା। ୧୬୮୯ରେ ଶମ୍ଭୁଜୀଙ୍କୁ ମଧ ଔରଙ୍ଗଜେବ ହାତକୁ ନେଇ ଆସିଲେ। ଫଳରେ ଔରଙ୍ଗଜେବଙ୍କ ସ୍ଥିତି ଦୃଢ଼ ହେଲା ସତ କିନ୍ତୁ ମରହଟ୍ଟାମାନେ ଏକ ପ୍ରତିରୋଧକ ଶକ୍ତି ହୋଇ ରହିଲେ।

ମରହଟ୍ଟାମାନେ ଏଇ ମାଟିର ସନ୍ତାନ। ଏ ଦେଶର ନଦୀ, ବଣ, ପର୍ବତ ଓ ପାହାଡ଼ିଆ ମାଟିରୁ ସେମାନଙ୍କର ଜନ୍ମ। ଏଠି ଧାନ ନାହିଁ ଗହମ ନାହିଁ। ଜଓ୍ୱାର, ବାଜରା, ରାଶି ଓ ମକା ଏହାର ମୁଖ୍ୟ ଫସଲ। ଏ ମାଟିର ସୈନିକ ପାହାଡ଼ ଉପରେ ଘୋଡ଼ା ଦଉଡ଼ାଇବା ଶିଖିଛି। ଏ ଜାଗାକୁ ନର୍କ ବୋଲି କେହି କେହି କହନ୍ତି। କିନ୍ତୁ ମରହଟ୍ଟାଙ୍କ ପାଇଁ ଏ ପୁଣ୍ୟଭୂମି। ଏ ଜାଗାର ମହତ୍ତ୍ୱ ଅଧିକ। କାରଣ ଏ ଜମି, ଏ ଜାଗା ମରହଟ୍ଟାମାନଙ୍କର ଶତ୍ରୁର ଶତ୍ରୁ। ମାଟି ଓ ଜଳବାୟୁରେ ଗଢ଼ା ଏ ଦେଶର

ସନ୍ତାନ ବହୁତ ଶକ୍ତ। ହୁଏନ୍‌ସାଂଙ୍କ ଭାଷାରେ ଲୋକମାନେ ରଗଡ଼ା, ଟାଣୁଆ, ସହ୍ୟଶକ୍ତିର ମୂର୍ତ୍ତି। ଆଫଗାନମାନଙ୍କ ଭଳି ଅଶାନ୍ତ ଓ ଚଳଚଞ୍ଚଳ ନୁହଁନ୍ତି। ଶତାବ୍ଦୀ ଧରି ନିଜକୁ ଜୀବନ ସଂଘର୍ଷ ଭିତରେ ଫେଣ୍ଟି ଫେଣ୍ଟି ଗୋଟାଏ ଛାଞ୍ଚରେ ପକାଇପାରିଛନ୍ତି। ଗର୍ବି, ଯୁଦ୍ଧଖୋର, ଅନୁଗ୍ରହ ପାଇବାରେ ଆନନ୍ଦ, ପ୍ରାଣବନ୍ତ, ଭୁଲ କରିଥିବା ଲୋକ ଉପରେ ପ୍ରତିଶୋଧ ନେବା, ସ୍ୱାର୍ଥ ତ୍ୟାଗୀ–ସବୁ ଗୁଣର ଅଧିକାରୀ ଏଇ ମରହଟ୍ଟାମାନେ। ଏସବୁ ସତ୍ତ୍ୱେ ସେମାନେ କୃଷକ। ସେମାନଙ୍କର ଇତିହାସ ଅଜ୍ଞାତ। ଦାକ୍ଷିଣାତ୍ୟରେ ରାଜନୈତିକ ଆସ୍ଥାନ ପାଇବା ପରେ ସେମାନେ ନିଜକୁ କ୍ଷତ୍ରିୟ ବୋଲି ବିଚାରିଲେ। ମେୱାରର ଶିଶୋଦିୟାଙ୍କଠାରୁ ନିଜକୁ ସ୍ୱତନ୍ତ୍ର ବୋଲି ବିଚାରକରି ନିଜକୁ କ୍ଷତ୍ରିୟ ରୂପରେ ସଜାଇଲେ। ନିଜର କୌଣସି ସ୍ୱତନ୍ତ୍ର ଗୋଷ୍ଠୀ ନ ଥାଇ ମଧ ମହାରାଷ୍ଟ୍ର ଜାତିକୁ ଏକ ବୋଲି ଗଢ଼ି ଯୁଦ୍ଧ ଓ ରାଜନୈତିକ ମୂଲ୍ୟବୋଧ ଉପରେ ପର୍ଯ୍ୟବେସିତ ହୋଇ ଏ ଜାତି ଗଢ଼ି ଉଠିଲା।

କାରଣ ଯାହା ହେଉନା କାହିଁକି ମଧ୍ୟଯୁଗୀୟ ମରହଟ୍ଟାମାନଙ୍କୁ ଯୋଦ୍ଧା ବୋଲି ଗଣାଯାଉଥିଲା। ସେମାନେ ହୁଏତ ପୁଲକେଶିନ ଓ ହର୍ଷଙ୍କ ବିରୁଦ୍ଧରେ ହୋଇଥିବା ଯୁଦ୍ଧରେ ଯୋଗ ଦେଉଥିଲେ। ୧୩ ଶହ ଶତାବ୍ଦୀରେ ଦାକ୍ଷିଣାତ୍ୟରେ ମୁସଲମାନମାନଙ୍କ ଆକ୍ରମଣ ପରେ ସେମାନେ ଯୋଦ୍ଧା ଭାବରେ ପରିଚିତ ହେଲେ। ପାଇଲେ ଚଳିବା ପାଇଁ ଦରମା ଓ ଲୁଣ୍ଠନ ପାଇଁ ସାହସ। ଧର୍ମ, ଜାତି, ଗୋଷ୍ଠୀ ଓ ପରିବାର ନିର୍ବିଶେଷରେ ଯେଉଁ ସଂପ୍ରଦାୟ ତାଙ୍କ ଯୁଦ୍ଧ ଓ ଲୁଣ୍ଠନ ପାଇଁ ଆହ୍ୱାନ ଦେଉଥିଲେ ସେମାନେ ସ୍ୱୀକାର କରୁଥିଲେ।

ତାଙ୍କର ସ୍ୱାତନ୍ତତା ଥିଲା ଗରିଲା ଯୁଦ୍ଧରେ। ରାଜପୁତ ଯୋଦ୍ଧା ତା ନିଜ ଗୋଷ୍ଠୀକୁ ଅପମାନିତ କରିବା ଭଳି କିଛି କାମ କରେ ନାହିଁ; କିନ୍ତୁ ମରହଟ୍ଟା ସୈନିକ ସମସ୍ୟାର ସମାଧାନର ଫଳାଫଳକୁ ଶେଷ ବିନ୍ଦୁରେ ପହଞ୍ଚାଇବାପାଇଁ ଯାହା କରଣୀୟ ତାହା କରେ। ଯେ କୌଣସି ସତ୍ କାରଣ ପାଇଁ ରାଜପୁତ ଯୋଦ୍ଧା ଯୁଦ୍ଧ କରେ। କିନ୍ତୁ ମରହଟ୍ଟା ସୈନିକ ଯୁଦ୍ଧ କରିବା ପାଇଁ ହେଲେ କୌଣସି କାରଣ ଖୋଜେନା।

୧୪ଶ ଶତାବ୍ଦୀର ମଧ ଭାଗରେ କେବଳ ସାହାଯ୍ୟକାରୀ ସୈନ୍ୟବାହିନୀରୁ ରାଜନୈତିକ ଧାବଧାରାର ଫାଇଦା ପାଇଁ ଯୁଦ୍ଧ କରିବା ଆରମ୍ଭ କଲେ। ମୁସଲିମମାନେ ହେଲେ ସହରି ଯୋଦ୍ଧା, ସେମାନେ ପାର୍ବତ୍ୟଦେଶରେ ସହରତଳି ଅଞ୍ଚଳ ଭିତରେ

ଯୁଦ୍ଧ କରିବାକୁ ନାରାଜ। ସେଥିପାଇଁ ବାହମନୀ ସୁଲତାନମାନେ ମରହଟ୍ଟା ଯୋଦ୍ଧାମାନଙ୍କୁ ତାଙ୍କ ସୈନ୍ୟବାହିନୀରେ ନେଇଗଲେ। ବାହମାନୀ ରାଜ୍ୟ ତିଷ୍ଠିଲା ନାହିଁ କାରଣ ଦାକ୍ଷିଣାତ୍ୟରେ ଦୁର୍ଭିକ୍ଷ ବହୁଦିନ ପର୍ଯ୍ୟନ୍ତ ଲାଗିରହିଲା। ସେଇ ଅବସରରେ ମରହଟ୍ଟା ଗୋଷ୍ଠି ଶାସନକଳ ଭିତରକୁ ପଶି କିଛି ଦୁର୍ଗ ଅଧିକାର କଲେ। ପରେ ବାହମାନୀ ଦଳ ଭାଙ୍ଗିଗଲା ଓ ସେମାନେ ମରହଟ୍ଟା ସଂସ୍ଥା ସହିତ ସାମିଲ ହେଲେ। ଦୃଢ଼ ହେଲା ମରହଟ୍ଟା ଗୋଷ୍ଠୀ। ଯାଦ, ଭୌଁସଲେ, ପରିବାରସବୁ ଗଢ଼ି ଉଠିଲେ।

ଯୁଦ୍ଧ ସେମାନଙ୍କୁ ସୁହାଇଲା–ଯୁଦ୍ଧୋତ୍ତର ଧନସଂପତ୍ତି ଓ ଲୁଣ୍ଠନ ଲବ୍ଧ ସଂପତ୍ତି ପାଇ ସେମାନେ ଧିରେ ଧିରେ ରାଜନୈତିକ ଆସନ ଦୃଢ଼ କଲେ। ପୁନେ ପାଖରେ ଅନେକ ବର୍ଷ ଧରି ଭୌଁସଲେ ପରିବାର କେତେକ ଗାଁର ମୁଖ୍ୟ ଭାବରେ ବସବାସ କରୁଥିଲେ। ଧିରେ ଧିରେ ସେମାନଙ୍କ ବଂଶଧରମାନେ ଦୌଲତାବାଦ ପର୍ଯ୍ୟନ୍ତ ବ୍ୟାପିଗଲେ। ଶିବାଜୀଙ୍କ ପୂର୍ବ ବଂଶଧର ମାଲୋଜୀ ଭୌଁସଲେ ଜଣେ ଧନୀଲୋକ ଭାବରେ ତାଙ୍କ ଲୋକମାନଙ୍କ ମଧ୍ୟରେ ଜଣାଶୁଣା ଥିଲେ। ବୋଧେ ଲୁଣ୍ଠନ ଧନରେ ଧନୀ ଥିଲେ। ଏ ଧନକୁ ମୂଳଧନରେ ମିଶାଇ ନିଜ ବୁଦ୍ଧିବଳରେ ଗୋଟିଏ ସୈନ୍ୟଦଳ ଗଢ଼ିଲେ। ଅହମଦାନଗର ସୁଲତାନଙ୍କଠାରୁ 'ମାଲୋଜୀ ରାଜା ଭୌଁସଲେ' ପଦବୀ ଓ ୫୦୦ ଘୋଡ଼ା ହାସଲ କଲେ। ସେ ତାଙ୍କ ପୁଅ ସାହାଜୀଙ୍କ ପାଇଁ ଲୁଖାଜୀଯାଦବ ଗୋଷ୍ଠୀର ଜଣେ ପ୍ରଧାନ ମରହଟ୍ଟାଙ୍କର କନ୍ୟା ଜିଜାବାଇଙ୍କୁ ବୋହୁକରି ଆଣିଲେ। ମାଲେଜୀ ନିଜେ ଧନ ଓ ଶକ୍ତି କ୍ଷେତ୍ରରେ ନିଜକୁ ସାମିଲ କଲେ। ଦାକ୍ଷିଣାତ୍ୟରେ ସେଇ ସମୟକୁ ମରହଟ୍ଟାମାନଙ୍କ ପାଇଁ ଅନୁକୂଳ ପରିସ୍ଥିତି ଥିଲା। ଫଳରେ ସେମାନଙ୍କର ଉନ୍ନତି ଘଟିଲା।

ଅହମଦାନଗର ମୋଗଲମାନଙ୍କ ଅତ୍ୟାଚାର ବଳରେ ଅତ୍ୟାଚାରିତ ହେଉଥିଲା। ମରହଟ୍ଟା-ପ୍ରଧାନ ଲୁଖଜୀ, ସାହାଜୀ ଓ ଅନ୍ୟ ମରହଟ୍ଟାମାନେ ଅହମଦାନଗରର ସୁଲତାନ ମଲିକ ଅମ୍ବର ସଂଗେ ଯୋଗଦେଲେ। ଉଦ୍ଦେଶ୍ୟ ଥିଲା ଭାଙ୍ଗି ଯାଇଥିବା ସୁଲତାନମାନଙ୍କର ଉନ୍ନତି କରାଇବା। ନିଜ ନିଜର ରାଜନୈତିକ ଉତ୍ଥାନ ମଧ୍ୟ କଲେ। ଶାହାଜୀ ତାଙ୍କ ପୈତୃକ ଗାଁର ସଂପତ୍ତି ବ୍ୟତୀତ ଅନ୍ୟ କେତେକ ଜମି ଓ ୨୦୦୦ ଘୋଡ଼ାର ମାଲିକ ହେଲେ। ୧୬୨୬ରେ ମଲିକ ଅମ୍ବର ମରିଗଲେ। ଫଳରେ ଶାହାଜୀ ଅହମଦାନଗରର ନେତୃତ୍ୱ ନେବା ପାଇଁ

ଆଗେଇ ଆସିଲେ। ଶାହାଜୀଙ୍କ ଲୁଣ୍ଠନ ବଳରେ ଅହମଦାନଗର ଛାରଖାର ହୋଇଗଲା। ୧୬୩୦ରେ ମୋଗଲମାନଙ୍କୁ ହରାଇଲେ। ପାଇଲେ ୫୦୦୦ ଘୋଡ଼ା। କିଛିଦିନ ମୋଗଲମାନଙ୍କ ସହ ରହିଲେ। ନାସିକ ଓ ଚୁନାର ପାଖାପାଖି ଅନେକ ଜାଗା ଅଧିକାର କଲେ। ନିଜେ ଜଣେ ଦଶବର୍ଷୀୟ ବାଳକ ମୂର୍ତ୍ତାଜାଙ୍କୁ ସୁଲତାନ ଭାବେ ଅଧିଷ୍ଠିତ କରାଇଲେ। ଆଉ ନିଜେ ଚଳାଇଲେ ଶାସନକାର୍ଯ୍ୟ। ଶାହାଜୀ ପାଇଲେ ବିଜାପୁରର ସମର୍ଥନ। ୩ ବର୍ଷ ଧରି ରାଜକାର୍ଯ୍ୟ ଚଳାଇଲେ। ବିଜାପୁର ମୋଗଲଶାସନ ବିରୁଦ୍ଧରେ ଥିଲା। କିନ୍ତୁ ୧୬୩୬ରେ ଶାହାଜାହାଁଙ୍କୁ ସମର୍ଥନ କଲେ। ଶାହାଜୀ ମୂର୍ତ୍ତାଜାଙ୍କୁ ମୋଗଲମାନଙ୍କୁ ହସ୍ତାନ୍ତର କରି ପଳାଇ ଆସିଲେ। ପରେ କର୍ଣ୍ଣାଟକର ଦାୟିତ୍ୱରେ ରହିଲେ।

ସାତ ଦଶନ୍ଧି ଧରି କ୍ରିଷ୍ଣାନଦୀ କୂଳରେ ଅଭିନବ କର୍ଣ୍ଣାଟକ ଓ ତାମିଲନାଡୁ ବିଶୃଙ୍ଖଳା ଭିତରେ ଗତି କରୁଥିଲା। ୧୫୬୫ରେ ଟାଲକୋଟା ଯୁଦ୍ଧରେ ବିଜୟନଗରର ପତନ ହେଲା। ନାୟକ ବଂଶ ବିଜୟନଗରମ୍‌ର ପ୍ରାଦେଶିକ ପ୍ରଧାନ ସ୍ୱାଧୀନ ହୋଇଗଲେ। ପରେ ପରେ ନିଜ ନିଜ ଭିତରେ ଲଢ଼ାଇଲେ ବ୍ୟସ୍ତ ରହିଲେ। ଚନ୍ଦ୍ରଗିରିର ଶେଷ ଅଧିପତିଙ୍କ ସହିତ ମଧ୍ୟ ଯୁଦ୍ଧରେ ମାତିଲେ। ଏ ପ୍ରକାର ଅର୍ନ୍ତଯୁଦ୍ଧ ଓ ଉତ୍ତରାଧିକାରୀ ଗଣ୍ଡଗୋଳ ମଧ୍ୟରେ ସେମାନେ ଅନେକ ସମୟରେ ଦାକ୍ଷିଣାତ୍ୟର ସୁଲତାନ, ବିଶେଷକରି ବିଜାପୁର ସୁଲତାନଙ୍କଠାରୁ ସାହାଯ୍ୟ ଲୋଡ଼ିଥିଲେ।

ସମୟ ଓ ସୁଯୋଗ ଦେଖି ବିପକ୍ଷଲୋକେ ବି ଆକ୍ରମଣକାରୀ ପାଲଟିଯାନ୍ତି। ବିଜୟନଗରମ୍ ସାମ୍ରାଜ୍ୟକୁ ଏକାଠି କରିବାରେ ଅତିଷ୍ଠ ହୋଇପଡ଼ିଥିଲେ। ଟାଲାକୋଟା ଯୁଦ୍ଧର କେତେକ ବର୍ଷ ପରେ ଆକବର ହଠାତ୍ ୧୫୭୭ରେ ଦାକ୍ଷିଣାତ୍ୟ ଆକ୍ରମଣ କରି ଖଣ୍ଡଦେଶ ଅକ୍ତିଆର କଲେ। ଏ ପ୍ରକାର ଅତର୍କିତ ଆକ୍ରମଣରେ ଭୟଭୀତ ହୋଇ ନିଜ ନିଜର ସ୍ଥିତି ବଜାୟ ରଖିବା ଚେଷ୍ଟାରେ ରହିଲେ। ୧୬୩୬ ରେ ବିଜାପୁରର ମହମ୍ମଦ ଅଲି ସାହା ଓ ଶାହାଜାହାଁଙ୍କ ଭିତରେ ବୁଝାମଣା ହୋଇ ଦାକ୍ଷିଣାତ୍ୟରେ ମୋଗଲ ଆକ୍ରମଣ ଶେଷ ହେଲା। ଏହା ପରେ ବିଜାପୁର ଓ ଗୋଲକୋଣ୍ଡା ଭିତରେ ନାୟକଙ୍କ ଅଧୀନରେ ଥିବା ରାଜ୍ୟକୁ ଅଧିକାର କରି ନିଜ ନିଜ ଭିତରେ ବାଣ୍ଟିନେଲେ। ଶରତ ଋତୁରେ ଦାକ୍ଷିଣାତ୍ୟର ସେନା ଧିରେ ଧିରେ ଗତି କରି ପ୍ରତ୍ୟେକ ବର୍ଷ କିଛି କିଛି ରାଜ୍ୟ ଅଧିକାର କରି ମୌସୁମ ବାୟୁ ଚଳନ ପୂର୍ବରୁ ଫେରି ଆସୁଥିଲେ। ଏହା ହିନ୍ଦୁ-ମୁସଲିମ ଯୁଦ୍ଧ ନ ଥିଲା– ନା ଥିଲା ଧର୍ମର ଯୁଦ୍ଧ। ଏହା ଥିଲା ରାଜ୍ୟ ବିସ୍ତାର ଓ ଶକ୍ତିର ପରୀକ୍ଷା।

ବିଜାପୁର ସେନାଛାଉଣୀରେ ଶାହାଜୀହିଁ ଥିଲେ ସବୁଠୁ ପ୍ରଧାନ। ବିଜାପୁର ସୁଲତାନଙ୍କ ପାଖରେ ୧୬୩୮ରୁ ୧୬୬୪ ପର୍ଯ୍ୟନ୍ତ ଥିଲେ। ୧୬୬୪ରେ ଶାହାଜୀଙ୍କ ମୃତ୍ୟୁ ହେଲା। ଆଦିଲ ସାହା ତାଙ୍କୁ ରାଜ୍ୟର ଖୁଣ୍ଟ ବୋଲି ଘୋଷଣା କରୁଥିଲେ। ଶାହାଜୀଙ୍କ ପତନର କୌଣସି କାରଣ ଜଣାନପଡ଼ିଥିଲେ ମଧ୍ୟ ତାଙ୍କ ପୁଅ ଶିବାଜୀ ବିଦ୍ରୋହୀ ଦଳରେ ଥିଲେ। ପୁଅମାନଙ୍କ ଦାବି ଫଳରେ ଆଦିଲ ସାହା ସିନ୍‌ଗଡ଼ ଶିବାଜୀଙ୍କୁ, ବାଙ୍ଗାଲୋର ଓ ଅନ୍ୟ କାନ୍ଦାର୍ପି ରାଜ୍ୟ ଦେଲେ। ଆଉ ଏକ ଦାବି ଫଳରେ ଶାହାଜୀଙ୍କୁ ମୁକ୍ତ କରାଗଲା। ଶାହାଜୀ ମୁକ୍ତି ସହ ସମ୍ମାନ ଫେରିପାଇଥିଲେ। ସିନଗଡ଼ ପାଇବା ପରେ ଶିବାଜୀ ସ୍ୱାଧୀନଭାବରେ କାମ କରିବାକୁ ଆରମ୍ଭ କଲେ। ବିଜାପୁରର ଆଖପାଖ ଅଞ୍ଚଳ ଓ ମୋଗଲ ଅଧିକୃତ ଦାକ୍ଷିଣାତ୍ୟ ବାରମ୍ବାର ଆକ୍ରମଣ କରି ଗଣ୍ଡଗୋଳ ଆରମ୍ଭ କରିଦେଲେ। ଆଦିଲ ସାହା ୧୬୫୮ରେ ଶାହାଜୀଙ୍କୁ ଆଶ୍ୱାସନା ଦେଇ ଚିଠି ଲେଖିଲେ କି ଶିବାଜୀଙ୍କ କାର୍ଯ୍ୟ ପାଇଁ ତାଙ୍କ ଉପରେ କୌଣସି ବିପଦ ଆସିବ ନାହିଁ। ସତୁରି ବର୍ଷ ବୟସରେ ଏପରି ଆନ୍ଦୋଳନ ହେବାର ୬ବର୍ଷ ପରେ ଶାହାଜୀଙ୍କର ମୃତ୍ୟୁ ହେଲା ସତ କିନ୍ତୁ ତାଙ୍କ ସମ୍ମାନରେ କୌଣସି ଆଘାତ ଆସିଲା ନାହିଁ। କିନ୍ତୁ ସେତେବେଳକୁ ମରହଟ୍ଟାମାନଙ୍କ କାର୍ଯ୍ୟକଳାପ ଶାହାଜୀଙ୍କ ହାତରୁ ଶିବାଜୀଙ୍କ ହାତକୁ ଚାଲିଯାଇସାରିଥିଲା।

ଶିବାଜୀଙ୍କ ଜନ୍ମର ସମୟ ଠିକ୍ ନ ଥିଲେ ମଧ୍ୟ ଏପ୍ରିଲ ୧୬୨୭ରେ ଶିବାନେରୀ ଦୁର୍ଗରେ ଜନ୍ମ ଗ୍ରହଣ କରିଥିଲେ। ଦେବୀ ଶିବା ବାଈଙ୍କ ନାମାନୁସାର ତାଙ୍କର ନାମକରଣ ହୋଇଥିଲା। ମାତା ଜିଜାବାଈ ବହୁ ସନ୍ତାନର ଜନନୀ। କେବଳ ବଡ଼ ପୁଅ ଶମ୍ଭୁଜୀ ଜୀବିତ ଥିଲେ। ଆଉ ଗୋଟେ ସନ୍ତାନର ଜନନୀ ହେଲେ ସେ ହୁଏତ ସ୍ୱାମୀ ସୋହାଗିନୀ ହୋଇପାରିବା ଆଶା ରଖିଥିଲେ। ସେ ଆଶା ପୂରଣ ହୋଇପାରିଲାନି। ଶାହାଜୀ କର୍ଣ୍ଣାଟକରେ ଚାକିରୀ ପାଇ କର୍ଣ୍ଣାଟକ ଗଲେ। ହେଲେ ସାଙ୍ଗରେ ନେଇଗଲେ ଦ୍ୱିତୀୟ ପତ୍ନୀ ଟୁକା ବାଈଙ୍କୁ। ମାତା ଜିଜାବାଈ ଓ ଶିବାଜୀ ପୁନେରେ ରହିଲେ ପ୍ରାୟ ଦଶବର୍ଷ। ମା ପୁଅ ଦୁହେଁ ଦୁହିଁଙ୍କର ଅନ୍ତରଙ୍ଗ ହୋଇଗଲେ। ଶିବାଜୀ ଆକବରଙ୍କ ପରି ଅଶିକ୍ଷିତ ଥିଲେ। ଏପରିକି ନିଜ ନାଁ ମଧ୍ୟ ଦସ୍ତଖତ କରି ପାରୁ ନ ଥିଲେ। ଦାଦାଜୀ କୋଣ୍ଡଦେବଙ୍କ ହେପାଜତରେ ବଢ଼ି ଉଠିଲେ। ମରହଟ୍ଟାମାନେ ବିଦ୍ୟାକୁ ଅଗ୍ରାଧିକାର ଦେଉନଥିଲେ। ବରଂ ବିଦ୍ୟାକୁ ଅପମାନଜନକ ବୋଲି ଭାବୁଥିଲେ।

ନିଜ ଜୀବନୀରୁ ଶିବାଜୀ ଅନେକ ଶିକ୍ଷା କରିଥିଲେ। କିନ୍ତୁ ପାଠରୁ ନୁହେଁ। ଜଙ୍ଗଲ ସହ ବନ୍ଧୁତା, ବେଶ ବଦଳାଇବାର ଦକ୍ଷତା, ବର୍ଚ୍ଛା ଓ ଶର କ୍ଷେପଣରେ ସିଦ୍ଧହସ୍ତ। ଦକ୍ଷ ଘୋଡ଼ା ସବାର ପ୍ରଭୃତି ଶିକ୍ଷାରେ ସେ ଧୁରନ୍ଧର ଥିଲେ। ୧୬ ବର୍ଷ ବୟସରୁ ସେ ଆଇନବିରୁଦ୍ଧ କାର୍ଯ୍ୟକଳାପରେ ବ୍ୟସ୍ତ ରହିଲେ। ଭାବିଲେ କି ବହୁତ ବଡ଼ ସେନାପତି ହେବେ। ସବୁ ଶୁଣି ଶାହାଜୀ ମଧ ବ୍ୟସ୍ତ ହୋଇପଡ଼ିଥିଲେ। ସେ ଜିଜାବାଈ ଓ ଶିବାଜୀଙ୍କୁ ବଙ୍ଗାଲୋର ଡକାଇ ନେଲେ। ୧୬୪୬ ବେଳକୁ ସେ ପୁନା ଆଖପାଖରୁ ଅନେକ ଦୁର୍ଗ ଅଧିକାର କଲେ। ଆଉ ବିବ୍ରତ ହେଲେ ଦାଦାଜୀ। ଶିବାଜୀଙ୍କ ବିଦ୍ରୋହକୁ ଗ୍ରହଣ କରି ପାରୁ ନଥିଲେ। କୃତକାର୍ଯ୍ୟତା ଉଦ୍‌ବିଗ୍ନତାର କାରଣ ହୋଇ ପଡ଼ିଲା। ୧୬୪୭ରେ ଦାଦାଜି ତାଙ୍କ ମୃତ୍ୟୁ ପୂର୍ବରୁ ଶିବାଜୀଙ୍କୁ ଆର୍ଶିବାଦ କରି କହିଥିଲେ; 'ବ୍ରାହ୍ମଣ, ଗୋ ଓ କୃଷକମାନଙ୍କୁ ରକ୍ଷା କରିବୁ। ମନ୍ଦିର ଧ୍ୱଂସ ହେବାକୁ ଦେବୁନି। ଶିବାଜୀ ପାର୍ବତ୍ୟ ଦୁର୍ଗ ଦଖଲ କରିଥିଲେ, ସେ ସବୁ ମରହଟ୍ଟାଙ୍କ ହାତରେ ଥିଲା। ସେଥିପାଇଁ ବିଜାପୁର ସୁଲତାନଙ୍କ ଉପରେ ଶତ୍ରୁତା ନ ଥିଲା। ଆଦିଲ ସାହା ମଧ ଏହାକୁ ବେଖାତିର କଲେ। ତା' ଛଡ଼ା ସୁଲତାନ କର୍ଣ୍ଣାଟକ ଆକ୍ରମଣ ଶିବାଜୀଙ୍କ ପାଇଁ ଅଧିକମାନେ ରଖିଥିଲା ଆଉ ସେହି କାରଣରୁ ସେ ଛୋଟ ଛୋଟ ଜାଗା ଦଖଲ କରିବାରେ ଆଗ୍ରହ ଦେଖାଉ ନଥିଲେ। ଏତତବ୍ୟତୀତ ସେ ଆଦିଲସାହାଙ୍କୁ ଚିଠି ଲେଖିଲେ କି ଏ ସବୁ ଦୁର୍ଗ ସେ ସୁଲତାନଙ୍କ ତରଫରୁ ଦଖଲ କରିଛନ୍ତି। ଅଧିକନ୍ତୁ ସେ ରାଜକୋଷକୁ ଅଧିକ ରାଜସ୍ୱ ଦେଉଥିଲେ।

ମା ଭବାନୀଙ୍କ ଦୟାରୁ ଦୁର୍ଗମାନଙ୍କର ନଷ୍ଟସ୍ତୁପ ମଧ୍ୟରୁ ଶିବାଜୀ ଅନେକ ସୁନା ପାଇପାରୁଥିଲେ। ସବୁକୁ ଏକାଠି କରି ସେ ଏକ ସେନାବାହିନୀ କରି ସେଥିରେ ଖର୍ଚ୍ଚ କରୁଥିଲେ। ତା' ଛଡ଼ା ନିଜର ଏକ ଦୁର୍ଗ ମଧ ନିର୍ମାଣ କରିଥିଲେ। ନିଜ ପାଇଁ ଏକ ନୂଆ ଫଳକ ତିଆରି କରାଇଥିଲେ। ସେଥିରେ ଲେଖାଥିଲା ''ଶାହାଙ୍କ ପୁଅ ଶିବ ପାଇଁ ଏ ଫଳକ ଉଜ୍ଜଳ ଦିଶୁଛି। ଆଉ ସୁଚାଇ ଦେଉଛି କି ଜନସାଧାରଣଙ୍କ ମଙ୍ଗଳ ଓ ବିଶ୍ୱର ସମ୍ମାନ (ଚନ୍ଦ୍ରଭଳି) ପାଇବାକୁ ଇଚ୍ଛା କରେ।'' ନିଜ ଦୁର୍ଗର ନାମ ରଖିଲେ ରାୟଗଡ଼–ଅର୍ଥାତ୍ ରାଜଦୁର୍ଗ। ଏ ଖବର ପାଇ ଆଦିଲସାହା ଶିବାଜୀଙ୍କର ଏପରି କାର୍ଯ୍ୟକଳାପ ବନ୍ଦ କରେଇବା ପାଇଁ ଶାହାଜୀଙ୍କୁ କହିଲେ। ଶାହାଜୀ ଜଣାଇଲେ କି ଶିବାଜୀ ତାଙ୍କ ଅକ୍ତିଆରରେ ନାହାନ୍ତି। ଏ ପ୍ରକାର ଉତ୍ତରରେ ଆଦିଲ ସାହା ଶାହାଜୀଙ୍କୁ ବନ୍ଦୀ କଲେ। ଏ ଖବରରେ ଶୁଣି ଶିଥିଳ ପଡ଼ିଲା ଶିବାଜୀଙ୍କ ବିଦ୍ରୋହ।

୧୬୪୯ରୁ ୧୬୫୬ ପର୍ଯ୍ୟନ୍ତ ସେ ଚୁପ୍ ରହିଲେ। ୧୬୫୬ରେ ଜାଭଲି (ପୁନେର ଦକ୍ଷିଣରେ ଅବସ୍ଥିତ) ମହାବଳେଶ୍ୱର ଦଖଲ କରିବାକୁ ଆଗେଇ ଆସିଲେ। ଜାଭେଲିର ଶାସକ ମୋରସ୍ ବାଧା ଦେଲେ। ମୁହାଁମୁହିଁ ଯୁଦ୍ଧ ଘୋଷଣା ହେଲା ମୋରସ୍ ଅଧିକ ଶକ୍ତିଶାଳୀ ଥିଲେ। ଶିବାଜୀ ଏକ ବ୍ରାହ୍ମଣ ସାହାଯ୍ୟରେ ମୋରସଙ୍କ ମୁରବୀ ସଦସ୍ୟମାନଙ୍କୁ ଏକ ବାହାଘର ପ୍ରସ୍ତାବର ବାହାନା ଦେଖାଇ ଏକଜୁଟ କରାଇଲେ ଓ ହତ୍ୟା କଲେ। ଏହା ଅନ୍ୟମାନଙ୍କ ଦୃଷ୍ଟିରେ ଘୃଣ୍ୟ ଥିଲେ ମଧ ଶିବାଜୀଙ୍କ ପାଇଁ ଉଚିତ ଥିଲା। କାରଣ ବିନା ଯୁଦ୍ଧରେ ବିନା ରକ୍ତପାତରେ ସେ ଦୁର୍ଗ ଅଧିକାର କଲେ। ଏ ଘଟଣା ଶିବାଜୀଙ୍କ ମନରେ ସାହସ ଆଣିଲା। ଦାକ୍ଷିଣାତ୍ୟରେ ମୋଗଲସେନାଙ୍କୁ ଆକ୍ରମଣ କଲେ। ସେତେବେଳେ ଔରଙ୍ଗଜେବ ଦାକ୍ଷିଣାତ୍ୟର ଗଭର୍ଣ୍ଣର ଥାନ୍ତି। ସେ ଶିବାଜିଙ୍କୁ ଦାକ୍ଷିଣାତ୍ୟରୁ ହଟାଇଲେ। ଶିବାଜୀ ପାର୍ବତ ଅଂଚଳକୁ ପଳାଇଲେ। ତାଙ୍କୁ ହଟାଇବା ପାଇଁ ମୋଗଲ ଅଫିସରମାନଙ୍କୁ ନିର୍ଦ୍ଦେଶ ଥିଲା କି ସବୁ ଗାଁ ଛାରଖାର କରିଦିଅନ୍ତୁ। ଲୋକମାନଙ୍କୁ ନିର୍ଦ୍ଦୟ ଭାବରେ ହତ୍ୟା କରନ୍ତୁ। ଲୁଣ୍ଠନ କରନ୍ତୁ। ନିଜକୁ ରକ୍ଷା କରି ଶିବାଜି ପାହାଡ଼ିଆ ଅଂଚଳକୁ ପଳାଇଲେ। ଏ ଅଞ୍ଚଳକୁ ଯିବା ପାଇଁ ମୋଗଲ ସେନା ଅନିଚ୍ଛୁକ ଥିଲେ।

ମୋଗଲମାନଙ୍କ ସହ ଲଢ଼ିବା ପରେ ତାଙ୍କର ଏକ ନୂଆ ଅନୁଭୂତି ହେଲା। ବିଜାପୁର ଔରଙ୍ଗଜେବଙ୍କୁ ହସ୍ତାନ୍ତର କଲେ। ଶିବାଜୀ ଔରଙ୍ଗଜେବଙ୍କୁ କିଛି ଉପଢ଼ୌକନ ପଠାଇ କ୍ଷମା ମାଗି ଚିଠି ଲେଖିଲେ। ପ୍ରତିଶ୍ରୁତି ଦେଲେ ମୋଗଲ ସାମ୍ରାଜ୍ୟ ବିସ୍ତାର ପାଇଁ ୫୦୦ ଯୋଦ୍ଧା ସୈନ୍ୟ ଦେଇ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ନିଜେ ସବୁ ପ୍ରକାରର ସାହାଯ୍ୟ କରିବେ।

ଏ ପ୍ରକାର ପ୍ରତିଶ୍ରୁତି ନଗଣ୍ୟ ହେଲେ ବି ଜଣେ ବିଦ୍ରୋହୀ ପାଖରୁ ଏ ପ୍ରକାର ସାହାଯ୍ୟ ନେବା ଉଚିତ ନ ହେଲେ ମଧ ଔରଙ୍ଗଜେବ ସେତେବେଳେ ଉତ୍ତରାଧିକାରୀ ସଂଗ୍ରାମରେ ବ୍ୟସ୍ତ ଥିଲେ। ସେଥିପାଇଁ ଶିବାଜୀଙ୍କ ପ୍ରସ୍ତାବରେ ରାଜି ହୋଇଗଲେ। କାରଣ ଦାକ୍ଷିଣାତ୍ୟରେ ତାଙ୍କୁ ସାହାଯ୍ୟ କରିବାକୁ ଅନ୍ୟ କେହି ନଥିଲେ। ଔରଙ୍ଗଜେବ ସମ୍ରାଟ ହେବାପରେ ମଧ ଶିବାଜୀଙ୍କୁ ଗ୍ରହଣ କରିନେଲେ। କେହି କାହାକୁ ବିଶ୍ୱାସ କରୁ ନ ଥିଲେ। ଶିବାଜୀଙ୍କୁ 'ପାହାଡ଼ିଆ ମୂଷା' ବୋଲି ଆଖ୍ୟା ଦେଉଥିଲେ। ଅନ୍ୟ ଦିଗରେ ଶିବାଜୀ ଭାବିଲେ କି ମୋଗଲ ସାମ୍ରାଜ୍ୟ ସହିତ ଲଢ଼ିବାକୁ ହେଲେ ନିଜର ସୈନ୍ୟଦଳ ବଢ଼ାଇ ମଜବୁତ୍ କରିବାକୁ ପଡ଼ିବ। ଏପରିକି

ସମୁଦ୍ରରେ ଯାତାୟତ ପାଇଁ ମଧ୍ୟ ଜାହାଜ କ୍ଷମତା ବଢ଼ାଇବା ପାଇଁ ମନସ୍ଥ କଲେ। ଶିବାଜୀ ପ୍ରଥମେ କୋନକାନ୍ ଅଧିକାର କଲେ। ଏହା ଭିଓ୍ୱାଣ୍ଡିରୁ ମହାଦ୍ ପର୍ଯ୍ୟନ୍ତ ପ୍ରାୟ ୧୪୦ କିଲୋମିଟର ବିସ୍ତୃତ ଥିଲା। 'ପାହାଡ଼ିଆ ମୂଷା'ର ବେଶ ପରିବର୍ତ୍ତନ ହୋଇ 'ବାଘ'ରେ ପରିଣତ ହେଲା।

ଏ ପରିବର୍ତ୍ତନ ପାଇଁ ଶିବାଜୀଙ୍କ ବିରୁଦ୍ଧରେ ଅନ୍ୟମାନେ ଲଢ଼ିବା ପାଇଁ ଆଗ୍ରହ ଦେଖାଇଲେ। ଔରଙ୍ଗଜେବ ଅଫଜଲ ଖାଁଙ୍କୁ ଶିବାଜୀଙ୍କୁ ଦମନ କରିବା ପାଇଁ ପଠାଇଲେ। ଖାଁଙ୍କୁ ଅନେକ ଶକ୍ତି ମୋଗଲଙ୍କ ତରଫରୁ ଯୋଗାଇ ଦିଆଗଲା। ମୋଗଲ ସେନାବାହିନୀକୁ ନେଇ ଶିବାଜୀଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ବାହାରିଲେ। ଶିବାଜୀ ପାର୍ବତ୍ୟ ପ୍ରଦେଶର ପ୍ରତାପଗଡ଼ ଦୁର୍ଗକୁ ଚାଲିଗଲେ। ଯୁଦ୍ଧ ପାଇଁ ବିଶେଷ କ୍ଷମତା ନ ଥିବାରୁ ସନ୍ଧି କରିବା ପାଇଁ ଉପଦେଶ ମିଳିଲା। କିନ୍ତୁ ଶିବାଜୀ ମା' ଭଗବାନୀଙ୍କୁ ଆରାଧନା କରି କରି ସନ୍ଧି ପାଇଁ ରାଜି ହେଲେ ନାହିଁ। କିନ୍ତୁ ଆଫଜଲ ଖାଁଙ୍କୁ ପ୍ରସ୍ତାବ ଦେଲେ କି ଯଦି କ୍ଷମା ମିଳେ ସେ ଆତ୍ମ ସମର୍ପଣ କରିବା ପାଇଁ ରାଜି ଅଛନ୍ତି। ଆଫଜଲ ଖାଁ ଏଥିରେ ରାଜି ହୋଇ ଗୋପୀନାଥ ନାମକ ଜଣେ ବ୍ରାହ୍ମଣଙ୍କୁ ଶିବାଜୀଙ୍କ ଛାଉଣୀକୁ ପଠାଇଲେ।

ଏଇଟା ଶିବାଜୀଙ୍କ ପାଇଁ ଥିଲା ଏକ ସୁବର୍ଣ୍ଣ ସୁଯୋଗ। ଧର୍ମର ଦ୍ୱାହି ଦେଇ ସେ ଗୋପୀନାଥ ବ୍ରାହ୍ମଣକୁ ଅକ୍ତିଆର କରିନେଲେ। ବ୍ରାହ୍ମଣ ଗୋପୀନାଥଙ୍କୁ ବୁଝାଇଲେ, 'ମା ଭବାନୀଙ୍କ ନିର୍ଦ୍ଦେଶ ଅଛି କି ହିନ୍ଦୁ ଧର୍ମକୁ ରକ୍ଷା କରିବା ପାଇଁ ସେ ଏଠାକୁ ଆସିଛନ୍ତି।' ମହାରାଷ୍ଟ୍ରର ପନ୍ଧାରପୁର ମନ୍ଦିର ସହ ଅଫଜଲ ଖାଁ ଅନେକ ହିନ୍ଦୁ ମନ୍ଦିର ନଷ୍ଟ କରିଦେଇଥିଲେ। ଏ ଯୋଜନା ବ୍ରାହ୍ମଣ ଗୋପୀନାଥଙ୍କୁ ସୁହାଇଲା ଓ ସେ ଶିବାଜୀଙ୍କ ସହ ମିଶି ଅଫଜଲ ଖାଁଙ୍କୁ ହତ୍ୟା କରିବା ପାଇଁ ରାଜି ହୋଇଗଲେ।

୧୬୫୯ରେ ଏହାକୁ କାର୍ଯ୍ୟକାରୀ କରିବାକୁ ବସିଲେ। ଶିବାଜୀଙ୍କ ଦୁର୍ଗର ପାଦଦେଶରେ ଏକ ବିରାଟ ତୋରଣ ତୋଳା ହେଲା ଅଫଜଲ ଖାଁଙ୍କ ସମ୍ବର୍ଦ୍ଧନା ପାଇଁ। ଶିବାଜୀଙ୍କ ଇଚ୍ଛା ଅନୁଯାୟୀ ସେଇ ରାସ୍ତାଦେଇ ଆଫଜଲ ଖାଁ ଶିବାଜୀଙ୍କୁ ଭେଟିବେ ବୋଲି ଠିକଣା କଲେ; କିନ୍ତୁ ଠାଏ ଠାଏ ମରହଟ୍ଟା ସୈନ୍ୟ ଲୁଚି ରହିଲେ।

ଆଫଜଲ ଖାଁ ୧୫୦୦ ଟ୍ରୁପ ନେଇ ଶିବାଜୀଙ୍କୁ ଦେଖା କରିବାକୁ ଗଲେ। ଗୋପୀନାଥଙ୍କ ଉପଦେଶ ଅନୁଯାୟୀ ଖାଁଙ୍କ ସୈନ୍ୟଗଣଙ୍କୁ କିଛି ଦୂରରେ ରଖାଗଲା– କାରଣ ସୈନ୍ୟବଳ ଦେଖି ଶିବାଜୀ ଛାନିଆ ହୋଇଯିବେ। ସେଥିପାଇଁ ସେ ଏକାକୀ

ପାଲିଙ୍କିରେ ବସି ଗଲେ । ତାଙ୍କ ମନକୁ କୌଣସି ଅସାଧୁ ଭାବନା ଆସିଲା ନାହିଁ । ମା'ଙ୍କ ଆର୍ଶିବାଦ ନେଇ ଶିବାଜୀ ମଧ ବାହାରକୁ ଆସିଲେ । ସେ ବୀର ବେଶରେ ସଜ୍ଜିତ ହୋଇଥିଲେ । ଯେପରିକି କୌଣସି ପ୍ରକାରର ପ୍ରତିଘାତ ତାଙ୍କୁ ଆଘାତ କରି ନପାରେ । କେବଳ ଜଣେ ଅଙ୍ଗରକ୍ଷକଙ୍କୁ ନେଇ ଶିବାଜୀ ଆତ୍ମସମର୍ପଣ ଢଙ୍ଗରେ ଆଫଜଲଖାଁଙ୍କ ପାଖକୁ ଆସିଲେ । ଚିନ୍ତାର କୌଣସି କାରଣ ନାହିଁ । ଶିବାଜୀଙ୍କୁ ପାଖରେ ପାଇ ଅଫଜଲ ଖାଁ ତାଙ୍କୁ କୁଣ୍ଡାଇ ପକାଇଲେ । ଏଇଟାହିଁ ଥିଲା ସୁବର୍ଣ୍ଣ ସୁଯୋଗ । ଦୁହିଁଙ୍କ ମଧରେ ଖଣ୍ଡା ଯୁଦ୍ଧ ଆରମ୍ଭ ହୋଇଗଲା । ଦୁହେଁ ଦୁହିଁଙ୍କୁ ଆଗ ମାରିବା ପାଇଁ ଚେଷ୍ଟା କଲେ । ଅବଶେଷରେ ଅଫଜଲ ଖାଁଙ୍କ ଶରୀରରୁ ମୁଣ୍ଡ ଅଲଗା ହୋଇଗଲା । ସେନାବାହିନୀ ସତର୍କ ହୋଇଗଲେ । କିନ୍ତୁ ଶିବାଜୀଙ୍କ ଯୋଜନା ପାଇଁ ହାର ମାନିଲେ ଆଫଜଲ ଖାଁଙ୍କ ସୈନ୍ୟବାହିନୀ । ଏ ଘଟଣା ପରେ ୩୨ ବର୍ଷୀୟ ଯୁବକ ଶିବାଜୀ ଏକ ଜୀବନ୍ତ ଦେବଦୂତ ବନିଗଲେ ।

ଏଣେ ଆଦିଲ ସାହା ତାଙ୍କ ବିଜୟ ଯାତ୍ରା ଆରମ୍ଭ କଲେ । ଶିବାଜୀ ତାଙ୍କୁ କେବେ ମୁହାଁମୁହିଁ ହେଲେ ନାହିଁ । ଆଦିଲ ସାହା ଶିବାଜୀଙ୍କ ପଛରେ ଲାଗି ଲାଗି ଶେଷରେ ୧୬୬୧ରେ ଶାହାଜୀଙ୍କ ଅନୁରୋଧ କଲେ କି ଶିବାଜୀଙ୍କ ସହ ଏକ ସନ୍ଧି ଚୁକ୍ତି କରିବା ପାଇଁ । ସେତେବେଳକୁ ଶିବାଜୀ ଏକ ବୀର ପୁରୁଷ ।

ଶାହାଜୀ ଓ ଶିବାଜୀଙ୍କର ସେତେବେଳକୁ ଦୀର୍ଘ କୋଡ଼ିଏ ବର୍ଷ ଧରି ଦେଖା ସାକ୍ଷାତ ମଧ ହୋଇନଥିଲା । କିନ୍ତୁ ଶିବାଜୀ ପିତାଶାହାଜୀଙ୍କୁ ଆଦରରେ ଆନ୍ତରିକତାର ସହ ଅଭ୍ୟର୍ଥନା କଲେ । ଦୁହିଁଙ୍କର ଦୂରତା ଦୂର ହେଲା । ଶାହାଜୀ ଶିବାଜୀଙ୍କ ଅନୁମତି ନେଇ କିଛିଦିନ ପାଇଁ ବିଜାପୁର ଫେରିଗଲେ । ଶିବାଜୀ ମଧ ତାଙ୍କ ଜବାବ ରଖି ବିଦ୍ରୋହରୁ କ୍ଷାନ୍ତ ହେଲେ ୧୬୬୪ରେ ଶାହାଜୀଙ୍କ ମୃତ୍ୟୁ ପର୍ଯ୍ୟନ୍ତ ।

ଶହ ଶହ ମାଇଲ ପରିବ୍ୟାପ୍ତ ଅନେକ ରାଜ୍ୟର ମାଲିକ ଶିବାଜୀ । ୭୦୦୦ ଘୋଡ଼ା ଓ ବିପୁଳ ସୈନ୍ୟବଳ । ବିଜାପୁର ସହିତ ଶାନ୍ତି ସ୍ଥାପନ କରି ଶିବାଜୀ ଦାକ୍ଷିଣାତ୍ୟରେ ଏକ ଶକ୍ତି ରୂପରେ ପରିଚୟ ଦେଇସାରିଥିଲେ । ସେ ବର୍ତ୍ତମାନ ବିଦ୍ରୋହୀ ନୁହନ୍ତି – ବିଜାପୁରର ଏକ ବନ୍ଧୁ । ଦୁର୍ଭାଗ୍ୟର ବିଷୟ । ଶିବାଜୀଙ୍କ ଉନ୍ନତି ସହ ତାଙ୍କର ଅବନତିର ରାସ୍ତା ମଧ ଖୋଲିଗଲା । ଔରଙ୍ଗଜେବ ସମ୍ରାଟ ହେଲା ପରେ ସାୟସ୍ତଖାଁଙ୍କୁ ଦାକ୍ଷିଣାତ୍ୟର ଗଭର୍ଣ୍ଣର କରି ପଠାଇଲେ । ସାୟସ୍ତ ଖାଁ ଆଦେଶ ଦେଲେ ମରହଟ୍ଟା ଶକ୍ତିର ବିନାଶ ପାଇଁ । ୧୬୬୦ରେ ସାୟାସ୍ତା ଖାଁ ଗଭର୍ଣ୍ଣର

ହୋଇ ଆସିବା ପରେ ଶିବାଜୀ ଆସ୍ତେ ଆସ୍ତେ ବିଚକ୍ଷଣ ସୂତ୍ରପାତର ଯୋଜନାସବୁ ହରାଇ ବସୁଥିଲେ। ତଥାପି ମରହଟ୍ଟାମାନଙ୍କ ମନୋବଳ ଓ ନିଜର ନିଜତ୍ୱ ବଜାୟ ରଖିବା ଏକାନ୍ତ ଆବଶ୍ୟକତା ଥିଲା। ସେ ଦୃଷ୍ଟିରୁ ଶିବାଜୀଙ୍କର ଯୋଜନାସବୁ ଥିଲା ନିଜସ୍ୱ ଓ ଫଳପ୍ରଦ।

ସେଇ ସମୟକୁ ମୋଗଲ ସେନା ପୁନେରେ ଥିଲେ ଓ ସାୟସ୍ତା ଖାଁ ଶିବାଜୀଙ୍କ ପୁରୁଣା ଘରେ ରହୁଥିଲେ। ପୁନେ ଶିବାଜୀଙ୍କ ନିଜ ଜାଗା। ଶିବାଜୀ ସେଠାରୁ ପ୍ରାୟ ୨୦ କିଲୋମିଟର ଦୂର ସିଂଗଡ଼ରେ ରହୁଥିଲେ। ପୁନେ କାନ୍ଥଘେରା ସହର ନୁହେଁ। ଏ କଥା ଜାଣି ସାୟସ୍ତା ଖାଁ ଅନେକ ପ୍ରତିରକ୍ଷାର ଆୟୋଜନ କରିଥିଲେ ନିଜ ଛାଉଣୀକୁ ବଂଚେଇବା ପାଇଁ। କାଫି ଖାଁ ଆଦେଶ ଦେଇଥିଲେ ବିନା ଅନୁମତିପତ୍ର ଦେଖି, ପୁନେ ସହରକୁ କେହି ପ୍ରବେଶ କରି ପାରିବେ ନାହିଁ। କୌଣସି ଘୋଡ଼ା ସବାର ପୁନେ ଭିତରକୁ ଆସିପାରିବେ ନାହିଁ। ଏ ଆଦେଶ ସତ୍ୱେ 'ପାହାଡ଼ିଆ ମୂଷା' ଛାଉଣୀ ଭିତରକୁ ପ୍ରବେଶ କରିବା ରାସ୍ତା ପାଇଗଲା। ୧୫ ଏପ୍ରିଲ ୧୬୬୩ 'ରମଜାନ ଦିବସ'। ସେଦିନ ଔରଙ୍ଗଜେବଙ୍କର ଗାଦିସୀନ ହେବାର ଶୁଭବାର୍ଷିକ ଦିନ ମଧ୍ୟ। ରମଜାନ ଦିବସରେ ସାୟସ୍ତା ଖାଁଙ୍କର ପ୍ରତିରକ୍ଷା ନିଶ୍ଚୟ କୋହଳ ଥିବ। ଉତ୍ସବ ଦିନରେ ବ୍ୟାଣ୍ଡରେ ଗୀତ ବାଜୁଥିବ। ଆକ୍ରମଣର ଶବ୍ଦକୁ କମେଇ ଦେଇପାରିବ। ଜଣେ ପୁଅକୁ ବରବେଶ କରି ପ୍ରାୟ ୫୦୦ ମରହଟ୍ଟା ସେନାର ସୈନିକ ବରଯାତ୍ରୀ ବେଶରେ କଟଓ୍ୱାଲଙ୍କ ଅନୁମତି ମାଗିଲେ। କହିଲେ ସେମାନେ ସବୁ ବରଯାତ୍ରୀ। ଅନୁମତି ପାଇ ପୁନେ ସହର ଭିତରେ ପ୍ରବେଶ କଲେ। ଆଉ ଦଳେ ମରହଟ୍ଟା ସୈନିକ ମୋଗଲସେନାର ବନ୍ଦୀ ସୈନିକ ବେଶରେ ପୁନେ ସହର ଭିତରକୁ ଗଲେ। ପଛ ଦଳରେ ଶିବାଜୀ ମଧ୍ୟ ଥିଲେ। ରାତି ଅଧ। ଶିବାଜୀଙ୍କ ସହିତ କେତେକ ସୈନ୍ୟ ସାୟସ୍ତା ଖାଁ ରହିବାଜାଗାର ରୋଷାଇଶାଳରେ ପଶିଲେ। ସେ ସମୟକୁ ସାୟସ୍ତା ଖାଁ ନିଜ ପରିବାର ସହ ନିଘୋଡ଼ ନିଦରେ ଶୋଇ ରହିଥିଲେ।

ଆରମ୍ଭ ହେଲା ଖେଳ। ଦୁଇଜଣ କ୍ରୀତଦାସୀଙ୍କ ସାହାଯ୍ୟରେ ସାୟସ୍ତା ଖାଁ ଖସି ପଳାଇଲେ। ଜଣେ କେହି ଆଲୁଅ ବନ୍ଦ କରିଦେଲେ। ଅନ୍ଧାରୁଆ ଆକ୍ରମଣ ଜାରି ରଖିଲେ ଶିବାଜୀଙ୍କ ଦଳ। କିଛି ସ୍ତ୍ରୀ ଲୋକ ଓ କେତେକ ସୈନିକ ପ୍ରାଣ ହରାଇଲେ। ଆଉ ପ୍ରାଣ ହରାଇଲେ ସାୟସ୍ତା ଖାଁଙ୍କ ପୁତ୍ର।

କୌଣସି ମୋଗଲ ସେନାବାହିନୀଙ୍କ ଅକ୍ତିଆରକୁ ଆସିବା ପୂର୍ବରୁ ମରହଟ୍ଟାମାନେ ମୁକୁଳି ଆସିଥିଲେ। ଯଶୋବନ୍ତ ସିଂ ୧୦,୦୦୦ ଘୋଡ଼ସବାରଙ୍କୁ

ଧରି ଛାଉଣୀ ପକାଇଥିଲେ ମୋଗଲ ଛାଉଣୀ ରକ୍ଷା କରିବା ପାଇଁ। ସାୟସ୍ତ ଖାଁ ଅବିଶ୍ୱାସ କଲେ ଯଶୋବନ୍ତ ସିଂଙ୍କୁ। କିନ୍ତୁ ସେତେବେଳକୁ ମରହଟ୍ଟା ସୈନ୍ୟମାନେ ଖସି ପଳାଇଥିଲେ। ପୁନେ ଉପରେ ଏପରି ଅତିର୍କିତ ଆକ୍ରମଣ ଚଳାଇବା ପରେ ଶିବାଜୀଙ୍କ ବୀରତ୍ୱର କାହାଣୀ ସମସ୍ତଙ୍କୁ ଚକିତ କଲା। ମରହଟ୍ଟାମାନଙ୍କ ଭିତରେ ସାହସର ବୀଜ ବୁଣି ହୋଇଗଲା। ପରେ ପରେ ମୋଗଲ ସେନା ସିଂଗଡ଼ ଆକ୍ରମଣ କଲେ। ମରହଟ୍ଟା ସୈନ୍ୟଙ୍କ ସହ ମୁହାଁମୁହିଁ ହେଲେ। କିନ୍ତୁ ହଟିଗଲେ ମୋଗଲ ସେନା।

ଏ ଘଟଣାରେ ମର୍ମାହତ ହେଲେ ଔରଙ୍ଗଜେବ। ଅବିଶ୍ୱାସ କଲେ ସାୟସ୍ତ ଖାଁଙ୍କ ଯୋଜନା ଉପରେ। ସାୟସ୍ତା ଖାଁଙ୍କୁ ବଦଳି କଲେ ବଙ୍ଗଳାକୁ। ତାଙ୍କ ବଦଳରେ ପୁତ୍ର ମୁଆଜଙ୍କୁ ଦାକ୍ଷିଣାତ୍ୟର ଗଭର୍ଣ୍ଣର କରି ପଠାଇଲେ। କିନ୍ତୁ ମୁଆଜ ଯଶୋବନ୍ତ ସିଂ ଉପରେ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ ଅନୁମତି ଦେଇ ନିଶ୍ଚିନ୍ତ ରହିଲେ। ଏଇ ପରିସ୍ଥିତିର ସୁଯୋଗ ନେଲେ ଶିବାଜୀ। ମୋଗଲ ସେନା ଭିତରେ ପଶି ଛୋଟ ଛୋଟ ଲୁଣ୍ଠନ କରିବା ଆରମ୍ଭ କରିଦେଲେ। ୧୬୬୪ରେ ଏ ଘଟଣା ମୁଆଜମ୍ ଔରଙ୍ଗଜେବଙ୍କୁ ଜଣାଇଲେ।

ସେତେବେଳକୁ ମରହଟ୍ଟାମାନେ ଅନେକ ଭିତରକୁ ପଶି ସାରିଥିଲେ। ମକ୍କା ଯାଉଥିବା ଯାତ୍ରୀମାନଙ୍କୁ ଉପକୂଳବର୍ତ୍ତୀ ଜାହାଜମାନଙ୍କୁ ମଧ ଆକ୍ରମଣ କଲେ। ସୁରଟ ମୋଗଲମାନଙ୍କ ସବୁଠୁ ବିତ୍ତଶାଳୀ ସହର। ଗୁଜରାଟର ତାପ୍ତି ନଦୀକୂଳରେ ଏ ବନ୍ଦର ଉପରେ ମଧ ଅତର୍କିତ ଆକ୍ରମଣ କଲେ ଶିବାଜୀ। ସୁରଟ ସହର କେବଳ ମାଟିକାନ୍ଥର ପାଚେରୀ ଘେରା ସହର। ପୁରାପୁରି ଅସୁରକ୍ଷିତ। ୫୦୦ ସୈନ୍ୟଙ୍କୁ ଏ ସହରର ସୁରକ୍ଷା ଭାର ମୋଗଲ ସେନା ମାନେ ଦେଇଥିଲେ। ଏଣେ ଅଫିସରମାନେ ବନ୍ଦର ସୁରକ୍ଷା ପ୍ରତି ନଜର ନ ଦେଇ ବ୍ୟକ୍ତିଗତ ସଂପତ୍ତି ଠୁଳ କରିବାରେ ବ୍ୟସ୍ତ ଥିଲେ।

୧୬୬୪ରେ ଶିବାଜୀ ସେ ସହର ଚଢ଼ାଉ କଲେ। ଏ ଆକ୍ରମଣ ଫଳରେ ସବୁ ଅଫିସରମାନେ ନିଜ ନିଜର ବ୍ୟକ୍ତିଗତ ସଂପତ୍ତି ଧରି ବନ୍ଦର ଭିତରକୁ ପଳାଇଗଲେ। ସହର ବା ସହରବାସୀଙ୍କୁ ବା ବିଦେଶୀ ବ୍ୟବସାୟୀଙ୍କୁ ରକ୍ଷା କରିବା ପାଇଁ କେହି ନଥିଲେ। ମରହଟ୍ଟା ସେନାବାହିନୀ ସୁରଟ ସହର ଲୁଣ୍ଠନ କଲେ। ୪ଦିନ ଧରି ଏ ଲୁଣ୍ଠନ ଚାଲିଲା। ତା ପରେ ହଠାତ୍ ଶିବାଜୀ ଓ ମରହଟ୍ଟାମାନେ

ଚାଲିଗଲେ । କାରଣ ବୁରାହାନପୁରରୁ ମୋଗଲ ସେନା ଆସି ପହଞ୍ଚିବାର ଖବର ପାଇଲେ ।

ମରହଟ୍ଟା ସୈନ୍ୟମାନେ ରାୟଗଡ଼ ଫେରି ଆସିଲେ । ଶୁଣିଲେ ଶିକାର କରିବା ସମୟରେ ପିତା ଶାହାଜୀଙ୍କର ମୃତ୍ୟୁ ଘଟିଛି । ଶିବାଜୀ ଭୌଁସଲେ ଗ୍ରୁପର ପ୍ରଧାନ ହେଲେ । ନିଜ ନାଁରେ ମୁଦ୍ରା ଚଳାଇଲେ । ଶିବାଜୀ ହେଲେ ମରହଟ୍ଟାମାନଙ୍କର ମୁକୁଟ ହୀନ ରାଜା । ଔରଙ୍ଗଜେବ ଶିବାଜୀଙ୍କ ଉପରେ ଚାପ ପକାଇବା ପାଇଁ ରାଜା ଜୟ ସିଂ, ଦିଲୀର ଖାଁଙ୍କୁ କମାଣ୍ଡର ଭାବରେ ନିଯୁକ୍ତି ଦେଲେ । ଶିବାଜୀ ସେମାନଙ୍କୁ ନିଜ ରାଜ୍ୟର ରାସ୍ତାଘାଟ ସଂକ୍ରାନ୍ତରେ ଅବଗତ କରାଇଦେଲେ । ଆଫଜଲ ଖାଁ ଓ ସାୟସ୍ତା ଖାଁଙ୍କ ବିଷୟରେ ମଧ୍ୟ ଲେଖିବାକୁ ଭୁଲି ନ ଥିଲେ । ଆହୁରି ପୁଣି ଲେଖିଥିଲେ କି ବୁଦ୍ଧିମାନ ବ୍ୟକ୍ତି ଏ ରକ୍ତନଦୀ ଘଟଣା ଜାଣିବା ଅତି ଆବଶ୍ୟକ । ଯେଉଁଠୁ କି କୌଣସି ବ୍ୟକ୍ତି ନିଜ ଡଙ୍ଗା ପାରି ହୋଇପାରି ନାହିଁ । ଏ ଚିଠିକୁ ଦସ୍ତଖତ କରି ପଠାଇଦେଲେ । ଜୟ ସିଂଙ୍କୁ ଏ ଚିଠି ହତୋତ୍ସାହ କଲାନାହିଁ । ରାଜା ନିଜେ ସବୁ ଅସୁବିଧା ବିଷୟରେ ଅବଗତ ଥିଲେ । ସବୁକୁ ମୁକାବିଲା କରିବା ପାଇଁ ଦକ୍ଷତା ମଧ୍ୟ ଥିଲା । ସେ ଔରଙ୍ଗଜେବଙ୍କୁ ଲେଖିଲେ କି ଗୋଟିଏ ମୁହୂର୍ତ୍ତ ନଷ୍ଟ ନ କରି ଯେଉଁ କାମ ମତେ ଦିଆଯାଇଛି ସେ ସବୁ ପୂରଣ କରିବା ପାଇଁ ମୁଁ ତତ୍‌ପର ହେବି ।

ଜୟ ସିଂ ୧୬୬୫ ଜାନୁୟାରୀରେ ନର୍ମଦା ନଦୀ ପାର ହେଲେ । ମାର୍ଚ୍ଚ ମାସ ବେଳକୁ ପୁନେରେ ପହଞ୍ଚି ସାରିଥିଲେ । ଦାକ୍ଷିଣାତ୍ୟର ଦାୟିତ୍ୱ ଯଶବନ୍ତ ସିଂଙ୍କ ଠାରୁ ନେଲେ । ୩ ମାସ ଭିତରେ କୂଟନୈତିକ ଓ ରଣନୀତିର ପ୍ରଭାବ ପକାଇ ଶିବାଜୀଙ୍କୁ ଆତ୍ମସମର୍ପଣ କରିବାକୁ ବାଧ୍ୟ କଲେ । ମା' ଭବାନୀଙ୍କର ଆର୍ଶୀବାଦ ବୋଲି ଭାବି ଜୟ ସିଂଙ୍କ ପାଖକୁ ଶାନ୍ତିବାର୍ତ୍ତା ପଠାଇଲେ । ଜୟ ସିଂ ଓ ତାଙ୍କ ସହଯୋଗ ଦିଲର ଖାଁ ଏ ପ୍ରସ୍ତାବରେ ରାଜି ହେଲେ ନାହିଁ । କହିଲେ, ପ୍ରଥମେ ଯୁଦ୍ଧକର ଓ ତା' ପରେ ଶାନ୍ତିଚୁକ୍ତି କରିବ । ଅନ୍ୟ କିଛି ରାସ୍ତା ନ ପାଇ ଶିବାଜୀ ଆତ୍ମସମର୍ପଣ କଲେ ଜୟସିଂଙ୍କର ଏ ପ୍ରକାର ବ୍ୟଙ୍ଗୋକ୍ତି ହଜମ କରିବା ପରେ ମଧ୍ୟ ।

ପୁରନ୍ଦର ଦୁର୍ଗରେ ୨୧ ଜୁନ୍ ୧୬୬୫ରେ ଶିବାଜୀ ଜୟସିଂଙ୍କ ଛାଉଣୀରେ ପହଞ୍ଚିଲେ । ୫୦ କିଲୋମିଟର ଦୂରରୁ ରାୟଗଡ଼ ଦୁର୍ଗରୁ ପାଲିଙ୍କିରେ ବସି ଶିବାଜୀ ଆସିଥାନ୍ତି । ଜୟ ସିଂ ଶିବାଜୀଙ୍କୁ ଦରବାର ହଲରେ ଭେଟିଲେ । ଶିବାଜୀ ଲଜ୍ଜିତ

ହେଲେ। ଜୟ ସିଂ କହିଲେ ମୁଁ ଜଣେ ଦୋଷୀ। ଆସିଛି କ୍ଷମା ପାଇବା ପାଇଁ। ତମେ ମତେ କ୍ଷମା କରିବ ବା ମତେ ମାରିଦେବ ତାହା ତୁମ ଉପରେ ନିର୍ଭର କରେ।

କଥାବାର୍ତ୍ତା ରାତିଅଧ ପର୍ଯ୍ୟନ୍ତ ଚାଲିଲା। ଦାକ୍ଷିଣ୍ୟତରେ ମୋଗଲମାନଙ୍କ ଠାରୁ ଯେତେ ଦୁର୍ଗ ଓ ଜାଗା ନେଇଥିଲେ ସବୁ ସମର୍ପଣକରିଦେଲେ। ସିଂଗଡ଼ ଓ ପୁରନ୍ଦର ଦୁର୍ଗକୁ ମିଶାଇ ମୋଟ ୨୩ଟି ଦୁର୍ଗକୁ ଦେଇଦେଲେ। ନିଜ ପାଇଁ ରାୟଗଡ଼ ମିଶାଇ ବାରଟି ଦୁର୍ଗ ରଖିଲେ। ଆଉ କହିଲେ କି ଯଦି ବିଜାପୁରରୁ କୋକାନ ହାଇଲାଣ୍ଡ ଇଲାକା ଛଡ଼ାଇ ଆଣିପାରନ୍ତି ତା' ହେଲେ ସେ ଇଲାକା ମଧ ବ୍ୟବହାର କରିପାରନ୍ତି। ସମ୍ରାଟଙ୍କୁ ସାହାଯ୍ୟ କରିବାକୁ ଯାଇଁ ବିଜାପୁର ବିରୁଦ୍ଧରେ ଯୁଦ୍ଧ ପାଇଁ ସାହାଯ୍ୟ କରିପାରନ୍ତି ବୋଲି ଜଣାଇଲେ।

ଏ ସବୁର ସର୍ତ୍ତ ବଦଳରେ ୧ ୨ବର୍ଷର ପୁତ୍ର ଶମ୍ଭୁଜୀଙ୍କୁ ମାନସାବ ପଦଦେଇ ମୋଗଲ ଅଧିନରେ କାମ କରିବାକୁ ଅନୁରୋଧ କଲେ। ଏ ସର୍ତ୍ତ ସବୁ ପୂରଣ ହୋଇପାରିବ ଯଦି ସେ ଶିବାଜୀଙ୍କୁ ଗୃହବନ୍ଦୀ ନ କରନ୍ତି। ଆଉ ନମ୍ରତାର ସହ ଜଣାଇଲେ କି ତାଙ୍କୁ ମନସାବ ପଦବୀରେ ରଖା ନଯାଉ। ଜୟ ସିଂଙ୍କ ତତ୍ତ୍ୱାବଧାନରେ ସବୁ କଥାବାର୍ତ୍ତା ହୋଇଗଲା। କିନ୍ତୁ ଖୁସି ନ ଥିଲେ ଔରଙ୍ଗଜେବ। ଏଣେ ଜୟ ସିଂଙ୍କର ମୂଳ ଉଦ୍ଦେଶ୍ୟ ଥିଲା ବିଜାପୁର ଆକ୍ରମଣ। ଆଦିଲ ସାହା ଓ କୁତୁବ ସାହାଙ୍କ ମିଳିତ ବିଦ୍ରୋହ ଆରମ୍ଭ ହୋଇଯାଇଥିଲା ବିଜାପୁରରେ। ଆଉ ଶିବାଜୀଙ୍କ ସାହାଯ୍ୟ ବିନା ବିଜାପୁର ଆକ୍ରମଣ ସମ୍ଭବ ନୁହେଁ ବୋଲି ଜୟ ସିଂ ଔରଙ୍ଗଜେବଙ୍କୁ ବୁଝାଇଦେଲେ।

ଶିବାଜୀ ନିଜେ ଔରଙ୍ଗଜେବଙ୍କୁ ଲେଖିଲେ କି ଅତୀତର ସବୁ ଶତ୍ରୁତା ଓ ଦୁଷ୍କର୍ମକୁ ଭୁଲି ତାଙ୍କୁ କ୍ଷମା କରି ଦିଅନ୍ତୁ। ଆଗତ ଜୀବନରେ ସେ ସମ୍ରାଟଙ୍କ ଆନୁଗତ୍ୟ ସ୍ୱୀକାର କରିବେ। ମାନିଗଲେ ଔରଙ୍ଗଜେବ। ୧୫ ସେପ୍ଟେମ୍ବର ୧୬୬୫ରେ ପାପୁଲି ଚିହ୍ନଦେଇ ଶିବାଜୀଙ୍କୁ କ୍ଷମା କରିଛନ୍ତି ବୋଲି ଏକ ଲିଖିତ ବୁଝାମଣା ପତ୍ର ତାଙ୍କୁ ପଠାଇଲେ। ଶିବାଜୀ ଉତ୍ତରରେ ଜଣାଇଲେ କି ସମ୍ରାଟଙ୍କ ଉଦାରତା ଯୋଗୁଁ ତାଙ୍କର ନୂଆଜୀବନ ଆରମ୍ଭ ହେଲା।

ଶିବାଜୀଙ୍କ ସହ ମିଶି ଜୟ ସିଂ ମହାରାଷ୍ଟ୍ର ଜିଣିଲେ ୧୬୬୫ରେ। ବର୍ଷାଋତୁ ପରେ ବିଜାପୁର ଆକ୍ରମଣ କଲେ। ଏପ୍ରିଲ ୧୬୬୬ରେ ଶିବାଜୀଙ୍କୁ ନିର୍ଭର ପ୍ରତିଶ୍ରୁତି

ଓ ସମ୍ମାନ ଦେବା ପାଇଁ ଔରଙ୍ଗଜେବ ଚିଠି ଦେଇ ତାଙ୍କୁ ଡକାଇଲେ। ଜୟ ସିଂ ମଧ୍ଯ ଯିବାପାଇଁ ଅନୁମତି ଦେଲେ। ଆଶ୍ଚର୍ଯ୍ୟ ହେଲେ ସମସ୍ତେ। ମନେହେଲା ଜୟ ସିଂ ଓ ଔରଙ୍ଗଜେବ ଦୁହେଁ ଶିବାଜୀଙ୍କୁ ନିଜ ନିଜ ରାସ୍ତାରୁ ହଟାଇବାପାଇଁ ଚାହୁଁଛନ୍ତି। ଭୟ ଥିଲା ଆଗ୍ରାରେ ଥାଇଁ ଶିବାଜୀ ଗଣ୍ଡଗୋଳ ଆରମ୍ଭ କରିଦେବେ। ଜୟ ସିଂ ଔରଙ୍ଗଜେବଙ୍କୁ ଏକ ଚିଠି ଲେଖିଲେ। ଲେଖାଥିଲା 'ପ୍ରତ୍ୟେକ ସମୟର ଏକ ସ୍ୱତନ୍ତ୍ର ଆବଶ୍ୟକତା ଥାଏ। ବର୍ତ୍ତମାନ ଶିବାଜୀଙ୍କର ଏ ସମୟରେ ଏଠାରେ କୌଣସି ଆବଶ୍ୟକତା ନାହିଁ।'

ତଥାପି ମେ ୨୧ ତାରିଖ ୧୬୬୬ରେ ଶିବାଜୀ ଆଗ୍ରାରେ ପହଞ୍ଚିଲେ। ଗୋଟାଏ ଦିନ ବାହାରେ ରହି ପରଦିନ ଔରଙ୍ଗଜେବଙ୍କ ଆଦେଶକ୍ରମେ ଜୟସିଂଙ୍କ ପୁଅ କୁମାର ରାମ ସିଂଙ୍କ ବାସଭବନ ନିକଟରେ ରହିଲେ। ରାମ ସିଂ ତାଙ୍କୁ ସାଙ୍ଗରେ ନେଇ ମୋଗଲ ଦରବାରର ଦିୱାନି ଖାସକୁ ସମ୍ରାଟଙ୍କୁ ଦେଖା କରିବାକୁ ଗଲେ। ଭେଟି ଦେଲେ ସମ୍ରାଟଙ୍କୁ। ବଦଳରେ ଔରଙ୍ଗଜେବ ପଦେ ବି କଥା ହେଲେନି ତାଙ୍କ ସହ। ଧାଡ଼ିର ତୃତୀୟ ସ୍ଥାନରେ ଠିଆ ହୋଇ ରହିଲେ ଶିବାଜୀ। ତାଙ୍କୁ ଉପହାର ଦେବାପାଇଁ ପୋଷାକ, ଗହଣା ଆଉ ହାତୀ ମଧ୍ୟ ପ୍ରସ୍ତୁତ ହୋଇ ବାହାରେ ଥିଲା। ଆକବରଙ୍କ ସମୟରେ ୫୦୦୦ କମାଣ୍ଡରଙ୍କ ମୂଲ୍ୟ ଥିଲା। କିନ୍ତୁ ଔରଙ୍ଗଜେବଙ୍କ ଅମଳ କଥା ଅଲଗା। ମୋଗଲ ଦରବାରରେ ଶମ୍ଭୁଜୀ ଓ ନେତାଜୀ ପାଲେକର ପ୍ରାୟ ସେପରି ପଦବୀକୁ ଆସିଯାଇଥିଲେ। ଶିବାଜୀ ଓ ଯଶୋବନ୍ତ ସିଂ ଦୁହେଁ ଅନ୍ତତଃ ୭୦୦୦ କମାଣ୍ଡର ହୋଇଯିବା ଉଚିତ ଥିଲା।

ଶିବାଜୀ ନିଜର ମୂଲ୍ୟ ନିଜେ ଜାଣି ନଥିଲେ। ସେ ଅନ୍ୟାନ୍ୟ ଅନେକ ଅମୀରଙ୍କ ସହ ଠିଆ ହୋଇରହିଥିଲେ। ଏ କଥା ବି ସତ ତାଙ୍କ ଉପସ୍ଥିତି ସମ୍ରାଟଙ୍କ ନଜରକୁ ଆସି ନଥିଲା। କିନ୍ତୁ ଦୁଃଖ ପାଇଲେ ଶିବାଜୀ। ଦୁଃଖ ଓ ଅପମାନରେ ଆଖି ତାଙ୍କର ଲାଲ ହୋଇଗଲା। ସେ ଦରବାରକୁ ପଛ କରି ଦିୱାନି ଖାସ ବାଟେ ବାହାରକୁ ପଳାଇଲେ। ରାମ ସିଂଙ୍କୁ ଔରଙ୍ଗଜେବ ଶିବାଜୀଙ୍କ ବିଷୟରେ ପଚାରିଲେ। ଉତ୍ତର ଦେଲେ ରାମ ସିଂ କି 'ଜଙ୍ଗଲର ବାଘ' ଏପରି ଜାଗାର ଗରମ ସହି ନ ପାରି ବାହାରକୁ ବାହାରିଗଲେ।

ରାମସିଂ ଶିବାଜୀଙ୍କୁ କହିଲେ କି ସେ ଆଉଥରେ ଔରଙ୍ଗଜେବଙ୍କ ସହିତ ଦେଖାକରନ୍ତୁ। ରାଗରେ ଥରିଗଲେ ଶିବାଜୀ। କହିଲେ କି ମୁଁ ପଛେ ଆତ୍ମହତ୍ୟା

କରିବି ହେଲେ ଦ୍ୱିତୀୟବାର ସମ୍ରାଟଙ୍କ ଦରବାରକୁ ଯିବି ନାହିଁ। ସମ୍ରାଟ ସମ୍ମାନର ପୋଷାକ ଶିବାଜୀଙ୍କ ନିକଟକୁ ପଠାଇଲେ। ଶିବାଜୀ ସେ ପୋଷାକ ପିନ୍ଧିଲେ ନାହିଁ। ଆଉ କହିଲେ କି ଏହାଦ୍ୱାରା ମୁଁ ସମ୍ରାଟ ମାନସାବ ପଦକୁ ଅସ୍ୱୀକାର କରୁଛି। ମତେ ସେ ବନ୍ଦୀ କରନ୍ତୁ, ହତ୍ୟା କରନ୍ତୁ ବା ଯାହା ଇଚ୍ଛା ତା କରନ୍ତୁ, କିନ୍ତୁ ମୁଁ ଏହା ଗ୍ରହଣ କରିବି ନାହିଁ। ଦଣ୍ଡ ସ୍ୱରୂପ ସମ୍ରାଟ ଶିବାଜୀଙ୍କୁ ଦ୍ୱିତୀୟବାର ଦରବାରକୁ ଆସିବାକୁ ଅନୁମତି ଦେଲେ। ଏ ଦଣ୍ଡ ଅତି ସାମାନ୍ୟ ବୋଲି ଦରବାରର ସଦସ୍ୟ ଗଣ ଓ ଜାହାନ୍ନାରା ମତବ୍ୟକ୍ତ କଲେ। ଶିବାଜୀ ତାଙ୍କ ନିଜ ଲୋକଙ୍କ ଆଗରେ, ନିଜ ଆଖିରେ ଜଣେ ବଡ଼ ଯୋଦ୍ଧା। କିନ୍ତୁ ମୋଗଲ ଦରବାରରେ ସେ ରଥଚକର ଗୋଟିଏ ଅଂଶ ବୋଲି ଧରାଯାଇପାରିବ। ଏ ଜୀବନ ଶିବାଜୀଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ। ସେ ଏ ପ୍ରକାର ଚକ୍ରବ୍ୟୂହ ଭିତରୁ, ବାହାରି ଯିବାର ଚେଷ୍ଟାରେ ଥିଲେ। ସମ୍ରାଟଙ୍କୁ ଖବର ଦେଲେ କି ତାଙ୍କୁ ଏ ଜଳବାୟୁ ପୋଷଉ ନାହିଁ। ଖାତିର କଲେ ନାହିଁ ସମ୍ରାଟ ଏ ଖବରକୁ। ଦ୍ୱିତୀୟରେ ବିଜାପୁର ଆକ୍ରମଣ କରିବାକୁ ଅନୁମତି ମାଗିଲେ। ତୃତୀୟରେ ଆଫଜଲ ଖାଁଙ୍କ ଜରିଆରେ ସମ୍ରାଟଙ୍କ ସହ ବ୍ୟକ୍ତିଗତ ସାକ୍ଷାତ କରିବାକୁ ଚାହିଁଲେ। ସବୁ କଥାର ଏକ ଅର୍ଥ ସୁଚାଇ ଦେଉଥିଲା କି ଶିବାଜୀ ସଂସାର ମୋହ ପରିତ୍ୟାଗ କରି ବନାରସରେ ଯାଇଁ ରହିବେ। ଉତ୍ତରରେ ଔରଙ୍ଗଜେବ କହିଲେ; ପ୍ରଥମେ ଫକୀର ହୋଇ ଆଲ୍‌ହାବାଦ ଦୁର୍ଗରେ ରୁହନ୍ତୁ– ମୋ' ସୁବେଦାର ତାଙ୍କର ଯତ୍ନ ନେଇପାରିବ। ଏ ସର୍ତ୍ତସବୁ ଶିବାଜୀଙ୍କର ବାହାନା ଥିଲା। ସେ କିନ୍ତୁ ତାଙ୍କ ନିଜ ଯୋଜନାରେ ବ୍ୟସ୍ତ ଥିଲେ। ଏସବୁ ସମ୍ରାଟ ସନ୍ଦେହ କରିଥିଲେ। ସେଥିପାଇଁ କଡା ନଜରରେ ରଖୁଥିଲେ ଶିବାଜୀଙ୍କୁ। ପ୍ରଥମେ ଶିବାଜୀ ତାଙ୍କ ଅନୁଚରମାନଙ୍କୁ ଫେରିଯିବାପାଇଁ ଅନୁମତି ମାଗିଲେ। ଅନୁମତି ପାଇ ଲୋକମାନେ ଫେରିଗଲେ। ତା'ପରେ ଶିବାଜୀ ତାଙ୍କର ଦ୍ୱିତୀୟ ଯୋଜନା ଆରମ୍ଭ କଲେ। ପେଟରେ ଯନ୍ତ୍ରଣା ହେଉଛି ବୋଲି କହି କଷ୍ଟରେ ଚିତ୍କାର କଲେ। ବିଛଣାରେ ପଡ଼ି ରହିଲେ। ଡାକ୍ତର ଦେଖାଇବାକୁ ଯିବା ରାସ୍ତାରେ ସେ ଡାକ୍ତର ଓ ତାଙ୍କ ଲୋକଙ୍କପାଇଁ ଉପହାର, ବ୍ରାହ୍ମଣମାନଙ୍କ ପାଇଁ ଖାଦ୍ୟ, ଶସ୍ୟ ଓ ଟଙ୍କା, ଗରୀବ ମୁସଲିମଙ୍କ ଓ ହିନ୍ଦୁମାନଙ୍କ ଭିତରେ ବାଣ୍ଟିବାପାଇଁ ବଡ଼ ବଡ଼ ବାକ୍ସରେ ଭର୍ତ୍ତିକରି ବାହାରକୁ ପଠାଇବା ଆରମ୍ଭ କଲେ। ପ୍ରତ୍ୟେକ ଦିନ ଏପରି ଉପହାର ପଠାଇବା ଯୋଜନାରେ ବ୍ୟସ୍ତ ରହିଲେ। ଯାଞ୍ଚ କରିବା ଲୋକ ମଧ ଆସ୍ତେ ଆସ୍ତେ ତଦାରଖ କରିବାରେ ଢିଲା ରହିଲେ। ୨୯

ଅଗଷ୍ଟରେ ଶିବାଜୀ ଓ ଶମ୍ଭୁଜୀ ଏହିପରି ଦୁଇଟି ଉପହାର ବାକ୍ସ ଭିତରେ ନିଜ ନିଜକୁ ଲୁଚାଇଦେଲେ। ପାର ହୋଇଗଲେ ଜଗୁଆଳିଙ୍କ ନଜରରୁ। ଗୋଟିଏ ନିର୍ଜନିଆ ଜାଗାକୁ ଗଲାପରେ ବନ୍ଦୋବସ୍ତ ହୋଇଥିବା ଦୁଇଟି ଘୋଡ଼ାରେ ଦୁଇଜଣ ଘୋଡ଼ା ଝପଟାଇ ଚାଲିଗଲେ। ଶିବାଜୀଙ୍କ ଭାଇ ହିରାଜୀ ଦେଖିବାକୁ ଶିବାଜୀଙ୍କ ପରି। ତାଙ୍କୁ ଶିବାଜୀଙ୍କ ମୁଦି ପିନ୍ଧାଇ ଶୁଆଇଦେଲେ। ଦୁଇଦିନ ପର୍ଯ୍ୟନ୍ତ ଶିବାଜୀଙ୍କର ଉଭାନ ବିଷୟ କେହି ଜାଣିପାରିଲେ ନାହିଁ।

ଏଣେ ଶିବାଜୀ ତାଙ୍କ ନିର୍ଦ୍ଧାରିତ ଦିଗରେ ନଯାଇଁ ବିପରୀତ ଦିଗରେ ଯାଇଁ ମଥୁରାରେ ପହଞ୍ଚିଲେ। ମୁଣ୍ଡ ନଣ୍ଡା କରି, ଦେହରେ ପାଉଁଶ ବୋଳି ଫକୀର ବେଶରେ ମଥୁରାକୁ ବାହାରିଲେ। ଗଲେ ଆଲ୍ହାବାଦ ତା'ପରେ ବାରାଣସୀ ଓ ତା ପରେ ପରେ ସେ ଦକ୍ଷିଣକୁ ଗତି କଲେ। ସେ ସମୟକୁ କିଛି ଲୋକ ହୁଏତ ତାଙ୍କ ସାଙ୍ଗେ ମିଶିଯାଇପାରିଥାନ୍ତି। ବିପଦସଂକୁଳ ରାସ୍ତାରେ, ଅନେକ କଷ୍ଟ ସହି ଯାଇଁ ବୁନ୍ଦେଲଖଣ୍ଡ, ଖଣ୍ଡୱାନା, ଗୋଲକୋଣ୍ଡା ପାରି ହେଲେ। ରାସ୍ତାରେ ମଧ ବେଶ ବଦଳାଉଥାନ୍ତି। ପ୍ରଧାନ ପ୍ରଧାନ ରାସ୍ତାରେ ଗଲେ। ନଭେମ୍ବରରେ ରାୟଗଡ଼ରେ ପହଞ୍ଚିଲେ ୨ ମାସ ପରେ। ଶମ୍ଭୁଜୀଙ୍କୁ କବି କୈଳାସଙ୍କ ଜିମାରେ ଛାଡ଼ିଦେଇଥାନ୍ତି। ରାୟଗଡ଼ରେ ପହଞ୍ଚି ସେ ତାଙ୍କ ମା'ଙ୍କ ପାଦତଳେ ପଡ଼ିଗଲେ। ମା' ବି ତାଙ୍କର ଏ ବଦଳା ବେଶରେ ତାଙ୍କୁ ଚିହ୍ନିପାରିଲେ ନାହିଁ। ଏପାଖେ ଔରଙ୍ଗଜେବ ସନ୍ଦେହ କଲେ କି ଶିବାଜୀଙ୍କ ପଳାୟନ ପଛରେ ରାମସିଂଙ୍କ ହାତଅଛି। ସେଥିପାଇଁ ରାମ ସିଂ ମାନସାବ ପଦରୁ ଖସାଇଦେଲେ। ''ଶାସନର ମୂଳଭିତ୍ତି ସଂବାଦ ସଂଗ୍ରହ-ଗୁପ୍ତ ସମ୍ବାଦ ସଂଗ୍ରହ। ଦେଶରେ ଯାହାକିଛି ଘଟୁଛି, ତାହାର ସାମାନ୍ୟତମ ତ୍ରୁଟି ହେଲେ ସାରାଜୀବନ ପାଇଁ ହୋଇଯାଏ ଲଜ୍ଜାକର ଘଟଣା।''

ଶିବାଜୀଙ୍କ ରାୟଗଡ଼ ପ୍ରସ୍ଥାନ ଯଦିଓ ଏକ ବଡ଼ ଘଟଣା ହୋଇ ରହିଗଲା, ତଥାପି ଶିବାଜୀ ନିଜର ଯୋଜନାସବୁ କାର୍ଯ୍ୟକାରୀ କରିପାରିଲେ ନାହିଁ। ଦେହ ଜନିତ ଦୁର୍ବଳତା ପାଇଁ ଶିବାଜୀ ପ୍ରାୟ ଶୋଇରହିଲେ। ଭଲ ହେବା ପରେ ମଧ ଦେହରେ ବଳ ନଥିଲା ମୋଗଲ ସାମ୍ରାଜ୍ୟ ସହିତ ଲଢ଼ିବାପାଇଁ। କେବଳଦୁର୍ଗ ଭିତରେ ରହି ନିଜ ରାଜ୍ୟର ଅନୁଶାସନ ବଳବତର କଲେ। ଔରଙ୍ଗଜେବ ମଧ ଶିଥିଳ ହୋଇଗଲେ। ଅନ୍ୟ ଜରୁରୀ କାମରେ ସବୁ ବ୍ୟସ୍ତ ରହି ଆଗ୍ରହ ଥାଇଁ ମଧ ଶିବାଜୀଙ୍କ ପାଇଁ ଶାନ୍ତ ମନୋଭାବ ନେଲେ। ସେତେବେଳେ ସମ୍ରାଟଙ୍କ ପାଇଁ ଦୁଇଟି କାର୍ଯ୍ୟ ଜରୁରୀ ଥିଲା– (୧) ଆଫଗାନ ଯୁଦ୍ଧ ଆଉ (୨) ରାଜପୁତ୍ର

ମୁଛାମଙ୍କର ଦାକ୍ଷିଣାତ୍ୟରେ ଗଭର୍ଣ୍ଣର ଭାବରେ ବିଦ୍ରୋହ। ଔରଙ୍ଗଜେବ ବିଶ୍ୱାସ କରୁଥିଲେ କି ଯଗୋବନ୍ତ ଓ ମୁଛାରାମ ଦୁହେଁ ମିଶି ଶିବାଜୀଙ୍କ ପାଖରୁ ଘୁଷ ନେଉଛନ୍ତି।

୧୬୬୭ରେ ଶିବାଜୀ ଔରଙ୍ଗଜେବଙ୍କୁ କ୍ଷମା ମାଗି ଏକ ଚିଠି ଲେଖିଲେ। ଲେଖିଥିଲେ କି ମୁଁ ଆଗ୍ରାରୁ ପଳାଇଆସିଲି କାରଣ ଜୀବନ ପ୍ରତି ମୋର ବିପଦ ଥିଲା। ଯଦି ମତେ ଆଦେଶ ମିଳନ୍ତା ତା'ହେଲେ ମୁଁ କାନ୍ଧାହାର ପୁର୍ନଦଖଲ କରି ପାରିବି। ଔରଙ୍ଗଜେବ ଶିବାଜୀଙ୍କ ସଂକ୍ରାନ୍ତରେ ଭାବିଲେ। ତାଙ୍କ ମାନସାବଦାର ବା ଦୁର୍ଗ ଦେବା ଉଚତ ହେବ ନାହିଁ। ଶିବାଜୀଙ୍କୁ ଯଦି ('ପ୍ରଧାନ' ପଦବୀ) ତାଙ୍କ ନିଜ ରାଜ୍ୟରେ ଦିଆଯାଏ ଓ ତାଙ୍କୁ ବିଜାପୁର ଅଞ୍ଚଳରୁ ଯେତେ ଜାଗାପାରିବେ ଅଧିକାର କରିନେବାପାଇଁ ଆଦେଶ ଦେଲେ ଉଚିତ ହେବ। ସେଥିପାଇଁ ଶିବାଜୀଙ୍କୁ 'ରାଜା' ପଦବୀରେ ଅଭିଷିକ୍ତ କଲେ।

ସେତେବେଳକୁ ଶିବାଜୀଙ୍କର କୌଣସି କାମ ପ୍ରତି ଇଚ୍ଛା ନ ରହିବାର ପ୍ରବୃତ୍ତି, ନିଜର ଦକ୍ଷତା ପ୍ରାୟ ଶେଷ ହୋଇଯାଇଥିଲା। ପ୍ରକୃତରେ ତାଙ୍କର କୌଣସି ପରିବର୍ତ୍ତନ ହୋଇ ନଥିଲା। ସେ ୧୬୬୭ରୁ ୧୬୭୦ ପର୍ଯ୍ୟନ୍ତ ଶକ୍ତି, ଦକ୍ଷତା ସଂଗ୍ରହ କରୁଥିଲେ ଆଉ ଯୋଜନାର ରୂପରେଖ ପ୍ରସ୍ତୁତ କରୁଥିଲେ। ୧୬୭୦ରେ ବିଜୟ ଅଭିଯାନ ଆରମ୍ଭ କଲେ। ବିଜାପୁରରେ ଆଲି ଆବଦଲି ସାହ ୨ୟ ଯୁଦ୍ଧରେ ନିଜର ପରକାଷ୍ଠା ଦେଖାଇଥିଲେ। ସେ ନିଜ ଜାଲରେ ନିଜେ ବାନ୍ଧି ହୋଇଯାଇଛନ୍ତି। ଜୟ ସିଂ ମୃତ। ରାଜପୁତ୍ର ମୁକାମ୍ ଦୁର୍ବଳ ଓ ଔରଙ୍ଗଜେବ ନିଜେ ଆଫଗାନମାନଙ୍କୁ ଦମନ କରିବାରେ ବ୍ୟସ୍ତ ରହି ଦାକ୍ଷିଣାତ୍ୟ ଉପରେ ନିଜର ଦେଇପାରୁନାହାନ୍ତି। ଦାକ୍ଷିଣାତ୍ୟରେ ସେନାବାହିନୀର ମଧ୍ୟ ଛଟେଇ କରିଦେଇଛନ୍ତି। ମୋଗଲସେନାରୁ ବିତାଡ଼ିତ ସୈନ୍ୟମାନଙ୍କୁ ଶିବାଜୀ ନିଜ ସେନାବାହିନୀରେ ନିଯୁକ୍ତି ଦେଇ ସାରିଛନ୍ତି। ଶିବାଜୀଙ୍କ ମତରେ ସେନାବାହିନୀ ପାଇଁ ଖର୍ଚ୍ଚ କରିବା ଉଚିତ ନୁହେଁ ବରଂ ସେମାନଙ୍କୁ ଲୁଣ୍ଠନ କାର୍ଯ୍ୟରେ ବ୍ୟସ୍ତ ରଖିବା ଉଚିତ। ମୋଗଲ ସେନାର ଏସବୁ ଦୁର୍ବଳତାର ସୁଯୋଗ ନେଲେ ଶିବାଜୀ। ଶିବାଜୀଙ୍କର ପ୍ରଥମ କାମ ହେଲା ମୋଗଲମାନଙ୍କୁ ବିନା ଯୁଦ୍ଧରେ ଜିତିବା। ସେ ଦୃଷ୍ଟିରୁ ସେ ପ୍ରଥମେ ମୋଗଲମାନଙ୍କୁ ଦେଇଦେଇଥିବା ଦୁର୍ଗସବୁ ଉଦ୍ଧାର କରିବାର କାର୍ଯ୍ୟରେ ବ୍ୟସ୍ତ ରହିଲେ। ପ୍ରଥମେ ସିଂଗଡ଼ ଓ ପୁରନ୍ଦର ଦୁର୍ଗ ହାତକୁ ନେଲେ। ପରେ ଅନ୍ୟ ଦୁର୍ଗମାନଙ୍କୁ ମଧ୍ୟ ଅଧିକାର କଲେ।

୧୬୭୦ରେ ଦ୍ୱିତୀୟବାର ସୁରଟ ଆକ୍ରମଣ କଲେ। ଇଉରୋପୀୟ ବ୍ୟବସାୟୀ ସଂସ୍ଥାକୁ ଛାଡ଼ି ୩ ଦିନ ଧରି ସେ ପ୍ରଥମେ ସୁରଟ ସହରକୁ ୩ ଭାଗରେ ବିଭକ୍ତ କଲେ। ୧୬୬୪ରେ ସୁରଟ ଛାଡ଼ିବା ପରଠାରୁ ସେ ସୁରଟରେ ପ୍ରବେଶ କରି ନଥିଲେ। କିନ୍ତୁ ଏଥର ମୋଗଲ ଅଫିସରମାନଙ୍କ ପାଇଁ ଏକ ଚିଠି ରଖି ଦେଇ ଆସିଲେ। ଯେଉଁମାନେ ବୁରାହନପୁରରୁ ଆସିଥିଲେ, ସେମାନଙ୍କ ଠାରୁ ବର୍ଷକୁ ୧.୭ ମିଲିଅନ ଟଙ୍କା ଦାବି କରିଥିଲେ। ୧୬୭୨ ପୁଣି ସେହି ଦାବି ଉପସ୍ଥାପନ କଲେ। ଏ ଦାବି ସେ ତୃତୀୟ ଥର ପାଇଁ କରୁଛନ୍ତି ବୋଲି କହିଲେ। ଆହୁରି ମଧ ଦାବି କଲେ ରାଜସ୍ୱର ଏକଚତୁର୍ଥାଂଶ। ସମ୍ରାଟ ସେଠାରେ ଏକ ସେନାବାହିନୀ ସେ ଦୁର୍ଗର ସୁରକ୍ଷାପାଇଁ ରଖିବାକୁ ବାଧ କରିଛନ୍ତି। ସେଥିପାଇଁ ସେ ସେନାବାହିନୀର ଖର୍ଚ୍ଚର ଦାୟିତ୍ୱ ସମ୍ରାଟଙ୍କର।

''ମତେ ଯଦି ଶୀଘ୍ର ଟଙ୍କା ନ ପଠାଉଛ ତା'ହେଲେ ମୋ'ପାଇଁ ସେଠାରେ ବଡ଼ ପ୍ରାସାଦ ଠିକ୍ କରି ରଖ। ଯାହାଫଳରେ ମୁଁ ସେ ପ୍ରାସାଦରେ ରହି ରାଜସ୍ୱ ଆଦାୟ କରିବି।'' ଏ ଥିଲା ଶିବାଜୀଙ୍କର ଏକ ଛଳନା। କାରଣ ଅନ୍ୟ ଜାଗାରେ କାମର ବ୍ୟସ୍ତତା ପାଇଁ ସେ ମୋଟେ ସୁରଟ ଯାଇପାରି ନଥାନ୍ତେ। ମରହଟ୍ଟା ସୈନିକମାନଙ୍କ ଦ୍ୱାରା ସୁରଟ ଚଢ଼ାଉ ହେଲା ଓ ସେଇଟା ଅନ୍ୟ ମୋଗଲ ରାଜ୍ୟକୁ ମଧ ବ୍ୟାପିଲା। ୧୬୭୦ତେର ଶିବାଜୀଙ୍କ ସେନା ଖନ୍ଦେଶରୁ ମଧ ଏକଚତୁର୍ଥାଂଶ ରାଜସ୍ୱ ଆଦାୟ କଲେ। ଆସ୍ତେ ଆସ୍ତେ ସେ ଜାଗାରୁ ମୋଗଲଶକ୍ତି ନିଶ୍ଚିହ୍ନ ହୋଇଗଲା। ଏଣେ ଦାକ୍ଷିଣାତ୍ୟ ଅବସ୍ଥାର ଅବନତି ଦେଖି ଔରଙ୍ଗଜେବ ଯଶୋୟନ୍ତ ସିଂ ଓ ମହବତ୍ ଖାଁଙ୍କ ୪୦,୦୦୦ ସୈନ୍ୟଦେଇ ମୁଜାୟମଙ୍କ ଅଧିନରେ କାମ କରିବାକୁ ପଠାଇଲେ। ୧୬୭୨ରେ ମୁଜାୟମ ଓ ମହବାତ୍ ଖାଁଙ୍କୁ ଫେରାଇ ଆଣି ବାହାଦୂର ଖାଁଙ୍କୁ ସେଠାର ଗଭର୍ଣ୍ଣର କରିଦେଲେ। କାମ ହେଲାମୋଗଲରାଜ୍ୟ ରକ୍ଷା କରିବା। ବାହାଦୂର ଖାଁଙ୍କ ସହ ଡିଲିର ଖାଁ ମେଳି ହୋଇ ଶିବାଜୀ ସେନାଙ୍କୁ ନଷ୍ଟ ଭ୍ରଷ୍ଟ କରିଦେଲେ।

ମୃତ୍ୟୁ ହେଲା ୧୬୭୨ରେ ଆଦିଲ ସାହଙ୍କର। ଆଉ ତାଙ୍କର ୫ ବର୍ଷର ପୁଅ ସିକନ୍ଦର ଅଲି ସାହା ବିଜାପୁର ରାଜଗାଦିରେ ବସିଲେ। ଶିବାଜୀ ବିଜାପୁର ଏ ଅବସ୍ଥାର ସୁଯୋଗ ନେଲେ। ଶିବାଜୀ ଆକ୍ରମଣ କରିବା ଆବଶ୍ୟକ। କିନ୍ତୁ ତା' ପୂର୍ବରୁ ମୋଗଲସେନା ଶିବାଜୀଙ୍କୁ ସମର୍ଥନ କରିବା ଉଚିତ। ସମ୍ରାଟଙ୍କ ସାହାଯ୍ୟ

ପାଇବା ମଧ୍ୟ ଦରକାର। ବାହାଦୂର ଖାଁ ଶିବାଜୀଙ୍କ କବଳରୁ ମୋଗଲରାଜ୍ୟ ରକ୍ଷା କରିବାକୁ ଚାହିଁଲେ। ୧୬୭୩ରେ ଶିବାଜୀ ପାନହାଲା ଅଧିକାର କଲେ। ପରେ ବଡ଼ ବ୍ୟବସାୟୀ ସହର ହୁବ୍‌ଲି ଅକ୍ତିଆରକୁ ନେଲେ। ସତାରା ସହିତ ଦୁର୍ଗ ପରେ ଦୁର୍ଗ ଅଧିକାର କଲେ। ପରେ ପରେ କରୱାର ଓ ଅନକୋଲ ଇତ୍ୟାଦି ଉପକୂଳବର୍ତ୍ତୀ ସହରସବୁ ହାତକୁ ନେଲେ।

ବର୍ତ୍ତମାନ ପୁରା ଦାକ୍ଷିଣାତ୍ୟ ତାଙ୍କ ଅଧୀନରେ। ରାଜ୍ୟର ବିଶାଳତା ନୁହେଁ କିନ୍ତୁ ତାଙ୍କ ଆକ୍ରମଣାତ୍ମକ ଶକ୍ତି ଉପରେ ନିର୍ଭର କରୁଥିଲା। ତାଙ୍କ ରାଜା ପଦବୀ ସତ୍ତ୍ୱେ ସେ ଯେ ଜଣେ ବିଦ୍ରୋହୀ ଏ ଚିନ୍ତା ତାଙ୍କୁ ବେଶି ଘାରୁଥିଲା। ମଧ୍ୟଯୁଗରେ ଭାରତରେ ଜଣେ ନୂଆ ରାଜ୍ୟ ପ୍ରତିଷ୍ଠାତା ଭାବରେ ସେ ଗଣାଯାଇ ନଥିଲେ। ମରହଟ୍ଟା ପ୍ରଧାନମାନଙ୍କ ମଧ୍ୟରେ ସେ ଥିଲେ ଜଣେ ଆଇନଗତ ହିନ୍ଦୁ ମହାରାଜା।

ଶିବାଜୀ ଥିଲେ ଶୁଦ୍ର। ହିନ୍ଦୁ ପରମ୍ପରା ଅନୁଯାୟୀ କେବଳ କ୍ଷତ୍ରିୟମାନେ ରାଜା ହେବାର ଯୋଗ୍ୟ। ତେବେ ହିନ୍ଦୁ ସମାଜରେ କୋହଳ ନୀତି ମଧ୍ୟ ଅବଲମ୍ବନ କରାଯାଉଥିଲା। ହିନ୍ଦୁ ସମାଜ ଦେଖିଲା କି ସେ ସିସୋଡିଆ ବଂଶଜ। ମେୱାର ସୂର୍ଯ୍ୟ ବଂଶଜ– ରାମଙ୍କ ବଂଶଧର। ଗଙ୍ଗା ଭଟ୍ଟ କହିଲେ ଶିବାଜୀ ତାଙ୍କ ବାହୁବଳରେ, ବୁଦ୍ଧିବଳରେ ନିଜକୁ କ୍ଷତ୍ରିୟ ବୋଲି ପରିଚୟ ଦେଇଛନ୍ତି। ଗଙ୍ଗା ଭଟ୍ଟ ଶିବାଜୀଙ୍କ ରାଜାଭିଷେକର ମୁଖ୍ୟ ପୁରୋହିତ। ସେ କେବଳ ଜଣେ ନୂଆ ରାଜା ନଥିଲେ, ଗୋଟେ ନୂଆରାଜ୍ୟର ପ୍ରତିଷ୍ଠାତା ଓ ନୂଆ ବଂଶର ରାଜା ବୋଲି ଗଣା ହେଲା। ଏ ରାଜଭିଷେକ ମାସ ମାସ ଧରି ଚାଲିଲା। ଭାରତର ଚାରିଆଡୁ ବ୍ରାହ୍ମଣମାନେ ଆସିଲେ ସେମାନଙ୍କର ପରିବାରବର୍ଗଙ୍କ ସହ। ୪ ମାସ ଧରି ୫୦,୦୦୦ ଲୋକଙ୍କର ରହିବା, ଖାଇବା ବନ୍ଦୋବସ୍ତ ହୋଇଥିଲା। ସତରଶ ଶତାବ୍ଦୀର ଏପରି ହିନ୍ଦୁ ରାଜାଭିଷେକ କ୍ୱଚିତ୍ ଦେଖାଦେଇଥିଲା।

୧୬୭୪ ଜୁନ ୧୬ ତାରିଖ– ଏ ରାଜ୍ୟ ଅଭିଷେକ ହେଲା। ପୋଷାକରେ ଖଞ୍ଜା ହେଲା ସୁନାରୂପାର ଅଳଙ୍କାର। ସୁନାରୂପା ଖଚିତ ସୁସଜ୍ଜିତ ମଣ୍ଡପ ମଧ୍ୟ। ଆଖ୍ୟା ଦିଆଗଲା ଛତ୍ରପତି। ରାଜାଭିଷେକ ପରେ ଷୋଡଶ ଉପଚାର ଦାନ (ମହାଦାନ) ମଧ୍ୟ ଦିଆଗଲା। ଜିବୀତ ଥିଲେ ମାତା ଜିଜିବାଈ ପୁତ୍ରଙ୍କର ଏପ୍ରକାର ମୁକସାକ୍ଷୀ ହୋଇ ଦେଖିଲେ ଏ ଉପାଧିର ଭୂଷଣ। ଅବଶ୍ୟ କିଛିଦିନ ପରେ ତାଙ୍କର ମୃତ୍ୟୁ ଘଟିଲା। ରାଜାଭିଷେକ ସମୟକୁ ଶିବାଜୀଙ୍କୁ ହୋଇଥିଲା ୪୭ ବର୍ଷ। ତାଙ୍କ

ସ୍ଫୁର୍ତ୍ତି ଓ ମନୁଷ୍ୟତା ତାଙ୍କ ଚେହେରାରୁ ଦୃଶ୍ୟମାନ ହେଉଥିଲା– ତାଙ୍କୁ ନ ଜାଣିବା ଲୋକ ଏ କଥାରେ ବିଶ୍ୱାସ ରଖିଥିଲା।

୧୬୬୪ରେ ଶିବାଜୀଙ୍କୁ ଦେଖି ଜଣେ କିଏ କହିଥିଲେ କି ତାଙ୍କ ଚେହେରାର ସବୁଠୁ ବଡ଼ ଓ ପ୍ରତୀୟମାନ ଅଂଶ ହେଲା ତାଙ୍କ ଆଖି– ମର୍ମଭେଦୀ ଓ ପ୍ରାଣବନ୍ତ। ସେଇ ଆଖି ଶିବାଜୀଙ୍କର ଗେଡ଼ା ଚେହେରା ସତ୍ତ୍ୱେ ଅନେକ କଥା କୁହେ। ତାଙ୍କର ଦୁର୍ବଳ ଶରୀର ସତ୍ତ୍ୱେ ବି ମନର ତିବ୍ରତା ଅନେକ ଦକ୍ଷତାର ପରିଚୟ ଦିଏ। ତାଙ୍କ କଥାର ମୂଲ୍ୟ ନେକ ବେଶି ଆଉ ସତ୍ୟ ଉପରେ ଆଧାରିତ ତାଙ୍କର କେହି ରକ୍ଷିତା ନଥିଲେ। ସ୍ତ୍ରୀ ଲୋକଙ୍କୁ ସମ୍ମାନ ଦିଅନ୍ତି। ଚାରିଜଣ ସ୍ତ୍ରୀ ମଧ୍ୟରୁ ମୁସଲମାନ ମଧ୍ୟ ଥିଲେ। ତାଙ୍କ ସେନା ଛାଉଣୀରେ କୌଣସି ସ୍ତ୍ରୀଲୋକଙ୍କର ପ୍ରବେଶ ନଥିଲା। ନାରୀମାନଙ୍କ ପ୍ରତି ଇଜ୍ଜତ ଥିଲା। ଲୁଣ୍ଠନ, ଛତଭଙ୍ଗ ସତ୍ତ୍ୱେ କୌଣସି ବେଇଜ୍ଜତ କାମ କରିବାର ଆଗ୍ରହ ନଥିଲା। ଏସବୁ ଗୁଣର ଅଧିକାରୀ ହେବା ପଛରେ ମା'ଙ୍କର ଅବଦାନ ଯଥେଷ୍ଟ ଥିଲା। ଧର୍ମପ୍ରତି, ନୀତିଗଣ ଆଦର୍ଶ ପ୍ରତି ଆଗ୍ରହ ତାଙ୍କୁ ଦେଇପାରିଥିଲେ। ମହାଭାରତ ଓ ରାମାୟଣରେ ବୀରତ୍ୱରକାହାଣୀ ସବୁ ପଢ଼ି, ସୈନ୍ୟମାନଙ୍କ ମନରେ ବୀରତ୍ୱର ଚେତନା ଜଗାଇବାପାଇଁ ସେ ଯୁଦ୍ଧ-ଅଧ୍ୟାୟ ସବୁ ସେମାନଙ୍କୁ ଶୁଣାଉଥିଲେ। ସେ ହିନ୍ଦୁ ଥିଲେ ଏଥିରେ ଦ୍ୱିମତ ନାହିଁ। କିନ୍ତୁ ଅନ୍ୟ ଧର୍ମର ବିଶ୍ୱାସ ଉପରେ ଆଘାତ ଆଣୁ ନଥିଲେ। ଅନ୍ଧ ସମର୍ଥନ ନ ଥିଲା ଧର୍ମପ୍ରତି, ଏଣେ ଆତ୍ମବିଶ୍ୱାସ ମଧ୍ୟ ନଥିଲା। ସେନାବାହିନୀରେ ଅନେକ ମୁସଲମାନ ସୈନିକ ଥିଲେ। ରାୟଗଡ଼ଠାରେ ତାଙ୍କ ପ୍ରାସାଦ ନିକଟରେ ଏକ ମସଜିଦ୍ ମଧ୍ୟ ତୋଳାଇଥିଲେ। କୌଣସି ଏକ ମୁସଲମାନ ତୀର୍ଥସ୍ଥଳରେ ଲୁଣ୍ଠନ କଲାବେଳେ ତାଙ୍କ ହାତ ଉପରେ କୋରାନ ପୁସ୍ତକ ପଡ଼ିଗଲା। ସେ ତାକୁ ଯତ୍ନର ସହିତ ସାଇତି ରଖି ଜଣେ ମୁସଲମାନଙ୍କୁ ଦେଇଥିଲେ। ଖ୍ରୀଷ୍ଟିୟାନ ପାଦ୍ରୀଙ୍କ ପାଇଁ ମଧ୍ୟ ଯଥେଷ୍ଟ ସମ୍ମାନ ଥିଲା। ତାଙ୍କ ଧୀଶକ୍ତି ଐଶ୍ୱରିକ। ମୋଗଲମାନେ ବିଶ୍ୱାସ କରନ୍ତି କି ଶିବାଜୀ ଏକ ଯାଦୁଗର। ସେ ୪୦ ବା ୫୦ଗଜ ବେଗରେ ଯାଇଁ ଶତ୍ରୁ ଆକ୍ରମଣ କରିପାରିବେ। ନିଜର ଯୋଜନା, କାର୍ଯ୍ୟକାରିତା ପାଇଁ ସେ ସବୁବେଳେ ଧୈର୍ଯ୍ୟ ଦେଇ ଅପେକ୍ଷା କରନ୍ତି। ଶଠତା, ବଞ୍ଚଳତା ତାଙ୍କ ଯୋଜନାର ଏକ ଅଙ୍ଗ। ସମସ୍ୟାର ସମାଧାନ କରିବା ଆଉ ଅବସ୍ଥାର ଉନ୍ନତି କରିବାପାଇଁ ତାଙ୍କର ଦୂରଦୃଷ୍ଟି ଥିଲା। ଶିବାଜୀଙ୍କ କାର୍ଯ୍ୟପନ୍ଥା ଲକ୍ଷ୍ୟ ହାସଲ ଉପରେ ଅଧିକ ନିର୍ଭର କରୁଥିଲା। ଶାହାଜାହାଁଙ୍କ ସହିତ

ସଂଘର୍ଷ ନ ଘଟିଥିଲେ ସେ ଅହମଦାନଗରର ମୁକୁଟହୀନ ରାଜା ହୋଇ ବସିଥାନ୍ତେ ଆଉ ଔରଙ୍ଗଜେବ ଯଦି ନିଜେ ଦାକ୍ଷିଣାତ୍ୟ ଆସିଥାନ୍ତେ, ତା'ହେଲେ ଶିବାଜୀଙ୍କର ଏତେ ଉନ୍ନତି ସମ୍ଭବ ହୋଇପାରିନଥାନ୍ତା। ତିନୋଟି ବୃତ୍ତ ଉପରେ ତାଙ୍କ ଉନ୍ନତି ନିର୍ଭର କରିଥିଲା।

ପ୍ରଥମ ବୃତ୍ତ- କୌଣସି ଲୋକ ଉପରେ ଅତ୍ୟାଚାର କରି ତାର ଧନସଂପତ୍ତି ଲୁଟିନେବା ଉଚିତ ନୁହେଁ।

ଦ୍ୱିତୀୟ ବୃତ୍ତ- ଯେଉଁ ଲୋକମାନେ ଲୁଣ୍ଠନବେଳେ ଧରା ହୋଇ ବନ୍ଦୀ ହେଉଥିଲେ ସେମାନଙ୍କ ଦେଖାଚାହାଁପାଇଁ ରାଜସ୍ୱରୁ ଏକ ଚତୁର୍ଥାଂଶ ଖର୍ଚ୍ଚ କରୁଥିଲେ। ୧୦ ଭାଗରୁ ଭାଗେ ସେନାପତିମାନଙ୍କର ଚଳଣି ପାଇଁ।

ତୃତୀୟ ବୃତ୍ତ- ନିଜର ଅଧିକୃତ ଭୂସଂପତ୍ତି। ତାରି ଉପରେ ଲୁଣ୍ଠନ ଜାରିରଖିଥିଲେ। ସୁରଟରେ ଇଂରେଜ ବ୍ୟବସାୟୀଙ୍କୁ ଲୁଣ୍ଠନ କରିବାର ସାହସ କରି ନଥିଲେ କାରଣ ତାଙ୍କ ପାଖରେ ତୋପ କମାଣ ଥିଲା। ତଦ୍ରୂପ ଗୋଆ ବ୍ୟବସାୟୀଙ୍କୁ ମଧ୍ୟ ଲୁଣ୍ଠନ କରିବାକୁ ସାହସ ପାଉ ନଥିଲେ। ମହାରାଷ୍ଟ୍ରରେ ଅକ୍ଟୋବରର ମେ' ପର୍ଯ୍ୟନ୍ତ ହିନ୍ଦୁମାନଙ୍କର ଉତ୍ସବ ଚାଲେ। ଦଶହରା ଉତ୍ସବ ମଧ୍ୟ। ଦଶହରା ଉତ୍ସବର ମୂଳମନ୍ତ୍ର ହେଲା– ମନ୍ଦ ଉପରେ ଭଲର ପ୍ରଭାବ। ସେତିକିବେଳେ ସେନାଛାଉଣୀର ସର୍ଭେ କରାଯାଏ ଆଉ ତା' ପରେ ସେମାନେ ହରହର ମହାଦେବ ଉଚ୍ଚାରଣ କରି ଯୁଦ୍ଧପାଇଁ ଆଗେଇଯାନ୍ତି। ପଦାତିକ ଥିଲେ ଅଧିକ। ଘୋଡାସବାର ବୃଦ୍ଧି କଲେ। ବିଦେଶୀ ଜାହାଜ ସବୁ ଲୁଣ୍ଠନ କଲେ। ନିଜ ଦୁର୍ଗର ରକ୍ଷଣାବେକ୍ଷଣ ପାଇଁ କଡା ନଜର। ଅବସରପ୍ରାପ୍ତ ଉଚ୍ଚପଦବୀ କ୍ୟାପଟେନ ମାନେ ଦୁର୍ଗରକ୍ଷା ଦାୟିତ୍ୱରେ ଥିଲେ। ରାଜଦ୍ରୋହ ନ ହେବାପାଇଁ ମଧ୍ୟ ତାଙ୍କର ନଜର ଥିଲା। ଉଚ୍ଛେଦ କଲେ ଜାଗିର ପ୍ରଥା। ତାଙ୍କ ମତରେ କେନ୍ଦ୍ର ଶାସନକୁ ଏହା ଦୁର୍ବଳ କରେ। ଦେବୋତ୍ତର ସଂପତ୍ତିକୁ ମଧ୍ୟ ଅନୁଗ୍ରହ ପ୍ରଦାନ କରୁଥିଲେ। ମନ୍ଦିର ମାନଙ୍କ ତତ୍ତ୍ୱାବଧାନପାଇଁ ମଧ୍ୟ ଯତ୍ନଶୀଳ ଥିଲେ।

ପର୍ଶିୟାନ ଭାଷା ବଦଳରେ ମରାଠି ଭାଷା ବ୍ୟବହାର କଲେ। ସଂସ୍କୃତ ଭାଷଡାର (ଦରବାରପାଇଁ) ଏକ ଅଭିଧାନ ତିଆରି କଲେ। ନାଁ ରଖିଲେ ରାଜ-ବ୍ୟବହାର-କୋଷ। ପେଶଓ୍ୱାଙ୍କ ମଧ୍ୟରେ ଅଷ୍ଟ ପ୍ରଧାନ ତଥ୍ୟ ପ୍ରତ୍ୟେକ ହିନ୍ଦୁ ଅନୁଷ୍ଠାନମାନଙ୍କରେ ଚାଲୁ ରଖିଲେ। ରାଜସ୍ୱ ପ୍ରଥା ନିର୍ଭର କଥା ପ୍ରଜାମାନଙ୍କର

ଆମଦାନୀ ଉପରେ । ଶିବାଜୀଙ୍କ ଶକ୍ତି ଓ କ୍ଷମତା ବଢ଼ି ଚାଲିଲାବେଳେ ଔରଙ୍ଗଜେବ ତାଙ୍କ ଉପରେ କୌଣସି ଶକ୍ତି ପ୍ରଦର୍ଶନ କରୁ ନଥିଲେ । ଶିବାଜୀଙ୍କ ରାଜାଭିଷେକ ବେଳରେ ମଧ୍ୟ ସେ କୌଣସି ବିରୁଦ୍ଧ ଯୋଜନା କରି ନଥିଲେ । ୧୬୭୭ରେ ଗୋଲକୋଣ୍ଡା ସୁଲତାନ ଶିବାଜୀଙ୍କୁ ରାଜ୍ୟର ଅତିଥି ଭାବରେ ଗ୍ରହଣ କଲେ । ଦୁଇଜଣଙ୍କ ମଧ୍ୟରେ ଉତ୍ତମ ପରିବେଶରେ କଥାବାର୍ତ୍ତା ଚାଲିଲା । ମୋଗଲ ବିରୁଦ୍ଧରେ ଅଭିଯାନପାଇଁ ମିଳିତ ଅଭିଯାନ ପାଇଁ ବ୍ୟବସ୍ଥା ହେଲା । ଗୋଲକୋଣ୍ଡା ଦେବ ଟ.୩,୦୦,୦୦୦ ବଦଳରେ ବର୍ଷକୁ ୧,୦୦,୦୦୦ ହନ୍‌ସ୍ (ଦାକ୍ଷିଣାତ୍ୟର ସ୍ୱର୍ଣ୍ଣମୁଦ୍ରା) ନେବେ ବୋଲି ରାଜିହେଲେ । ହାଇଦ୍ରାବାଦରେ କିଛିଦିନ ରହିବା ପରେ ଶିବାଜୀ ଥାନା ଜାଭୁଲ, ଇକୋଜୀଙ୍କ ରାଜଧାନୀ ଆକ୍ରମଣ କଲେ । ଆକ୍ରମଣ ନାଁ ଶୁଣି ଇକୋଜୀ ପଳାୟନ କଲେ । ଇକୋଜୀଙ୍କ ପ୍ରତିରକ୍ଷାର ପ୍ରତିଶ୍ରୁତି ଦେଲେ ଚାରିଭାଗରୁ ଭାଗେ ରାଜସ୍ୱ ଓ ଶାହାଜୀଙ୍କ ଅର୍ଥକୋଷ ମଧ୍ୟ ଭାଗ କରିବାକୁ ରାଜି ହୋଇଗଲେ ।

ଶିବାଜୀଙ୍କ କର୍ଣ୍ଣାଟକ ଅଭିଯାନ ଏକ ନୂଆ ମୋଡ଼ ନେଲା । ୧୬୭୮ରେ ବର୍ଷାଋତୁ ଆସିବା ପୂର୍ବରୁ ରାୟଗଡ଼ ଫେରିଆସିଲେ । ସେତିକିବେଳେ ଜିଲିର ଖାଁଙ୍କ ନେତୃତ୍ୱରେ ବିଜାପୁର ଦଖଲ କରିବାକୁ ଆଗେଇ ଆସିଲେ । ବିଜାପୁର ରିଜେଣ୍ଟ ମାମୁଦ୍ ଖାଁ ଶିବାଜୀଙ୍କୁ ସାହାଯ୍ୟ ମାଗିଲେ । ସାହାଯ୍ୟ ଦେବାପାଇଁ ବାହାରିଲେ ଶିବାଜୀ । ଲୁଣ୍ଠନ କଲେ ବିଜାପୁର । ଲୁଣ୍ଠନ ଦ୍ରବ୍ୟ ନେଇ ଫେରିବାବେଳକୁ ବାଟରେ ମୋଗଲ ସେନା ସହ ଯୁଦ୍ଧ ହେଲା । ଯୁଦ୍ଧରେ ଲୁଣ୍ଠନ ଦ୍ରବ୍ୟ ସହ ୪୦୦୦ ସୈନ୍ୟ ହରାଇଲେ ଶିବାଜୀ । ସେ ସମୟକୁ ପୁତ୍ର ଶମ୍ଭୁଜୀ ପାନହାରା ଦୁର୍ଗରେ ରାଜବନ୍ଦୀ ଥିଲେ । ସେ ବ୍ରାହ୍ମ କନ୍ୟା ବିବାହ କରିଥିବା ଦୋଷରେ ସେଠି ରାଜବନ୍ଦୀ ଥିଲେ । ପରେ ପରେ ମୋଗଲମାନଙ୍କ ସହ ମିଶିଯାଇଥିଲେ । ଏ ସମୟକୁ ସେ ଶିବାଜୀଙ୍କ ପାଖକୁ ଫେରିଲେ । ପରେ ସାନପୁତ୍ର ରାଜାରାମର ରାୟଗଡ଼ଠାରେ ବ୍ରତୋପନୟନ କରାଇଲେ । ପରେ ପରେ ବେମାର ପଡ଼ିଲେ । ଅମୀର ଓ ନୋବେଲମାନଙ୍କୁ ଉପଯୁକ୍ତ ଉପଦେଶ ଦେଇ ବିଦାୟ ନେଲେ । ଏପ୍ରିଲ ୨ ତାରିଖ ୧୬୮୦ରେ ୫୩ ବର୍ଷ ବୟସରେ ଶିବାଜୀ ଇହଲୀଳା ସମ୍ବରଣ କଲେ । ଢଳିଲା ମରହଟ୍ଟା ଶାସନ- ବ୍ରାହ୍ମଣମାନଙ୍କ ପରାମର୍ଶକ୍ରମେ ଶମ୍ଭୁଜୀ ରାଜଗାଦି ଆରୋହଣ କଲେ । ଅର୍ଥମନ୍ତ୍ରୀ ଆନ୍ନାଜୀ ଓ ରାଜାରାମଙ୍କ ମା'ଙ୍କ ଷଡ଼ଯନ୍ତ୍ର ଫଳରେ ରାଜାରାମଙ୍କୁ ଶମ୍ଭୁଜୀଙ୍କୁ

କିଛି ନ ଜଣାଇ ରାଜଗାଦିରେ ବସାଇଲେ। ଏ ଷଡଯନ୍ତର ଖବର ପାଇ ଶମ୍ଭୁଜୀ ଅତିଶୀଘ୍ର ରାୟଗଡ଼ରେ ପହଞ୍ଚିଲେ। ଷଡ଼ଯନ୍ତ କାର୍ଯ୍ୟକାରୀ ହୋଇପାରିଲା ନାହିଁ। ମନ୍ତ୍ରୀମଣ୍ଡଳ ଓ ଅନ୍ୟାନ୍ୟ ପ୍ରମୁଖମାନଙ୍କ ସାହାଯ୍ୟରେ ଶମ୍ଭୁଜୀ ୨୮ ଜୁଲାଇ ୧୭୮୦ରେ ରାଜଗାଦିରେ ବସିଲେ। ଶମ୍ଭୁଜୀଙ୍କ ରାଜାରୋହଣ ପରେ ଅନେକ ଆଗତ ସଂକଟ ଦେଖାଦେବାର ସୂଚନା ମିଳିଲା। ଏସବୁ ବିପଦକୁ ହଟାଇବାପାଇଁ ଶମ୍ଭୁଜୀ ନିଜ ମା'ଙ୍କ ସହିତ ସବୁ ବିଦ୍ରୋହୀମାନଙ୍କୁ ବନ୍ଦୀ କଲେ। ରାଜାରାମଙ୍କୁ ମଧ୍ୟ। ପରେ ପରେ ଖଣ୍ଡେସ, ବାରାହାନପୁର ଅଞ୍ଚଳ ସବୁ ଲୁଣ୍ଠନ କରିବା ଆରମ୍ଭ କଲେ। ଶମ୍ଭୁଜୀ ଶିବାଜୀଙ୍କ ଠାରୁ ଅରାଜକତା କରେଇବାରେ ଦଶଗୁଣ ଅଧିକ। ସ୍ତ୍ରୀ ହରଣ, ଅତ୍ୟାଚାର, ମଦ୍ୟପାନ ତାଙ୍କ ଚରିତ୍ରର ଏକ ଅଂଶ। ବନାରସର କବି କୈଳାସ ତାଙ୍କ ରାଜପୁରୋହିତ। ସେ ହିଁ ଶମ୍ଭୁଜୀଙ୍କୁ ପଳାୟନ କରିବାରେ ସାହାଯ୍ୟ କରିଥିଲେ। ରାୟଗଡ଼କୁ ତାଙ୍କୁ ଅଣାଇବାରେ ମଧ୍ୟ ସେ ହିଁ ସେ ସାହାଯ୍ୟ କରିଥିଲେ। ସେ ଜଣେ କବି ଓ ପଣ୍ଡିତ। ହେଲେବି ଜଣେ ତାନ୍ତ୍ରିକ ମଧ୍ୟ। ଆଉ ଗୁପ୍ତ ରହସ୍ୟକୁ ପ୍ରକଟ କରିବାରେ ସିଦ୍ଧହସ୍ତ। ସର୍ବଦା ଏକ ଭୌତିକ ଦମ୍ପତି ସହିତ ସଂପର୍କ ରଖିପାରୁଥିଲେ। ଶିବାଜୀ ନିଜେ ଲୁଣ୍ଠନ କରିବାର ଯୋଜନା ନିୟମ, କାନୁନ୍‌ର ଆଶ୍ରୟ ସେ କବି କୈଳାସଙ୍କ ପାଖରୁ ନେଉଥିଲେ।

କିନ୍ତୁ ଶମ୍ଭୁଜୀଙ୍କର ଏସବୁ ନୀତି, ନିୟମ ବା ଯୋଜନା ପ୍ରଭତିରେ ବିଶ୍ୱାସ ନଥିଲା। ୧୬୮୨ରେ ଅମ୍ବର ରାଜା ରାଜାଜୟସିଂଙ୍କ ପୁତ୍ର ରାଜା ରାମସିଂଙ୍କୁ ଔରଙ୍ଗଜେବ ବିରୁଦ୍ଧରେ ଷଡ଼ଯନ୍ତ ଓ ଧର୍ମ ଲଢ଼େଇର ଆୟୋଜନ କରିବାପାଇଁ ଏକ ଚିଠି ଲେଖିଲେ। ଶମ୍ଭୁଜୀଙ୍କ ସୈନ୍ୟବାହିନୀ ଇତଃସ୍ତତଃ ଓ ଅନିୟନ୍ତ୍ରିତ। ସୈନିକ, ସେନାବାହିନୀ ଉପରେ ଯୁଦ୍ଧଭାର ନ୍ୟସ୍ତ ଥାଏ। ସେ ନିଜର ବିତ୍ତ ବା ବୁଦ୍ଧିମତା ସବୁ ନାରୀ ଓ ମଦ୍ୟପାନରେ ମନୋନିବେଶ କରୁଥିଲେ। ଶମ୍ଭୁଜୀ ରାଜଗାଦିସୀନ ହେବାପରେ ଦୁର୍ଗାଦାସ ଓ ଔରଙ୍ଗଜେବଙ୍କ ବିଦ୍ରୋହୀ ପୁତ୍ର ଆକବର ମହାରାଷ୍ଟ୍ର ଆସିଥିଲେ। ମରହଟ୍ଟାମାନେ ଏମାନଙ୍କ ସହ ମିଶି ଔରଙ୍ଗଜେବଙ୍କ ବିରୁଦ୍ଧରେ ଲଢ଼ିବାପାଇଁ ମିଶିଗଲେ।

ଶମ୍ଭୁଜୀ ପଡ଼ିଲେ ବିପଦରେ। ଅନ୍ନାଜୀଙ୍କୁ ସେ ପ୍ରଥମରେ ବନ୍ଦୀକରି ପରେ ମୁକ୍ତ କରି ଦେଇଥିଲେ, ତାଙ୍କୁ ବିଷଦେଇ ମାରିବାପାଇଁ ଯୋଜନା କରିଥିଲେ। ଯୋଜନା ବିଫଳ ହେଲା। ଧରାପଡ଼ିଲେ ସେ ଦଳ। କେତେକଙ୍କୁ ବିଷଦେଇ ଓ ଆଉ କେତେକଙ୍କୁ ହାତୀ ପାହୁଣ୍ଡ ତଳେ ଚାପି ମାରିଦିଆଗଲା।

୧୬୮୮ରେ ରାଜପୁତ୍ର ଆକବରଙ୍କୁ ଫେରାଇନେବା ଉଦ୍ଦେଶ୍ୟରେ ଔରଙ୍ଗଜେବ ବିଜାପୁର ଓ ଗୋଲକୋଣ୍ଡରେ ପହଞ୍ଚିଲେ। ମରହଟ୍ଟାମାନଙ୍କୁ କବଳିତ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା। ଔରଙ୍ଗଜେବଙ୍କୁ ଆକ୍ରମଣ କଲେ। ୧୬୮୯ ଅକ୍ଟୋବର ୧୧ ତାରିଖରେ ଗୋଲକୋଣ୍ଡା ପତନର ବର୍ଷପରେ ମୋଗଲମାନେ ଶମ୍ଭୁଜୀଙ୍କୁ ଗିରଫ କଲେ। ସଂଗମଶ୍ୱରରେ ପାର୍ବତ୍ୟଘେରା ପ୍ରଦେଶରେ କବି କୈଳାସ ଓ ଶମ୍ଭୁଜୀଙ୍କୁ ଗିରଫ କଲେ। ବେକ୍‌ରେ ବାନ୍ଧି ରାଜରାସ୍ତାରେ ନେଲେ। ଦୁଇ ବନ୍ଦୀଙ୍କୁ ବାହାଦୂର ଗଡ଼ ଦରବାରରେ ଔରଙ୍ଗଜେବଙ୍କୁ ଚେନରେ ବନ୍ଧାଥିବା ଅବସ୍ଥାରେ ଦେଖାଇଲେ। ପ୍ରଶ୍ନ ହେଲା ଶମ୍ଭୁଜୀଙ୍କୁ କ'ଣ କରାଯିବ? ଔରଙ୍ଗଜେବଙ୍କ ପରାମର୍ଶଦାତାମାନେ କହିଲେ ଶମ୍ଭୁଜୀଙ୍କ ଜୀବନ ରକ୍ଷା କରାଯାଉ। କାରଣ ସେ ଦୁର୍ଗ ସମର୍ପଣ କରି ଗୁପ୍ତଧନର ସଂଧାନ ଦେବେ। ଶମ୍ଭୁଜୀ ଓ କବି କୈଳାସ ଏହାକୁ ଅଗ୍ରାହ୍ୟ କଲେ। କାରଣ ସେମାନେ ଜାଣିଥିଲେ କି ଜୀବନ ପାଇଲେ ମଧ୍ୟ ତାଙ୍କୁ ସାରାଜୀବନ ବନ୍ଦୀ ଭାବରେ କଟାଇବାକୁ ହିଁ ପଡ଼ିବ। ଗାଳି ଗୁଲଜ ଆରମ୍ଭ କଲେ। ଔରଙ୍ଗଜେବ ଆଖି ତାଡ଼ି ଜିଭ କାଟିବାକୁ ଆଦେଶଦେଲେ। ୨୧ ମାର୍ଚ୍ଚ ୧୬୮୯ରେ ସେମାନଙ୍କୁ ମାରି ଦିଆଗଲା। ଦେହର ସବୁ ଅଙ୍ଗକୁ ଖଣ୍ଡ ଖଣ୍ଡ କରି କାଟି ଦାକ୍ଷିଣାତ୍ୟରେ ଡ୍ରମ ବଜାଇ ଗଳି ଗଳି ବୁଲାଇ ଦିଆଗଲା।

ମରହଟ୍ଟା ଗ୍ରନ୍ଥରେ ଲେଖାଅଛି କି ଶମ୍ଭୁଜୀ ଯଦି ମୁସଲମାନ ଧର୍ମ ଗ୍ରହଣ କରନ୍ତି ତା' ହେଲେ ତାଙ୍କୁ ମୃତ୍ୟୁଦଣ୍ଡ ଦିଆହେବ ନାହିଁ। ଉତ୍ତରରେ ଶମ୍ଭୁଜୀ କହିଲେ ଯଦି ଔରଙ୍ଗଜେବ ତାଙ୍କ ଝିଅକୁ ମୋ' ସହିତ ବିବାହ ଦିଅନ୍ତି ତା' ହେଲେ ମୁଁ ମୁସଲମାନ ଧର୍ମ ଗ୍ରହଣ କରିବି। ରାଜାରାମ ଜୀବନ ମଧ୍ୟ ବିପଦ ସଂକୁଳ। ପ୍ରହ୍ଲାଦ ନିରାଜୀ ନାମରେ ଜଣେ ଉଚ୍ଚପଦସ୍ଥ ମରହଟ୍ଟା ନୋବେଲ ଔରଙ୍ଗଜେବଙ୍କ କଡ଼ା ନଜର ସତ୍ତ୍ୱେ ରାଜାରାମଙ୍କୁ ଲୁଚେଇ ସିଞ୍ଜି ନେଇଆସିଲେ। ୧୬୮୯, ୧୧ ନଭେମ୍ବରରେ ଅମ୍ବିକା ବାଇ ସିଞ୍ଜି ଦୁର୍ଗରୁ ତାଙ୍କୁ ଉଦ୍ଧାର କଲେ। ୧୬୮୯ରେ ମୋଗଲମାନେ ରାୟଗଡ ଅଧିକାର କଲେ। ଶମ୍ଭୁଜୀଙ୍କ ପୁତ୍ର ଓ ସ୍ତ୍ରୀ ଯାସୁ ବାଈଙ୍କୁ ବନ୍ଦୀ କଲେ। ହେଲେ ବି ଭଲ ବ୍ୟବହାର ଦେଖାଇଲେ। ସାହାୟୁଙ୍କୁ ରାଜ୍ୟପଦବୀ ଦେଲେ। ପ୍ରହଲ୍ଲାଦ ରାଜାରାମଙ୍କୁ ସିଞ୍ଜିରେ ରାଜା କରାଇଲେ। ହେଲେ ନାମକୁ ମାତ୍ର ରାଜା କରି ନିଜ ମନ ଅନୁସାରେ ରାଜ୍ୟ ଚଳାଇଲେ।

## ଔରଙ୍ଗଜେବ ଓ ମରହଟ୍ଟାଙ୍କ ପରେ ଅନ୍ୟାନ୍ୟ ଅନେକ ଛୋଟବଡ଼ ଘଟଣା—ଜଫରଙ୍କ ପର୍ଯ୍ୟନ୍ତ

### ରାଫିଜୀ-କୁଶ

ଔରଙ୍ଗଜେବଙ୍କ ୨୩ ବର୍ଷ ରାଜୁତି ଭିତରେ ସେ ଦାକ୍ଷିଣାତ୍ୟ ଉପରେ ନଜର ଦେଇ ପାରିନଥିଲେ। ଦାକ୍ଷିଣାତ୍ୟର ସୁଲତାନ ମାନେ ତାଙ୍କୁ ଲୋପ କରିଦେବାର ଯୋଜନାରେ ଥିଲେ। ଅଲି ଆଦିଲ ସାହା-୨ୟ ବିଜାପୁରର ସୁଲତାନ ଥିବାବେଳେ ଔରଙ୍ଗଜେବଙ୍କ ରାଜଗାଦିରେ ବସିବାବେଳେ ଅନେକ ଉପହାର ପଠାଇଥିଲେ। ସାୟସ୍ତ ଖାଁ ଓ ଜଲିଲ ସିଂ ଶିବାଜୀଙ୍କ ବିରୁଦ୍ଧରେ ଅଭିଯାନ ପାଇଁ ମଧ୍ୟ ଅନେକ ସାହାଯ୍ୟ କରିଥିଲେ। ସେପାଖେ ଗୁପ୍ତଭାବରେ ମୋଗଲମାନଙ୍କୁ ଆଗେଇବାରେ ବାଧା ଦେବାକୁ ମରହଟ୍ଟାମାନଙ୍କୁ ପ୍ରବର୍ତ୍ତାଇଲେ। ଏ ସଂକ୍ରାନ୍ତରେ ମୋଗଲମାନେ ଜାଣିଥିଲେ ଏ ସମୟରେ ୧୬୬୬ ବେଳକୁ ଜୟସିଂ ଶିବାଜୀଙ୍କ ଆନୁଗତ୍ୟ କରି, ବିଜାପୁର ଆକ୍ରମଣ ପାଇଁ ଔରଙ୍ଗଜେବଙ୍କ ଅନୁମତି ମାଗିଲେ। ମାନିଗଲେ ଔରଙ୍ଗଜେବ। ବିଜାପୁର ଛୋଟ ରାଜ୍ୟ ହେଲେବି ତାର ବିଭବ ଓ ସୈନ୍ୟବଳ ମୋଗଲ ସାମ୍ରାଜ୍ୟକୁ ଆକ୍ରମଣ କରିବାପାଇଁ ଯଥେଷ୍ଟ ଥିଲା। ୧୫୬୫ରେ ତାର ବାର୍ଷିକ ଆୟ ଥିଲା ୧୩.୯ ମିଲିୟନ ଟଙ୍କା ଓ ୮୦,୦୦୦ ଘୋଡ଼ସବାର, ୨,୫୦,୦୦୦ ପଦାତିକ ଓ ୫୦୦ ହାତୀ। ତା' ଛଡ଼ା ଗୋଲକୋଣ୍ଡାରୁ ୧୨,୦୦୦ ଘୋଡ଼ାସବାର, ୪୦,୦୦୦ ପଦାତିକ ସାହାଯ୍ୟ ଆକାରରେ ପାଇପାରିବେ ଯଦି ମୋଗଲ ସାମ୍ରାଜ୍ୟକୁ ଆକ୍ରମଣ କରାଯାଏ। ଜୟ ସିଂ ବିଜାପୁରକୁ ଆକ୍ରମଣ କରି ଦୁର୍ଗ ଅଧିକାର କରିପାରିବେ ନାହିଁ। ସେଥିପାଇଁ ଔରଙ୍ଗଜେବଙ୍କୁ ଦାକ୍ଷିଣାତ୍ୟ ଆସିବାପାଇଁ ଅନୁରୋଧ କଲେ ଓ ମାନିଗଲେ ଔରଙ୍ଗଜେବ। ୮ ମାସ ଧରି ବିଜାପୁର ପାଇଁ ଚେଷ୍ଟାକଲେ। ନିଜ ବିଭବ ବ୍ୟତିତ ଔରଙ୍ଗଜେବଙ୍କ ୪ ମିଲିୟନ ଟଙ୍କା ମଧ୍ୟ ଖର୍ଚ୍ଚ କରାଇଲେ। ନିଜ ଫଣ୍ଡରୁ ୧୦ ମିଲିୟନ ଟଙ୍କା ମଧ୍ୟ ଖର୍ଚ୍ଚ କଲେ। କିନ୍ତୁ କୌଣସି ଫଳ ହେଲାନାହିଁ। ବର୍ଷକ ପରେ ଔରଙ୍ଗାବାଦ ଫେରି ଆସିଲେ। ଔରଙ୍ଗଜେବ ତାଙ୍କୁ ଡକାଇଲେ। ଦେଖା କରିବାକୁ ଯିବା ବାଟରେ ଜୁଲାଇ ୧୬୬୭ରେ ଅଧା ବାଟରେ ତାଙ୍କର ମୃତ୍ୟୁ ହେଲା।

**ମରହଟ୍ଟା**

୧୭୨୦ରେ ପେଶ୍ୱାର ରାଜାହେଲେ ବାଜିରାଓ। ଦୁଇଦଶନ୍ଧି ଧରି ମରହଟ୍ଟାମାନେ ଉତ୍ତର, ଦକ୍ଷିଣ, ପୂର୍ବ, ଦକ୍ଷିଣ ପଟେ ବିନା ଦଣ୍ଡରେ ଲୁଣ୍ଠନ କରିବାର ସ୍ୱାଧୀନତା ପାଇଲେ। ୧୭୩୫ରେ ରାଜସ୍ଥାନ, ୧୭୩୭ରେ ଦିଲ୍ଲୀ, ୧୭୪୦ରେ ଓଡ଼ିଶା ଓ ବଙ୍ଗଳାରେ ଲୁଣ୍ଠନ କଲେ। ଲୁଣ୍ଠନ ଦ୍ରବ୍ୟ ବାଣ୍ଟିବାରେ ବହୁତ ଅସୁବିଧା ହେଲା। ୧୭ଶହ ଶତାବ୍ଦୀରେ ମରହଟ୍ଟା ରାଜ୍ୟ, ୧୮ଶହ ଶତାବ୍ଦୀରେ ମରହଟ୍ଟାଙ୍କର ମିଳିତ ରାଜ୍ୟରେ ପରିଣତ ହେଲା। ମରହଟ୍ଟାଙ୍କର ଉଦ୍ଦେଶ୍ୟ ରାଜ୍ୟବିସ୍ତାର ଉପରେ ନଥିଲା, ଥିଲା ରାଜସ୍ୱ ଆଦାୟ ଉପରେ। ୧୭୨୦ ବେଳକୁ 'ଦେଶମୂଖ' ନ ହେଲେ ବି ସେନାବାହିନୀ ଉପରେ ତାଙ୍କର କ୍ଷମତା ଅଧିକ ଥିଲା। ସେମାନଙ୍କ ଭିତରେ ମଧ ଶାସନ କ୍ଷମତା ବାଣ୍ଟି ହୋଇଗଲା। ଗାଏକୱାଡ଼, ହୋଲକାର, ସିନ୍ଧିଆ ଇତ୍ୟାଦିମାନଙ୍କ ଭିତରେ। ଏ ପରିପ୍ରେକ୍ଷୀରେ ଭୌଁସଲେ ପରିବାର (ସାହୁଜୀ) ତାରବାଈଙ୍କ ଗଣ୍ଡଗୋଳ ସତ୍ତ୍ୱେ ବେରାରର ରାଜସ୍ୱ ଅଧିକାର ପାଇଲେ। ଫଳରେ ବଙ୍ଗଳା ଓ ଓଡ଼ିଶା ଲୁଣ୍ଠନବେଳେ ତାଙ୍କ ଭାଗ ସେଇ ଅନୁସାରେ ବଣ୍ଟା ହେଲା। ଭୌଁସଲେ ପରିବାର ନାଗପୁରକୁ ତାଙ୍କ ରାଜଧାନୀ ମାନିନେଲେ। ଅନ୍ୟାନ୍ୟ କାରଣ ସହିତ ନାଗପୁରରେ ବ୍ରିଟିଶରମାନଙ୍କ ସହ ମତଭେଦ ମଧ ସିପାହୀ ବିଦ୍ରୋହର କାରଣ ଥିଲା।

ବାଜିରାଓ ପୁନେରେ ପେଶୱା ହୋଇ ରହିଲେ। ନିଜାମ-ଉଲ-ମୁଲ୍କ ଜଣେ କ୍ଷମତାଶାଳୀ ମୋଗଲ ଅଫିସର। ୧୭୨୩ରେ ଦାକ୍ଷିଣାତ୍ୟର ଯେଉଁଠି ସେ ଗଭର୍ଣ୍ଣର ଥିଲେ ତାକୁ ସ୍ୱାଧୀନରାଜ୍ୟ ବୋଲି ଘୋଷଣା କଲେ। ମରହଟ୍ଟା ଓ ହାଇଦ୍ରାବାଦର ମୁବାରିଜ ଖାଁ ତାଙ୍କର ଦୁଇ ଶତ୍ରୁଥିଲେ। ୧୭୨୪ରେ ସେ ମୁବାରିଜ ଖାଁଙ୍କୁ ହତ୍ୟା କଲେ। କିନ୍ତୁ ୧୭୨୮ରୁ ୧୭୩୧ ମଧରେ ମରହଟ୍ଟାଙ୍କ ଦ୍ୱାରା ଅଲଗା ହୋଇଯାଇଥିଲେ। ୧୭୮୫ରେ ଇଉରୋପ ଓ ଫ୍ରାନ୍ସ ମଧରେ ସନ୍ଧିସ୍ଥାପନା ହୋଇଥିଲା। ସେଇ ସମୟରେ ଗଭର୍ଣ୍ଣର ନିଜାମ-ଉଲ-ମୁଲ୍କ ମରିଗଲେ। ହାଇଦ୍ରାବାଦ ଶାସନ ପୁଣି କନ୍ଦଳ ଭିତରକୁ ଆସିଗଲା କର୍ଣ୍ଣାଟକର ନବାବ ଦୁଇଟି ରାଜ୍ୟର ଶାସନଭାରନେବା କଥା। ଇଉରୋପିୟାନ ସୈନ୍ୟମାନେ ବହୁ ଦକ୍ଷତାର ପରିଚୟ ଦେଇଥିଲେ ଯୁଦ୍ଧରେ। କିନ୍ତୁ ଯୁଦ୍ଧୋତ୍ତର ସମୟ କେବଳ ମାଲିକଙ୍କ ଉପରେ ବୋଝହେବା ଛଡ଼ା ସୈନ୍ୟମାନଙ୍କର ଅନ୍ୟ କିଛି କାମ ନଥିଲା।

## ଟିପୁ ସୁଲତାନ–

ଅଦମନୀୟ ଶକ୍ତି ଥିଲା ଟିପୁ ସୁଲତାନଙ୍କର। ସବୁ ଯୋଜନା, ସବୁ ଭାବନା ତାଙ୍କର ଅନ୍ତର ଭିତରୁ ବାହାରୁଥିଲା। ସେ ବଞ୍ଚିଥିଲା ପର୍ଯ୍ୟନ୍ତ ମହୀଶ୍ୱର, ଅବଧ ଓ ହାଇଦ୍ରାବାଦରେ ବ୍ରିଟିଶରମାନଙ୍କର ରହିବାର କୌଣସି ସୁବିଧା ହୋଇପାରିଲା ନାହିଁ। କର୍ଣ୍ଣୱାଲିସଙ୍କର ତୃତୀୟ ମହୀଶ୍ୱର ଯୁଦ୍ଧ ଟ୍ରାଭାନ୍‌କୋରରେ ହେଲା। ଟିପୁ ସୁଲତାନ ଦାୟିତ୍ୱ ନେବାପାଇଁ ରାଜିହେଲେ ନାହିଁ। କିନ୍ତୁ ସେ ବ୍ରିଟିଶରମାନଙ୍କ ମନରେ ମାନସିକ ଉନ୍ମାଦନା ଭରିଦେଲେ। କର୍ଣ୍ଣୱାଲିସଙ୍କ ତ୍ରିପକ୍ଷ– ମରହଟ୍ଟା, ନିଜାମ ଓ ଟିପୁଙ୍କୁ ଯୁଦ୍ଧରୁ ନିବୃତ୍ତ କରିବା ପରିବର୍ତ୍ତେ ବିରୋଧ କଲେ। ବ୍ରିଟିଶରମାନେ ୩୦,୦୦୦ ସୈନ୍ୟ ଯୋଗାଡକରି ମହୀଶ୍ୱର ଅଭିଯାନ ପାଇଁ ପ୍ରସ୍ତୁତ ହେଲେ। ଟିପୁ କର୍ଣ୍ଣାଟକ ଯୁଦ୍ଧ ଆରମ୍ଭ କରିଥିଲେହେଁ କର୍ଣ୍ଣୱାଲିସ ଦାକ୍ଷିଣାତ୍ୟ, ବାଙ୍ଗାଲୋର ଆକ୍ରମଣ କରି ସିରଙ୍ଗାପଟନମ୍ ଅଭିମୁଖେ ଅଭିଯାନ କଲେ। ବ୍ରିଟିଶ ସେନାର ଆଉ ଗୋଟେ ଦଳ ମାଲବାର କୋଷ୍ଟରୁ ପହଞ୍ଚିଲେ। ପରେ ପରେ ହାଇଦ୍ରାବାଦ ନିଜାମ ଓ ମରହଟ୍ଟାମାନେ ମଧ୍ୟ ଯୋଗଦେଲେ। ପରିଶେଷରେ ସାମନା କରି ନପାରି ଟିପୁ ତାଙ୍କ ଅଧାରାଜ୍ୟ, ଆଠଅଙ୍କ ବିଶିଷ୍ଟ କ୍ଷତିପୂରଣ ଓ ଦୁଇପୁଅ (ଜଣେ ଆଠବର୍ଷ ଓ ଆଉ ଜଣେ ଦଶବର୍ଷ) ବ୍ରିଟିଶରଙ୍କର ତତ୍ତ୍ୱାବଧାନରେ ରଖିଲେ। ପରେ ଟିପୁ ପାଇଲେ ତାଙ୍କ ଅଧା ରାଜ୍ୟରୁ ଅଧିକ। ଦୁଇପୁଅଙ୍କୁ ମଧ୍ୟ ଫେରିପାଇଲେ। ଫଳରେ ମହୀଶୂରରେ ୪ର୍ଥ ଯୁଦ୍ଧ ଆରମ୍ଭ ହେଲା। ସେତିକିବେଳେ ନେପୋଲିୟନ ଇଜିପ୍ଟରେ ପହଞ୍ଚିଲେ। ଟିପୁ ଫ୍ରାନ୍ସ କମାଣ୍ଡରଙ୍କ ସହ ଗୁପ୍ତ ମନ୍ତ୍ରଣା କରିଥିଲେ। କର୍ଣ୍ଣୱାଲିସଙ୍କ ଜାଗାରେ ୱେଲସେଲି ବ୍ରିଟିଶ ତରଫରୁ ନେତୃତ୍ୱ ନେଉଥିଲେ। ହାରିଲେ ଟିପୁ। ମହୀଶ୍ୱର ବାଘହେଲେ ଧୂଳିସାତ୍। ମୃତକଙ୍କ ମଧ୍ୟରେ ଟିପୁଙ୍କ ମୃତଶରୀର ମଧ୍ୟ ଥିଲା। ୨ ଥର ଗୁଳିବିଦ୍ଧ ଶରୀର ଓ ବୟୋନେଟ ମୁନରେ ଶରୀରଠାରୁ ମୁଣ୍ଡ ଅଲଗା ହୋଇଯାଇଥିଲା। ଆଉ ତାଙ୍କ ଖଣ୍ଡା ସହିତ ଖଣ୍ଡାରେ ଲାଗିଥିବା ସବୁ ଅମୂଲ୍ୟ ରତ୍ନ ମଧ୍ୟ ଚୋରି ହୋଇସାରିଥିଲା। ୧୭୯୦-୯୨ ଖ୍ରୀଷ୍ଟାବ୍ଦ ବେଳକୁ ରାଜସ୍ଥାନର, ରୋହିଲାଖଣ୍ଡର ଆଫଗାନ-ଇଣ୍ଡିଆ, ସିନ୍ଧର ମୁସଲିମ, ଜାଟ-କୃଷକ ମାନଙ୍କର ଏକ ମିଳିତ ବିଦ୍ରୋହ, ଆଉ ଆଗ୍ରା ନିକଟରେ ଜାଟ-ଶିଖ, ପଞ୍ଜାବର ସବୁ ବିରୋଧ କରିବାକୁ ଲାଗିଲେ। ଏସବୁ ଛୋଟ ଛୋଟ ଘଟଣା ସମୂହ ଲାଗି ରହିଥିଲା। କିନ୍ତୁ ନିଜର ଆଭ୍ୟନ୍ତରୀଣୟ ସମସ୍ୟା ଛଡ଼ା ଭାରତ ବାହାର ଶତ୍ରୁଙ୍କ ଆକ୍ରମଣରୁ ମୁକ୍ତ ଥିଲା। ସେଥିଲେ ହାଇଦରଙ୍କ ପୁଅ।

## ଆଲିବର୍ଦ୍ଦି ଖାଁ--

ଆଲିବର୍ଦ୍ଦି ଖାଁ ଜଙ୍ଗଲରୁ ମରହଟ୍ଟାମାନଙ୍କୁ ତଡ଼ିଦେଲେ। ସେତେବେଳକୁ ନିଜାମ ଆସଫ ସାହ ଦାକ୍ଷିଣାତ୍ୟରେ ନିଜ ଆସନ ବଜାୟ ରଖି ସାରିଥିଲେ। ସେମାନଙ୍କର ଶତ୍ରୁତା ଅନପ୍ରଶମିତ। ୧୭୪୮ରେ ସମ୍ରାଟ ମହମ୍ମଦ ସାହଙ୍କ ମୃତ୍ୟୁ ପରେ ପୁତ୍ର ଅହମ୍ମଦ ସାହା ରାଜଗାଦିରେ ବସିଲେ। ଅବଧର ସୁବେଦାର ଓମୀରିଦ୍ଦିନଙ୍କ ମୃତ୍ୟୁପରେ ସଫଦରଜଙ୍ଗ ୱାଜିର ହୋଇସାରିଥିଲେ। ନିଜ ହାତକୁ କ୍ଷମତା ଆଣି ସମ୍ରାଟଙ୍କ ଅଜ୍ଞାତସାରରେ ସବୁ ଅଫିସରମାନଙ୍କୁ ବହିଷ୍କାର କଲେ। ସଫଦରଜଙ୍ଗ ଓ ଇମାନ୍-ଉଲ-ମୁଲ୍କ (Pay Master) ରାଜ୍ୟ ଶାସନ କଲେ। କେତେକ ଆଘାତ ପାଇବା ଛଡ଼ା ସଫଦରଜଙ୍ଗ ଅଳ୍ପକେ ରକ୍ଷା ପାଇଲେ। ଜେନାଲ ପାଖରୁ ଦାରା ଶିଖୋ ମାନସନ ପର୍ଯ୍ୟନ୍ତ ସବୁଘର ଭାଙ୍ଗିଦେବାକୁ ଆଦେଶ ଦେଲେ। ଏଇ ବିଷୟରେ ପ୍ରଧାନମନ୍ତ୍ରୀ ଓ ସମ୍ରାଟଙ୍କ ମଧ୍ୟରେ ମତଭେଦ ହେଲା। ପରେ ପରେ ଦିଲ୍ଲୀରେ ଦେଖାଦେଲା ଅନ୍ତର୍ବିଦ୍ରୋହ। ସଫଦରଜଙ୍ଗ ଭରତପୁର ଜାଟନେତା ସୁରଜମଲ୍ଲ ଓ ରାଜେନ୍ଦ୍ରଗିରିଙ୍କୁ ଆମନ୍ତ୍ରଣ କଲେ। ପୁରୁଣା ଦିଲ୍ଲୀକୁ ସେମାନେ ଛାରଖାର କରିଦେଲେ। ମଧ୍ୟବିତ୍ତ ଶ୍ରେଣୀର ଲୋକେ ଅଧିକ କଷ୍ଟ ପାଇଲେ। ଶସ୍ୟାଗାର ଲୁଟ ହେଲା। ସମ୍ରାଟ ଅହମ୍ମଦ ସାହା ଚାନ୍ଦନୀଚୌକ ମଧ୍ୟ ନଷ୍ଟ କରିଦେଲେ। ଏ ପ୍ରକାର ଯୁଦ୍ଧ ପରେ ଇମାଦ-ଉଲ-ମୁଲ୍କ ଓ ତାଙ୍କ ଦଳ ସଫଦରଜଙ୍ଗଙ୍କ ହାତରୁ କ୍ଷମତା କାଢ଼ିନେଲେ। ଇନ୍ତିଜାମ-ଉଦ୍-ଉଦ୍ଦାଲା ୱାଜିର ପଦରେ ଅଧିଷ୍ଠିତ ହେଲେ।

ସଫଦରଜଙ୍ଗ ଇରାନିୟାନ କୋରାସନ ପରିବାରର ଜଣେ ପର୍ଶିୟାନ ନୋବେଲ। ମୋଗଲ ପରିବାରରେ ବିବାହ କରିଥିଲେ। ତାଙ୍କ ଶ୍ୱଶୁରଙ୍କ ସହ ରାଜସେନାରେ ଯୋଗଦେଇ ଦିଲ୍ଲୀ ଆସିଲେ। କିଛିଦିନ ପରେ ନିଜ ବୁଦ୍ଧି ବଳରେ ଅଓଧର ଗଭର୍ଣ୍ଣର ହେଲେ। ଏହା ପ୍ରାୟ ସତରଶ ଶତାବ୍ଦୀର ଶେଷ ଭାଗର ଘଟଣା। ସେତେବେଳେ ଔରଙ୍ଗଜେବ ଥିଲେ ସମ୍ରାଟ। ଆଉ ମୋଗଲ ସାମ୍ରାଜ୍ୟର ସୁଖ, ସମୃଦ୍ଧି, ରାଜକୀୟ ପରିବେଶ ବେଶ ସ୍ୱଚ୍ଛଳ ଥିଲା। ଦିଲ୍ଲୀରେ ଥିଲେ ଦୁଇଲକ୍ଷରୁ ଅଧିକ ଅଧିବାସୀ। ଏ ଜନସଂଖ୍ୟା ଲଣ୍ଡନ ବା ପ୍ୟାରିସଠାରୁ ଅଧିକ। ସବୁ ମସଜିଦ, ପ୍ରାସାଦ, ଅଟ୍ଟାଳିକା ସବୁ ମଜବୁତ, ସୁନ୍ଦର ଓ ଚାକଚକ୍ୟରେ ଭରିଥିଲା। ପ୍ରଧାନମନ୍ତ୍ରୀ ହେଲେ ଇମାଦ୍-ଉଲ-ମୁଲ୍କ। ଗୃହ ଯୁଦ୍ଧ ହେବା ଫଳରେ ବହୁତ ବଡ଼ ପରିମାଣରେ ଋଣରେ ବୁଡ଼ି ରହିଲେ ସମ୍ରାଟ। ଏ ଘଟଣାକୁ ଜାଟ ଖାର୍ଦ୍ଦି ଭାବରେ ସ୍ମୃତିପଟରେ

ଅଛି । ଅସମ୍ଭବ ହୋଇପଡ଼ିଲା ଋଣ ପରିଶୋଧ କରିବା । ପ୍ରାୟ ୩୨ ମାସ ଧରି ଯୁଦ୍ଧ ଲାଗିରହିଲା । ଫଳରେ ପ୍ରାୟ ୮୨ ହଜାର ସୈନ୍ୟ ଭୋକ ଉପାସରେ ରହିଲେ । ନଜିବ ଖାଁଙ୍କ ଅଧିନରେ ଥିବା ରୋହିଲାମାନେ ଏମାନଙ୍କ ଭରଣପୋଷଣପାଇଁ ପ୍ରାୟ ୧୫ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ ।

ନାଦିର ସାହା ଲୁଣ୍ଠନ କରି ଫେରିଗଲେ । ତିନିଜଣ ସମ୍ରାଟଙ୍କୁ ହତ୍ୟା କରାଯାଇଥିଲା । ଜଣେ ସମ୍ରାଟଙ୍କୁ ଅନ୍ଧ କରିଦିଆଯାଇଥିଲା । ଜଣେ ସମ୍ରାଟର ମା'ଙ୍କୁ ଶାରୀରିକ ଯନ୍ତ୍ରଣା ଦେଇ ଧନସଂପତ୍ତି ସବୁ ଲୁଟି ନେଇଥିଲେ । ଦିଲ୍ଲୀ ଏକ ବିରାଟ ଧନସଂପତ୍ତି ଭରା ରାଜଧାନୀରୁ ଏକ ଖଣ୍ଡହରରେ ପରିଣତ ହୋଇସାରିଥିଲା । ଇମାଦ-ଉଲ-ମୁଲ୍କ ମରହଟ୍ଟା ମହ୍ଲାର ରାଓଙ୍କୁ ସାହାଯ୍ୟ ମାଗିଲେ । ମରହଟ୍ଟାମାନଙ୍କୁ କେତେକ ଗାଁ ଦିଆଯାଇଥିଲା । ପରେ ମରହଟ୍ଟାମାନେ ପତପରଗଞ୍ଜ ଅଧିକାର କଲେ । ସମ୍ରାଟ ଦିଲ୍ଲୀ ପଳାଇଗଲେ କିନ୍ତୁ ରାଣୀ ଓ ଅନ୍ୟାନ୍ୟ ସ୍ତ୍ରୀଲୋକମାନେ ମରହଟ୍ଟାଙ୍କ ହାତରେ ପଡ଼ିଲେ । ହୋଲକାର ଦିଲ୍ଲୀ ଅଭିମୁଖେ ଯାତ୍ରା କରି ନିଜାମୁଦ୍ଦିନ ଆଲିଆଙ୍କ ସ୍ମୃତିପୀଠ ସହିତ ଅନେକ ଜାଗା ଜାଳିଦେଲେ । ଅନ୍ୟାନ୍ୟ ଜାଗା ମଧ୍ୟ ନଷ୍ଟ ଭ୍ରଷ୍ଟ କରିଦେଲେ । ପରେ ପରେ ସାହ ଆଲମ (ସାହ ବାହାଦୂର ସାହ ୧ମ) ସମ୍ରାଟ ହେଲେ । ସମ୍ରାଟ ଅଧିକାର କଲେ ପତପରଗଞ୍ଜ । ଅଧିବାସୀମାନଙ୍କ ପାଖରୁ ।ଦାୟ କଲେ ଟ.୩୫,୦୦୦ ଟଙ୍କା । ଇମାଦ୍-ଉଲ-ମୁଲ୍କଙ୍କୁ ବାହାର କରି ଦିଆଗଲା ।

## ଆଲାମଗିରି-୨ୟ

ଜୁନ ୧୭୩୪ରେ ଆଲାମଗିରି-୨ୟ ଗାଦିସୀନ ହେଲେ । କିନ୍ତୁ ସେତେବେଳକୁ ଇମାଦ୍-ଉଲ-ମୁଲ୍କ ପ୍ରାୟ ୪୦ ଲକ୍ଷ ଟଙ୍କା ଆଦାୟ କରି ମରହଟ୍ଟାଙ୍କ ସୈନ୍ୟ ଓ ନିଜ ସୈନ୍ୟଙ୍କ ଖର୍ଚ୍ଚ ପୂରଣ କରିବାକୁ ଦେଇ ସାରିଥିଲେ । ଏହାପରେ ବି ଆଉ କୋଟିଏ ଟଙ୍କାର ଅଟକଳ । ଅନ୍ୟ ଉପାୟ ନ ପାଇ ନୋବେଲ ଓ ସରକାରୀ ଅଫିସରମାନଙ୍କଠୁ ଜୋର ଜବରଦସ୍ତି ଆଦାୟ କରିବାକୁ ବାଧ୍ୟ ହେଲେ । ଧନୀ ବ୍ୟବସାୟୀ, କଳାକାରମାନଙ୍କଠୁ ମଧ୍ୟ ଟଙ୍କା ଆଦାୟ କଲେ । ଫଳରେ ଦେଶରେ ଗଣ୍ଡଗୋଳର ସୁତ୍ରପାତ ହେଲା । ନ୍ୟାୟ ପାଇବା ଆଶାରେ ଲୋକେ ଏକଜୁଟ ହେଲେ । ସମ୍ରାଟ ନିଜର ଭୋକ ଉପାସରେ ନ ମରିବାପାଇଁ ଓ୍ୱାଜିରଙ୍କୁ ଧମକାଇଲେ । ମରହଟ୍ଟାମାନଙ୍କ ଦାବି ପାଇଁ ଧନୀମାନଙ୍କ ଠାରୁ କର ଆଦାୟ ହେଲା । ଖେଳିଗଲା

ଅରାଜକତା। କୌଣସି ଉପାୟରେ ଟଙ୍କା ଯୋଗାଡ଼ ହୋଇପାରିଲା ନାହିଁ। ଫଳରେ ମରହଟ୍ଟାମାନଙ୍କୁ ୨୨ଟି ଗ୍ରାମ ଦେଇଦେଲେ। ଏ ଅବସ୍ଥାରେ ମୋଗଲସେନା ମଧ ୩ ବର୍ଷ ଧରି ଦରମା ପାଇ ନଥିଲେ। ସେଥିପାଇଁ ସେ ଘର ଘର ବୁଲି ଲୁଣ୍ଠନ କଲେ। ହିନ୍ଦୁ ଅଫିସର ଓ ବ୍ୟବସାୟୀମାନଙ୍କଠାରୁ କର ଆଦାୟ କଲେ। ବଙ୍ଗଳା ବ୍ୟତିତ ଅନ୍ୟ କୌଣସି ରାଜ୍ୟ ରାଜସ୍ୱ ଦେବାକୁ ସକ୍ଷମ ହୋଇପାରିଲେ ନାହିଁ। ସମ୍ରାଟଙ୍କର ନିଜସ୍ୱ କିଛି ମୂଲ୍ୟବାନ ଜମି ମଧ ନଜିବ ଖାଁ ଓ ଜୟପୁରର ମାଧୋ ସିଂଙ୍କ ଦଖଲକୁ ଚାଲିଗଲା। ଏପରିକି ସମ୍ରାଟଙ୍କ ପରିବାର ଲୋକ ମଧ ଭୋକଉପାସରେ ରହିଲେ। ଜାମା ମସଜିଦ୍ ଯିବାପାଇଁ ଶୋଭାଯାତ୍ରା ମଧ ସମ୍ଭବ ହୋଇପାରିଲା ନାହିଁ। ମସଜିଦ୍‌କୁ ସମ୍ରାଟ ଚାଲି ଚାଲି ଗଲେ। ଏଇ ବିଶୃଙ୍ଖଳା ଭିତରେ ନଜିବ ଖାଁ ବିନାସର୍ତ୍ତରେ ମରହଟ୍ଟାମାନଙ୍କୁ ଲାଲକିଲ୍ଲା ଦେଇଦେଲେ। ନଜିବ ଖାଁଙ୍କ ମୃତ୍ୟୁଖବର ପହଞ୍ଚିଲା ବେଳକୁ ସାହା ଆଲମ ଆଲ୍ଲାବାଦରେ ବନ୍ଦୀଜୀବନ କଟାଉଥିଲେ। ସାହା ଆଲମ, ମିର କାସିମ ଓ ଅଓଧର ନବାବଙ୍କ ସହିତ ଚୁକ୍ତି କଲେ କି ବକ୍ସରରୁ ବ୍ରିଟିଶର ମାନଙ୍କୁ ହଟାଇବେ। ସମୟ ଅକ୍ଟୋବର ୨୨ ୧୭୬୪ରେ। ଏହାକୁ ଆଲ୍ଲାବାଦ ଚୁକ୍ତି ବୋଲି କୁହାଯାଏ। ଫଳରେ ଆଲ୍ଲାବାଦ ଓ ତାର ଆଖପାଖ ଅଞ୍ଚଳ, ଯାହାସବୁ ଅଓଧର ନବାବଙ୍କଠାରୁ ପାଇଥିଲେ ସବୁ ସମ୍ରାଟଙ୍କ ହାତକୁ ଆସିଗଲା। ତା' ବଦଳରେ ବଙ୍ଗଳା ଦିୱାନି, ବିହାର ଓ ଓଡ଼ିଶାକୁ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ୧୭୬୫ ଅଗଷ୍ଟ ୧୨ ତାରିଖରେ ଦେଇଦେଲେ।

ଇଂରେଜମାନେ ମଧ ସାହା ଆଲମଙ୍କୁ ରାଜଗାଦିରେ ବସାଇବାର ଆଗ୍ରହ ପ୍ରକାଶ କଲେ। କିନ୍ତୁ ସାହ ଆଲମଙ୍କ ବାରମ୍ୱାର ଅନୁରୋଧ ସତ୍ତ୍ୱେ ଯେତେବେଳେ ତାଙ୍କର ଦାବି ପୂରଣ ନ ହେଲା ସେ ମରହଟ୍ଟାଙ୍କୁ ଅନୁରୋଧ କଲେ ଓ ମରହଟ୍ଟାମାନେ ସହଜରେ ମାନିନେଲେ। ୧୭୭୧ ମୁସଲିମ୍ ଉପବାସର ଶେଷମାସ। ଇଦ୍ ପର୍ବ ପାଳନ କରାଯାଇଥାଏ। ୧୨ ବର୍ଷର ଧ୍ୱଂସଲୀଳା, ଲୋକସଂଖ୍ୟା ହ୍ରାସ, ଦାରିଦ୍ର୍ୟ, ରାଜକୋଷର ଶୂନ୍ୟତା ଘେରି ରହିଲା ଆଉ ଇଚ୍ଛା କଲେ ହୁଏତ ଖୁସି ଆନନ୍ଦ ଆସି ନପାରେ। ଆସନ୍ତା ୧୧ ବର୍ଷ ପାଇଁ ମିର୍ଜା ନଜାଫ ଖାଁ ଜଣେ ପର୍ଶିୟାନ ନୋବେଲ ଦିଲ୍ଲୀକୁ ହାତମୁଠାରେ ରଖିଲେ। ସେ ହେଉଛନ୍ତି ଶେଷ ଆକ୍ରମଣକାରୀ ଯେ କି ଦିଲ୍ଲୀର ସମସ୍ୟାକୁ ତଳେଇ ନେବାପାଇଁ ପ୍ରସ୍ତୁତ ଥିଲେ। ତା'ପୂର୍ବରୁ ସେ କେବଳ ଛୋଟମାତ୍ର ଲୋକ ଥିଲେ। ସେ ଏକ ଖ୍ୟାତିରେ ପହଞ୍ଚିଲେ।

ମହାବଜୀ ସିନ୍ଧିଆ ଅହଲ୍ୟାବାଈଙ୍କ ସମସାମୟିକ। ପାନିପଥ ଯୁଦ୍ଧରେ ଆଘାତ ପାଇ ଛୋଟା ହୋଇଯାଇଥିଲେ, ସେ ମଧ୍ୟ ୩୦ ବର୍ଷ ଧରି ରାଜୁତି କରିଥିଲେ। ସବୁ ମରହଟ୍ଟାଙ୍କ ଅପେକ୍ଷା ସେ ଉତ୍ତର ଭାରତରେ ଅଧିକାଂଶ ଜାଗା ଦଖଲ କରିପାରିଥିଲେ। ଗ୍ୱାଲିୟରର ସିନ୍ଧିଆ ରାଜ୍ୟ ପ୍ରତିଷ୍ଠା, ଦିଲ୍ଲୀ ଓ ଆଗ୍ରାରେ ପୁର୍ନଦଖଲ କରିଥିଲେ। ୧୭୯୦ରେ ଜୟପୁର ଓ ଯୋଧପୁରରୁ ରାଜପୁତମାନେ ବେଦଖଲ ହେଲେ ଓ ନିଜେ ଏକ ଉଚ୍ଚଶିକ୍ଷିତ ସେନାବାହିନୀ ଗଠନ କରି ନିଜର ପ୍ରତିଷ୍ଠା ଅର୍ଜନ କରିଥିଲେ। ୧୭୯୪ରେ ମୃତ୍ୟୁ ହେଲା ମାହାବଜୀଙ୍କର। ମୃତ୍ୟୁବେଳକୁ ମାହାବଜୀ ଫର୍ଣ୍ଣାଡାଭିସ ସହିତ କଥାବାର୍ତ୍ତା କରିବାର ଯୋଜନାରେ ଥିଲେ। ପେଶୱାଙ୍କର ପ୍ରାଧାନ୍ୟ ଗ୍ରହଣ କରିବାକୁ ସେ କଥାବାର୍ତ୍ତା ଆରମ୍ଭ କରିଥିଲେ। ସେତେବେଳକୁ ମରହଟ୍ଟା ଶକ୍ତି କମି କମି ଆସିଲାଣି।

୧୮୦୩ରେ ବାସିୟନ ଚୁକ୍ତିନାମାରେ ବ୍ରିଟିଶ ବାଜିରାଓଙ୍କୁ ପୁନର୍ବାର ଗାଦିରେ ବସାଇବାର ଚେଷ୍ଟାରେ ଥିଲେ। ବଦଳରେ ତାଙ୍କ ରାଜ୍ୟରେ ବ୍ରିଟିଶରମାନଙ୍କୁ ରହିବା ଦିଗରେ ସମସ୍ତ ଖର୍ଚ୍ଚ ବହନ କରିବାର ପ୍ରତିଶ୍ରୁତି ଦେଇଥିଲେ। ଘଟଣା ଘଟି ଚାଲିଲା– ପୁନେରେ ପେଶୱା-ଜାହାଜ ଅଧିକାରୀଙ୍କ ସହ କଥାବାର୍ତ୍ତା କରିବା ପାଇଁ ବ୍ରିଟିଶରମାନେ ଦୂତ ପଠାଇଲେ। ଯାହା ଫଳରେ ରଘୁନାଥ ରାଓଙ୍କ ପାଖରୁ ସମର୍ଥନ ଉଠିଯିବ। କାମ ପାଇଁ ଅନେକ ଅର୍ଥ ମଧ୍ୟ ଦେବାକୁ ରାଜି ଥିଲେ। କିନ୍ତୁ ଜାହାଜ ଅଧିକାରୀ ଏ ସବୁ ବଦଳରେ ସାଲସେଟ ଦାବି କଲେ। ଚୁକ୍ତି ସଫଳ ହୋଇପାରିଲା ନାହିଁ। ୧୭୭୮ରେ ରଘୁନାଥଙ୍କୁ ସାହାଯ୍ୟ କରିବାପାଇଁ ଆଗେଇ ଆସିଲେ। କିନ୍ତୁ ପଶ୍ଚିମଘାଟ ଦେଇ ପୁନେ ଯିବା ରାସ୍ତାରେ ପରାସ୍ତ ହେଲେ। ୧୭୯୬ ପର୍ଯ୍ୟନ୍ତ ପୁନେରେ ରାଜୁତି କଲେ ନାନା ଫର୍ଣ୍ଣାଡାଭିସ। ସେ ଜଣେ ନାବାଳକ ପେଶୱାର ଶାସକ ବଂଶଧର ପାଇଁ ରାଜୁତି କରୁଥିଲେ। ତତୀୟ ମହୀଶୂର ଯୁଦ୍ଧ ସମୟରେ କର୍ଣ୍ଣୱାଲିସଙ୍କୁ ସମର୍ଥନ କରି ଟିପୁଙ୍କ ସହିତ ଯୁଦ୍ଧ କରିଛନ୍ତି। ଦକ୍ଷିଣ କର୍ଣ୍ଣାଟକରେ କେତେକ ଜମି ମଧ୍ୟ ପାଇଥିଲେ। ତାହାରି ବଳରେ ସେ ଅନ୍ୟ ମରହଟ୍ଟାମାନଙ୍କ ସହିତ ସମକକ୍ଷ ଥିଲେ।

## ଅହଲ୍ୟାବାଈ

ଏମାନଙ୍କ ମଧ୍ୟରେ ଇନ୍ଦୋରର ହୋଲକର ବଂଶ ମଧ୍ୟ ଥିଲେ। ମହ୍ଲାର ରାଓ ହୋଲକାରଙ୍କ ପୁତ୍ରବଧୂ ରାଣୀ ଅହଲ୍ୟାବାଈ। ମହ୍ଲାର ରାଓ ତାଙ୍କ ବୋହୁଙ୍କ ଉପରେ

...କାର୍ଯ୍ୟ ପରିଚାଳନା ପାଇଁ ଅଧିକ ନିର୍ଭର କରୁଥିଲେ। ୧୭୬୬ରେ ମହ୍ଲାର ରାଓ ମରିଗଲେ। ପୁତ୍ର ଓ ପୌତ୍ର ଦୁହେଁ ରାଜକାର୍ଯ୍ୟ ଚଳାଇବାପାଇଁ ଅସମର୍ଥ ଥିଲେ। ସେଥିପାଇଁ ପୁତ୍ରବଧୂ ଦକ୍ଷ ଅହଲ୍ୟା ବାଈ ଶାସନକାର୍ଯ୍ୟ ହାତକୁ ନେଲେ। ତାଙ୍କୁ ବିରୋଧ କରିବାପାଇଁ ଜଣେ କେହି ବି ନଥିଲେ। ଏହା ଥିଲା ହୋଲକାର ବଂଶର 'ସୁବର୍ଣ୍ଣ ଯୁଗ'। ଅହଲ୍ୟା ବାଈଙ୍କ ନିର୍ଦ୍ଦେଶ କ୍ରମେ ସେ ତାଙ୍କ ପରିବାରପାଇଁ ଅଧିକ ଜମି ସଂଗ୍ରହ କରିପାରିଥିଲେ। ତାଙ୍କ ଶାସନର ମୂଳମନ୍ତ୍ର ଥିଲା; 'ଅନ୍ନ ଚିଳସ ଓ ଲୋକଙ୍କର ଧର୍ମ, ଧନ ଓ ବ୍ୟବସାୟର ରକ୍ଷଣାବେକ୍ଷଣ'। ସ୍ତ୍ରୀ ଲୋକ ହୋଇ ଜଣେ ଉତ୍ତମ ଶାସକ ଭାବରେ ଗ୍ରହଣ ନ ହୋଇପାରିଥାନ୍ତେ କିନ୍ତୁ ଦକ୍ଷିଣ ମାଲୱାରରେ ତାଙ୍କ ଶାସନ ଫଳରେ ଯେଉଁ ଶାନ୍ତି, ସମୃଦ୍ଧି, ଶୃଙ୍ଖଳା ବିରାଜମାନ କରୁଥିଲେ ତାଙ୍କୁ ଆଖି ଆଗରେ ରଖି କେହି ଆଉ ଏ କଥାକୁ ଅସ୍ୱୀକାର କରିପାରିଲେ ନାହିଁ। ତାଙ୍କ ଶାସନଗତ ପରିଚାଳନା ଉପରେ ଦୃଷ୍ଟିରଖି, ତାଙ୍କ ପରେ ମଧ ୧୮୨୦ରେ ସାର ଜନ ମାରକମ୍– ଜଣେ ବ୍ରିଟିଶ ଅଫିସର ବନ୍ଦୋବସ୍ତର ଖସଡ଼ା ତିଆରି କରିଥିଲେ।

## ମାଳୱାର ଭୋଜରାଜ ଧର–

ଭୋଜରାଜ ଧରଙ୍କୁ 'ଦାର୍ଶନିକ ରାଜା' ବୋଲି କୁହାଯାଏ। ତାଙ୍କ ପରେ ରାଣୀ ଅହଲ୍ୟାବାଈଙ୍କୁ ମଧ 'ଦାର୍ଶନିକ ରାଣୀ' ବୋଲି କୁହାଯାଉଥିଲା। ତାଙ୍କର ଦୁର୍ଗ, ରାସ୍ତା, ମନ୍ଦିର ପାଇଁ ମାଲୱାର ଏକ ନୂତନ ରୂପରେ ସଜ୍ଜିତ କରାଇଥିଲା। ସାରା ଭାରତରେ ତାଙ୍କର ଖ୍ୟାତି ଏକ ସାଧୁ ଭଳି। ତାଙ୍କ ନିଷ୍ଠାପରତା ଏକ ବିରଳ ବସ୍ତୁ। ୧୭୬୦ ବେଳର କଥା। ମହୀଶୂର, ମରହଟ୍ଟା ଓ ଶିଖମାନଙ୍କ ସହିତ ବ୍ରିଟିଶ (କଲିକତାର) ବେସରକାରୀ ବ୍ୟବସାୟୀମାନଙ୍କ ଏକ ଚୁକ୍ତି ହେଲା। ଅସଫଳ ହୋଇ ମିରକାଶିମ ଅବଧ ପଳାଇଲେ। ୧୭୬୪ରେ ମିର କାଶିମ ପୁଣି ବିହାରରେ ଦେଖାଦେଲେ। ଏକଜୁଟ ହେଲେ ସମ୍ରାଟ ସାହ ଆଲମଙ୍କ ସହ। ଯୁଦ୍ଧ ହେଲା ବକ୍ସରରେ। ପଲାସି ଯୁଦ୍ଧଠାରୁ ଅଧିକ ଭୟଙ୍କର। ୧୭୬୫ରେ କ୍ଲାଇବଙ୍କୁ କଲିକତାର ଦିୱାନ କରିଦେଲେ। ୭ ବର୍ଷ ପରେ ୱାରେନ ହେଷ୍ଟିଂସ ଦିୱାନ ହେଲେ। କଲିକତା, ବମ୍ବେ ଓ ମାନ୍ଦ୍ରାଜର ପ୍ରେସିଡେନ୍ସିରେ କେବଳ ଜଣେ ହିଁ ଦିୱାନ ରହିଲେ।

୧୭୬୭ରେ ପ୍ରଥମ ମହୀଶୂର ଯୁଦ୍ଧ ହେଲା। ହାଇଦ୍ରାବାଦର ନିଜାମ ପଣ୍ଡିଚେରୀରେ କିଛି କ୍ଷମତା ହାସଲ କରିଥିଲେ। କିନ୍ତୁ ଫ୍ରାନ୍ସରେ ଯୁଦ୍ଧ ଘୋଷଣା

ହେବା ଫଳରେ ଡୁପ୍ଲେଇଙ୍କୁ ଫ୍ରାନ୍ସ ଫେରିଗଲେ। ପଣ୍ଡିଚେରୀକୁ ତାଙ୍କୁ ପୁଣିଥରେ ଡକାହେଲା। ଏତିକିବେଳକୁ ବଙ୍ଗଳାର କ୍ଲାଇବଙ୍କୁ ପଣ୍ଡିଚେରୀ ପଠାହେଲା। ଯୁଦ୍ଧହେଲା ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ। ଫ୍ରାନ୍ସ ହାରିଗଲା। ଫଳରେ ନିଜାମ ହଠାତ୍ ବ୍ରିଟିଶମାନଙ୍କୁ ସ୍ୱାଗତ ଜଣାଇ ପଣ୍ଡିଚେରୀ ଓ ମାଡ୍ରାସକୁ ରକ୍ଷା କଲେ। ୧୭୬୧ ବେଳକୁ ହାଇଦର ଅଲି ଖାଁ ମହୀଶୂରର ଅପ୍ରତିଦ୍ୱନ୍ଦୀ ରାଜା। ପୂର୍ବରୁ ହାଇଦ୍ରାବାଦର ନିଜାମଙ୍କ ଦ୍ୱାରା ହାଇଦର ଅଲି ବହିଷ୍କୃତ ହୋଇସାରିଥିଲେ। ୪ଟା ମହୀଶୂର ଯୁଦ୍ଧ, ତିନିଟା ମରହଟ୍ଟା ଯୁଦ୍ଧ, ଦୁଇ ଶିଖମାନଙ୍କ ସହିତ ବ୍ରିଟିଶ ଯୁଦ୍ଧ ଫଳରେ ହାଇଦର ଅଲ୍ଲିଙ୍କ କ୍ଷମତା ମଜବୁତ ହୋଇସାରିଥିଲା। ୧୮୦୦ ଶତାବ୍ଦୀରେ ନିଜାମ ବ୍ରିଟିଶରମାନଙ୍କୁ ସାହାଯ୍ୟ କଲେ। ଯାହା ଫଳରେ ୧୫୦ ବର୍ଷ ଧରି ନିଜାମ ବ୍ରିଟିଶର ସୁରକ୍ଷା ବଳୟ ଭିତରେ ରହିପାରିଲେ। ଜାଟ-ଶିଖ, ଅଣଶିଖ ସଂପ୍ରଦାୟ ଆଗେଇ ଆସିଲେ। ବଡ଼ ବଡ଼ ମରହଟ୍ଟା ପରିବାର ମିଳିତ ଭାବରେ ଆଗକୁ ଆସିଲେ। ୧୮୦୦ ଶତାବ୍ଦୀବେଳକୁ ଇନ୍ଦୋରର ହୋଲକାର, ଗୋଓ୍ୱାଲିୟରର ସିନ୍ଧିଆ, ବରୋଦାର ଗାଏକୱାଡ଼, ନାଗପୁରର ଭୋଁସଲେ ପରିବାର ଜାଗି ଉଠିଲେ। ୧୭୬୧ ଜାନୁୟାରୀ ୧୪ରେ ପାନିପଥଠାରେ ଏମାନେ ଆଫଗାନ ପ୍ରଧାନ ସେନାକୁ ବିରୋଧ କଲେ।

**ଏକ କ୍ଷୁଦ୍ର ବିବରଣୀ–**

୧୭୫୨-୫୩ ଦିଲ୍ଲୀ ବାଦଶାହାଙ୍କୁ ଅନ୍ଧକରି ଗାଦିଚ୍ୟୁତ କରାଇବା ପରେ ବାଜିରାଓଙ୍କୁ ପଞ୍ଜାବ ପଠାଇବା।

୧୭୫୬- ଲୁଣ୍ଠନ ପରେ ଆବଦାଲି ଫେରିଗଲେ।

୧୭୬୦- ନିଜାମଙ୍କ ପତନପରେ ମରହଟ୍ଟାମାନଙ୍କର କ୍ଷମତା ଶୀର୍ଷରେ ପହଞ୍ଚିଲା।

୧୭୬୧- ବିରାଟସେନାବାହିନୀ ଗଠନ କରି ମରହଟ୍ଟାମାନେ ଆଫଗାନ ସେନାଙ୍କ ମୁହାଁମୁହିଁ ହେଲେ ପାନିପଥରେ। ଅବଦାଲିଙ୍କ ପଳାୟନ ନୀତି ଯୋଗୁ ଯୁଦ୍ଧରେ ବିଜୟ ହାସଲ ନ କରି ଲୁଣ୍ଠନ ଦ୍ରବ୍ୟ ନେଇ ଫେରିଗଲେ। ବାଲ୍ଲାଜି ରାଓଙ୍କ ସମ୍ମାନରେ ବାଧା ଆସିଲା ଓ ସେ କିଛିଦିନ ପରେ ମରିଗଲେ। ୧୭୭୨ରେ ତାଙ୍କ ପୁଅ ମାଧବରାଓ ମଧ୍ୟ ମରିଗଲେ।

୧୭୭୦- ୱାରେନ ହେଷ୍ଟିଂସ୍ ମରହଟ୍ଟାମାନଙ୍କୁ ହଟାଇଦେଲେ।

୧୭୭୫- ଯୁଦ୍ଧ ପରେ (ଆଙ୍ଗ୍ଲୋ-ମରହଟ୍ଟା) ସନ୍ଧି ସ୍ଥାପନ। ଏ ସନ୍ଧି ଅଯୌକ୍ତିକ, ଅନ୍ୟାୟ, ଶିଷ୍ଟାଚାର ବିରୁଦ୍ଧ, କ୍ଷମତାହୀନ ବୋଲି ଘୋଷଣା କଲେ।

କଲିକତା ଓ ମାନ୍ଦ୍ରାଜ ଭଳି ବମ୍ବେର ପ୍ରାଧାନ୍ୟ ଏତେ ନଥିଲା। କିନ୍ତୁ ସମୟ ସମୟରେ ସାଲସେଟ, ଦ୍ୱୀପ ଓ ବାସିନ ବନ୍ଦରକୁ କଲିକତା ଓ ମାଡ୍ରାସବାସୀ ଉପଯୋଗ କରୁଥିଲେ। ଦୁଇଟିଯାକ ବନ୍ଦର ପର୍ତ୍ତୁଗୀଜ ଅଧିନରେ ଥିଲା। କିନ୍ତୁ ପରେ ପରେ ମହାରାଷ୍ଟ୍ର ହାତକୁ ଚାଲିଯାଇଥିଲା। ଏତିକିବେଳକୁ ଆଙ୍ଗ୍ଲୋ-ମରହଟ୍ଟା ଚୁକ୍ତିବଳରେ ବ୍ରିଟିଶରମାନେ ଏ ଦୁଇଟି ବନ୍ଦରକୁ ବ୍ୟବହାର କରିପାରିଲେ। ଆଉ ବଦଳରେ ଆଙ୍ଗ୍ଲୋ-ମରହଟ୍ଟା ଦଳ ଗୁଜରାଟରେ ରହିବାର ଅନୁମତି ପାଇଲେ।

## ମହମ୍ମଦ ସାହା ଆବଦାଲି (୧୭୫୪-୫୯)

୧୭୫୭ରେ ଆଲାମଗିରିଙ୍କ ସମୟର ଘଟଣା। ଆଫଗାନ ଲୋକ। ୭ ବର୍ଷ ତଳେ ଆବଦାଲି ନାଦିର ସାହଙ୍କ ସୈନ୍ୟ ବିଭାଗରେ କାମ କରିଥିଲେ। ମୋଗଲ ଗଭର୍ଣ୍ଣରଙ୍କ ପାଖରୁ ସେ ପଞ୍ଜାବ ପାଇଥିଲେ। ହିନ୍ଦୁକୁଶ ଦେଇ ମହମ୍ମଦ ଗଜନୀ ଓ ମହମ୍ମଦ ଘୋରୀଙ୍କ ଭଳି ପଞ୍ଚମ ଥର ଭାରତ ଆସିଥିଲେ। ଏଥର ତାଙ୍କର ନଜର ଥିଲା ଦିଲ୍ଲୀ ଉପରେ। ଏଇ ୧୭୫୭ରେ ପଲାସୀ ଯୁଦ୍ଧରେ ଫ୍ରାନ୍ସ ସହିତ ବିଜୟୀ ହୋଇଥିଲେ କ୍ଲାଇବ। ନାଦିର ସାହା ଦିଲ୍ଲୀଠାରୁ ଆଠ ବା ନ ମିଲିୟନ ଷ୍ଟର୍ଲିଂ ମୁଦ୍ରା, ଗଦା ଗଦା ସୁନା, ରୂପା ଓଜନର କଳନା ନାହିଁ- ସବୁ ଲୁଣ୍ଠନ କରି ଫେରିଗଲେ। ତା' ସାଙ୍ଗରେ ଘେନିଗଲେ ଶାହାଜାହାଁଙ୍କ ମୟୁର ସିଂହାସନ ଆଉ କୋହିନୂର ହୀରାଖଣ୍ଡ। ୧୭୫୬ ବେଳକୁ ରାଜକୋଷ ଶୂନ୍ୟ ଥିଲା କିନ୍ତୁ ତଥାପି ଦିଲ୍ଲୀ ଲୁଣ୍ଠନ କରାଗଲା। ଆଉ ଦିଲ୍ଲୀ ବାସୀଙ୍କର କନ୍ୟମାନେ ହେଲେ କଳୁଷିତ। ସିନ୍ଧ, କାଶ୍ମୀର ଓ ପଞ୍ଜାବ ଲୁଣ୍ଠନ କରି ଆବଦାଲି ଆଫଗାନିସ୍ଥାନ ଫେରିଗଲେ। ଅନେକ ହିନ୍ଦୁ ବ୍ୟବସାୟୀ ନାଦିରସାହାଙ୍କ ଅମଳରେ ଦିଲ୍ଲୀ ପରିତ୍ୟାଗ କରି ମଥୁରା ଚାଲିଯାଇଥିଲେ। ଜାଟମାନେ ଏହାରି ସୁଯୋଗ ନେଇ ବଦରପୁର ଓ ମଥୁରା ରାସ୍ତାରେ ପଳାତକମାନଙ୍କଠାରୁ ପଇସା ଆଦାୟ କଲେ। ୱାଜିର ମଧ ଆଦେଶ ଦେଲେ କି ନାଗରିକମାନଙ୍କ ମନରୁ ଭୟ ଦୂର କରିବାକୁ ହେବ। ଅନେକ ପରିବାର ଦକ୍ଷିଣ ଦିଲ୍ଲୀରେ ଅଟକି ରହିଲେ। ମରହଟ୍ଟାମାନେ ତାଙ୍କୁ ଦିଲ୍ଲୀ ଭିତରକୁ

ପଶିବାକୁ ଅନୁମତି ଦେଲେ ନାହିଁ। ସେମାନଙ୍କ ଟଙ୍କା ଓ ଜିନିଷପତ୍ର ଜବତ କରିବାକୁ ଧମକ ଦେଲେ। ଆବଦାଲି ୨ କୋଟି ଟଙ୍କା ସମ୍ରାଟଙ୍କ କନ୍ୟାସହ ବିବାହ, ଆଉ ସିରିହିନ୍ଦର ପଶ୍ଚିମକୁ ଥିବା ଜାଗାସବୁ ନେବାକୁ ଚାହିଁଲେ। ସବୁ ପାଇଗଲେ ସେ ଫେରିଯିବେ। ଅବଦାଲି ନାରେଲାରେ ୧୭୫୭ ଜାନୁୟାରୀ ୧୭ ତାରିଖରେ ପହଞ୍ଚିଲେ। ଦେଖାହେଲା ସେଠାରେ ନାଜିବ ଖାଁଙ୍କ ସହ। ମରହଟ୍ଟାମାନେ ଫେରିଗଲେ। ଶୁକ୍ରବାର ୨୧ ତରିଖ ଜାମା ମସଜିଦରେ ଓ ରୋଷନ-ଉଦ-ଉଦ୍ଦୌଲା ମସଜିଦରେ ତାଙ୍କ ନାଁରେ କୁତୁଓ୍ୱା ପଢ଼ାହେଲା।

ଅବଦାଲି ଜାନୁୟାରୀ ୨୭ରେ ଦିଲ୍ଲୀ ପ୍ରବେଶର ଆୟୋଜନ ଦେଖିବାପାଇଁ ଆସିଲେ। ୨୮ରେ ଦିଲ୍ଲୀରେ ଏକ ବିରାଟ ଶୋଭାଯାତ୍ରା ନେଇ ପଶିଲେ। ଏପରିକି ରାସ୍ତାରେ ଲୋକ ଯାତାୟତ ମଧ୍ୟ ବନ୍ଦ ରହିଲା। ରାସ୍ତା ଦୁଇପଟର ଥିବା ଘରର ଛାତ ଉପରୁ ମଧ୍ୟ କୌଣସି ବ୍ୟକ୍ତି ଏ ଶୋଭାଯାତ୍ରାକୁ ଦେଖିପାରିବେ ନାହିଁ। ଯୁଦ୍ଧର ବିଭୀଷିକା ଧ୍ୱଂସସ୍ତୁପ ମଧ୍ୟରୁ ସେ ସବୁ ଧନରତ୍ନ ଉଗାଡ଼ିବାର ଯୋଜନା କଲେ। ଇନ୍ତଜାମ-ଉଦ-ଉଦଲା ତାଙ୍କୁ ଦୁଇକୋଟି ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ଦେଲେ। ସଙ୍ଗେ ସଙ୍ଗେ ଟଙ୍କା ନ ଦେଲେ, ତାଙ୍କ ମା (ସୋଲପୁରି ବେଗମ)ଙ୍କ ଆଙ୍ଗୁଠି ନଖଭିତରେ ଛୁଞ୍ଚସବୁ ଫୋଡ଼ାହେବ। ଏ ଧମକ ଠିକ୍ କାମଦେଲା। ଯେତେ ଯେଉଁଠି ଗୁପ୍ତଧନ ଥିଲା ସବୁ ଏକାଠି କଲେ। ଅଳଙ୍କାର, ମୋତି, ମାଣିକ ସମ୍ରାଟଙ୍କ ପରିବାରଠାରୁ ଆଦାୟ କଲେ। ଏ କାମ କରିବାପାଇଁ ଜାକ୍‌ଖିଆ ଖାଁ ଏ କାମରେ ନିଯୁକ୍ତି ପାଇଲେ। ଦିଲ୍ଲୀକୁ ଭାଗ ଭାଗ କରି ଭିନ୍ନ ଭିନ୍ନ ଲୋକଙ୍କ କରିଆରେ ଏସବୁ ଆଦାୟ କରାଗଲା। ଅବଦାଲି ଶୁଣିଲେ ହିନ୍ଦୁ ସୁନ୍ଦରୀ ସ୍ତ୍ରୀ ଅନେକ ଅଛନ୍ତି। ଆଦେଶ ଦେଲେ ସମସ୍ତଙ୍କୁ ତାଙ୍କ ନିକଟକୁ ଆଣିବାପାଇଁ। ସମ୍ରାଟ ଆଲମଗିରି ୨ୟ ତାଙ୍କ ଝିଅ କୁହାରାବେଗମଙ୍କୁ ଅବଦାଲିଙ୍କ ପୁଅ ତିମୁର ସାହଙ୍କୁ ବିବାହ ଦେଲେ। ଦିଲ୍ଲୀ ଛାଡ଼ି ଯିବା ପୂର୍ବରୁ ସେ ସମ୍ରାଟଙ୍କ ବଡ଼ପୁଅ ଔରରଙ୍କୁ ୱାଜିର ପଦରେ ଅବସ୍ଥାନ କରାଇଲେ। ଅବଦାଲି ଫେରିଗଲେ। ସେମାନଙ୍କର ଅନୁସଙ୍ଗୀମାନେ ଦିଲ୍ଲୀକୁ ପୁଣି ଲୁଣ୍ଠନ କଲେ। ଅଫିସିଆଲ ୱାଜିରଙ୍କରକୌଣସି କ୍ଷମତା ନଥିଲା। ନଜିବ ଖାଁଙ୍କୁ ଅବଦାଲି ନିଜ ମୁଖ୍ୟ ଏଜେଣ୍ଟ କରି ଦେଇଥିଲେ। ପ୍ରିନ୍ସେସ୍ ଇଷ୍ଟେଟକୁ ମିଶାଇ ଦିଲ୍ଲୀ ଉପରେ ନାଜିବ ଖାଁ ବକ୍ସିଆରକୁ ନେଇଗଲେ। ସମ୍ରାଟ ଚାହିଁଥିଲେ ଇମାଦ-ଉଲ-ମୁଲକୁ କ୍ଷମତା ହସ୍ତାନ୍ତର କରିବାପାଇଁ। ମରହଟ୍ଟାମାନେ ବି ନାଜିବ ଖାଁଙ୍କୁ ଚାହୁଁ

ନଥିଲେ। ଏ ସୁଯୋଗରେ ମରହଟ୍ଟାମାନେ ଏକ ଚତୁର୍ଥାଂଶ ଦାବି କଲେ। ମହମ୍ମଦ ସାହା ଓ ତାଙ୍କ ପୁଅ ଅହମ୍ମଦ ସାହାଙ୍କଠୁ ମରହଟ୍ଟାମାନେ ଏ ଦାବି ହାସଲ କରି ପାରିଥିଲେ। ସେତେବେଳକୁ ନଜିବ ଖାଁ ସବୁ କ୍ଷମତା ହାତକୁ ନେଇଯାଉଥିଲେ ଓ ମରହଟ୍ଟାମାନଙ୍କ ପାଇ କିଛି ନଥିଲା। ମରହଟ୍ଟାମାନେ ସେଇ ସମୟରେ ଦିଲ୍ଲୀ ଆକ୍ରମଣ କରି ପଟ୍ପରଗଞ୍ଜ ନିକଟରେ କ୍ୟାମ୍ପ ପକାଇଲେ। ଏହା ଶୁଣି ନଜିବ ଖାଁ ଯମୁନା ନଦୀର ଫେରିରାସ୍ତା (ଉତ୍ତରରେ ୱାଜିରାବାଦ ଓ ଦକ୍ଷିଣରେ କ୍ଷୀରଜାବାଦ) ସବୁ ବନ୍ଦ କରିଦେଲେ। ଯାତାୟତ ବନ୍ଦ ହେବା ଫଳରେ ଦିଲ୍ଲୀର ଆବଶ୍ୟକୀୟ ଜିନିଷର ଦରଦାମ ବଢ଼ିଗଲା। ଦକ୍ଷିଣପଟୁ କ୍ଷୀରଜାବାଦ ପାଖରେ ସବୁ ନାଳ ଖୋଲା ହୋଇଗଲା। ଏଣେ ମରହଟ୍ଟାମାନେ ଛୋଟ ଛୋଟ ଡଙ୍ଗା ସାହାଯ୍ୟରେ ଓଖଲାବାଟେ ଦିଲ୍ଲୀ ଆସି ସଫଦରଜଙ୍ଗ ଟୁମ୍ବ ଓ ଜୟସିଂଗାପୁରର ମ୍ୟାନ ଖାନ କ୍ୱାଟରରେ ଲୁଟତରାଜ ଆରମ୍ଭ କରିଦେଲେ। ରଘୁନାଥ ରାଓ କ୍ଷୀଜରାବାଦରେ ପହଞ୍ଚିଲେ। ଆତଙ୍କିତ ହେଲେ ଜନସାଧାରଣ। ପୁରୁଣା କିଲାପଟୁ ମଧ ମରହଟ୍ଟା ସୈନ୍ୟ ପହଞ୍ଚିଗଲେ। କିଛି ସମୟପାଇଁ ନରସିଂହ ଦାସ କାୟାଥ ସହିତ ମରହଟ୍ଟାମାନଙ୍କର ଲଢ଼େଇ ହେଲା। କୁତୁବ ସାହାଙ୍କ ନେତୃତ୍ୱରେ ଆଉ ଗୋଟାଏ ଦଳ ମଧ ମରହଟ୍ଟା ଦଳ ଇମାଦ୍-ଉଲ-ମୁଲ୍କଙ୍କ ସହାୟତାରେ ମହ୍ଲାର ରାଓ ହୋଲକାର ସବଜିମଣ୍ଡିକୁ ଅକ୍ତିଆର କଲେ। ଦିଲ୍ଲୀ ଫାଟକର କିଛି ଅଂଶ ନଷ୍ଟ କରିଦିଆଗଲା। ଶେଷକୁ ନଜିବ ଖାଁ ଆତ୍ମସମର୍ପଣ କଲେ ଓ ତାଙ୍କ ନିଜ ଇଷ୍ଟେଟକୁ ଫେରିଗଲେ। ସେଠୁ ଆବଦାଲିଙ୍କୁ ଦିଲ୍ଲୀ ଫେରିଆସିବାକୁ ଅନେକ ଚିଠି ଲେଖିଲେ। ଇମାଦ-ଉଲ-ମୁଲ୍କ ତାଙ୍କ କ୍ଷମତା ଫେରିପାଇଲେ ସତ କିନ୍ତୁ ଦିଲ୍ଲୀ ବାସିଙ୍କର କଷ୍ଟ ମେଣ୍ଟାଇପାରିଲେନି। ଦିଲ୍ଲୀକୁ ଅବଦାଲି ଓ ତାଙ୍କ ଦଳ ଲୁଟିନେଇ ସାରିଥିଲେ। ନଜିବ ଖାଁ ଓ ଶେଷରେ ମରହଟ୍ଟାମାନେ ଲୁଣ୍ଠନ କଲାପରେ ଦିଲ୍ଲୀ ଜନତାଙ୍କ ମନୋବଳ ଭାଙ୍ଗି ପଡ଼ିଥିଲା। ଔଷଧପତ୍ର ଓ ଖାଦ୍ୟ ପଦାର୍ଥର ଦରଦାମ ବହୁତ ବଢ଼ିଗଲା। ସାଙ୍ଗକୁ ଭୂମିକମ୍ପର ଦୌରାତ୍ମ୍ୟ। ୧୭୮୫ରେ ଦତାଜୀ ସିନ୍ଧିଆ ଓ ଜାନୋକଜୀ ସିନ୍ଧିଆ ନଜଫଗଡ଼ରେ ପହଞ୍ଚିଲେ। ଘୋଷଣା କଲେ କି ପେଶୱା ତାଙ୍କୁ ମହ୍ଲାର ରାଓ ହୋଲକାର ବଦଳରେ ଆଗ୍ରାର ସୁବେଦାର ଭାବରେ କ୍ଷମତା ଦେଇଛନ୍ତି। ତେଣୁ ରାଜଧାନୀର ଲୋକେ ତାଙ୍କୁ ଉପହାର ଦିଅନ୍ତୁ। ଇମାଦ-ଉଲ-ମୁଲ୍କ ମରହଟ୍ଟାମାନଙ୍କୁ ଘଉଡେଇବାପାଇଁ ଇଚ୍ଛା କଲେ। ୱାଜିର ୭/୮ ଲକ୍ଷ ଯଙ୍କା

ଦେବାକୁ ରାଜି ହେଲେ ଯଦି ରାଜଧାନୀକୁ ଆକ୍ରମଣ ମୁକ୍ତ କରାଯାଏ। କିନ୍ତୁ ରାଜସୈନ୍ୟଙ୍କର ଭୁଲ ବୁଝାମଣା ଯୋଗୁଁ ମରହଟ୍ଟାମାନେ ଦିଲ୍ଲୀ ଫାଟକ ଖୋଲିଦେଇ ପହଞ୍ଚିଗଲେ। ଯାହାହେଉ ଓ୍ୱାଜିରଙ୍କ ସହ ବୁଝାମଣା ପାଇଁ ଦରାଜୀ ରାଜଧାନୀ ଲୁଣ୍ଠନ ନ କରି ଫେରିଗଲେ।

ଏଣେ ଅବଦାଲିଙ୍କ ସୈନ୍ୟ ପଞ୍ଜାବ ଲୁଣ୍ଠନ କରିବା ଆରମ୍ଭ କରିଦେଲେ। ଏ ଖବର ପାଇ ଆଲମଗିରି-୨ୟ ଓ ତାଙ୍କର ନିଜର ଶତ୍ରୁ ଇନ୍ତିଜାମ-ଉଦ-ଦଉଲାଙ୍କୁ ଇମାଦ-ଉଲ-ମୁଲ୍କ ହତ୍ୟା କଲେ। ଔରଙ୍ଗଜେବଙ୍କ କନିଷ୍ଠପୁତ୍ର ଶାହାଜାହାଁ ତୃତୀୟ ରାଜଗାଦିରେ ଅଭିଷିକ୍ତ ହେଲେ। ଅନ୍ୟ ରାଜପୁତ୍ରମାନଙ୍କୁ ପ୍ରାସାଦରୁ ହଟାଇଦେଇ ଇମାଦ୍-ଉଲ-ମୁଲ୍କ ରାଜଧାନୀ ରକ୍ଷାପାଇଁ ପ୍ରସ୍ତୁତ ହେଲେ। ୧୭୬୦ ଜାନୁୟାରୀ ୯ରେ ଦରାଜୀ ସିନ୍ଧିଆ ଦିଲ୍ଲୀ ପାଖରେ ନିହତ ହେଲେ ଓ ସେମାନଙ୍କ ସୈନ୍ୟ ରାଜସ୍ଥାନକୁ ପଳାଇଲେ। ବିଜେତା ଅବଦୁଲା ଖିଜରାବାଦରେ ରହି ୟାକୁବ ଅଲି ଖାଁଙ୍କୁ ଦିଲ୍ଲୀର ସୁବେଦାର କରିଦେଲେ। ଅଲି ଖାଁ ରୀତିମତ ଭାବରେ ଖାଦ୍ୟଯୋଗାଇ ଦିଲ୍ଲୀ ବାସିଙ୍କୁ ଶାନ୍ତ କରାଇଲେ। ନିଜ ଆଇନ କାନୁନ୍ ମଧ୍ୟ ବଳବତର କରାଇଲେ। ସ୍ୱାଭାବିକ ଅବସ୍ଥା ଆସିବା ପୂର୍ବରୁ ଆଗ୍ରା ନିକଟରେ ସଦାଶିବ ଭାଉ ଦେଖାଦେଲେ। ଏ ମହାଶୟ ମରହଟ୍ଟାମାନଙ୍କୁ ସାମନା କରିବାପାଇଁ ୟାକୁବ ଅଲ୍ଲି ଖାଁ ମଧ୍ୟ ନିମନ୍ତ୍ରଣ କଲେ। ଲାହୋର ଫାଟକ ଆଗରେ ନୂଆ କାଠ ପାର୍ଟିସନ ଲଗାହେଲା। ଆଦେଶ ଦେଲେ ଦିଲ୍ଲୀ ଫାଟକ ବନ୍ଦ କରିବାପାଇଁ। ମରହଟ୍ଟାମାନେ ସେମାନଙ୍କର ଆକ୍ରମଣ ଆରମ୍ଭ କଲେ। ଖିଜରୀ ଫାଟକର ବ୍ରାସ ଫଳକ ଓ ଲୁହାରଡ଼ ଦେଇ ବନ୍ଦହେବା ସତ୍ତ୍ୱେ ଏ ଫାଟକ ଚଢ଼ି ଆଶାଦନ୍ଦିଜ ଦେଇ ପ୍ରାସାଦକୁ ପଶିଲେ। ଆବାଦାଲିଙ୍କ ସୈନ୍ୟମାନଙ୍କୁ ମାରିଦେଲେ। ତା'ପରେ ମରହଟ୍ଟାମାନେ ଦିଓ୍ୱାନି ଖାସ, ରଙ୍ଗମହଲ, ମୋତିମହଲ ଓ ସାହା ବୁର୍ଜ ଦଖଲ କଲେ। ଖାଦ୍ୟ ପରିବେଷଣ ବାଧାପ୍ରାପ୍ତ ହେଲା। ୧୭୬୦ ଅଗଷ୍ଟ ୨ରେ ୟାକୁବ ଅଲ୍ଲି ଖାଁ ଅନ୍ୟ କିଛି ଉପାୟ ନପାଇ ଦୁର୍ଗ ସମର୍ପଣ କରିଦେଲେ। ମରହଟ୍ଟାମାନେ ରାଜକୋଷ ଶୂନ୍ୟ ହୋଇଯିବାର ଦେଖିଲେ। ଏପରିକି ଶାହାଜାହାଁଙ୍କ ଦିଓ୍ୱାନ ଖାସର ରୂପାସିଲିଂ କଢ଼ା ହୋଇଯାଇଥିଲା। ସପ୍ତାହେ ଚଳିବାପାଇଁ ଆଉ କିଛି ପଇସା ନଥିଲା। ଅଗଷ୍ଟ ୬ରେ ଭାଉ ଦିଓ୍ୱାନି ଖାସର ଅବଶିଷ୍ଟ ରୂପା ଛାଉଣୀ କାଢ଼ି ନେଇ ସବୁ ରୂପାକୁ ମୁଦ୍ରାରେ ପରିଣତ କରିଦେଲେ ଆଜ ଯାହାର ମୂଲ୍ୟ ୯ ଲକ୍ଷ୍ୟ ଥିଲା। ଯଦୁନାଥ ସରକାରଙ୍କ ଭାଷାରେ ପର୍ଶିୟାନ ଓ ଆଫଗାନଙ୍କ ସ୍ମୃତିମନ୍ଦିର ଓ ସମାଧିସ୍ଥଳ ଲୁଣ୍ଠନ କଲେ। ଭାଉ ଶାହାଜାହାଁ ୩ୟଙ୍କୁ ଗାଦିଚ୍ୟୁତ

କଲେ, ଆଉ ଅଲି ଗଉହାର ଯେ କି ଆଲ୍ଲାବାଦରେ ବନ୍ଦି ଥିଲେ ତାଙ୍କୁ ଆଣି ସାହ ଆଲମ-୨ୟ କରାଇ ଗାଦିସୀନ କରାଇଲେ। ନାରୋ ଶଙ୍କରଙ୍କୁ ଦିଲ୍ଲୀର ସୁବେଦାର ଓ କିଲ୍ଲାଦାର କରାଇଲେ। ଭାଇ କୁଂଜାପୁରା ଅଭିମୁଖେ ଯାତ୍ରା କଲେ। ଯାହାହେଉ ଦିଲ୍ଲୀ ଅବଦାଲି ଓ ମରହଟ୍ଟାଙ୍କ କବଳରେ ପଡି ଧ୍ୱଂସପ୍ରାୟ ହୋଇଗଲା। ୧୭୬୧ରେ ଆବଦାଲ ମରହଟ୍ଟାମାନଙ୍କୁ ପାନିପଥରେ ହରାଇଥିଲେ ଜାନୁୟାରୀ ୧୪ ତାରିଖରେ। ପରେ ଦିଲ୍ଲୀରେ ପହଞ୍ଚି ନିଜ ଦରବାର କେତେ ମାସ ଧରି କାଏମ ରଖିଲେ। ମାର୍ଚ୍ଚ ୨୦ରେ ଯେତେ ପଇସା ଯୋଗାଡ଼ କରିପାରିଲେ ଯୋଗାଡ଼ କରି ଫେରିଗଲେ। ସାହା ଆଲାମ ବନ୍ଦୀ ଅବସ୍ଥାରେ ସମ୍ରାଟ ହୋଇ ରହିଲେ। ନଜିବ ଖାଁକୁ ସର୍ବୋଚ୍ଚ ରିଜେଣ୍ଟ ଓ ଇମାଦ୍-ଉଲ-ମୁଲ୍କଙ୍କୁ ଓ୍ୱାଜିର କରି ଫେରିଗଲେ।

## ନଜିବ ଖାଁ—

ନଜିବ ଖାଁ ଦଶବର୍ଷ ଦିଲ୍ଲୀର ଶାସନ ହାତକୁ ନେଲେ। ନିଜ ଲୋକଙ୍କୁ ସବୁ କ୍ଷେତ୍ରରେ ସୁଶାସକ ଭାବରେ ପ୍ରତିପାଦିତ କଲେ। ତାଙ୍କ ଭାଇ ସୁଲତାନ ଖାଁ ଓ ଜବିତା ଖାଁଙ୍କ ସାହାଯ୍ୟରେ ଦିଲ୍ଲୀ ଶାସନ ନିଜ ଅଧିନକୁ ଆଣିପାରିଲେ। ଆଇନ କାନୁନ୍ ବଜାୟ ରହିଲା। ଚୋରି ଡକାୟତି ବନ୍ଦ କଲେ। ଜାଟ ଆକ୍ରମଣରୁ ରକ୍ଷା କଲେ। ମରହଟ୍ଟାଙ୍କୁ ଦୂରେଇ ରଖିଲେ। ଶିଖମାନଙ୍କୁ ବି ଦୂରେଇ ଦେଲେ। ନଜିବବାଦ ନାମରେ ଏକ ନୂଆ ସହର ବସାଇଲେ। ଶେଷରେ ହାରିଯାଇ ସମ୍ରାଟଙ୍କୁ ଲେଖିଲେ କି 'ଦିଲ୍ଲୀ ସିଂହାସନର ସମ୍ରାଟଙ୍କୁ ଆଜିପର୍ଯ୍ୟନ୍ତ ଅତି ଦକ୍ଷତା ସହ ବିଶ୍ୱାସୀ ଭାବରେ ରଖି ଆସିଲେ। ଦିଲ୍ଲୀବାସୀଙ୍କୁ ଆଉ ରକ୍ଷା କରିପାରୁନାହିଁ। ବର୍ତ୍ତମାନ ସମ୍ରାଟ ତାଙ୍କ ରାଜ୍ୟଶାସନ କରିବାପାଇଁ ନିଜ ଦୁର୍ଗକୁ ଫେରି ଆସନ୍ତୁ। ମୁଁ ନିଜକୁ ନିଜେ ମଧ ରକ୍ଷା କରିପାରୁନାହିଁ। ଫେରିଗଲେ ନାଜିବାବାଦ। ୧୭୫୬ରେ ମାଡ୍ରାସରେ ଖବର ପହଞ୍ଚିଲା କି ସିରାଜୁଦ୍ଦିନ ବଙ୍ଗଳାର ନବାବ ଆଉ କଲିକତାକୁ ଦୋହଲାଇ ବ୍ରିଟିଶରମାନଙ୍କୁ ବାହାର କରି ଦେଇଛନ୍ତି। କ୍ଲାଇବ ସଙ୍ଗେ ସଙ୍ଗେ ଓ୍ୱାଟସନଙ୍କୁ ନେଇ ବଙ୍ଗଳା ଗଲେ।

## ପଲାସି ଯୁଦ୍ଧ—

ପଲାସିରେ ଦୁଇଶ ଦିନ ଧରି ଯୁଦ୍ଧହେଲା। ବ୍ରିଟିଶ ସାମ୍ରାଜ୍ୟର ମୋଗଲମାନଙ୍କଉ ସବୁଠୁ ବଡ଼ ସହର ଉପରେ ବ୍ରିଟିଶରଙ୍କର କବ୍ଜା କରିବାର ଘଟଣା ଲିପିବଦ୍ଧ ହୋଇ ରହିଗଲା। ଭାରତରେ ବଙ୍ଗଳା ବ୍ରିଟିଶ ସାମ୍ରାଜ୍ୟର ମୁଖ୍ୟସ୍ଥଳ

ହୋଇଗଲା। ଚନ୍ଦନ ନଗରରେ ଫ୍ରେନ୍ଚମାନେ ଜାହାଜପାଇଁ ପ୍ରସ୍ତୁତି କରିଥିଲେ। ଏଠାରେ କ୍ଲାଇବ ନିଜର ଫରମ୍ୟାନର କ୍ଷମତା ପ୍ରୟୋଗ କଲେ। ଫ୍ରାନ୍ସ ସହିତ ପଲାସିରେ ଯୁଦ୍ଧ ହେଲା। ବିଜୟ ହେଲା କ୍ଲାଇବଙ୍କର। ମହମ୍ମଦ ସାହାଙ୍କ ଉତରାଧୀକାରୀ ସାହା ଆଲାମ-୨ୟଙ୍କ ଉପସ୍ଥିତିରେ ଏକ ଉତ୍ସବର ଆୟୋଜନ ହେଲା। କମ୍ପାନୀକୁ ମୋଗଲ ଶାସନ ହସ୍ତାନ୍ତର କରାଗଲା। ଏ ୨୦୦ ଦିନର ଯୁଦ୍ଧକୁ ଆଜିପର୍ଯ୍ୟନ୍ତ ସମସ୍ତେ ମନେ ରଖିଛନ୍ତି। ୧୭୫୬ରେ କ୍ଲାଇବ କଲିକତା ଅଧିକାର କଲେ।

## ନଜଫ ଖାଁ-

ନଜଫ ଖାଁ କ୍ଷମତା ଫେରିପାଇଲେ ୧୭୭୩ ମେ ମାସରେ। ଯବିତା ଖାଁଙ୍କୁ ମିରବକ୍ସି ଭାବରେ ପୁନର୍ବାର ବସେଇବାକୁ ଚାହିଁଲେ। ସମ୍ରାଟ ବାରଣ କରିବାରୁ ତାଙ୍କ ସୈନ୍ୟବାହିନୀ ଓ ମରହଟ୍ଟାଙ୍କ ମଧ୍ୟରେ ପୁରୁଣା କିଲା ନିକଟରେ ୧୭୭୨ ଡିସେମ୍ବର ୧୭ ତାରିଖରେ ମୁକାବିଲା ହେଲା। ମରହଟ୍ଟା ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ। ପୁଣି ଲୁଣ୍ଠନ ଆରମ୍ଭ ହୋଇଗଲା। ଯବିତା ଖାଁ ମାତ୍ର ୪ ମାସପାଇଁ କ୍ଷମତା ପାଇଲେ। ନଜିବ ଖାଁ କିଛି ପରିମାଣରେ ଦିଲ୍ଲୀର କ୍ଷତିପୂରଣ କରିପାରିଲେ- ତାଙ୍କ ଅମଳରେ-

୧. ମରହଟ୍ଟାମାନେ ରୋହିଲାଖଣ୍ଡରେ କ୍ଷତି ସହିଲେ।
୨. ଆଫଗାନମାନେ (ଟ୍ରାନ୍ସ ଗଙ୍ଗା କଲୋନୀର) ଦିଲ୍ଲୀ ପାଇଁ ଏତେ ବଳବାନ ହୋଇପାରିଲେ ନାହିଁ।
୩. ଜାଟ (ରାଜାମାନେ) ତାଙ୍କ ରାଜ୍ୟରୁ ବେଦଖଲ ହେଲେ।
୪. ମରହଟ୍ଟାମାନେ ନିଜ ନିଜ ଭିତରେ କଳହ, ଇଂରେଜମାନଙ୍କ ସହ ଯୁଦ୍ଧରେ ମାତି ଦିଲ୍ଲୀର ଉନ୍ନତିପାଇଁ ନଜର ଦେଇପାରିଲେ ନାହିଁ।
୫. ଅବଦୁଲ ଆଜାଦ ଖାଁ- ଉପଓ୍ୱାଜିର ରିଜେଣ୍ଟ ଉପରେ ହୁକୁମତ କଲେ। ନିଜେ ମଧ୍ୟ ନଜଫ ଖାଁଙ୍କୁ ଦୁର୍ବଳ କରିବାକୁ ଚାହିଁଥିଲେ।
୬. ନଜଫ ଖାଁଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଶିଖମାନଙ୍କ ସହିତ ବୁଝାମଣା କରିବାକୁ ଇଚ୍ଛା ପ୍ରକାଶ କଲେ।
୭. ଅବଦଲ ଆଜାଦ ଖାଁ ପତିଆଲା ଚିଫଙ୍କ ସାହାଯ୍ୟ ନେଇ ଶିଶ୍-ସଟଲେଜ ଆକ୍ରମଣ କରିବାର ଯୋଜନା କଲେ।

ମନେହେଲା ଶାନ୍ତି ଫେରିଆସିଛି । ଘରେ ଘରେ ଉତ୍ସବ ଓ ଆନନ୍ଦର ଲହରି ଖେଳିଗଲା । ନୂଆ ଘର ତୋଳା, ବଜାରରେ କିଣା ବିକା ଚାଲିଲା । ନଜଫ ଖାଁ ନିଜେ ମଦ ଓ ସ୍ତ୍ରୀଲୋକ ଭିତରେ ବୁଡ଼ି ରହିଲେ । ଲତଫତ ଅଲ୍ଲି, ରିଜେଣ୍ଟ ମନ୍ତ୍ରୀ ଭାବରେ କ୍ଷମତାରେ ବଶୀଭୂତ ହୋଇ ଯାହା ଇଚ୍ଛା ତାହା କଲେ । ଧିରେ ଧିରେ ଖାଦ୍ୟ ପଦାର୍ଥ ଦରଦାମ ବଢ଼ିଲା । ଟ୍ରେଜେରୀ ଖାଲିହେଲା । ସରକାରୀ କର୍ମଚାରୀଙ୍କ ଦରମା ଦିଆଯାଇପାରିଲା ନାହିଁ । ସମ୍ରାଟ ଓ ତାଙ୍କ ହାରେମର ଲୋକେ ମଧ୍ୟ ବିନା ଖାଦ୍ୟରେ ବଞ୍ଚିବାକୁ ଲାଗିଲେ । ନଜଫ ଖାଁ ଦକ୍ଷ ଜେନେରାଲ ହେବା ସତ୍ତ୍ୱେ ପ୍ରଶାସନ ଆଡମିନିଷ୍ଟ୍ରେଟର ହିସାବରେ ବିଫଳ ହେଲେ । ଅଧିନସ୍ଥ ସୁବେଦାରମାନେ ସ୍ୱାଧୀନ ଭାବରେ ମନଇଚ୍ଛା କାମ କଲେ । ତଳ କର୍ମଚାରୀମାନେ ମଧ୍ୟ ଏକାଭଳି କାମ କଲେ । ରିଜେଣ୍ଟ ହେବାର ଦୁଇବର୍ଷ ପରେ ନଜଫ ଖାଁଙ୍କ ମୃତ୍ୟୁ ହେଲା । ଲଢ଼ାଇ ହେଲା କ୍ଷମତା ପାଇଁ । ୩ ଜଣ ଜେନେରାଲଙ୍କୁ ହତ୍ୟା କରାଗଲା । ଅବଦୁଲ ଆଲ୍ଲାଦ ଖାଁ ଆଜୀବନ କାରାଦଣ୍ଡ ଭୋଗିଲେ । ଦୁଇଜଣ ମୋଗଲଙ୍କ ଠାରୁ କ୍ଷମତା ଛଡ଼ାଇ ନିଆଗଲା । ୧୭୮୪ ବେଳକୁ ମହାଦାବଜୀ ସିନ୍ଧିଆଙ୍କ ହାତରେ କ୍ଷମତା ରହିଲା । ସମ୍ରାଟ ସାହଆଲମ ସିନ୍ଧିଆଙ୍କୁ ପେଶୱା ପଦରେ ଅଧିଷ୍ଠିତ କରାଇଲେ । ପ୍ରକୃତରେ ଦେଖିବାକୁ ଗଲେ ସମ୍ରାଟଙ୍କର ଉତ୍ତର ଭାରତରେ କେବଳ ବାସ ହୋଇ ରହିଲେ ସତ କିନ୍ତୁ ଜଣେ କଠିନ ମାଷ୍ଟ୍ର ହେଲେ । ସିନ୍ଧିଆଙ୍କ ଲେଫ୍ଟନାଣ୍ଟ ଆମ୍ବାଜୀ ଦିଲ୍ଲୀର ଦାୟିତ୍ୱ ନେଲେ । ସୁରଜପୁର ଗୁର୍ଜରମାନେ ନଜଫ ଖାଁଙ୍କ ମୃତ୍ୟୁ ଖବର ପାଇ ଦିଲ୍ଲୀ ଲୁଣ୍ଠନ କଲେ । ଆମ୍ବାଜୀ ସେମାନଙ୍କୁ ଅକ୍ତିଆର କଲେ । କିନ୍ତୁ ରାଜସ୍ଥାନରେ ସିନ୍ଧିଆଙ୍କ ପରାଜୟ ହେତୁ ଉତ୍ତର ଭାରତରେ ତାଙ୍କର ଅକ୍ତିଆର କମିଗଲା ।

**କାଦିର ଖାଁ-**

ସେତେବେଳେ ରୋହିଲା ମୁଖ୍ୟ କାଦିର ଖାଁ ଦିଲ୍ଲୀ କାବୁ କରିନେଲେ । ସମ୍ରାଟଙ୍କୁ ସୈନ୍ୟବିଭାଗରେ ଖର୍ଚ୍ଚ ଓ ଅନ୍ୟ ଖର୍ଚ୍ଚ ପାଇଁ ଟଙ୍କା ମାଗିଲେ । ଅସମର୍ଥ ହେଲେ ସମ୍ରାଟ । ସାହା ଆଲାମଙ୍କୁ ଅନ୍ଧ କଲେ । ଅଢ଼େଇ ମାସ ଧରି ଆଫଗାନଙ୍କ କର୍ତ୍ତୃତ୍ୱରେ ଦିଲ୍ଲୀ ରହିଲା । ସମ୍ରାଟ ଓ ତାଙ୍କ ପରିବାର ଅକଥନୀୟ ଦୁର୍ଦ୍ଦଶା ଭୋଗିଲେ । ରାଜପୁତ୍ର ଓ ରାଜକନ୍ୟାମାନେ ଅମାନୁଷିକ ଅତ୍ୟାଚାର ସହିଲେ । ଏପରିକି ମହମ୍ମଦ ସାହାଙ୍କ ପତ୍ନୀମାନେ ଓ ସମ୍ରାଟ ସାହା ଆଲମଙ୍କ ପତ୍ନୀ ଜନସାଧାରଣଙ୍କ ଆଗରେ

ବୁର୍ଖା ବିନା ଦେଖାଦେଲେ । ରାଜପରିବାରର ଗନ୍ତାଘରୁ ବହୁ ମୂଲ୍ୟବାନ ଅଳଙ୍କାରମାନ ଯାହାର ମୂଲ୍ୟ ୨୫ ହଜାର କୋଟି ଟଙ୍କା ହେବ ଲୁଟିନେଲେ । ଗୁଲାମ କାଦିର ଖାଁ ଜୁମା ମସଜିଦର ସ୍ୱର୍ଣ୍ଣ ଛାଉଣୀ ମଧ୍ୟ ଘେନିଗଲେ । ତା'ପରେ ଆସିଲେ ଇସମାଇଲ ବେଗମ ହାମ୍‌ଦାନୀ । ମରହଟ୍ଟା ସରଦାର ସଙ୍ଗେ ମିଳିଲେ । ସିନ୍ଧିଆଙ୍କ ସୈନ୍ୟ ରାଣା ଖାଁଙ୍କ ନେତୃତ୍ୱରେ ଶାହାଜାହାଁବାଦ ଘେରିଗଲେ । ଗୋଲାମ କାଦିର ଦୁର୍ଗରୁ ପଳାୟନ କଲାବେଳେ ଧରାହୋଇ ମୁଣ୍ଡକାଟର ଆଦେଶ ହେଲା ।

ସାହା-ଆଲାମ-୨ ୟଙ୍କୁ ସମ୍ରାଟ ଘୋଷଣା କଲେ । ସିନ୍ଧିଆଙ୍କ ପତାକା ପୁଣି ଥରେ ଦିଲ୍ଲୀରେ ଉଡିଲା ୧୩ ବର୍ଷ ପର୍ଯ୍ୟନ୍ତ । ଦିଲ୍ଲୀ ହୋଇଗଲା ମରହଟ୍ଟା ପ୍ରଦେଶ । ସାହାଜୀ ଦିଲ୍ଲୀର ଆଭ୍ୟନ୍ତରୀଣ ଶାସନ ଓ ବୈଦେଶିକ ନୀତିକୁ ସମ୍ଭାଳିଲେ । ମିଲିଟାରୀ ଶାସନ ଆଉ ଜଣକୁ ଦିଆଯାଇଥିଲା ।

## ବ୍ରିଟିଶ ପ୍ରଦେଶ

ଅଷ୍ଟାଦଶ ଶତାବ୍ଦୀର ଶେଷବେଳକୁ ଲର୍ଡ ୱେଲ୍‌ସ୍କ ଦିଲ୍ଲୀର ଗଭର୍ଣ୍ଣର ଜେନେରାଲ ହେଲେ । ବ୍ରିଟେନ ସେତେବେଳେ ଫ୍ରାନ୍ସ ବିରୁଦ୍ଧରେ ବିପ୍ଳବ ଜାରି ରଖିଲେ । ଫ୍ରାନ୍ସର ପ୍ରଭାବ ଦୂରକରି ଭାରତରେ ବ୍ରିଟିଶ ଶାସନ ଜାରି ରଖିବାକୁ ଚାହିଁଲେ । ମୋଗଲ ସମ୍ରାଟଙ୍କୁ କେନ୍ଦ୍ରକରି ବ୍ରିଟିଶରମାନେ ଶାସନ ଭାର ନେବାକୁ ଇଚ୍ଛାକଲେ । ୧୮୦୩ରେ ଆଙ୍ଗ୍ଲୋ-ମରହଟ୍ଟା ଯୁଦ୍ଧ ଆରମ୍ଭ ହେଲା । ମିଷ୍ଟର ପେରନ ଫ୍ରାନ୍ସର ଜଣେ ଜେନେରାଲ ସିନ୍ଧିଆଙ୍କ ଦିଲ୍ଲୀ ଦୁର୍ଗର ପ୍ରଧାନ ଥିଲେ । ତାକରା ପାଇଁ ଫେରିଗଲେ । ତାଙ୍କ ବଦଳରେ ବାରକେୱନ ଆସିଲେ । ସମସ୍ତେ କିଲାଦାରଙ୍କୁ ଦୁର୍ଗ ଓ ରାଜକୋଷ ହସ୍ତାନ୍ତର ପାଇଁ ଦାବି କଲେ । କିଲାଦାର ରାଜି ନ ହେବାରୁ ଦୁର୍ଗ ଉପରକୁ ବମ୍ ଫୋପାଡିଲେ । ଆତଙ୍କିତ ସମ୍ରାଟ ବ୍ରିଟିଶ ଜେନେରାଲ ଲର୍ଡ ଲେକଙ୍କୁ ସାହାଯ୍ୟ ପ୍ରାର୍ଥନା କଲେ । ଫଳରେ ଇଂରେଜଙ୍କର ମରହଟ୍ଟାଙ୍କ ସହିତ ପଟପରଗଞ୍ଜଠାରେ ଯୁଦ୍ଧ ହେଲା । ହାରିଲେ ମରହଟ୍ଟା । ଲର୍ଡ ଲେକଙ୍କୁ ରାଜପୁତ୍ର ଆକବର ସାହା ହାତୀରେ ବସାଇ ସମ୍ରାଟଙ୍କ ପାଖକୁ ନେଇଗଲେ । ତୈମୁରଙ୍କ ଦୁର୍ଗକୁ ଉଦ୍ଧାର କରିବାକୁ ଲର୍ଡ ଲେକ ଦୁର୍ଗ ଭିତରେ ପଶିଲେ । ଆରମ୍ଭ ହେଲା ବ୍ରିଟିଶରମାନଙ୍କ ରାଜତ୍ୱ । ଦିଲ୍ଲୀ ହେଲା ମୁଖ୍ୟ ରାଜଧାନୀ । ଦିଲ୍ଲୀ ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । ବ୍ରିଟିଶରମାନେ ଦିଲ୍ଲୀର ମୋଗଲ ସମ୍ରାଟଙ୍କୁ ସମ୍ମାନ ଦେଖାଇଲେ ସତ କିନ୍ତୁ ସମ୍ରାଟ ରହିଲେ ଏକ କୁହେଳିକା ଭିତରେ । ଅନ୍ୟାନ୍ୟ ଜାଗିରଦାରମାନଙ୍କୁ

କିଛି କିଛି ଜାଗା ଦିଆହେଲା। ସମ୍ରାଟ ଓ ତାଙ୍କ ପରିବାରକୁ ବାର୍ଷିକ ଟ.୧୦,୦୦୦ ଦେବାକୁ ମନସ୍ଥ କଲେ। ଅନ୍ୟାନ୍ୟ ଦାୟିତ୍ୱ ମଧ୍ୟ ସମ୍ରାଟଙ୍କ ହାତରୁ କାଢ଼ି ନିଆଗଲା। ଯଥା ରାଜସ୍ୱ ଆଦାୟ, ଆଇନ ଶୃଙ୍ଖଳା ରକ୍ଷା ଇତ୍ୟାଦି ଇତ୍ୟାଦି। ଦଣ୍ଡବିଧି ଆଇନ ମଧ୍ୟ କେବଳ ଦୁର୍ଗର ଚାରିକାନ୍ଥ ଭିତରେ ଲାଗୁ କରିବାର ଦାୟିତ୍ୱ ସମ୍ରାଟଙ୍କ ଉପରେ ନ୍ୟସ୍ତ କରାଗଲା। ଲର୍ଡ ଲେକ ଲୁଧିଆନା ବଦଳି ହୋଇଗଲେ। ପରେ ଚାର୍ଲସ ସିଟାନ, ତାଙ୍କ ଜୁନିଅର ସାର ଚାର୍ଲସ ମେଟକାଫ ଦାୟିତ୍ୱ ନେଲେ। ଆକବର ସାହା ପ୍ରାୟ ୧୮୦୬ରେ ସମ୍ରାଟ ହେଲେ। ମୁସଲମାନ ଅତ୍ୟାଚାରୀଙ୍କୁ ବହୁତ କଷ୍ଟ ଦିଆଗଲା। ଗଭର୍ଣ୍ଣର ଜେନେରାଲ ହେଷ୍ଟିଂସ୍ ସମ୍ରାଟଙ୍କର ଏ ପ୍ରକାର ଉତ୍ସବକୁ ବନ୍ଦ କରିବାକୁ ଚାହିଁଲେ। ହେଷ୍ଟିଂସ୍‌ଙ୍କ ଏ ପ୍ରକାର କାମରେ ସମ୍ରାଟ ଆଘାତ ପାଇଲେ। ତା ପରେ ୧୮୧୪କୁ କ୍ଷମତାକୁ ଆସିଲେ। ସେ ମଧ୍ୟ ଏ ପ୍ରକାର ପ୍ରଥା ଚାଲୁରଖିଲେ। ତା'ପରେ ଆସିଲେ ଲର୍ଡ ଉଇଲିୟମ ବେଣ୍ଟିଂ। ସେ ମଧ୍ୟ ସବୁ ବନ୍ଦ କରିଦେଲେ। ସମ୍ରାଟ ବାର୍ଷିକ ଭତ୍ତା ବଢ଼େଇବା ପାଇଁ ଅନୁରୋଧ କରିଥିଲେ। ସେଥିରେ ମଧ୍ୟ ସେ ରାଜି ହେଲେନାହିଁ। ଏ ସଂକ୍ରାନ୍ତରେ ସମ୍ରାଟ ରାଜା ରାମମୋହନ ରାୟଙ୍କୁ ତାଙ୍କ ଓକିଲ ଭାବରେ ତାଙ୍କ ଦାବୀ ପୂରଣର ସୁପାରିଶ କରିବାପାଇଁ ଇଂଲଣ୍ଡ ପଠାଉଥିଲେ। କିନ୍ତୁ ଫଳ କିଛି ହେଲାନାହିଁ। ମେଟକାଫଙ୍କ ପରେ ସେଲିବ୍ରୋକ ଆସିଲେ। ସେଲିବ୍ରୋକଙ୍କ ନାଁରେ ତାଙ୍କ ତଳିଆ କର୍ମଚାରୀ ରେସିଡେଣ୍ଟର ସହକାରୀ ଅଫିସର ଟ୍ରେଭେଲିୟାନ ପ୍ରଥମେ କେଶ୍ କଲେ। ଅଭିଯୋଗ ଥିଲା- ସେଲିବ୍ରୋକ ତୋଷଖାନାର ଜିନିଷସବୁ ଅଧାଦାମରେ ବିକିବାର ବନ୍ଦୋବସ୍ତ କରି ବାକି ଅଧା ପଇସା ନିଜପାଇଁ ସ୍ଥଗିତ ରଖିଥିଲେ। ସେଲିବ୍ରୋକଙ୍କୁ ନିଲମ୍ବିତ କରି ଫ୍ରାନସିସ୍ ହକିନ୍ସଙ୍କୁ ତାଙ୍କ ଜାଗାରେ ରଖାଗଲା। ହକିନ୍ସ ରାଜାଙ୍କୁ ଏକ ନଜର ଗୋଟିଏ ହାତରେ ଦେଲେ। ଆହୁରି ମଧ୍ୟ ନକରଖାନା ଫାଟକ ଦେଇ ଘୋଡା ଚଢ଼ିଗଲେ। ଏ ଜାଗାକୁ ଅତିଥିମାନେ ଦିୱାନି ଆମରେ ଓହ୍ଲାଇବାପାଇଁ ଉଦ୍ଦିଷ୍ଟ ଥାଏ ଆଉ ସେଠୁ ଏଇ ଅତିଥିମାନେ ଦିୱାନି ଖାସକୁ ଯାନ୍ତି। ଏସବୁଘଟଣା ଘଟିଗଲା ସମ୍ରାଟଙ୍କର ବିରୋଧ ସତ୍ତ୍ୱେ। ସେଥିପାଇଁ ପ୍ରାସାଦ ରକ୍ଷଣାବେକ୍ଷଣ ଦାୟିତ୍ୱରୁ ଓହରାଇ ଦିଆଗଲା। ତାଙ୍କ ଜାଗାରେ ଉଇଲିୟମ ଫ୍ରେଜରଙ୍କୁ ନିଯୁକ୍ତି ଦିଆଗଲା।

ଫ୍ରେଜର ଜଣେ ଦକ୍ଷ ଅଫିସର। କିନ୍ତୁ ବାଧା ବିଘ୍ନ ନ ଘଟାଇ ସେ କୌଣସି ଦାୟିତ୍ୱ ତୁଲାଇପାରନ୍ତି ନାହିଁ। ଶାମଉଦ୍ଦିନ, (ଫିରୋଜପୁର ନବାବ) ଲାହାର ରାଜ୍ୟରୁ

କୌଣସି ଅଂଶ ହସ୍ତାନ୍ତର କରିବାକୁ (ତାଙ୍କ ଦୁଇ ସାନଭାଇଙ୍କ ରକ୍ଷଣାବେକ୍ଷଣ ପାଇଁ) ଚାହୁଁ ନଥିଲେ। କିନ୍ତୁ ତାଙ୍କ ପିତା ଅହମଦ ବକ୍ସଙ୍କ ଉଇଲରେ ଏହା ଲେଖାଥିଲା। ଫ୍ରେଜର ବଡ଼ଭାଇଙ୍କୁ କଲିକତା ଯାଇଁ ସେମାନଙ୍କ ଦାବିକୁ ପେସ କରିବାକୁ ଉପଦେଶ ଦେଲେ। ଫ୍ରେଜରଙ୍କ ଏଇ ଯୋଜନା ଶାମଉଦ୍ଦିନ ଜାଣିପାରି ତାଙ୍କୁ କଥାବାର୍ତ୍ତା କରିବାକୁ ଡକାଇଲେ। ଫ୍ରେଜର ତାଙ୍କ ସହିତ ଦେଖା କରିବାକୁ ମନା କରିଦେଲେ। ଖାଲି ଯେ ମନାକଲେ ତାହା ନୁହେ ତାଙ୍କୁ ବାହାର କରିଦେଲେ। ତାଙ୍କର ଘନିଷ୍ଠ ସଂପର୍କୀୟ ଭଉଣୀଙ୍କୁ ମଧ୍ୟ ବଳାତ୍କାର କଲେ। ସେ ଝିଅଟି ଫ୍ରେଜରଙ୍କୁ ବଡ଼ଭାଇ ବୋଲି ମାନୁଥିଲେ। କାହାଣୀର ମୋଡ଼ ଯାହା ହେଉନା କାହିଁକି ଶାମଉଦ୍ଦିନ ଲୋକ କରିମ ଖାଁଙ୍କ ସାହାଯ୍ୟରେ ଫ୍ରେଜରଙ୍କୁ ହତ୍ୟା କରାଇଦେଲେ। ନବାବ ଓ କରିମ ଖାଁଙ୍କ ବିଚାର ହେଲା ଓ ମୃତ୍ୟୁଦଣ୍ଡ ହେଲା। ଏ ମକଦ୍ଦମା ଚାଲିଥିବାବେଳେ ଖବର କାଗଜରେ ଛପା ହେଲା। ଇଂରେଜମାନଙ୍କ କଥାନୁସାରେ କାଶ୍ମୀରଗେଟରୁ ମୋରି ଗେଟ ପର୍ଯ୍ୟନ୍ତ ଫାଶିଖୁଣ୍ଟ ତିଆରି ହୋଇଥିଲା। ଏହାକୁ ଦେଖା ଚାହାଁ କରିବା ପାଇଁ ରେଜିମେଣ୍ଟର ପଦାତିକ ସୈନ୍ୟ ନିଯୁକ୍ତି ହୋଇଥିଲେ। ନବାବ ସାହସର ସହିତ ଏହା ଉପରେ ଉଠିଗଲେ। ଆଠହଜାର ଦିଲ୍ଲୀ ମୁସଲମାନ ତାଙ୍କ କବରରେ ପ୍ରାର୍ଥନା କରିଥିଲେ। କରିମ ଖାଁଙ୍କୁ 'ଗୁଲ-ସହିବ' ଆଖ୍ୟା ଦେଇଥିଲେ। କିନ୍ତୁ ଏ ଦୁଇଜଣଙ୍କର ଶୁଣାଣିବେଳେ ଉର୍ଦ୍ଦୁପ୍ରେସ ଜନ୍ମନେଲା। ଅନ୍ୟାନ୍ୟ ମୋଗଲ ଅଧିକୃତ ରାଜ୍ୟ ଅପେକ୍ଷା କଲିକତା ଅଧିକ ସ୍ଥାୟୀ ଓ ଉନ୍ନତିପଥରେ ଗତି କରୁଥିଲା। ନବାବଙ୍କ ଛତ୍ରଛାୟା ତଳେ ଜମୀଦାରମାନେ ଏକଜୁଟ ହୋଇ ନିଶ୍ଚିତ ରାସ୍ତାରେ ଚାଲୁଥିଲେ।

ମୁର୍ଶିଦ ଅଲି ଖାଁଙ୍କୁ ରାଜସ୍ୱ ବୃଦ୍ଧିର ରାସ୍ତା ଦେଖାଇବାପାଇଁ ହାଇଦ୍ରାବାଦରୁ ଦିୱାନ କରି ଆଣିଥିଲେ ବଙ୍ଗଳାକୁ। ଏ ମୁର୍ଶିଦ ଅଲ୍ ଖାଁଙ୍କୁ ଔରଙ୍ଗଜେବ ଜଣେ ବ୍ରାହ୍ମଣବଂଶରୁ କିଣିଥିଲେ। କିଣିଲା ପରେ ମୁସଲମାନ ଧର୍ମ ଦିକ୍ଷୀତ କରାଇ ମୋଗଲ ସାମ୍ରାଜ୍ୟର କାର୍ଯ୍ୟରେ ନିୟୋଜିତ କରିଥିଲେ। ସେ ଶେରସାହ ଓ ଟୋଡ଼ରମଲ୍ଲଙ୍କ ପରି ନୂଆ କର ବସାଇ ତାଙ୍କୁ ନିଷ୍ଠୁର ଭାବରେ ଆଦାୟ କରୁଥିଲେ। ବଙ୍ଗଳା ଓ ଦାକ୍ଷିଣାତ୍ୟର ଦାୟିତ୍ୱ ମୁର୍ଶିଦ ଅଲ୍ଲିଖାଁଙ୍କୁ ଦେଲେ। ଔରଙ୍ଗଜେବ ତାଙ୍କୁ ଢାକାରୁ ନେଇ 'ମୁର୍ଶିଦାବାଦ'କୁ ରାଜଧାନୀ ଭାବରେ ଦାନ କଲେ। ଔରଙ୍ଗଜେବଙ୍କ ମରିବାର ୨୦ ବର୍ଷ ପରେ ମଧ୍ୟ ସେ ୧୦ ମିଲିୟନ ଟଙ୍କା ପ୍ରତିବର୍ଷ ରାଜସ୍ୱ ଭାବରେ ଦେଉଥିଲେ। ସେ ତାଙ୍କ ଜୋଇଁ ମୁର୍ଶିଦ ଅଲି ଖାଁଙ୍କୁ ବଙ୍ଗଳାର ନବାବ ଭାବରେ

ଅବସ୍ଥାପିତ କରାଇଥିଲେ। ୧୭୨୭ରୁ ୧୭୩୯ ପର୍ଯ୍ୟନ୍ତ ଏହି କ୍ଷମତାରେ ଥିଲେ। ନାଦିର ସାହଙ୍କ ଲୁଣ୍ଠନବେଳେ ଏ ରାଜସ୍ୱ ଆଉ ଦିଲ୍ଲୀକୁ ପଠାହେଲା ନାହିଁ। ୧୭୪୦ରେ ଅନୁପ୍ରବେଶକାରୀ ଭାବରେ ଜଣେ ଆଲିବର୍ଦ୍ଦି ଖାଁ ଥିଲେ। ମରହଟ୍ଟା ଭୋଁସଲେ (ନାଗପୁରର) ବଙ୍ଗଳାରେ ପଶି ମୁର୍ଷିଦାବାଦର ଫାଟକ ସବୁ ନଷ୍ଟ କରିଦେବାର ଚେଷ୍ଟାରେ ଥିଲେ। ଆଲିବର୍ଦ୍ଦି ଖାଁ ମରହଟ୍ଟାମାନଙ୍କ ପାଇଁ ସୀମା ସ୍ଥିର କରିଦେଇ ତାଙ୍କୁହୁଗୁଳିନଦୀ ପାରହେବାକୁ ଦେଲେ ନାହିଁ। ୧୭୫୧ରେ ତାଙ୍କୁ ଓଡ଼ିଶାକୁ ପଠାଇଦେଲେ।

କଲିକତାର ନବାବ ଭାବରେ ଆଲିବର୍ଦ୍ଦି ଖାଁ ଚତୁରତାର ସହିତ ବ୍ରିଟିଶ, ଡଚ ଓ ଫ୍ରେନ୍‌ଚ ବ୍ୟବସାୟୀମାନଙ୍କଠାରୁ କେବଳ ରାଜସ୍ୱ ଆଦାୟ କରିବାରେ ଚେଷ୍ଟା କଲେ। ତାଙ୍କ ଉତ୍ତରାଧିକାରୀ ସିରାଜ-ଉଦ୍-ଦୌଲା (ତାଙ୍କ ନାତି) ବିଶେଷ ଭାବରେ ଅପରିଣାମଦର୍ଶୀ ଥିଲେ। ଗୋଟିଏ ବର୍ଷ ଭିତରେ ସେ ନିଜ କ୍ଷମତା ତାଙ୍କ କେଢେବାପାଙ୍କ ଅଫିସର, ବଡ଼ ବଡ଼ ଜମୀଦାର, ବ୍ୟାଙ୍କ ଅଧିକାରୀ ଓ ବ୍ରିଟିଶ ବ୍ୟବସାୟୀମାନଙ୍କଠାରୁ ହସ୍ତାନ୍ତର କରି ଆଣିଲେ। ସିରାଜ-ଉଦ୍‌ଦୌଲା କଲିକତାର ବ୍ରିଟିଶ ଲୋକଙ୍କୁ ହଟେଇବାରେ ତତ୍‌ପର ହୋଇ 'ମରହଟ୍ଟା-ଡଚ'ର ଅପରପାର୍ଶ୍ୱରେ ଠିଆହେଲେ ସୈନ୍ୟସାମନ୍ତ ଧରି। ପାଞ୍ଚଦିନ ଧରି ଯୁଦ୍ଧ ହେଲା ସତ କିନ୍ତୁ କୌଣସି ସମାଧାନ ହୋଇପାରିଲାନି। ଜାହାଜ ଭିତରକୁ ବ୍ରିଟିଶରମାନେ ଆଶ୍ରୟ ନେବା ଉଦ୍ଦେଶ୍ୟରେ ପଳାଇଗଲେ। ହଠାତ୍ ସିରାଜଉଦୌଲା କଲିକତା ଶାସକବୋଲି ନିଜକୁ ଧରିନେଲେ। ଯେଉଁ ଇଂରେଜମାନେ ଜାହାଜ ଭିତରକୁ ନ ଯାଇପାରିଲେ ତାଙ୍କ ସାଙ୍ଗରେ ହାତ ମିଳାଇ ସେମାନଙ୍କୁ ଏକ ନିର୍ଜନ କୋଠରୀ (ଅନ୍ଧକୂପ) ଭିତରେ ଅଟକାଇ ରଖିଲେ। ଶ୍ୱାସରୁଦ୍ଧ ହୋଇ ସେମାନଙ୍କ ଭିତରୁ ଅନେକ ମରିଗଲେ। ଏ ପ୍ରକାର ବ୍ୟବହାର ଉଦ୍ଦେଶ୍ୟମୂଳକ ଥିଲା। ଏହାହିଁ ଅନ୍ଧକୂପ ହତ୍ୟା ଥିଲା। ଏ ଘଟଣାପରେ ବ୍ରିଟିଶମାନଙ୍କ ସହିତ ଆଉ କୌଣସି ବୁଝାମଣାର ସୁଯୋଗ ନଥିଲା। ସିରାଜଦୌଲାଙ୍କୁ ତାଙ୍କ ନିଜ କମାଣ୍ଡର ମିରଜାଫର କ୍ଲାଇବଙ୍କ ସହିତ ବ୍ୟକ୍ତିଗତ ବୁଝାମଣାକରି ତଡ଼ିଦେଲେ ଓ ନିଜେ ବଙ୍ଗଳାର ଗଭର୍ଣ୍ଣର ହେଲେ। ୧୭୫୯-୬୦-୬୧ବେଳର କଥା। ବିହାର ବଙ୍ଗଳାର ଏକ ଅଙ୍ଗ ବୋଲି ଗଣାଯାଉଥିଲା। ପ୍ରିନ୍ସ ସାହ ଆଲାମ ମୋଗଲଙ୍କର ସମ୍ରାଟ ବୋଲି ଗଣା ହୋଇଥିଲେ। ଅଓଧର ନବାବଙ୍କ ସହାୟତାରେ କଲିକତା ଆକ୍ରମଣ କଲେ। ଯୁଦ୍ଧ ଜନିତ ଖର୍ଚ୍ଚ

କମ୍ପାନୀ ମିରଜାଫରଙ୍କ ନିକଟରୁ ଦାବିକଲେ। ସେ ମନା କରିବାରୁ ମିରଜଫରଙ୍କ ଜୋଇଁ ମୀର କାସିମଙ୍କୁତାଙ୍କ ଜାଗାରେ ଅଧିଷ୍ଠିତ କରାଇଲେ। ମିର କାସିମ କଲିକତାର ତଳଭାଗ କମ୍ପାନୀଙ୍କୁ ହସ୍ତାନ୍ତର କରିବାକୁ ରାଜି ହୋଇଗଲେ।

## ସାହା ଆଲମ (୧୭୫୯-୧୮୦୬)

ସାହା ଆଲାମର ଅର୍ଥ ବିଶ୍ୱର ରାଜା। ମରହଟ୍ଟାମାନେ ଜେନେରାଲ ଲକଙ୍କ ଦ୍ୱାରା ପରାଜିତ ହେଲେ। ୧୮୦୩ ସେପ୍ଟେମ୍ବର ୧୧ରେ ଇଂରେଜମାନେ ଦିଲ୍ଲୀରେ ପ୍ରବେଶ କଲେ। ସମ୍ରାଟ ସାହ ଆଲମ ଓ ତାଙ୍କ ପରିବାର ପାଇଁ ରହିବା ଓ ଚଳିବାର ବ୍ୟବସ୍ଥା କରାଗଲା। ରହଣୀଜାଗା ଥିଲା ଦିଲ୍ଲୀ ରେସିଡେଣ୍ଟ ଅଧିନରେ ଥିଲା। ସମ୍ରାଟଙ୍କୁ ରାଜସ୍ୱ ଆଦାୟ ଓ ନ୍ୟାୟ ଚଳେଇବାର ଅଧିକାର ଦିଆଗଲା। ଜଣେ ଦିୱାନ ମଧ୍ୟ ସମ୍ରାଟ ଅବସ୍ଥାପିତ କରେଇପାରିବେ। ମୁସଲମାନ ଆଇନ ଅନୁଯାୟୀ ଦେବାନୀ ଓ ଫୌଜଦାରୀ ନ୍ୟାୟ ବିଚାର କରିବାର ଅଧିକାର ମଧ୍ୟ ତାଙ୍କୁ ମିଳିଲା। ଗୁଲାମ କାଦିର ଖାଁ ସମ୍ରାଟଙ୍କୁ କହିଲେ, ସୈନ୍ୟବିଭାଗକୁ ଦେବାପାଇଁ ଟଙ୍କା ଦିଅ। ସେତିକିବେଳକୁ ଖବର ଆସିଥିଲା କି ରାଣୀ ଭିକ୍ଟୋରିଆଙ୍କ ତରଫରୁ ସୈନ୍ୟବିଭାଗର ଖର୍ଚ୍ଚ ନିମେନ୍ତ ଦଶଲକ୍ଷ ଯଙ୍କା ଦିଆଯିବ। ସେ ବିଷୟ ସେ ସମ୍ରାଟଙ୍କୁ ନ ଜଣାଇ ତାଙ୍କ ପାଖରୁ ଆଉ ଅଧିକ ଟଙ୍କା ଆଦାୟ କରିବା ଇଚ୍ଛାରେ ଥିଲେ। କାରଣ ରାଣୀଙ୍କର ନିର୍ଦ୍ଦେଶ ଥିଲା ଦଶଲକ୍ଷ ଟଙ୍କା ବଦଳରେ କାଦିର ଖାଁ ସମ୍ରାଟଙ୍କୁ ଗାଦିଚ୍ୟୁତ କରିବାରେ ସାହାଯ୍ୟ କରିବେ। କାଦିର ଖାଁ ମୋଗଲ ସାମ୍ରାଜ୍ୟର ଅନୁଗତ ଥିଲେ। ରାଣୀଙ୍କ ସର୍ତ୍ତରେ ରାଜି ହୋଇଗଲେ। କାଦିର ଖାଁ କ୍ଷମତା ହସ୍ତାନ୍ତର କରିବାପାଇଁ ସମ୍ରାଟଙ୍କ ସହ ଏକ ଚୁକ୍ତିନାମାରେ ଦସ୍ତଖତ କରାଇଦେଲେ। କୋରାନ ଛୁଇଁ କହିଲେ, ତୁମର ଇଚ୍ଛା ପୁରଣ ପାଇଁ ମୁଁ ସବୁ ସର୍ତ୍ତରେ ରାଜି ଅଛି। ଆଉ ସବୁ କ୍ଷମତାକାଦିର ଖାଁଙ୍କ ହାତକୁ ଚାଲିଗଲା। ସମ୍ରାଟଙ୍କ ପୁତ୍ର ଆକବର ସାହା କହିଲେ ଆମ ଭାଇମାନଙ୍କୁ ଆଦେଶ ଦିଅନ୍ତୁ, ଆମେ ସବୁ ଠିକଣା କରିଦେବୁ। ସମ୍ରାଟ ଚୁପ ରହିଲେ।

ରାଜପୁତ୍ରମାନଙ୍କ ସହ ସମ୍ରାଟ୍ ସକାଳର କଅଁଳ ସୂର୍ଯ୍ୟ କିରଣକୁ ଉପଭୋଗ କରୁଥିଲେ। କାଦିର ଖାଁ ଆଦେଶଦେଲେ ସମ୍ରାଟଙ୍କୁ ତଳେ ପକାଇ ଅନ୍ଧ କରିଦିଅ। ଆଦେଶ ପାଳନ ହେଲା। କିଛି ସମୟ ପରେ କାଦିର ସମ୍ରାଟଙ୍କୁ ପଚାରିଲେ

ବର୍ତ୍ତମାନ କ'ଣ ଦେଖିପାରୁଛ ? ସମ୍ରାଟ ଉତ୍ତରଦେଲେ, ତମେ ମୋ' ମଧ୍ୟରେ ଥିବା କୋରାନକୁ ଦେଖିପାରୁଛି । ସୁନା ଦାବି କଲେ କାଦିର ଖାଁ । ଧମକ ଦେଲେ, ସୁନା ନ ଦେଲେ ତୁମକୁ ମାରିଦେବୁ । ଶାନ୍ତ ସମ୍ରାଟ କହିଲେ, ଏପରି ବଞ୍ଚିବା ଅପେକ୍ଷା ତମେ ମତେ ମାରିଦେଲେ ମୁଁ ଖୁସିହେବି । ଏ କଥା ଶୁଣି କାଦିର ସମ୍ରାଟଙ୍କ ଛାତି ଉପରକୁ କୁଦିପଡ଼ିଲେ । ଦୁଇଜଣ ସହକାରୀ ସମ୍ରାଟଙ୍କ ଡୋଳା ତାଡି ଦେଲେ । ତା ପରଦିନଠୁ ସମ୍ରାଟ ଓ ତାଙ୍କ ପିଲାମାନଙ୍କୁ ଖାଇବା ମଧ୍ୟ ବନ୍ଦ କରିଦେଲେ । ସାହା ଆଲାମ ଓ ରାଜପୁତ୍ରମାନଙ୍କୁ ମୋତିମହଲରେ ବନ୍ଦୀ କରି ରଖାଗଲା । ଥରେ ସମସ୍ତଙ୍କୁ ଖରାରେ ବସାଇଦେଇ ଅଧିକ ଧନରତ୍ନ ଦେବାକୁ ଧମକଦେଲେ । ସାହ ଆଲମ ଉତ୍ତର ଦେଲେ ମୋର ରକ୍ଷକମାନଙ୍କୁ ପଚାର ସେମାନେ ହୁଏତ କହିପାରିବେ । ସେ କଥାରେ ବିଶ୍ୱାସ କରି ଅନେକ ସ୍ତ୍ରୀ ଅନୁଚରମାନଙ୍କୁ ପଚାରିଲେ । କୌଣସି ଉତ୍ତର ନ ପାଇ ସେମାନଙ୍କ ପାଦ ଓ ହାତପାପୁଲିରେ ଗରମ ତେଲ ଢାଳିଦେଲେ । ଛଟପଟ ହେଲେ ଯନ୍ତ୍ରଣାରେ । ବରଫର ଝୁଲଣା ଭିତରେ ଅଛି ବୋଲି ଜଣାଇଲେ । ପ୍ରାୟ ଦୁଇଟା ଖଣ୍ଡେ ବାକ୍ସର ସୁନାରୂପା କାଦିର ଖାଁ ଘେନିଗଲେ । କାଦିର ଖାଁ ପଲାସି ଯୁଦ୍ଧପରେ ଜଫର ଖାଁଙ୍କୁ ଗାଦିଚ୍ୟୁତ କରେଇବାରେ ସାହାଯ୍ୟ କଲେ । ଏ ଜଫର ଖାଁଙ୍କୁ ବ୍ରିଟିଶରମାନେ ବଙ୍ଗଳାର ସୁବେଦାର ପଦରେ ଅଧିଷ୍ଠିତ କରାଇଥିଲେ । କାରଣ ଜଫର ଖାଁ ବିଶ୍ୱାସଘାତକତା ଫଳରେ ଇଂରେଜମାନେ ପଲାସି ଯୁଦ୍ଧରେ ଜିତେଇଥିଲେ । ବ୍ରିଟିଶରମାନେ ରାଜାଜ୍ଞା ପାଇବା ପର୍ଯ୍ୟନ୍ତ ଅପେକ୍ଷା କରି ନଥିଲେ ।

୧୭୬୦ ବେଳର କଥା । ସାହାବାଦର ସାସେରାମ ରାଜପୁତ୍ର ଆଲାଇଘୋର ତାଙ୍କ ନିଜ ସୈନ୍ୟ ନେଇ ବଙ୍ଗଳା ଆଡ଼କୁ ମାର୍ଚ୍ଚ କରି ଯିବାବେଳକୁ ତାଙ୍କୁ ସମ୍ରାଟ ବୋଲି ଅଭ୍ୟର୍ଥନା କରିଥିଲେ ଓ ସାହା ଆଲାମ ଉପାଧିରେ ଭୂଷିତ କରିଥିଲେ । ସେତେବେଳକୁ ଆଲାଇଘୋର ଜାଣିନଥିଲେ କି ତାଙ୍କ ପିତାଙ୍କୁ ରାଜନୈତିକ କାରଣରୁ ହତ୍ୟା କରାଯାଇଛି । ଏ ଉପାଧିଙ୍କୁ ଖଣ୍ଡନ କଲେ ତାଙ୍କର ୱାଜିର, ଅବଧର ନବାବ ସୁରଦୌଲା । ସେତେବେଳକୁ East India Company ସମ୍ରାଟ ସାହା ଆଲାମଙ୍କ ସହିତ ବନ୍ଧୁତ୍ୱ ସୂତ୍ର ସ୍ଥାପନ କରି ବେଙ୍ଗଲ, ବିହାର ଓ ଓଡ଼ିଶାର ସଂପୂର୍ଣ୍ଣ ଶାସନ ହାତକୁ ନେଇ ଯାଇଥିଲେ । ରାଜସ୍ୱ ଭାବରେ ଏଥିରୁ ୩,୦୦,୦୦୦ ଷ୍ଟର୍ଲିଂ ପାଉଥିଲେ । ସେଥିରୁ ସମ୍ରାଟଙ୍କୁ ବର୍ଷକୁ ୨୬ ଲକ୍ଷ ଟଙ୍କା ଦେଉଥିଲେ । ଏହାଛଡ଼ା

ସେମାନେ ଆଲ୍ହାବାଦ ଓ କେରାରୁ ୩୦,୦୦୦ ଷ୍ଟର୍ଲିଂ ମଧ୍ୟ ଆଦାୟ କରୁଥିଲେ। ସେମାନେ (East India Company) ସମ୍ରାଟଙ୍କୁ ଆଲ୍ହାବାଦ ପଠାଇଦେଲେ। ସମ୍ରାଟଙ୍କୁ କିନ୍ତୁ ଜଣା ନଥିଲା କି ସେଠାରେଏକ ବନ୍ଦୀ ଜୀବନ କଟାଇବେ। ଅବଶ୍ୟ ତାଙ୍କ ପାଖରେ କିଛି ଉପାୟ ନଥିଲା। ଶେଷରେ ତାଙ୍କୁ ଦିଆଯାଉଥିଲା ସମସ୍ତ ଟଙ୍କା କାଟି ଦିଆଯାଇଥିଲା। ଶାହାଜାହାଁ-ଆବାଦ ଶାହାଜାହାଁଙ୍କ କଲୋନୀ। ନିଜର ନାଁକୁ ଅମର ରଖିବାପାଇଁ ଦିଲ୍ଲୀ ନିକଟରେ ଶାହାଜାହାଁବାଦ ତିଆରି କଲେ। ନିଜ ସଂସ୍କୃତି ଓ ଜୀବନଶୈଳୀକୁ ବଜାୟ ରଖି ସମ୍ରାଟ ଶାହାଜାହାଁ ଏହାକୁ ତୋଳାଇଥିଲେ। ଏହାରି ଉପରେ ତିନୋଟି ରାଜନୈତିକ ଘଟଣାବଳୀର ପ୍ରଭାବ ପଡ଼ିଥିଲା।

୧. ସିପାହୀ ବିଦ୍ରୋହ ଓ ତହିଁପରର ଘଟଣା-୧୮୫୭-୫୮

୨. ବ୍ରିଟିଶ ରାଜଧାନୀ କଲିକତାରୁ ଦିଲ୍ଲୀ ଆସିବା-୧୯୧୧-୧୨

୩. ସ୍ୱାଧୀନ ଭାରତର ପ୍ରଭାବ-୧୯୪୭

୧୮୦୩ ବେଳକୁ ଆଫଗାନ ଓ ମରହଟ୍ଟାମାନଙ୍କ ଆକ୍ରମଣ ବା ଦିଲ୍ଲୀରେ ଇଂରେଜ ଶାସନ ଆରମ୍ଭ ବେଳେ ଏପରି ପ୍ରଭାବ ପଡ଼ି ନଥିଲା। ସେତେବେଳକୁ ସମ୍ରାଟଙ୍କର ରାଜପ୍ରାସାଦ ଉପରେ ଅଧିକାର ମଧ୍ୟ କମିଗଲା। ରାଜସ୍ୱ ଦେବା ମଧ୍ୟ କମେଇଦେଲେ। ରାଜନୈତିକ ଦୃଷ୍ଟିକୋଣରୁ ତାଙ୍କୁ ଦୁର୍ବଳ କରି ଦିଆଗଲା। ତେବେ ବି ଦିଲ୍ଲୀ ଉପରୁ ସେମାନଙ୍କର କର୍ତ୍ତୃତ୍ୱ କମି ନଥିଲା। ଗୁଡ଼ି ଉଡ଼ା କାର୍ଯ୍ୟକ୍ରମ ଦେଖିବେ ବୋଲି ଦେବେନ୍ଦ୍ର ନାଥ ଟାଗୋର ନୌକାଯାତ୍ରା କରି ପହଞ୍ଚୁଥିଲେ। ଗାଲିବ ଓ ଜକଙ୍କ ଦ୍ୱାରା ମୁଶାୟରା ପରିବେଷଣ କରାଯାଉଥିଲା। ରିଜ୍‌ର ଉତ୍ତର ପଶ୍ଚିମ କୋଣରେ ଯମୁନା ସହିତ ଏକ ପୋଲ ଜରିଆରେ ସଂଯୋଗ କରାଯାଉଥିଲା। ଏହାପରେ ଆଖପାଖରେ ଜମିର ଦାମ ମଧ୍ୟ ବଢ଼ିଗଲା। ବ୍ରିଟିଶରମାନେ ଦିଲ୍ଲୀକୁ ଆସିବା ପରେ ଦିଲ୍ଲୀରଲୋକସଂଖ୍ୟା ମଧ୍ୟ ବଢ଼ିବାକୁ ଲାଗିଲା। ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଭାଇଚାରା ସଂପର୍କ କେତେକାଂଶରେ ବୃଦ୍ଧି ପାଇଥିଲା। ଦିଲ୍ଲୀ କଲେଜ, ଚାନ୍ଦନୀଚୌକ, ସବନ୍ଦୁଲା ଚୌକ ସବୁଠି ଲୋକ ସମାଗମ ହେଉଥିଲା। ବସନ୍ତ ଉତ୍ସବରେ ଦିଲ୍ଲୀକୁ ଏକ ଦୁଲହନ ବେଶରେ ସଜାଇ ଦିଆଯାଉଥିଲା। ବିବାହ ଉତ୍ସବ, ମୁଶାୟାରା, ଗାଜିଉଦ୍ଦିନ ମଦାରସା, ଫୁଲବାଲୌଁକି ଶାୟରୀ ଇତ୍ୟାଦି ଉତ୍ସବରେ ଦିଲ୍ଲୀର ଆଜମୀରଗେଟ ସାରାରାତି ଖୋଲା ରହୁଥିଲା। ସାହା ଆଲାମଙ୍କ ପଇସା କମେଇ ଦିଆଗଲା। ନିଜ ଅବସ୍ଥା ସେ ଅନୁଭବ କରିପାରିଲେ। ସେଇ

କାରଣରୁ ସେ ମରହଟ୍ଟାମାନଙ୍କ ସହ ହାତ ମିଳାଇଲେ। ମରହଟ୍ଟାଙ୍କୁ ଅବଧ ଜିଲ୍ଲା ଦେଇ ଦେଇ ନିଜ ପ୍ରାସାଦ ଫେରିପାଇଲେ। ରୁଷ୍ଟ ହେଲେ କମ୍ପାନୀର ଲୋକ। ସବୁ ପଇସା ବନ୍ଦ କରିଦେଲେ। ସମ୍ରାଟଙ୍କର କୌଣସି କ୍ଷମତା ନଥିଲା। ମୁଦ୍ରା ଉପରେ ନାମାଙ୍କନ ବ୍ୟତିତ ସମ୍ରାଟଙ୍କର ଆଉ କୌଣସି ଅଧିକାର ନଥିଲା।

ଅନ୍ଧ ସମ୍ରାଟ ସାହ ଆଲମଙ୍କ ବେଳର କଥା। ୧୭୮୯ରେ ପର୍ଶିୟାରେ ଗଣହତ୍ୟା ହୋଇଥିଲା। ନାଦିର ସାହା ନିଜେ ଏ ଘଟଣା ପର୍ଶିୟାରେ ଦେଖିଥିଲେ। ସେ ଯେତେବେଳେ ଦିଲ୍ଲୀ ଆକ୍ରମଣ କରିବାକୁ ଆସିଲେ, ସେ ସମୟରେ ଦିଲ୍ଲୀର ସୈନ୍ୟ ଏକାଦିନକେ ୯୦୦ ପର୍ଶିୟାନ ସୈନ୍ୟଙ୍କୁ ହତ୍ୟା କଲେ। ଏ ଘଟଣା ପରେ ନାଦିର ସାହାଙ୍କର ଓଲଟା ଆକ୍ରମଣବେଳେ ପ୍ରାୟ ଦେଢ଼ ଲକ୍ଷ ଦିଲ୍ଲୀ ସୈନ୍ୟ ଗୋଟିଏ ଦିନରେ ମୃତ୍ୟୁବରଣ କରିଥିଲେ।

## ମହମ୍ମଦ ବାହାଦୂର ସାହ ସାନୀ

୧୮୩୭ରେ ରାଜ ସିଂହାସନ ଅଳଙ୍କୃତ କଲେ। ସେ ଦିନ ରାଣୀ ଭିକ୍ଟୋରିୟା ମଧ୍ୟ ଲଣ୍ଡନଠାରେ ଅଭିଷିକ୍ତ ହୋଇଥିଲେ। ସେ କେବଳ ନାମକୁ ମାତ୍ର ବାଦଶାହ ଥିଲେ। ଇଂରେଜ ହୁକୁମତ ଜାରି ରହିଥିଲା। ବର୍ଷରେ ଦୁଇମାସ ମେହେରୋଲୀର ଖ୍ୱାଜା ସାହେବଙ୍କ ମହଲରେ ରହୁଥିଲେ। ୬୯ ବର୍ଷ ବୟସରେ ସେ ବିବାହ କରିବାକୁ ନିଷ୍ପତ୍ତି ନେଲେ। ବିରୋଧ କଲେ ପରିବାର ବର୍ଗ। ତେବେ ବି ସିନ୍ଧିଆ ମହାରାଜାଙ୍କ ସହିତ ଚିଠି ଆଦାନ ପ୍ରଦାନ କଲେ। ଚିଠିରେ ଲେଖିଥିଲେ କି ମହାରାଜ ତାଙ୍କୁ ଏପରି ଜଣେ ଚିକିତ୍ସକ ଯୋଗାଇଦେବେ ଯାହା ବଳରେ ତାଙ୍କର ଯୌନପ୍ରବୃତ୍ତି ଉଦ୍ରେକ ହୋଇପାରିବ- ଦୈନିକ ୨୦ ପାଉଣ୍ଡ ବିନିମୟରେ। ଅବଶ୍ୟ ସିନ୍ଧିଆ ମହାରାଜ ଏପରି ଚିକିତ୍ସକ ଯୋଗାଇଲେ କି ନାହିଁ ଜଣାନାହିଁ।

## ଆକମର ସାହ

ନିଜ ପ୍ରକୃତ ବୟସରୁ ସେ ଅଧିକ ବୟସ୍କ ଦେଖାଯାଉଥିଲେ। ତାଙ୍କ ପ୍ରିୟ ବେଗମ ରାଜ ପରିବାରର ନ ଥିଲେ। ସମ୍ରାଟଙ୍କ ଉପରେ ତାଙ୍କର ହୁକୁମ ଜାରି ରହିଥିଲା। ନିଜ ପିଲାମାନଙ୍କ ସଂକ୍ରାନ୍ତରେ ବ୍ରିଟିଶ ସରକାରଙ୍କ ସଂକ୍ରାନ୍ତରେ ସେ ଅନେକ ଭୂଲ ଉପଦେଶ ମଧ୍ୟ ଦେଉଥିଲେ।

## ରାଜରୁ ତାଜ-

ଔରଙ୍ଗଜେବ ଦାକ୍ଷିଣାତ୍ୟର ଗଭର୍ଣ୍ଣର ଥିଲେ ୧୬୮୫ରେ ଓ ପୁଣି ଥରେ ହେଲେ ୧୬୮୨ରେ। ସେ ସମୟକୁ ଇଂରେଜ ଓ ପର୍ତ୍ତୁଗୀଜମାନେ ଉପକୂଳବର୍ତ୍ତୀ କୋନ୍‌କାନ କୋଷ୍ଟକୁ ଆସ୍ତେ ଆସ୍ତେ ତାଙ୍କ ବ୍ୟବସାୟ ପାଇଁ ଆସନ ଜମାଇ ସାରିଥିଲେ। ଏପରିକି ସେମାନଙ୍କର ଜାହାଜର ସୁରକ୍ଷା ପାଇଁ ବନ୍ଦର ଓ ନିଜ ନିଜର ଦୁର୍ଗ ମଧ୍ୟ ତୋଳାଇ ସାରିଥିଲେ। ପର୍ତ୍ତୁଗୀଜମାନଙ୍କର ଗୋଆ ଓ କୋଚିନ୍‌ରେ ମସଲାକାରବାର ପାଇଁ ବନ୍ଦର ଥିଲା। ଉତ୍ତର ବମ୍ବେରେ ମୋଗଲମାନଙ୍କର ବନ୍ଦର ସୁରଟ। ସୁରଟରେ ବାହାର ବ୍ୟବସାୟୀମାନେ ମଧ୍ୟ ସେମାନଙ୍କର ବ୍ୟବସାୟ ଚାଲୁ ରଖିଥିଲେ। ସିଲ୍କ ଓ ରଙ୍ଗୀନ କପଡ଼ାର ଚାହିଦା ମଧ୍ୟ ରପ୍ତାନୀ ପାଇଁ ବେଶ୍ ଥିଲା। ସେଥିପାଇଁ ଏହାର ବ୍ୟବସାୟୀମାନେ ଗୁଜରାଟ, ଅହମଦାବାଦ, ବୁରାହାନପୁର, ବ୍ରୋଚ ଓ ବରୋଦାକୁ ବାରମ୍ବାର ଯିବା ଆସିବା କରୁଥିଲେ। ସେପାଖେ କରୋମଣ୍ଡଳ ଓ ଆନ୍ଧ୍ର ଉପକୂଳରେ ଇଉରୋପିଆନ ବ୍ୟବସାୟୀ ଓ ଫ୍ରାନ୍ସ ବ୍ୟବସାୟୀମାନେ କପଡ଼ା ବ୍ୟବସାୟ ପାଇଁ ଆରଡା ମେଲାଇ ସାରିଥିଲେ। ଏ ବ୍ୟବସାୟୀମାନେ ସେମାନଙ୍କର ପ୍ରତିରକ୍ଷା ପାଇଁ ଗନ, ଗନପାଉଡର ଗନ ଚଳାଇବା ଲୋକଙ୍କୁ ଦୁର୍ଗ ଭିତରେ ସ୍ଥାନ ଦେଇସାରିଥିଲେ। ଔରଙ୍ଗଜେବଙ୍କର ଦାକ୍ଷିଣାତ୍ୟରେ ନଥିବା ଅବସ୍ଥାରେ ଦୁଇ ମରହଟ୍ଟା ସୁଲତାନ-ଗୋଲକୋଣ୍ଡା ଓ ବିଜାପୁର ମୁଣ୍ଡ ଟେକିଥିଲେ। ପରେ ତୃତୀୟ ସୁଲତାନ ମଧ୍ୟ ନଜରକୁ ଆସିଲେ। ଏହାର ରାଜୁତି କରୁଥିଲେ ଶିବାଜୀ। ପଶ୍ଚିମଘାଟରେ ସେ ଚାଳିଶଟି ଦୁର୍ଗ ଅଧିକାର କରିଥିଲେ। ଶିବାଜୀଙ୍କର ମୂଳମନ୍ତ୍ର ଥିଲା ଚାଲାକ ଓ ପ୍ରତାରଣା।

## ଔରଙ୍ଗଜେବଙ୍କ ପରେ ମୋଗଲ ସାମ୍ରାଜ୍ୟ-

୧୭୦୭ ଔରଙ୍ଗଜେବ ମୃତ୍ୟୁବରଣ କଲେ। ତାଙ୍କର ୧୭ ଜଣ ପୁଅ, ନାତି, ଅଣନାତି ମଧ୍ୟରେ ରାଜଗାଦିପାଇଁ କେବେହେଁ କଳହ, ବିଦ୍ରୋହ ବା ଯୁଦ୍ଧ ହୋଇ ନଥିଲା। ନିଜ ନିଜ ଭିତରେ ବାଣ୍ଟି ଭରି ଧନସଂପତି ସବୁ ବଣ୍ଟା ହେଲା। ଜାଗିର ହସ୍ତାନ୍ତର କରାଗଲା। ଅନେକ ସମୟରେ ଅଘଟଣ ମଧ୍ୟ ଘଟିଲା। ସେଥିରେ ପ୍ରାୟ ୧୦ ହଜାର ସୈନ୍ୟ ନିହତ ହେଲେ

**ସମ୍ରାଟ ଆଜାମସାହ (ଦ୍ୱିତୀୟ ପୁତ୍ର)-**

ଔରଙ୍ଗଜେବଙ୍କ ଦ୍ୱିତୀୟ ପୁତ୍ର ଆଜାମ ସାହ ୧୭୦୭ ମାର୍ଚ୍ଚ ୧୪ରେ ରାଜଗାଦି ଆରୋହଣ କରି ଜୁନ ମାସ ପର୍ଯ୍ୟନ୍ତ ରାଜ୍ୟ ପରିଚାଳନା କରି ମୃତ୍ୟୁବରଣ କରିଥିଲେ।

**ବକ୍ସ ମୁଆଜମ ସାହ ଆଲମ ନାମରେ (୧୭୦୭-୧୭୧୨)**

ତାଙ୍କ ପରେ ପ୍ରିନ୍ସ ମୁଆଜମ, ସାହା ଆଲମ ୧ ବା ବାହାଦୂର ସାହା ନାମରେ ରାଜୁତି କଲେ। ଆଜାମ ସାହିଙ୍କ ସହିତ ଆଗ୍ରା ନିକଟରେ ଯୁଦ୍ଧ ହେଲା। ପରାଜିତ ହୋଇ ମୃତ୍ୟୁବରଣ କଲେ ଆଜାମ ସାହ। ପରବର୍ଷ ଆଉ ଜଣେ ଭାଇ ନିହତ ହେଲେ। ୫ ବର୍ଷ ରାଜୁତି ପରେ ବାହାଦୂର ସାହାଙ୍କର ମୃତ୍ୟୁ ହେଲା। ପରେ ଉତ୍ତରାଧିକାରୀଙ୍କ ପାଇଁ ସଂଘର୍ଷ ଚାଲିଥିବାବେଳେ ରାଜସ୍ଥାନ ଓ ପଞ୍ଜାବରେ ସଂକଟ ଦେଖାଦେଲା। ସାଥେ ସାଥେ ପାଖ ଆଖ ଗ୍ରାମାଞ୍ଚଳରେ ମଧ୍ୟ ବିପଦ ଦେଖାଦେଇ ମୋଗଲ ସାମ୍ରାଜ୍ୟ ପତନର ସୂତ୍ରପାତ ହେଲା।

**ଅଜିତ ସିଂ-**

ରାଜସ୍ଥାନରେ ଅଜିତ ସିଂ ସେତେବେଳକୁ ୩୦ ବର୍ଷର ଯୁବକ। ୧୬୭୮ରେ ମୋଗଲମାନେ ବିଶ୍ୱାସ ଘାତକତା କରିଥିଲେ। ସେ ରାଗରେ ସେ ମୋଗଲମାନଙ୍କ ବିରୁଦ୍ଧରେ ପ୍ରତିଶୋଧ ନେବାକୁ ଚାହିଁଲେ। ଯୋଧପୁର (ମାରୱାର)ରୁ ମୋଗଲସେନା ହଟାଇଦେଲେ ଅନ୍ୟ ରାଜପୁତମାନଙ୍କ ସାହାଯ୍ୟ ସମର୍ଥନ ପାଇ। ଏମାନେ ହେଲେ ଜୟପୁର, କଚ୍ଛୱାରଜ ଓ ଉଦୟପୁର। ବାହାଦୂର ସାହା ଏହାର ମୁକାବିଲା କଲେ। ବୁଝାମଣା କଲେ ଅଜିତ୍ ସିଂଙ୍କ ସହ। କିନ୍ତୁ ବର୍ଷକ ପରେ ଜୟସିଂ ସହ ହାତ ମିଳାଇ ପୁଣି ବିଦ୍ରୋହ ଆରମ୍ଭ କଲେ। ସେ ସମୟକୁ ବାହାଦୂର ସାହ ପଞ୍ଜାବର ଶିଖ ବିଦ୍ରୋହ ପାଇଁ ପଞ୍ଜାବ ଯାଇଥିଲେ। ଦଶବର୍ଷପରେ ରାଜପୁତମାନେ ଦିଲ୍ଲୀରୁ ସୁରଟର ସମୁଦ୍ରକୂଳ ପର୍ଯ୍ୟନ୍ତ ଏକ ବିରାଟ ଭୂଖଣ୍ଡର ରାଜା ହୋଇସାରିଥିଲେ। ୧୬୬୬ରେ ହିଁ ଗୁରୁ ତେଗ୍ ବାହାଦୂରଙ୍କୁ ହତ୍ୟା କରାଯାଇଥିଲା। ଔରଙ୍ଗଜେବଙ୍କ ପରେ ୧୭୦୮ରେ ଗୁରୁ ଗୋବିନ୍ଦ ସିଂ (ଶେଷ ଶିଖଗୁରୁଙ୍କୁ ହତ୍ୟା କରାଯାଇଥିଲା। ଏପରିକି ଗୁରୁପୁତ୍ରଙ୍କୁ ମଧ୍ୟ ହତ୍ୟା କରାଯାଇଥିଲା। ଏ ଘଟଣାର ପରେ ପରେ ଶିଖ୍‌ମାନେ ପଞ୍ଜାବର ପାର୍ବତ୍ୟ ଅଞ୍ଚଳରେ ରହି ନିଜ ସଂପ୍ରଦାୟର ରକ୍ଷାପାଇଁ ଏକ ସେନା ବାହିନୀ ଗଢ଼ିତୋଳିଲେ।

## ବନ୍ଦା ବାହାଦୁର ସିଂ

ଗୁରୁ ଗୋବିନ୍ଦ ସିଂଙ୍କ ମୃତ୍ୟୁପରେ ଜଣେ ଶିଖ ନିଜକୁ ବନ୍ଦା ବାହାଦୂର ସିଂ ନାମରେ ଗୁରୁପଦ ହାସିଲ କଲେ। ଶିଖମାନଙ୍କୁ ଏକାଠି କରି ବିଦ୍ରୋହ ଆରମ୍ଭ କଲେ ମୋଗଲମାନଙ୍କ ବିଦ୍ରୋହରେ। ଛୋଟ ଛୋଟ ମୁସଲମାନ ସହରଙ୍କୁ ଆକ୍ରମଣ କଲେ। ନିଜ ନାଁରେ ଶକାବ୍ଦ ଆରମ୍ଭ କଲେ। ଶିଖମୁଦ୍ରା ପ୍ରଚଳନ କଲେ। ଏହି ନବଗଠିତ ବିଦ୍ରୋହୀ ଶିଖ ଅନୁଷ୍ଠାନକୁ ଖାଲସା ନାମରେ ଅଭିହିତ କରାଗଲା। ବାହାଦୂର ସାହଙ୍କ ପ୍ରବଳ ଆକ୍ରମଣ ଫଳରେ ଖାଲସାମାନେ ଦବିଗଲେ ସତ କିନ୍ତୁ ବିଦ୍ରୋହ ଜାରି ରଖିଲେ। ବାନ୍ଦାଓ ତାଙ୍କ ଅନୁଚରମାନେ ବାହାଦୂର ସାହଙ୍କ ମୃତ୍ୟୁପରେ ସଂଗଠିତ ହେଲେ। ୧୭୧୫ ବେଳକୁ ଗୁରୁ ବନ୍ଦା ସିଂ ଓ ୭୦୦ ଶିଖଙ୍କୁ ବନ୍ଦୀ କରି ଗଣ ହତ୍ୟା କରାଯାଇଥିଲା। ରାଜପୁତ ଓ ଶିଖମାନଙ୍କ ସମସ୍ୟା ସହ ଅନ୍ୟ ଆଞ୍ଚଳିକ ସମସ୍ୟା ମଧ୍ୟ ଦେଖାଦେଲା। ଏ ସମସ୍ୟାର ମୂଳ ଆଧାର ଥିଲେ ଜମିଦାରମାନେ। ଏମାନେ ବର୍ଷସାରାର ସବୁ ଫସଲକୁ ହାତକୁନେଇ ଓ ବ୍ୟବସାୟୀ ଜନିତ ଲାଭ ନିଜ ପାଇଁ ରଖି ବେଶ୍ ଆନନ୍ଦରେ ଥିଲେ। ସେମାନଙ୍କ ନିଜ ନିଜ ଭିତରେ କନ୍ଦଳ ସୃଷ୍ଟି ହେଲା। ଆରମ୍ଭ ହେଲା ଜାଗିର ସମସ୍ୟା। ସମସ୍ୟାର ଅଭିବୃଦ୍ଧି ଘଟିଲା ୧୭୩୦ ବେଳକୁ। ଆଘାତ ଲଗା ପଞ୍ଜାବ, ବଙ୍ଗଳା, ଅଓଧ ଓ ଦାକ୍ଷିଣାତ୍ୟର ଗଭର୍ଣ୍ଣରମାନଙ୍କୁ।

ଏସବୁ ସମସ୍ୟାର ସମ୍ମୁଖୀନ ହେବା ସହ ବାହାଦୂର ସାହ ମୋତି ମସଜିଦ୍, କୁତୁବ ସାହିବ ନିକଟରେ ମେହେରୋଲି ପାଖରେ ମଧ୍ୟ ତିଆରି କରାଇଥିଲେ। ଏଣେ ସାହୁଜୀ, ଶିବାଜୀଙ୍କ ନାତି ମୋଗଲ ସାମ୍ରାଜ୍ୟ କ୍ୟାମ୍ପରେ ବଡ଼ ହୋଇଥିଲେ ମଧ୍ୟ ନିଜ ଧର୍ମ ତ୍ୟାଗ କରି ନଥିଲେ। ବାହାଦୂର ସାହା ତାଙ୍କୁ ମୁକ୍ତ କରିଦେବା ଫଳରେ ସେ ମରହଟ୍ଟା ରାଜୁତି ଦାବି କଲେ। ତାରାବାଇ, ସାହଜୀଙ୍କ ଖୁଡି ମଧ୍ୟ ଏପରି ମରହଟ୍ଟା ସାମ୍ରାଜ୍ୟ ଦାବି କରିଥିଲେ। କିନ୍ତୁ ଦୁଇଜଣ ଭିତରେ କୌଣସି ସମାଧାନ ହୋଇପାରିଲା ନାହିଁ ନିଜ ନିଜର ନେତୃତ୍ୱ ସଂକ୍ରାନ୍ତରେ। ଶେଷରେ ସାହୁଜୀ ବାଲାଜୀ ବିଶ୍ୱନାଥଙ୍କ ପରାମର୍ଶକୁ ଆପଣାର ନେଲେ। ବାଲାଜୀ ବିଶ୍ୱନାଥ କୋନ୍‌କାନ୍ କୋଷ୍ଟର ଜଣେ ବ୍ରାହ୍ମଣ। ସେ ନିଜେ ଯୋଦ୍ଧା ନୁହନ୍ତି। ଏପରିକି ଘୋଡା ଉପରେ ଚଢ଼ିବାର ସାହସ ବା ଦକ୍ଷତା ତାଙ୍କର ନଥିଲା। କିନ୍ତୁ ମରହଟ୍ଟାମାନଙ୍କ ପରାମର୍ଶଦାତା ହିସାବରେ ତାଙ୍କର ସୁନାମ ଥିଲା। ୧୭୧୪ରେ ସାହୁଜୀଙ୍କ ସମର୍ଥନ

ପାଇ କାହ୍ନୋଜୀ ଆଙ୍ଗଲିୟାଙ୍କ (ଆଡମିରାଲ ମରହଟ୍ଟା fleetର ଯାହାଙ୍କୁ ଆଫ୍ରିୟାନ ପିରେଟ ବୋଲି ବ୍ରିଟିଶରମାନେ କୁହନ୍ତି) ଜରିଆରେ ମରହଟ୍ଟାମାନଙ୍କ ସମର୍ଥନ ପାଇପାରିଥିଲେ। ଫଳରେ ସେ ସାହୁଜୀଙ୍କ ପେଶୱା କରାଇ ଦିଆହେଲା। ତାଙ୍କ ସାଥି ବ୍ରାହ୍ମଣମାନେ ମରହଟ୍ଟା ଅନୁଶାସନରେ ସ୍ଥାନ ପାଇଲେ। ସେମାନେ ନିଜ ନିଜ କାମରେ ଦକ୍ଷତାର ପରିଚୟ ଦେଲେ। ଫଳରେ ସାହୁଜୀଙ୍କ କ୍ଷମତା ବଢ଼ିବାରେ ଲାଗିଲା।

## ଜହନ୍ଦର ସାହ (୧୭୧୨)

୧୭୧୨ ବେଳକୁ ଦିଲ୍ଲୀରେ ବାହାଦୂର ସାହଙ୍କ ମୃତ୍ୟୁ ହେଲା। ସମ୍ରାଟ ହେଲେ ଜହନ୍ଦରସାହ। ମାତ୍ର ୧୧ ମାସ ପାଇଁ। ତାଙ୍କ ମିଷ୍ଟ୍ରେସ ଲାଲ କନୱାର ନିଜ ଚାତୁରି ଚଳାଇଲେ ଦିଲ୍ଲୀରେ। ଦିଲ୍ଲୀ ଗଲ୍ଫ କ୍ଲବ ଲାଲବଙ୍ଗଳାକୁ ନେଇ ଚିହ୍ନଟ କରାଯାଏ। ଏ ବଙ୍ଗଳାକୁ ଦେଖିଲେ ଲାଲକନୱାରଙ୍କ ଗପ ମନେପଡ଼େ। ସେ ଥିଲେ ଜଣେ ଦରବାର ଗାୟିକା। ଏହି ଜାଗାରେ ତାଙ୍କୁ କବର ଦିଆଯାଇଥିଲା। ସେ ନିଜେ ତାନ୍‌ସେନ୍‌ଙ୍କ ବଂଶଧରର କନ୍ୟା। ଏ ସୁନ୍ଦରୀ ନାରୀ ଖାସୁରିୟାତ ଗାୟକ ଦଳରେ ମିଶିଥିଲେ-- କଣେ ଗାୟିକା ଭାବରେ କଣ୍ଠ ସ୍ୱର୍ଗୀୟ। ୧୭୧୨ ମସିହାର କଥା। ଲାଲ କନୱାରଙ୍କ ସୌନ୍ଦର୍ଯ୍ୟ, କଣ୍ଠ ଓ କଳାମାଧୁର୍ଯ୍ୟରେ ମୁଗ୍ଧ ହେଲେ ସମ୍ରାଟ ଜହନ୍ଦର ସାହଙ୍କର ଗୀତର ତାଳେ ତାଳେ ପାଗଳାମି ବୃଦ୍ଧି ପାଇଲା। ଏ ପାଗଳାମିର ପରିଚୟ ଦେଲେ ଜହନ୍ଦର ସାହ। ସମ୍ରାଟ କନୱାରଙ୍କୁ ଘରଭିତରକୁ ଧିରେ ଧିରେ ନେଇଗଲେ। ଭାବିଲେ ଗୀତର ଲହର ଦେଇ ଶରୀରକୁ ମଧ ଅନୁଧାନ କରିବେ। ଉପଭୋଗ କରିବେ ତାର ସୌନ୍ଦର୍ଯ୍ୟ। ସେଇ ନିଶାରେ ରୁଦ୍ଧକୋଠରୀରେ ତାଙ୍କୁ ଉଲଗ୍ନ କଲେ। ଅନୁରୋଧ କଲେ ଗୀତର ସୁର ନ ଥମେଇବାପାଇଁ। ସ୍ୱର୍ଗୀୟ ମୁହୂର୍ତ୍ତ ବୋଲି ଅନୁଭବ କଲେ। ଶରୀର ସହିତ ଖେଳ ଆରମ୍ଭ ହେଲା। ଜହନ୍ଦର ସାହ ମୁଗ୍ଧ ହେଲେ ତାଙ୍କ ଐଶରୀୟ ସଂଯୋଗ ଆଉ ଭାବିଲେ ସେ ପାଇଛନ୍ତି ଏକ ସ୍ୱର୍ଗୀୟ ପ୍ରେମିକା। ବେଗମର ଅଧିକାର ଦେଲେ। ନାଁ ଦେଲେ ଇମତାଜ୍ ମହଲ ବେଗମ୍। କନୱାରଙ୍କ ଭାଇ ନିୟାମତ୍ ଖାନ୍ କଲଓ୍ୱନ୍ତଙ୍କୁ ମୁଲତାନର ଗଭର୍ଣ୍ଣର କରିନେଲେ। ଲାଲ କନୱାର ଓ ଜହନ୍ଦର ସାହ ଦିଲ୍ଲୀରେ ଅନେକ ତୀର୍ଥ ଜାଗା ବୁଲି ବୁଲି ଆଶିର୍ବାଦ ଗୋଟାଇଲେ। ଲାହୋରରେ ତିନିଦିନ ଧରି ଆଲୋକ ଉତ୍ସବ

କରାଇଲେ। ଫଳରେଦେଶରେ ତେଲର ଉତ୍କଟ ଅଭାବ ଦେଖାଦେଲା। ଆଦେଶ ଦେଲେ ତେଲ ନ ମିଳିଲେ ଘିଅ ଓ ଲହୁଣି ଜାଳି ଏ ଉତ୍ସବକୁ ବଜାୟ ରଖ। ଆଗ୍ରାଠାରେ ଯୁଦ୍ଧହେଲା ଫାରୁକସାୟାରଙ୍କ ସହ। ଯୁଦ୍ଧରେ ଜହନ୍ଦରସାହଙ୍କ ପରାଜୟ ହେଲା। ଜହନ୍ଦର ସାହ ଓ ଲାଲ କନୱାର ଅଧରାତିରେ ଗୋଟେ ଶଗଡ଼ ଗାଡ଼ିରେ ଲୁଚି ପଳାଇ ଆସିଲେ। ବାଟସାରା ଭିକ୍ଷା ମାଗି ଜୀବନ ବଞ୍ଚାଇଲେ। କେହି ବି ତାଙ୍କୁ ଚିହ୍ନି ପାରିଲେ ନାହିଁ ରାଜପରିବାରରଲୋକ ବୋଲି ରାସ୍ତାରେ ଗୁଣ୍ଡାଦଳ ତାଙ୍କୁ ଆକ୍ରମଣ କଲେ। କନୱାରଙ୍କୁ ଛଡେଇନେବାର ପ୍ରୟାସ କଲେ। କିନ୍ତୁ କନୱାର କୌଶଳକ୍ରମେ ସେମାନଙ୍କ ନିକଟରୁ ଖସି ଆସି ପୁଣି ଜହନ୍ଦର ସାହଙ୍କ ସହିତ ମିଳିତ ହେଲେ। ଅବଶେଷରେ ନିହତ ହେଲେ ଜହନ୍ଦର ସାହ। ତାଙ୍କ ମୃତ୍ୟୁ ପରେ ରେଡଫୋର୍ଟର ବିଧବା-ଶାଳାକୁ ତାଙ୍କୁ ପଠାଇ ଦିଆଗଲା। ସେଠି ସେ ଅବଶିଷ୍ଟ ଜୀବନ ବିତାଇଲେ।

ସାହା ଆଲାମଙ୍କ ମାଙ୍କ ନାଁ ମଧ କନୱାର ଥିଲା। କନୱାରଙ୍କ ସମୟରେ ତାଙ୍କର ସଂପର୍କୀୟମାନଙ୍କର କୌଣସି ଦକ୍ଷତା ନ ଥିଲେ ମଧ ସେମାନଙ୍କୁ ଜାଗିର, ମାନସାବ ପଦବୀ ହାତୀ, ଧନରତ୍ନ ସବୁ ବାଣ୍ଟି ଦିଆଯାଇଥିଲା ଏ ସମ୍ରାଟଙ୍କୁ ବେଶାସନର ରାଜା ବୋଲି କୁହାଯାଉଥିଲା। ଶେଷରେ ନିହତ ହେଲେ ଫାରୁକସାୟାରଙ୍କ ହାତରେ। ବାଉଁଶ ଅଗରେ ତାଙ୍କ କଟାମୁଣ୍ଡ ଝୁଲା ହୋଇ ଗୋଟେ ହାତୀ ଉପରେ ରଖାଗଲା। ପଛରେ ଆଉ ଏକ ହାତୀ ଉପରେ ତାଙ୍କ କଟା ଶରୀର। ତା' ପଛକୁ ଆଉ ଏକ ହାତୀ ଉପରେ ଫାରୁକ ସାୟାର। ପଛରେ ବସିଥିଲେ ମିର ଜୁମଲା। ମୟୁର ପଙ୍ଖା ସାହାଯ୍ୟରେ ତାଙ୍କୁ ପବନ ଯୋଗାଇ ଦିଆଯାଇଥିଲା।

## ଫାରୁକ ଶାୟାର (୧୭୧୩-୧୯)

୧୭୧୩ରେ ସିଂହାସନ ଆରୋହଣ କଲେ ମାତ୍ର ୬ ବର୍ଷ ପାଇଁ। ଏହି ସମୟ ଭିତରେ ତାଙ୍କର ଶିଖମାନଙ୍କ ପ୍ରତି ଅତ୍ୟାଚାର ବୃଦ୍ଧି ପାଇଲା। ମହରମ ମାସରେ ରତିମାବୁ-ଦି-ଜୁଆଲା ମହମ୍ମଦ ଅମିନ୍ ଖାଁ ବନ୍ଦୀ ଶିଖ ଗୁରୁ ଓ ତାଙ୍କର ସହଯୋଗୀମାନଙ୍କୁ ମୁହଁରେ କଳାବୋଳି ମୁଣ୍ଡରେ କାଠଟୋପି ପିନ୍ଧାଇ, ଓଟ ଉପରେ ବସାଇ, ତୀରସବୁ ସେମାନଙ୍କ ଦିଗକୁ ରଖି, ପଛରେ ନିଜେ ହାତୀ ଉପରେ ବସି

ରାଜରାସ୍ତାରେ ବୁଲାଇ ନେଉଥିଲେ। ଗୁରୁ ଓ ତାଙ୍କର ଦୁଇ ପୁଅ ଓ କେତେଜଣ ପ୍ରଧାନ ସାଥିଙ୍କୁ ଦୁର୍ଗଭିତରକୁ ନେବାପାଇଁ ଆଦେଶ ଦେଲେ। ଅନ୍ୟମାନଙ୍କୁ ପ୍ରତ୍ୟେକଦିନ କିଛି କିଛି ସଂଖ୍ୟାରେ ହତ୍ୟା କରାଗଲା। ୧୭୧୬ ମାର୍ଚ୍ଚ ୧୫ ତାରିଖରେ ପୋଲିସ ପ୍ରଧାନ ଅଫିସ ଆଗରେ ଗୋଟାଏ ଚଉତରା ଉପରେ ପ୍ରତ୍ୟେକ ଦିନ ୧୦୦ ଜଣ ଲେଖାଏଁ ଶିଷ୍ୟଙ୍କୁ ହତ୍ୟା କରାଯାଉଥିଲା। ଏ ସମୟରେ ଧନୀ କ୍ଷତ୍ରୀମାନେ ବିନ୍ଦାଙ୍କୁ ଜେଲରୁ ମୁକ୍ତ କରିବାପାଇଁ ବଦଳରେ ଅନେକ ଟଙ୍କା ଦେବାକୁ ରାଜିଥିଲେ ହେଲେ ଏପରି ସର୍ତ୍ତ ଅଗ୍ରାହ୍ୟ କଲେ ସମ୍ରାଟ। ଅବଶେଷରେ ସେମାନଙ୍କୁ ଗୋଟେ ପରେଡରେ ସାହଆଲମଙ୍କ କବର ନିକଟରେ ବୁଲାଇ ନେଇ କୁତୁବମିନାର ପାଖରେ ଅତି କଦର୍ଯ୍ୟ ଭାବରେ ହତ୍ୟା କଲେ। ହତ୍ୟା କାର୍ଯ୍ୟକ୍ରମ ଚାଲିଥିଲାବେଳେ ଜଣେ କିଶୋର ଶିଖର ମା' ଆସି ସମ୍ରାଟ ଓ ସୟଦ ଅବଦୁଲା ଖାଁଙ୍କ ପାଖରେ ପ୍ରାର୍ଥନା କଲେ କି ତାଙ୍କର ପୁଅ ବନ୍ଦୀ ଜୀବନ କଟାଇ ସାରିଛି। ତାର ସବୁ ସଂପତ୍ତି ଲୁଟ ହୋଇସାରିଛି। ସେ ଦୋଷୀ ନୁହେଁ। ସମ୍ରାଟ ସେ ସ୍ତ୍ରୀଲୋକର ବୟାନରେ ମାନିଗଲେ। ଜଣେ ଅଫିସରଙ୍କୁ ତା' ସାଂଗରେ ହତ୍ୟା ହେଉଥିବା ଜାଗାକୁ ପଠାଇଲେ- ତାର ପୁଅକୁ ମୁକୁଳେଇ ଆଣିବାପାଇଁ। ସେ ଶିଖ ପିଲାକୁ ହତ୍ୟା କରିବା ଉଦ୍ୟତ ହେବାବେଳେ ମା'ର ଆକୁଳ ନିବେଦନ ସହ ଆଦେଶନାମା ପହଞ୍ଚିଲା। କିନ୍ତୁ ମା ମୁହଁକୁ ଚାହିଁ ପୁଅ କହିଲେ; 'ମୋ' ମା' ମିଛ କହୁଛନ୍ତି। କାୟମନୋବାକ୍ୟରେ ମୋ' ଗୁରୁଙ୍କୁ ପ୍ରାର୍ଥନା କରି ଗୁରୁଭାଇମାନଙ୍କ ସହିତ ମିଶିଯିବାକୁ ଚାହୁଁଛି। ମତେ ଶୀଘ୍ର ହତ୍ୟା କର। ହତ୍ୟାର ଶିକାର ହେଲେ ସରଳ, ନିର୍ଦ୍ଦୋଷ କିଶୋର ଜଣକ। ଇତିମାଦୁଦ୍ କୁଆଲି ମହମ୍ମଦ ଅମୀର ଖାଁଙ୍କର ଶିଖଗୁରୁଙ୍କ ସହ ଏକ କଥୋପକଥନ :-

ଗୁରୁ ପଚାରିଲେ; ଜୀବନଟା ଏତେଛୋଟ- ଅଳ୍ପ ସମୟର ଏ ଜୀବନକାଳ ମଧ୍ୟରେ ତୁମେ ଏପରି ହୀନକ୍ରୁର କାମ କେମିତି କରିପାରୁଛ ? ଖାଁ ସାହେବ ଉତ୍ତର ଦେଲେ; ଏ ପାପୀମାନଙ୍କ ପାପର ଭାରା ଯେତେବେଳେ ବେଶି ହୋଇଯାଏ, ଭଗବାନ ମୋ' ଭଳି ଏକ ଦୁର୍ଦ୍ଦାନ୍ତ ଶାସକ ହାତକୁ ଦେଇଦିଅନ୍ତି। ୧୭୧୯ ବେଳକୁ ଇଷ୍ଟ ଇଣ୍ଡିଆ କମ୍ପାନୀକୁ ଭାରତରେ ପ୍ରବେଶ ପାଇଁ ଅନୁମତି ଦେଇ ସାରିଥିଲେ। ଆଉ ଏକ ସମୟକୁ ମରହଟ୍ଟାମାନେ ଦିଲ୍ଲୀ ରାଜନୀତିରେ ପ୍ରବେଶ କଲେ। ଶିବାଜୀଙ୍କ ଅମଳରୁ ସାହୁଜୀ ମଧ୍ୟ ଦାକ୍ଷିଣାତ୍ୟରେ ମୋଗଲ ସାମ୍ରାଜ୍ୟର

ଅଧିନତା ସ୍ୱୀକାର କରିଥିଲେ। ସମ୍ରାଟଙ୍କ ସେନାବାହିନୀ ପାଇଁ ସୈନ୍ୟ ପଠାଇବା, ବାର୍ଷିକ ଦେୟ ମୋଗଲମାନଙ୍କୁ ଦେଉଥିଲେ। ତା' ବଦଳରେ ମହାରାଷ୍ଟ୍ରର ପୂର୍ଣ୍ଣ ସ୍ୱାଧୀନତା ସମୁଦାୟ ରାଜସ୍ୱରୁ ୩୫ ଭାଗ ଇତ୍ୟାଦି ହାସଲ କରୁଥିଲେ। ଏ ନିୟମର ବିରୋଧ କଲେ ସମ୍ରାଟ ଫାରୁକଶାୟାର। ସମ୍ରାଟଙ୍କର ନିଜ ନିଜ ଭାଇମାନଙ୍କ ଭିତରେ ଏ ସଂକ୍ରାନ୍ତରେ ଗଣ୍ଡଗୋଳ ହେଲା। ୧୭୧୯ରେ ଫାରୁକଶାୟାର ବାଲାଜୀ ବିଶ୍ୱନାଥଙ୍କ ସହିତ ହୋଇଥିବା ଫାରମ୍ୟାନ ଚୁକ୍ତିନାମାକୁ ଖଣ୍ଡନ କରିଥିଲେ। ୧୭୧୭ରେ କଲିକତାର କମ୍ପାନୀ ତରଫରୁ ଆଉ ରାଜକୀୟ ଅନୁମୋଦନ ପାଇଁ ଅନୁମତି ପାଇଥିଲେ। କିନ୍ତୁ ଭାରତକୁ ବ୍ୟବସାୟ କରିବାକୁ ଆସିଥିବା ବ୍ୟବସାୟୀ ସଂଘ (Hon'ble company of Merchants of Lodon) ମରହଟ୍ଟାମାନଙ୍କ ସହିତ ହାତମିଳାଇ ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ। ଆକବରଙ୍କ ସମୟରୁ ଏପରି ଏକ ରାଜକୀୟ ଅନୁମୋଦନ ପାଇଁ ଇଉରୋପର ବ୍ୟବସାୟୀମାନେ ଚେଷ୍ଟା କରି ଆସୁଥିଲେ। ଫଳରେ ତାଙ୍କର ସମ୍ମାନ ଓ ଭାରତବର୍ଷରେ ତାଙ୍କ ବ୍ୟବସାୟ ଦୃଢ଼ ହେବ ଓ ମୋଗଲ ଅଫିସରମାନଙ୍କ କବଳରୁ ମୁକ୍ତି ପାଇବେ ବୋଲି ତାଙ୍କର ଉଦ୍ଦେଶ୍ୟ ଥିଲା।

୧୬୦୦ରେ ଏହି ବ୍ୟବସାୟୀମାନେ ପ୍ରଥମ ରାଜକୀୟ ସନନ୍ଦ ପାଇବାପାଇଁ କାପଟେନ ଉଇଲିୟମ ହକିନ୍ସ ସୁରଟରୁ ଆଗ୍ରାଯାଇଁ ଜାହାଙ୍ଗିରଙ୍କ ଦରବାରରେ ପହଞ୍ଚିଲେ। ତାଙ୍କ ସହିତ ଥମାସ ରୋ ମଧ ରାଜଦୂତ ହିସାବରେ ଯାଇଥିଲେ। ଉଦ୍ଦେଶ୍ୟ ଥିଲା ବ୍ୟବସାୟକୁ ଭିତ୍ତିକରି ମୋଗଲ ନୌବାଣିଜ୍ୟ ଉପରେ ଆଘାତ କରିପାରିବେ। ସାମ୍ରାଜ୍ୟ ଦଖଲ ବା ଯୁଦ୍ଧ କୌଣସି ଥିଲେ ସେମାନଙ୍କର ଆଗ୍ରହ ନ ଥିଲା। ଫରମ୍ୟାନ ପଦବୀ ମିଳିଲା ନାହିଁ ସତ ହେଲେ ମାଡ୍ରାସରେ ସେଣ୍ଟ ଜର୍ଜ ବନ୍ଦର ୧୬୪୦ରେ ବସାଇବାପାଇଁ ଅନୁମତି ପାଇଲେ। ୧୬୬୧ରେ ଚାର୍ଲ୍ସ ଦ୍ୱିତୀୟଙ୍କ ସମୟରେ। ଚାର୍ଲ୍ସ ୨ୟଏ ବନ୍ଦର ତାଙ୍କର ପର୍ତ୍ତୁଗୀଜ ସ୍ତ୍ରୀଙ୍କ ଠାରୁ ଯୌତୁକ ହିସାବରେ ପାଇଥିଲେ। କିନ୍ତୁ ଏ ବନ୍ଦର ମଧରେ ଅନେକ ଅପ୍ରତ୍ୟାଶିତ ଘଟଣା ଘଟିବା ଫଳରେ ରାଜପରିବାରରୁ କମ୍ପାନୀକୁ ହସ୍ତାନ୍ତର କରାଯାଇଥିଲା। ଶିବାଜୀ ଓ ତାଙ୍କ ଉତ୍ତରାଧିକାରୀମାନେ ସୁରଟ ଲୁଣ୍ଠନ ସମୟରେ କମ୍ପାନୀର ଲୋକେ ଏଇ ବନ୍ଦର ମଧରେ ଆଶ୍ରୟ ନେଇଥିଲେ। ସେଥିରେ କମ୍ପାନୀ ଲୋକ ବେଶ୍ ଖୁସ୍ ଥିଲେ।

୧୬୬୪ରେ ସାୟସ୍ତ ଖାଁ ଦାକ୍ଷିଣାତ୍ୟରୁ ଫେରିବାପରେ ବଙ୍ଗଳାର ଗଭର୍ଣ୍ଣର ହେଲେ। ମୀର ଜୁମଲା ଆସାମ ଜୟ କରିବାପରେ ବଙ୍ଗଳାର ଗଭର୍ଣ୍ଣର ଥିଲେ। ୧୬୮୨ରେ ଔରଙ୍ଗଜେବ ପୁଣିଥରେ ଦାକ୍ଷିଣାତ୍ୟର ଗଭର୍ଣ୍ଣର ହେବା ସମୟକୁ ସାୟସ୍ତ ଖାଁ ବଙ୍ଗଳାର ଗଭର୍ଣ୍ଣର ଥିଲେ। ସେ ଗଭର୍ଣ୍ଣର ଥିବାବେଳେ ଉଇଲିୟମ ହେଡଗେଙ୍କୁ ଯେ କି ଇଷ୍ଟ ଇଣ୍ଡିଆ କମ୍ପାନୀର ଡାଇରେକଟର ଥିଲେ, ଢ଼ାକା ଡକାଇଲେ। ସାୟସ୍ତା ଖାଁ ମମତାଜ ମହଲଙ୍କ ଭାଇ ହିସାବରେ ଔରଙ୍ଗଜେବଙ୍କ ମାମୁଁ ହେବେ। ହେଡଗେ ସାୟସ୍ତା ଖାଁଙ୍କୁ କି ଗୋଟାଏ ନୂଆ ଟାକ୍ସ ଉଠାଇଦେବେ। ମୋଗଲମାନଙ୍କଠୁ ରାଜକୀୟ ଅନୁମୋଦନ ପଦବୀ ଫାରମ୍ୟାନ ପାଇଁ ଔରଙ୍ଗଜେବଙ୍କୁ ହେଡଗେଙ୍କ ତରଫରୁ ଅନୁରୋଧ କରିବେ। ୧୬୮୪ରେ ସାୟସ୍ତ ଖାଁ ଇଂରେଜମାନଙ୍କ କୂଟନୀତି ବଝିପାରି ଏ ପ୍ରକାର କଥାବାର୍ତ୍ତା ଭାଙ୍ଗିଦେଲେ। କିଛି ବର୍ଷ ପରେ ଇଂରେଜମାନେ ନିଜର ଦାବି ପୂରଣ କରିବାପାଇଁ କମ୍ପାନୀ ସୈନ୍ୟଙ୍କୁ ନେଇ ହୁଗୁଳିରେ ପହଞ୍ଚିଲେ। ମୋଗଲ ଓ ଇଷ୍ଟଇଣ୍ଡଆ କମ୍ପାନୀର ସୈନ୍ୟମାନଙ୍କ ଭିତରେଯୁଦ୍ଧ ହେଲା। କୌଣସି ଫଳ ହେଲାନାହିଁ। ଆଉ ଥରେ ଯୁଦ୍ଧ ହେଲା ୧୬୮୮-୮୯ରେ। ଏସବୁ ଔରଙ୍ଗଜେବଙ୍କ ଅମଳର କଥା। ବଙ୍ଗଳାରେ ଏପରି ଆଙ୍ଗ୍ଲୋଇଣ୍ଡଆ ଯୁଦ୍ଧାପରେ ଇଷ୍ଟ ଇଣ୍ଡିଆ କମ୍ପାନୀଙ୍କୁ ବ୍ୟବସାୟ କରିବାକୁ ଅନୁମତି ମିଳିଲା। ସେତିକିବେଳେ ଆରମ୍ଭ ହେଲା ଫୋଟ-ଉଇଲିୟମର ନିର୍ମାଣ କାର୍ଯ୍ୟ। ଔରଙ୍ଗଜେବଙ୍କ ମୃତ୍ୟୁ ପରେ ମାନ୍ତ୍ରାସ ଫୋଟ ସେଣ୍ଟ ଜର୍ଜରେ ଥମାସ ପିଟ ଗଭର୍ଣ୍ଣର ହୋଇ ଆସିଲେ। ୧୭୦୯ରେ ଥମାସ ପିଟ ଭାରତ ଛାଡ଼ିଲେ। ୧୭୧୫ ବେଳକୁ ଫାରୁକଶାୟାର ବାହାଦୂରସାହ ପ୍ରଥମଙ୍କ ମୃତ୍ୟୁପରେ ସମ୍ରାଟ ହୋଇସାରିଥିଲେ। ଜନ ସୁଲମାନ ଛ' ଶହ ସୈନ୍ୟ ନେଇ ୧୬୦ ଟା ବଳଦଗାଡ଼ିରେ, ଘୋଡାସବାର ହୋଇ ଆଉ ୧୦୦ ଜଣ ବୋଝ ବୁହାଳିଙ୍କୁ ନେଇ ଗଙ୍ଗାର ସମତଳ ଭୂଇଁରେ ପ୍ରବେଶ କଲେ। ଦିଲ୍ଲୀରେ ପହଞ୍ଚିଲେ ଇଂରେଜ କମ୍ପାନୀ। ଦାମୀ ଦାମୀ ଉପହାର ଦେଲେ ସମ୍ରାଟ ଫାରୁକଶାୟାରଙ୍କୁ। ପୁଣିଥରେ ଫାରମ୍ୟାନ ପଦବୀ ପାଇଁ ତାଙ୍କୁ ଅନୁରୋଧ କଲେ। କିନ୍ତୁ ପୁଣିଥରେ ସମ୍ରାଟ ଅମଙ୍ଗ ହେଲେ। ଶେଷରେ ଇଂରେଜମାନେ ସୁରଟ ଓ ଗୁଜରାଟରୁ ସେମାନଙ୍କ ବ୍ୟବସାୟ ଉଠାଇନେବେ ବୋଲି ଧମକ ଦେଲେ। ରାଜି ହୋଇଗଲେ ସମ୍ରାଟ ଫରମ୍ୟାନ ପଦବୀ ଦେବାପାଇଁ। ଇଂରେଜମାନେ ଏହି ପଦବୀ ହାସଲ କରି ଆନନ୍ଦରେ ନାଚି ଉଠିଲେ। ଏ ସମ୍ମାନ

ପାଇଁ କଲିକତା, ମାଡ୍ରାସ ଓ ବମ୍ବେରେ ମଧ୍ଯ ଆନନ୍ଦର ଜୁଆର ଖେଳିଗଲା । ସେମାନେ ଭାବିଲେ ଏଇଟାହିଁ ଭାରତର 'ମାଗ୍ନାକାର୍ଟା' ।

ଭବିଷ୍ୟତ ପାଇଁ ରାସ୍ତା ଖୋଲିଗଲା । ୩୦ ବର୍ଷ ପରେ ଫାରୁକ ଶାୟାରଙ୍କ ଫାରମ୍ୟାନ ପଦବୀ ବଳରେ ଲର୍ଡ କ୍ଲାଇବ ପଲାସି ଯୁଦ୍ଧକରି ବଙ୍ଗଳା ନବାବଙ୍କୁ ବିତାଡିତ କଲେ । ଆସିଲା ଜମିଦାରୀ ପ୍ରଥା । ସିଧାସଳଖ ମୋଗଲ ସାମ୍ରାଜ୍ୟର ବାତାବରଣ ଭିତରେ ନ ପଶିଥିଲେ ମଧ୍ଯ ବେସରକାରୀ ଭାବରେ ଅନେକ କାରାର ଚାଲୁରହିଲା । ୧୭୨୮ ବେଳକୁ ରାଜସ୍ୱର ଏକଚତୁର୍ଥାଂଶ ଏହି ଜମୀଦାରଙ୍କ ଦାନ ଉପରେ ନିର୍ଭର କଲା । ବଡ଼ ଜମୀଦାରମାନେ ସାନସାନ ଜମୀଦାରମାନଙ୍କୁ ସବୁକାମ ହସ୍ତାନ୍ତର କଲେ । କିଛି ଧାରା ବା ନୀତିନିୟମ ରହିଲା ନାହିଁ । ରାଜସ୍ୱ ଆଦାୟ ଓ ମୁଦ୍ରାକରଣ ସମୟରେ 'ଜୋର ଯାର ମୂଲକ ତାର' ନିୟମ ବଳବତ୍ତର ହେଲା । କମ୍ପାନୀର ସ୍ଥାନୀୟ ଲୋକମାନେ ଏଜେଣ୍ଟ ଭାବରେ କାମ କଲେ । ସୃଷ୍ଟି ହେଲେ ବଣିଆ ଗୋଷ୍ଠୀ । ଏସବୁ ଥମାସ ପିଟଙ୍କ ଚାତୁରୀ ବଳରେ ସୃଷ୍ଟି ହେଲା । ଭାରତୀୟ ବୁଦ୍ଧିଜିବୀ ଉପନିବେଶ ସ୍ଥାପନକାରୀଙ୍କୁ ସହଜରେ ଗ୍ରହଣ କରିନେଲେ । ଫଳରେ ଉପନିବେଶମାନଙ୍କର କ୍ଷମତା ବୃଦ୍ଧିପାଇଲା । ଧିରେ ଧିରେ ସେମାନେ ଭାରତୀୟ ସେନାବାହିନୀଙ୍କୁ କରାଗତ କଲେ । ସେନାବାହିନୀରେ ଭାରତୀୟମାନେ ନିଯୁକ୍ତି ପାଇଲେ ସତ କିନ୍ତୁ ସିପାହୀ ବା ପିଅନ ଚାକିରୀରେ ।

ଫରମ୍ୟାନଙ୍କ କ୍ଷମତାବଳରେ ଆଇନଗତ ସୁବିଧା ବ୍ରିଟିଶରମାନେ ପାଇଗଲେ । ଆରମ୍ଭ ହେଲା ଭାରତ-ଫ୍ରାନ୍ସ କଳହ । ଫ୍ରେନ୍‌ଚମାନେ ଡଚ ଓ ଇଂରେଜ କମ୍ପାନୀଙ୍କ ପରେ ଆସିଲେ । ପଣ୍ଡିଚେରୀରେ ଆସନ ଜମାଇଲେ । କରୋମଣ୍ଡଳ କୋଷ୍ଟକୁ ନେଇ ସେମାନେ ମାଡ୍ରାସ ଉପରେ ବଙ୍ଗଳାର ଚନ୍ଦନ ନଗରଠାରେ ଆହ୍ୱାନ ଦେଲେ ସେମାନଙ୍କ କ୍ଷମତା ବଳରେ । ଠିକ୍ ସେତିକିବେଳକୁ ଫ୍ରାନ୍ସ ଓ ଇଂଲଣ୍ଡ ମଧ୍ୟରେ ଯୁଦ୍ଧ ହେଲା । ତା' ସତ୍ତ୍ୱେ ଭାରତରେ ସେମାନଙ୍କର କଳହ ବୃଦ୍ଧି ପାଇ ନଥିଲା ଦାକ୍ଷିଣାତ୍ୟରେ ସେତେବେଳକୁ ନାମକୁମାତ୍ର ଗଭର୍ଣ୍ଣର ନିଜାମ-ଉଲ-ମୁଲ୍କ ମୋଗଲଙ୍କ ତରଫରୁ ଥିଲେ । କିନ୍ତୁ ହାଇଦ୍ରାବାଦର ନବାବ ବର୍ତ୍ତମାନର ଆନ୍ଧ୍ରପ୍ରଦେଶକୁ ଶାସନ କରୁଥିଲେ । ଆଉ ଜଣେ ନବାବ ବୋଧହୁଏ କର୍ଣ୍ଣାଟକର ସେ ମାନ୍ଦ୍ରାଜ ଓ ପଣ୍ଡିଚେରୀକୁ ପରିଚାଳନା କରୁଥିଲେ ।

୧୭୧୯ରେ ମରହଟ୍ଟା, ମୋଗଲ, ପେଶୱାଙ୍କର ମିଳିତ ସେନାବାହିନୀ ଦିଲ୍ଲୀ ଅଭିମୁଖେ ଯାତ୍ରା କରି ଫିରୋଜସାହାଙ୍କ ଦ୍ୱାରା ଦ୍ୱିତୀୟଥର ସ୍ଥାପନ କରାଯାଇଥିବା ଅଶୋକସ୍ତମ୍ଭ ନିକଟରେ ପହଞ୍ଚିଲେ। ସେ ଜାଗାରୁ ଯୁଦ୍ଧ ଘୋଷଣା କଲେ। ଯୁଦ୍ଧ ଘୋଷଣାର ବାଜା ଫାରୁକଶାୟାରଙ୍କୁ ଶାହାଜାହାଁବାଦରେ ଶୁଭିଲା। ସେତେବେଳକୁ ସମ୍ରାଟ ନିରସ୍ତ୍ର। ଧରାହେଲେ ଫାକୁରଶାୟାର। ନୃଶଂସ ଭାବରେ ହତ୍ୟା କରାଗଲା ତାଙ୍କୁ। ୧୭୧୯ ଫେବୃୟାରୀ ୨୭ରେ ରଫି-ଉଲ-ଡରାଜତଙ୍କୁ ରାଜଗାଦିରେ ବସାଇଲେ। ତାଙ୍କ ଦେହ ଖରାପ ହେବାରୁ ତାଙ୍କ ବଡ଼ଭାଇଙ୍କୁ ରାଜଗାଦିରେ ବସାଇଲେ। ଶେଷରେ ଦୁଇଭାଇଙ୍କର ମୃତ୍ୟୁହେଲା ୧୭୧୯ରେ।

## ମହମ୍ମଦ ସାହା (୧୭୧୯-୧୭୪୮)

ମହମ୍ମଦ ଶାହା ୧୭୧୯ରେ ରାଜଗାଦିରେ ବସାଇଲେ। ସେ ସମ୍ରାଟ ହେବାପରେ ପରେ ହିନ୍ଦୁ ବ୍ୟବସାୟୀମାନେ ଜିଜିୟା କର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ବଜାରହାଟ ବନ୍ଦ କରିଦେଲେ। ଅବଧର ରାଜା ଜୟ ସିଂ ଓ ରାଜା ଗିରିଧର ସମ୍ରାଟଙ୍କ ସହିତ ଏ ବିଷୟରେ କଥାବାର୍ତ୍ତା କଲେ। ୪ କୋଟି ରାଜସ୍ୱର କ୍ଷତି ସହି ସମ୍ରାଟ ଏ ଜିଜିୟାକର ସବୁଦିନପାଇଁ ଉଠାଇନେଲେ। ୧୭୩୭ରେ ମରହଟ୍ଟା ଶାସକ ବାଜିରାଓ, କାଲକାଜୀ ମନ୍ଦିରପାଖରେ ମହମ୍ମଦ ସାହାଙ୍କୁ ସାମନା କଲେ। ବାଜିରାଓ ଟାଲକେଟାରାରେ ରହି ସବୁ ଆଖପାଖ ଜାଗାରେ ନିଆଁ ଲଗାଇଦେଲେ। ଏ ଜାଗାର ନାମ ଥିଲା ମୋହମୁଦବାଗ। ଅମିର ଖାଁଙ୍କ ନେତୃତ୍ୱରେ ମରାହଟ୍ଟାମାନଙ୍କ ସହ ଯୁଦ୍ଧ ହେଲା। ଯୁଦ୍ଧରେ ଜିତିଲେ ମରହଟ୍ଟାମାନେ। ବାଜିରାଓ ଦିଲ୍ଲୀ ଲୁଣ୍ଠନ କଲେ ନାହିଁ।

## ଯୋତା ବିପ୍ଳବ-

୧୭୨୯ ଆଉ ଏକ ଘଟଣା ଘଟିଲା- ଯୋତାବିକାଳିମାନଙ୍କର ଆନ୍ଦୋଳନ। ଦିନକୁ ଦିନ ଆନ୍ଦୋଳନ ତେଜିଲା। ଦେଶର ଅନ୍ୟାନ୍ୟ ଆନ୍ଦୋଳନ ମଧ୍ୟ ଏଥିସହ ଲାଗିରହିଲା। ଶ୍ରାବଣ ମାସ-ଉତ୍ସବର ମାସ। ରାସ୍ତାରେ ଫୁଟିଲା ବମ୍। ଏଥରୁ ବିକିରଣ ଯାଇଁ ଶୁଭକରନ ନାମକ ସେନାରିଙ୍କ ପାଲିକିଂରେ ପଡ଼ିଲା। ସବଦୁଲା ଖାଁଙ୍କ ଚୌକରେ ଏ ଘଟଣା ଘଟିଲା। ଦରବାର ଡ୍ରେସରେ ହେଲା କଣା। ରାସ୍ତାର ଦୁଇପଟେ ଯୋତା ଦୋକାନ। ଯୋତା ଦୋକାନ। ଶୁଭ ଖାଁଙ୍କୁ ଶସ୍ତ୍ରହୀନ କରିଦେଲେ।

ରାଗିଗଲେ ଶୁଭ ଖାଁ । ଘରେ ପହଞ୍ଚି ଅନ୍ୟମାନଙ୍କୁ ବିଦ୍ରୋହ ଦମନ କରିବାପାଇଁ ପଠାଇଲେ । ଆନ୍ଦୋଳନକାରୀଙ୍କ ଗୋଷ୍ଠୀର ଗୋଟିଏ ଛୋଟ ପିଲାକୁ ନିଷ୍ଠୁର ମାଡ଼ ମାରି ମୃତପ୍ରାୟ କରିଦେଲେ । ହାଜି ହାଫିଜ ସେ ପିଲାକୁ ଉଦ୍ଧାର କରିବାକୁ ଆଗେଇ ଆସିଲେ । କିନ୍ତୁ ଦମନକାରୀଙ୍କ ଖଣ୍ଡାଧାରରେ ଆଘାତ ପାଇ ମୃତ୍ୟୁବରଣ କଲେ । ବିଦ୍ରୋହୀମାନେ ଦାବି କଲେ କି ଶୁଭ ଖାଁ ଓ ଅନ୍ୟ ହତ୍ୟାକାରୀମାନଙ୍କୁ ଯେ ପର୍ଯ୍ୟନ୍ତ ମାରି ନ ଦିଆଯାଇଛି, ସେ ପର୍ଯ୍ୟନ୍ତ ସେ ପିଲାର ମୃତ ଦେହ ରାସ୍ତା ଉପରେ ସେହିଠାରେ ପଡ଼ିରହିଥିବ । ଶୁଭ ଖାଁ ସାର ଆଫଗାନ ପାନିପତିଙ୍କ ଶରଣ ନେଇ ସାରିଥିଲେ । ତାଙ୍କୁ ଜନତାଙ୍କ ହାତକୁ ଫେରାଇ ଦେବାକୁ ମନା କଲେ । ସମ୍ରାଟ ଏ ଗଣ୍ଡଗୋଳର ଖବର ପାଇ ରୋଶନ୍-ଉଦ୍-ଦୁଲାଙ୍କୁ ଶାନ୍ତିଫେରାଇ ଆଣିବାପାଇଁ ପଠାଇଲେ । ସେର ଆଫଗାନ ମଧ ସାଙ୍ଗରେ ଗଲେ । ରାସ୍ତାରେ ଅନେକ ଧସ୍ତାଧସ୍ତି ମଧ ହେଲା । ଅନେକ ଚେଷ୍ଟା ଓ କଷ୍ଟସ୍ୱୀକାର କଲାପରେ ଶାନ୍ତି ପ୍ରତିଷ୍ଠା ହୋଇପାରିଲା । ଶାନ୍ତ ହେଲା ଯୋତା ବିପ୍ଳବ ।

ମହମ୍ମଦ ସାହା ରାଜୁତି କଲେ ୧୭୧୯ରୁ ୧୭୪୮ ପର୍ଯ୍ୟନ୍ତ କିନ୍ତୁ ଏତେ ବର୍ଷର ଶାସନ ସୁଖପ୍ରଦ ନଥିଲା ।

## ନାଦିର ସାହା-

୧୭୩୯ରେ ମରହଟ୍ଟା ଆକ୍ରମଣ ପରେ ପରେ ପର୍ଶିଆର ସମ୍ରାଟ ନାଦିରସାହ କରନାଲରେ ଭାରତର ସୈନ୍ୟମାନଙ୍କୁ ହରାଇ ନିଜର ଏଜେଣ୍ଟମାନଙ୍କୁ ପଠାଇଲେ ଦିଲ୍ଲୀ କବଜା କରିବାକୁ । ହାଜି ଫୁଲବ ଖାନ, ସହରର କଟୱାଲ ଅନ୍ୟମାନଙ୍କର ବେଆଇନ ପ୍ରବେଶ ଓ ଭୟର କାରଣ ହଟାଇବାପାଇଁ ଚେଷ୍ଟା କରି ସବୁ ଫାଟକ ବନ୍ଦ କରିଦେଲେ । ଗଭର୍ଣ୍ଣର ଉତ୍‌ଫୁଲା ଖାଁଙ୍କୁ ସମ୍ରାଟଙ୍କୁ ଏକ ଚିଠି ଦେଖାଇ ଦିଆଗଲା । ସେଥିରେ ଲେଖାଥିଲା ଆକ୍ରମଣକାରୀଙ୍କ ପାଖରେ ଆତ୍ମସମର୍ପଣ କରିବାପାଇଁ । ଉତଫୁଲ ଖାଁ ଦୁର୍ଗ ଚାବି ହସ୍ତାନ୍ତର କରିବା ବ୍ୟତିତ ତାଙ୍କ ପାଖରେ ଅନ୍ୟ କିଛି ଉପାୟ ନଥିଲା । ଟ୍ରେଜେରୀ ଓ ଗନ୍ତାଘର ଚାବି ମଧ ନାଦିର ସାହଙ୍କ ଲୋକଙ୍କୁ ଦିଆହୋଇଗଲା । ନାଦିର ସାହଙ୍କ ଟ୍ରୁପ ଓ ଶୋଭାଯାତ୍ରାକୁ ୧୦୦ଟି ହାତୀ ଆଗେଇନେଲେ । ନାଦିର ସାହ ଶାହାଜାହାଁଙ୍କ ନିର୍ମିତ ଦିୱାନି ଖାସରେ ଅବସ୍ଥାନ କଲେ ଆଉ ସମ୍ରାଟ ମହମ୍ମଦ ସାହା ଅସଦ୍ ବ୍ରିଜର ଗୋଟାଏ କୋଣରେ ପଡ଼ିରହିଲେ ।

ଏହି ଘଟଣାର ଏକ ସବିଶେଷ ବିବରଣୀ। ମାର୍ଚ୍ଚରେ ୧୭୩୯ରେ ନାଦିରସାହ ସାଲିମାର ବଗିଚାରେ ପହଞ୍ଚିଲେ। ୮ ମାର୍ଚ୍ଚରେ ତାଙ୍କ ନିର୍ଦ୍ଦେଶାନୁଯାୟୀ ଏକ ଶୋଭାଯାତ୍ରାରେ ସେଇ ବଗିଚାରେ ଯାଇଁ ପହଞ୍ଚିଲେ ଅହମ୍ମଦ ଶାହ। ତହିଁ ପରଦିନ ସକାଳୁ ନାଦିରସାହ ସେଠାରେ ପହଞ୍ଚିଲେ। ମହମ୍ମଦ ସାହ ତାଙ୍କୁ ଆନନ୍ଦରେ ଗ୍ରହଣ କଲେ ଆଉ ଏକାଠି ପ୍ରାତଃ ଭୋଜନ କଲେ। ଦୁଇ ପକ୍ଷର ସୈନ୍ୟମାନଙ୍କ ମଧ୍ୟରେ ମଧ୍ୟ କୌଣସି ଗଣ୍ଡଗୋଳର ସୁତ୍ରପାତ ହେଲାନାହିଁ। ତା' ପରଦିନରାତିରେ ନାଦିରସାହ ସାଦିତ୍ ଖାଁଙ୍କୁ ଡକାଇ ତାଙ୍କୁ ପିଶିକସ୍ ବାବ୍ତ ପଇସା ଆରମ୍ଭ କରିବାକୁ ଆଦେଶ ଦେଲେ। ମୃତ୍ୟୁ ହେଲା ସାବିତ୍ ଖାଁଙ୍କର। ଅନେକ ଭାବିଲେ ସେ ଆତ୍ମହତ୍ୟା କରିଛନ୍ତି। ତା' ପରଦିନ ସକାଳେ ସିରବୁଲିନ୍ଦ ଖାଁଙ୍କୁ ଆଦେଶ ହେଲା ପିଶିକସ୍ ବାକ୍ତ ପଇସା ଆଦାୟ କରିବାକୁ। ବାଟରେ ତାଙ୍କର ଦେଖାହେଲା ଥମାସ ଖାଁ ଭକିଲଙ୍କ ସହିତ। ସେ ସିରବୁଲିନ୍ଦ ଖାଁଙ୍କୁ ପିଶିକସ ଆଦାୟ କରିବାକୁ ପାହାଡ଼ଗଞ୍ଜକୁ ପଠାଇଲେ। ଆଉ ବି କହିଲେ ସେଠାକାର ଶସ୍ୟାଗାର ଦେଖି ଶସ୍ୟର ଦରଦାମ ଠିକ କରିବାପାଇଁ। ତହିଁ ପରଦିନ ଇଦ୍-ମୁସଲମାନମାନଙ୍କ ପର୍ବ। ଏହି ଅବସରରେ ନାଦିର ସାହାଙ୍କୁ ଆଦର ଅଭ୍ୟର୍ଥନା ଜଣାଇଲେ ମହମ୍ମଦ ସାହା। ଇଦ୍ ପର୍ବରେ ନାଦିରସାହାଙ୍କ ନାମରେ କୁତୁଓ୍ୱା ପଢ଼ାଗଲା ଓ ପଇସା ମଧ୍ୟ ବଣ୍ଟାଗଲା।

ପରଦିନ ଘୋଡ଼ାସବାର ପର୍ଶିୟାନ ପୋଲିସ ପାହାଡଗଞ୍ଜର ଶସ୍ୟଭଣ୍ଡାର ଖୋଲିଦେଲେ ଓ ବିକ୍ରିର ଦରଦାମ ଠିକଣା କରିଦେଲେ। ଉଦ୍ଧତ ହୋଇଗଲେ ଜନତା, କେତେକ ଘୋଡ଼ା ଆରୋହୀ ପୋଲିସଙ୍କୁ ମାରିଦେଲେ। ସଦାତ୍ ଖାଁଙ୍କୁ ଡକାଇଲେ ଏ ପରିସ୍ଥିତିର ମୁକାବିଲା କରିବାପାଇଁ। ସଦାତ୍ ଖାଁଙ୍କ ସୈନ୍ୟମାନେ ଶହ ଶହ ସଂଖ୍ୟାରେ ପର୍ଶିୟାନ ସୈନ୍ୟଙ୍କୁ ମାରିଦେଲେ। ସମ୍ରାଟ ବା ରାଜକର୍ମଚାରୀ କୌଣସି ଆଗ୍ରହ ନେଲେ ନାହିଁ ବା ଏପରି ହଣାକଟା ଅଟକାଇବା ପାଇଁ ଚେଷ୍ଟା ବି କଲେ ନାହିଁ। ୩୦୦୦ କ୍ୱିଜିବାସ ସୈନ୍ୟ ମଲେ। ପ୍ରଥମରେ ନାଦିର ସାହ ବିଶ୍ୱାସ କଲେ ନାହିଁ। ଦି'ଜଣ ଦୂତ ପଠାଇଲେ ତଥ୍ୟ ଜାଣିବାପାଇଁ। ସେମାନେ ମଧ୍ୟ ମୃତ୍ୟୁବରଣ କଲେ। ସେଥିନିମନ୍ତେ ସେ ୧୦୦୦ ଜଣଙ୍କୁ ଶତ୍ରୁଦମନ ପାଇଁ ପଠାଇଲେ। କିନ୍ତୁ ସେମାନଙ୍କ ସଂଖ୍ୟା ଅଳ୍ପ। ବିଶେଷକରି ରାସ୍ତାଘାଟର ପରିସର ଅନ୍ଧାରୁଆ। ସେମାନେ କିଛି କରିପାରିଲେ ନାହିଁ। ତହିଁ ପରଦିନ ସକାଳେ ନାଦିରସାହ ବହୁସଂଖ୍ୟକ ସୈନ୍ୟଧରି ଦିଲ୍ଲୀ ରାସ୍ତାକୁ ଓହ୍ଲାଇଲେ। ଚାନ୍ଦନୀଚୌକ ମଧ୍ୟସ୍ଥଳରେ

ଥିବା ସୁନହର ମସଜିଦ ନିକଟରେପୋଲିସ ଚୌକ ସାମନାରେ ପହଞ୍ଚିଲେ। ସେଠି ଥାଇଁ ନାଦିର ସାହ ଲକ୍ଷ କଲେ କି କେଉଁ କଣରୁ ଏ ପ୍ରକାର ଆକ୍ରମଣ ଜାରି ରହିଛି। ସେଇ ଦିଗକୁ ନିଜର ସୈନ୍ୟମାନଙ୍କୁ ଆକ୍ରମଣ କରିବାପାଇଁ ନିର୍ଦ୍ଦେଶ ଦେଲେ। ଆଉରି ନିର୍ଦ୍ଦେଶ ଦେଲେ ସେ ଜାଗାର କୌଣସି ଲୋକ ଯେପରି ବଂଚି ନ ଯାନ୍ତି। ପ୍ରାୟ ୬ ଘଣ୍ଟା ଧରି ଏ ପ୍ରକାର ଆକ୍ରମଣ ଜାରି ରହିଲା। ନିଜାମ-ଉଦ-ମଲ୍ଲିକ ଓ କମର-ଉଦ୍ଦିନ-ଖାଁଙ୍କ ଅଶେଷ ଅନୁରୋଧ କ୍ରମେ ଏ ଦମନଲୀଳା ବନ୍ଦ ହେଲା। କେତେ ଲୋକ ପ୍ରାଣ ହରାଇଛନ୍ତତି ତାହାର କଳନା କରିବା ମୁଷ୍କିଲ। ୮୦୦୦ରୁ ୪ ଲକ୍ଷ। ଜର୍ମାନ ଭ୍ରମଣକାରୀ ଏହାକୁ ୩୦,୦୦୦ ବୋଲି କହନ୍ତି। ଯଦୁନାଥ ସରକାର ଏହାକୁ ୨୦,୦୦୦ ବୋଲି ଗଣନା କରନ୍ତି। ଅନେକ ଆତ୍ମହତ୍ୟା ମଧ କରିଛନ୍ତି। ସହର ଭିତରକୁ ଯିବା ଆସିବା ମଧ ବନ୍ଦ ହୋଇଯାଇଥିଲା। ପରେ ପରେ ଦୁର୍ଭିକ୍ଷ ମାଡ଼ି ଆସିଲା। କିଛିଦିନ ବିତିଗଲା ଏ ପରିସ୍ଥିତିରେ। ପରେ ଦିଲ୍ଲୀ ଲୋକେ ଫରିଦାବାଦ ଯାଇଁ ଆବଶ୍ୟକୀୟ ପଦାର୍ଥ କିଣିବାପାଇଁ ଅନୁମତି ପାଇଲେ।

ରବିବାର ୧୧ ତାରିଖ- ନାଦିର ସାହା ତାଙ୍କ ଗଡରୁ ବାହାରି ଗଣ୍ଡଗୋଳ ଘଟିଥିବା ଜାଗାକୁ ପରିଦର୍ଶନ କରିବାକୁ ଗଲେ। ଦେଖିଲେ ତାଙ୍କ ଲୋକଙ୍କ ଉପରେ ଅତ୍ୟାଚାର ହେଉଛି। ସେମାନଙ୍କୁ ପ୍ରତିଶୋଧ ନେବାପାଇଁ ଉତ୍ତେଜିତ କଲେ। ନିଜେ ମସଜିଦ୍ ଭିତରକୁ ଗଲେ। ଲୋକେ ଟେରାସ ଉପରେ ଥାଇଁ ନାଦିର ସାହଙ୍କ ଉପରକୁ ଢେଲା ପଥର ମାଡ଼ କଲେ। ବୋମା ଫୋପାଡ଼ିଲେ। ଏ ଅବସ୍ଥା ନାଦିରସାହାଙ୍କୁ ଆହୁରି କ୍ରୁର ହେବାପାଇଁ ଖୋରାକ ଯୋଗାଇଲା। ଆଦେଶ ଦେଲେ ଘାତକ ହେବାପାଇଁ। ବିର୍ଚୌରିଚିତ ଭାବେ ଲୁଣ୍ଠନ, ହତ୍ୟା ଓ ଜଳାପୋଡା କରିବାପାଇଁ ଆଦେଶ କଲେ। ସେ ନିଜେ ଏ ସବୁ ଆଦେଶ ଦେବାପରେ ଦୁର୍ଗ ଭିତରକୁ ଫେରି ଆସିଲେ। ମହମ୍ମଦ ସାହ ଓ ନଜାମ-ଉଲ-ମୁଲକ ଅପେକ୍ଷା କରିଥିଲେ ନାଦିରସାହାଙ୍କ ଆଗମନକୁ। ସେମାନଙ୍କୁ ଏ ପକାର ଗଣହତାର ନଜର-ଅନ୍ଦାଜ ବି ନ ଥିଲା।

୧୨ ତାରିଖରେ ସବୁ ସ୍ତ୍ରୀ ଲୋକଙ୍କୁ ନିଜ ନିଜ ଘରକୁ ପଠାଇ ଦିଆଗଲା।

୧୩ ତାରିଖ ନଈକୂଳରେ ଓ ଚାରିଦିଗରେ କଡା ପହରା ରଖିଦେଲେ। ଯେପରି କୌଣସି ଲୋକ ବାହାରକୁ ଯାଇ ନ ପାରନ୍ତି। ସହର ଭିତରକୁ ଆସିବା କାହାକୁ ପ୍ରତିବନ୍ଧକ ନଥିଲା। ବିନା ଅନୁମତିରେ ଯିବା ଲୋକଙ୍କର ମୁଣ୍ଡକାଟ ହେଉଥିଲା। ମଲା ଦେହ ସବୁ ଶସ୍ୟାଗାର ଭିତରକୁ ଫୋପାଡ଼ି ଦିଆଯାଉଥିଲା।

୧୪ ତାରିଖ– ଯେଉଁ ସାଧୁମାନେ ବାହାରକୁ ଯିବାକୁ ଚାହୁଁଥିଲେ ସେମାନଙ୍କର ନାକ, କାନ କାଟି ଦିଆଯାଉଥିଲା ।

୧୫ ତାରିଖ- ମୃତଦେହ ସବୁ ସହରସାରା ଖେଳାଇ ହୋଇ ପଡ଼ିଥିଲା । ଆଦେଶ ହେଲା ସବୁ ମୃତ ଶରୀରକୁ ଦଉଡ଼ି ବାନ୍ଧି ସହର ବାହାରକୁ ପକାଇଦିଅ । ହିନ୍ଦୁମାନଙ୍କର ମୃତ ଶରୀରକୁ ଗୋଟାକ ଉପରେ ଗୋଟାଏ ଲଦି ଜାଳିଦି ।

୧୬ ତାରିଖରେ- ରାଜସ୍ୱ ପର୍ଶିୟାକୁ ବିଶେଷ ଦୂତ ହାତରେ ପଠାଇ ଦିଆଗଲା । ସାଙ୍ଗେ ସାଙ୍ଗେ ସୈନିକମାନଙ୍କୁ ପ୍ରାପ୍ୟ ଦରମା ଓ ବର୍ଷକ ପାଇଁ ଆଗତୁରା ଦରମା ଦିଆଗଲା । ସାଦିତ ଖାଁ ମାରଫତରେ ୧୦୦୦ କୁଜେଲବାସ ଘୋଡ଼ାସବାର ଦେଇ ରାଜକୋଷକୁ ରାଜସ୍ୱ ଆଣିବାପାଇଁ ପଠାଗଲା ।

୧୭ ତାରିଖ- ସିରବୁଲିନ୍ଦ ଖାଁଙ୍କୁ ଅନ୍ୟ ଜାଗାକୁ ସ୍ଥାନାନ୍ତରିତ କରାଗଲା କାରଣ ବୃଦ୍ଧ ବୟସରେ ସେ ଲୋକମାନଙ୍କଠାରୁ କିଛି ରାଜସ୍ୱ ଆଦାୟ କରିପାରିବେ ନାହିଁ । ନାଦିର ସାହ ଲୁଣ୍ଠନ, ଅତ୍ୟାଚାର, ହତ୍ୟା ଦିଗରେ ମନ ଦେଲେ । ଧନୀ ଗରିବ ନିର୍ବିଶେଷରେ ନିଜ ନିଜର ଅଧାସଂପତ୍ତି ଦେବାକୁ ବାଧ ହେଲେ । ଯେଉଁମାନେ ଲୁଣ୍ଠନର ଶିକାର ହୋଇଥିଲେ ସେମାନଙ୍କଠାରୁ ଯେଉଁ ଟଙ୍କା ଆଦାୟ ହେଲା ତାର ମୂଲ୍ୟ ପ୍ରାୟ ୨ କୋଟି ଟଙ୍କା ହେବ । ଘେନିଗଲେ ମୟୁର ସିଂହାସନ– ଭାରତର ଶ୍ରେଷ୍ଠ ଅମୂଲ୍ୟ ସଂପଦ । ଭାରତରୁ ଅନେକ ଶ୍ରେଷ୍ଠ କାରିଗରଙ୍କୁ ମଧ ପର୍ଶିୟା ନେଇଗଲେ । ସେଠାରେ ଦିଲ୍ଲୀ ପରି ଏକ ସହର ଗଢ଼ିପାରିବେ । ଗଲା ପୂର୍ବରୁ ମହମ୍ମଦ ସାହଙ୍କୁ ମୁକୁଟ ପିନ୍ଧାଇ ଦେଇଗଲେ ।



# ବାହାଦୁର ସାହ ଜଫର- (୧୭୭୫-୧୮୬୨)

ଆକବର ସାହି II ଙ୍କ ବଡ଼ପୁଅ ମିର୍ଜା ଆବୁ ଜଫର। କିନ୍ତୁ ସେ ପିତାଙ୍କର ପ୍ରିୟପୁତ୍ର ନଥିଲେ। ୧୭୭୫ ଜନ୍ମିତ ଶିଶୁର ନାମ ବାହାଦୁର ସାହ ଜଫର'

'ଜଫର' ଶବ୍ଦର ଅର୍ଥ ବିଜୟ'

ଆକବର ସାହା ୨ୟ ୧୮୩୭ରେ ମୃତ୍ୟୁ ବରଣ କଲେ।

ପରେ ପରେ ସମ୍ରାଟ ହେଲେ ବାହାଦୁରସାହ ଜଫର। ପୂର୍ବରୁ ବ୍ରିଟିଶରମାନେ ଥିଲେ ଏକ ଉପକୂଳବର୍ତ୍ତୀ ଅଞ୍ଚଳର ମାମୁଲି ଅଧିକାରୀ। ସେ ସମୟକୁ ବ୍ରିଟିଶରମାନେ ଏକ ଅସୁରକ୍ଷିତ ବ୍ୟବସାୟୀ ସଂସ୍ଥାରୁ ଏକ ଆକ୍ରମଣାତ୍ମକ ବ୍ୟାପକ ସେନାବାହିନୀ ଭାବରେ ଆଗେଇ ଆସୁଥିଲେ।

ଜଫରଙ୍କ ନିଜ ଜୀବଦଶାରେ ନିଜ ମୋଗଲ ରାଜତ୍ୱ ଅତିହୀନ ଭାବରେ ଅବନମନ ଅବସ୍ଥାକୁ ଚାଲିଆସିଥିଲା। ସେ ସମୟକୁ ବ୍ରିଟିଶର ମାନଙ୍କର ଉପନିବେଶବାଦ ପ୍ରତିଷ୍ଠା କରିବାର ଚେଷ୍ଟାରେ ସଫଳ ହୋଇସାରିଥିଲେ।

ଉପନିବେଶବାଦର ଅର୍ଥ ବୁଝିବା ହୁଏତ ଆମପାଇଁ କଷ୍ଟ। କିନ୍ତୁ ଏତିକି ଜାଣିଛୁ ଆମ ଧନ ବାହାରକୁ ଚାଲିଯାଇଥିଲା। ୬୨ ବର୍ଷରେ ଜଫର ରାଜଗାଦି ଅଳଙ୍କୃତ କଲେ। ଠିକ ସେଇ ସମୟକୁ ମୋଗଲମାନଙ୍କ ଅବତରଣକୁ ରୋକିବା ଏକାବେଳେକେ ଅସମ୍ଭବ ହୋଇପଡ଼ିଥିଲା।

ଇଷ୍ଟ ଇଣ୍ଡିଆ କମ୍ପାନୀ ହାତକୁ ସବୁ କ୍ଷମତା (ମୋଗଲମାନଙ୍କର) ପ୍ରାୟ ଚାଲିଯାଇଥିଲା। ଜଫରଙ୍କ ପୂର୍ବଜମାନେ ସାରା ଭାରତକୁ ରାଜୁତି କରୁଥିବା ବେଳେ ସେ କେବଳ ନାମକୁ ମାତ୍ର ସମ୍ରାଟ ଥିଲେ- ମୋଗଲ ସାମ୍ରାଜ୍ୟର ଶେଷ ସମ୍ରାଟ।।

ବ୍ରିଟିଶ ସରକାର ସମ୍ରାଟଙ୍କୁ ଭାରତବର୍ଷରେ ତାଙ୍କ ରାଜୁତିର ମୁଖ୍ୟ ଅନ୍ତରାୟ ବୋଲି ଭାବୁଥିଲେ। ସବୁ ରାଜକୀୟ ସୁଖ ସୁବିଧାରୁ ତାଙ୍କୁ ବଂଚିତ କରିବାର ଯୋଜନାରେ ଥିଲେ। ତାଙ୍କ ରାଜକୀୟ ମର୍ଯ୍ୟାଦାରେ ବାଧା ଦେଖି ବିରକ୍ତ ହୋଇଥିଲେ। ନଜର ଦେବାର ଶୈଳୀ ମଧ ତାଙ୍କୁ ସୁହାଉ ନଥିଲା।

ଲର୍ଡ଼ ଡେଲହାଉସି ସମ୍ରାଟଙ୍କ ଏ ପ୍ରକାର ଅବାସ୍ତବ ମର୍ଯ୍ୟଦାକୁ ଅର୍ଥହୀନ ଓ କ୍ଷତିକାରକ ବୋଲି ଭାବୁଥିଲେ। ସବୁ ରାଜକୀୟ ପଦବୀକୁ କ୍ଷୁର୍ଣ୍ଣ କରିବାକୁ ଚାହିଁଥିଲେ। କିନ୍ତୁ ବୋର୍ଡ଼ ଅଫ ଡାଇରେକର୍ଟର ଏହାକୁ ସ୍ୱୀକାର କରି ନ ଥିଲେ।

ଜଫର ସାହିତ୍ୟ ଓ ସ୍ଥାପତ୍ୟ କଳାର ଉପାସକ। ନିଜେ ମଧ ଜଣେ କବି। ତାଙ୍କ ଦରବାରରେ ଗାଲିବ ଓ ଜକ୍ ଭଳି କବି ମାନେ ଥିଲେ। ଶାନ୍ତି ଉପାସକ ସମ୍ରାଟ ଅନେକ ସମସ୍ୟାର ସମ୍ମୁଖୀନ ହେଲେ କାରଣ ସେ ଭାବୁଥିଲେ ଏ ସମସ୍ୟା ସବୁର କୁ ପ୍ରଭାବ ବାହାର ଦୂନିଆରେ ଖେଳେଇ ହୋଇଯିବ ବିଶେଷ କରି ମୁସଲମାନଙ୍କ ଭିତରେ।

ରହିଲା ପ୍ରାସାଦ ବଦଳାଇବା କଥା। ଜଫର କହିଲେ "ସମ୍ରାଟଙ୍କ ରକ୍ତରେ ଯଦି ବିନ୍ଦୁଏ ମାତ୍ର ତୈମୁରଙ୍କ ରକ୍ତ ବୋହୁଥିବ, ତା' ହେଲେ ସେ ଏପରି ଜୋରଜବରଦସ୍ତି ,ଉଚ୍ଛେଦକୁ ଜୀବନ ଦେଇଦେବେ ପଛେ ବରଦାସ୍ତ କରିବେ ନାହିଁ।" ମୃତ୍ୟୁ ପର୍ଯ୍ୟନ୍ତ ଏ ପ୍ରକାର ବନ୍ଦୋବସ୍ତ ବନ୍ଦ ରଖିବା ପାଇଁ ଠିକଣା ହେଲା।

ସମ୍ରାଟ ବଂଶପରମ୍ପରାଗତ ବନ୍ଦୋବସ୍ତ ବାଲୁ ରଖିବାପାଇଁ ଇଚ୍ଛା କଲେ। କହିଲେ ତାଙ୍କ ପରେ ତାଙ୍କ କନିଷ୍ଠପୁତ୍ର ଜୱାନବକ୍ତଙ୍କୁ ରାଜଗାଦିରେ ବସାଇବା ପାଇଁ।

କିନ୍ତୁ ଡେଲହାଉସୀ ଭାବିଥିଲେ ତାଙ୍କ ସାନପୁଅ ଫକୀରଉଦ୍ଦିନଙ୍କୁ ବ୍ରିଟିଶ ସରକାରଙ୍କ ତରଫରୁ ରାଜଗାଦିରେ ବସାଇବା ପାଇଁ। ଡ଼େଲହାଉସୀ ସର୍ତ୍ତ ରଖିଲେ ଫକୀରୁଉଦ୍ଦିନ ନିଜେ ଯାଇ ଗଭର୍ଣ୍ଣର ଜେନେରାଲଙ୍କୁ ଦେଖା କରିବେ ଆଉ ବ୍ରିଟିଶଙ୍କୁ ରାଜପରିବାରର ପ୍ରାସାଦ ଛାଡ଼ିଦେଇ ମେହେରୋଲିରେ ରହିବେବୋଲି ଚୁକ୍ତି କରିବେ ଓ ଶାହାଜାହାନଙ୍କ ଦୁର୍ଗ ବ୍ରିଟିଶରମାନଙ୍କର ବ୍ୟାରେକ ଓ ପାଉଡ଼ର ମାରାକିନ ନିମନ୍ତେ ଛାଡ଼ିଦେବେ। ଆଉ ଫକ୍ରୁରୁ ମୋଗଲମାନଙ୍କର ବ୍ରିଟିଶମାନଙ୍କ ଉପରେ ଆଧିପତ୍ୟ ନ ରଖିବାପାଇଁ ପ୍ରବର୍ତାଇବେ। ଏ ପ୍ରକାର ଚୁକ୍ତିନାମା ସଂପର୍କରେ ଜଫର ଶୁଣିବାକୁ ପାଇଲେ।

ରାଗରେ ଥରି ଉଠିଲା ତାଙ୍କ ଦେହ, ''କୁକୁର ବୋଧେ ନିଜକୁ କୋକିଶିଆଳି ବୋଲି ଭୂଲରେ ଭାବି ପାରିଛି।'' ରାଗିଯାଇ କହିଲେ। ଜଫରଙ୍କର ମିର୍ଜା ଫକ୍ରୁରୁ ହୋଇଗଲେ ବଡ଼ ଶତ୍ରୁ। ଦରବାରର ଯେ କୌଣସି ଲୋକ ମିର୍ଜା ଫକ୍ରୁରୁଙ୍କ ସହ ବନ୍ଧୁତା ରଖିଲେ ସେମାନେ ବି ହେଲେ ସମ୍ରାଟଙ୍କର ଶତ୍ରୁ। ଆସ୍ତେ ଆସ୍ତେ ତାଙ୍କଠାରୁ ସବୁ ରକମର ମାସିକ ଭତ୍ତା, ଘର, ନେଇଯାଇ ତାଙ୍କ ସାନଭାଇ ମିର୍ଜା ମୋଗଲଙ୍କୁ ଦିଆଗଲା।

ଏହାର କୌଣସି ପ୍ରଭାବ ବ୍ରିଟିଶ ସରକାରଙ୍କ ଉପରେ ପଡ଼ିଲା ନାହିଁ। ଦୁଃଖରେ ଭାଙ୍ଗିପଡ଼ିଲେ ଜଫର। ମେଟକାଫଙ୍କୁ ଲେଖିଲେ ଯଦି ଜଫରଙ୍କ କଥାର କିଛି ମୂଲ୍ୟ ନ ରହେ, ସେ ଏସବୁ ପରିତ୍ୟାଗ କରି ସେ ତୀର୍ଥଯାତ୍ରାରେ ଚାଲିଯିବେ।

ମେଟକାଫ ହତବାକ୍ ହୋଇଗଲେ ଏ ସବୁ ଶୁଣି। ପରେ ପରେ ସେ ଜିନତମହଲଙ୍କ ମତାମତକୁ ଅଧିକ ସଂଗତ ବୋଲି ଭାବି ତାଙ୍କ ମତ ଉପରେ ନିର୍ଭର କଲେ। ଜିନତ୍ ମହଲଙ୍କର ମୁଖ୍ୟ ଉପଦେଷ୍ଟା ଥିଲେ ମେହବୁକ୍ ଅଲିଖାଁ। ଅଲିଖାଁ ଅନେକ ଅସ୍ୱାସ୍ଥ୍ୟକର ପରିସ୍ଥିତି ସୃଷ୍ଟି କରିବାରେ ସିଦ୍ଧହସ୍ତ। ଜିନତ୍ ତାଙ୍କ ନିଜ ପୁଅ ଜୱାନ-ବକ୍ତଙ୍କୁ ଭବିଷ୍ୟତ ସମ୍ରାଟ ବୋଲି ମାନିବାକୁ ବ୍ରିଟିଶର ମାନଙ୍କୁ ଉପରେ ଚାପ ପକାଇଲେ।

ଜଫର ନିଜେ ଜଣେ ଭଗବତ୍ ପ୍ରେମୀ କବି, ସୁଫିବାଦର ପ୍ରବର୍ତ୍ତକ ଚିତ୍ରକଳାର ପ୍ରୋତ୍ସାହକ, ବଗିଚା କରିବାର ପୃଷ୍ଠପୋଷକ ଭାବରେ ବେଶ୍ ପରିଚିତ ଆଉ ସିଦ୍ଧହସ୍ତ ଥିଲେ। ଉର୍ଦ୍ଦୁ ଓ ପର୍ଶିୟାନ ଭାଷାରେ କବିତା ରଚନା କରିପାରୁଥିଲେ। କେବଳ ସେତିକି ନୁହେଁ ପଂଜାବି ଓ ବ୍ରଜଭାଷାରେ ମଧ୍ୟ ଅନେକ କବିତା ଲେଖିଥିଲେ। ଆଧୁନିକ ଭାରତ ଇତିହାସ ସାହିତ୍ୟର ପୁନରୁଦ୍ଧାର କରିଥିଲେ। ଗଜଲ ଲେଖକ ଭାବରେ ତାଙ୍କର ଅନେକ ଖ୍ୟାତି ଥିଲା। ତାଙ୍କ ଦରବାରରେ ନାମଜାଦା ଗୀତିକାବ୍ୟ ରଚୟିତା କବିମାନଙ୍କୁ ଯଥା ଗାଲିବ ଓ ଜକ୍‌ଙ୍କ ପରି ବ୍ୟକ୍ତିମାନଙ୍କୁ ସ୍ଥାନ ଦେଇଥିଲେ।

ଅନ୍ୟ ଦିଗରେ ପୁତ୍ର ମିର୍ଜା ଫକ୍ରୁରୁ ତାଙ୍କ ନିଜ ଲେଖାରେ ବ୍ୟସ୍ତଥାନ୍ତି। ସେ ରାଜାଙ୍କ ଇତିହାସ ଓ ପ୍ରଫେଟ ମହମ୍ମଦ ସଂକ୍ରାନ୍ତରେ ଲେଖୁଥିଲେ। ଜଫରଙ୍କ ଇଚ୍ଛା ଥିଲା ପ୍ରତ୍ୟେକ ରାଜପୁତ୍ର " କବିତା ଲେଖାରେ ନିଜକୁ ସାମିଲ କରନ୍ତୁ। ସେଥିପାଇଁ ସେ ନିଜେ ଉର୍ଦ୍ଦୁ ଅଭିଧାନ ଲେଖିବାରେ ବ୍ୟସ୍ତ ରହିଥିଲେ। ଅଭିଧାନ ଲେଖିବାରେ ତାଙ୍କ ପରିବାରର ପ୍ରାୟ ୫୦ ଜଣ ସଦସ୍ୟ ବ୍ୟସ୍ତ ଥିଲେ। ଅଧିକାଂଶ ସ୍ତ୍ରୀ ଲୋକ।

ରାଜପୁତ୍ର ମିର୍ଜା ଜୱାନ କିନ୍ତୁ ପଢ଼ାରେ ମନ ଲଗାଇ ପାରୁ ନ ଥିଲେ। ଅଧିକାଂଶ ସମୟରେ ଶିକାର କରିବାରେ ବ୍ୟସ୍ତ ରହୁଥିଲେ। ବଗିଚା ତିଆରିର ସଉକ ମୋଗଲ ମାନଙ୍କର ଅଧିକ। ଜୱାନଙ୍କର ମଧ୍ୟ ଥିଲା। ଫୁଲର ସୁଗନ୍ଧ, ବଗିଚା କରିବାର ଆନନ୍ଦ ଅନେକ ଜଫରଙ୍କ ମୁଖ୍ୟ ତତ୍ତ୍ୱାବଧାନରେ ଥିଲା। ବେଳେ ବେଳେ ନିଜର ଫୁର୍ତ୍ତି ମେଣ୍ଟାଇବା ପାଇଁ ମାଛଧରା, ଗୁଡ଼ିଉଡା, ଇତ୍ୟାଦି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ରହୁଥିଲେ। ଯଦି ଓ ଗାଳିବ ଏଥିରେ ଖୁସି ନ ଥିଲେ।

୧୮୪୦ ରେ ୬୪ ବୟସରେ ସେ ୧୯ ବର୍ଷ ବୟସ୍କ ଉଚ୍ଚବଂଶଜ ଜିନତ ମହଲ ବେଗମଙ୍କୁ ବିବାହ କରିଥିଲେ। ପୂର୍ବରୁ ଜଫର ତାଜମହଲଙ୍କୁ ବିବାହ କରିଥିଲେ। ଜିନତମହଲଙ୍କୁ ବିଭାହ ପରେ ତାଜମହଲଙ୍କ କର୍ତୃତ୍ୱ ସମ୍ରାଟଙ୍କୁ ଉପରୁ ଆସ୍ତେ ଆସ୍ତେ କମିଗଲା।

ଜିନତଙ୍କର ଜନ୍ମନେଲେ ପୁତ୍ର ସନ୍ତାନ - ନାଁ ରଖିଲେ ମିର୍ଜା ଦିୱାନ ବକ୍ତ। ଭାରତର ଭାବି ସମ୍ରାଟ ହେବେ ବୋଲି ଆଶା ଥିଲା। ବ୍ରିଟିଶରମାନେ ଧିରେ ଧିରେ ସବୁ ରାଜନୈତିକ ଶକ୍ତି ସମ୍ରାଟଙ୍କ ନିକଟରୁ ନେଇଯିବାକୁ ଲାଗିଲେ। ଭାରତୀୟ ମୁଦ୍ରା ଉପରୁ ସମ୍ରାଟଙ୍କ ନାମ ମଧ୍ୟ ଉଠାଇଦେଲେ। ଦିଲ୍ଲୀ ଉପରୁ ଲାଲକିଲ୍ଲାରୁ ମୋଗଲଙ୍କ କର୍ତୃତ୍ୱ ସଂପୂର୍ଣ୍ଣ ଭାବରେ ଲିଭାଇ ଦେବାର ଚେଷ୍ଟାରେ ରହିଲେ।

୧୮୫୨ ମସିହା ଏପ୍ରିଲ ୨ ତାରିଖ ଖରାଦିନ ରାତି ସମୟ ୨ଟା ହେବ। ଜୱାନୱକ୍ତ ଜଫର ଓ ଜିନତ୍ ମହଲଙ୍କର ଏକମାତ୍ର ପୁତ୍ରଙ୍କ ବାହାଘର ପ୍ରୋସେସନ ରେଡ଼ଫୋଟର ଲାହୋର ଗେଟରୁ ବାହାରିଲା। ବାନ୍ଦନୀଚୌକର ଦୁଇପଟ ଗେଟ ଖୋଲା। ରାସ୍ତାର ଦୁଇପଟେ ଆଲୋକ ସଜ୍ଜା। ଆଖି ଝଲସି ଯାଉଥାଏ। ପ୍ରୋସେସନ ଆଗରେ ଲାଠିଧରି ରକ୍ଷକଙ୍କ ଧାଡ଼ି। ବାହାର ଲୋକେ ଆଲୋକସଜ୍ଜାର ଘେରି ଭିତରକୁ ପଶି ଆସୁଥିଲେ ବୋଲି ଏ ରକ୍ଷକମାନେ ତାଙ୍କୁ ଘଉଡାଇ ଦେଉଥିଲେ। ତା'ପଛକୁ ଦୁଇଜଣ ମନ୍ତ୍ରୀ ଘୋଡ଼ା ପିଠିରେ ବସି ଚାଲିଛନ୍ତି। ଘୋଡ଼ା ମୁଣ୍ଡରେ କଉଡ଼ି ଓ ଅନ୍ୟାନ୍ୟ ସୁନ୍ଦର ଦଉଡିରେ ବନ୍ଧା ହୋଇ ସୁନ୍ଦର ସୁନ୍ଦର ଜିନିଷ ସବୁ ସଜାହୋଇଛି। ବେକରେ ଛୋଟ ବଡ଼ ଓ ବିଭିନ୍ନ ଶବ୍ଦ କରୁଥିବା ଘଣ୍ଟି। ପଛରେ ପଙ୍ଖାଧାରୀ ମାନେ। ଠିକ ପଛକୁ ମୋଗଲ ବାଦଶାହାଙ୍କ ପଦାତିକ ବାହିନୀର ସୈନ୍ୟମାନେ। ସେମାନଙ୍କ ହାତରେ ବଙ୍କାଲିଆ ଖଣ୍ଡା ଓ ଲମ୍ବା ଡେଙ୍ଗା ବାଉଁଶରେ ବନ୍ଧା ତିନିକୋଣିଆ ଲମ୍ବା ଶାଗୁଆ ପତାକା ଆଗରେ ଝଲକୁଛି ସୁନାର କଣ୍ଠିମାଳା।

ପଛକୁ ୬ଟି ରାଜକୀୟ ହାତି। ସେମାନଙ୍କ ମଥାରେ ସାପ୍ରାଂନ କପଡ଼ାରେ ସୁନା ଛାଉଣୀ ହୋଇ ପଡ଼ିଛି। ଆଉ ମଝିରେ ଅଛି ମୋଗଲ ଦରବାରର ଚିହ୍ନ। ହାତି ଉପରେ ହାଉଦାରେ ମୋଗଲ ସମ୍ରାଜ୍ୟର ମୂଳରୁ ଶେଷ ପର୍ଯ୍ୟନ୍ତ ଇତିହାସର ଚିତ୍ର ଝୁଲୁଛି। ମଝିରେ ସୂର୍ଯ୍ୟଙ୍କ ମୁଖର ଆକୃତିର ଚିହ୍ନ। ବିକିରଣ ହେଉଛି ସୂର୍ଯ୍ୟ ଦେବତାଙ୍କର କିରଣର ଚିତ୍ର। ଦୁଇ ପାଖେ ଦୁଇଟା ସୁନାର ମାଛ ସୁନା ତାରରେ ଝୁଲୁଛି। ତୃତୀୟ ମାଛଟି ସିଂହର ମୁହଁ ଉପରେ, ଚତୁର୍ଥ ମାଛଟା ଘୋଡ଼ା ଚିତ୍ରର

ମୁହଁ ଉପରେ ଆଉ ପଞ୍ଚମଟି ଫତିମା ହାତରେ। ସୁନାରେ ତିଆରି ମାଛ ଗୁଡ଼ିକ ସୁନା ତାରରେ ଝୁଲୁଥାନ୍ତି।

ଠିକ୍ ପଛକୁ ଢଙ୍କା ଚାଦର ତଳେ ବିଭିନ୍ନ ରକାମାରୀ ତିଆରି ହୋଇ ମିଠା ଥାଳିରେ ସଜା ହୋଇଛି। ବାହକମାନେ ଦରବାରୀ ଡ୍ରେସ୍ ପିନ୍ଧି ଚାଲିଥାନ୍ତି।

ପରେ ପରେ ଓଟ ଉପରେ ଡ୍ରମବଜାଳ ଓ ଫାଙ୍କା ଗୁଳିର ଶବ୍ଦ କରି କରି ଚାଲିଥାନ୍ତି ଓଟଯାତ୍ରୀ ଦଳ।

କ୍ୟାପଟେନ ଡଗଲାସ୍‌ଙ୍କ ନେତୃତ୍ୱରେ ବ୍ରିଟିଶ ସରକାରଙ୍କର ଛୋଟ ରେଜିମେଣ୍ଟିଏ ପ୍ରୋସେସନରେ ଭାଗ ନେଇଥାନ୍ତି।

ପଛରେ ଘୋଡ଼ା ଉପରେ ସ୍କିନର ସାହେବ। ଶଗଡ଼ ଗାଡ଼ି - ଉପରେ ବସି ଚାଲିଥାନ୍ତି ଡ୍ରମବଜାଳି, ସାହାନାଇ ବାଦକ ଇତ୍ୟାଦି ଇତ୍ୟାଦି। ବରିଷ୍ଠ ରାଜପୁତ୍ରମାନଙ୍କର ସୁସଜ୍ଜିତ ଦୋଳା ସବୁ ପଛକୁ ଲାଗିଥାନ୍ତି।

ପରେ ପରେ ଅନେକ ମଶାଲଧାରୀଙ୍କ ଶୋଭାଯାତ୍ରା। ଛୋଟ ଛୋଟ ରାଜପୁତ୍ରମାନଙ୍କ ସୁସଜ୍ଜିତ ଦଳ ବି ପଛଧାଡ଼ିରେ ଚାଲୁଥାନ୍ତି।

ଏଇମିତି କେତେ କ'ଣ ?

ଜଫରଙ୍କ ଫଟୋ ଉପରର ସାଜସଜ୍ଜା ବହୁତ ମନଲୋଭନୀୟ। ଏ ପ୍ରକାର ବିଭାଘରର ବରଯାତ୍ରୀ ଦଳଙ୍କର ଆୟୋଜନ ଓ ବହୁ ଆଡ଼ମ୍ବର ପୂର୍ଣ୍ଣ ସାଜସଜ୍ଜା ଦେଖି ଜୱାନବକ୍ତଙ୍କର ନିଜ ଉପରେ ଅନେକ ବିଶ୍ୱାସ ବୃଦ୍ଧିପାଇଯାଉଥିଲା।

ଜଫର ଓ ଜିନତ ଦିୱାନଙ୍କୁ ଭାବି ମୋଗଲ ସମ୍ରାଟ ବୋଲି ଭାବି ସାରିଥିଲେ। ଜଫର ଆତଙ୍କିତ ହୋଇପଡୁଥିଲେ ସତ କିନ୍ତୁ ଏ ଅକଳ୍ପଣୀୟ ଶୋଭାଯାତ୍ରାର ତୁଳନା ନାହିଁ।

ଶୋଭାଯାତ୍ରାର ଦୃଶ୍ୟ ଦେଖିବାପାଇଁ ଜଣେ ସେଠି ଉପସ୍ଥିତ ନ ଥିଲେ। ସେ ହେଲେ ଜିନତ ମହଲ। କାରଣ ସେତେବେଳକାର ମୁସଲିମ ନିୟମ ଅନୁଯାୟୀ ନିଜ ସନ୍ତାନର ବିଭାଘର ଶୋଭାଯାତ୍ରାରେ ମା'ମାନେ ଅଂଶ ଗ୍ରହଣ କରିବାର ନିୟମ ନ ଥିଲେ। ଜୱାନ ୱାକ୍ତଙ୍କର ବୟସ ୧୫ ଓ ନବାବ୍ ସାର ଜାମିନା ବେଗମଙ୍କର ବୟସ ମାତ୍ର ୧୦। ସେ ଥିଲେ ଜିନତମହଲଙ୍କ ଝିଆରୀ। ବିଭାଘରର ଉପଯୁକ୍ତ ବୟସ ନ ହୋଇଥିଲେ ମଧ୍ୟ ଚଞ୍ଚଳ ବିଭାଘର ସାରିବା ପାଇଁ ସମସ୍ତେ ଆଗ୍ରହୀ ଥିଲେ। ଦାମିନୀ ବେଗମଙ୍କର ପିତା ଜିନତ ମହଲଙ୍କ ପରାମର୍ଶ ଦାତା ମାନଙ୍କ ମଧ୍ୟରୁ ଜଣେ।

ଜାହିର ଡାହଲାଭିଙ୍କ ମତରେ ଏହା ପୂର୍ବରୁ କୌଣସି ରାଜପୁତ୍ରଙ୍କର ଏଭଳି ଆଡ଼ମ୍ବରରେ ବାହାଘର ହୋଇ ନଥିଲା ବା ପରେ ମଧ୍ୟ ହେବାର ସୁଯୋଗ ନଥିଲା। ତାଙ୍କର ଜୀବନ କାଳରେ ସେ ଦିଲ୍ଲୀରେ ଏପରି ଶୋଭାଯାତ୍ରା ଦେଖି ନ ଥିଲେ। ବିବାହର ଆୟୋଜନ ସହ ଦେବା ନେବାର ଆୟୋଜନ ମଧ୍ୟ ଆରମ୍ଭ ହୋଇଥିଲା। ଆଡ଼ମ୍ବର ମଧ୍ୟ ଅବର୍ଣ୍ଣନୀୟ ବାହାଘର ଦିନ ଜଫର ଓ୍ବକ୍ତଙ୍କୁ ଏକ ଓଢ଼ଣୀ ଦେଇଥିଲେ। ବାହାଘର ରାତିକୁ "ରାତଜଗା" ବୋଲି କହନ୍ତି। ଜଫର ଯେଉଁ ଓଢ଼ଣୀ ଦେଇଥିଲେ ସେଥିରେ ମୁକ୍ତା ଓ ଅନ୍ୟାନ୍ୟ ମୂଲ୍ୟବାନ ପଥର ଖଞ୍ଜା ହୋଇଥିଲା। ମେହେନ୍ଦି ରାତିରେ ଭିନ୍ନ ଭିନ୍ନ ଅଗଣାମାନଙ୍କରେ ସଂଗୀତ ଆସର ଜମିଯାଇଥିଲା।

ବ୍ୟବସ୍ଥାର ଖର୍ଚ୍ଚ ମଧ୍ୟ ଅଧିକ। ସେଥିପାଇଁ ଜିନତ୍ ମହଲ ଦିଲ୍ଲୀର ଦେଣାଦାରମାନଙ୍କଠୁ ଅନେକ କରଜ ନେଲେ। ଯଦିଓ ସବୁ ଦେଣାଦାରମାନେ ଜାଣିଥିଲେ କି ପଇସା ଅସୁଲ ଅସମ୍ଭବ।

ଡିସେମ୍ବର ମାସରୁ ବ୍ରିଟିଶ ରେସିଡେଣ୍ଟ ଡାଏରୀରୁ ଜଣାଯାଉଥିଲା କି ଜିନତ୍ ମହଲ ତାଙ୍କ ହିଂଜଡା ସରଦାର ମେ ହବୁନ୍ ଖାଁଙ୍କ ଜରିଆରେ ବହୁତ ବେଶି ଟଙ୍କା ଧାର ନେଇ ସାରିଥିଲେ।

ଜମା ମସଜିଦଠାରୁ ବେଗମ ଖୁସୁରଙ୍କ ହାଭେଲୀ, ଫେଜ ବଜାରଠୁ ଦରିୟାଗଞ୍ଜ, ଆଉ ଝାଝାର ନବାବଙ୍କ କୋଠି ସବୁ ବେଶ୍ ସୁସଜ୍ଜିତ। ଗଳି ଗଳି ରାସ୍ତା ସବୁ ଆଲୋକ ମାଳାରେ ଆଲୋକିତ। ପ୍ରୋସେସନ ଯିବା ରାସ୍ତାଟା ମୋଗଲ ଢଙ୍ଗରେ ସଜ୍ଜିତ। ୧୫୦ ବର୍ଷର ରାଜନୈତିକ ଅବକ୍ଷୟ ସତ୍ତ୍ୱେ ଦିଲ୍ଲୀ ତା'ର ପୂର୍ବ ଔପନିବେଶିକ ଗୌରବ ଫେରିପାଇଥିଲା। କବି ମୀର ଲେଖିଥିଲେ। ରାସ୍ତା ସଜା ଦେଖାଯାଉ ଥିଲା ଏକ ଚିତ୍ରକାରର ଚିତ୍ର ଭଳି।

ଓ୍ବାକ୍ତଙ୍କର ବାହାଘରର ଦୁଇବର୍ଷ ପୂର୍ବରୁ "ଗାର୍ଡ଼େନ ଅଫ ପୋଏଟ୍ରି"ରେ ଦିଲ୍ଲୀର ୫୪୦ ଜଣ ଉର୍ଦ୍ଦୁକବି ଭାଗ ନେଇଥିଲେ। ସମ୍ରାଟ ନିଜେ ଓ ତାଙ୍କ ପରିବାରର ୫୦ ଜଣ ନାରୀକବିଙ୍କୁ ମିଶାଇ ଚାନ୍ଦନୀ ଚୌକରେ ଜଣେ ପାଣି ବିକାଳି, ପଂଜାବି କାଟରା "ଫରାସୁ ଜିଉ ବ୍ୟବସ୍ଥାୟୀ, ମୋଗଲ ସଂସ୍କାରକୁ ଆପଣାଇ ନେଇ ଥିବା କେତେ ଜଣ ମଲ୍ଲ ଯୋଦ୍ଧା, ଦରବାର ଗାୟିକା, ଆଉ ଭଣ୍ଡାରି ମଧ୍ୟ ଥିଲେ। ବିବାହ ଜନିତ କବିତା ଜକ୍ ଓ ଗାଲିବଙ୍କ ଦ୍ୱାରା ଆବୃତ୍ତି କରାଯାଉଥିଲା। ଓ୍ବାଲିଦାଦ୍ ଖାନ୍ ବାହାଘର ପାଇଁ ନାଚର ବି ବନ୍ଦୋବସ୍ତ କରିଥିଲେ। ପରେ ଏହା

ଉପରେ ଆଲୋଚନା ଅନେକ ଦିନ ଧରି ଚାଲିଥିବା ଓ ସ୍ମୃତିପଟରେ ଲାଗି ରହିଲା ଭଳି ଘଟଣାମାନ ଘଟିଥିଲା।

ଜଫର ଓ ଜନିତ୍ ଏ ପ୍ରକାର ଆୟୋଜନ କରିବାର ଅନେକ ଜୋର ଦେଇଥିଲେ। ଶାହାଜାହାଁଙ୍କ ଝିଅ ରୋଷେନାରା ବେଗମ ଖରାଦିନେ ଶୋଭାଯାତ୍ରା କରି କାଶ୍ମିର ଯାଉଥିଲେ। ସେଇଟା ପ୍ରାୟ ୨୦୦ ବର୍ଷ ତଳର ଘଟଣା। ତେବେ ଏ ଶୋଭାଯାତ୍ରା ସହିତ ତା'ର କେତେକ ପରିମାଣରେ ତୁଳନା କରାଯାଇପାରେ। ତା'ପରେ ପରେ ତ କାଶ୍ମୀର ସହ ମୋଗଲମାନଙ୍କର ସଂପର୍କ ଛିନ୍ନ ହୋଇଯାଇଥିଲା। ମୋଗଲ ସାମ୍ରାଜ୍ୟ ବିସ୍ତୃତି କାଶ୍ମୀର ପର୍ଯ୍ୟନ୍ତ ଥିଲା କିନ୍ତୁ ବର୍ତ୍ତମାନ? ଏତ ଲିଭିଲା ଦୀପର ଶେଷ ଦୀପ ଶିଖା। ସାହା ଆଲମର ରାଜ୍ୟ ବିସ୍ତୃତ ଅଟେ ଦିଲ୍ଲୀଠୁ ପାଲାମ ପର୍ଯ୍ୟନ୍ତ। ୧୭୩୯ରେ ଲାଲକିଲ୍ଲାରୁ ସବୁଠୁ ମୂଲ୍ୟବାନ ପଦାର୍ଥକୁ ପର୍ଶିୟାନ ଆକ୍ରମଣକାରୀ ନାଜିରସାହା ଲୁଟି ନେଲେ। ୧୭୮୮ରେ ଜଫରଙ୍କ ବାଲ୍ୟାବସ୍ଥାବେଳେ କାଦିର ଖାଁ ଦିଲ୍ଲୀ ଉପରେ ଅଧିକାର ପାତି ସାହ ଆଲାମକୁ ଅନ୍ଧ କଲେ ଓ ଆକବର ସାହାଙ୍କ ଉପରେ ନିଜର କ୍ଷମତା ବିସ୍ତାର କରି ତାଙ୍କର ମୂଲ୍ୟବାନ ଲାଇବ୍ରେରୀକୁ ଅବଧର ନବାବଙ୍କୁ ବିକି ଦେଲେ।

ତା'ପରେ ଜଣେ ଅନ୍ଧ ଶାସକ ଓ ଏକ ଧ୍ୱଂସପ୍ରାୟ ପ୍ରାସାଦକୁ ନେଇ ମୋଗଲ ସାମ୍ରାଜ୍ୟ ଚଳାଇଲେ।

ସାହା ଆଲାମଙ୍କ ମୃତ୍ୟୁପରେ ଜାଫର କେବଳ ମାତ୍ର ଶାସକ ହୋଇ ରହିଗଲେ। କାରଣ ଥମାସ ମେଟକାଫ, ସେତେବେଳକୁ ଦିଲ୍ଲୀର ବ୍ରିଟିଶ ରେସିଡେଣ୍ଟ ରହି ତାଙ୍କ ଉପରେ କଡ଼ା ନଜର ରଖିଥିଲେ। ନିଜ ଜମିର ରାଜସ୍ୱ ଆଦାୟ କରିବା ପାଇଁ ମଧ ତାଙ୍କୁ ରେସିଡେଣ୍ଟଙ୍କ ଅନୁମତି ନେବାର ଆବଶ୍ୟକ ଥିଲା। ରେସିଡେଣ୍ଟ ବିନା ଅନୁମତିରେ କୌଣସି ଦ୍ରବ୍ୟ ରେ କାହାରିକୁ ଦାନ ଦେଇପାରିବେ ନାହିଁ। ଅଧିକନ୍ତୁ କୌଣସି "ଉପାଧିର ପୋଷାକ" ମଧ କାହାରିକୁ ପିନ୍ଧାଇ ପାରିବେ ନାହିଁ। ପୁତ୍ର ଦୱାନ ବକ୍ତଙ୍କ ବାହାଘର ବେଳର କଥା। ରାଜା ଗୋଲକ ସିଂ କେତେକ ଉପହାର ଦୱାନଙ୍କ ପାଇଁ ଆଣିଥିଲେ। ପ୍ରତିଦାନ ସ୍ୱରୂପ ତାଙ୍କୁ ଏକ ଖିଲାତ, ଜଫର ଦେଲେ। ଉପସ୍ଥିତ ଥିଲେ ମେଟକାଫ। ଆଦେଶ ଦେଲେ କି ସେ ଦାନକୁ ଜଫରଙ୍କୁ ଫେରସ୍ତ କରିଦିଅନ୍ତୁ। କହିଲେ! ରାଜା ନିଜେ ବ୍ରିଟିଶର ପ୍ରଜା। ଖୋଲାଖୋଲି ଭାବରେ ବ୍ରିଟିଶର ଲୋକଙ୍କ ବିନା ଅନୁମତିରେ ଦାନ ଦେଇପାରିବେ ନାହିଁ।

ମନକୁ ବାଧିଲା ଜଫରଙ୍କର ଅପମାନିତ ହୋଇ ଜଫର ଲେଖିଲେ ଶାୟରୀ।

ସେ ଥିଲା ଏକ ଅଘଟଣ। ଥରେ କମ୍ପାନୀର ଭାରତୀୟ ସେନାଙ୍କ ମଧ୍ୟରୁ ଜଣକୁ ସମ୍ରାଟ ଜଫର ଆଶୀର୍ବାଦ ଦେଲେ। ଏହି ଘଟଣା ଉଗ୍ରରୂପ ଧାରଣ କଲା। ସିପାହୀ ବିଦ୍ରୋହ ପାଇଁ ଏହା ଜଫରଙ୍କ ବାର୍ତ୍ତା ବୋଲି ସନ୍ଦେହ କଲେ। ଅନ୍ୟାନ୍ୟ ଅନେକ କାରଣ ମଧ୍ୟ ଯୋଡ଼ି ହୋଇଯାଇଥିଲା। ଏ ଘଟଣା ଉଭୟ ପକ୍ଷଙ୍କୁ "ମୃତ୍ୟୁ ପର୍ଯ୍ୟନ୍ତ ଯୁଦ୍ଧ"ର ଡାକରା ଦେଲା। ଜଫରଙ୍କ ଦିଲ୍ଲୀର ଆଖି ଝଲସିଆ ରୂପ ଓ ୧୮୫୭ରେ ସିପାହୀ ବିଦ୍ରୋହର ବୃତ୍ତାନ୍ତ ଧ୍ୱଂସର ହତାଶିଆ ଚେହେରା ଭିତରେ ହିଁ ଜଫର ରହିଗଲେ ଏକ ମୂର୍ତ୍ତିମନ୍ତ ଚିତ୍ର।

ଯୁଗ ପ୍ରବର୍ତ୍ତକ ସମୟ। ବିଦ୍ରୋହର ଘଟଣାଚଳୀ, ଲାଲ କିଲ୍ଲାର ଦୁଃଖଦ ଚିତ୍ର, ଏ ସବୁର ଅନେକ ଅଭୂଲା ଚରିତ୍ର ଆଖି ଆଗରେ ଝଲସି ଯାଏ। ଇତିହାସର ପୃଷ୍ଠା ଓଲଟି ପଡ଼େ।

୧୮୫୭ ସିପାହୀ ବିଦ୍ରୋହର ଘଟଣାକୁ ଅନେକ ଭିନ୍ନ ଭିନ୍ନ ରୂପରେ ସଜାନ୍ତି। କୃଷକ ଆନ୍ଦୋଳନର ସହରୀ ବିପ୍ଳବ, ସ୍ୱାଧୀନତା ସଂଗ୍ରାମର ଅୟମାରମ୍ଭ ବୋଲି ଆଖ୍ୟା ଦିଅନ୍ତି। ସବୁ ଘଟଣା ସମାହାରର ଚିତ୍ର- ସିପାହୀ ବିଦ୍ରୋହ। ଜଫରଙ୍କର ୧୬ ଜଣ ପୁତ୍ର ଏ ବିଦ୍ରୋହର ଚକ ତଳେ ପେଷି ହୋଇଗଲେ।

"ଟାଇମ" ମାଗାଜିନର ପତ୍ରକାର ରସେଲ। ଏ ପତ୍ରକାରଙ୍କ ମତରେ ବିନାସର୍ତ୍ତରେ ସମ୍ରାଟଙ୍କୁ କବଜା କରାଗଲା। ବ୍ରିଟିଶମାନଙ୍କ ମତ ଥିଲା ସବୁ ଗଣ୍ଡଗୋଳର ସୂତ୍ରଧାର ହେଉଛନ୍ତି ଜଫର। ପ୍ରଦର୍ଶିତ ହେଲେ ଭାରତୀୟ ଜନତାଙ୍କ ଆଗରେ ଏକ ପିଞ୍ଜରାବଦ୍ଧ ପକ୍ଷୀ ଭଳି। ସତରେ କ'ଣ ସେ ଏ ସବୁ ବିରାଟ ଗଣ୍ଡଗୋଳର ମୂଳକାରଣ ? ତାଙ୍କ ମୁହଁରୁ ଅଭିଯୋଗର ଭାଷା କେହି ଶୁଣି ପାରିଲେ ନାହିଁ। ରାତିଦିନ ସେ କେବଳ ତଳକୁ ମୁହଁ ପୋତି ବସି ରହିଲେ। ବୃଦ୍ଧ ବୟସ, ଚକ୍ଷୁ ଶିଥିଳ ଆଉ ଅଲେଖା ଚାହାଣୀ। ସମୟ ସମୟରେ ଆବୃତ୍ତି କରୁଥାନ୍ତି ନିଜ କବିତା- ନିଜେ ବକ୍ତା ଆଉ ନିଜେ ଶ୍ରୋତା। ସାମ୍ରାଜ୍ୟ ପତନର ମୂକସାକ୍ଷୀ। ଅର୍ଥହୀନ, ସାମ୍ରାଜ୍ୟହୀନ, ସମ୍ବଳହୀନ ହେବାରେ ସେ ନିଜେ ଅନୁଭବି। ସେ କ'ଣ ସତରେ ଅକୃତଜ୍ଞ ?

ଗାଲିବଙ୍କ ଭାଷାରେ–"ମଦ ପିଆଲା ଆଉ ମଦଭାଣ୍ଡକୁ ଚୂରମାର କଲୁ

ଆମ ପାଇଁ ଏହାର ମୂଲ୍ୟ ବା କ'ଣ ?
ସ୍ୱର୍ଗରୁ ଝରି ଆସିଥିବା ବରଷାର ଧାରା
ପ୍ରତିବାଦ କରେ ନାଲି ମଦକୁ।

ଜିଲ୍ଲାର ତୁଳନା ନାହିଁ। ରୋମ, ଇସ୍ତାନବୁଲ, କାଇରୋ ସହର ସବୁ ଏହା ତୁଳନାରେ କିଛି ନୁହେଁ। କେବଳ ତୁଳନା ହୋଇପାରେ କନଷ୍ଟାଣ୍ଟିନୋପଲ ଓ କାନଟନ ମଧ୍ୟରେ।

କିନ୍ତୁ ବର୍ତ୍ତମାନ ଏହା ଏକ ଐତିହାସିକ ଖଣ୍ଡହର। କାଳର ସମୁଦ୍ରରେ ଭାସୁଥିବା ଏକ ଭଂଗା ଜାହାଜ। ଜଫରଙ୍କ ପରେ ଯେଉଁମାନେ ରାଜଗାଦୀରେ ବସିବେ ସେମାନେ "ସମ୍ରାଟ" ଉପାଧି ବଦଳରେ "ସାହେଜଦା" ଉପାଧିରେ ଭୂଷିତ ହେବେ ବୋଲି କୁହାଗଲା। ଏ ଉକ୍ତି ପ୍ରକାଶିତ ହେଲା। ଗୋଟିଏ ପାମ୍ପିଲେଟ ଆକାରରେ ରସାଲ-ଇ-ଜହାଦଙ୍କ ଦ୍ୱାରା। ବିଦ୍ରୋହ କଲେ ଧର୍ମ ବିରୋଧି କାର୍ଯ୍ୟକଳାପକୁ। "ଖଣ୍ଡା ଓ ଢାଲ" ଚିତ୍ର ଶିର୍ଷକ ଦେଇ ଏ ଲେଖା ପ୍ରକାଶିତ ହେଲା।

ପରିସିଭାଲ ସ୍ପିଅର ତାଙ୍କ ବହିରେ ଦିଲ୍ଲୀର ଲୋକସଂଖ୍ୟା ଉପରେ ଟିପ୍ପଣୀ ଦେଇଥିଲେ। ଲେଖିଥିଲେ ଔରଙ୍ଗଜେବଙ୍କ ଅମଳରେ ୫ ଲକ୍ଷ, ନାଦିର ସାହାଙ୍କ ଆକ୍ରମଣ ପରେ ୧ ଲକ୍ଷ। ଜର୍ମାନର ଜଣେ ଭ୍ରମଣକାରୀ ଭନ୍ ଅରଲିକ ୧୮୪୩ରେ ଦିଲ୍ଲୀ ଆସିଥିଲେ। ଲେଖିଥିଲେ ମୁସଲମାନଙ୍କ ସଂଖ୍ୟାରୁ ହିନ୍ଦୁଙ୍କ ସଂଖ୍ୟା ତିନିଗୁଣ ବେଶି।

ଜାଫର ତାଙ୍କ ହିନ୍ଦୁ ପ୍ରଜାଙ୍କୁ ରକ୍ଷା କରିବାର ଚେଷ୍ଟାରେ ଥିଲେ। ହିନ୍ଦୁ ମୁସଲମାନ ଇଣ୍ଡୋ ମୁସଲମଙ୍କ ପାଇଁ ତାଙ୍କର ସମର୍ଥନ ଥିଲା। ସୁଫି ନିଜାମୁଦ୍ଦିନଙ୍କୁ ଦର୍ଶନ କରିବା ପାଇଁ ଅନେକ ହିନ୍ଦୁ ମଧ୍ୟ ଆସନ୍ତି। ହୋଲି, ଦଶହରା ଉତ୍ସବରେ ମୁସଲିମମାନେ ହିନ୍ଦୁମାନଙ୍କୁ ଭେଟି ଦେଉଥିଲେ। ଯୋଗ ଦେଉଥିଲେ ରାମଲୀଳାରେ। ପର୍ଶିୟାନ ଭାଷାରେ କବିତା ମଧ୍ୟ ଲେଖୁଥିଲେ। ଥରେ ଜଫର ବାହାରକୁ ଯିବା ସମୟରେ ଜଣେ ହିନ୍ଦୁ ମୁସଲମାନ ଧର୍ମ ଗ୍ରହଣ କରିବା ପାଇଁ ଅପେକ୍ଷା କରିବା ଦେଖିଲେ। ଏହି ବିଷୟ ଜାଣି ସେ ଲୋକଟିକୁ ଧର୍ମାନ୍ତ କରଣ ନ କରିବା ପାଇଁ ପ୍ରବର୍ତ୍ତାଇଲେ।

"ଫୁଲବାଲୀ କି ଶାୟରି" ଓ "ପଙ୍ଖ ମେଳା" ପ୍ରଭୃତିରେ ଭାଗ ନେଉଥିଲେ। ଧର୍ମର ହୀନମନ୍ୟତାକୁ ଗ୍ରହଣ ନ କରିବାକୁ ଇଚ୍ଛା ସେଥିପାଇଁ ମନ୍ଦିର ଭିତରେ ପ୍ରବେଶ କରିପାରୁ ନଥିଲେ। ମୁଖ୍ୟ ଉଦ୍ଦେଶ୍ୟ ଥିଲା ମୋଗଲ ଦରବାର ପରିଚାଳନା, ସୁଫି ଧର୍ମ ରକ୍ଷା ଆଉ ଗଜଲ ଲେଖା।

୧୮୫୨ ବେଳକୁ ଦିଲ୍ଲୀରେ ଦୁଇଟି ମୁଖ୍ୟ ଖବର କାଗଜ ପ୍ରକାଶ ପାଉଥିଲା– ଦିଲ୍ଲୀ ଉର୍ଦ୍ଦୁ ଆକବର ଓ ଦିଲ୍ଲୀ ଗେଜେଟ। ଅଲଗା ଅଲଗା ଭାବରେ ଦୁଇ ଖବର କାଗଜରୁ ପଢ଼ିଲେ ମନେହେଉଥିଲା କି ଏକା ଖବରକୁ ଭିନ୍ନ ଭିନ୍ନ ମତରେ ପ୍ରକାଶ

କରାଯାଇଛି । "ଦିଲ୍ଲୀ ଉର୍ଦ୍ଦୁ ଆକବରର ସ୍ଥାନୀୟ ରାଜନୈତିକ ଓ ଧାର୍ମିକ ବାତାବରଣ ସଂକ୍ରାନ୍ତରେ ଲେଖୁଥିଲେ ଆଉ ପ୍ରାଧାନ୍ୟ ଦେଉଥିଲେ ଗୁଜବ ଖବରକୁ । ଉଦାହରଣ ସ୍ୱରୂପ ରାମଚନ୍ଦ୍ରଙ୍କ ଧର୍ମାନ୍ତକରଣ,ମହରମ ସମୟରେ ସିୟା-ସୁଫି ବିରୁଦ୍ଧାଚରଣ, ମୁଶାୟାରରେ ନୂଆ ଗଜଲ ପରିବେଷଣ, ଗାଲିବ ଓ ଜକ୍‌ଙ୍କର ମତାନ୍ତର, ଗାଲିବ ଜୁଆ ଖେଳ ପାଇଁ ଜେଲ ଯିବା ପ୍ରଭୃତି ଖବର ଛାପୁଥିଲେ । ଅପରପକ୍ଷରେ ''ଦିଲ୍ଲୀ-ଗେଜେଟ'' ପ୍ରାୟ ଘୋଡ଼ା ଦୌଡ଼ ପ୍ରତିଯୋଗୀତା ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ, କେବଳ ବ୍ରିଟିଶରମାନଙ୍କ ସଂକ୍ରାନ୍ତରେ ।

୧୮୫୨ ବେଳକୁ ସମ୍ରାଟ ଜଫର ଅନୁଭବ କଲେ ବି ମୁଜାହେଦିଙ୍କ ପ୍ରଭାବ ଆରମ୍ଭ ହୋଇଯାଇଛି ଭାରତରେ । ବ୍ରିଟିଶ ଓ ମୋଗଲ ଏକା ଜାଗାରେ ରହୁଥିଲେ ହେଁ ନିଜ ନିଜ ଭିତରେ ତାଙ୍କର ଦୂରତା ବଢ଼ି ଚାଲିଛି ।

ସେଇ ସମୟକୁ ସ୍କିନର ଦିଲ୍ଲୀରେ ଥିଲେ । ସେ କେବଳ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାର କରୁଥିଲେ ଓ ସେଣ୍ଟ ଜେମ୍‌ସ ଚର୍ଚ୍ଚ ତୋଳାଇ ଥିଲେ ।

ସ୍କିନରଙ୍କର ଅନେକ ଭାରତୀୟ ସୁନ୍ଦରୀ "ବିବି" ସବୁ ଥିଲେ । ଇଁ ଭାଁ ମସଜିଦ୍ ଓ ମନ୍ଦିର ମଧ ମରାମତି କରୁଥିଲେ । ଦିଲ୍ଲୀର ଶିକ୍ଷାବ୍ୟବସ୍ଥା ଅତି ଉଚ୍ଚଧରଣର ଥିଲା । ଯୁବକବି ହାଲିଙ୍କ ମତରେ ଗାଲିବ, ଜକ୍, ସାରି, ଅର୍ଜୁବା, ପରି ଅନେକ କବି, ବୁଦ୍ଧିଜିବୀ, ବିଶିଷ୍ଟ ବ୍ୟକ୍ତି ଦିଲ୍ଲୀରେ ଏକତ୍ରୀତ ହେଉଥିଲେ । ଏ ସବୁ ଦେଖି ଆକବର ଓ ଶାହାଜାହାଁଙ୍କ ସମୟରେ ଚିତ୍ର ମନେ ମନେ ଆଙ୍କି ହୋଇଯାଉଥିଲା ।

୬ଟି ଉଚ୍ଚ ଧରଣର ଶିକ୍ଷାନୁଷ୍ଠାନ ଥିଲା । ଏହା ବ୍ୟତିତ ୪ଟି ଛୋଟ ଧରଣର ଶିକ୍ଷାନୁଷ୍ଠାନ ମଧ ଥିଲା । ଅନେକ ପ୍ରକାଶକ, ଛାପାଖାନା ଆଉ ଅନେକ ୟୁନାନି ଡାକ୍ତର ସବୁ ଦିଲ୍ଲୀରେ ଥିଲେ । ୟୁନାନି ଡାକ୍ତରଙ୍କ ସଂଖ୍ୟା ପ୍ରାୟ ୧୩୦ ଖଣ୍ଡେ ହେବ । ପଶ୍ଚିମ ବିଜ୍ଞାନର କେତେକ ନୂଆ ଆବିଷ୍କାର ସଂକ୍ରାନ୍ତରେ ଆରବିକ ଓ ପାର୍ଶି ଭାଷାରେ ଅନୁବାଦ ମଧ ହୋଇସାରିଥିଲା । ଦିଲ୍ଲୀର କୌଣସି ଏକ ଶିକ୍ଷା ଅନୁଷ୍ଠାନରେ ଯୋଗ ଦେବେ ବୋଲି ହାଲି ତାଙ୍କ ବିବାହ-ଉତ୍ସବ ତ୍ୟାଗକରି ୫୩ ମାଇଲ ରାସ୍ତା ଚାଲି ଚାଲି ଦିଲ୍ଲୀକୁ ପଳାଇ ଆସିଲେ । ପରେ ତାଙ୍କ ପରିବାର ଲୋକେ ଖୋଜି ଖୋଜି ତାଙ୍କୁ ଦିଲ୍ଲୀରେ ପାଇ ଫେରାଇ ନେଇଥିଲେ ।

ଅନେକ ସାଧୁ, ସନ୍ଥ ଓ ଫକୀରଙ୍କର ଏଠାରେ ବସବାସ ଥିଲା । ଭିକ୍ଷୁ ସ୍ତ୍ରୀ ଲୋକମାନେ ଉପସ୍ଥିତ ଥିଲେ । ଜଣେ ସ୍ତ୍ରୀ ଲୋକର ଅସାଧାରଣ ଧୀ ଶକ୍ତି ଥିଲା-

କୋରାନରୁ ଫକ୍ତି ଉଦ୍ଧାର କରି ସେ ଲୋକଙ୍କୁ ଆଗତ ଭବିଷ୍ୟତ ବାଣୀ ଶୁଣାଉଥିଲେ ଏବଂ ତାହା ମଧ୍ୟ ସତ ହେଉଥିଲା। ସେ ସ୍ତ୍ରୀ ଲୋକଟି ଶାହାଜାଁବାଦର ପୁରୁଣା ଇଦ୍‌ଗାହରେ ରହୁଥିଲେ। ଦେଶର ବ୍ୟବସାୟୀମାନେ ମଧ୍ୟ ବ୍ୟବସାୟରେ ସନ୍ତୁଷ୍ଟ। ସାରା ଦେଶରେ ବିଭିନ୍ନ ରକମର ବେପାରୀ ଓ ଗ୍ରାହକଙ୍କ ମଧ୍ୟରେ ଅନେକ ଶାନ୍ତ। ଜୈନ ଓ ମାରୁଆଡ଼ି ପେଶାଦାରମାନେ କରଜ ଦେବାର ଚିନ୍ତାରେ ଥିଲେ। କରଜଦାରଙ୍କ ନାମ, ଠିକଣା ଓ ଦେଣା ପରିମାଣ ଲେଖି ଖାତାସବୁ ପୂରଣ ହୋଇଯାଉଥିଲା।

ସମ୍ରାଟ ଜଫରଙ୍କ ପୁତ୍ର ମିର୍ଜା ଜୱାନ ବକ୍ତଙ୍କ ବିଭାଘରରେ ଯେଉଁ କରଜ ରାଣୀ ସାହେବା ଆଣିଥିଲେ ଆଉ ରାଜପୁତ୍ର ମାନଙ୍କୁ କରଜ ଦେଇଥିବା ପରିମାଣ ଆଦାୟ କରିବା ଚିନ୍ତାରେ ଥିଲେ ଦେଣାଦାରମାନେ। କାର୍ଯ୍ୟରତ ଥିଲା ଚାନ୍ଦିନୀଚୌକ ଅଞ୍ଚଳ।

କିନ୍ତୁ ଦୁଇମାଇଲ ଦୂରରେ ଥିବା କାଣ୍ଟନମେଣ୍ଟରେ କାମର ତାଗିଦା କିଛି ନ ଥିଲା। ଏପରିକି ଥମାସ ମେଟକାଫଙ୍କ ହାତରେ ବି କିଛି କାମ ନଥିଲା। ସମ୍ରାଟ ଜଫରଙ୍କ ଦୈନିକ କାରବାର ସିଧା ସଳଖ ଧାରରେ ଚାଲିଥିଲା। ଅଧିକନ୍ତୁ କବିତା ଆବୃତିର ସଭା ବି। ସଂଧ୍ୟା ହେଲେ ମନ୍ଦିର, ମସଜିଦ, ଗୀର୍ଜାରେ ଲୋକ ଜମନ୍ତି। କାଣ୍ଟନମେଣ୍ଟରେ ଥିଓ ମେଟକାଫ ଘୋଡ଼ାରେ ଯିବା ଆସିବା କରନ୍ତି। ସାଙ୍ଗରେ କୁକୁର। ଦିଲ୍ଲୀ ଜନତା ଇଂରେଜମାନଙ୍କୁ ବିକେନ୍ଦ୍ରିକ ଜୀବ ବୋଲି ଭାବନ୍ତି। ଦିଲ୍ଲୀ ଅପେକ୍ଷା ମିରଟର ଜୀବନ ଯାତ୍ରା ସେମାନଙ୍କୁ ସୁହାଏ। ଥିଓ ମେଟକାଫଙ୍କ ବାସଭବନରେ ରାତି ଭୋଜନ ପରେ ରେକର୍ଡ଼ରେ ଗୀତ ଲଗାଇ ବ୍ରିଟିଶ ସ୍ତ୍ରୀ ଲୋକମାନଙ୍କ ସହିତ ନାଚରେ ବ୍ୟସ୍ତ ଥିଲେ।

ଏ ପାଖେ ଦିଲ୍ଲୀ ଜୀବନ୍ତ ହୋଇଉଠେ। ମଫସଲ ଅଞ୍ଚଳ ପିଲାଏ- ଜାଟ ଓ ଗୁର୍ଜରଙ୍କ ପିଲା ଦିଲ୍ଲୀରେ ଏକଜୁଟ ହୁଅନ୍ତି। ଜୁଆ ଖେଳର ଆଡ୍ଡା ଜମେ। ଘଣ୍ଟେୱାଲାର ଲଡୁ, କଫିହାଉସ ଗାଓ୍ୱା ଖାନାର ପରିସରରେ ବେଶ୍ ଆସର ଜମେ। ଅମିର ହାମିଦାଙ୍କ ଗପ ଶୁଣିବା ପାଇଁ ଜାମା ମସଜିଦ୍‌ରେ ଲୋକଙ୍କର ଭିଡ଼ ଲାଗେ।

ଜଫର ତାଙ୍କ ଖାଦ୍ୟରେ ଅଧିକ ଲଙ୍କା ଖାଇବାକୁ ଭଲପାନ୍ତି। ରାତ୍ରି ଭୋଜନ ପରେ ମଦର ବୋତଲ ଖୋଲାଯାଏ। ଜଫରଙ୍କ ପାଇଁ ହୁକା ପ୍ରସ୍ତୁତ ହୁଏ। ଆରମ୍ଭ ହୁଏ ଆମୋଦ ପ୍ରମୋଦ। ତନରାସ ଖାଁଙ୍କ ଗଜଲ, ସାରଙ୍ଗୀର ସ୍ୱର ସହ ପ୍ରାସାଦର ନାଚବାଲିଙ୍କ ପାଦ ଘୁଙ୍ଗୁରର ଶବ୍ଦ- ସବୁଠି ଆନନ୍ଦର ଲହରି।

ଅନ୍ଧ ହିମତ୍ ଖାଁ ଅନ୍ଧ ହେଲେ ମଧ୍ୟ ଜଣେ ସିଦ୍ଧ ସିତାର ବାଦକ। ଜଫରଙ୍କର ଅତି ପ୍ରିୟ। ଦ୍ରୁପଦ ରାଗ ବଜାଇବାରେ ସେ ଅଦ୍ୱିତୀୟ। ହୁଏତ ତାନ୍‌ସେନ ବି ତାଙ୍କ ସିତାର ବଜାଇ ବା ଶୁଣି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥାନ୍ତେ। ଚନ୍ଦ୍ରମା ରାତିରେ ଚେସ ଖେଳ ଜଫରଙ୍କ ପ୍ରିୟ। "ଖନାମ-ଗାୟିକାଙ୍କୁ" ମଧ୍ୟ ଡକାଯାଏ। ଏମାନେ ଶୋଇବା ଘରର ପରଦାପଟୁ ବାହାରନ୍ତି।

୧୮୪୭ରେ ୭୨ ବର୍ଷ ବୟସରେ ଜଫରଙ୍କ ଶେଷ ବିବାହ ହୋଇଥିଲା ମୀନାବାଇଙ୍କ ସହ। ପରେ ତାଙ୍କ ନାଁ ହେଲା "ଅଖତାର ମହଲ"। ଏ ମଜଲିସରେ ଭାଗ ନେବା ପାଇଁ ଆଉ ଗୋଟେ ପ୍ରଥା ଚଳି ଆସୁଥିଲା। ରାତିର ଏ ଉଚ୍ଚାଙ୍ଗ ସଙ୍ଗୀତ ମିଳନ ସହିତ ଆଦ୍-ବେଗମ ଏ ପ୍ରକାର ଆସର ଉଭା ଲଙ୍ଗଳା ହୋଇ ଆସନ୍ତି। ସେମାନେ କିନ୍ତୁ ନିଜକୁ ଏପରି ଭାବରେ ଆଙ୍କିଥାନ୍ତି ଯେ ସେମାନେ ଉଲଗ୍ନ ବୋଲି କେହି ଅନୁମାନ କରିପାରନ୍ତି ନାହିଁ। ଅବଶ୍ୟ ୧୮୫୨ ପରେ ଜକ୍ ଓ ଗାଲିବଙ୍କ ଉପସ୍ଥିତ ଯୋଗୁଁ ସେ ପ୍ରଥା ବନ୍ଦ ହୋଇଗଲା।। ବଦଳରେ ମୁଶାୟାରାମାନେ ଉପସ୍ଥିତ ରହି ଆନନ୍ଦ ଉପଭୋଗର ସୁଯୋଗ ନେଉଥିଲେ।

ଆଉ ଅନେକ ନାମଜାଦା କବି ଏ ପ୍ରକାର ମୁଶାୟାରରେ ଏକାଠି ହେଉଥିଲେ। ସମାବେଶରେ ଉର୍ଦ୍ଦୁଭାଷାର ଆଲୋକ ହଥରଲି ନାମକ ଜଣେ ନାମଜାଦା କବି ମଧ୍ୟ ସ୍ଥାନ ପାଉଥିଲେ। ଆଲୋକିତ ଅଗଣା ସାର ଡେଭିଡ୍ ଅକ୍ଟରଲୋନିଙ୍କ ବିଧବା ପତ୍ନୀ ମୁବାରକ ବେଗମ, ରାଜ ପ୍ରସାଦାର ଆଉ କେତେ କବି ରାଜଜେମାଙ୍କୁ ମିଶାଇ ପ୍ରାୟ ୪୦ ଜଣ ଖଣ୍ଡେ କବି ଏଥିରେ ଯୋଗ ଦେଉଥିଲେ।

୧୮୫୨ ବେଳକୁ ବ୍ରିଟିଶର ଓ ମୋଗଲମାନେ ଏକ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଗତି କରୁଥିଲେ। ଦୁଇ ପକ୍ଷ ନିଜ ନିଜ ଉପରେ ସମତା ରଖି ଗତି କରୁଥିଲେ। ରାଜଧାନୀର ଉତ୍ତରଦାୟୀ କିଏ ହେବ?

ଜିନତ ମହଲ ମିର୍ଜା ଫକ୍ରୁରଙ୍କୁ ଗ୍ରହଣ କରୁ ନ ଥିଲେ। ରେସିଡ଼େନ୍ସି ଓ ପ୍ରାସାଦ ଭିତରେ ଏକ ସାମୟିକ ଶାନ୍ତି ପ୍ରତିଷ୍ଠା ହୋଇଥିଲା।

କିନ୍ତୁ ୧୮୫୩ ସମୟକୁ ଅନେକଙ୍କର ମୃତ୍ୟୁ ହୋଇଯାଇଥିଲା। ସେଥିପାଇଁ ଏ ପ୍ରକାର ସମାଧାନରେ ବାଧା ଆସିଲା। ଯେଉଁ ଇଂରେଜ ଅଫିସରମାନେ ମିର୍ଜା ଫକ୍ରୁରୁଙ୍କ ପାଇଁ ରାଜିନାମାରେ ଦସ୍ତଖତ କରିଥିଲେ ସେମାନଙ୍କର ସନ୍ଦେହ ଜନକ ମୃତ୍ୟୁ ହୋଇ ସାରିଥିଲା। କେବଳ ବିଞ୍ଚିଥିଲେ ଥାମାସ୍ ମେଟକାଫ।

ଥମାସ୍ ମେଟକାଫଙ୍କୁ ମଧ ଧୀରେ ଧୀରେ ଜହର ଦେଇ ମାରିବା ପାଇଁ ଚେଷ୍ଟା ହେଉଥିଲା। କ୍ରିସମାସ ବେଳେ, ପର୍ବ ପାଳନ ବେଳେ, ସାରା ପରିବାର ଏକାଠି ହୋଇଥିଲେ। ତାଙ୍କ ଝିଅ ଏମିଲି ଓ ତା' ସ୍ୱାମୀଙ୍କୁ ଜଣାଇଲେ କି ମିର୍ଜା ଫକ୍ରୁରଙ୍କ ସହ ଗୁପ୍ତ ରାଜିନାମା ହୋଇଛି। ମେଟକାଫ ଓ ତାଙ୍କର ଦୁଇ ସାଥି ଏଲିଅଟ ଓ ଥମ୍ପସନଙ୍କର ହଜମ ଶକ୍ତି ହ୍ରାସ ପାଇବାରେ ଲାଗିଥିଲା।

ଥମାସ୍‌ଙ୍କ ପରିବାର ସିମିଲା ଯିବାକୁ ଆଗ୍ରହ ଦେଖାଇଲେ। କିନ୍ତୁ ମିସେସ ଥମାସଙ୍କର ମରିବାର ବର୍ଷେ ପୂରି ନଥିବାରୁ ଥମାସ ଯିବାକୁ ରାଜି ହେଲେ ନାହିଁ।

ଏଲିଅଟ ଓ ଥମ୍ପସନ ଦୁଇଜଣ ମୃତ୍ୟୁବରଣ କଲେ। କମ୍ପାନୀ ଏ ମୃତ୍ୟୁ ପାଇଁ ଦାୟୀ କଲା ଜିନତ୍ ମହଲଙ୍କୁ। ଥମାସ ମଧ ଶିକାର ହେଲେ। ମୋଗଲ ପରିବାରରୁ କମ୍ପାନୀର ଆଶା ତୁଟିଗଲା। ସଂପର୍କ ହେଲା ବିଷମୟ।

ଅଢ଼େଇ ବର୍ଷ ପରେ ମିର୍ଜା ଫକ୍ରୁ ମଧ ମୃତ୍ୟୁ ବରଣ କଲେ। ଥମାସଙ୍କ ମୃତ୍ୟୁପରେ ତାଙ୍କ ଜାଗାରେ ସାଇମନ ଫ୍ରେଜର ଆସିଲେ। ସଙ୍ଗୀତ ଆସରର ଆୟୋଜନ କଲେ ନିଜର ଆନନ୍ଦ ପାଇଁ। ଜେନିଂସ୍ ପହଞ୍ଚିଲେ ଭାରତରେ। ସେ ତାଙ୍କ ମିଶିନାରୀ କାମ ଜାରି ରଖିଲେ। ତାଙ୍କ ଝିଅ ଆନି ଓ ତା' ସାଙ୍ଗ ମିସ୍ କ୍ଲିଫୋର୍ଡ଼ ଦି'ଜଣ ମିଶି ଏ ସଙ୍ଗୀତ ଆସରର ଆୟୋଜନ କଲେ। ଆନିର ବିବାହ ସ୍ଥିର ହେଲା ଇଞ୍ଜିନିୟର ଥମ୍‌ସନ୍‌ଙ୍କ ସହ।

ରୋସନାରା ବାଗର ମୋଗଲ ବଗିଚାରେ ଥମସନ୍ ଜଫରଙ୍କ ସହିତ ଦେଖା କରିବାକୁ ଗଲେ। ଏ ସାକ୍ଷାତ ସମୟରେ ଜଫରଙ୍କ ସବୁ ବେଗମ, ରକ୍ଷିତା ମାନେ ଆପତ୍ତି ଉଠାଇଲେ। କିନ୍ତୁ ଜଫର ଗଲେ।

ମିର୍ଜା ଫକ୍ରୁଙ୍କର ମରିବାର ୨ ଦିନ ପୂର୍ବରୁ ଫ୍ରେଜର ଅବସର ନେଲେ। ଫ୍ରେଜର ଗଭର୍ଣ୍ଣର ଜେନେରାଲ ଲର୍ଡ଼ କେନିଂଙ୍କ ପାଖକୁ ଗୋଟିଏ ଚିଠି ଲେଖିଲେ କି ମିର୍ଜା ଫକ୍ରୁରଙ୍କ ବ୍ୟତିତ ଅନ୍ୟ କୌଣସି ରାଜପୁତ୍ରଙ୍କର ସମ୍ରାଟ ହେବାର ଯୋଗ୍ୟତା ନାହିଁ।

ଫକ୍ରୁରଙ୍କ ମୃତ୍ୟୁ ପରଦିନ ଫ୍ରେଜର ଶୋକ ପ୍ରକାଶ କରିବା ପାଇଁ ପ୍ରାସାଦକୁ ଯାଇଥିଲେ। ସମ୍ରାଟଙ୍କ ମୁହଁରେ ଶୋକର ଛାୟା ଦେଖିଲେ ନାହିଁ। ବରଂ ଗଭର୍ଣ୍ଣର ଜେନେରାଲଙ୍କୁ ଲେଖିଥିବା ଏକ ଚିଠି ସମ୍ରାଟଙ୍କ ପାଖରୁ ପାଇଲେ। ସେଥିରେ ସେ ଲେଖିଥିଲେ କି ମିର୍ଜା ଫକ୍ରୁଙ୍କୁ ମେହେରୋଲିର କୁତୁବ ସାହିବଙ୍କ

ସୁଫି ଷ୍ରାଇନ୍ ପାଖରେ କବର ଦିଆଯାଇଛି। ଆଉ ଲେଖିଥିଲେ କି ମିର୍ଜା ଜୱାନ ୱକ୍ତ ହେଉଛନ୍ତି ଏକମାତ୍ର ସନ୍ତାନ ଯେ ସମ୍ରାଟ ପଦ ପାଇଁ ଉପଯୁକ୍ତ ଗୁଣର ଅଧିକାରୀ ଆଉ ୱାକ୍ତଙ୍କର ସମ୍ରାଟ ହେବାରେ ମୋର ମଧ ମତ ଅଛି। ଫ୍ରେଜର କିନ୍ତୁ ଏ ପ୍ରସ୍ତାବରେ ରାଜି ନ ଥିଲେ। ତାଙ୍କ ମତରେ କୌଣସି ରାଜପୁତ୍ର ଏହାର ଯୋଗ୍ୟ ନୁହଁନ୍ତି। ଲର୍ଡ଼ କେନିଂ ଲର୍ଡ଼ ଡେଲହାଉସିଙ୍କ ନିକଟରୁ ୫ ମାସ ତଳେ ଗଭର୍ଣ୍ଣର ଜେନେରାଲ ପଦବୀ ଗ୍ରହଣ କରିଥିଲେ। ସମ୍ରାଟଙ୍କ ଗଭର୍ଣ୍ଣର ଜେନେରାଲ ଓ କମାଣ୍ଡର-ଇନ-ଚିଫଙ୍କୁ ଉପହାର ଦେବା ନିୟମକୁ ସେ ପ୍ରତ୍ୟାହାର କରିନେଲେ। ଅଧିକନ୍ତୁ କିଛି ଦିନପରେ ସମ୍ରାଟଙ୍କ ନାମ ଓ ଫଟ ଥିବା ମୁଦ୍ରା ପ୍ରଚଳନ ମଧ ବନ୍ଦ କରିଦେଲେ।

ବ୍ରିଟିଶ ଓ ମୋଗଲଙ୍କ ଭିତରେ ଏ ଯେଉଁ ଯୁଦ୍ଧ ଚାଲିଲା ଏହା ଯୁଦ୍ଧ କ୍ଷେତ୍ରରେ ନୁହେଁ। ସୈନ୍ୟସାମନ୍ତ ନେଇ ନୁହେଁ, ଖଣ୍ଡା ତଲୱାରର ନୁହେଁ। ଗୁଳି ଗୁଳା ତୋପ ବିନିମୟରେ ନୁହେଁ। ଏହା ଥିଲା ଖଳ ବୁଦ୍ଧିର ଖେଳ ଯାହାକୁ ନେଇ ବ୍ରିଟିଶ ସରକାର ଉପନିବେଶ ପ୍ରାର୍ଥୀ ହୋଇଥିଲେ। ପରିସମାପ୍ତି ଘଟିଲା ସାମ୍ରାଜ୍ୟ ଦଖଲରେ।

ଲର୍ଡ଼ କେନିଂ ନିଶ୍ଚିତ ଥିଲେ ଯେ ବର୍ତ୍ତମାନ ଭାରତରୁ ମୋଗଲ ଶାସନ ଲୋପ ହୋଇଯିବ ନିଶ୍ଚିତ। ସେ ଘୋଷଣା କଲେ କି ଉତ୍ତରାଧିକାରୀ ସୂତ୍ରରେ କୌଣସି ରାଜପୁତ୍ରଙ୍କ ନାମ ଚୁକ୍ତିନାମାରେ ଲେଖା ହେବନି।

ଶେଷ କରିବାକୁ ଚାହିଁଲେ ୩୦୦ ବର୍ଷର ମୋଗଲ ଶାସନ। ଏ ସିଦ୍ଧାନ୍ତ ବୋଧେ ଇଂରାଜମାନଙ୍କ ପାଇଁ ଠିକ୍ ନ ଥିଲା। ମାର୍ଚ୍ଚ ୧୮ ୧୮୮୭ ମିର୍ଜା ଫକ୍ରୁଙ୍କ ମୃତ୍ୟୁର ଆଠମାସ ପରେ ଗୋଟିଏ ଉଡ଼ା ଖବର ଶୁଣାଗଲା କି ଜମା ମସଜିଦ ପଛପାଖ କାନ୍ଥରେ ଖଣ୍ଡେ ଅସନା କାଗଜରେ କିଛି ଲେଖ ଓ ଖୋଲା ଖଣ୍ଡା ଥୁଆ ହୋଇଛି। ସେଥିରେ ଲେଖା ଥିଲା, ଇରାନର ସାହା ପର୍ଶିୟାରେ ବ୍ରିଟିଶର ମାନଙ୍କୁ ହରାଇ ସାରିଛନ୍ତି। ଆଉ ସେଇ ପର୍ଶିୟାନ ସେନା ଆଫଗାନ ସୀମାରେଖା ପାର ହୋଇ ହେରଟାରୁ ଦିଲ୍ଲୀ ଆସି ଏଠାରେ ଖ୍ରୀଷ୍ଟିୟାନ ମାନଙ୍କ ରାଜୁତି ଶେଷ କରିବେ।

ବହୁତ ସମୟ ଧରି ଲୋକମାନେ ସେ ଲେଖାକୁ ଦେଖୁଥିଲେ। ସେଇ ରାସ୍ତା ଦେଇ ଥିଓ ମେଟକାଫ ଯାଉଥିଲେ ଆଉ ଅପ୍ରାତ୍ୟାଶିତ ସମବେତ ଜନତାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଅନଇଲେ।

ଆଖିରେ ପଡ଼ିଲା ସେ ଲେଖା । ସାଙ୍ଗେ ସାଙ୍ଗେ ଚିରି ଫୋପାଡ଼ି ଦେଲେ । ଏ ଖବର ସିରାଜ-ଉଲ-ଆକବର ତାଙ୍କ ଖବର କାଗଜରେ ବିସ୍ତୃତ ଭାବରେ ଛପାଇଲେ । ଆଉ ଏକ ଖବର କାଗଜ "ନୁର-ଇ-ମାଘ"ରେ ବି ଖବର ପ୍ରକାଶିତ ହେଲା କି ରୁଷିଆର ସେନା ବା ପର୍ଶିୟାର ସେନା ଅଥବା ଦୁଇ ଦେଶର ମିଳିତ ସେନା ଭାରତକୁ ଖ୍ରୀଷ୍ଟିୟାନମାନଙ୍କ କବଳରୁ ମୁକ୍ତ କରିବାକୁ ଆସିବେ । ଏଇ ଖବରଟା ସେନା ବାହିନୀ ଭିତରେ ଖେଳିଗଲା ।

ଆଗରୁ ଅଶାନ୍ତି କୁହୁଳି ଥିଲା ବାହିନୀ ଭିତରେ । ଇଂରେଜମାନେ ପ୍ରସିଦ୍ଧ ରାଜ୍ୟ ଅବଧାକୁ ପୂର୍ବ ଦିଲ୍ଲୀ ସହିତ ମିଶାଇ ଦେଲେ । ଏହାର କାରଣ ସ୍ୱରୂପ ଜଣାଇଲେ ବି ମସ୍ତ ଓ୍ୱାଜିବ ଅଲିସାହା (ଅବଧର ନବାବ)ଙ୍କୁ କବି ଓ ନାଚବାଲିଙ୍କ ପ୍ରଭାବରୁ ମୁକ୍ତ କରିବା ପାଇଁ ଏ ପଦକ୍ଷେପ ନିଆଗଲା ।

ପରିଣତି ହେଲା କି ସେନାବାହିନୀର ଉଚ୍ଚଜାତୀୟ ହିନ୍ଦୁସୈନିକମାନଙ୍କ ଭିତରେ ସ୍ଥିରତା ରହିଲା ନାହିଁ । ରୁଷ୍ଟ ହେଲେ ସେନାବାହିନୀ ଭାବିଲେ ସେମାନେ ଦେଶକୁ ପରାଧିନତାର ପରିଧି ଭିତରକୁ ଠେଲି ଦେଉଛନ୍ତି । ଆଘାତ ପାଇଲା ଆତ୍ମଭିମାନ । ଏପରିକି ବ୍ରିଟିଶ ଅଫିସରମାନେ ମଧ କମ୍ପାନୀର ଇତିହାସରେ ଏସବୁ ଘଟିବ ବୋଲି ଆଶା କରି ନ ଥିଲେ ।

ରବର୍ଟ ଓ୍ୱାଡ଼ ସବୁ ଘଟଣା ସମୂହର ଚିତ୍ର ଦେଇ ଛଦ୍ମନାମରେ ଏକ ବହି ପ୍ରକାଶ କଲେ । "ଇଷ୍ଟ ଇଣ୍ଡିଆ କମ୍ପାନୀ ଦ୍ୱାରା ଅବଧକୁ ନଷ୍ଟ କରି ଦିଆଗଲା" ବୋଲି ନାଁ ରଖିଲେ । ଡେଲହାଉସିଙ୍କ ସମୟର କଥା । ୧୮୧୨ରୁ ୬୦ ଭିତରେ ଅନେକ ଛୋଟ ଛୋଟ ରାଜ୍ୟକୁ ମଧ ଅନ୍ୟାନ୍ୟ ବଡ଼ ରାଜ୍ୟ ସହିତ କମ୍ପାନୀ ଦ୍ୱାରା ମିଶାଇ ଦିଆଗଲା । ସେ ଆଉ ଏକ ଆଇନ ପ୍ରଣୟନ କରିଥିଲେ ଯାହା ଫଳରେ ପୋଷ୍ୟପୁତ୍ରମାନଙ୍କ କୌଣସି ରାଜଗାଦି ଅଳଙ୍କୃତ କରିବାର ଅଧିକାର ନାହିଁ । ସେତେବେଳକୁ ଜଫରଙ୍କ ବୟସ ୮୨ । ଅବଧର ମିଶ୍ରଣ, ମିର୍ଜା ଫକୁରଙ୍କ ମୃତ୍ୟୁ ସବୁ ଖବର ତାଙ୍କୁ ବିଚଳିତ କଲା । ଭାବିଲେ ଯାହା କିଛି ସେ ଉତ୍ତରାଧିକାରୀ ସୂତ୍ରରେ ପାଇଛନ୍ତି ତାକୁ ହିଁ ରକ୍ଷା କରିବେ ।

୧୮୪୩ ବେଳକୁ ଜଫର ନିଜେ ରାଣୀ ଭିକ୍ଟୋରିୟାଙ୍କ ପାଖକୁ ଚିଠି ଲେଖିଥିଲେ । ଡେଲହାଉସିଙ୍କ ସହିତ ତାଙ୍କ ଚିଠିର ଆଦାନ ପ୍ରଦାନ ଥିଲା । ଅନ୍ୟାନ୍ୟ ବିଷୟ ଛଡ଼ା ଚିଠିରେ ଲେଖିଥିଲେ କି ତାଙ୍କ ଅନ୍ତେ ଜିନତ୍ ମହଲ

ଓ ତାଙ୍କ ପୁତ୍ର ମିର୍ଜା ଜୱାନ ୱାକ୍ତ ଯେପରି କୌଣସି ଅସୁବିଧା ନ ଭୋଗନ୍ତି। ଉତ୍ତରରେ ଡେଲହାଉସି ଲେଖିଥିଲେ କି ଯେଉଁ ଗ୍ରାଣ୍ଟ ବର୍ତ୍ତମାନ ବେଗମ ଓ ତାଙ୍କ ପୁଅକୁ ଦିଆଯାଉଛି, ତା' ମଧ୍ୟ ସମ୍ରାଟଙ୍କ ଅନ୍ତେ ସେମାନଙ୍କୁ ନ ମିଳିପାରେ। ଏ ଖବରରେ କେବଳ ସମ୍ରାଟ ନୁହଁନ୍ତି ସାରା ପ୍ରାସାଦର ଅନ୍ତେବାସୀ ଆଉ ଦିଲ୍ଲୀର ଜନସାଧାରଣ ଆପଦ ଗଣିଲେ। ଆଘାତ ପାଇଲେ କବି ଗାଲିବ ମଧ୍ୟ ଅବଧର ନବାବଙ୍କ ପାଖରୁ ସେ କିଛି ଟଙ୍କା ପେନ୍‌ସନ୍ ଆକାରରେ ପାଉଥିଲେ। ତା' ଛଡ଼ା ବୁଦ୍ଧିଜୀବୀ ଚିନ୍ତାଧାରାରେ ଅବଧର ମିଶ୍ରଣକୁ ବିରୋଧ କରାଯାଉଥିଲା। ମିର୍ଜା ଫକ୍ରୁ ମଧ୍ୟ ତାଙ୍କୁ ଟ.୧୦୦ ଭତ୍ତା ଦେଉଥିଲେ। ଟଙ୍କା ନ ପାଇବା ଫଳରେ ତାଙ୍କର ଚଳିବା ପାଇଁ ଅସୁବିଧା ହେଲା।

ସେହି ସମୟକୁ ଦିଲ୍ଲୀ କଲେଜରେ ପ୍ରଫେସର ପଦବୀ ଖାଲିଥିଲା। ଅସୁବିଧା ପୂରଣ କରିବା ପାଇଁ ସେ ଦିଲ୍ଲୀ କଲେଜର ପଦବୀ ପାଇଁ ଦରଖାସ୍ତ କଲେ। ସାକ୍ଷାତକାର ପାଇଁ ଆମନ୍ତ୍ରିତ ହେଲେ। ସାକ୍ଷାତକାର ପାଇଁ ଗଲେ ପାଲିଙ୍କିରେ। ଆଶା କରିଥିଲେ ସେକ୍ରେଟେରୀ ମିଷ୍ଟର ଥର୍ମସନ ତାଙ୍କ ପାଛୋଟି ନେବାକୁ ଆସିବେ। ବହୁତ ସମୟ ଅପେକ୍ଷା କଲେ। ପରେ ଥମ୍ପସନ ତାଙ୍କୁ ଜଣାଇଲେ କି ରାଜଦରବାରରେ ଏ ପ୍ରକାର ସ୍ୱାଗତ ସମ୍ଭବ। କିନ୍ତୁ ଏ କ୍ଷେତ୍ରରେ ଗାଲିବ ନିଜେ ଜଣେ ପ୍ରାର୍ଥୀ। ଆଉ ଏ ପ୍ରକାର ସ୍ୱାଗତ ଆଶା କରିବା ବୃଥା। ପାଲଟା ଉତ୍ତରରେ ଗାଲିବ କହିଲେ। "ରାଜଦରବାରରେ ମୁଁ ଯେଉଁ ସମ୍ମାନ ପାଉଛି, ସେ ସମ୍ମାନରୁ ଅଧିକ ପାଇବାକୁ ଆଶା ରଖି ଏଠାକୁ ଆସିଥିଲି କିନ୍ତୁ ତା' ଠାରୁ କିଛି କମ୍ ନୁହେଁ। ଥମ୍ପସନ କହିଲେ, ମୁଁ ଆଇନରେ ବନ୍ଧା।"

ସାକ୍ଷାତ ନ କରି ଫେରି ଆସିଲେ ଗାଲିବ। ୧୮୩୨ରେ ଜଫରଙ୍କ ପୁଅ ୱକ୍ତଙ୍କ ବାହାଘରର ତିନିମାସ ପୂର୍ବରୁ ଦିଲ୍ଲୀ ଜନତାଙ୍କୁ ପାଦ୍ରୀ ଜେନିଂସ୍ ଧର୍ମରେ ଦିକ୍ଷୀତ କରାଇବା ପାଇଁ ଦୃଢ଼ପ୍ରତିଜ୍ଞ ଥିଲେ। ବଳ ପ୍ରୟୋଗ କରି ହେଲେ ବି।

ମୌଲବି ମହମ୍ମଦ ବକର "ଦିଲ୍ଲୀ ଉର୍ଦ୍ଦୁ ଆକବର" ପତ୍ରିକାରେ ଏ ବିଷୟ ପ୍ରକାଶ କରିଥିଲେ।

୧୮୪୦-୫୦ ବେଳକୁ ବ୍ରିଟିଶରମାନେ କେବଳ ଯେ ଭାରତ ଉପରେ ଶାସନ ଚାହୁଁଥିଲେ ତା' ନୁହେଁ ଧର୍ମାନ୍ତକରଣ ପାଇଁ ମଧ୍ୟ ପ୍ରାଣପଣେ ଚେଷ୍ଟା

କରୁଥିଲେ। କମ୍ପାନୀର କଲିକତାଠାରେ ଥିବା ମିଶନାରୀ ମିଷ୍ଟର ହରଓ୍ୱାଡ଼ ଦିଲ୍ଲୀର ମିଶନାରୀଙ୍କୁ ପରାମର୍ଶ ଦେଇଥିଲେକି ଧର୍ମାନ୍ତିକରଣ ବଜାୟ ରଖିବବାକୁ।

୧୮୩୨ ଅଗଷ୍ଟ ବେଳକୁ ଖାଦ୍ୟ ଶସ୍ୟର ଘୋର ଅଭାବ ଦେଖାଦେଲା। ଫଳରେ ଭୋକିଲା ସିପାହୀ ଓ ଜିହାଦିମାନେ ଦିଲ୍ଲୀ ଛାଡ଼ି ପଳାଇଗଲେ। ହଡ଼ସନ ଏକ ଚିଠି ପାଇଲେ। ଖବର ଥିଲା, ଜଫର ହତାଶ, ବିଚ୍ଛିନ୍ନ ଆଉ ମୁକ। ଏପରିକି ସିପାହୀମାନେ ଛାଡ଼ି ଚାଲିଯିବାରେ ମଧ୍ୟ ସେ କୌଣସି ପ୍ରତିରୋଧ କରୁନାହାନ୍ତି। ନିଜକୁ କେଉଁଥିରେ ସାମିଲ କରୁନାହାନ୍ତି। ଆଗଦିନ ଦୁଇଶହ ତିଲଙ୍ଗାନା ଘୋଡ଼ା ସବାର ଯିବା ପାଇଁ ଉଦ୍ୟମ ହେଲେ। ଏ ଖବର ପାଇ ଜଣେ କେହି ବିପ୍ଳବୀ ସେମାନଙ୍କୁ ଅଟକାଉ ଖବର ଦେଲେ ଦୁର୍ଗକୁ। ତାଙ୍କୁ ଅଟକାଇବା ପାଇଁ ଜଫର କୌଣସି ଚେଷ୍ଟା ବି କଲେନି।

ଖାଦ୍ୟ ବିନା ହାହାକାର ପଡ଼ିଗଲା। ଲୋକ ଖାଦ୍ୟ ନ ପାଇ ଘର ଭିତରେ ପଡ଼ି ରହିଲେ।

ଜଫର କିନ୍ତୁ ନିଶ୍ଚଳ, ନୀରବ।

ଅନେକ ମୌଲବୀ, ବ୍ରିଟିଶ ସ୍ତ୍ରୀ ଲୋକଙ୍କୁ ବିବାହ କଲେ। ଏଇ ସ୍ତ୍ରୀ ଲୋକମାନେ ଇସଲାମ ଧର୍ମ ଗ୍ରହଣ କରିଥିଲେ। ଦରବାରରେ ଆରବିକ ଭାଷାରେ New Testament ଲେଖାହେଲା। ଏ ବିଷୟ ନେଇ ଜେନିଂସ୍ ଖୁସି ଥିଲେ। ଆଉ ଲୋକଙ୍କୁ ଅନୁରୋଧ କଲେ କି ଏ ଅନୁବାଦିତ ପୁସ୍ତକକୁ ସମସ୍ତେ ପଢ଼ନ୍ତୁ।

ଆଙ୍ଗ୍ଲୋ ମୋଗଲ ପରିବାର- ଦିଲ୍ଲୀର ଜଣେ ଉଲମା ଭାଷାକାର ଉଇଲିୟମ ଫ୍ରେଜରଙ୍କୁ ସପ୍ତାହରେ ଦୁଇଥର ପର୍ଶିୟାନ ଓ ଆରବିକ ଭାଷା ପଢ଼ାଉଥିଲେ। ଫ୍ରେଜର ହିନ୍ଦୁସ୍ଥାନୀ ବେଶ ପୋଷାକ ପିନ୍ଧୁଥିଲେ ଓ ନିଶ କଟାଉଥିଲେ। ପର୍ଶିୟାନ ରାଜାଙ୍କ ପରି ଅନେକ ସନ୍ତାନର ଜନକ ମଧ୍ୟ ଥିଲେ। ଆଇନ ଅନୁସାରେ ୬/୭ ଜଣଙ୍କୁ ବିବାହ କରିଥିଲେ। ଅବଦୁଲ ଅଜିଦ୍ ତାଙ୍କର ମୁସଲମାନି ଚାଲିଚଳଣକୁ ପସନ୍ଦ କରୁଥିଲେ। କବି ଗାଲିବଙ୍କ ସହିତ ମଧ୍ୟ ତାଙ୍କର ଆନ୍ତରିକତା ଥିଲା।

ଫ୍ରେଜରଙ୍କ ଉପରିସ୍ଥ ଅଫିସର ସାରା ଡେଭିଡ଼ ଅକଟର ଲେନିଙ୍କର ମଧ୍ୟ ହୁକା ଓ ନାଚବାଲିଙ୍କୁ ଉପଭୋଗ କରିବାର ଆଗ୍ରହ ଥିଲା ପ୍ରବଳ। ତାଙ୍କର ୧୩ଟି ସ୍ତ୍ରୀ ଥିଲେ। ତାଙ୍କ ମଧ୍ୟରୁ ପୁନାର ଜଣେ ନାଚବାଲି ଅତି ଘନିଷ୍ଠ ଥିଲେ। ସେ ଥିଲେ ବ୍ରାହ୍ମଣ କନ୍ୟା, ମୁସଲମାନ ଧର୍ମ ଗ୍ରହଣ କରିଥିଲେ। ଫ୍ରେଜରଙ୍କ ପଦୋନ୍ନତି ପାଇଁ

ଆକ୍ଟରଲୋନିଙ୍କ ଉପରେ ତାଙ୍କର ଅନେକ ପ୍ରଭାବ ଥିଲା। ନାଁ ଥିଲା ମୁବାରକ-ଉଲ-ନିଶା-ବେଗମ। ନିଜ ପିଲାମାନଙ୍କୁ ମଧ୍ୟ ସେ ମୁସଲିମ ଢଙ୍ଗରେ ବଢ଼ାଇବାକୁ ଚାହିଁଥିଲେ। ମକ୍କାତୀର୍ଥ ଦର୍ଶନପାଇଁ ସେ ସବୁ ବନ୍ଦୋବସ୍ତ କରିଥିଲେ। ଏ ପ୍ରକାର ଦୁଇ ସଭ୍ୟତାର ମିଳନ ବେଳେ ବେଳେ ଦ୍ୱନ୍ଦ୍ୱାତ୍ମକ।

ଗାର୍ଡ଼ନର କାମ୍ବେର ବେଗମଙ୍କୁ ବିବାହ କରିଥିଲେ। ଆଉ ତାଙ୍କ ପୁଅ ଜଫରଙ୍କ ଜଣେ ଭଉଣୀଙ୍କୁ ବିବାହ କରିଥିଲେ। ଆରମ୍ଭ କଲେ ଆଙ୍ଗ୍ଲୋ-ମୋଗଲ ପରିବାର। ୧୮୨୦ରେ ସେ ତାଙ୍କ ନିଜ ସାମ୍ରାଜ୍ୟର ଜଣେ ସଦସ୍ୟଙ୍କ ସହିତ ବେଗମ ସୋମ୍ରୁଙ୍କୁ ବିବାହ କରାଇବାରେ ସାହାଯ୍ୟ କରିଥିଲେ। ବେଗମ ସୋମ୍ରୁ ପରିବାରର ଜଣେ ସଦସ୍ୟଙ୍କ ମୃତ୍ୟୁ ବେଳକୁ ମୁସଲିମ କାଇଦାରେ ଚାଳିଶ ଦିନ ଧରି ଶୋକାନୁଷ୍ଠାନର ଆୟୋଜନ କରିଥିଲେ।

ବେଗମ ଖୁସ୍ରୁ ଜଣେ କାଶ୍ମୀର ନାଚବାଲି। ତାଙ୍କର ସବୁଠୁ ନାମାଜାଦା ବ୍ୟାଣ୍ଡ ଥିଲା। ସେ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରି ଦୁଇଜଣ ଇଉରୋପୀୟ ବ୍ୟବସାୟୀଙ୍କ ବିବାହ କରିଥିଲେ। ଜଣଙ୍କ ପାଖରୁ ମିରଟର ସାରଧାନରେ କିଛି ଜମି ପାଇଥିଲେ।

ଜେମସ୍ ହେଉଛନ୍ତି ଉଇଲିୟମଙ୍କ ବଡ଼ଭାଇ। ନାଚବାଲି, ବ୍ୟାଣ୍ଡବାଲା ଜେମ୍‌ସଙ୍କ ରାତିଭୋଜନରେ ସାମିଲ ହୋଇ ଇଂରେଜ ଗୀତ ଗାଇ "God save the king ଗାଉଥିଲେ। ପର୍ଶିୟାନ ଓ ହିନ୍ଦୁସ୍ଥାନୀ ଗୀତ ମଧ୍ୟ ଆବୃତ୍ତି କରୁଥିଲେ।

ବେଗମ ସୁମରୁ ୧୭୫୧ ରେ ଜନ୍ମଗ୍ରହଣ କରିଥିଲେ। ନାଁ ଥିଲା ଫରଜାନା-ଦେବନ୍ନ-ନିସା" ଜର୍ମାନୀ ବ୍ୟବସାୟୀଙ୍କୁ ବିବାହ କରି ବେଗମ ସୋମ୍ରୁ ହୋଇଥିଲେ। ମୋଗଲ ସମ୍ରାଟ ରେନି ହାରଡ଼ଟଙ୍କୁ ଉତ୍ତରଦିଲ୍ଲୀର ଏକ Estate ଦେଇଥିଲେ। ସେଇଟାହିଁ ସାରଧାନା। ବେଗମ ସୋମ୍ରୁ ସେଇ ସାରଧାନାରେ ନିଜ ରାଜଧାନୀ ବସାଇଲେ। ମୋଗଲ ନୋବେଲ, ଫ୍ରାନ୍ସ ଓ ଇଉରୋପୀୟାନ ବ୍ୟବସାୟୀଙ୍କୁ ନେଇ ଏକ ରାଜ୍ୟ ଗଠନ କଲେ। ଏମାନେ ସମସ୍ତେ ମୁସଲିମ ଧର୍ମ ଗ୍ରହଣ କରିଥିଲେ।

ସାରଧାନାରେ ଏକ କାଥେଡ୍ରାଲ ନିର୍ମାଣ ପାଇଁ ପୋପ୍‌ଙ୍କୁ ଅନୁରୋଧ କଲେ। କିନ୍ତୁ ପୋପ୍‌ଙ୍କଠାରୁ ସାହାଯ୍ୟ ପାଇବା ଆଗରୁ ସେ ମୋଗଲ ଶିଳ୍ପ ଚାତୁରୀ ଦେଇ ନିର୍ମାଣ କଲେ କାଥେଡ୍ରାଲ। ସାରଧାନାରେ ହିନ୍ଦୁ-ମୁସଲମାନଙ୍କ ପର୍ବ ପର୍ବାଣି ମଧ୍ୟ ପାଳନ କରାଯାଏ। ଫଳରେ ସାରଧାନାର ଲେଖକମାନେ ଉର୍ଦ୍ଦୁ ଭାଷାରେ ପ୍ରତିବର୍ଷୀୟ

ଲାଭ କରିଥିଲେ। ଅଫିସରମାନଙ୍କ ମଧ୍ୟରୁ ତିନିଜଣ ବଡ଼ ଉର୍ଦ୍ଦୁଲେଖକ ଭାବରେ ପରିଗଣିତ ହୋଇଥିଲେ। ଏ ଜାଗାକୁ ପରେ ବ୍ରିଟିଶରମାନେ ଅଧିକାର କରିନେଲେ। ବ୍ରିଟିଶରମାନେ ଜମିଜମା ସଂକ୍ରାନ୍ତିୟ ସ୍ଥିରକରଣ ଫଳରେ ଅନେକ ମନ୍ଦିର, ମସଜିଦ୍, ସୁଫିଧର୍ମର ପୂଜା ସ୍କୁଲ ଓ କଲେଜ ସବୁକୁ ବାହାନା ଦେଖାଇ ନିଜର ଏଣ୍ଡାମେଣ୍ଟ ଆଇନ ବଳରେ ନିଜ ଅକ୍ତିଆରକୁ ନେଇଗଲେ। କେତେକ ଜମି ମିଶନାରୀମାନଙ୍କୁ ମଧ୍ୟ ଦେଇ ଦେଲେ।

ଫ୍ରେଜର, ଗାର୍ଡ଼ନର ଓ ଅକ୍ଟର ଲୋନିକ ଭଳି ଅତ୍ୟାଚାରୀ ଲୋକମାନଙ୍କର ଧର୍ମର ଗର୍ବ ପାଇଁ ଭାରତୀୟ ଓ ବ୍ରିଟିଶରମାନଙ୍କ ଭିତରେ ପ୍ରତ୍ୟେକ ସଂପର୍କକୁ ଆଘାତ କଲା। ସେମାନେ ଭାବିଲେ କି ଅର୍ଥନୈତିକ, ରାଜନୈତିକ, ଶିଳ୍ପ ବିଦ୍ୟା କ୍ଷେତ୍ରରେ ସେମାନଙ୍କର ଭାରତରୁ କିଛି ଶିଖିବାର ନାହିଁ। ତା'ଛଡ଼ା ୧୮୪୯ରେ ଶିଖ୍ମାନଙ୍କୁ ଜୟ କରିବା ପରେ ସେମାନେ ଦକ୍ଷିଣ ଏସିଆର 'ମାଷ୍ଟର' ହୋଇଗଲେ ବୋଲି ଭାବିଲେ।

ତା' ପୂର୍ବରୁ ବଙ୍ଗଳାରେ ସିରାଜୁଉଦ୍ଦିନ ୧୭୫୭, ୧୭୬୧ରେ ଫ୍ରାନ୍ସ ୧୭୧୯ରେ ଟିପୁ ସୁଲତାନ ଓ ମରହଟ୍ଟମାନଙ୍କୁ ୧୮୦୩ରେ ଓ ୧୮୧୯ ରେ ଜୟ କରିସାରିଥିଲେ। ଏହି ଗର୍ବ ଯୋଗୁଁ ସେମାନଙ୍କର ପତନ ଆରମ୍ଭ ହେଲା। ୧୮୫୨ ଜୁଲାଇରେ ଜଫରଙ୍କ ପୁଅ ଦଓ୍ୱାନ ଓ୍ୱକ୍ତଙ୍କର ବିବାହର ଚାରିମାସପରେ ଜେନିଂସ୍ ଦୁଇଜଣ ବିଶିଷ୍ଟ ହିନ୍ଦୁଙ୍କୁ ଧର୍ମାନ୍ତକରଣ କରିବାରେ ସୁଯୋଗ ପାଇଲେ। ଜଣେ ଜଫରଙ୍କ ଘରୋଇ ଡାକ୍ତର ଚମନଲାଲ ଓ ଆଉଜଣେ ଜଫରଙ୍କ ସାଙ୍ଗ ରାମଚନ୍ଦ୍ର। ଏ ଦୁଇଜଣଙ୍କର ଧର୍ମାନ୍ତକରଣ ପରେ ବହୁତ ବଡ଼ ଉତ୍ସବର ଆୟୋଜନ କରିଥିଲେ। ସାଙ୍ଗେ ସାଙ୍ଗେ କୌଣସି ପ୍ରତିବାଦର ସ୍ୱର ଜଣା ଯାଇ ନ ଥିଲେ ମଧ୍ୟ ଏହାର ଫଳାଫଳ ପରେ ଜଣାପଡ଼ିଥିଲା। ଠିକ୍ ପରେ ପରେ ଉଚ୍ଚ ଖାନଦାନର ପିଲାଙ୍କୁ ଦିଲ୍ଲୀ କଲେଜରୁ ନାମ କଟାଇ ଦେଲେ। ଉଲମା ଗ୍ରୁପର ଲୋକେ ଖ୍ରୀଷ୍ଟିୟାନ ମାଷ୍ଟ୍ରଙ୍କ ବିରୁଦ୍ଧରେ ଚିନ୍ତା କରିବାକୁ ଆରମ୍ଭ କଲେ। ସାହ ଓ୍ୱାଲଓ୍ୱାଲିଆ ଓ ତାଙ୍କ ପୁଅମାନେ ମଧ୍ୟ ଏହାକୁ ବିରୋଧ କଲେ। କୋରନକୁ ଜନତାଙ୍କ ବୁଝିବା ନିମନ୍ତେ ପର୍ଶିୟାନ ଓ ଉର୍ଦ୍ଦୁ ଭାଷାରେ ଅନୁବାଦ କରିବାକୁ ଲାଗିଲେ। ଓ୍ୱାଇଓ୍ୱାଲିଆ ମୋଗଲମାନଙ୍କୁ ଭଲ ପାଉ ନ ଥିଲେ। କାରଣ ମୋଗଲମାନେ ହିନ୍ଦୁ ରମଣୀଙ୍କୁ ବିବାହ କରୁଥିଲେ। ଜଫରଙ୍କ

ଜଣେ ମାତା ମଧ୍ୟ ରାଜପୁତ ରମଣୀ ଥିଲେ। ଫଳରେ ହିନ୍ଦୁ ଭାବନା ଓ ପରମ୍ପରା ଆସ୍ତେ ଆସ୍ତେ ହାରେମରୁ ପ୍ରାସାଦକୁ ଯାଉଥିଲା।

ଜଫର ନିଜେ ଜଣେ ସୁଫି ପିର। ଏହାର ବିରୋଧ ଉଲମାମାନେ କରୁଥିଲେ। ଜଣେ ସୁଫି ମାଷ୍ଟର ଓ ସମ୍ରାଟ ଭାବରେ ତାଙ୍କର ଐଶ୍ୱରିକ ଶକ୍ତି ମଧ୍ୟ ଥିଲା। ସେ ନିଜେ ଓ ଅନ୍ୟମାନେ ମଧ୍ୟ ଏକଥା ବିଶ୍ୱାସ କରୁଥିଲେ। ମନ୍ତ୍ରପାଠ, ତାବିଜ, ତନ୍ତ୍ର ଏଥିରେ ମଧ୍ୟ ବିଶ୍ୱାସ ଥିଲା। ତାଙ୍କ କବିତା ମଧ୍ୟ ଉଚ୍ଚ କୋଟୀର। ତାଙ୍କ ସଭାର କବି ଗାଲିବ ମଧ୍ୟ ଧାର୍ମିକ କବିତା ଲେଖୁଥିଲେ ହେଁ ମୁସଲିମ୍ ଧର୍ମ ଗ୍ରନ୍ଥର ବିରୋଧ କରୁଥିଲେ।

ଜଫର ନିଜ ସୈନ୍ୟ, ପରିବାର ଓ ସାଥିମାନଙ୍କୁ ଧରି ସହର ଛାଡ଼ି ପଳେଇବାର ବନ୍ଦୋବସ୍ତ କରୁଥିଲେ। ଏ ବିଷୟ ହଡ଼ସନ୍ ଜାଣିପାରି ୨୧ ସେପ୍ଟେମ୍ବରରେ ଜଫରଙ୍କୁ ଗିରଫ କଲେ। ମାତ୍ର ୫୦ ଜଣ ସୈନ୍ୟ ଧରି ହଡ଼ସନ ମୋଗଲସେନା ସହ ଜଫରଙ୍କୁ ସାମନା କଲେ। କେହି ସାହାଯ୍ୟ ପାଇଁ ଆଗେଇ ଆସି ପାରିଲେ ନାହିଁ। ତହିଁ ପରଦିନ ତିନିରାଜପୁତ୍ରଙ୍କୁ ଗିରଫ କରି ହଡ଼ସନ ନିଜର ସୈନ୍ୟ ଦେଇ ସେମାନଙ୍କୁ ଦୁର୍ଗକୁ ପଠାଇଦେଲେ। ଏଣେ ସମ୍ରାଟଙ୍କ ଠାରୁ ହତିଆର ସଂଧାନ ନେବା ଉଦ୍ଦେଶ୍ୟରେ ତାଙ୍କ ନିଜ ଅକ୍ତିଆରରେ ରଖିଲେ। ହତଆର ସବୁ ହାତକୁ ନେବା ପରେ ସେ କିଲ୍ଲା ଆଡ଼କୁ ଅଗ୍ରସର ହେଲେ। ଦେଖିଲେ ବାଟରେ ରାଜପୁତ୍ରମାନଙ୍କୁ ମୋଗଲମାନେ ଘେରି ରହିଛନ୍ତି। ବ୍ରିଟିଶ ସେନା ହାତରୁ କାଳେ ମୋଗଲମାନେ ରାଜପୁତ୍ରମାନଙ୍କୁ ଛାଡ଼ାଇ ନେବେ ହଡ଼ସନ ସେହିଠାରେହିଁ ରାଜପୁତ୍ର ମାନଙ୍କୁ ହତ୍ୟାକଲେ। ହତ୍ୟାପରେ ସେମାନଙ୍କର ମୁଣ୍ଡ ବିହୀନ ଶରୀରକୁ କୋତବାଲି ଚରତରା ଉପରେ ଟଙ୍ଗାଇ ଦେଲେ। ଆଉ କଟା ମୁଣ୍ଡ ସବୁ ଥାଳିରେ ସଜାଇ ସମ୍ରାଟଙ୍କ ପାଖକୁ ପାଠାଇ ଦେଲେ।

ତାଜମହଲ ବେଗମ, ଜଫରଙ୍କ ପ୍ରଥମ ସ୍ତ୍ରୀ ଜଣେ ନାଚବାଲିର ଝିଅ। ୧୮୩୭ ମସିହାରେ ଜଫରଙ୍କ ରାଜଗାଦି ଅଳଙ୍କୃତ କରିବା ସମାରୋହରେ ତାଙ୍କ ପାଖେ ରହିଥିଲେ। ୧୮୪୦ରେ ଜିନତ୍ ମହଲଙ୍କୁ ବିବାହ କରିବାପରେ ତାଙ୍କଠାରୁ ଜଫରଙ୍କ ରାଜଧାନୀର ସବୁ କ୍ଷମତା ଚାଲିଯାଇଥିଲା। ୧୮୫୭ ପୂର୍ବରୁ ତାଙ୍କୁ ବନ୍ଦୀ କରାଯାଇଥିଲା। ଆରୋପ ଥିଲା କି ଜଫରଙ୍କ ପୁତୁରା ମିର୍ଜା କାମାରନଙ୍କ ସହିତ ତାଙ୍କର ଅବୈଧ ସଂପର୍କ ଥିଲା।

ପରିବାରର ଅନ୍ୟ ସଦସ୍ୟଗଣ:-

ପ୍ରଥମପୁତ୍ର - ମିର୍ଜା ଦାରାଓ୍ବକ୍ତ - ୧୮୪୯ରେ କୁରାକାନ୍ତ ହୋଇ ମୃତ୍ୟୁ ବରଣ କରିଥିଲେ।

ଦ୍ୱିତୀୟ ପୁତ୍ର - ମିର୍ଜା ଫକ୍ରୁର ଯାହାକୁ ବ୍ରିଟିଶରମାନେ ରାଜଗାଦି ଅଳଙ୍କୃତ କରିବା ଯୋଗ୍ୟ ବୋଲି ଭାବୁଥିଲେ। ସେ ହଇଜାରେ ମରିଗଲେ କିନ୍ତୁ ତାଙ୍କୁ ବିଷଦେଇ ମରିଯାଇଥିବାର ଅନୁମାନ ହେଲା।

ତୃତୀୟ ପୁତ୍ର ମିର୍ଜା ମୋଗଲ- ଜଣେ ସୟଦାନୀଙ୍କ ପୁତ୍ର "କିଲାଦାର ପଦବୀରେ ସମ୍ମାନିତ ହୋଇଥିଲେ କିନ୍ତୁ ୧୮୫୭ ମେ " ୧୨ ତାରିଖ ପରେ ସେ ପ୍ରଧାନ ବିଦ୍ରୋହୀ ବୋଲି ଗଣା ହୋଇଥିଲେ।

ମିର୍ଜା ଖିଜିର ସୁଲତାନ- ନବମ ସନ୍ତାନ। ୧୮୫୭ ବେଳକୁ ତେଇଶି ବର୍ଷ ବୟସରେ ବଦଳି କି ସରାଇ ଯୁଦ୍ଧରୁ ସେ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିଥିଲେ। ସେ ଥିଲେ ଅବୈଧ ସନ୍ତାନ। ମିର୍ଜା ଆବୁ ବେକର ମିର୍ଜା ଫକ୍ରୁରଙ୍କ ପୁଅ। ଜଫରଙ୍କ ନାତି।

ଅନ୍ୟାନ୍ୟ ତୁଙ୍ଗ ବ୍ୟକ୍ତି-

ମୁନସୀ ଜୀବନ ଲାଲ- ଥମାସ ମେଟକାଫଙ୍କ ପାଖଲୋକ। ବିଦ୍ରୋହ ସଂକ୍ରାନ୍ତରେ ମେଟକାଫଙ୍କୁ ସବୁ ତଥ୍ୟ ଯୋଗାଇ ଥିଲେ।

ମୁଫ୍ତି ସାଦ୍ରୁଦିନ ଖାଁ (ଅର୍ଜୁଦା)-ଜାଫର ଓ ଗାଲିବଙ୍କ ବଂଧୁ। ବ୍ରିଟିଶ ଓ ମୋଗଲ ସହ ସିନ୍ଧସ୍ଥାପନାର ଏକ ସୂତ୍ରଧାର। ୬୦ ବର୍ଷ ଧରି ମଧ ସ୍ଥି ହିସାବରେ କାମ କରିଛନ୍ତି। ଇଦ ସମୟରେ ଅଗଷ୍ଟ ପଡ଼ିଲା ୧୮୫୭ରେ ଗୋ ହତ୍ୟା ସଂକ୍ରାନ୍ତରେ ଗଣ୍ଡଗୋଳର ସୂତ୍ରପାତ ହୋଇଥିଲା। ତାକୁ ଶାନ୍ତ କରେଇବାରେ ସେ ଥିଲେ ଆଗୁଆ।

ମୁନି ଉଦ୍ଦିନ ହୁରେନ ଖାଁ- ପାହାଡ଼ଗଞ୍ଜର ଥାନାଦାର। ବିଦ୍ରୋହ ବେଳେ ମେଟକାଫଙ୍କ ଜୀବନ ବଂଚେଇବାରେ ଆଗ୍ରହ ଥିଲେ। ବିଦ୍ରୋହର ସବିଶେଷ ବିବରଣୀ ଉର୍ଦ୍ଦୁରେ ଲେଖିଥିଲେ।

ସରଭଲ-ଭଲ-ମୁଲ୍କ- କନିଷ୍ଠ ମୋଗଲ ନୋବେଲ। ବିଦ୍ରୋହ ସମୟକୁ ମାତ୍ର ୧୨ ବର୍ଷ। ତାଙ୍କ ଭାଇ ଜିହାଦୀରେ ଯୋଗ ଦେଲେ। ବାପା ପରିବାର ବର୍ଗ ସହ ହଇଦ୍ରାବାଦ ଚାଲିଗଲେ। "My life" ନାମକ ଏକ ପୁସ୍ତକରେ ସେ ଏ ବିଦ୍ରୋହର ବିଷଦ୍ ବିବରଣୀ ଲେଖିଯାଉଛନ୍ତି।

## ଦିଲ୍ଲୀ ଘରାନା–

''ଯେଉଁଠି ଯମୁନାର ଧାରା ନାହିଁ, ସେଠି ମସଦିଜ ବି ନଥାଏ ହେ ମହାମନ ମୋ' ଗୁହାରି ଶୁଣ, ମୁଁ ସେଠିକୁ ଯିବାକୁ ଇଛା କରେନି।'' ବାହାଦୂର ସାହା ନିଜେ ମିୟା ଆଚପାଲଙ୍କ ଶିଷ୍ୟ। ସେଥିପାଇଁ ସମ୍ରାଟ ଓ ତନରାସ ଖାଁ ଗୁରୁଭାଇ। ବସନ୍ତ ଋତୁରେ ଜଫର ମେହୋରେଲିର ତାଜ୍ ମହଲକୁ ଯାଇଁ ସଂଗୀତ ପରିବେଷଣ କରନ୍ତି। ଯଦି ସମ୍ରାଟ ରଙ୍ଗିଲାଙ୍କ ଦରବାର ଖିଆଲି ଗାୟକୀର ବୋଲି ଧରାଯାଏ ତେବେ ଜଫରଙ୍କ ଦରବାର ଅନ୍ୟାନ୍ୟ ଗୀତସହ ଗଜଲର କବିତା ଓ ଗୀତର ଛନ୍ଦ ଗଜଲ ବୋଲି ଧରାଯିବ। ଏହା ବି ଉର୍ଦ୍ଦୁ ଓ ପର୍ଶିୟାନ ଦୁଇଟି ଭାଷାରେ। ସେଥିପାଇଁ ଦିଲ୍ଲୀଘରାନା କେବଳ ଏକମାତ୍ର ଘରାନା ଯେଉଁଥିରେ ଗଜଲକୁ ମଧ୍ୟ ସାମିଲ କରାଯାଇଛି। ଜଫର ନିଜେକେବଳ ଗୀତିକାର ନୁହଁନ୍ତି, ବରଂ ଅନେକ କ୍ଷେତ୍ରରେ ସ୍ୱର ସଂଯୋଜନା ମଧ୍ୟ କରିଛନ୍ତି। ଉଦାହରଣ ସ୍ୱରୂପ ରାଗ ଖମଜ-ବାହାର। ସକଲ-ବନ-ଗଗନ ତାଙ୍କର ସଂଯୋଜନା– ଦଶମ ଶତାବ୍ଦୀ ବେଳକୁ ଅନେକ ଦୋହାଁ ଲେଖାଯାଇଥିଲା ଯେଉଁଠି ଅନେକ ଭାଷାର ସମିଶ୍ରମ (ପଞ୍ଜାବି, ସରାଇକି, ଗୁଜରାଟି, ରାଜସ୍ଥାନୀ, ଖଡ଼ିବୋଲି ଓ ବ୍ରଜଭାଷା)

ଉଦାହରଣ– ଭୁଲ୍ଲା ହୁଆ ଯୋ ମାରୟା, ବାହିନୀ ମାହିରାକାନ୍ତା
ଲାଜ ଜାନେଜ ଚୋଭିନ ସି ଆହୋ ଜୟଭାଗା ଘର ଓ୍ୱନ୍ତା॥

ଅର୍ଥ– ହେ ଭଉଣୀ, ଏହା ବହୁତ ଭଲ କି ଆମର କାନ୍ତ ଯୁଦ୍ଧକ୍ଷେତ୍ରରେ ମରିଛନ୍ତି, ନହେଲେ ମତେ କେତେ ଅସରନ୍ତି ଲଜ୍ଜା ଦେଇଥାନ୍ତେ ଯଦି ସେଠୁ ଘରକୁ ଫେରିଆସିଥାନ୍ତେ।

ଭାଷା ବଞ୍ଚେ ଆଉ ବୃଦ୍ଧିପାଏ ଯେତେବେଳ ପର୍ଯ୍ୟନ୍ତ ସମାଜର ବଦଳା ଆବଶ୍ୟକତା ପ୍ରକାଶ କରିବାପାଇଁ ଭିନ୍ନ ମୋଡ଼ ନିଏ। ନିଜର ଜାତିଗତ ବୋଲିର ଭାବପ୍ରକାଶପାଇଁ ଅନ୍ୟ ଭାଷାର ଶବ୍ଦ, ବାକ୍ୟଶୈଳୀକୁ ନିଜର କରିଦିଏ। ସଂସ୍କୃତ, ଭାଷା ଯେତେବେଳ ନିଜକୁ ଅନ୍ୟଭାଷା ଓ ସଂସ୍କୃତି ସହିତ ସାମିଲ କରି ନିଜର ଗୁରୁତ୍ୱ ନ ବଢ଼ାଇଛି ସେ ସଭ୍ୟତା କାଳର କରାଳକବଳରେ ମିଳାଇଯାଇଛି। ଉତ୍ତର ଭାରତରେ ଏକ ବୋଲି ଅଛି, ''କୋଶ କୋଶ ପରେ ଭାଷା ବଦଳେ, ଆଉପ୍ରତ୍ୟେକ ଚାରିକୋଶରେ ପାଣିର ସୁଆନ ବଦଳେ। କେଉଁଠି କେମିତି ଦଶକୋଶରେ ଭାଷା ବଦଳେ ୫ ୬ କୋଶଭିତରେ ପାଣିର ସୁଆଦ ବଦଳେ। ଜନପଦ ଅନୁସାରେ ତାହାହିଁ ଉତ୍କୃଷ୍ଟ ଭାଷା।

# ସିପାହୀ- ବିଦ୍ରୋହ

୧୮୫୨ରେ ଇଦ୍‌ପର୍ବ ପାଳନରେ ବାହାଦୂର ସାହା ଜଫର ଗୋ ହତ୍ୟା ବନ୍ଦ କରି ଓଟ ଓ ଛେଳିର ହତ୍ୟା ପାଇଁ ଆଦେଶ ଦେଇଥିଲେ। କିନ୍ତୁ ୧୮୫୩ରେ ଥମାସ୍ ମେଟକାଫ ଇଦ୍ ପର୍ବରେ ଗୋ ହତ୍ୟାପାଇଁ ଆଦେଶ ଦେଲେ। ଜଫର ଓ ହାକିମ ହାସାନୁଦ୍ଦୁଲା ଏ ଆଦେଶରେ ଖୁସି ନ ଥିଲେ।

୧୮୫୭ ପୂର୍ବରୁ ଦିଲ୍ଲୀର ଶେଷ କୋତୱାଲ ଥିଲେ ଗଙ୍ଗାଧର ନେହୁରୁ - ମୋତିଲାଲ ନେହେରୁଙ୍କ ବାପା। ୧୮୩୭ର ଆଇନବଳରେ ଚୌକିଦାରୀ ଟାକ୍ସ ନାଗରିକ ପଞ୍ଚାୟତଙ୍କୁ ନ ଦେଇ ବକ୍ସିଙ୍କୁ ଦିଆଗଲା। ଦାବୀ ହେଲା କି ଜଣେ ଇଉରୋପୀୟାନ କୋତୟାଲ ନିଯୁକ୍ତି କରାଯାଉ। ସେତେବେଳେକୁ ଦିଲ୍ଲୀର ଲୋକସଂଖ୍ୟା ବହୁତ ବେଶି। ଦିଲ୍ଲୀର ଅଭ୍ୟାନ୍ତରୀଣ ଶାସନ ବ୍ରିଟିଶ ହାତରେ। "ଦିଲ୍ଲୀ ଗେଜେଟ" ପତ୍ରିକାର ପରିଚାଳନା ମଧ୍ଯ ସେମାନଙ୍କ ହାତରେ।

୧୮୦୬ରେ ମୃତ୍ୟୁ ହେଲା ସାହା ଆଲାମ IIଙ୍କର। ୧୮୫୨ ବେଳକୁ ବାହାଦୂର ସାହା ଜଫର ବେମାର ପଡ଼ିଲେ। ଭୟ ଥିଲା ଏ ଜନଗହଳି ସହରରେ ସମ୍ରାଟଙ୍କ ମୃତ୍ୟୁ ଖବର ସେମାନଙ୍କର ଆସନ ଟଳମଟଳ କରି ଦେଇପାରେ। ସେଥିପାଇଁ ଦିଲ୍ଲୀ ସହରର ଟ୍ରୁପ୍ କମେଇ ପାରିବେ ନାହିଁ।

୧୮୨୮ ସେ ସବୁ ଇଉରୋପୀୟ ଟ୍ରୁପଙ୍କୁ ସହରରୁ ବାହାର କରି ନିଆଯାଇ କେବଳ ଭାରତୀୟ ଟ୍ରୁପଙ୍କୁ ସହର ଭିତରେ ମୁତୟନ କରାଗଲା। ଶସ୍ତ୍ରାଗାର ମଧ୍ଯ ମାଗାଜିନଙ୍କୁ ଉଠାଇ ନିଆଗଲା।

୧୮୫୧ ପ୍ରଧାନ ଶସ୍ତ୍ରାଗାର ନଦୀକୂଳକୁ ନିଆଗଲା। ବ୍ରିଟିଶ ଅଫିସରମାନେ ବାରମ୍ବାର କହିଚାଲିଲେ କି ସେମାନେ ପ୍ରାସାଦକୁ ଅକ୍ତିଆର କରିବେ। ତା' ପୂର୍ବରୁ ୧୮୪୮ରେ ଥମାସ ମେଟକାଫ୍ ପ୍ରସ୍ତାବ ଦେଲେ କି ସମ୍ରାଟଙ୍କୁ କୁତବ ଅଞ୍ଚଳକୁ ସ୍ଥାନାନ୍ତରିତ କରାଯାଉ। ବାର୍ଲ୍ସ ନାପିୟାର ଫତେପୁର ସିକ୍ରିକୁ ହାତକୁ ନେବା ପାଇଁ ପ୍ରସ୍ତାବ ଦେଲେ। ମେଟାକାଫଙ୍କ ପ୍ରସ୍ତାବକୁ ଡେଲହାଉସି ମଧ୍ଯ ସମର୍ଥନ କଲେ।

ଦିଲ୍ଲୀ ବ୍ରିଟିଶ ରେସିଡ଼େଣ୍ଟଙ୍କ କ୍ଷମତା ଅଧିକ ଓ କାମ ମଧ୍ଯ ଅଧିକ। ଅନ୍ୟ ଜାଗାରେ ରେସିଡ଼େଣ୍ଟମାନଙ୍କର କେବଳ କୂଟନୈତିକ ସଂପର୍କଟା କାମ। ୧୮୧୪

ବେଳକୁ ମେଟ୍‌କାଫ ଏ ସଂକ୍ରାନ୍ତରେ ଅଭିଯୋଗ କରିଥିଲେ। ସେଥିପାଇଁ ୧୮୧୯ରେ ଅକ୍ଟରଲୋନି ମେଟକାଫଙ୍କ ଜାଗାରେ ଆସିଲେ ଆଉ ସେ ସିଭିଲ କମିଶନରଙ୍କ ସାହାଯ୍ୟ ନେଇ ପାରିବେ ବୋଲି ନିର୍ଦ୍ଦେଶ ହେଲା।

ଜମିଜମା ସଂକ୍ରାନ୍ତ ଆଇନ ବଳରେ କାଶ୍ମିର ଗେଟ ଆଡ଼କୁ ଯେତେ ଜମିସବୁ ଅତି ସହଜରେ ମୋଗଲମାନେ ଇଂରେଜଙ୍କୁ ହସ୍ତାନ୍ତର କରିଦେଲେ। ଅକ୍ଟର ଲୋନି ଚାରିମାଇଲ ଆଗକୁ ଉତ୍ତର ଦିଗକୁ ମୁବାରକ ବାଗ ପାଇଁ ଯୋଜନା କଲେ। ୧୮୩୯ରେ ମୁବାରକ-ଉନ-ନିଶା ନାମରେ ଜଣେ ବେଗମ ୧୮୦ ବିଘା ଜମି ଦାବି କଲେ। ତାଙ୍କୁ ମୋଟେ ୪୨ ବିଘା ଜମି ଦିଆଗଲା। ଏପରି ଅଦଲ ବଦଳ ଅନେକ କରାହେଲା।

କେତେକ ଇଂରେଜ ଲୋକ ନିଜ ନିଜର ବଙ୍ଗଳା ତିଆରି କରିନେଲେ। ୧୮୪୫ ବେଳକୁ ସେଇ ପାଖାପାଖି ଗୋଟେ କେନାଲ, ଶସ୍ତ୍ରାଗାର, ଚର୍ଚ୍ଚ, କଲେଜ ଓ ପ୍ରିଣ୍ଟିଂ ପ୍ରେସ। କାଶ୍ମୀର ଗେଟର ଦକ୍ଷିଣ ଦିଗକୁ ଯାଯାବର ଟ୍ରୁର୍କମାନ ସୁଫିଧର୍ମ ଗ୍ରହଣ କରି ଏଇଠି ତାଙ୍କ ଆଶ୍ରମ ଖୋଲିଲେ। ୧୯୪୭ ପରେ ପଂଜାବିମାନେ ଏ ଜାଗାକୁ ଆସି ବସବାସ ଆରମ୍ଭ କଲେ, ଆଉ ସେ ଗେଟର ନାଁ ରଖିଲେ ଟ୍ରୁର୍କମ୍ୟାନ ଗେଟ। କାଳକ୍ରମେରେ ଜାଗାର ନାମକରଣ ହୋଇଗଲା। ଟ୍ରୁକ୍‌ମ୍ୟାନ ଗେଟ।

ମେ' ୧୦ ତାରିଖ ୧୮୫୭। ମିରଟର ସୈନ୍ୟ ଇଂରେଜ ଅଫିସରଙ୍କୁ ମାରିଦେଲେ। ଆରମ୍ଭ ହେଲା ବିଦ୍ରୋହ ଇଷ୍ଟ ଇଣ୍ଡିଆ କମ୍ପାନୀର ଅତ୍ୟାଚାର ବିରୁଦ୍ଧରେ। ଏ ଆନ୍ଦୋଳନ ଉଗ୍ର ରୂପ ଧାରଣ କଲା। ପ୍ରତ୍ୟେକ ସୈନ୍ୟଙ୍କୁ ଆଦେଶ ହେଲା କମ୍ପାନୀ ତରଫରୁ - ସେମାନେ ନିଜ ମୁହଁରେ ବନ୍ଧୁକର କାରତୁ ସବୁକୁ କାଟିବା ପାଇଁ। ସିପାହୀମାନେ ପ୍ରତିବାଦ କଲେ। ପ୍ରାୟ ୫୦ ଜଣ ସିପାହୀ ଏହାର ବିରୁଦ୍ଧାଚରଣ କଲେ। କାରଣ କାରତୁରେ ଗାଈ ଓ ଘୁଷୁରିଙ୍କ ଚର୍ବି ଲଗାଯାଇଥାଏ। ଏ ଖବର ସୈନ୍ୟମାନଙ୍କ ମଧ୍ୟରେ ଖେଳେଇ ହୋଇଗଲା। ବିଶ୍ୱାସ କଲେ କି ଏ ଆଦେଶ ସେମାନଙ୍କ ଜାତି ଓ ଧର୍ମ ଉପରେ ଏକ କୁଠାରଘାତ। ଉତ୍ତ୍ୟକ୍ତ ହେଲେ ସିପାହୀ।

ଦିଲ୍ଲୀ ଥିଲା ଶାନ୍ତ। ସାଧାରଣ ଜୀବନ ଯାତ୍ରା ସ୍ୱଚ୍ଛଳ। ହଠାତ୍ ଖବର ମିଳିଲା କି ମିରଟର ସେନାବାହିନୀ ଦିଲ୍ଲୀ ଅଭିମୁଖେ ମାଡ଼ି ଆସୁଛନ୍ତି। ଦଳେ ଯମୁନା ନଦୀର କିସ୍ତି ପୋଲ ଭାଙ୍ଗିଛନ୍ତି। ଚୌକି ମଧ୍ୟ ଉଡାର ଦେଇଛନ୍ତି। ଅନ୍ୟ ଉପାୟ ନ ଦେଖି ଦିଲ୍ଲୀର ଗେଟ ବନ୍ଦ କରିଦିଆଯାଉଛି। ମେଟକାଫ ଥାନ୍ତି ମାଜିଷ୍ଟ୍ରେଟ।

ବିଦ୍ରୋହୀମାନେ ଛାଉଣି ଦିଗକୁ ଗତି କଲେ ମାତ୍ର ଗୋଟେ ବି ଇଂରେଜ ସୈନ୍ୟଙ୍କୁ ପାଇଲେ ନାହିଁ। ବ୍ରିଗେଡ଼ିୟର ଗ୍ରେଭିଜ ସେମାନଙ୍କୁ ବନ୍ଦ କରିବା ପାଇଁ ପ୍ରୟତ୍ନ କଲେ। ଯେଉଁ ସିଭିଲ ଅଫିସରମାନେ ରାଜଘାଟ ରାସ୍ତା ଦେଇ ସହର ଭିତରେ ପଶିସାରିଥିଲେ ସେମାନେ ବୁଝାମଣା ପାଇଁ ପ୍ରସ୍ତୁତ ନ ଥିଲେ। ଗଣ୍ଡଗୋଳ ଆରମ୍ଭ ହୋଇସାରିଥିଲା। ଇଂରେଜମାନେ ଲାହୋର ଦରଜା ଆଡ଼କୁ ମୁହାଁଇଲେ। ମେଟକାଫ ଜାଗାଛାଡ଼ି ପଳାଇଗଲେ। ଅନେକ ଜଖମ ମଧ୍ୟ ହେଲେ। ଘର ଭିତରକୁ ପଶି ପାଦ୍ରୀ ଜେନିଂ, ତାଙ୍କ ଝିଅ ଓ ଅନ୍ୟ ଏକ ମହିଳାଙ୍କୁ ହାଣିଦେଲେ। ଆରପଟେ କାଶ୍ମୀର ଗେଟ ପାଖରେ ଯେଉଁ ଇଂରେଜମାନେ ବସବାସ କରୁଥିଲେ ସେମାନଙ୍କୁ ମଧ୍ୟ ସଫା କରିଦେଲେ।

ସକାଳ ସମୟ ନଟା। ଛାଉଣି ଓ ସିଭିଲ ଲାଇନ ଶାନ୍ତ ଥିଲା। ଅଳ୍ପ କେତେକ ସୈନ୍ୟ ଆତଯାତ କରୁଥିଲେ। ବିଦ୍ରୋହୀମାନଙ୍କୁ ବନ୍ଦ କରିବା ପାଇଁ କୌଣସି ବ୍ୟବସ୍ଥା ମଧ୍ୟ ନଥିଲା। ଦରିଆଗଞ୍ଜରେ ଯେଉଁ ଇଂରେଜମାନେ ରହିଥିଲେ ସମସ୍ତଙ୍କୁ ମାରି ଦିଆଗଲା। ଅନେକଙ୍କୁ ଧରି ନେଇ କିଲାର ନକରଖାନା ଭିତରେ ହତ୍ୟା କରାଗଲା। ଇଂରେଜମାନେ ଖବର ପାଇଲେ କି ମିରଟ ସହିତ କୌଣସି ସମ୍ବାଦ ସରବରାହ ସମ୍ଭବ ହୋଇପାରୁନି। ସାହାଯ୍ୟ ତ ଦୂରର କଥା। ଇଂରେଜମାନଙ୍କ ସାହସ ଓ ଆଶା ଭାଙ୍ଗିଗଲା। ବାରୁଦଖାନା ଭିତରେ ଯେଉଁ ଲୋକମାନେ ଥିଲେ ଭୟରେ ଥରହର ହେଲେ। ସେମାନଙ୍କର ବଞ୍ଚିବାର କୌଣସି ଆଶା ଦେଖା ଦେଲା ନାହିଁ। ସେମାନେ ଅନ୍ୟ ଉପାୟ ନ ଭାବି ବାରୁଦଖାନାରେ ନିଆଁ ଲାଗାଇଦେଲେ। ବିସ୍ଫୋଟରେ ବାରୁଦଖାନା ଉଡ଼ିଗଲା। ଆଉ ତା' ସହିତ ଭିତରେ ଥିବା ଇଂରେଜ ଜଗୁଆଳ ମାନଙ୍କର ପ୍ରାଣବାୟୁ ମଧ୍ୟ। ବିସ୍ଫୋଟ ଶବ୍ଦରେ ସହର ସହିତ ଲାଲକିଲା ମଧ୍ୟ ଥରି ଉଠିଲା। ଦୋହଲାଇ ଦେଲା ସାରା ସହରକୁ। ବାଲିବାଇଯୌଁ ଏ ପରିସ୍ଥିତିକୁ ରକ୍ଷା କଲେ। ଗୋଳାବର୍ଷଣ ହେଲା କାଶ୍ମୀର ଗେଟ ପାଖ ଇଂରେଜମାନଙ୍କ ଉପରେ। କିନ୍ତୁ ଇଂରେଜ ଲୋକଙ୍କୁ ବାଲାବାଇ-ଯୌଁ। ଟ୍ରେଜେରୀ ଲୁଟ କରିବା କାର୍ଯ୍ୟରେ ଲଗାଇଲେ। ସେଥିପାଇଁ କିଛି ଇଂରେଜ ଲୋକ ବର୍ତ୍ତୀଗଲେ।

ସହର ଲୁଟ ହେଲା। ଦେଖିଲା ମାତ୍ରେ ଇଂରେଜ ଲୋକଙ୍କୁ ଗୁଳି କଲେ। ମେଟକାଫ ହାଉସ ମଧ୍ୟ ନିଆଁରୁ ବର୍ତ୍ତି ପାରିଲା ନାହିଁ। ସେ ପର୍ଯ୍ୟନ୍ତ ମଧ୍ୟ ମିରଟରୁ

କୌଣସି ସମ୍ବାଦ ଯୋଗାଯୋଗ ହୋଇ ପାରି ନଥିଲା। ଅମ୍ବାଲାର ସମ୍ବାଦ ସରବରାହ (ୱାରଲେସ) ଖୋଲାଥିଲା। ତାହା ଜରିଆରେ ସମ୍ବାଦ ପଠାଗଲା। ଜଣେ ସମ୍ବାଦ ନେଇ ଶିମଲାର କମାଣ୍ଡର-ଇନ-ଚିଫ୍ ପାଖକୁ ଗଲା।

ଚିହ୍ନିକି ପଡ଼ିଲେ କମାଣ୍ଡର ଏ ସମ୍ବାଦ ପାଇ। କିନ୍ତୁ କାର୍ଯ୍ୟକ୍ରମ ଗ୍ରହଣ କଲେ ନାହିଁ। ମିରଟରୁ ସମ୍ବାଦ ପାଇବା ଆଶାରେ ରହିଗଲେ। ପରେ ମିରଟରୁ ଖବର ଆସିଲା। ସେତେବେଳେ ସେ ପଞ୍ଜାବ ଫଉଜରୁ ସୈନ୍ୟ ପଠାଇବା ବନ୍ଦୋବସ୍ତ କଲେ। ଅଳ୍ପ ସମୟ ପରେ ମିରଟରୁ ମଧ୍ୟ ସାହାଯ୍ୟ ଆସିଲା। ସମସ୍ତେ ଏକତ୍ରୀତ ହେଲେ ଗାଜିଆବାଦରେ।

୨୩ ଜୁନର ୧୮୫୭ରେ ପଳାସିଯୁଦ୍ଧର ଶତବାର୍ଷିକ ହେବାର ଥିଲା। କିନ୍ତୁ ମନେ ହେଉଥିଲା ଏ ବିଦ୍ରୋହ ଫଳରେ ୨୩ ଜୁନ ପର୍ଯ୍ୟନ୍ତ କୌଣସି ଇଂରେଜ ବଞ୍ଚି ନ ଥାଇ ପାରନ୍ତି। ସେହି ଅବସରରେ ସବଜିମଣ୍ଡିରେ ଘମାଘୋଟ ଲଢ଼ାଇ ହେଲା। ବିଦ୍ରୋହୀଙ୍କ ନିକଟରେ ସବୁଆଡୁ ସୈନ୍ୟମାନେ ଯୋଗ ଦେଲେ। ସେଠାରେ ବିଦ୍ରୋହୀଙ୍କ ସଂଖ୍ୟା ପ୍ରାୟ ୧୫ ହଜାରରୁ ବେଶି ଥିଲା। କିନ୍ତୁ ଇଂରେଜଙ୍କ ସଂଖ୍ୟା ଥିଲା ମାତ୍ର ସାଢ଼େ ୫ ହଜାର। ଇଂରେଜ ସେନା ଭିତରେ ଯେଉଁ ଭାରତୀୟ ସୈନ୍ୟ ଥିଲେ ସେମାନଙ୍କର ଉପରେ ଇଂରେଜଙ୍କର ଆସ୍ଥା କମ୍ ଥିଲା।

୮ ଜୁଲାଇ – ନହର ଓ ନଜଫଗଡ଼ର କେତେକ ପୋଲ ବିଦ୍ରୋହୀମାନେ ଉଡାଇଦେଲେ। ଅଗଷ୍ଟ ବେଳକୁ ସଂଗ୍ରାମ ଜାରି ରହିଲା। ୭ ଅଗଷ୍ଟରେ କାରୁତୁ ସୌଁର କାରଖାନା ଉଡାଇ ଦିଆଗଲା। କ୍ଷତି ବହୁତ ହେଲା। ସେ ଦିନ ପଞ୍ଜାବର କମାଣ୍ଡର ଜନ୍ ନିକଲସନ ଆସି ପହଞ୍ଚିଲେ। ଅବସ୍ଥା ଅନୁଧ୍ୟାନ କରି ପୁଣି ୧୧ ତାରିଖରେ ଫେରିଗଲେ। ୮ ତାରିଖରେ ମେଟକାଫ୍ ହାଉସକୁ ବିଦ୍ରୋହୀମାନେ ଗୁଳି ଚଳେଇବା ଆରମ୍ଭ କଲେ। ୧୨ ତାରିଖରେ ଇଂରେଜ ବିଦ୍ରୋହୀଙ୍କ ଘାଟ ଉଡ଼ାଇଦେଲେ। ତଥାପି ବିଦ୍ରୋହୀଙ୍କ ସାହସ କମିଲା ନାହିଁ। ଠିକ୍ ପରେ ପରେ ସେମାନେ ଗୁଳିବର୍ଷଣ ଆରମ୍ଭ କରିଦେଲେ। ସପ୍ତାହକ ପରେ ଇଂରେଜମାନେ ଦରିଆ ପାଖରେ ଭାରି ତୋପର ଆୟୋଜନ କଲେ। ୧୪ ଅଗଷ୍ଟକୁ ନିକଲସନ ନିଜ ଫଉଜ ନେଇ ପଞ୍ଜାବରୁ ଦିଲ୍ଲୀ ଆସିଲେ। ମୂଷଳ ଧାରାରେ ବର୍ଷା ହେଉଥାଏ। ଯାତାୟତ ମୁଷ୍କିଲ। ସନ୍ଧ୍ୟାରେ ବଗିଚା ପାଖରେ ଦୁଇଦଳଙ୍କର ମୁକାବିଲା ହେଲା ଓ ତା'ପରେ ବଗିଚା ଇଂରେଜମାନଙ୍କ କର୍ତ୍ତୃତ୍ୱକୁ ଆସିଗଲା।

୨୬ ଅଗଷ୍ଟରେ ବିଦ୍ରୋହୀମାନେ ପୁଣି ସହରରୁ ବାହାରି ଇଂରେଜ କ୍ୟାମ୍ପରେ ଚଢ଼ାଉ କଲେ। ଅଗଷ୍ଟ ମାସ ସାରା ଏହିପରି କନ୍ଦୋଳ ଲାଗି ରହିଲା ସତ କିନ୍ତୁ କୌଣସି ପକ୍ଷ ବିଜୟ ହାସଲ କରି ପାରିଲେ ନାହିଁ। ଫିରୋଜପୁରରୁ ଫଉଜ ଆସିବା ପାଇଁ ଇଂରେଜମାନେ ଅପେକ୍ଷା କରିଥିଲେ।

୪ ସେପ୍ଟେମ୍ବର ବେଳକୁ ଦୁଇ ପଟର ସୈନ୍ୟମାନେ ପ୍ରାୟ ପ୍ରସ୍ତୁତ ହୋଇ ଯାଇଥିଲେ। ୭ ସେପ୍ଟେମ୍ବର ବେଳକୁ ତୋପ ଆରମ୍ଭ ହେଲା। କିନ୍ତୁ ବିଦ୍ରୋହୀମାନେ ଚୂପ୍ ଥିଲେ। ଏ ପ୍ରକାର ପିରସ୍ଥିତି ସେପ୍ଟେମ୍ବର ୧୧ ତାରିଖ ପର୍ଯ୍ୟନ୍ତ ମହଜୁଦ୍ ରହିଲା। ବିଦ୍ରୋହୀମାନେ ସାହସର ସହିତ ମୁକାବିଲା ଆରମ୍ଭ କଲେ। ୧୨ ଓ ୧୩ ତାରିଖ ବେଳକୁ ବାରିଆଡୁ ଆକ୍ରମଣ ଆରମ୍ଭ ହୋଇଗଲା। ୧୬ ତାରିଖ ବେଳକୁ ମାଗାଜିନକୁ ଇଂରେଜମାନେ କବଜା କରିନେଲେ। ପୁଣି ୧୭ ତାରିଖରେ ଚାନ୍ଦନୀଚୌକରେ ଗୁଳି ବିନିମୟ ଆରମ୍ଭ ହେଲା। ଫଉଜଙ୍କ ସାମନାକୁ ଯାହା ଆସୁଥିଲା - ଘର, କୋଠାବାଡ଼ି ସବୁ ଭାଙ୍ଗି ଦେଉଥିଲେ। ୧୯ ତାରିଖରେ ବର୍ଣ୍ଣବେଷ୍ଟନ ଲାହୋର ଦରଜା ଦଖଲ କରିନେଲେ। ବିଦ୍ରୋହୀମାନେ ସଂଗଠିତ ନ ଥିଲେ। ତାଙ୍କର କୌଣସି ପଦାଧିକାରୀ ମଧ୍ୟ ନେତୃତ୍ୱ ନେଇ ନ ଥିଲେ।

ଚାରିମାସ ଧରି ଭାରତୀୟ ସ୍ୱତନ୍ତତାର ବାହାଦୂର ସିପାହୀ ନିଜ ଦେଶକୁ ଆଜାଦ୍ କରିବା ପାଇଁ ଜୀବନ ଆହୁତି ଦେବାରେ ଲାଗିଲେ। ଦେଶଦ୍ରୋହୀଙ୍କ ସଂଖ୍ୟା ମଧ୍ୟ କମ୍ ନ ଥିଲା। ସଫଳତା ମିଳିଲା ନାହିଁ ସତ କିନ୍ତୁ ସ୍ୱାଧୀନତା ସଂଗ୍ରାମର ମୂଳ ଦୂଆର ସୁତ୍ରପାତ ହେଲା। ବାଦ୍‌ଶହା ନିଜେ ବିଦ୍ରୋହୀଙ୍କ ସହ ହୁମାୟୁନ ମକବରାରେ ରହିଲେ।

୨୧ ସେପ୍ଟେମ୍ବରକୁ ହଡ଼ସନ ବାଦଶାହାଙ୍କୁ ଗିରଫ କରିନେଲେ। ଯଦିଓ ମକବରାକୁ ବିଦ୍ରୋହୀ ସିପାହୀମାନେ ଘେରି ରହିଥିଲେ। ଫଉଜ ତାଙ୍କୁ ବନ୍ଦୀ କରି ନେଇଗଲେ। ପରଦିନ ଘଟଣା ପ୍ରଳୟଙ୍କର ଥିଲା। ମକବରାରେ ହଡ଼ସନ୍ ପୁଣି ପହଞ୍ଚିଗଲେ। ୩ ଜଣ ରାଜପୁତ୍ରଙ୍କୁ ଗିରଫ କରି କିଲା ପଠାଇଦେଲେ। ନିଜେ ହଡ଼ସନ ବିଦ୍ରୋହୀଙ୍କ ସହ ମୁକାବିଲା କରିବା ପାଇଁ ରହିଲେ। ଦିଲ୍ଲୀରେ ମାର୍ଶାଲ ଆଇନ ଜାରି କଲେ। ଜଣେ ଅଧିକା ଗଭର୍ଣ୍ଣର ଅବସ୍ଥାପିତ କରାହେଲା। ସାରା ସହରରେ ଘର ଘର ଖୋଜି ହଜାର ଲୋକଙ୍କୁ ଗିରଫ କରି ଫାଶି ଖୁଣ୍ଟରେ ଲଟକାଇ ଦେଲେ। ଶହ ଶହ ଲୋକଙ୍କୁ ଆଣ୍ଡାମାନ (କଳାପାଣି) ପଠାଇ ଦିଆଗଲା। କୋତବାଲି ସାମନା ଫାଶି ଖୁଣ୍ଟରେ ଝୁଲୁଥିଲା ହଜାର ହଜାର ଶବ।

ଦିଲ୍ଲୀକୁ ତୈମୁର ଓ ନାଦିରସାହା ସବୁ ଶେଷ କରିଦେଇ ଥିଲେ। ଇଂରେଜମାନେ ଏହାର ପୁନରାବୃତ୍ତି କଲେ। ଯେଉଁ ଭାରତୀୟ ସିପାହୀମାନେ ବ୍ରିଟିଶଙ୍କୁ ସାହାଯ୍ୟ କରିଥିଲେ ସେମାନଙ୍କୁ ଇଣାକା ୬ ମାସ ପାଇଁ ୩୮ ଲେଖାଏଁ ପୁରସ୍କାର ଦିଆଗଲା। ଅନେକ ସିପାହୀ ଯେଉଁମାନେ ବିଦ୍ରୋହ କରିଥିଲେ ସେମାନଙ୍କୁ ଛୋଟା, ଅନ୍ଧ କରିଦିଆଗଲା।

ଏହିପରି ଜଣେ ଇଖମ ସିପାହୀ ମାଟି ପାଚେରୀ ଉପରେ ଚକ୍‌ରେ ଲେଖି ଦେଇଥିଲେ; "ଦିଲ୍ଲୀ ପରାଧୀନ ହୋଇଗଲା। କେତେ ଦାମରେ ? ମାତ୍ର ଟ୩୮ ରେ ବା ଏକଟଙ୍କା ଏଗାର ଅଣା ଆଠ ପଇସାରେ। (ସେତେବେଳେ ଟଙ୍କାକ ୧୬ ଅଣା ଓ ଅଣାକ ଆଠପଇସା ଥିଲା)।

ଇଂରେଜଙ୍କୁ ମାରିବା ଦୋଷରେ ସହରୀ ଲୋକଙ୍କୁ ସହର ବାହାରକୁ ପଠାଇ ଦିଆଗଲା। ଗୁମର ଶୁଣାଗଲା କି ସହରକୁ ନ ଉଡ଼ାଇଲେ ମଧ୍ୟ ଜାମା ମସଜିଦ୍ ଓ ଲାଲକିଲ୍ଲାକୁ ଉଡ଼େଇ ଦେଇ ମାଟିରେ ମିଶାଇ ଦିଆଯିବ। ଏ ଗୁମର ସତ୍ତ୍ୱେ ସବୁ ରହିଗଲା ଆଉ ବଞ୍ଚିଗଲା ଦିଲ୍ଲୀ।

ତା'ପରେ ସବୁ ଠିକ୍ ଚାଲିଲା। ୧୮୫୯ରେ ହିନ୍ଦୁସ୍ତାନୀ ଫୌଜର ଛାଉଣୀ ଦରିଆ ଗଞ୍ଜରେ ତିଆରି ହେଲା, ଓ କିଲ୍ଲାରେ ଗୋରା ଫଉଜ ଓ ତୋପଖାନା ପାଇଁ ବ୍ୟାରେକ୍ ତିଆରି ହେଲା। ୫୦୦ ଗଜ ପାଖାପାଖି ଯେତେସବୁ ଇମାରତ (ସ୍ମୃତିସ୍ତମ୍ଭ) ଥିଲା ସବୁକୁ ଭାଙ୍ଗି ଦିଆଗଲା।

ମେ ୨୩ରେ ୧୮୫୭ରେ ଜଣେ ହିନ୍ଦୁସ୍ତାନୀ ପୋଷାକରେ କରନାଲ ସହରକୁ ଯିବାପାଇଁ ଚାହିଁଥିଲେ। ସେ ହେଉଛନ୍ତି। ସାଉ ଥିଓଫିଲସ ମେଟକାଫ। ବହୁତ ଦିନ ତଳେ ଜଣାଯାଇଥିଲା କି ଥିଓଙ୍କ ମାରିଦିଆଯାଇଛି ଓ ଆଜମୀର ଗେଟ ପାଖରେ ଟଙ୍ଗାଇ ଦିଆଯାଇଛି। କିନ୍ତୁ ଏ ଘଟଣା ଭୁଲ ବୋଲି ପ୍ରମାଣିତ ହେଲା ଆଉ ବୁଲୁଥିବା ଲୋକଟି ଯେ ଥିଓ ମେଟପାଖ୍। ତାହା ମଧ୍ୟ ପ୍ରମାଣିତ ହେଲା।

ସେ ଦୁଇ ସପ୍ତାହ ଧରି ବୁଲି ବୁଲି କରନାଲ ସହରରେ ପହଞ୍ଚିଥିଲେ। ଥିଓ ପାହାଡ଼ଗଞ୍ଜରେ ଆଶ୍ରୟ ନେଇଥିଲେ ଓ ଘଟଣାର ଅନୁସନ୍ଧାନ କରି ଦେଖୁଥିଲେ କି ଦିଲ୍ଲୀରେ ବ୍ରିଟିଶ ଟ୍ରୁପ କେତେବେଳେ ପହଞ୍ଚିବେ। ବିଦ୍ରୋହର ୪ର୍ଥ ଦିନ ପରେ ତାଙ୍କ ଲୁଚିବା ଜାଗା ଜଣାପଡ଼ିଯାଇଛି ଜାଣି ସେ ଜଫରଙ୍କ କଟୱାଲ ଓ ତାଙ୍କ ବନ୍ଧୁ ସୁଇନ- ଉଦ୍ଦିନଙ୍କୁ ଝାଜାଁର ଯିବାରେ ସାହାଯ୍ୟ ପାଇଁ ଅନୁରୋଧ କଲେ। ସାହାଯ୍ୟ

ମିଳିଲା ସତ କିନ୍ତୁ ପରେ ଝାଞ୍ଜାର ରାଜା ଥିଓଙ୍କୁ ମନାକଲେ କି କୌଣସି ବ୍ରିଟିଶର ମାନଙ୍କୁ ଆଶ୍ରୟ ବା ସାହାଯ୍ୟ ଦେବାକୁ ସେ ଅସମର୍ଥ। ସେଥିପାଇଁ ଥିଓ ରାସ୍ତାରେ ନାନାଦି ଅସୁବିଧା ଭୋଗକରି ହାନ୍‌ସିକୁ ଯାଇଁ ସ୍କିନରଙ୍କ ସହ ରହିଲେ। ବିଦ୍ରୋହ ସମୟରେ ମିଓ୍ୱାତିର ଲୋକମାନେ ଜାଗ୍ରତ ହୋଇ କଲେକ୍‌ଟରଙ୍କୁ ହତ୍ୟାକରି ଟ୍ରେଜେରି ଲୁଟ କଲେ ଓ ପରେ ଜଫରଙ୍କ ସେନାରେ ଯୋଗ ଦେଲେ। ଅନେକ ବ୍ରିଟିଶ ଅଫିସର ଓ କବିହାଲି ମଧ ସମଦଶା ଭୋଗିଥିଲେ। ଏପରି ବୁଲି ବୁଲି ତିନିଦିନପରେ ଗୁର୍ଜାର ଯୁଦ୍ଧବାହିନୀର ଏକ ଦଳକୁ ଭେଟିଲେ। ତାଙ୍କଠାରୁ ଅନ୍ୟ କିଛି ଲୁଟିବା ପାଇଁ ନ ପାଇ ସେମାନେ କୋଟର ବୋତାମ ନେଇଗଲେ। ସପ୍ତାହକ ପରେ ଏକ ଅପ୍ରତ୍ୟାଶିତ ଲୋକଙ୍କ ପାଖରୁ ସାହଯ୍ୟ ଆସିଲା। ଗଟଲେନ କୋହାନ ନାମକ ଜଣେ ଜର୍ମାନ-ସ୍ୱିଇସ ସୈନିକର ପୁଅ। ବିବାହ କରିଥିଲେ ମୋଗଲ ରାଜକନ୍ୟାଙ୍କୁ। ପର୍ଶିୟାନ ଓ ଉର୍ଦ୍ଦୁରେ "white moghul"ଙ୍କ ସଂକ୍ରାନ୍ତରେ ଲିଖିତ ପୁସ୍ତକ ଓଟ ଉପରେ ଲଢ଼ିବା ପାଇଁ ପ୍ରସ୍ତୁତି ହେଉଥିଲେ। ସେ ଭଦ୍ରବ୍ୟକ୍ତି ଥିଓଙ୍କୁ ସାହାଯ୍ୟ କଲେ।

ଯେଉଁ ଜାଗାରେ ବ୍ରିଟିଶ ମାଗିଜିନ୍ ପାଇଁ ମହଲ ତୋଳା ଯାଇଥିଲା। ସେଠାରେ ସବୁ ଯୁଦ୍ଧ ଯନ୍ତପାତି ରଖା ଯାଇଥିଲା। ଏହି ଶସ୍ତ୍ରାଗାରକୁ ଚବିଶ ଘଣ୍ଟା ପହରା ଦେବା ପାଇଁ ଜଗୁଆଳି ଥିଲେ। ମନେ ହେଉଥିଲା ଏ ଜଗୁଆଳି ସତେ ଅବା ବ୍ରିଟିଶ ରାଜମୁକୁଟକୁ ଜଗିବାପାଇଁ ପହରା ଦେଉଛନ୍ତି। ସାଧାରଣ ଜନତା ଏହା ଭିତରେ ପଶିବାକୁ ଚାହିଁ ନ ଥିଲେ। ଭାବୁଥିଲେ ଏଇଟା ଶଇତାନର ଜାଗା - ଲାଲକିଲ୍ଲା, ଚାନ୍ଦନୀଚୌକ, ଜାମା ମସଜିଦଠାରୁ ଏହା ଆହୁରି ଭୟଙ୍କର।

ସିପାହୀ ବିଦ୍ରୋହର ବେଳର କଥା ଅଲଗା। ମିରଟରେ ଅଫିସରମାଙ୍କ ସହ ଲଢ଼ିବାର ପରିଦିନର ଘଟଣା। ସାରା ରାତି ସୈନ୍ୟମାନେ ମାର୍ଚ୍ଚ କରି ଦିଲ୍ଲୀରେ ପହଞ୍ଚିଲେ। ମାଗାଜିନର ଛାତି ଥରି ଉଠିଲା। ସାଙ୍ଗେ ସାଙ୍ଗେ ତାଙ୍କ ନେତା ଲେଫନାଣ୍ଟ ଓ୍ୱିଲୋଗବି ଆଦେଶ ଦେଲେ ବାରୁଦ ଘରକୁ ଉଡ଼ାଇ ଦିଆଯାଉ। ଏ ବିସ୍ଫୋରଣରେ ଲାଲକିଲ୍ଲା ବି ଥରି ଉଠିଲା। ଜଫର ଶତ୍ରୁକୁ ମୁକାବିଲା କରିବା ପାଇଁ ଖଣ୍ଡା ମୁକ୍ତ ରଖିଲେ। ଆଜି ଏ ମାଗାଜିନର ଚିହ୍ନ ବର୍ଣ୍ଣ ନାହିଁ। କେବଳ ଗୋଟେ ମାରବଲ ଖୁଣ୍ଟ ଉପରେ ଯେଉଁ ଚିହ୍ନ ଅଛି ତାକୁ ଦେଖିଲେ ଜଣାଯାଏ କି ନ' ଜଣ ସାହସୀ ଇଂରେଜ ଲୋକ ଲର୍ଡ଼ ଓ୍ୱାଲଗବିଙ୍କ

ନେତୃତ୍ୱରେ ମାଗାଜିନର ବାରୁଦଶାଳାକୁ ବିଦ୍ରୋହୀମାନଙ୍କ ହାତକୁ ଟେକି ନ ଦେଇ ଉପାୟ ନ ଥିବା ଅବସରରେ ଲୋପ ପାଇ ପାଇ ଥିଲେ।

ସିପାହୀ ବିଦ୍ରୋହ କେବଳ ସ୍ୱାଧୀନତାର ଯୁଦ୍ଧ ନୁହେଁ। ଭାରତୀୟ ଜନତାଙ୍କ ଦେଶପ୍ରିୟତା, ଗୃହଯୁଦ୍ଧ- ଯେଉଁଥିରେ ବ୍ରିଟିଶଙ୍କର ରାଜକୀୟ ସଭ୍ୟତା, ତା'ର ସାମ୍ରାଜ୍ୟ ଲୋଭରେ ବ୍ୟବସାୟୀମାନେ ହାରିଯାଇଥିଲେ। କୃଷକ, ମଧ୍ୟବିତ୍ତ ଶ୍ରେଣୀର ଜନତା, ବ୍ୟବସାୟୀ, ପୁଞ୍ଜିପତି ସମସ୍ତେ ଉନ୍ନତି ଆଶାରେ ଆଗେଇ ଆସିଥିଲେ। ଭାରତବାସୀଙ୍କ ଉପରେ ବ୍ରିଟିଶର ଦମନଲୀଳା ଧ୍ୱଂସପ୍ରାୟ ହୋଇଗଲା।

ବ୍ରିଟିଶରମାନେ ତାଙ୍କର ସାର୍ବଭୌମ୍ୟ କ୍ଷମତାକୁ ଏକ ଯୁକ୍ତିଯୁକ୍ତ ସିଦ୍ଧାନ୍ତରେ ପକାଇବାକୁ ଇଚ୍ଛା କରିଥିଲେ। ମୋଗଲଙ୍କ ଅମଳରେ ମୁସଲମାନ ଓ ସନାତନ ଧର୍ମର ଭାବନା, ସେମାନଙ୍କର ଧାର୍ମିକ ବିଶ୍ୱାସ ଏକ ପ୍ରକାର ସଂଗତିରେ ପ୍ରାୟ ପହଞ୍ଚି ସାରିଥିଲା। ସାରା ବିଶ୍ୱରେ ମଧ୍ୟ ଏ ବିଶ୍ୱାସ ଜଣାଥିଲା। କିନ୍ତୁ ଇଉରୋପୀୟଙ୍କ ଉଦ୍ଦେଶ୍ୟ ଭାରତରେ ଖ୍ରୀଷ୍ଟିୟାନ ଧର୍ମର ପ୍ରସାର ପାଇଁ ଉଦ୍ଦିଷ୍ଟ ଥିଲା। ଏ ସଭ୍ୟତାର ଯୁଦ୍ଧରେ ସିପାହୀ-ବିଦ୍ରୋହ ହେବା ଫଳରେ ୧୦ ମିଲିୟନ ଭାରତୀୟ (ପ୍ରାୟ ଲୋକସଂଖ୍ୟାରେ ୭% ସେ ସମୟରେ) ଜୀବନ ହରାଇଲେ। - ନୃଶଂସ ଭାବରେ ଅତ୍ୟାଚାର ଓ ହତ୍ୟାର ସମ୍ମୁଖୀନ ହୋଇଥିଲେ। ବ୍ରିଟିଶ ଟ୍ରୁପ ଉପରେ ଆକ୍ରମଣ କରି। ଏହାହିଁ ପୃଥିବୀର ପ୍ରଥମ Holcast। ଜିଉମାନଙ୍କ ଉପରେ ହିଟଲରର ଆକ୍ରମଣଠୁ ଆହୁରି ଭୟଙ୍କର। ବ୍ରିଟିଶରମାନେ ସେମାନଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ମଧ୍ୟ ନିଜେ ମାରିଦେଇଥିଲେ କାରଣସ୍ୱରୂପ କହିଦେଇଥିଲେ ଏ ପ୍ରକାର କ୍ରୁର ଅତ୍ୟାଚର ଭାରତୀୟମାନେ କରିଛନ୍ତି।

୧୮୪୦ ବେଳକୁ ଡକ୍ଟର ଚମନଲାଲ, ମାଷ୍ଟର ରାମଚନ୍ଦ୍ର, ମୌଲବୀ ଇମାଦୁଦ୍ଦିନ ଖ୍ରୀଷ୍ଟିୟାନ ଧର୍ମ ଗ୍ରହଣ କରିନେଇ ସାରିଥିଲେ। ଦିଲ୍ଲୀ କଲେଜରେ ଶିକ୍ଷା ଲାଭ କରିଥିବା ଛାତ୍ରମାନେ ବିଦେଶୀ ପାଠ୍ୟକ୍ରମରେ ଅନୁପ୍ରାଣିତ ହୋଇ କୋରାନ ଓ ଜନ୍ତରମନ୍ତର ପରି ଗାଣିତିକ ସୂଚନା କେନ୍ଦ୍ରକୁ ସମାଲୋଚନା କରିବା ଆରମ୍ଭ କରିଦେଲେ। ଏ ସବୁ ଜାଣିପାରି ଜଫର ଏ ଅନୁଷ୍ଠାନ ସବୁକୁ ସମର୍ଥନ ଓ ସାହାଯ୍ୟ ଦେବା ବନ୍ଦ କରିଦେଲେ। ସେତିକି ବେଳେ ଜଫରଙ୍କର ଫୁଲବାଲୋକି ସାୟାରୀ ଓ ଅନ୍ୟାନ୍ୟ ଅନୁଷ୍ଠାନ ସବୁ ମୁଣ୍ଡ ଟେକି ଉଠିଲା। ଆହୁରି ମଧ୍ୟ ସେ ସମୟକୁ ନାନାସାହେବଙ୍କ "ରାମନବମୀ" ଆଉ "ଶିବରାତ୍ରୀ"

ମହୋତ୍ସବ ମଧ୍ୟ ଦେଖିବା ପାଇଁ ଶୋଭାଯାତ୍ରାରେ ଗଲେ। ଜମା ମସଜିଦରେ ବର୍ଷକୁ ଦୁଇଥର ଇଦ୍ ପର୍ବରେ ମଧ୍ୟ ଯୋଗଦେଲେ। ଡକ୍ଟର ଚମନଲାଲଙ୍କ ଧର୍ମାନ୍ତକରଣ ସତ୍ତ୍ୱେ ଜଫର ତାଙ୍କୁ ଦରବାରରେ ପ୍ରବେଶ ପାଇଁ ଆଦେଶ ଦେଲେ ଓ ଯେଉଁମାନେ ଧର୍ମାନ୍ତକରଣକୁ ନିନ୍ଦା କଲେ ସେମାନଙ୍କୁ ଗାଳି ଗୁଲଜ କରିବାକୁ ଆରମ୍ଭ କଲେ। ତେବେ ଜଫରଙ୍କ ଭୟ ଥିଲା କି ଧର୍ମାନ୍ତକରଣ ପରେ "କଳା ଲୋକଟି ଧଳା ହୋଇଯାଉଥିଲା"।

ସମ୍ରାଟଙ୍କ ସୁଫି ବିଶ୍ୱାସକୁ ଆଗରେ ରଖି କେତେ ଅଦଳବଦଳ କରିବା ପାଇଁ ସାହସ କଲେ। କିନ୍ତୁ ସମ୍ରାଟ ସେମାନଙ୍କ ସୁଫିଧର୍ମ ସଂକ୍ରାନ୍ତରେ ବୋକାମିର ସୁବିଧା ନେଇ ସେ ଅନେକ କାର୍ଯ୍ୟ କଳାପକୁ ବନ୍ଦ କରିପାରିଥିଲେ।

୧୮୩୭ ବେଳକୁ ଜଫର ଅନୁଭବ କଲେ ବ୍ରିଟିଶରମାନେ ରେଡ଼ଫୋଟରୁ ମୋଗଲ ଅଧିକାର ଦୂରେଇ ଦେବାକୁ ଚାହୁଁଛନ୍ତି। ଦିଲ୍ଲୀ କଲେଜ ଖୋଲାହେଲା ୧୮୨୪ରେ। ପ୍ରଥମରେ ୯ ଜଣ ଛାତ୍ରଥିଲେ ଓ ଜଣେ ଶିକ୍ଷକ। ଇଷ୍ଟ ଇଣ୍ଡିଆ କମ୍ପାନୀ ମାସକୁ ୫୦୦ ସାହାଯ୍ୟ ଦେଉଥିଲେ। ଉଦ୍ଦେଶ୍ୟ ଥିଲା ପିଲା ବିଦେଶୀ ପୋଷାକ ପିନ୍ଧି ବିଦେଶୀ ଢଙ୍ଗ ଆଦରି ନେବେ। କିନ୍ତୁ ପିଲା ଉର୍ଦ୍ଦୁ ମାଧ୍ୟମରେ ଶିକ୍ଷା ପାଇବାକୁ ଇଚ୍ଛୁକ ଥିଲେ। ୧୮୨୮ ବେଳକୁ ୩୫୦ ଛାତ୍ର ହୋଇସାରିଥିଲେ। ହୁଏତ ଇଂରେଜଙ୍କ ପ୍ରତି ଅଧିକ ମମତା ଫଳରେ ଅଧାରୁ ବେଶି ଛାତ୍ର ଇଂରେଜ ଶିକ୍ଷା କରିବାକୁ ଆରମ୍ଭ କଲେ।

୧୮୦୩ ରେ ଇଂରେଜମାନେ ଦିଲ୍ଲୀ ଦଖଲ କରିବା ପରେ ସେମାନଙ୍କର ଶିକ୍ଷା ଦିଗରେ ଉନ୍ନତି କରାଇ ଦିଲ୍ଲୀର ରୂପ ବଦଳାଇବାର ସ୍ୱପ୍ନକୁ ସାକାର କରିବାକୁ ଚେଷ୍ଟା କଲେ। ଚେଷ୍ଟା ଥିଲା ପାଶ୍ଚାତ୍ୟ ବିଚାର ଧାରା ଲୋକଙ୍କ ମଧ୍ୟରେ ବାଣ୍ଟିବେ।

୧୭୫୦-୮୦- ଯେଉଁ ସମୟରେ ଦିଲ୍ଲୀ ଉପରେ ଆଫଗାନ ଆକ୍ରମଣ, ମରହଟ୍ଟା ଓ ଜାଟଜ ପ୍ରଭାବ ସେ ସମୟକୁ "କଳା ସମୟ" ବୋଲି ଘୋଷଣା କରି ବହି ଛପା ହେଲା।

ଏହି ସମୟରେ ଗାଲିବ ମଧ୍ୟ ବ୍ରିଟିଶରଙ୍କ ଅଧିନରେ ଦିଲ୍ଲୀ ଉନ୍ନତି ଓ ଲୋକସଂଖ୍ୟା ବୃଦ୍ଧି ଲକ୍ଷ କଲେ। ଅନ୍ୟାନ୍ୟ ଉନ୍ନତିକରି କାର୍ଯ୍ୟ, ଶାନ୍ତିପୂର୍ଣ୍ଣ କ୍ଷମତା ହସ୍ତାନ୍ତର, ଚାନ୍ଦିନୀଚୌକରେ କେନାଲର ପୁନରୁଦ୍ଧାର ମଧ୍ୟ ଲକ୍ଷ କଲେ। ଇଂରେଜ ସଭ୍ୟତା ଆସ୍ତେ ଆସ୍ତେ ପ୍ରବେଶ କଲା।

ଏ ବେଳକୁ ମୋଗଲଙ୍କର ମୂଲ୍ୟବାନ ସଭ୍ୟତା, ମରହଟା ପ୍ରଭାବ, ଲୋକମାନଙ୍କ ମନରୁ ଲିଭିଯିବାକୁ ବସିଲା ବ୍ରିଟିଶରମାନଙ୍କ ଚେଷ୍ଟା ଫଳରେ। ଅଧିକ ପରିମାଣରେ ଟିକସ ଆଦାୟ, ପ୍ରଜାସତ୍ୱ ନିୟମାବଳୀ ଲୋକଙ୍କ ଉପରେ ଲଦି ଦିଆଗଲା। ଇଉରୋପୀୟାନମାନେ ଭାରତୀୟ ମାନଙ୍କଠୁ ଫୌଜଦାରୀ ଆଇନ ସଂକ୍ରାନ୍ତରେ ଅଧିକ ଜାଣିଥିଲେ। ଗାଲିବ ବ୍ରିଟିଶରମାନଙ୍କ ଶାସନ ପ୍ରଣାଳୀରେ ବହୁତ ଖୁସିଥିଲେ। ମୋଗଲ, ମରହଟ୍ଟା, ଜାଟ, ଗୁଜାରଙ୍କ ଶାସନ ତାଙ୍କୁ ପସନ୍ଦ ନ ଥିଲା। ଏହାର ପ୍ରଭାବ ମଧ ତାଙ୍କ କବିତାରେ ପରିଲକ୍ଷିତ ହୋଇଥିଲା। ସେ ହୁଏତ ଅନୁମାନ କରି ପାରି ନ ଥିଲେ କି ବିଦେଶୀ ସଭ୍ୟତାର ପ୍ରଭାବ କେତେଦୂର କ୍ଷତି କରିପାରେ।

୧୮୪୪ ବେଳକୁ ଜଫରଙ୍କ ଅଧିକାର ଥିଲା ସତ କିନ୍ତୁ କ୍ଷମତା ନ ଥିଲା। ଏତିକିବେଳକୁ ଆକବର ୨ୟ ରାଜା ରାମମୋହନ ରାୟଙ୍କୁ ଇଂଲଣ୍ଡ ପଠାଇଲେ ରାଜକୀୟ ଷ୍ଟାଇପେଣ୍ଡ ସଂକ୍ରାନ୍ତରେ ଅଧିକ ଦାବି କରିବା ପାଇଁ ଇଂଲଣ୍ଡର ରାଣୀଙ୍କ ପାଖରେ। ରାମମୋହନ ରାୟ ଦାବି ଉପସ୍ଥାପନ କଲେ କି ସମ୍ରାଟପଦ ବଦଳରେ ରାଜକୀୟ ଭତ୍ତା ଦି' ଗୁଣ କରିବା ପାଇଁ ସେ ରାଜଜ୍ଞା ନେଇ ଆସିଛନ୍ତି।

କିଛି ଅଧିକ ଭତ୍ତା ବଢ଼ାଗଲା। କିନ୍ତୁ ଆକବର ସାହା ୨ୟ ଓ ଜଫର ଏହାକୁ ଆଗ୍ରାହ୍ୟ କଲେ। ପରେ ଇଂରେଜମାନେ ଚାଲାକି କରି ଘୋଷଣାକଲେ ଜଫର ଏ ସର୍ତ୍ତକୁ ମାନି ନେଇଛନ୍ତି। ପ୍ରକୃତରେ ଜଫର କିନ୍ତୁ ଏ ପ୍ରକାର ଭତ୍ତା ପାଇଁ କୌଣସି ଅର୍ଥ ଗ୍ରହଣ କଲେ ନାହିଁ। ଫଳରେ ଏ ସର୍ତ୍ତ ଭାଙ୍ଗିଗଲା।

ସାମ୍ରାଜ୍ୟ ବଦଳରେ ଭତ୍ତା ପାଇଁ ସର୍ତ୍ତ ଜଫର ରଖି ନ ଥିଲେ। ୧୮୩୧ ବେଳକୁ ହକିନ୍ସ ଦିଲ୍ଲୀର ରେସିଡେଣ୍ଟ। ସେ ଆକବର ସାହା କୋଟକୁ ଏକ ନଜିର ପେଶ କରିବାକୁ ଆସିଥିଲେ। ସେ ବସିବା ପାଇଁ ଖଣ୍ଡେ ଚେୟାର ମାଗିଲେ ଓ କୌଣସି ଚେୟାର ତାଙ୍କୁ ଦିଆଗଲା ନାହିଁ। ପରେ ରାଗରେ ସେ କୌଣସି ଆତିଥ୍ୟ ଗ୍ରହଣ ନକରି ସେଠୁ ଫେରି ଆସିଲେ। ୧୮୩୨ ସମ୍ରାଟ ଯେବେ ଦୁର୍ଗ ବାହାରକୁ ଯାଇଥିଲେ। ହକିନ୍ସ ଜଣେ ଇଂରେଜ ସାଥିଙ୍କୁ ନେଇ ନଜର ଖାନା ପର୍ଯ୍ୟନ୍ତ ଘୋଡ଼ାରେ ଯାଇ ଦିୱାନ ଆମ ପାରି ହୋଇ ଦିୱାନ ଖାସରେ ପହଞ୍ଚିଲେ। ସମ୍ରାଟ ପରେ ଏ ଖବର ପାଇ କହିଲେ କି ତୈମୁରଙ୍କ ଘରେ ଏ ପ୍ରକାର ଅପମାନ ଶୁଣା ଯାଇ ନଥିଲା।

ଆଉ ଜଣେ ରେସିଡ଼େଣ୍ଟ ସେଟନ ଲୁଲୁ ଦୁର୍ଗ ବାହାରକୁ ଯାଉଥିଲେ। ସେହି ସମୟକୁ ଆବକରଙ୍କୁ ପୁତ୍ର ମିର୍ଜା ଜାହାଙ୍ଗୀର ନକରଖାନାର ଛାତ ଉପରେ ଠିଆ ହୋଇଥିଲେ। ସେ ସେଟନ ଲୁଲଙ୍କୁ ଉପରକୁ ଗୁଳି ଚଳାଇଲେ। ଗୁଳି ରେସିଡ଼େଣ୍ଟଙ୍କ ଟୋପିରେ ବାଜିଲା। କିନ୍ତୁ ରେସିଡେଣ୍ଟ ବର୍ତ୍ତିଗଲେ। ସଙ୍ଗେ ସଙ୍ଗେ ବ୍ରିଟିଶରମାନେ ସୈନ୍ୟ, ଗୁଳି ଗୁଳା ନେଇ ସେଠି ପହଞ୍ଚିଗଲେ। ଫାଙ୍କା ଗୁଳି ମଧ ଚଳାଇଲେ। ମିର୍ଜା ଜାହାଙ୍ଗରୀଙ୍କୁ ଦୁର୍ଗ ବାହାରକୁ ନେଇଗଲେ ଓ ପରେ ପରେ ତାଙ୍କୁ ବନ୍ଦୀ ଭାବରେ ଆଲ୍ଲାବାଦ ପଠାଗଲା। ଏଇ ଘଟଣା ଉପରେ ଗୋଟେ ଗୀତ ମଧ ସାଧାରଣ ଜନତା ଗାଇବା ଆରମ୍ଭ କଲେ।

"ସେଂଟନ କୋ ଲୁଲୁ ଖୁନ କହା ମିରଜା
ଲାଲ ପରଦାଗୁ ଗୋଳି ବି ଗୟା ମିରଜା
ରେଜିମେଣ୍ଟ ବି ଆୟେ, ପଲଟନ ବି ଆୟେ
ଲାଲ ପରଦାରେ ଗୋଲି ନିକଲା ମିରଜା
ସେଟନକୋ ଲୁଲୁ ଖୁନ କାହା ମିରଜା
ଗୋଲି ଚଲା ଲାଲ ପରଦାକେ ଉପର
ରେଜିମେଣ୍ଟ ଆୟେ ଔର ପାଟୁନ ବି
ଗୋଲି ଚଲା ପରଦା କେ ଉପର
ହେ ମିର୍ଜା, ସେଟନ କୋ ଲୁଲୁ ନାମରେ କିଓଁ ପୁକାର'

ଏ ଘଟଣା ପରେ ଆକବରଙ୍କ ଆଗରେ ବ୍ରିଟିଶର ମାନେ ଅନେକ ଅଘଟଣ ଘଟାଇଲେ। ଦିଲ୍ଲୀ ନିଜର ନିଜତ୍ୱ ହରାଇ ଉତର ପଶ୍ଚିମ- ଫ୍ରଣ୍ଟିୟାର ପ୍ରଦେଶ ସହ ସାମିଲ ହେଲା। ଆକବର ସାହାଙ୍କ ନାମ ମୁଦ୍ରା ଉପରୁ ହଟାଇ ଦିଆଗଲା। ଗଭର୍ଣ୍ଣର ଜେନେରାଲଙ୍କ ସିଲରୁ "ତୁମ ସ୍ପେଶାଲ ଭୃତ୍ୟ" ପଦ ମଧ ଉଠିଗଲା।"

ବ୍ରିଟିଶ ସରକାର ମୋଗଲ ସାମ୍ରାଜ୍ୟ ଦୁଇଟି ବିଶ୍ୱ ବିଖ୍ୟାତ ଅମୂଲ୍ୟ ଚିହ୍ନ- ଆଗ୍ରା ଫୋଟ ଓ ତାଜମହଲକୁ ଉଡାଇ ଦେବାର ଚେଷ୍ଟାରେ ଥିଲେ। ମର୍ମାହତ ହେଲେ ଆକବର ସାହ ୨ ୟ "ଗଭର୍ଣ୍ଣର ଜେନେରାଲଙ୍କ ସହ ଏକ ସଭାର ଆୟୋଜନ କଲେ। କିଛି ଫଳ ହେଲାନାହିଁ।

ସେଥିଲାଗି ତା' ପରଠୁ ଏପରି ମିଟିଂ ଆଉ କେବେ ବସିନାହିଁ। ତା' ପରବର୍ତ୍ତୀ ଗଭର୍ଣ୍ଣର ଲର୍ଡ଼ ବେଣ୍ଟିଂ ଓ ତା'ପରେ ଲର୍ଡ଼ ଅକଲାଣ୍ଡ ମଧ କୌଣସି ମିଟିଂ ଅନେକ ଆଗ୍ରହ ଥାଇଁ ମଧ କରାଇ ପାରିଲେ ନାହିଁ।

ଜଫର ଫିଜିକାଶଙ୍କୁ ଗଭର୍ଣ୍ଣର ସିଲରେ ଆଣିବା ପାଇଁ ଦାବି କଲେ । "ଶୁକାସ" ପଠାଇବା ଆରମ୍ଭ କଲେ । ସେଥିପାଇଁ ଜର୍ଜ ଥମ୍‌ସନଙ୍କ ଜରିଆରେ ବ୍ରିଟିଶ ରୟାଲ ହାଉସକୁ ଚିଠି ସବୁ ପଠାଇଲେ । ଏଥିରେ ପୁରା ମୋଗଲ ଇତିହାସ ଲେଖିଥିଲେ । ଆଉ ଲେଖିଥିଲେ କି ମୋଗଲ ସାମ୍ରାଜ୍ୟ ଉପରେ କେବଳ ତୈମୁର ବଂଶଧରଙ୍କ ଅଧିକାର ଅଛି ।

ସେଇଦିନଠୁ ଇଂଲଣ୍ଡର କୋରେଶ ଏହି ସୁଯୋଗ ନେଇ ଜୱାନ ଓ୍ୱକ୍ତଙ୍କ ଦାବିକୁ ଅଗ୍ରାହ୍ୟ କଲେ । ବ୍ରିଟିଶରମାନେ ଆଉ ଏକ ଚୁକ୍ତିନାମା କଲେ ଯେଉଁଥିରେ କି କୋରେଶଙ୍କୁ ସମ୍ରାଟପଦବୀ ନ ଦେବାପାଇଁ । ଫଳରେ ଜଫରଙ୍କ ମୃତ୍ୟୁପରେ ସମ୍ରାଟ ପଦବୀ ଖାଲି ପଡ଼ିବ ଆଉ ତା' ବଦଳରେ "ସାହାଜାଦା" ପଦବୀ ରହିବ । ଇଲାଇ ବକ୍ସ ଫକୀରୁଦ୍ଦିନଙ୍କ ଶ୍ୱଶୁର ଓ ହାକିମ୍ ଇସାନୁଲାହ ଜଫରଙ୍କ ଚିକିତ୍ସକ । ଏ ଦୁଇଜଣ ବ୍ରିଟିଶଙ୍କୁ ସାହାଯ୍ୟ କରୁଥିଲେ ।

ଜଫରଙ୍କ ଦ୍ୱିତୀୟ ପୁତ୍ର ଥିଲେ ବ୍ରିଟିଶ ବିରୋଧୀ । ନିଜର ଆଚାର ବ୍ୟବହାର, ଚାଲିଚଲଣରେ ସେ ବ୍ରିଟିଶଙ୍କ ବିରୁଦ୍ଧ ବିଷୋଦ୍‌ଗାର କରୁଥିଲେ । ଖୋଲା ଖୋଲି ଭାବରେ ମଧ୍ୟ ପ୍ରକାଶ କରୁଥିଲେ କି ବ୍ରିଟିଶମାନେ ମୋଗଲଙ୍କର ମଥା ତଳକୁ ନେଇ ଆସିବେ । ଏପରିକି ୧୮୫୭ ଏପ୍ରିଲରେ ଜଣେ ବ୍ରିଟିଶ ସ୍ତ୍ରୀ ଲୋକଙ୍କୁ ସେ କହିଥିଲେ କି ପର୍ଶିୟାନ ମାନେ ଆସୁଛନ୍ତି ମୋଗଲଙ୍କୁ ରକ୍ଷା କରିବା ପାଇଁ । ଏ କଥାର ଯଥେଷ୍ଟ ମୂଲ୍ୟ ମଧ୍ୟ ଥିଲା । ଜାନୁୟାରୀ ୧୮୫୭ ବେଳକୁ ଇଂରେଜଙ୍କର କ୍ଷମତା ହ୍ରାସ ପାଇ ଆସୁଥିବା ଖବର ସବୁ ସମ୍ବାଦପତ୍ରରେ ପ୍ରକାଶ ପାଇସାରିଥିଲା । ଏ ଖବର ପାଇଁ ଜନତା ମନରେ ସାମାନ୍ୟ ଆନନ୍ଦର ଉତ୍ସ ଦେଖାଦେଇଥିଲା ।

ଆଙ୍ଗ୍ଲୋ - ପର୍ଶିୟାନ ଯୁଦ୍ଧର କେତେକ ପ୍ରଭାବ ମଧ୍ୟ ଦିଲ୍ଲୀ ଉପରେ ପଡ଼ିଥିଲା ଯୁଦ୍ଧ ସଂକ୍ରାନ୍ତରେ କେତେକ ଧାରଣା ମଧ୍ୟ ପ୍ରକାଶ ପାଇଥିଲା । ପର୍ଶିୟାନ ସାହାଙ୍କର ଯୋଜନା ଅନୁଯାୟୀ ସେ ଅତିଶୀଘ୍ର ମୋଗଲ ସାମ୍ରାଜ୍ୟର ରକ୍ଷା ପାଇଁ ଆସୁଛନ୍ତି ବୋଲି ଖବର ମିଳିଥିଲା । ଖାଲି ସେତିକି ନୁହେଁ ରୁଷିଆର ଜାର, ଫ୍ରାନ୍ସର ରାଜା, ଟର୍କିର ସମ୍ରାଟ ମଧ୍ୟ ପର୍ଶିୟାନ ପକ୍ଷରେ ଅଛନ୍ତି । ରୁଷିଆ-ପର୍ଶିୟାନ ସଂଯୋଗ ଅଧିକ ଥିବାର ସଂଭାବନା ବେଶି ଥିଲା ।

ଆଫଗାନର ମହମ୍ମଦ ଖାଁ ମଧ୍ୟ ନିଜର ବ୍ରିଟିଶ ସହିତ ବନ୍ଧୁତ୍ୱ ସତ୍ତ୍ୱେ ପର୍ଶିୟାକୁ ସାହାଯ୍ୟ କରିବେ । ଏଣେ ଭିତରି ଖବର ମିଳିଲା ଯେ ୧୮୫୭ ମାର୍ଚ୍ଚ ବେଳକୁ

ପର୍ଶିୟାର ସାହା ଓ ଜଫରଙ୍କ ଭିତରେ କଥାବାର୍ତ୍ତା ଚାଲିଛି। ଏଥିପାଇଁ ଏ ଖବର ଏକ ଚିଠିରେ ଦସ୍ତଖତ ମଧ୍ୟ କରିଛନ୍ତି ବୋଲି ଶୁଣାଗଲା। ପର୍ଶିୟାନ କ୍ୟାମ୍ପରେ ସମାନ ଭାବରେ ଏ କଥା ପରିଲକ୍ଷିତ ହେଉଥିଲା। ବ୍ରିଟିଶର ମାନେ ନିଜ ନିଜ ଭିତରେ ଏ ବିଷୟ ଆଲୋଚନା କରୁଥିଲେ। ସେମାନେ କହୁଥିଲେ କି ଜଫର ଫକୀରୁଦ୍ଦିନଙ୍କ ମୃତ୍ୟୁପରେ କୁବେ ଅଞ୍ଚଳକୁ ଚାଲିଯିବେ ଓ ଦୁର୍ଗ ସଂପୂର୍ଣ୍ଣ ଭାବରେ ବ୍ରିଟିଶରଙ୍କର ହୋଇଯିବ।

ଅନ୍ୟ ଦିଗରେ ମହମ୍ମଦ ସାଦିକଙ୍କ ନାଁରେ ଖଣ୍ଡା ଓ ସିଲିର ଚିହ୍ନ ଥାଇ ଏକ ପ୍ରଚାରପତ୍ର ଜାମା ମସଜିଦ କାନ୍ଥରେ ଟଙ୍ଗା ହେଲା। ଏ ପ୍ରଚାର ପତ୍ରରେ ଲେଖାଥିଲା କି ପର୍ଶିୟାନ ସେନାବାହିନୀ ଅତି ଶୀଘ୍ର ଭାରତକୁ ବ୍ରିଟଶ କବଳରୁ ରକ୍ଷା କରିବାକୁ ଆସୁଛନ୍ତି। ଏ ଯୋଜନା ୧୮୪୫ରୁ ଚଳିଛି ବୋଲି ବ୍ରିଟିଶରମାନେ ଜାଣିଥିଲେ। ଆହୁରି ବି ବିଶ୍ୱାସ କରାଯାଏ କି ଜଫର ଗୁପ୍ତରେ ଜଣେ ରାଷ୍ଟ୍ରଦୂତଙ୍କୁ ରୁଷିଆ ପଠାଇ ସାରିଛନ୍ତି। ୧୮୫୦ ବେଳକୁ ଖୁରୁଓ୍ୱାଲା ସାଲିଗ୍ରାମ ପରିବାରର ବିବାଦ ଦେଖାଦେଲା। ବ୍ରିଟିଶମାନଙ୍କ ପୂର୍ବରୁ ଗୁରୁଓ୍ୱାଲାର ମୋଗଲଙ୍କ ସହିତ ସଂପର୍କ ଥିଲା।

୧୮୦୩ ପରେ ଚାନ୍ଦନୀଚୌକରେ ବ୍ୟବସାୟ ଜନିତ ଏ ପଟ ସେପଟ ହେବାପରେ ଶସ୍ୟବଜାରରେ ତାଙ୍କର କୌଣସି ଦଖଲ ନଥିଲା। ଅନେକ ବ୍ୟବସାୟୀ ଏଥିପାଇଁ ଏକାଠି ହୋଇସାରିଥିଲେ। ପଞ୍ଜାବ-କ୍ଷେତ୍ରୀ ବ୍ୟବସାୟୀ, ଜୈନ ବ୍ୟବସାୟୀ (ଏସବୁ କେହି ବ୍ୟବସାୟୀ ବଂଶଧର ନୁହଁନ୍ତି) ମାନେ ମଧ୍ୟ ଏଥିପରେ ଯୋଗ ଦେଲେ। ୧୮୨୦ ବେଳକୁ ମାରଓ୍ୱାଡ଼ି ଫାର୍ମ ସବୁ ମଧ୍ୟ ସାମିଲ ହେଲେ ଜଣେ ହିନ୍ଦୁ ବ୍ୟବସାୟୀ ବ୍ରିଟିଶଙ୍କୁ ୧୨% ସୁଧହାରରେ ଅନେକ ଟଙ୍କା ଦେଇଥିଲେ।

ଖୋଲା ଖୋଲି ଭାବରେ ବ୍ୟବସାୟ କ୍ଷେତ୍ରରେ ପ୍ରତିଯୋଗୀତା ଆରମ୍ଭ ହେବା ଫଳରେ ହିନ୍ଦୁମାନେ ମୁସଲମାନଙ୍କ ପାଖରୁ ଜମି କିଣିବା ମଧ୍ୟ ଆରମ୍ଭ କଲେ। ସଂପତ୍ତି ଉପରେ ବ୍ୟବସାୟୀମାନଙ୍କର ଅଧିକାର ବଢ଼ିଗଲା।

୧୮୪୦ ବେଳକୁ ଆଗ୍ରାରେ ମଧ୍ୟ କୌଣସି ମୁସଲମାନ ପରିବାରର ଜମି ନ ଥିଲା। ବ୍ୟବସାୟୀଙ୍କର ଏଇ ଦଖଲ ପାଇଁ କେତେକ ତେଲ ବ୍ୟବସାୟୀ ମଧ୍ୟ ମୁଣ୍ଡ ଟେକିଲେ।

ଉସ୍ତାଦ ଅହମ୍ମଦ ଓ ଉସ୍ତାଦ ହମିଦ ଭାରତୀୟ-ମୋଗଲ ସ୍ଥାପତ୍ୟ କଳାର ଉସ୍ତାଦମାନେ ସବୁ ଦୂରେଇଗଲେ।

କଲିକତାର ଦମଦମଠାରେ କ୍ୟାଟ୍ରିଜ ମରାମତି କରିବାର ଠିକଣା ହେଲା କମ୍ପାନୀ ଦ୍ୱାରା। କର୍ମଚାରୀମାନେ ଏପରି କାର୍ଯ୍ୟବ୍ୟସ୍ତତା ପାଇଁ ପ୍ରସ୍ତୁତ ନ ଥିଲେ। ଦକ୍ଷତା ମଧ୍ୟ ସେମାନଙ୍କର ନ ଥିଲା। ଫଳରେ ଅନେକ ଦୋଷତ୍ରୁଟି ଦେଖା ଦେଲା। ଦ୍ୱିତୀୟରେ ରାଇଫଲ ଗ୍ରିଂଡ଼ିଂ ପ୍ରଣାଳୀ ମଧ୍ୟ ଘୃଣା ଦାୟକ ଥିଲା। ଏଇଟାହିଁ ବିଶେଷ ପରିମାଣରେ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ବ୍ରିଟିଶ ବିରୁଦ୍ଧ ମୂଳମନ୍ତ୍ର ଥିଲା। ପରେ ଅବଶ୍ୟ ଚର୍ବିର ବ୍ୟବହାର ବଦଳାଗଲା କିନ୍ତୁ ମାନସିକ କ୍ଷତିପୂରଣ ହୋଇପାରିଲା ନାହିଁ।

ପୁଣି ଦେଖାଗଲା କି କମ୍ପାନୀ ସିପାହୀମାନଙ୍କ ଭିତରେ ଜାତିଆଣ ଭାବ ସୃଷ୍ଟିକରି ସମୁହ ଧର୍ମାନ୍ତକରଣ ଚେଷ୍ଟାରେ ଅଛି। କମ୍ପାନୀ ଯଦି କେବଳ ନୀଚଜାତିର ସିପାହୀମାନଙ୍କୁ ଏପରି ଧର୍ମାନ୍ତକରଣ ପାଇଁ ବାଛିଥାନ୍ତେ ତେବେ କଥା ଏତେ ଗୁରୁତର ହୋଇ ନଥାନ୍ତା। କମ୍ପାନୀ ଆଗ୍ରହ ଥିଲା ଉଚ୍ଚକୁଳର ହିନ୍ଦୁମାନଙ୍କୁ ସିପାହୀ କରି ସେମାନଙ୍କୁ ଧର୍ମାନ୍ତକରଣ କରିବାରେ। ତା' ବ୍ୟତିତ ନିୟମ କାନୁନ୍ ଓ ଦରମାରେ ମଧ୍ୟ ଏପରି ଭିନ୍ନ ଭିନ୍ନ ବାତାବରଣ ସୃଷ୍ଟି ହୋଇଥିଲା। ଭାରତୀୟ ସିପାହୀମାନଙ୍କ ପାଇଁ ସେ ନିୟମ ଲାଗୁ କରାଯାଇଥିଲା।

ଏ ବିଷୟ ହୃଦୟଙ୍ଗମ କରିଥିଲେ ସାର ଚାର୍ଲ୍ସ ନାପିୟାର। ଭାରତରେ ବ୍ରିଟିଶ ଶାସନ ଦୁର୍ବଳ ହୋଇଆସୁଛି ବୋଲି ସେ ଲର୍ଡ଼ ଡେଲହାଉସିଙ୍କ ପାଖକୁ ଚିଠି ଲେଖିଥିଲେ। କିନ୍ତୁ ତାଙ୍କଠାରୁ କୌଣସି ଉତ୍ତର ନ ପାଇ ସେ ନିଜେ ଚାକିରୀରୁ ଓହରି ଯାଇଥିଲେ। ପରେ ସିପାହୀମାନଙ୍କଠୁ ଅନ୍ୟାନ୍ୟ ଭତ୍ତା ମଧ୍ୟ ଛଡ଼େଇ ନିଆଗଲା। ଏଡ଼ୱାର୍ଡ଼ କାମ୍ପବେଲ ମଧ୍ୟ ଏହା ଅନୁଭବ କରିଥିଲେ। କାପ୍‌ଟେନ ରବର୍ଟ ଟାଇଲଟର ଜଣେ ଦକ୍ଷ ଅଫିସର। ଆଙ୍ଗ୍ଲୋ- ବରମିଜ ଯୁଦ୍ଧବେଳେ ସୈନ୍ୟବାହିନୀକୁ ସମୁଦ୍ରରେ ରେଙ୍ଗୁନ ଯିବାପାଇଁ ଡେଲହାଉସୀ ଆଦେଶ ଦେଲେ। ସୈନ୍ୟମାନେ ରେଙ୍ଗୁନ ଯିବାକୁ ରାଜିଥିଲେ ସତ କିନ୍ତୁ ସମୁଦ୍ରରେ ଯିବାପାଇଁ ଅନିଚ୍ଛୁକ ଥିଲେ। ଟାଇଟଲର ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କଲେ। ରାଗିଯାଇ ଡେଲହାଉସୀ ଢାକା ପର୍ଯ୍ୟନ୍ତ ପଦମାର୍ଚ୍ଚ କରି ଯିବା ପାଇଁ ଆଦେଶ ଦେଲେ ସୈନ୍ୟମାନଙ୍କୁ।

ଫଳରେ ୨୯ ତାରିଖ ମାର୍ଚ୍ଚ ବେଳକୁ ସୈନ୍ୟ ବିଭାଗର ଅସନ୍ତୋଷ ମନୋଭାବ ବଙ୍ଗଳାର ବାରାକପୁରରେ ଦେଖାଦେଲା। ମାଙ୍ଗଲ ପାଣ୍ଡେ ନାମକ ଜଣେ ସୈନିକ ପ୍ରତିବାଦର ସ୍ୱର ଉତ୍ତୋଳନ କଲେ। ସେ ଦୁଇଜଣ ଅଫିସରଙ୍କୁ

ଆଘାତ କଲେ । ବିଚାର ହେଲା ମାଙ୍ଗଲ ପାଣ୍ଡେଙ୍କର । ହସି ହସି ବୀରତ୍ୱକୁ କାଖେଇ କୋଳେଇ ଝୁଲିଲେ ଫାଶି ଖୁଣ୍ଟରେ ମାଙ୍ଗଲ ପାଣ୍ଡେ ।

ଏ ପ୍ରକାର ଅଶାନ୍ତି ଅମ୍ବାଲା ସୈନ୍ୟ ବିଭାଗରେ ମଧ୍ୟ ଲାଗିରହିଲା । ପୁଣି ବ୍ୟାପିଲା ମିରଟ ପର୍ଯ୍ୟନ୍ତ । ମିରଟର ସିପାହୀମାନେ ମଧ୍ୟ କ୍ରାଟ୍ରିଜ ବ୍ୟବହାର କରିବାକୁ ମନାକଲେ । କୋଟ-ମାର୍ଶଲ ଆଇନ ବଳରେ ୮୫ ଜଣ ସିପାହୀଙ୍କୁ ଦଣ୍ଡ ଦିଆଗଲା । ସେଇ ଦିନ ସଂଧ୍ୟାରେ ଏ ଆଦେଶ ନାମା ପ୍ଲାକାର୍ଡ଼ ଜରିଆରେ ମିରଟର ରାସ୍ତା ଘାଟରେ ଘୁରି ବୁଲିଲା । ଫଳରେ ଖ୍ରୀଷ୍ଟିୟାନମାନଙ୍କୁ ହତ୍ୟା କରିବା ପାଇଁ ମୁସଲମାନମାନେ ପ୍ରତିଜ୍ଞା କଲେ । ଏଇଟା ସୈନ୍ୟବିଭାଗର କାହାଣୀ ।

୧୦ମ ୧୮୫୭ ରାତିର ବିକଳ୍ପ ଯୋଜନା ସେନାବାହିନୀକୁ ଦୋହଲାଇ ଦେଲା ଆଉ ସେମାନେ ସେଇ ରାତିରେ ଦିଲ୍ଲୀ ଅଭିମୁଖେ ଯାତ୍ରା ଆରମ୍ଭ କଲେ ।

୧୮ ମେ ୧୮୫୭ ରମ୍‌ଜାନ ମାସ । ପ୍ରତ୍ୟେକ ମୁସଲମାନମାନଙ୍କ ପାଇଁ ପବିତ୍ର ମାସ । ସହଜେ ଖରାଦିନର ତାତି । ଜଫର ସକାଳର ନିତ୍ୟକର୍ମ ସାରି ଜଳଖିଆ ଖାଇ ବାହାରକୁ ଯିବା ପାଇଁ ପ୍ରସ୍ତୁତି ହେଉ୍ଥିଲେ । ଖବର ମିଳିଲା ଦୁର୍ଗ ଭିତରକୁ ଖୋଲା ଖଣ୍ଡା ଧରି ଅନେକ ଲୋକଙ୍କୁ ହତ୍ୟାକରି ମାଡ଼ି ଆସୁଛନ୍ତି ସିପାହୀ ଦଳ । ଜଫର ନିର୍ଦ୍ଦେଷ ଦେଲେ ସିଟି ଗେଟ ଦରଜା ସବୁ ବନ୍ଦ କରିଦିଅ । ଆଉ ପୋଲ ସବୁ ଭାଙ୍ଗି ଦିଅ ।

ଏ ଖଣ୍ଡାଧାରୀ ଦଳଙ୍କ ଭିତରେ ଥିଲେ ମିରଟ ଜେଲର କେତେକ ବନ୍ଦି ଗୁର୍ଜାର ଜନଜାତି ଓ ବାହାରର କେତେକ ବଦମାସ ଲୋକ ବି ।

ଡଗଲାସ ଏମାନଙ୍କ ସହିତ କଥାବାର୍ତ୍ତା କରିବାକୁ ଯିବାକୁ ଚାହିଁଲେ କିନ୍ତୁ ବାରଣ କଲେ ସମ୍ରାଟ । କାରଣ ଡଗଲାସ ନିଜେ ଥିଲେ ନିରସ୍ତ୍ର ।

ବିଦ୍ରୋହୀମାନେ ସହର ଭିତରକୁ ଆସି ସାରିଥିଲେ । ଚାରିଜଣ ଇଂରେଜ ଅଫିସର- ଥିଓ ମେଟକାଫ, ସାଇମନ ଫ୍ରେକର ଓ ଦିଲ୍ଲୀର ଦୁଇଜଣ ପ୍ରଧାନ ମାଜିଷ୍ଟ୍ରେଟ ସେଠାରେ ଉପସ୍ଥିତ ଥିଲେ । ବହୁ କଷ୍ଟରେ ଗେଟ ବନ୍ଦ କରାଗଲା । ସେତେବେଳେକୁ ବିଦ୍ରୋହୀମାନେ ହଣାକଟା ଆରମ୍ଭ କରିଦେଲେଣି । ଆଗରେ ଯେଉଁ ଖ୍ରୀଷ୍ଟିୟାନମାନଙ୍କୁ ପାଇଲେ ହତ୍ୟା କରିବା ଆରମ୍ଭ କରିଦେଲେ । ଅସମ୍ଭାଳ ହେଲା ଅବସ୍ଥା । ଦୋକାନୀମାନେ ଦୋକାନ ବନ୍ଦ କରିଦେଲେ । ଲୁଣ୍ଠନ ଆରମ୍ଭ ହୋଇଯାଇଥିଲା । ଦିଲ୍ଲୀର ସେନାଦଳ ମଧ୍ୟ ବିଦ୍ରୋହୀମାନେ ସହିତ ଯୋଗଦେଲେ ।

ଥିଓ ମେଟକାଫ ଆଶା କରିଥିଲେ କି ଏ ସେନାଦଳ ତାଙ୍କୁ ବଞ୍ଚାଇବେ। ଥିଓ ରାସ୍ତାରେ ଯାଉଥିଲେ। ରାସ୍ତା ପାଖ ଘରର ଛାତ ଉପରୁ ଟେକା ପଡ଼ିଲା। ଥିଓ ଘୋଡ଼ ଉପରୁ ପଡ଼ିଯାଇ ନାଳରେ ପଡ଼ିଗଲେ। ଫ୍ରେଜର ଓ ଜଣେ ମାଜିଷ୍ଟ୍ରେଟ କ୍ଷତବିକ୍ଷତ ହେବାପରେ ଗାର୍ଡ଼ ରୁମକୁ ଯାଇଁ ଗୋଟିଏ ମସ୍‌କେଟ ଗାର୍ଡ଼ ହାତରୁ ବନ୍ଧୁକ ଛଡ଼ାଇ ଆଣି ଗୁଳି କଲେ। ହଡଚିନସନ ଓ ଡଗଲାସ ଦୁଇଜଣ ଯାକ ଦ୍ରୁତଗତିରେ ପ୍ରାସାଦରୁ ପରିଖାକୁ ଡେଇଁ ପଡ଼ିଲେ। ହଡ଼ଚିନ୍‌ସନରଙ୍କର ପାଦଗଣ୍ଠି ବହୁତ ଜୋରରେ ଆଘାତ ପାଇଲା ଓ ଡଗଲାସ ମଧ୍ୟ ଆହତ ହେଲେ। ଫ୍ରେଜର ମୋଟା ଥିବା ହେତୁ ଡେଇଁ ପାରିଲେ ନାହିଁ। ସେ ସିପାହୀମାନଙ୍କୁ ଗୁଳି ଚଳାଇ ଚଳାଇ ବାହାରିଗଲେ ସତ କିନ୍ତୁ ଅଳ୍ପ ବାଟ ଗଲା ପରେ ସିପାହୀମାନେ ଓଲଟା ତାଙ୍କ ଉପରକୁ ଗୁଳି ଚଳାଇଲେ। କିଛି ଗୁଳି ତାଙ୍କ ଦେହରେ ବାଜିଲା। କିଛି ସମୟ ପରେ ହଠାତ୍ ସେ ନିଜକୁ ଜେନିଂସ୍, ତାଙ୍କ ଝିଅ ଆନି ଓ କ୍ଲିୟୋଫୋର୍ଡ଼ଙ୍କ ଗହଣରେ ଦେଖିଲେ। ହୁଏତ ସିପାହୀଙ୍କ ଗୁଳିମାଡ଼ରେ ସେ ଚେତା ହରାଇ ଦେଇଥିଲେ।

କିଛି ସମୟ ପରେ ଫ୍ରେଜର ନିଜେ ସୁସ୍ଥ ହୋଇ ଅନ୍ୟମାନଙ୍କୁ ସୁସ୍ଥ କରାଇଲେ। ସାଙ୍ଗେ ସାଙ୍ଗେ ଜଫରଙ୍କୁ ଆଦେଶ ଦେଲେ କି ଖଣ୍ଡାଧାରୀ ଗାର୍ଡ଼ ସହ ଦୁଇଟା ପାଲିଙ୍କି ପଠାଇବା ପାଇଁ।

ଏ ଆଦେଶ ପାଳନ ହେଲା ପୂର୍ବରୁ ସିପାହୀମାନେ ହଡ଼ଚିନସନଙ୍କ ଛଡ଼ା ଆଉ ସମସ୍ତଙ୍କୁ ହତ୍ୟା କରିସାରିଥିତଲେ। ଏପରିକି ଦୁଇ ମହିଳାଙ୍କୁ ମଧ୍ୟ ହତ୍ୟା କରିସାରି ଥିଲେ। ଆଉ ହତ୍ୟା କରିଥିଲେ ଚମନଲାଲଙ୍କୁ ମଧ୍ୟ।

ଧାର୍ମିକ ପ୍ରବୃତ୍ତିର ଇସାରା ଦେଇ ଯେଉଁ ବ୍ରିଟିଶଲୋକମାନେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ, ସିପାହୀମାନେ ସେମାନଙ୍କୁ ହତ୍ୟ ନ କରି ଛାଡ଼ି ଦେଇଥିଲେ। ହେଲେ ଯେଉଁ ଭାରତୀୟ ଖ୍ରୀଷ୍ଟିୟାନ ହୋଇଯାଇଥିଲେ ସେମାନଙ୍କୁ ହତ୍ୟା କଲେ।

କମ୍ପାନୀର ଜଣେ ସୈନ୍ୟ ମୁସଲମାନ ଧର୍ମ ଗ୍ରହଣ କରିଥିଲେ। ନାଁ ଅବଦୁଲା ବେଗ। ସେ ବିଦ୍ରୋହୀମାନଙ୍କର ନେତା ବନି ସାରିଥିଲେ।

ଜଫରଙ୍କୁ ସୈନ୍ୟମାନେ କହିଲେ "ଆମେ ଏକତ୍ର ହୋଇଛୁ ଧର୍ମରକ୍ଷା ପାଇଁ"। ଏ ବିଦ୍ରୋହ ପଛରେ ଅନ୍ୟାନ୍ୟ ଅନେକ କାରଣ ଥିଲେ ମଧ୍ୟ କେବଳ ଧର୍ମ ଉପରେ କମ୍ପାନୀ ତରଫରୁ ହୋଇଥିବା ଅନ୍ୟାୟ ବିରୁଦ୍ଧରେ ହୋଇଛି।

ଚାନ୍ଦନୀଚୌକର ବଡରାହା ଉପରେ ଠିଆହୋଇ ଜନତାଙ୍କୁ ପ୍ରଶ୍ନ ପଚାରୁଥିଲେ। "ଭାଇମାନେ ଆପଣମାନେ ବିଶ୍ୱାସକୁ ସମର୍ଥନ କରୁଛନ୍ତି କି ? ଯେଉଁ ଇଂରେଜମାନେ ଇସଲାମ ଧର୍ମ ଗ୍ରହଣ କରିଥିଲେ, ସେମାନେ ଜଣେ ହେଲେ ବି ଆଘାତ ପାଇଲେ ନାହିଁ। କିନ୍ତୁ ଯେଉଁ ଭାରତୀୟମାନେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ସେମାନେ ନିଜେ ନିଜେ ଦୂରେଇ ଗଲେ।

ଜଫର ନିଜେ ମଧ୍ୟ ଏ ଆନ୍ଦୋଳନକୁ ଧର୍ମଜନିତ ଯୁଦ୍ଧ ବୋଲି ଘୋଷଣା କଲେ। ଜଫରଙ୍କ ଦସ୍ତଖତ ଥାଇଁ ତାଙ୍କ ପୁଅ ଗୋଟେ ଇସ୍ତାହାର ଛପାଇଲେ। ଭାରତର ସବୁ ରାଜା, ରାଜପୁତ୍ରମାନଙ୍କୁ ପଠାଇଥିଲେ। ଏଇ ଆନ୍ଦୋଳନରେ ଭାଗ ନେବା ପାଇଁ। ସବୁ ଧର୍ମର ଲୋକେ ବ୍ରିଟିଶରଙ୍କ ଶାସନ ପଦ୍ଧତିରେ ଆତଙ୍କିତ ହୋଇଥିଲେ। ବିଶେଷକରି ସତୀଦାହ ପ୍ରଥାର ବିରୁଦ୍ଧାଚରଣ, ଧର୍ମାନ୍ତକରଣ ଓ ପୈତୃକ ସଂପତ୍ତି ଉପରେ ଇଂରେଜଙ୍କର ହସ୍ତକ୍ଷେପ ଏ ସତ୍ୟାଗ୍ରହର ମୂଳ କାରଣ ଥିଲା। ଦିଲ୍ଲୀ ଉର୍ଦ୍ଦୁ ଆକବର ପତ୍ରିକାରେ ମୌଲବୀ ମହମ୍ମଦ (ଯୁବକବି ମହମ୍ମଦ ଆଜାଦଙ୍କ ପିତା) ଏକ ଲେଖା ଲେଖିଥିଲେ। ଏ ଲେଖାର ମର୍ମ ହେଲା– ଜଣେ ସ୍ୱପ୍ନ ଦେଖିଥିଲା କି ପ୍ରଫେଟ ମହମ୍ମଦ ଜିସସ୍‌ଙ୍କୁ କହିଲେ ତୁମ ଅନୁଗ୍ରହକାରୀମାନେ ମୋ' ନାଁର ଶତ୍ରୁ ହୋଇଯାଇଛନ୍ତି ଓ ଧର୍ମ ନଷ୍ଟ କରିଦେବାକୁ ବସିଛନ୍ତି। ଉତ୍ତରରେ ଜିସସ୍ କହିଲେ କି, ବ୍ରିଟିଶରମାନେ ମୋର ଅନୁଗ୍ରହକାରୀ ନୁହଁନ୍ତି ସେମାନେ ମୋ ପ୍ରଦର୍ଶିତ ରାସ୍ତାକୁ ବିଶ୍ୱାସ କରନ୍ତି ନାହିଁ। ସେମାନେ ସୈତାନର ରାସ୍ତା ବାଛି ନେଇଛନ୍ତି।

କେତେକ ଲୋକ କହନ୍ତି ଯେ ଯେଉଁଦିନ ସେନାଦଳ ଦିଲ୍ଲୀକୁ ଆସିଲେ। ଦଳେ ଓଟ ଆଗେ ଆଗେ ଯାଇଥିଲେ। ଏ ଓଟମାନଙ୍କ ଉପରେ ଶାଗୁଆ ପୋଷାକ ଧାରୀ ସୈନିକ ବସିଥିଲେ। ଏ ପୋଷାକଧାରୀ ସୈନ୍ୟମାନେ ହଠାତ୍ ଉଭେଇ ଯାଇଁ ଇଂରେଜ ଲୋକଙ୍କୁ ଗାଜର ବା ମୂଳା ପରି କାଟିଦେଲେ।

ସତରେ ଏକା ଇଂରେଜମାନେ ତାଙ୍କର ନିଜର ଆତ୍ମଗାରିମା ପାଇଁ କଷ୍ଟ ପାଉଥିଲେ। ସେଥିପାଇଁ ସ୍ୱର୍ଗୀୟ ପ୍ରତିଶୋଧର ନିଆଁ ଜଳି ଉଠିଲା। ପବିତ୍ର କୋରାନ ଭାଷାରେ "ଭଗବାନ ଆତ୍ମଗାରିମା ଭଲ ପାନ୍ତି ନାହିଁ।

ଏ ସବୁ ଧର୍ମନୀତିର କୌଣସି ଅଭାବ ନଥିଲା। କେବଳ ଦିଲ୍ଲୀକୁ ରକ୍ଷାକରିବାର ନେତୃତ୍ୱର ଅଭାବ ଥିଲା। ଦିଲ୍ଲୀ କବଜା କରିବାର ଠିକ୍ ପୂର୍ବରୁ ବ୍ରିଟିଶରଙ୍କ ଦ୍ୱାରା ପ୍ରତିବାଦର ସ୍ୱର ଉଠିଲା। ଜଫରଙ୍କ ନାଁରେ ଏକ ଘୋଷଣାପତ୍ର

ଜରିଆରେ କୁହାଗଲା କି "ଏହା ଏକ ଧର୍ମଯୁଦ୍ଧ, ଧର୍ମର ବିଶ୍ୱାସକୁ ଆଘାତ କରୁଛି। ଦିଲ୍ଲୀ ଲୋକ ଜାଣିବା ଅତି ଜରୁରୀ କି, ଏ ପରିପ୍ରେକ୍ଷୀରେ ନିଜ ନିଜର ବିଶ୍ୱାସ, ଜାତି, ଧର୍ମକୁ ରକ୍ଷା କରିବା ସମସ୍ତଙ୍କର ଧର୍ମ।" ଆହୁରି ଦଳେ ବାହାରିଲେ ଯେଉଁମାନେ ନିଜକୁ ମୁଜାହେଦିନ ବା ଯୋଦ୍ଧା ବୋଲି ଘୋଷଣା କଲେ। ୧୮୫୭ର ବିଦ୍ରୋହରେ ମୁଜାହେଦିନ ଯୋଗ ଦେଲେ। ସେମାନଙ୍କୁ କେବଳ ଶସ୍ତ୍ରଧାରୀ ମୁସଲମାନ ବୋଲି କୁହାଗଲା। ସେମାନଙ୍କ ଭିତରେ ବୁଣାକାର, ଶିଳ୍ପକାର ଓ ଅନ୍ୟାନ୍ୟ ଦିନମଜୁରିଆମାନେ ଭାଗ ନେଇଥିଲେ। କାଫେରମାନଙ୍କ କବଳରୁ ଦାରୁ-ଉଲ-ଇସଲାମକୁ ରକ୍ଷା କରିବା ତାଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା ଏଇ ମୁଜାହେଦିନମାନେ ଆନ୍ଦୋଳନର ତୃତୀୟ ଦିନରେ, ବଡ଼ ବଡ଼ ହାବେଲି, ଧନୀ ଲୋକଙ୍କର ଘର ନଷ୍ଟ କରିବାକୁ ଲାଗିଲେ। କାରଣ ସେମାନଙ୍କର ବିଶ୍ୱାସ ଥିଲା, ସେମାନେ ଖ୍ରୀଷ୍ଟିୟାନମାନଙ୍କୁ ଆଶ୍ରୟ ଓ ପ୍ରଶୟ ଦେଉଛନ୍ତି।

ସାମ୍ବାଦିକ ଜୱାନଲାଲଙ୍କ ଲେଖା ଅନୁସାରେ ଜିହାଦିମାନେ ମେ ୧୫ ବେଳକୁ ଦିଲ୍ଲୀରେ ଥିଲେ। ସେତିକିବେଳେ ସୁପ୍ତି ସାଦ୍ରୁଦିନ ଅର୍ଜୁଦାଙ୍କର ବିଚାର ଚାଲିଥିଲା। ଅର୍ଜୁଦାଙ୍କର ଦୋଷ ଥିଲା କି ସେ ଜିହାଦିମାନଙ୍କୁ ପ୍ରତ୍ୟକ୍ଷ ଭାବରେ ସାହାଯ୍ୟ କରୁଛନ୍ତି।

ଜିହାଦିମାନେ ଜାମା ମସଜିଦ୍ ଆଉ ଜିନତ୍-ଉଲ-ମସଜିଦରେ ବସବାସ ପାଇଁ କ୍ୟାମ୍ପ ପକାଇଲେ।

ମେ ୧୯ରେ ଦିଲ୍ଲୀରେ ଜଣେ ଇମାମ୍ ମୌଲବୀ ମହମ୍ମଦ ସୟଦ ଏ ଆନ୍ଦୋଳନକୁ ଏକ ରୂପ ଦେବା ପାଇଁ ଲେଖିଲେ କି ଏହା ଏକ ଧର୍ମଯୁଦ୍ଧ। ଜଫର ସଙ୍ଗେ ସଙ୍ଗେ ଏହାର ବିରୋଧ କଲେ ଓ କହିଲେ ଏହା ହିନ୍ଦୁମାନଙ୍କ ପାଇଁ ଧର୍ମାନ୍ଧତା ହେବ। ୨୦ ତାରିଖରେ ଖବର ଆସିଲା କି ଦିଲ୍ଲୀ ଫିଲ୍ଡ ଫୋର୍ସ ଅମ୍ବାଲାରେ ପହଞ୍ଚି ଯାଇଛନ୍ତି, ମୌଲବୀ ଜଫରଙ୍କ ବିରୁଦ୍ଧରେ ଘୋଷଣା କରି କହିଲେ କି ହିନ୍ଦୁମାନେ ବ୍ରିଟିଶର ସମର୍ଥକ। ତେଣୁ ଜିହାଦିମାନଙ୍କର ସଂଗ୍ରାମକୁ ଧର୍ମଯୁଦ୍ଧ ବୋଲି କହିବା ହିତାହିତ। ଏହାକୁ ବିରୋଧକରି ଦିଲ୍ଲୀ ହିନ୍ଦୁମାନେ ଦୁର୍ଗ ଆଗରେ ପ୍ରତିନିଧିତ୍ୱ କଲେ। ଶେଷରେ ଜଫର କହିଲେ କି ଏ ସଂଗ୍ରାମ ହିନ୍ଦୁମାନଙ୍କ ବିରୁଦ୍ଧରେ ନ ଯିବା ପାଇଁ ମୁଁ ଆଦେଶ ଦେଉଛି। ସେମାନଙ୍କ ଯୁଦ୍ଧ କାଫେରମାନଙ୍କ ବିରୁଦ୍ଧରେ; ହିନ୍ଦୁଙ୍କ ବିରୁଦ୍ଧରେ ନୁହେଁ।

ସୟଦ ମୁବାରକ ସାହା ଜଣାଇଲେ ସେମାନେ ଲୁଣ୍ଠନ ଚାହାଁନ୍ତି। ଯାହା ଫଳରେ ପ୍ରାୟ ୫୦୦୦ ଜେହାଦୀ ଯୁଦ୍ଧ ଟାଙ୍ଗିଆ ଧରି ଦିଲ୍ଲୀରେ ପହଞ୍ଚିଲେ। ପୋଷାକ ଥିଲା ନୀଳ, ଟୋପି ଥିଲା ଶାଗୁଆ। ସେମାନେ ଜଫର ପାଖରେ ଫେରାଦ ହେଲେ। କହିଲେ, ଆମେ ଅନେକ ସାହସ ବାନ୍ଧି ଏତେ ଆଗେଇ ଆସିଛୁ ହେଲେ ଆମ କାମର କୌଣସି ସମର୍ଥନ ନାହିଁ। ଆମେ ଚାହୁଁଛୁ କେବଳ ଆମ କାମ ସମର୍ଥନ। ପ୍ରାୟ ୧୫ ଦିନପରେ ଏକ ପେଟିସନ ଜଫରଙ୍କ ନିକଟରେ ପହଞ୍ଚିଲା ଯେ ଜିହାଦୀମାନଙ୍କୁ ଛାଡ଼ି ସିପାହୀମାନେ କାଫେରଙ୍କ ପକ୍ଷ ନେଇଛନ୍ତି। ସବୁ କଥାକୁ ଆଲୋଚନା କରି ଜଣାଗଲା ଯେ ମୁଜାହେଦନ ଓ ଦିଲ୍ଲୀ ବାସୀଙ୍କ ମଧ୍ୟରେ ଅବିଶ୍ୱାସ ଥିଲା। ଆଉ ସେଥିପାଇଁ ଅନ୍ୟାନ୍ୟ ଅନେକ କାରଣରୁ ମତଭେଦ ହେଉଥିଲା ଦୁଇ ସମ୍ପ୍ରଦାୟ ଭିତରେ। ଇଦପର୍ବ ପାଖେଇ ଆସୁଥିଲା। ସବୁବେଳେ ନଜର ଦିଆଯାଉଥିଲା କି ସମ୍ପ୍ରଦାୟିକ ଗଣ୍ଡଗୋଳ ଯେପରି ଦୁଇ ଦଳ (ହିନ୍ଦୁ ଓ ମୁସଲମାନ)ଙ୍କ ଭିତରେ ନ ଘଟେ। କିନ୍ତୁ ସେ ଥର ଜିହାଦିମାନେ ନିଜ ତରଫରୁ ଆଗେଇ ଆସି ହିନ୍ଦୁଙ୍କ ଭାବନାରେ ଆଘାତ କଲେ। ଠିକ ପରେ ପରେ ୧୯ ଜୁଲାଇରେ କେତେକ ହିନ୍ଦୁ ସିପାହୀ ଗୋ ବଧ ବନ୍ଦ କରିବାକୁ ଯାଇ କେତେକ ମାଂସ କଟାଳିଙ୍କୁ ହତ୍ୟା କଲେ। ଜଫରଙ୍କ ଏପରି ଘଟଣାକୁ ଭୟ ଥିଲା। ସେଥିପାଇଁ ସେ ସାହସର ସହିତ ସହରରେ ଗୋ ହତ୍ୟା ବନ୍ଦ ରଖିବାକୁ ଆଦେଶ ଦେଲେ। କହିଲେ ଗୋ ବଧ କରିବା ଲୋକଙ୍କୁ ଗୁଳିମାରି ହତ୍ୟା କରାଯିବ। ହାଫିଜ ଅବଦୁଲ ରହମାନ ନାମକ ଜଣେ ବ୍ୟକ୍ତିଙ୍କୁ ଅଟକ ରଖାଗଲା। ସେ ଦରବାରରେ ଆପତ୍ତି ଜଣାଇଲା କି ସିପାହୀମାନେ ତାର ଅସଲ ବ୍ୟବସାୟ ବନ୍ଦ କରିଦେବା ପରେ ସେ କବାବ-ଗ୍ରିଲ କରିବା ବ୍ୟବସାୟକୁ ଆପଣାଇ ନେଇଥିଲା। କିନ୍ତୁ ସେ ନିଜେ ଗୋ ମାଂସ କଟାଳି ନ ଥିଲା। ସବୁ ଶୁଣି ମଧ୍ୟ ତାକୁ ମୁକ୍ତି ମିଳିଲାନି।

ଗୋବଧ ବନ୍ଦ କରିବାକୁ ଯାଇଁ ସବୁ ଗାଇକୁ ରେଜେଷ୍ଟ୍ରିଭୁକ୍ତ କରି ସେମାନଙ୍କୁ ପୋଲିସ ଷ୍ଟେସନରେ ରଖିବା ପାଇଁ ଆଦେଶ ହେଲା। ଜେହାଦୀମାନଙ୍କୁ ବନ୍ଦ କରିବା ପରିବର୍ତ୍ତେ ଗାଈମାନଙ୍କୁ ବନ୍ଦୀ କଲେ।

ମୌଲବୀ ମହମ୍ମଦ ବକର ତାଙ୍କ ପତ୍ରିକାରେ ହିନ୍ଦୁମାନଙ୍କୁ ପ୍ରୋତ୍ସାହନ ଦେବା ପାଇଁ ରାମାୟଣରେ ରାବଣର ରାଜ୍ୟ ଧ୍ୱଂସ ହେବାର ଉଦାହରଣ ଦେଇ ଲେଖା ପ୍ରକାଶ କରିଥିଲେ। ସାହସ ପାଇଲେ ହିନ୍ଦୁ। ପଣ୍ଡିତ ହରିଶ୍ଚନ୍ଦ୍ର ନାମକ ଜଣେ

ବ୍ରାହ୍ମଣ ଆଗେଇ ଆସି କହିଲେ; 'ଜ୍ୟୋତିଷ ଶାସ୍ତ୍ର ବଳରେ ମୁଁ କହୁଛି କି ହିନ୍ଦୁମାନଙ୍କ ଘୋଡ଼ା ଟାପୁ ସବୁ ବ୍ରିଟିଶ ରକ୍ତରେ ରଞ୍ଜିତ ହେବ।

ଖ୍ରୀଷ୍ଟିୟାନମାନଙ୍କ ଚିନ୍ତା ତ ଅନ୍ୟରକମର। ସେମାନେ ତ ଭାରତକୁ ଶାସନ କରିବା ଇଚ୍ଛାରେ ଆସିଥିଲେ। କିନ୍ତୁ ବର୍ତ୍ତମାନ ଭାରତବାସୀଙ୍କୁ ଧର୍ମାନ୍ତକରଣ କରିବାରେ ଲାଗିପଡ଼ିଛନ୍ତି।

ହରବଟ ଏଡ଼ୱାର୍ଡ଼ ପେଶୱାରରେ କମିଶନର ଥିଲେ। ସେ ବିଶ୍ୱାସ କରୁଥିଲେ କି ଭଗବାନ ତାଙ୍କୁ ଭାରତବର୍ଷ ଦାନ ସୂତ୍ରରେ ଦେଇଛନ୍ତି। ଲର୍ଡ଼ କେନିଂଙ୍କ ଭାଷାରେ ମୁସଲମାନମାନଙ୍କ ସମ୍ପତ୍ତି କୋହିନୁର ଡାଇମଣ୍ଡ ଥିଲା। ଧର୍ମାନ୍ତକରଣ ହେଲେ କୋହିନୁର ଡାଇମଣ୍ଡ ପରି ଉତ୍କୃଷ୍ଟ ଧର୍ମ ସେମାନେ ପାଇବେ। ଏ ବିଦ୍ରୋହ ପାଇଁ, ଇଂରେଜ ସ୍ତ୍ରୀ ଲୋକ ଓ ପିଲାଙ୍କର ଦିଲ୍ଲୀ ଓ କାନପୁରରେ ହତ୍ୟା ହେବା ଆହୁରି ଭୟଙ୍କର ରୂପ ନେଲା। "ଦିଲ୍ଲୀ ଗେଜେଟ"ର ସମ୍ପାଦକ ଜର୍ଜ ୱାଗନଟ୍ରାଇବ୍ରେଟ ଦିଲ୍ଲୀ ଛାଡ଼ି ଚାଲିଗଲେ। କାରଣ ସେ ଚାହୁଁଥିଲେ, ଖ୍ରୀଷ୍ଟିୟାନମାନେ ଭଗବାନଙ୍କୁ ଆନ୍ଦୋଳନକାରୀମାନଙ୍କୁ ଚକ୍ରାନ୍ତ କରି ପ୍ରତିଶୋଧ ନେବାପାଇଁ ପ୍ରାର୍ଥନା କରନ୍ତୁ। ପାଦ୍ରୀ ରୋଟନ ମଧ୍ୟ ଏ ବିଶ୍ୱାସକୁ ବଢ଼େଇ ଦେଲେ। ଆନ୍ଦୋଳନକାରୀମାନେ ଅନୁମାନ କରି ପାରିଲେ ନାହିଁ କି ଏ ଯୁଦ୍ଧର ନିୟମ ହିଁ ସତ୍ୟ ଓ ମିଥ୍ୟାର ଯୁଦ୍ଧ। କାରଣ ସେମାନେ ଅନ୍ଧକାରର ରାସ୍ତା ବାଛି ନେଇଛନ୍ତି। ଆଉ ସେମାନେ ବିଜୟ ହାସଲ କରିପାରିବେ ନାହିଁ। ଏହି ବିସ୍ଫୋରଣ ସମୟରେ ଉତ୍ତର ଭାରତର ସାଂସ୍କୃତିକ ପ୍ରାଣ ଦିଲ୍ଲୀ ଥିଲା। ମୋଗଲଙ୍କର ସ୍ମୃତିଚିହ୍ନର ମୁଖ୍ୟ ଦର୍ଶନୀୟ ସ୍ଥାନ ବୋଲି ଗଣାଯାଉଥିଲା।

ହିନ୍ଦୁ ବିପ୍ଳବୀ ନେତାଙ୍କ ଭିତରେ ଥିଲେ ଝାନ୍ସିର ରାଣୀ, ତାନ୍ତିଆ ଟୋପେ, ଜିହାଦିମାନଙ୍କ ପରି ଅଣବ୍ରିଟିଶ ଅନେକ ଉଲମା ଓ ମୁଜାହିଦମାନଙ୍କୁ ଗିରଫ କଲେ। ସେମାନଙ୍କ ମଧ୍ୟରେ ମୌଲନା ଫଜଲ ହକ୍ ମଧ୍ୟ ଥିଲେ। ବିଦ୍ରୋହୀ ଦଣ୍ଡରେ ଦଣ୍ଡିତ ହୋଇ ଆଣ୍ଡାମାନ ଦ୍ୱୀପର ଜେଲଦଣ୍ଡ ଭୋଗିଲେ। ଅନେକ ମୁସଲମାନ ବୁଦ୍ଧିଜିବୀ ମଧ୍ୟ ଗିରଫ ହୋଇ ଆଣ୍ଡାମାନ ଗଲେ। ୧୮୫୭ ବିଦ୍ରୋହର ଜିହାଦିମାନେ ଭାରତକୁ ବିଦେଶୀ ଶାସନରୁ ସିପାହୀମାନଙ୍କ ଭଳି ମୁକ୍ତ କରିବାକୁ ଚାହିଁଥିଲେ ଓ ଲଢ଼େଇ କରିଥିଲେ। ଜିହାଦିମାନେ ଯୋଦ୍ଧା ଓ ଶହୀଦ ହୋଇ ବିଦେଶୀ ଶାସନରୁ ମୁକ୍ତ ହେବାକୁ ଚାହିଁଥିଲେ। ରାସ୍ତା ଅଲଗା କିନ୍ତୁ ଉଦ୍ଦେଶ୍ୟ ଏକ। ସମସ୍ତେ ବିଦ୍ରୋହ ରାସ୍ତାର ପଥିକ।

ବ୍ରିଟିଶଙ୍କୁ ସାହାଯ୍ୟ କରିବା ଦୋଷରୁ ଗୋରଖପୁର ରାଣୀ ଦିଗମ୍ବର କୌରଙ୍କୁ ହତ୍ୟା କରାଯାଇଥିଲା। ଅନ୍ୟ କେତେକ ରାଜା ଜମୀଦାର ଓ ତାଲୁକଦାର ମଧ୍ୟ ସମଦଶା ଭୋଗିଥିଲେ। ବୁରେ ଖାଁ ଯେ ବ୍ରିଟିଶ ରାଜକୋଷ ରକ୍ଷା କରିବା ପାଇଁ ଚେଷ୍ଟା କରିଥିଲେ ତାଙ୍କୁ ମଧ୍ୟ ହତ୍ୟା କଲେ ସିପାହୀମାନେ। କେତେକ ଜାଟଦଳଙ୍କୁ ମଧ୍ୟ ହତ୍ୟା କଲେ କାରଣ ସେମାନେ ଥିଲେ ବ୍ରିଟିଶ ଘାଟ ଜଗୁଆଳି। ବସ୍ତର ରାଣୀ ବିଦ୍ରୋହୀମାନଙ୍କ ବିରୁଦ୍ଧରେ ଯିବାରୁ ତାଙ୍କୁ ମଧ୍ୟ ଲୋପ କରିଦେଇଥିଲେ। ଏ ରାଣୀଙ୍କୁ ବ୍ରିଟିଶ କିଛି ଜମି ଦାନ କରିଥିଲେ। କେତେକ କାରଣ ମଧ୍ୟ ଏ ପ୍ରକାର ବିଦ୍ରୋହର ପଛରେ ମହଜୁଦ୍ ଥିଲା।

୧୮୦୬ରେ ଭେଲୋରଠାରେ ବିଦ୍ରୋହ ହେଲା। ୧୮୫୦ରେ ଆମିରିକାର ଖବର କାଗଜ "ନିଉୟର୍କ ଡେଲି ଟ୍ରିବ୍ୟୁନ"ରେ ମାର୍କ୍ସ ଓ ଏନ୍‌ଜେଲ କେତେକ ବ୍ୟାଙ୍ଗପୂର୍ଣ୍ଣ ଲେଖା ଏ ବିଦ୍ରୋହକୁ ବିଷୟବସ୍ତୁ କରି ଲେଖିଥିଲେ। ପ୍ରଥମ ମହାଯୁଦ୍ଧ ପରେ ଯେଉଁ ଅର୍ଥନୈତିକ ସଙ୍କଟ ଇଉରୋପ ଓ ଆମେରିକାକୁ ସେଇ ସମୟରେ ଦୋହଲାଇ ଦେଇଥିଲା ତାର ଏକ ଅର୍ଥପୂର୍ଣ୍ଣ ଲେଖା ୧୮୫୭ ଜୁନ ୩୦ ତାରିଖରେ ମାର୍କ୍ସ ଲେଖିଥିଲେ। ସେଥିରେ ଭାରତ ଅଧିକରଣ ଓ ବଶିଭୂତ କରିବା ଲେଖାଥିଲା। ଇଷ୍ଟ ଇଣ୍ଡିଆ କମ୍ପାନୀ ଦ୍ୱାରା ଭାରତଭୂମି ଅଧିକାର, ରାଜା ଓ ରାଜାମାନଙ୍କ ମଧ୍ୟରେ ଅର୍ନ୍ତଦ୍ୱନ୍ଦ, ଧର୍ମ, ଜାତି, ଜନଜାତି ସମ୍ପ୍ରଦାୟର ପ୍ରଭେଦ ଜାଣି ତାର ସୁଯୋଗ ନେଲେ। ବ୍ରିଟିଶଙ୍କର କୃଷି ଉପରେ ଜଳସେଚନ ଯୋଜନା ସବୁ ଫଳପ୍ରଦ ହୋଇପାରିଲା ନାହିଁ। ଆଉ ଭାରତୀୟ ଜନତା ଭୋକ ଉପାସରେ ଦିନ କାଟିଲେ। ହସ୍ତତନ୍ତ-ବୁଣାକାରମାନଙ୍କର ଆଞ୍ଚଳିକ କାରଖାନା ବନ୍ଦ କଲେ। ବଦଳରେ ବିଦେଶୀ ବସ୍ତ୍ର, ଖାଦ୍ୟ ଶସ୍ୟ, ଏପରିକି ଲୁଣ ମଧ୍ୟ ଭାରତ ବଜାରକୁ ପ୍ଲାବିତ କଲା। ଜମିଜମାର ଉତ୍ତରାଧିକାରୀ ସୂତ୍ର ବଦଳାଇ ଦେଲେ। ଜମି ଉପରେ କର ବସାଇ ଜମିଦାରୀ ଓ ରୟତଗିରି ଯୋଜନା ବଜାୟ ରଖିଲେ।

ଦୁଇଟି ଏକକ ଘୋଷଣାନାମା ଜାରି କଲେ। ଅତ୍ୟଧିକ ପରିମାଣରେ କର, ସବୁ ଉଚ୍ଚ ଉଚ୍ଚ ପଦବୀମାନଙ୍କରେ ଇଂରେଜମାନଙ୍କର ଏକଚାଟିଆ ଅଧିକାର ଥିଲା।

ଫିରୋଜସାହଙ୍କ ଦ୍ୱାରା ଅଜିମଗଡ଼ର ଘୋଷଣାନାମା କରାଯାଇଥିଲା। ଲେଖା ଥିଲା "ଭାରତୀୟମାନଙ୍କ ଉପରେ ଇଂରେଜଙ୍କର ବଞ୍ଚକତା, ଅତ୍ୟାଚାର ଓ ଜୋରଜବରଦସ୍ତି ମନୋଭାବ ଯୋଗୁଁ ହିନ୍ଦୁ ଓ ମୁସଲମାନ ନଷ୍ଟ ଭ୍ରଷ୍ଟ ହୋଇଯାଇଛନ୍ତି।

ବର୍ତ୍ତମାନର ଏ ଯୁଦ୍ଧ (ଇଂରେଜମାନଙ୍କ ବିରୁଦ୍ଧରେ)ଧର୍ମ ଜାତି ନିର୍ବିଶେଷରେ ନିଜ ନିଜ ଭିତରେ ହାତମିଳାଇ ମୋଗଲ ସେନାରେ ସାମିଲ ହୁଅନ୍ତୁ। କିନ୍ତୁ ସାଧାରଣ ଜନତାଙ୍କ ମନରେ ହସ୍ତଶିଳ୍ପ ଓ ଜମି ସଂକ୍ରାନ୍ତିୟ ଆଇନର କୌଣସି ପ୍ରଭାବ ପଡ଼ି ନ ଥିଲା। କିନ୍ତୁ ଧର୍ମ ଜନିତ ଅତ୍ୟାଚାର ପାଇଁ ସେମାନେ ପ୍ରପୀଡ଼ିତ ହୋଇଥିଲେ।

ସିପାହୀ ବିଦ୍ରୋହର ମୂଳ କାରଣ ଥିଲା ଧର୍ମ।

## ବିଷ୍ଣୁ ଭଟ୍ଟଙ୍କ କାହାଣୀରେ ସିପାହୀ ବିଦ୍ରୋହ

''ଯାହା ଦେଖିଥିଲେ ବେନି ନୟନେ, ଅନୁଭବି ଥିଲେ ହୃଦୟ ମନେ ଅଗଲିଭା କଥା ଲେଖିଯାଇଥିଲେ କଲମ ମୂନେ।'' ବାଲକଷ୍ଣ ଭଟ୍ଟ ଓ ରାଧାବାଇଙ୍କ ସନ୍ତାନ ବିଷ୍ଣୁ ଭଟ୍ଟ ଭରସାଇକର ୧୮୨୭ରେ ଭରସାଇ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ। ସେ ୧୮୫୬ରୁ ୧୮୫୦ ପର୍ଯ୍ୟନ୍ତ ଗଙ୍ଗା ଉପକୂଳବର୍ତ୍ତୀ ଅଞ୍ଚଳକୁ ନିଜର ଜୀବିକା ଉପାର୍ଜନ ଉଦ୍ଦେଶ୍ୟରେ ଯାଇଥିଲେ। ପରିବାରର କରଜ ସୁଝିବା ପାଇଁ। ଭ୍ରମଣ ସମୟରେ ତାଙ୍କର ନିଜର ଅନୁଭୂତିକୁ ହସ୍ତଲିପି କରିବାର ଆଗ୍ରହ ପାଇଁ ଲେଖିଗଲେ ସତ, ଏହାକୁ ପ୍ରକାଶ କରିବାର ସାହସ କରି ନଥିଲେ ଠିକ୍ ସେହିବେଳରେ। ସେ ନିଜେ ବି ଜାଣି ନଥିଲେ କି ତାଙ୍କ ଜୀବିକା ଓ ଜୀବନ ସହିତ ଦେଶର ଇତିହାସ ଏପରି ଭାବରେ ଜଡ଼ିତ ହୋଇଯିବ ବୋଲି।

୧୯୦୦ ଶତାବ୍ଦୀର ମଧ୍ୟଭାଗକୁ ଇଷ୍ଟ-ଇଣ୍ଡିଆ କମ୍ପାନୀର କର୍ତ୍ତୃତ୍ୱ ଭାରତର ଚାରିଦିଗକୁ ଖେଳିଯାଇଥିଲା। ସେମାନେ ଆଉ ବ୍ୟବସାୟୀ ନଥିଲେ– ଥିଲେ ଶାସକ। ସେହି ସମୟରେ ଏ ବ୍ରାହ୍ମଣ ତାଙ୍କ କକାଙ୍କ ସହ ବାହାରିଲେ ନିଜର ଜୀବିକା ଉପାର୍ଜନ ପାଇଁ। ଏକ ଅଦୃଶ୍ୟ ଅର୍ନ୍ତଦ୍ୱନ୍ଦର ଶିକାରହୋଇ ମଡ୍ୟୁ ଯେ ବାରବାର ତାଙ୍କର ମୁହାଁମୁହିଁ ହୋଇଥିଲା ଏହା ଥିଲା ଚିନ୍ତାର ବାହାରେ। ଆରମ୍ଭ ହୋଇଥିଲା ତାଙ୍କର ହିନ୍ଦୁସ୍ଥାନ (ଉତ୍ତର ଭାରତକୁ ବୋଧେ ହିନ୍ଦୁସ୍ଥାନ ବୋଲି କହୁଥିଲେ) ଯାତ୍ରାର ସମୟ।

ଛୋଟ ଛୋଟ ରାଜ୍ୟମାନଙ୍କରୁ ନିମନ୍ତ୍ରଣ ପାଇଲେ ପୂଜା କରିବାପାଇଁ। ସେଥିପାଇଁ ଏ ଯାତ୍ରା। ରାସ୍ତାରେ ଅନେକ ଜାଗାର ଦୃଶ୍ୟ ଓ ପୂଜାପାଠ କରି କରି ୭ ଦିନ ବିତିଗଲା। ପହଞ୍ଚିଲେ ଇନ୍ଦୋର ପାଖାପାଖି ମାହୋ ସହରର ସରକାରୀ ଗେଷ୍ଟ ହାଉସରେ। ପାଖରେ ଥିଲା ଏକ ମିଲିଟାରୀ କ୍ୟାମ୍ପ। ରାତ୍ରିର ମାଦକତା ଭିତରେ ମିଲିଟାରୀ କ୍ୟାମ୍ପର ଦୁଇଜଣ ସୈନିକ ଗେଷ୍ଟ ହାଉସକୁ ଆସିଲେ। କଥା

ଛଳରେ ହଠାତ୍ ସେମାନ ବେକ ନୂଆଇଁ ଅଳ୍ପ ସ୍ୱରରେ ଜଣାଇଲେ କି ୩ ଦିନ ଭିତରେ ଭୟଙ୍କର ସିପାହୀ ଆନ୍ଦୋଳନ ହେବାକୁ ଯାଉଛି। ଆନ୍ଦୋଳନର କାରଣ ସିପାହୀମାନଙ୍କୁ ଆଦେଶ ଦେଲେ କି ଘୁଷୁରି ଓ ଗାଇ ଚର୍ବିର ଲେପ ଲାଗିଥିବା କାଟ୍ରିଜର ମୂନକୁ ଦାନ୍ତରେ ସଫା କରିବାକୁ। ଛୋଟ ଜାତିର ଲୋକଙ୍କର ହୁଏତ ଆପତ୍ତି ନଥିଲା। କିନ୍ତୁ ବ୍ରାହ୍ମଣମାନଙ୍କ ପାଇଁ ଏହା ଘୋର ଅପମାନ। ପ୍ରଥମେ ଗଣ୍ଡଗୋଳ ମାଡପିଟ ହେଲା ବ୍ରାହ୍ମଣ ଓ ଚମାରଙ୍କ ମଧ୍ୟରେ। ଅଫିସରମାନଙ୍କ ଭିତରେ ଗରମାଗରମ ଆଲୋଚନା ହେଲା। ହିନ୍ଦୁ ଓ ମୁସଲମାନମାନେ ଭାବିଲେ କି ସେମାନଙ୍କର ନିଜ ନିଜ ଧର୍ମ ଉପରେ କୁଠାରଘାତ କରୁଛନ୍ତି।

ଏ ଖବର ବଣଉନିଆଁ ଭଳି ଚାରିଆଡ଼େ ଖେଳିଗଲା। ଅଫିସରମାନେ କଲିକତାରେ ଗଭର୍ଣ୍ଣରଙ୍କୁ ଜଣାଇଲେ। ଅବସ୍ଥା ଅନୁଧ୍ୟାନ ନ କରି ସେମାନେ ଇଂଲଣ୍ଡ ଚିଠି ଲେଖିଲେ। ଇଂଲଣ୍ଡରୁ ଲୋକ ଆସିଲେ। ମିଟିଂ ବସିଲା। ଠିକଣା ହେଲା ସିଦ୍ଧାନ୍ତ ବଦଳିବାର ନାହିଁ। ସମସ୍ତେ ଏଇ ନିୟମ ମାନିବେ ନହେଲେ ଚାକିରୀରୁ ଅବ୍ୟାହତି ନେବେ। ସେମାନେ ମଧ୍ୟ ଉଚ୍ଚଙ୍କୁ ଉପଦେଶ ଦେଲେ ନିଜ ଗାଁକୁ ଫେରିଯିବାପାଇଁ। ସବୁ ରାଜାମାନେ ଖବର ପାଇ ଏକ ସଭାର ଆୟୋଜନ କଲେ। କେବଳ ବାହାଦୂର ସାହ ଜଫର, ନାନା ସାହେବ, ଅବଧର ରାଣୀ ସାହେବା ଓ ଝାନ୍ସି ରାଣୀ ଏଥିରେ ଯୋଗ ଦେଲେ ନାହିଁ।

କଲିକତାରେ ଏକ ସଭାର ଆୟୋଜନ କଲେ। ଏଥିରେ ଓଡ଼ିଶାର ରାଜା ଓ ବିଳାସିଆର ରାଜା ମଧ୍ୟ ଯୋଗଦେଲେ। ଗଭର୍ଣ୍ଣର ଜେନେରାଲ ନିଜେ ଘୋଷଣାପତ୍ର ପଢ଼ିଲେ। ଆଉ ୮୪ଟି ରାଜ୍ୟର ରାଜାମାନଙ୍କ ନାଁ ମଧ୍ୟ ଘୋଷଣା ହେଲା। ସେଇ ଘୋଷଣାପତ୍ରରେ କୁହାଗଲା କି ଯୁକ୍ତ ପରିବାରର ଜଣେ ସଦସ୍ୟ ଧର୍ମାନ୍ତକରଣ କରି ମଧ୍ୟ ସଂପତ୍ତିରୁ ଭାଗ ନେଇପାରିବ। ହିନ୍ଦୁ ବିଧବା ନାରୀ ପୁନର୍ବାର ବିବାହ କଲେ ମଧ୍ୟ ସେ ଓ ତାର ପିଲାମାନେ ପୂର୍ବ ସ୍ୱାମୀର ପୈତୃକ ସଂପତ୍ତିରୁ ଭାଗ ନେଇପାରିବେ ଓ ପରିବାରରୁ ଓ ସମାଜରୁ ବାଛନ୍ଦ ହୋଇପାରିବେ ନାହିଁ। ଏପରି ଅନେକ ଆଦେଶନାମାରେ ସର୍ତ୍ତ ରଖାଯାଇଥିଲା ଯେଉଁ ସର୍ତ୍ତ ସବୁ ହିନ୍ଦୁ ବା ମୁସଲମାନମାନଙ୍କ ବଂଶ ପରମ୍ପରାଗତ ନିୟମ କାନୁନର ବିରୁଦ୍ଧାଚରଣ କରୁଥିଲା। ଶେଷରେ ସେଇ ଆଇନକୁ ସମସ୍ତେ ମାନିବାକୁ ବାଧ୍ୟ ବୋଲି ଘୋଷଣା କରାଗଲା। ଏ ସଭାରେ ଏ ସର୍ତ୍ତକୁ ଅନେକ ରାଜା ଓ ରାଜପୁତ୍ରମାନେ ବିରୋଧ

କଲେ। କିନ୍ତୁ ବ୍ରିଟିଶ ପ୍ରତିନିଧି କୌଣସି କଥାକୁ ଶୁଣିବାକୁ ପ୍ରସ୍ତୁତ ନ ଥିଲେ। ସମସ୍ତେ ଅଶାନ୍ତି ଓ ବିଦ୍ରୋହ ମନୋଭାବ ନେଇ ନିଜ ନିଜ ରାଜ୍ୟକୁ ଫେରିଲେ। ସବୁ ଘଟଣାର ବିବରଣୀ ଶୁଣିବାପରେ ଭଟ୍ଟ ଓ ତାଙ୍କ କାକା ଫେରିଯିବାର ମନ ଥିଲେ ମଧ୍ୟ ନିଜର ଅବସ୍ଥାକୁ ଚାହିଁ ଫେରିପାରିଲେ ନାହିଁ। ୧୦ ତାରିଖ ଜୁନରେ ଆଉ ଏକ ଜାଗାରେ ପହଞ୍ଚିଲେ। ସେଠି ମଧ୍ୟ ଏକ ବଡ଼ ମିଲିଟାରୀ କାମ୍ପ। ସେଠି ନିଆଁ ଲଗାଇ ଦେଇଥିଲେ ମିଲିଟାରୀ କ୍ୟାମ୍ପରେ ବିଦ୍ରୋହୀମାନେ। ଜନସାଧାରଣ ଡରିଯାଇଥିଲେ ମଧ୍ୟ ଏହାକୁ ସମର୍ଥନ କରୁଥିଲେ।

ବିଦ୍ରୋହୀମାନେ ବ୍ରିଟିଶ ବିରୋଧି କିନ୍ତୁ ଭଗବାନ ବିରୋଧି ନୁହଁନ୍ତି। ସେଥିପାଇଁ ଭଟ୍ଟ ଓ କାକାଙ୍କୁ କିଛିକଲେନି। ସେମାନେ ପହଞ୍ଚିଲେ ଉଜ୍ଜୟିନୀରେ। ପହଞ୍ଚିଲେ ଦ୍ୱାରକାଧିଶ ମନ୍ଦିରରେ। ଗୋୟାଲିଅରର ବୈଷ୍ଣନାପାୟନ, ଉଜ୍ଜୟିନୀ ବିଷ୍ଣୁପଦ, କାର୍ଭେ ଯତ୍ନ ନେଲେ ସେମାନଙ୍କର। ବହୁତଦିନ ରହି ବହୁତ ପୂଜାପାଠ କଲେ। ଜାଣିଲେ ଉଜ୍ଜୟିନୀର ଇତିହାସ। ସେଠିକାର ରହଣି ଭିତରେ ବିଦ୍ରୋହର ଅନେକ ଭୟଙ୍କରକାହାଣୀ ସବୁ ଶୁଣିଲେ। ପରେ ଶୁଣିଲେ ଭୋଜରାଜ ଧର ମୃତ। ମରିବାର କିଛିଦିନ ଆଗରୁ ପରିବାର ମଧ୍ୟରୁ ଜଣକୁ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ। ତାଙ୍କ ରାଣୀ ଓ ପ୍ରଧାନମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଥିଲା କି ବ୍ରାହ୍ମଣମାନଙ୍କୁ ଦାନ ଧର୍ମ କରିବାକୁ। ଏଇ ଦାନଗ୍ରହଣ କରିବାକୁ ଭଟ୍ଟ କାର୍ଭେଙ୍କ ଅନୁମତି ନେଇ ଭୋଜ ବାହାରିଗଲେ।

ରାଜା ଧର ଜଣେ ଦକ୍ଷ ଶାସକ, ଧାର୍ମିକ ବ୍ୟକ୍ତି, ହଜାର ହଜାର ସଂଖ୍ୟାରେ ବ୍ରାହ୍ମଣ ଅନ୍ୟାନ୍ୟ ଜାଗାରୁ ଆସି ଏ ମରଣୋତ୍ତର ଦାନ ନେବା ପାଇଁ ସେଠାରେ ଏକାଠି ହୋଇଥିଲେ। ଏ ବିରାଟ ପ୍ରାସାଦକୁ ଯିବା ଅସମ୍ଭବ। ମ୍ୟାନେଜରଙ୍କୁ ଚିଠି ଲେଖି ପ୍ରାସାଦ ମଧ୍ୟକୁ ପ୍ରବେଶ କଲେ ଭଟ୍ଟ ଓ ତାଙ୍କ କାକା। ଏ ଦାନର ଧାରା ଅବର୍ଣ୍ଣନୀୟ। କିନ୍ତୁ ଦାନ ଦେଉଥିବା ଲୋକର ଅସୌଜନ୍ୟତା ଦେଖି ନିଜର ବିଷମ ଦାରିଦ୍ର୍ୟ ସତ୍ତ୍ୱେ ଦାନ ଗ୍ରହଣ ନ କରି ଫେରିଆସିଲେ। ସେଠାରେ ମହାକାଳିକା (ଏ ଜାଗାରେ କାଳିଦାସ କାଳିଙ୍କୁ ପୂଜା କରି ତାଙ୍କର ଧୀ ଶକ୍ତି ପାଇଥିଲେ) ଦର୍ଶନ କରି ଫେରିଲେ ଉଜ୍ଜୟିନୀ। ଚିଠି ପାଇଲେ ବିଶ୍ୱମାପାୟାନଙ୍କ ପାଖରୁ। ଲେଖାଥିଲା ଅନେକ ସିପାହୀ ଗୋୟାଲିଅର ଫେରୁଛନ୍ତି। ତାଙ୍କ ସହିତ ନିରାପଦରେ ଆସିପାରିବେ। ଭଟ୍ଟ ସେଇଆହିଁ କଲେ। ଗୋୟାଲିଅର ପାଖରେ ଲସ୍କର ଗୋଟେ

ଛୋଟ ରାଜ୍ୟ। ପେଶ୍ୱା ମାହାବଜୀ ସିନ୍ଧିଆ ସେଠାରେ ଶାସକ। ମୋଗଲ ବାଦସାହାଙ୍କ ସହ ଯୁଦ୍ଧରେ ଜିତିଲେ ଆଉ ଯୁଦ୍ଧୋଉର ସଂପଉିର ମାଲିକ ହେଲେ। ଏଠାରୁ ୩/୪ କୋଶ ଦୂରରେ 'ଫୁଲବାଗ' ନାମକ ବଗିଚା ଭିତରେ ବିଜୟର ସ୍ମାରକ ସ୍ୱରୂପ ଏକ ପ୍ରାସାଦ ତୋଳାଇଲେ ସିନ୍ଧିଆରାଜା। ମଝିରେ ସୁନ୍ଦର ମନ୍ଦିରଟିଏ। ଟିକେ ଦୂରରେ ନଈ। ଏ ନଈ କୂଳରେ ସୈନ୍ୟବାହିନୀ ରହନ୍ତି।

ଗୋୟାଲିୟରରେ ଥାଇଁ ମଧ ଭଙ୍ଗ ଅନେକ ଖବର ପାଇଲେ। ଖବର ପାଇଲେ ଦିନକର ରାଓ ଗୋୟାଲିଅରର ଦିଓ୍ୱାନ ବ୍ରିଟିଶ ସହିତ ହାତ ମିଳେଇବେ। ସିନ୍ଧେ ମହାରାଜଙ୍କ ସହ ଅନ୍ୟମାନେ ଏଥିରେ ଏକମତ ନଥିଲେ। ଗୋୟାଲିଅର କାମ ସରିଲା। ଆଗରୁ ଶୁଣିଥିଲେ ଝାନ୍ସୀର ନାମ। ବିଥୁରରେ ତାଙ୍କ କାକା ୧୫ବର୍ଷ କଟାଇଥିଲେ। ତାଙ୍କ ସହ ମୋରୋ ପନ୍ଥ ଟମ୍ବେ ନାମକ ଜଣେ ବ୍ୟକ୍ତି କାମ କରିଥିଲେ। ସେ ଟମ୍ବେ ବର୍ତ୍ତମାନ ରାଜ ପରିବାର ଜଣେ ସଦସ୍ୟ। ତାଙ୍କ ନାଁ ହୋଇଥିଲା ରାଜଶ୍ରୀ ମୋରୋ ପନ୍ଥ। ସେ ରାଣୀ ଝାନ୍ସିବାଈଙ୍କର ପିତା। ଝାନ୍ସିକୁ ଯିବା ରାସ୍ତାରେ ଅନେକ ବିଦ୍ରୋହ ସଂକ୍ରାନ୍ତରେ ଗପ ଶୁଣିବାକୁ ପାଉଥାନ୍ତି। ସେଠି ବି ଶୁଣିଲେ ଅଳ୍ପଦିନ ମଧ୍ୟରେ ସାରା ଦେଶରେ ବିଦ୍ରୋହ ବ୍ୟାପିଯିବ। ଜାଣିଲେ କାନପୁରରେ ବ୍ରିଟିଶ ଓ ଆଞ୍ଚଳିକ ଟ୍ରୁପ ମଧ୍ୟରେ ନାନାସାହେବଙ୍କ ନେତୃତ୍ୱରେ ଆଞ୍ଚଳିକ ଟ୍ରୁପ ବିଜୟୀ ହୋଇଛନ୍ତି। ନାନାସାହେବଙ୍କ ସହିତ ଥିଲେ ରାଓସାହେବ ଓ ତାନ୍ତିଆ ତୋପେ। ଏମାନେ ବ୍ରିଟିଶ ସହ ଲଢ଼ିବାପାଇଁ ପ୍ରସ୍ତୁତ। ନାନା ସାହେବଙ୍କ ପେନସନ ବ୍ରିଟିଶରମାନେ ବନ୍ଦ କରିଦେଇଥିଲେ। ଏହା ଥିଲା ତାଙ୍କର ବ୍ୟକ୍ତିଗତ ରାଗ। ଅବଧର ବେଗମ ଓ ମୋଗଲ ବାଦଶାହା ମଧ ଏକା ଦଶା ଭୋଗୁଥିଲେ। ତାନ୍ତିଆ ତୋପେ ନାନା ସାହେବଙ୍କର ଡାହାଣ ହାତ।

ଝାନ୍ସି ରାଣୀ ଲକ୍ଷ୍ମୀବାଈ ବାଣପୁର ରାଜା ମର୍ଦ୍ଦନ ସିଂଙ୍କୁ ବଡ଼ଭାଇ ବୋଲି ମାନନ୍ତି। ବେତାହର୍ତ୍ତା ବା ବେଟଓ୍ୱା ନଦୀ କୂଳରେ ଅବସ୍ଥିତ ଏ ରାଜ୍ୟ। ଝାନ୍ସିର ପଶ୍ଚିମକୁ। ବାଣପୁର ରାଜା ବ୍ରିଟିଶର-ଆକ୍ରମଣ ହେବା ଆଶଙ୍କାରେ ପ୍ରଜାମାନଙ୍କୁ ଛାଡ଼ି ଚାଲିଯାଇ ବାହାରେ ଆଶ୍ରୟ ନେବାପାଇଁ ଆଦେଶ ଦେଲେ। ନିଜର ପରିବାର, ପିଲା ଓ ରାଜକୀୟ ସଂପଉି ସବୁ ଝାନ୍ସି ପଠାଇଦେଲେ। ସେତିକିବେଳେ ରୁଜଙ୍କର ଆକ୍ରମଣ ଆଶଙ୍କା କରି ନିଜେ ମଧ ଝାନ୍ସି ଗଲେ। ଠିକ୍ ପରେ ପରେ ବାଣପୁର ରାଜ୍ୟ ବ୍ରିଟିଶଙ୍କର କରାଗତ ହେଲା। ଝାନ୍ସିକୁ ଫେରି ଏ ଯୁଦ୍ଧରେ ଭାଗ ନେଇଥିଲେ

ବାଣପୁର ରାଜା। ପରେ ପରେ ରାଜା ଓ ତାଙ୍କ ସୈନ୍ୟଦଳ ବାତାଓ୍ୱା ନଦୀକୂଳ ଜଙ୍ଗଲକୁ ପଳାଇଲେ। ଯୁଦ୍ଧର ଆଶଙ୍କା କରି ଝାନ୍ସିରେ ଅସ୍ତ୍ର, ଶସ୍ତ୍ର ଓ ଖାଦ୍ୟ ସବୁ ମହଜୁଦ୍ ରଖାଗଲା। ଭଟ୍ଟ ଓ ତାଙ୍କ କାକା ମଧ୍ୟ ଝାନ୍ସିରେ ଥିଲେ। ଅନେକ ପୂଜା ହୋମର ମଧ୍ୟ ଆୟୋଜନ ହେଲା।

ରାଣୀ ତାନ୍ତିଆ ତୋପେଙ୍କୁ ସାହାଯ୍ୟ ମାଗିଲେ। ଏଣେ ବାଣପୁର ରାଜା ଜଙ୍ଗଲରେ ବୁଲିବା ସମୟରେ ଅଫିସିଆଲ ଚିଠିର ଗାଡ଼ି ଯାଉଥିବାର ଦେଖିଲେ। ଗାଡ଼ି ଯାଉଥିଲା ଗୋୟାଲିୟର। ଗାଡ଼ି ସହ ଚିଠି ସବୁ ମଧ୍ୟ ଅକ୍ତିଆର କଲେ। ସବୁ ଚିଠି ତଦାରଖ କରି ଜାଣିଲେ କି ବ୍ରିଟିଶରମାନେ ଝାନ୍ସିକୁ ଧ୍ୱଂସ କରିବାର ଚେଷ୍ଟାରେ ଅଛନ୍ତି। ଝାନ୍ସିକୁ ସାହାଯ୍ୟ କରିବା ଆଶାରେ ସେ ମଧ୍ୟ ତାନ୍ତିଆ ତୋପେ ଓ ନାନା ସାହେବଙ୍କର ସାହାଯ୍ୟ ମାଗିବାପାଇଁ ମନସ୍ଥ କଲେ।

ବାଣପୁର ରାଜା ସେ ଚିଠିଧରି ରାଣୀଙ୍କୁ ସତର୍କ କରିବାପାଇଁ ଝାନ୍ସିରେ ପହଞ୍ଚିଲେ। ଯଦିଓ ସେ ନିଜେ ନିଃସ୍ୱ ଆଉ ନିଜ ରାଜ୍ୟରୁ ବିତାଡ଼ିତ। ଖବର ପାଇ ରାଣୀ ଜେନେରାଲମାନଙ୍କର ସଭା ଡକାଇ ସତର୍କ କରାଇଦେଲେ। ବାଣପୁର ରାଜା ଝାନ୍ସି ଛାଡ଼ି ତାଙ୍କ ପରିବାର ସହ ଚାଲିଗଲେ। ଝାନ୍ସିଠୁ ଦଶମାଇଲ ଦୂରରେ ବ୍ରିଟିଶରମାନେ କ୍ୟାମ୍ପ କରିଥିଲେ। କାପ୍‌ଟେନ ରାଣୀଙ୍କୁ ଚିଠି ଲେଖିଲେ କି ସେ ଅଳ୍ପ ସଂଖ୍ୟକ ଲୋକ ନେଇ ବିନା ଅସ୍ତ୍ରଶସ୍ତ୍ରରେ କ୍ୟାମ୍ପକୁ ଆସନ୍ତୁ। ରାଣୀ ତାଙ୍କ ପରାମର୍ଶ ଦାତାଙ୍କ କଥା ମାନି କ୍ୟାମ୍ପକୁ ନ ଯାଇଁ ଚିଠିର ଉତ୍ତର ଦେଲେ। ଲେଖିଲେ ରାଣୀ ତାଙ୍କ ରାଜ୍ୟ ମର୍ଯ୍ୟାଦା ଦୃଷ୍ଟିରୁ ସେ ନିଜେ ଯିବେ ନାହିଁ। କିନ୍ତୁ ତାଙ୍କ ପ୍ରଧାନମନ୍ତ୍ରୀ ଗାର୍ଡମାନଙ୍କ ସହ କ୍ୟାମ୍ପକୁ ଦେଖା କରିବାକୁ ଯାଇପାରନ୍ତି। ଅନ୍ୟଥା ସମ୍ଭବ ନୁହେଁ।

ଚିଠିପାଇ କାପଟେନ ସାଙ୍ଗେ ସାଙ୍ଗେ ଝାନ୍ସି ଆକ୍ରମଣ କଲେ। ଆଉ ସତର୍କ କଲେ କି ରାଓସାହେବ ଓ ନାନା ସାହେବ ଝାନ୍ସିକୁ ସାହାଯ୍ୟ ନ ଦିଅନ୍ତି। ଏପଟେ ରାଣୀ ରାଓସାହେବ ଓ ନାନାସାହେବଙ୍କୁ ଖବର ଦେଲେ କି ଝାନ୍ସି ବର୍ତ୍ତମାନ ନିଜକୁ ରକ୍ଷା କରିବାପାଇଁ ପ୍ରସ୍ତୁତ ହେଉଛି। ଆପଣମାନଙ୍କ ସାହାଯ୍ୟ ଏକାନ୍ତ ଆବଶ୍ୟକ। ଚୈତ୍ର ମାସରେ ଅନେକ ପୂଜା ଅନୁଷ୍ଠିତ ହେଲା। ମାସ ସାରା ବହୁତ ଧୁମଧାମରେ ଝାନ୍ସିରେ ପୂଜା କରାଗଲା। ଭଟ୍ଟ ଓ ତାଙ୍କ କାକା ଅନ୍ୟାନ୍ୟ ଅନେକ ବ୍ରାହ୍ମଣଙ୍କ ଗହଣରେ ଝାନ୍ସିର ପାରମ୍ପରିକ ପୂଜା କଲେ। ପୂଜାସବୁ ଦେବୀମାନଙ୍କର।

ବୈଶାଖ ମାସ ଆରମ୍ଭରେ ଗଗମ ଅନୁଭୂତ ହେଲା। ଝାନ୍ସିର ଚାରିପଟେ ଶତ୍ରୁର କ୍ୟାମ୍ପ ସେତେବେଳକୁ ଲାଗିଗଲାଣି। ସୈନ୍ୟ ସଂଖ୍ୟା ଯଥେଷ୍ଟ ନାହାନ୍ତି। ଅବସ୍ଥା ଗୁରୁତର। ଦୁର୍ଗର ସୁରକ୍ଷା ପାଇଁ ରାଣୀ ନିଜେ ଦୁର୍ଗସାରା ଅନୁଧାନ କଲେ। ଯାହାହେଲେ ବି ଦୁର୍ଗ ରକ୍ଷା କରିବାକୁ ହେବ। ଦୁର୍ଗକୁ ଘେରି ରହିଲେ ପ୍ରତିରକ୍ଷା ବାହିନୀ। ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଅନୁଧାନ କଲେ ଶତ୍ରୁଙ୍କ ଗତିବିଧି। ଦିନେ ସକାଳୁ ଜଣାଗଲା ଶତ୍ରୁଙ୍କ କ୍ୟାମ୍ପରୁ ୧୫/୨୦ ଜଣ ଅଶ୍ୱାରୋହୀ ଘୋଡ଼ା ସବାର ଦୁର୍ଗ ଆଡ଼କୁ ମାଡ଼ି ଆସୁଛନ୍ତି। ଦୁର୍ଗର ସୈନିକମାନେ ପ୍ରତି ଆକ୍ରମଣ କଲେ। ଅଧା ସୈନିକ ମୃତ ହେଲେ ଏ ପ୍ରତି ଆକ୍ରମଣ ଫଳରେ ଓ ବାକି ଅଧିକ ପଳାୟନ କଲେ।

ବ୍ରିଟିଶର ସଜାଗ ଥିଲେ ଦୁର୍ଗଭିତର ଖବର ଜାଣିବାପାଇଁ। ଦୁର୍ଗ ଭିତରର ଜଣେ କେହି ଲୋକ ସେମାନଙ୍କୁ ଦୁର୍ଗର ଆଭ୍ୟନ୍ତରୀଣ ଖବର ଦେଲେ। ଦୁର୍ଗର ଦୁର୍ବଳପଟୁ ଆକ୍ରମଣ ଆରମ୍ଭ କଲେ। କାନନ୍‌ବଲ (ଏକ ପ୍ରକାର ଅଗ୍ନି ଉତ୍ପାଦନକାରୀ ବମ୍) ସବୁ ଦୁର୍ଗ ଭିତରକୁ ପକାଇଲେ। ଦୁର୍ଗ ମଧ୍ୟରୁ ମଧ୍ୟ ସେହିପରି ବମ୍ ସବୁ ବାହାରକୁ ଫୋଫଡ଼ା ହେଲା। ୭ ଦିନ ଧରି ଏପରି ଯୁଦ୍ଧ ହେଲା। ତାନ୍ତିଆ ତୋପେ ମଧ୍ୟ ଯୁଦ୍ଧକ୍ଷେତ୍ର ଛାଡ଼ି ଚାଲିଗଲେ। ଦୁର୍ଗର ଅନେକ କ୍ଷୟକ୍ଷତି ଘଟିଲା। ତାନ୍ତିଆ ତୋପେ ଅନେକ କାନନ୍‌ବଲ ଓ ଗନସବୁ ଛାଡ଼ିଗଲେ। ଏହା ସବୁ ପଡ଼ିଲା ବ୍ରିଟିଶରଙ୍କ ହାତରେ। ଏ ଘଟଣା ବ୍ରିଟିଶରଙ୍କୁ ସାହସ ଦେଲା।

ବ୍ରିଟିଶରମାନେ ଲଗାତର ଯୁଦ୍ଧରେ ମାତି ରହିଗଲେ। ରାଣୀ ନିଜେ ପୁରୁଷ ବେଶରେ ଖଣ୍ଡାଧରି ଦୁର୍ଗ ସାରା ଘୁରି ବୁଲିଲେ। ସେତେବେଳକୁ ଶତ୍ରୁ ସେଠାର ଗଣପତି ମନ୍ଦିର ମଧ୍ୟ ନଷ୍ଟ କରି ଦେଇଥିଲେ। ଏପରି ଯୁଦ୍ଧ ୧୧ ଦିନ ଚାଲିଲା ରାଣୀଙ୍କ ହେପାଜତ୍‌ରେ। ଠିକ୍ ପରେ ପରେ ଖବର ଆସିଲା କି ଝାନ୍ସି କରାଗତ ନ କରି ବ୍ରିଟିଶରମାନେ ଫେରିଯାଉଛନ୍ତି। ଏ ଆନନ୍ଦର ଖବର ଦୁର୍ଗ ଭିତରେ ଖେଳିଗଲା। କିନ୍ତୁ ଏ ଖବର ମିଥ୍ୟା ବୋଲି ପ୍ରମାଣିତ ହେଲା। ଏହା ଏକ ଯୋଜନା ଥିଲା ମାତ୍ର। କାରଣ ସେହିଦିନ ଭୋର ସମୟକୁ ଦକ୍ଷିଣ ପଟୁ ଦୁର୍ଗ ଆକ୍ରମଣ ହେଲା। ସାଙ୍ଗରେ ଗୋଛା ଗୋଛା ନଡ଼ା ଧରି ନଡାର ଏକ ସିଡ଼ିକରି ଦୁର୍ଗ ଭିତରେ ପ୍ରବେଶ କରିବାର ଯୋଜନା କଲେ। ଦୁର୍ଗ ସୈନ୍ୟମାନେ ଅବରୋଧ କଲେ। କିନ୍ତୁ ମୃତ୍ୟୁମୁଖରେ ପଡ଼ିଲେ। ୧୫ ମିନିଟ ସମୟ ମଧ୍ୟରେ ବ୍ରିଟିଶ ଦକ୍ଷିଣପଟ ଅଧିକାର କଲେ।

ସାହସ ଦେଖାଇଲେ ରାଣୀ। ୧୫୦୦ ଆରବ ଯୋଦ୍ଧା ତାଙ୍କ ନିକଟରେ ମହଜୁଦ୍ ଥିଲେ। ସେମାନଙ୍କୁ ନେଇ ଦକ୍ଷିଣପଟକୁ ଆଗେଇଲେ। ସେତେବେଳକୁ ବ୍ରିଟିଶରମାନେ ଦୁର୍ଗ ଭିତରକୁ ପ୍ରବେଶ କରି ସାରିଲେଣି। ପରେ ପରେ ସେମାନେ ସବୁ ଦୁର୍ଗ ଫାଟକ ବନ୍ଦ କରିଦେଲେ। ଫଳରେ ଦୁର୍ଗର ଅଧିବାସୀମାନେ ବାହାରକୁ ଯାଇପାରିବେ ନାହିଁ। ପରେ ପରେ ବ୍ରିଟିଶରମାନେ ପ୍ରତ୍ୟେକ ଘରୁ ଯାହାସବୁ ସୁନାରୂପା ଓ ଆଉ ମୂଲ୍ୟବାନ ଦ୍ରବ୍ୟସବୁ ଲୁଟିବାରେ ଲାଗିଲେ। ଏ ଅବସ୍ଥା ଦେଖି ରାଣୀ ଜାଣିଲେ କି ସେ ତାଙ୍କ ପ୍ରିୟ ଦୁର୍ଗକୁ ରକ୍ଷା କରିପାରିବେ ନାହିଁ। ନିଜକୁ ଦୋଷୀ ମାନିଲେ। ପାଖ ଲୋକଙ୍କୁ କହିଲେ ସମସ୍ତେ ଛାଡ଼ି ଚାଲିଯାଅ ଫଳରେ ନିଜକୁ ଶୂନ୍ୟ ଦୁର୍ଗ ସହ ନଷ୍ଟ କରିଦେବେ।

ପାଖଲୋକେ ତାଙ୍କୁ ଆଶ୍ୱାସନା ଦେଲେ। ପରାମର୍ଶ ଦେଲେ କି ଆମେ ରାତ୍ରିର ଅନ୍ଧକାରରେ ଲୁଚି ବାହାରି ଯାଇଁ, ଶତ୍ରୁପକ୍ଷ ଅତିକ୍ରମ କରି ପେଶୱା ଟ୍ରୁପରେ ଯୋଗ ଦେଇପାରିବା। ଆତ୍ମହତ୍ୟା କରିବା ପାପ ଓ ତା ବ୍ୟତିତ ସମସ୍ୟାର ସମାଧାନର ରାସ୍ତା ଏଥିରେ ମିଳିବ ନାହିଁ। ଅଧା ରାତିରେ ରାଣୀ ତାଙ୍କ ଦଳକୁ ନେଇ ବାହାରିଲେ। ସମସ୍ତଙ୍କ ଅଣ୍ଟାର ବେଲ୍ଟ ଭିତରେ ସୁନା ରୂପା ଅଳଙ୍କାର ଭର୍ତ୍ତିକରି ଅଣ୍ଟାରେ ଭିଡି ରଖିଲେ। କୋଷାଗାର ଖାଲି କରି ସବୁ ନେଇ ଗୋଟିଏ ହାତୀ ଉପରେ ଲଦିଲେ। ରାତ୍ରିର ଅନ୍ଧକାରରେ ମିଳାଇ ଯିବାପାଇଁ ବାହାରିଲେ। ଜାଣିଲେ ବ୍ରିଟିଶ ଟ୍ରୁପ। ଅନେକ ରାସ୍ତା ପର୍ଯ୍ୟନ୍ତ ଗୋଡ଼ାଇଲେ ରାଣୀଙ୍କର କୌଣସି କ୍ଷତି କରିପାରିଲେ ନାହିଁ। ତାଙ୍କ ଅଣ୍ଟାରେ ବାନ୍ଧି ଦେଇଥିଲେ ତାଙ୍କ ପୋଷ୍ୟପୁତ୍ରଙ୍କୁ। ପାଖ ଘୋଡ଼ାରେ ଜଣେ ଦାସୀ। ଅବଶେଷରେ ଗୋଟେ ଛୋଟ ଗାଁରେ ପହଞ୍ଚିଲେ। ମୁଖିଆଙ୍କ ସହ କଥା ହେଲେ। ଘୋଡ଼ାରୁ ଓହ୍ଲାଇ ପୋଷ୍ୟପୁତ୍ରଙ୍କୁ କିଛି ଖୁଆଇଲେ। ନିଜେ ଦାନା ବି ମୁହଁରେ ନ ଦେଇ କାଲ୍ପି ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲେ। ଅଧା ରାତିରେ କାଲ୍ପିରେ ପହଞ୍ଚିଲେ।

ଝାନ୍ସିରେ ଇଂରେଜମାନେ ତିନିଦିନ ଧରି ଲୁଟ ତରାଜ କଲେ। ଅନେକ ସାଧାରଣ ଲୋକଙ୍କୁ ମାରିଲେ। ଘରୁ ବାହାର କରିଦେଲେ। ଶେଷକୁ ଯାହା ସୁନା ରୂପା ମୂଲ୍ୟାବନ ପଦାର୍ଥ ପାଇଲେ ସବୁ ଘେନିଗଲେ। ସାଧାରଣ ବ୍ୟବହାର୍ଯ୍ୟ ଜିନିଷ ମଧ୍ୟ ନେଇଗଲେ।

ଝାନ୍ସିର ଲାଇବ୍ରେରୀ ବହୁ ପୁରାତନ ଓ ମୂଲ୍ୟବାନ ପୁସ୍ତକ ସବୁ ଗଚ୍ଛିତ ଥିଲା। ବହୁ ଦୁର୍ଲଭ ପୁସ୍ତକ– ବେଦ୍, ପୁରାଣ, ସୁତ୍ର ଓ ଅନ୍ୟାନ୍ୟ ଅନେକ ଧର୍ମପୁସ୍ତକ, ଜ୍ୟୋତିଷବିଦ୍ୟା, ଅନ୍ତରୀକ୍ଷ ବିଦ୍ୟା, ପରମ୍ପରାଗତ ଆର୍ଯୁବେଦିକ ଔଷଧର ପୁସ୍ତକ ସହ ଅନେକ ବହିସବୁ ଗଚ୍ଛିତ ଥିଲା। ଏ ପୁସ୍ତକ ସବୁ ଉପଯୋଗ କରିବାପାଇଁ କାଶୀ ଓ ଆଖପାଖ ଅଞ୍ଚଳରୁ ଅନେକ ବିଦ୍ୱାନମାନେ ଆସୁଥିଲେ। ହୃଦୟହୀନ ବ୍ରିଟିଶରମାନେ ସେ ସବୁକୁ ନଷ୍ଟଭ୍ରଷ୍ଟ କରିଦେଲେ।

ଖାଲି ସେତିକି ନୁହେଁ ଯେଉଁମାନେ ବିଭିନ୍ନ ଜାଗାରୁ ବ୍ରିଟିଶ ଟ୍ରୁପକୁ ସାହାଯ୍ୟ କରିବାକୁ ଆସିଥିଲେ ସେମାନେ ମଧ୍ୟ ୮ ଦିନଧରି ଦଳ ଦଳ ହୋଇ ଝାନ୍ସି ଲୁଟିଲେ। ଭଟ୍ଟ ଓ ତାଙ୍କ କାକା ମନ୍ଦିରର ଏକ ଅନ୍ଧାରିକୋଠରୀ ଭିତରେ ରହିଯାଇ ପବନ ଯିବାପାଇଁ ରାସ୍ତା ମଧ୍ୟ ନଥିଲା। ଆଉ ବାହାରକୁ ଆସିବାର ଉପାୟ ବି ନଥିଲା।

ସାର ଜେମସ୍ ଡେଲହାଉସ କମ୍ପାନୀ ବାହାଦୂରଙ୍କର ଗଭର୍ଣ୍ଣର ଜେନେରାଲ ୧୮୫୬ ପର୍ଯ୍ୟନ୍ତ ଥିଲେ। ବିଦ୍ରୋହର ବର୍ଷକ ପୂର୍ବରୁ ଭାରତ ଛାଡ଼ି ଚାଲିଯାଇ ଥିଲେ। ଯିବା ପୂର୍ବରୁ ନିୟମ ସବୁ ସର୍ତ୍ତ କରିଦେଇ ଯାଇଥିଲେ ତାହାହିଁ ୭ଟା ପ୍ରଦେଶକୁ ଧୀରେ ଧୀରେ ଖାଇଯାଇଥିଲା। 'ଡକ୍ଟ୍ରିନ ଅଫ ଲାପ୍ସ' ନିୟମ ଲାଗୁ କରି ପୋଷ୍ୟପୁତ୍ରଙ୍କର ଉତ୍ତରାଧିକାରୀ ସତ୍ତ୍ୱକୁ ମିଟାଇଦେଇ, ସେ ରାଜ୍ୟ ସବୁକୁ କମ୍ପାନୀ ଅଧିକାରକୁ ନେଇ ଯାଇଥିଲେ। ଅବଧ ଭଳି ବିରାଟ ରାଜ୍ୟକୁ ଦିଲ୍ଲୀସହ ମିଶାଇ ଦେଇଥିଲେ। ୧୧ ଫେବୃୟାରୀ ୧୮୫୭ରେ ନବାବ ୱାଜିଦ ଆଲି ସାହା ଜାନେ ଆଲମଙ୍କୁ ପଠାଇଲେ କଲିକତା। ତା'ପରେ ପରେ ମାଟିଆ ବୁରୁଜକୁ ପଠାଇଦେଲେ। କହିଲେ ରାଜାଙ୍କର ରାଜ୍ୟଶାସନ ସଙ୍ଗତ ନଥିଲା। ଆଉ ପେଶୱା ବାଜିରାଓଙ୍କୁ ବିଥୁର ପଠାଇ ତାଙ୍କ ପେନସନ ମଧ୍ୟ ବନ୍ଦ କରିବାର ବନ୍ଦୋବସ୍ତ କରିଦେଇଥିଲେ।

ମରହଟ୍ଟା ପେଶୱା ବାଜିରାଓ ୨ୟଙ୍କଠୁ ଅନେକ ଚେଷ୍ଟାଚୈତନ୍ୟ କରିବା ପରେ ୧୮୧୭ର ଏକ ଚୁକ୍ତିନାମା ଦସ୍ତଖତ କରାଇନେଲେ ୧୮୫୬ରେ। ଚୁକ୍ତିନାମାରେ ଲେଖା ଥିଲା କମ୍ପାନୀକୁ ୨୬ ଲକ୍ଷ ଟଙ୍କା ଦେବେ ଓ ବଦଳରେ ଫେରିପାଇବେ ତାଙ୍କ ସିଂହାସନ। ଏହାଛଡ଼ା ବ୍ରିଟିଶ ରେସିଡେଣ୍ଟଙ୍କୁ କେତେକ ବ୍ରିଟିଶ-ଫୋର୍ସ ସହ ପୁନେରେ ରହିବାପାଇଁ ଚୁକ୍ତି ମଧ୍ୟ କରିନେଲେ। ଏ ସର୍ତ୍ତ ବାଜିରାଓ ଗ୍ରହଣ କଲେ ନାହିଁ। ଜୋର ଜବରଦସ୍ତି ତାଙ୍କୁ ବିଥୁର ପଠାହେଲା। ଆଉ

ଦିଆଗଲା ସ୍ୱଳ୍ପ ପେନସନ । ୧୮୫୭ରୁ ୧୮୫୮ ମଧ୍ୟରେ ବେଗମ ସାହା-ଜାନେ-ଆଲାମ ନବାବ ଓ୍ୱାଜିଦ ଆଲି ସାହେ-ଜାନେ-ଆଲମମଙ୍କୁ ଅନେକ ଚିଠି ଲେଖିଥିଲେ କଲିକତାକୁ ବ୍ରିଟିଶ ଆର୍ମି ଝାନ୍ସିରାଣୀଙ୍କୁ କ୍ଷତବିକ୍ଷତ କରିଦେଲେ । ତାଙ୍କୁ ତାଙ୍କର ସାହସ ପାଇଁ ଜୋନ ଅଫ ଆର୍କର ଉପାଧି ଦିଆଯାଇଥିଲା । ପୁରୁଷଙ୍କ ପରି ଲାଲ ଜାକେଟ ଓ ଟ୍ରାଉଜର ଓ ମୁଣ୍ଡରେ ଧଳାଟୋପି ପିନ୍ଧି ଯେଉଁ ସାହସ ସେ ଦେଖାଇଥିଲେ ତାର କିଛି ତୁଳନା ନାହିଁ । କ୍ୟାମ୍ପରେ ଅସମ୍ଭାଳ ଅବସ୍ଥାରେ ଥାଇଁ ମଧ ସେ ତାଙ୍କ ଗଳାରେ ଥିବା ସିନ୍ଧିଆର ପର୍ଲହାର ଓ ହାତର ସୁନା ଚୁଡ଼ି ଉରାରି ସିପାହୀମାନଙ୍କ ଭିତରେ ବାଣ୍ଟିଦେବାକୁ ଆଦେଶ ଦେଇଥିଲେ ।

ଗୋଆଲିୟରର ସିନ୍ଧେ, ଇନ୍ଦୋରର ହୋଲକାରର ଅବସ୍ଥା ମଧ ସେହିପରି । ବ୍ରିଟିଶରମାନଙ୍କ ଏ ଔଦ୍ଧତ୍ୟ ଦେଶୀୟ ରାଜା ଓ ଦେଶୀୟ ଲୋକଙ୍କୁ ଅସହ୍ୟ ବୋଧ ହେଉଥିଲା । ଅନେକ ଜନରାଜ୍ୟର ରାଜାମାନଙ୍କର କାହାଣୀ ଆହୁରି ଦୁଃଖଦ । ଝାନ୍ସିର ବ୍ରାହ୍ମଣରାଜା, ରାଣୀ ଲକ୍ଷ୍ମୀବାଈଙ୍କର ବୃଦ୍ଧ ସ୍ୱାମୀ ଗଙ୍ଗାଧର ରାଓ । ତାଙ୍କୁ କ୍ରୁର, ସ୍ୱେଚ୍ଛାଚାରୀ, ପ୍ରଜାପୀଡ଼କ ବୋଲି ବର୍ଣ୍ଣନା କରିଥିଲେ । କିନ୍ତୁ ପ୍ରଜାଙ୍କର ସେ ଅତି ପ୍ରୀୟ ରାଜା । ଯେଉଁ ଇଂରେଜ ତାଙ୍କ ରାଜ୍ୟକୁ ଦିନେ ବ୍ୟବସାୟ କରିବେ ବୋଲି ଅନୁମତି ମାଗିବାକୁ ଆସିଥିଲେ, ସେଇମାନେ ବର୍ତ୍ତମାନ ରାଜାଙ୍କ ଉପରେ ଆଧିପତ୍ୟ ବିସ୍ତାର କରିସାରିଛନ୍ତି । ରାଜାଙ୍କ ବ୍ୟବହାରକୁ ପ୍ରତ୍ୟେକ ମୁହୂର୍ତ୍ତରେ ଅନୁଧାନ କରି ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରି ଅଛନ୍ତି ।

କଂପାନୀ ବାହାଦୂରଙ୍କ ଏ ପ୍ରକାର ନିୟମର ଅଶୁଭଲକ୍ଷଣମାନ ମଧ କେତେକ କମ୍ପାନୀ ଅଫିସର ନଜରରେ ପକାଇଥିଲେ । ବିଦ୍ରୋହ ଆରମ୍ଭ ହେବାର କିଛିଦିନ ଆଗର ଘଟଣା । ବାର୍ଲ୍ସ କାର୍ଲୋ କେନିଂ କମ୍ପାନିର ଡାଇରେକଟର କୋର୍ଟକୁ ଲେଖିଥିଲେ । ଭାରତର ଶାନ୍ତ ଆକାଶରେ ଗୋଟିଏ ଛୋଟ କଳାବାଦଲ ଆସିପାରେ । (ମଣିଷର ହାତ ଲମ୍ବର) କିନ୍ତୁ ତାହା ଆସ୍ତେ ଆସ୍ତେ ଲମ୍ବି ଲମ୍ବି ଯାଇଁ ଦିନେ ନା ଦିନେ ଭୀଷଣ ଆକାର ଧାରଣକରି ଆମକୁ ନଷ୍ଟ ଭ୍ରଷ୍ଟ କରିଦେବ ।

ବ୍ରିଟିଶରମାନଙ୍କ ସିପାହୀ ଆନ୍ଦୋଳନ ହେବା ଠିକ୍ ହୋଇପାରିଥାଏ । କିନ୍ତୁ ଭାରତୀୟମାନଙ୍କ ପାଇଁ ଏହା ନିୟମଗତ ନଥିଲା । ଏ ଦେଶର ଲୋକଙ୍କୁ ନିଜ ନିୟମରେ ଶାସନ କରିବା, ପରମ୍ପରାଗତ ସାମାଜିକ ନିୟମ ଧାରାର ପରିବର୍ତ୍ତନ କରିବା, ନିଜ ମତରେ ଭାରତୀୟ ଜନତାଙ୍କୁ ସଭ୍ୟ କରିବା ଇତ୍ୟାଦି ଇତ୍ୟାଦି ସବୁ

ଦେଶର ଜନତା ସହଜରେ ଗ୍ରହଣ କରି ପାରି ନଥିଲେ। ଅବଧର ସୀତାରାମ ସୁବେଦାରଙ୍କ ଲେଖା (ମୂଳ ଲେଖା ଅବଧରେ)। ୧୮୬୧ରେ ଜେମସ୍ ନରଗେଟ ଇଂରେଜିରେ ଅନୁବାଦ କରିଥିଲେ। ସେ ଅନୁବାଦ ଅନୁସାରେ 'ଇଂରେଜଙ୍କ ଆଇନ କାନୁନ୍ ତାଙ୍କ ପାଇଁ ଅତି ଭଲ ହୋଇପାରିଥାଏ। କିନ୍ତୁ ଯେଉଁସବୁ ଆଇନ ପୂର୍ବରୁ ଲେଖାଯାଇଥିଲା ସେ ସବୁ ଭାରତୀୟଙ୍କ ପାଇଁ ଅତି ଭଲ। କାରଣ ଆଇନ ଲେଖାକୁ ସେମାନଙ୍କର ବୁଝିବାର କ୍ଷମତା ଥିଲା। ଅନେକ ଉଚ୍ଚଶିକ୍ଷିତ ଲୋକଙ୍କୁ ପଚରାଯାଇଥିଲା କି ଆମ ଭାଷାରେ ସେ ଆଇନସବୁ କାହିଁକି ପ୍ରଣୟନ ହୋଇପାରୁନି। ସେମାନେ ଏହା ସମ୍ଭବ ନୁହେଁ ବୋଲି ଦର୍ଶାଇଲେ। ଉଦାହରଣ ସ୍ୱରୂପ କହିଲେ କି ଯଦି ଜଣକର ସ୍ତ୍ରୀ ଆଉ ଜଣକ ସାଙ୍ଗରେ ପଳେଇଯାଏ ତା'ହେଲେ ସ୍ୱାମୀ ତା' ସ୍ତ୍ରୀକୁ ମାଡ଼ ନ ଦେଇ କ'ଣ ପାଇଁ ଟଙ୍କା ଜରିଆରେ ଦଣ୍ଡ ଗ୍ରହଣ କରିବ? ଏହା ନ୍ୟାୟ ନୁହେଁ ବରଂ ଆମ ଲୋକଙ୍କ ପାଇଁ ବିରକ୍ତିକର। ସୁତରାଂ ଏହାର ଅନୁବାଦ ସମ୍ଭବ ନୁହେଁ। ବିଷ୍ଣୁ ଭଟ୍ଟ ଥିଲେ ଶିବ ଭକ୍ତ। ତାଙ୍କ ଉଚ୍ଚକପାଳରେ ତ୍ରିଧାରା ବିଶିଷ୍ଟ ଶିବତିଳକ, ଭବିଷ୍ୟତ ଦେଖିପାରୁଥିବା ଭଳି ବିଶାଳ ନେତ୍ର କିନ୍ତୁ ଓଠରେ ହସର ଝଲକ ମଧ୍ୟ ନାହିଁ।

'ମାଝା ପ୍ରଭାସ' ପୁସ୍ତକ ମରାଠି ଭାଷାରେ ପ୍ରକାଶିତ ପୁନେର ରାଜହଂସ ପ୍ରକାଶନ ଦ୍ୱାରା। ଲେଖକ ବିଷ୍ଣୁ ଭଟ୍ଟ। ଏ ପୁସ୍ତକ ଗାଁ ଲାଇବ୍ରେରୀରେ ସ୍ଥାନ ପାଇ ପ୍ରଶଂସିତ ହେଲା। ବିଷୟବସ୍ତୁ ଥିଲା ସିପାହୀ ବିଦ୍ରୋହ। ସେ ବିଦ୍ରୋହ ସୈନିକ ନୁହଁନ୍ତି କିନ୍ତୁ ଘଟଣାବଳୀର ମୂକସାକ୍ଷୀ। ଉପନିବେଶବାଦର ପ୍ରଭାବ ପୁରାତନ ଭାରତୀୟ ସଂସ୍କୃତି ଉପରେ ପଡ଼ିଲା। ନିଜର ଅନୁଭୂତି ଓ ତାର ଅନ୍ତର୍ନିହିତ ଅଭିଳାଷା ପ୍ରକାଶ ପାଇଲା ଏ ଲେଖାରେ। ତଥାପି ବିଷ୍ଣୁ ଭଟ୍ଟ ଭାବିଥିଲେ 'ଭନିତାକ ଭବିଷମେ ଓମିନା ଭନିତାଜ' ଅର୍ଥାତ 'ଭାଗ୍ୟ, ସବୁ କେବଳ ଭାଗ୍ୟ। ପରେ ଏହାକୁ ଅନୁବାଦ କଲେ ମୃଣାଳ ପାଣ୍ଡେ— ଜଣେ ପ୍ରତିଷ୍ଠିତ ଲେଖକ।

ଯୁଦ୍ଧ ବା ପ୍ରାକୃତିକ ବିପର୍ଯ୍ୟୟ ମଣିଷକୁ କ୍ଷମତା ଓ ପୁରୁଷାର୍ଥରୁ ବିଚ୍ୟୁତ କରେ। ଆଉ ଏ ଘଟଣା ସବୁ ପରବର୍ତ୍ତୀ ବଂଶଧରଙ୍କ ପାଇଁ ରହିଯାଏ ଏକ ସ୍ମୃତି-କାହାଣୀ ଆକାରରେ। ସେ ବହି ଛପାଇବାର ବନ୍ଦୋବସ୍ତ କଲେ ଡେରିରେ। କାରଣ କୌଣସି ପ୍ରକାରର ମିତାନୁବାଦର ସୁଯୋଗ ସେ ଦେବାକୁ ଚାହୁଁ ନଥିଲେ।

ଯୁଦ୍ଧ ସମୟରେ ମୃତ ବା ଜିବୀତ, ଦେଶ ବିଭାଜନ, ସାମ୍ରାଜ୍ୟର ଉତ୍ଥାନ ପତନ ସବୁ ନିର୍ଭର କରେ ଭାଗ୍ୟ ଉପରେ। ବ୍ରିଟିଶରମାନେ ରେଳବାଇ, ପୋଷ୍ଟ

ଅଫିସ, ରାସ୍ତା ଆଉ ଇଂରେଜିଭାଷା (ଯେଉଁ ଭାଷା ବି ଆମକୁ ଅନ୍ୟ ଦେଶ ସହିତ ସଂପର୍କ ରଖିବାର ମୂଳ ଆଧାର) ନୂଆ ସାମାଜିକ, ଅର୍ଥନୈତିକ ସଂଗଠନ ସବୁ (ପବ୍ଲିକ ସ୍କୁଲ ସଂଗଠନ, ଆଙ୍ଗ୍ଲୋ ଇଣ୍ଡିୟାନ ସଂପ୍ରଦାୟର ସୃଷ୍ଟି) ଆମ ପାଇଁ ଉନ୍ନତିମୂଳକ ହୋଇପାରିଥାଏ କିନ୍ତୁ ଥିଲ ସତ୍ୟ। ଆଙ୍ଗ୍ଲୋ-ଇଣ୍ଡିୟାନ ସଂପ୍ରଦାୟ ଏକ ନୂତନ ପଦକ୍ଷେପ।

ବିଷ୍ଣୁ ଭଟ୍ଟ ଆଭିଜାତ୍ୟ ଶ୍ରେଣୀର ଲୋକ ନୁହଁନ୍ତି। କଂପାନୀ ବାହାଦୂରଙ୍କ ସହ କୌଣସି ଘନିଷ୍ଠ ସଂପର୍କ ନାହିଁ। ସେ ନା ଥିଲେ ସିପାହୀ ନା ଇଂରେଜଙ୍କ ଅଧିନସ୍ଥ ସୈନିକ। ଛୋଟ ଗାଁର ଅଧିବାସୀ। ଇଂରେଜମାନଙ୍କ ବିଷୟରେ ବା ତାଙ୍କର ଦେଶ ଉପରେ ଆଧିପତ୍ୟ ସଂକ୍ରାନ୍ତରେ କୌଣସି ଧାରଣା ବି ନଥିଲା। ସାର ଚାର୍ଲ୍ସ ସେଟକାଫଙ୍କ ମତରେ ଗାଁର ସଂପ୍ରଦାୟ ସବୁ ଛୋଟ ଛୋଟ ସାଧାରଣତନ୍ତ୍ର ରାଜ୍ୟ। ନିଜ ନିଜର ନୀତି ସବୁ ଅର୍ଥହୀନ ହେଲେ ବି ନିଜ ନୀତିରେ ସାମ୍ରାଜ୍ୟ ଚାଲିଥାଏ। ସାମ୍ରାଜ୍ୟ ପରେ ସାମ୍ରାଜ୍ୟ ଭାଙ୍ଗିଯାଇଛି। ବିଦ୍ରୋହ ପରେ ବିଦ୍ରୋହ ମୁଣ୍ଡ ଟେକିଛି। ହିନ୍ଦୁ, ପଠାଣ, ମୋଗଲ, ମରହଟ୍ଟା, ଶିଖ, ଇଂରେଜ– ଜଣକ ପରେ ଜଣେ ରାଜ୍ୟ ଶାସନ କରିଛନ୍ତି ସତ। ହେଲେ ଗାଁ ଅଧିବାସୀଗଣ ସ୍ଥିର ଓ ଚଞ୍ଚଳ।

ବିଷ୍ଣୁ ଭଟ୍ଟଙ୍କ ଲେଖା ସ୍ମରଣୀୟ। ଲେଖା ହୋଇଛି ବିରାଟ ଉପନିବେଶବାଦ ସାମ୍ରାଜ୍ୟ ବିରୁଦ୍ଧରେ ପ୍ରାଦେଶିକ ଛୋଟ ଗାଁର ଅଧିବାସୀଙ୍କର ଯୁଗାନ୍ତକାରୀ ସଂଗ୍ରାମ। ବିରାଟ ସିପାହୀ ବିଦ୍ରୋହ ଆରମ୍ଭ ହେଲା ମିରଟରେ ଛୋଟ ଏକ ସେନା ଛାଉଣୀରେ। କିନ୍ତୁ ଏହାର ପରିବ୍ୟାପ୍ତି ଘଟିଲା ଛୋଟ ଛୋଟ ରାଜ୍ୟରେ। ସେ କେବଳ ଏହାର ବର୍ଣ୍ଣନା କରିଛନ୍ତି।

ସିପାହୀ ବିଦ୍ରୋହର ଅଗ୍ନିଶିଖା, ଅଥବା ମୋଗଲ ସାମ୍ରାଜ୍ୟର ଶେଷ ଚିତ୍କାର, ଶାନ୍ତ ଭାବରେ ରାତ୍ରୀର ଅନ୍ଧକାରରେ ମିଳେଇ ଯିବାର ନୁହେଁ। ଏହା ହେବ ବିଶ୍ୱଦର୍ଶନାଭିମୁଖି।

ଭଟ୍ଟ ଘରକୁ ଫେରିଲେ ଯେଉଁପରି ନିଃସ୍ୱ ଭାବରେ ଗାଁ ଛାଡ଼ିଥିଲେ ସେହିପରି ନିଃସ୍ୱ ଭାବରେ। ଫେରିବାର ତିନିବର୍ଷ ପରେ ମା'ଙ୍କ କୋଳରେ ଶୋଇ ଏ ବିଦ୍ରୋହର କାହାଣୀ ବଖାଣିଲେ।

ପରେ ଲିପିବଦ୍ଧ କଲେ ବି ଛପାଇବା ପାଇଁ ମନାକଲେ। କହିଲେ ମୋର ମୃତ୍ୟୁ ପରେ ଏହାର ଉପଯୁକ୍ତ ଉପଚାର କରିବାପାଇଁ ତାଙ୍କ ସାଙ୍ଗକୁ ଅନୁରୋଧ କଲେ।

## Mutiny Papers

୧୮୫୭ ବିଦ୍ରୋହ ଭାରତୀୟ ଦୃଷ୍ଟିକୋଣରୁ ଲୋକଲୋଚନକୁ ଆସିଲା Mutiny Paperର ଲେଖା ଉଦ୍ଧୃତ ହେବାପରେ। ଏହା ଉର୍ଦ୍ଦୁ ଓ ପର୍ଶିୟାନ ଭାଷାରେ ଲେଖା ହୋଇଥିଲା। National Archieves of Indiaର ଅଫିସ ଥାକରୁ ଏହାକୁ ଉଦ୍ଧାର କରାଯାଇଥିଲା। ଉଦ୍ଧାର କରିଥିଲେ William Dalrymple ଓ ତାଙ୍କର ଦୁଇଜଣ ସାଥି ମହମ୍ମଦ ଫାରୁକି ଓ ବ୍ରୁସ ୱ୍ୟାନେଲ। ସେ ପର୍ଯ୍ୟନ୍ତ Mutinyକୁ ଏକପାଖିଆ କରି ବାଖ୍ୟା କରାଯାଉଥିଲା। କିନ୍ତୁ ଏ ଲେଖା ମିଳିବା ପରେ ଭିନସେଣ୍ଟ ସ୍ମିଥ କହିଥିଲେ; ଏ ବିପ୍ଳବର ଭଙ୍ଗି ଅଲଗା ହୋଇଗଲା। ଏଇଟା ହେଲା ଦିଲ୍ଲୀର ଜନସାଧାରଣଙ୍କ ଇତିହାସ ଓ ସେହି ସମୟର ଏକ ଜୀବନ୍ତ ସାମାଜିକ ଚେତନାର ପ୍ରତିଧ୍ୱନି।

ଐତିହାସିକ ଉପନିବେଶବାଦର ଚର୍ଚ୍ଚା ମଧ୍ୟ ହେଲା। ଉପନିବେଶବାଦ ଶବ୍ଦର ଅର୍ଥ ମଧ୍ୟ ବଦଳିଗଲା। କେତେକ ମୁଷ୍ଟିମେୟ ନାମଜାଦା ଇଉରୋପୀୟମାନଙ୍କର ଚାଲିଚଳନ ଓ ଢଙ୍ଗଢାଙ୍ଗର ପ୍ରଭାବ ସମାଜ ଉପରେ ପଡ଼ିଲା। ଏ ପ୍ରକାର ପରିବର୍ତ୍ତନ ଫଳରେ While Mughals ଓ Great Mughals ଉପରେ ମଧ୍ୟ ପ୍ରତିଧ୍ୱନୀତ ହେଲା। ଗାର୍ଡନର ଓ ଫ୍ରେଜରଙ୍କ ବିଷୟ ମଧ୍ୟ ଉଲ୍ଲେଖଯୋଗ୍ୟ। ସେ ଦୁଇଜଣ ଇଂରେଜ ହୋଇ ମଧ୍ୟ ଭାରତୀୟ ଆଦାନ କାଇଦାସବୁ ଆପଣାଇ ନେଇଥିଲେ। ସେମାନେ ନିଶ ଦାଢ଼ି ରଖିଲେ। ଗୋ ମାଂସ ଓ ଘୁଷୁରି ମାଂସ ଖାଇଲେ ନାହିଁ। ଖ୍ରୀଷ୍ଟିୟାନ ଆବାହାୱା ଭିତରେ ହିନ୍ଦୁର ଚେହେରା। ସେମାନେ ଶକ୍ତିଶାଳି, ବୁଦ୍ଧିମାନ, ଜ୍ଞାନୀ କିନ୍ତୁ ବିକେନ୍ଦ୍ରିକ। ଭାରତକୁ ପ୍ରଥମ ଆସିଥିବା ଉଚ୍ଚପଦବୀରେ ଥାଇ ଇଂରେଜ ଲୋକ। ଅତଏବ ତାଙ୍କ ମତାମତ, ଚାଲିଚଳନ ଦେଖି ସେମାନେ ଦେଶୀଲୋକ ପ୍ରାୟ ହୋଇଯାଇଥିଲେ। ଲେଡି ମେରିଆ ନୁଜେଣ୍ଟ, ବ୍ରିଟିଶ କମାଣ୍ଡର-ଇନ-ଚିଫଙ୍କ ସ୍ତ୍ରୀ ଏ ପ୍ରକାର ମନ୍ତବ୍ୟ ପ୍ରକାଶ କରିଥିଲେ। ସେମାନେ ସହବସ୍ଥାନ ନୀତି ଅବଲମ୍ବନ କରିଥିଲେ ସତ କିନ୍ତୁ ଏ ପରିବର୍ତ୍ତନ ଭାରତୀୟ ପରମ୍ପରାର ପ୍ରଭାବ ନୁହେଁ।

କିନ୍ତୁ ଭାରତୀୟ ସ୍ତ୍ରୀ ଲୋକଙ୍କ ସହିତ ଇଂରେଜମାନଙ୍କର ମିଳନ, ଆଙ୍ଗ୍ଲୋ-ଇଣ୍ଡିୟାନ ପିଲାଙ୍କର ଚାଲିଚଳଣ ସବୁଦେଖି ମନେ ହେଲା ସେମାନେ ଧର୍ମର ପ୍ରଚାର କରୁଛନ୍ତି ସତ ହେଲେ ସେମାନଙ୍କୁ ଆଖ୍ୟା ଦେଲେ ଲମ୍ପଟ ଦେବ ପୂଜକ।

ଏହାଫଳରେ ସମାଜର ପ୍ରତିଷ୍ଠିତ ସାମାଜିକ ଧାରାର ପରିବର୍ତ୍ତନ ହେଲା । ନାଚବାଲି ହାସିନୀ, ବ୍ରିଟିଶରଙ୍କ ପ୍ରାସାଦର ଇଦ୍‌ଗାହ ଉପରେ ଆକ୍ରମଣର ସୁଯୋଗନେଇ ସ୍ୱାମୀଙ୍କୁ ଛାଡ଼ି ପ୍ରେମିକ ସାଙ୍ଗରେ ପଳାଇବାର ସାହସ କଲେ । ପଣ୍ଡିତ ହରିଶ୍ଚନ୍ଦ୍ର ଦିଲ୍ଲୀର ହିନ୍ଦୁମାନଙ୍କୁ ନିଜ ନିଜ ବ୍ୟବସାୟ ଛାଡ଼ି ବିପ୍ଳବରେ ଯୋଗ ଦେବାପାଇଁ ଆହ୍ୱାନ ଦେଲେ । ମହାଭାରତ ଦୃଷ୍ଟାନ୍ତ ମଧ୍ୟ ସେମାନଙ୍କୁ ଦେଲେ ।

ହାଫିଜ ଅବଦୁଲ ରହମନ, କବାବ ତିଆରି କରିବା ଉପରେ କଟକଣା ଥିବା ସମୟରେ, କବାବ ତିଆରି କରୁଥିବା ଲୋକଙ୍କୁ ଧରି ସମ୍ରାଟଙ୍କ ପାଖରେ ହାଜିର ହେଲେ । ଦରବାରର ଲୋକ ମାଙ୍ଗଲୋରର ଉପ୍ଣୀ ଚନ୍ଦନ, ତା ନିଜ ସାନ ଭଉଣୀଙ୍କୁ ଘୋଡା ସବାର ଗୁସ୍ତକ ଖାଁଙ୍କର ବଳାତ୍କାରରୁ ରକ୍ଷା କରିବାପାଇଁ ସମ୍ରାଟଙ୍କ ପାଖକୁ ଦୌଡ଼ି ଯାଇଥିଲେ । ଦୈନନ୍ଦିନ ଜୀବନର ଏପରି ଘଟଣାମାନ ଘଟୁଥିଲା ଯାହାଫଳରେ ସହରକୁ, ସଭ୍ୟତାକୁ, ସଂସ୍କୃତିକୁ ଦୋହଲାଇ ଦେଉଥିଲା । ନାଁ ଥିଲା ନିୟମ, ନା ଥିଲା ସାମାଜିକ ଧାରା, ନା ଥିଲେ ଫେରାଦ ଶୁଣିବାପାଇଁ ଶାସକ । ଏସବୁ ଘଟଣାକୁ ଜାତୀୟତାଭାବ, ସାମ୍ରାଜ୍ୟବାଦର ପ୍ରଭାବ ଅର୍ଥ ପୂର୍ବଦେଶର ସଭ୍ୟତାର ପ୍ରଭାବ କୁହାଯାଇ ନପାରେ କିନ୍ତୁ ହୁଏତ ସାଧାରଣ ଜନତାଙ୍କର ଦୁଃଖଦ ସମୟରେ ଅସ୍ଥିର ଚିତ୍ତର କୁପ୍ରଭାବ ମଧ୍ୟ କୁହାଯାଇପାରେ । ନିଜ ନିଜ ଘଟଣାବଳିରୁ ନିସ୍ତାର ପାଇବାକୁ, ନିଃଶ୍ୱାସ ମାରିବାକୁ ବୋଧେ ରାସ୍ତା ଖୋଜୁଥିଲେ । ଆଉ ସବୁର ମିଳିତ ଆହ୍ୱାନ ଥିଲା ସିପାହୀ ବିଦ୍ରୋହ । ମୌଲବୀ ମହମ୍ମଦ ବକର 'ଦିଲ୍ଲୀ ଉର୍ଦ୍ଦୁ ଆକବର' ଖବର କାଗଜର ସମ୍ପାଦକ ମଧ୍ୟ ବ୍ରିଟିଶରମାନଙ୍କ ପାଇଁ ସମ୍ବାଦ ସରବରାହ ଭାବରେ କାମ କରିବା ଆରମ୍ଭ କରିଦେଇଥିଲେ । ପ୍ରତ୍ୟେକ ଦିନର ଘଟଣା ଉପରେ ଅନେକ ଦରଖାସ୍ତ ଜଫରଙ୍କ ପାଖକୁ ଆସୁଥିଲା । ଯେଉଁମାନେ ସିପାହୀଙ୍କ ଦ୍ୱାରା ଅତ୍ୟାଚାରିତ ହେଲେ, ତେଲେଙ୍ଗାନାଙ୍କ କବଳରୁ ରକ୍ଷା ପାଇବାପାଇଁ ଆଶା କରୁଥିଲେ ସମସ୍ତଙ୍କର ଅନୁରୋଧପତ୍ର ଜଫରଙ୍କ ପାଖରେ ପହଞ୍ଚୁଥିଲା ।

୧୮୫୭ ବେଳକୁ କେବଳ ଯେ ବିଦ୍ରୋହ ବିଷୟରେ ଘଟଣା ଘଟୁଥିଲା ତା' ନୁହେଁ ଦରଖାସ୍ତର ଭାଷା ଦୈନନ୍ଦିନ ଘଟଣା ସଂକ୍ରାନ୍ତରେ ମଧ୍ୟ ଥିଲା । ଥିଲା ସ୍ୱାଧୀନତା ଆନ୍ଦୋଳନର ଅଭିଯୋଗ ପତ୍ର । ସାମାଜିକ ଅନିଶ୍ଚିତତା, ବେନିୟମ କାର୍ଯ୍ୟ ବି ଅନାହାର ପ୍ରପୀଡ଼ିତର କରୁଣ କାହାଣୀ । ମ୍ୟୁଟିନ ପେପରରୁ ଜଣାପଡୁଥିଲା କି ଏହା ତ୍ରିକୋଣ ଯୁଦ୍ଧର ଘୋଷଣା– ସିପାହୀ ଓ ବ୍ରିଟିଶରଙ୍କ ଦଙ୍ଗାହାଙ୍ଗାମା,

ସିପାହୀ ଓ ତିଲାଙ୍ଗାନାଙ୍କ ବିରୁଦ୍ଧରେ ଗୋଳମାଳ ଆଉ ସାଧାରଣ ଜନତାଙ୍କର ଏ ଦୁଇଦଳ ମଧ୍ୟରେ ଜୀବନ। ଜଫର ଜନସାଧାରଣଙ୍କୁ ରକ୍ଷା କରିବାର ଦାୟିତ୍ୱକୁ ଗୁରୁତ୍ୱ ଦେଲେ। ସେ କ୍ଷମତାହୀନ ତେବେ ବି ଲୋକଙ୍କର ରକ୍ଷାକର୍ତ୍ତା– ଖଲିଫା। ଦିଲ୍ଲୀ ଜନତା 'ସମ୍ରାଟ ସିଂହାସନର ଦ୍ୱାହି' ବୋଲି ଘୋଷଣା କରନ୍ତି। ଭାବନ୍ତି ସମ୍ରାଟ ଭଗବାନଙ୍କ ଅବତାର।

ଦିଲ୍ଲୀ କବଜା କରିବା ବ୍ରିଟିଶରମାନଙ୍କପାଇଁ ଏକ ଗାରିମାର ବିଷୟ। କିନ୍ତୁ ଏହା ଐତିହାସିକ ଦୃଷ୍ଟିକୋଣରୁ ସ୍ୱାଧୀନତା ଆନ୍ଦୋଳନର ଅୟମାରମ୍ଭ– ଏକ ଅତ୍ୟାଚାରୀ ଦୁଷ୍ଟ ସାମ୍ରାଜ୍ୟବାଦୀଙ୍କ ବିରୁଦ୍ଧରେ। ରାଜୀବ ଅଲ୍ଲିଙ୍କୁ ହଡସନ୍ ତାଙ୍କର ତଳିଆ କର୍ମଚାରୀ ଭାବରେ ନିଯୁକ୍ତି ଦେଲେ। ପୂର୍ବରୁ ପଲିଟିକାଲ ଏଜେଣ୍ଟ ସାର ଜର୍ଜ କ୍ଲର୍କଙ୍କର ପ୍ରଧାନ ମୁନ୍‌ସୀ ଥିଲେ ଓ ପରେ ପଞ୍ଜାବରେ ହେନେରି ଲରେନ୍ସଙ୍କ ପାଖରେ କାମ କରିଥିଲେ। ଅଲ୍ଲି ଦିଲ୍ଲୀଙ୍କୁ ସଙ୍ଗେ ସଙ୍ଗେ ଆସିରଲେ ଏହି ସମୟରେ। ଗୁପ୍ତଚର ଓ ସମ୍ବାଦଦାତାମାନଙ୍କର ଏକ ସଂଗଠନ ଖୋଲିଲେ ବିଦ୍ରୋହ ସଂକ୍ରାନ୍ତରେ ଜାଣିବାପାଇଁ। ଏହି ସଂଗଠନରେ ଥିଲେ ହିନ୍ଦୁ ବ୍ୟାଙ୍କ ବାଲା ଓ 'ଦିଲ୍ଲୀ ଗେଜେଟ'ର ପୂର୍ବତନ ସହସଂପାଦକ। ଆଉ ଥିଲେ ହରିଆନା ରେଜିମେଣ୍ଟର ବ୍ରିଗେଡ଼ିୟର ମେଜର ଗୌରୀ ଶଙ୍କରସୁକୁଲ। ଏମାନେ ଅନେକ ଭିତିରିଆ ଖବର ସବୁ ଯୋଗାଡ଼ କରି ଦେଉଥିଲେ। ରାଜିଉ ଅଲ୍ଲି ଜିନତ ମହଲଙ୍କ ସହିତ ମଧ୍ୟ ସଂପର୍କ ସ୍ଥାପନା କଲେ। ଜଫରଙ୍କ ପ୍ରାଇମ୍ ମିନିଷ୍ଟର ହକିମ ଆସାନଦୁଲ୍ଲା ଖାଁ ମଧ୍ୟ ଏ ଗୁପ୍ତଚର ଘେର ଭିତରକୁ ଆସିଯାଇଥିଲେ। ପୁଣି ଆସିଲେ ମିର୍ଜା ଇଲା ବକ୍ସ। ସେ ଇଂରେଜମାନଙ୍କୁ ବିଶେଷ ଭଲପାଉଥିଲେ। ସେ ଥିଲେ ମିର୍ଜା ଫୁକ୍ରୁଙ୍କ ଶ୍ୱଶୁର।

ହଡସନଙ୍କ ଗୁପ୍ତଚର ସଂସ୍ଥାର ମୁଖ୍ୟ ହୋଇଗଲେ ମିର ମୁନ୍‌ସି ଜୀବନଲାଲ। ପ୍ରତ୍ୟେକ ଦିନ ଦୁଇଜଣ ବ୍ରାହ୍ମଣ ଓ ଦୁଇଜଣ ଜାଟଙ୍କୁ ସହରର ପ୍ରତ୍ୟେକ କୋଣକୁ ତଥ୍ୟ ଯୋଗାଡ଼ କରିବାପାଇଁ ପଠାଇଲେ। ସେମାନେ ହିନ୍ଦୁ ଫକୀର ବେଶରେ ସବୁଆଡ଼େ ବୁଲି (ଦୁର୍ଗ ଓ ବାହାର ଦୁନିଆର) ବୁଲି ବୁଲି ସବୁ ତଥ୍ୟ ଯୋଗାଡ଼ କରିପାରିଲେ। ଗେଟ ପାଖରେ ବିଦ୍ରୋହ ସବୁ ତନ୍ନ ତନ୍ନ କରି ତଦାରଖ କରୁଥିଲେ ହେଁ ସେମାନେ ଭିକାରୀ ବେଶରେ ଭିତରକୁ ଯାଇଁ ଏ ସବୁ ତଥ୍ୟ ଯୋଗାଡ଼ କରିପରୁଥିଲେ।

ପ୍ରତ୍ୟେକ ଘର ତଦାରଖ ହେଉଥିଲା ଓ ଦରକାର ପଡ଼ିଲେ ଲୁଣ୍ଠନ ମଧ୍ୟ। ଦିଲ୍ଲୀ ସିହା ସଂପ୍ରଦାୟର ମୁଖ୍ୟ ହମିଦ୍ ଅଲ୍ଲି ଖାଁଙ୍କ ବିରୁଦ୍ଧରେ ଅଭିଯୋଗ ଥିଲା କି ଉଇରୋପୀୟମାନଙ୍କୁ ଲୁଚାଇ ରଖିଛନ୍ତି। ଜଫର ବାଧା ନ ଦେଇଥିଲେ ସେ ମଧ୍ୟ ମୃତ୍ୟୁମୁଖରେ ପଡ଼ିଥାନ୍ତେ। ସହର ଭିତରେ ଲୁଣ୍ଠନର ନିଆ ଜଳୁଥାଏ। ଦୁର୍ଗ ଫାଟକ ନିକଟରେ ସିପାହୀମାନେ ନିଜ ନିଜର ଗାର୍ଡ ରଖିଥାନ୍ତି। ଦୁର୍ଗ ଦେଖାଯାଇଥାଏ ଏକ ମିଲିଟାରୀ କାଣ୍ଟିନପରି।

ଏ ପ୍ରକାର ଗୁପ୍ତଚର ସଂସ୍ଥାରେ ଶିଖମାନେ ବେଶି ଭାଗ ନେଉଥାନ୍ତି। ବ୍ରିଟିଶ ସହ ଶିଖମାନଙ୍କର ଦୁଇ ଦୁଇଥର ଯୁଦ୍ଧ ହୋଇସାରିଥିଲେ ମଧ୍ୟ ତାଙ୍କର ମୋଗଲମାନଙ୍କ ପ୍ରତି ଘୃଣା ଥିଲା। ସେମାନଙ୍କର ଗୁରୁ ୧୬୦୬ରେ ଗୁରୁ ଅର୍ଜୁନ ସିଂଙ୍କୁ ଓ ୧୬୭୪ରେ ଗୁରୁ ତେଗ୍ ବାହାଦୁରଙ୍କୁ ମୋଗଲମାନେ ହତ୍ୟା କରିଥିଲେ। ଏପଟେ ତିଲଙ୍ଗାନାମାନଙ୍କର ମଧ୍ୟ ଏ ପ୍ରକାର ଲୁଣ୍ଠନରେ ହାତ ଥିଲା। ଗୁର୍ଜରମାନଙ୍କର ଅତ୍ୟାଚାର ମଧ୍ୟ କହିଲେ ନସରେ। ଏମାନଙ୍କ ଅତ୍ୟାଚାର ଫଳରେ ବାହାରୁ କୌଣସି ସାହାଯ୍ୟ ଆସିପାରୁ ନଥିଲା।

ଜନସାଧାରଣଙ୍କର ଅନୁରୋଧ, ସମ୍ରାଟ ଏହାର ଅନୁଧ୍ୟାନ କରି ଫଏସଲା କରିବେ। ଅତ୍ୟାଚାର ଓ ଲୁଣ୍ଠନପାଇଁ ଜନସାଧାରଣ ସମ୍ରାଟ ଆଗରେ ଫେରାଦ ହେଲେ। ସେଥିପାଇଁ ସବୁକୁ ଶେଷ କରିବାପାଇଁ ଦରବାରର ଅନେକ ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ଜଫର ଦୁର୍ଗ ଭିତରକୁ ଡକାଇ ଆଲୋଚନା କଲେ। ସିଦ୍ଧାନ୍ତ ହେଲା କି ମିର୍ଜା ଜୱାନ ତିକ୍ତଙ୍କୁ ହାତୀ ଉପରେ ପଛରେ ବସାଇ କେତେକ ଡ୍ରମ ବାଲା, ସୈନ୍ୟସାମନ୍ତ, ନିଜ ସୈନ୍ୟ, ବନ୍ଧୁକ, ଗୋଳି ଗୁଳା ନେଇ ଏକ ଶୋଭାଯାତ୍ରାରେବାହାରି ସହର ପରିକ୍ରମା କରି ଘୋଷଣାନାମା ଜାରି କରିବେ କି ଦେଶ ବର୍ତ୍ତମାନ ସମ୍ରାଟଙ୍କ ଅଧିନରେ। ତେଣୁ ଲୁଣ୍ଠନ ବନ୍ଦ କରାଯାଉ, ବଜାର ହାଟରେ ବ୍ୟବସାୟ ଚାଲୁ, ବ୍ୟବସାୟ ଆରମ୍ଭ ହେଉ। ଆଉ ଦେଶକୁ ଶାନ୍ତ କରିବାର ଆୟୋଜନ ହେଉ।

ଅପରପକ୍ଷେ ମିର୍ଜା ମୋଗଲ ପ୍ରତ୍ୟେକ ପୋଲିସ ଷ୍ଟେସନକୁ ଯାଇଁ ଘୋଷଣା କଲେ କି ଲୁଣ୍ଠନ ବନ୍ଦ ନକଲେ ଲୁଣ୍ଠନକାରୀଙ୍କ ନାକ କାନ କାଟି ଦିଆଯାଇ ଶାସ୍ତି ଦିଆଯାଉ। ଦେଶର ଜନସାଧାରଣଙ୍କୁ ବଞ୍ଚେଇବାପାଇଁ ଅଭିଯୋଗପତ୍ର ସବୁ ଜଫରଙ୍କ

ନିକଟରେ ପହଞ୍ଚିଲା । ପତ୍ରରେ ବିନିତ ଅନୁରୋଧ ଥିଲା କି ସମ୍ରାଟ ଲୁଣ୍ଠନ ହତ୍ୟା ବନ୍ଦ କରିବାପାଇଁ ଆଗେଇ ଆସନ୍ତୁ । କିନ୍ତୁ ଟଙ୍କାର ଘୋର ଭାବ ।

ଅଗଷ୍ଟ ମାସରେ ଜିହାଦୀ ଓ ସିପାହୀମାନେ ଦିଲ୍ଲୀ ଛାଡ଼ି ବାହାରକୁ ପଳାଇଲେ । କାରଣ ଥିଲା ଭୋକର ଜ୍ୱାଳା । ଖାଦ୍ୟ ସାମଗ୍ରୀର ଯୋଗାଡ଼ ହୋଇପାରିଲା ନାହିଁ । ହତାଶ ହୋଇଗଲେ ଜଫର । ଦିଲ୍ଲୀ ବଜାର ଏଇ ଅବସରରେ ଲୁଣ୍ଠନ ହେଲା । ଲୋକେ ନିଜକୁ ଅସୁରକ୍ଷିତ ମନେ କଲେ । ବାହାରକୁ ବାହାରିଲେ ନାହିଁ । ଏ ଅବସ୍ଥା ଜଫରଙ୍କୁ ଜଣାଇଲେ । ଦେଶର ପ୍ରଶାସନ ଗୋଷ୍ଠୀ ମଧ ଇଂରେଜମାନଙ୍କ ଆଡକୁ ଢଳିଲେ । ଅଭିଯୋଗ ପତ୍ର ସବୁ ପାହାଡ଼ପରି ଗଦା ହେଲା ଜଫରଙ୍କ ପାଖରେ । ଦିଲ୍ଲୀ ଗେଟ ପାଖରେ ୧୬ ଅଗଷ୍ଟରେ ଲୋକେ ଲାଲା ଜାଟମଲ ଓ ତାଙ୍କ ଦଳ ସଂକ୍ରାନ୍ତରେ ଜଫରଙ୍କୁ ଜଣାଇବାପାଇଁ ଏକାଠି ହେଲେ । ଅଭିଯୋଗକଲେ କି ନିହାତି ଗରୀବ ଲୋକଙ୍କର ଖାଇବା ମଧ ଏ ଦଳ ଛଡ଼ାଇ ନେଇଯାଉଛନ୍ତି ।

ଅରାଜକତା ଦବେଇବାପାଇଁ କାହାର ଶକ୍ତି ନାହିଁ କାରଣ ଶାସନର ଅଭାବ । ରାଜ ପରିବାରର ସମସ୍ତେ ଜଫରଙ୍କୁ ସମର୍ଥନ କଲେ ହେଲେ ଜିନତ ମହଲ ଓ ତାଙ୍କ ପୁତ୍ର ମିର୍ଜା ଜୱାନ ୱକ୍ତ ବିପରୀତ କାର୍ଯ୍ୟକ୍ରମ ଗ୍ରହଣ କରିଥିଲେ । ଜିନତ୍‌ଙ୍କର ସ୍ୱପ୍ନ ଥିଲା ଜୱାନ ୱାକ୍ତଙ୍କୁ ଭାବୀ ସମ୍ରାଟ ଭାବରେ ବ୍ରିଟିଶ ଗ୍ରହଣ କରିନିଅନ୍ତୁ । ସେଥିପାଇଁ ସେ ଜଫରଙ୍କ କାର୍ଯ୍ୟକଳାପକୁ ଗ୍ରହଣ କରିପାରି ନଥିଲେ । ପ୍ରଥମ ଥର ପାଇଁ ଜଫର ଜିନତ୍ ମହଲଙ୍କ ପ୍ରସ୍ତାବକୁ କୌଣସି ଗୁରୁତ୍ୱ ଦେଲେ ନାହିଁ । କହିଲେ 'ଭଗବାନଙ୍କ ବରାଦ କାର୍ଯ୍ୟକାରୀ ହେଉ' । ବିଦ୍ରୋହ ଘଟିବାଦିନ ଜିନତ୍ ସମ୍ରାଟଙ୍କୁ ଅନ୍ୟ ଉପାୟ ନ ପାଇ ଓଟ ସାହାଯ୍ୟରେ ଆଗ୍ରାର ଉତ୍ତର ପଶ୍ଚିମ ପ୍ରଦେଶର ଗଭର୍ଣ୍ଣରଙ୍କୁ ଖବର ପଠାଇବା ବାଧ୍ୟ କଲେ । ଜୱାନ ୱକ୍ତଙ୍କୁ ଏସବୁ ଗଣ୍ଡଗୋଳରୁ ଦୂରେଇ ରହିବାପାଇଁ ଉପଦେଶ ଦେଲେ ଜିନତ୍ । ମିର୍ଜା ମୋଗଲ ଯେତେବେଳେ ସିପାହୀମାନଙ୍କର କମାଣ୍ଡର-ଇନ-ଚିଫ୍, ଜୱାନ ୱକ୍ତ ଥିଲେ ନାଜିର ।

ଜିନତ କପଟତାପାଇଁ ତାଙ୍କୁ ଯୋଗ ଦେଇଥିଲେ ପୁତ୍ର ଜୱାନ ୱକ୍ତ, ମେହବୁବ୍ ଅଲି ଖାଁ, ହକିମ ଅସଦୁଲ୍ଲା ଖାଁ, ଆଉ ଇଲା ବକ୍ସ । ୧୮୫୨ରେ ମିର୍ଜା ଇଲା ବକ୍ସ ଜିନତଙ୍କ ପରମ ଶତ୍ରୁ ଥିଲେ । କୱାନ ୱକ୍ତ ଓ ମେହବୁବ୍ ଅଲ୍ଲି ଖାଁ ମଧ ଶତ୍ରୁ ଥିଲେ । କିନ୍ତୁ ଦେଶର ଏ ଘଡ଼ିସନ୍ଧି ବେଳରେ ସେଇମାନେ ହିଁ ତାଙ୍କର ଜଫର ନିଜେ ଜିନତ୍ ଓ ତାଙ୍କ ଉପଦେଶଦାତାମାନଙ୍କଠୁ ଦୂରେଇ ରହୁଥିଲେ । ସିପାହୀମାନଙ୍କ

କାର୍ଯ୍ୟକଳାପରେ ବିବ୍ରତ, ସହର ଲୁଣ୍ଠନପାଇଁ ବ୍ୟଥିତ। ଏ ରାଜ୍ୟକୁ କିପରି ରକ୍ଷା କରିବେ ଭାବି ପାରୁ ନଥିଲେ। ସମ୍ରାଟଙ୍କର ଏକ ନୂଆ ରୂପ। ଇଚ୍ଛା କଲେ ରାଜ୍ୟ, ଦୁର୍ଗ ଓ ରାଜସିଂହାସନକୁ ବଞ୍ଚେଇବାପାଇଁ। ସେଥିପାଇଁ ଜନସାଧାରଣଙ୍କ ସହ ଏକମତ, ସିପାହୀଙ୍କ ବିଦ୍ରୋହକୁ ସମର୍ଥନ କଣାଇଲେ।

୧୬ ମେ ରେ ଜିନତମହଲ ତାଙ୍କ ସମର୍ଥକମାନଙ୍କ ସାହାଯ୍ୟରେ ସମ୍ରାଟ ଓ ମିର୍ଜା ମୋଗଲଙ୍କ ବିରୁଦ୍ଧରେ ଯାଇଁ ବିଦ୍ରୋହ ସଂକ୍ରାନ୍ତରେ ଏକ ସ୍ୱାଧୀନ ନିୟମ ଲାଗୁ କଲେ। ଏହାର ପ୍ରମାଣ ସ୍ୱରୂପ ଦେଖାଗଲା କି ହକିମ ଓ ସମ୍ରାଟଙ୍କର ଏକ ମିଳିତ ଲିଖିତପତ୍ର ସହରର ଦିଲ୍ଲୀ ଗେଟ ରକ୍ଷକଙ୍କୁ ଦେଖାଇ ଦିଆଗଲା। ସେଥିରେ ଲେଖାଥିଲା କି ଇଂରେଜମାନେ ତୁରନ୍ତ ସହର ଆକ୍ରମଣ କରନ୍ତୁ ଆଉ ମିର୍ଜା ମୋଗଲଙ୍କୁ ଉତ୍ତରାଧିକାରୀ ସୂତ୍ରରେ ମାନି ନିଅନ୍ତୁ। ପରେ ପରେ ହକିମ ଓ ହାରେମର ପ୍ରଧାନ ରକ୍ଷକ ଦୁହେଁ ପାଲିଙ୍କିରେ ଆସିଲେ ଦରବାରକୁ। ଅନ୍ୟାନ୍ୟ ସଦସ୍ୟମାନେ ତାଙ୍କୁ ଖରାପ ଚକ୍ଷୁରେ ଦେଖିଲେ। ସୈନ୍ୟମାନେ ତାଙ୍କ ବିରୁଦ୍ଧରେ ଖଣ୍ଡା ଉତ୍ତୋଳନ କଲେ। କାରଣ ସମସ୍ତେ ହୃଦୟଙ୍ଗମ କରିଥିଲେ କି ଏ ଚିଠି ଜାଲ ଥିଲା ଓ ସେଇମାନେହିଁ ଇଂରେଜଙ୍କ ସାଙ୍ଗରେ ହାତ ମିଳାଇଥିଲେ।

ଇଂରେଜ ବନ୍ଦୀମାନଙ୍କୁ ସୈନ୍ୟମାନେ ନକରଖାନା ପାଖକୁ ନେଇ ହତ୍ୟା କରିବାର ଧମକ ଦେଲେ। ଅବାକ୍ ହେଲେ ଜଫର। ଅନୁରୋଧ କଲେ ସେମାନଙ୍କୁ ହତ୍ୟା ନ କରିବାପାଇଁ। ଆଉ କହିଲେ କି ରାଣୀ ସାହେବାଙ୍କର ମଧ୍ୟ ଏକା ଆଦେଶ। ଶେଷରେ ହାକିମ ମଧ୍ୟ ଏ ଗଣହତ୍ୟା ବନ୍ଦ କରିବାପାଇଁ ଅନୁରୋଧ କଲେ। କାହାରି କଥା ନ ମାନି ସୈନ୍ୟମାନେ ଗଣହତ୍ୟା କଲେ। ଏ ପ୍ରକାର ଗଣହତ୍ୟା ପାଇଁ ଇଂରେଜମାନେ ଜଫରଙ୍କୁ କେବେହେଁ କ୍ଷମା କରିବେ ନାହିଁ। ଏ ହତ୍ୟାକାଣ୍ଡ ତାଙ୍କ ପାଇଁ ଏକ ମାଇଲ ଖୁଣ୍ଟ ଥିଲା। ଗଣହତ୍ୟା ରୋକିବାପାଇଁ ମଧ୍ୟ ତାଙ୍କ ନିକଟରେ କୌଣସି ଉପାୟ ନଥିଲା। ନିଜର ଅକ୍ଷମତା କଥା ଭାବିବ କିଏ? ବିଦ୍ରୋହର ୨ ସପ୍ତାହ ପରେ ମଧ୍ୟ ଲୁଟତରାଜ ଚାଲିଥିଲା। ଏ ଲୁଟତରାଜ ଯେ କେବଳ ସିପାହୀମାନଙ୍କ ଦ୍ୱାରା ହେଉଥିଲା ତାହା ନୁହେଁ ଏଥିରେ ଜନସାଧାରଣ ମଧ୍ୟ ଭାଗ ନେଇଥିଲେ। ପୋଲିସ ଚୌକିର ମଧ୍ୟ ଅକ୍ତିଆର ନ ଥିଲା। ଗୁର୍ଜାର ଓ ଜାଟମାନେ ମଧ୍ୟ ଏଥିରେ ଭାଗ ନେଇଥିଲେ। ରାସ୍ତାଘାଟ, କୋଠୀ, ମହଲା ସବୁର ଅବସ୍ଥା କହିଲେ ନ ସରେ। କର୍ଣ୍ଣେଲ ଜେମସ୍ ସ୍କିନରଙ୍କ କୋଠୀ ମଧ୍ୟ ବାଦ ପଡ଼ିଲା ନାହିଁ।

'ଦିଲ୍ଲୀ ଉର୍ଦ୍ଦୁ ଆକବର' ପତ୍ରିକାର ସଂପାଦକ ବକର କହିଲେ; ଏ ଅରାଜକତା ପଛରେ ଶାସନକ୍ଷମତାର ଦୁର୍ବଳତା ବେଶି ପରିମାଣରେ ଅନୁଭୂତ ହେଲା। ବିଦ୍ରୋହୀମାନଙ୍କର ମଧ୍ୟ କୌଣସି ନେତା ନ ଥିଲେ। ମିର୍ଜା ମୋଗଲ କମାଣ୍ଡର-ଇନ-ଚିଫ୍ ଥିଲେ ମଧ୍ୟ ସିପାହୀଙ୍କୁ ନିର୍ଦ୍ଦେଶନା ଦେବା ତାଙ୍କ ଶକ୍ତିର ବାହାରେ ଥିଲା। ଦିଲ୍ଲୀ ଓ ମିରଟର ସିପାହୀମାନେ ଦୁଇ ଦଳ ହୋଇଗଲେ। ଭିନ୍ନ ଭିନ୍ନ ରେଜିମେଣ୍ଟର ମଧ୍ୟ ଭିତରେ ଭିତରେ ବିବାଦ ଲାଗିଲା। ବାହାରର ଲୋକେ ମଧ୍ୟ ଏଥିରେ ଭାଗ ନେଲେ। ଗାଲିବଙ୍କ ଭାଷାରେ, ହଜାର ହଜାର ସଂଖ୍ୟାରେ ବିପ୍ଳବୀ ମହଜୁଦ୍ ଥିଲେହେଁ ଏ ଯୁଦ୍ଧର ସେନାପତି କେହି ନଥିଲେ। ସବୁ ଅନୁଧ୍ୟାନ କରି ବିବ୍ରତ ଜଫର କହିଲେ, ଆମ ଉପରେ ଆକାଶ ଛିଡ଼ି ପଡ଼ିଛି। କିଛିଟା ଅବସ୍ଥା ସମ୍ଭାଳି ନେଇଥିଲେ କୋଟଓ୍ୱାଲ ହେଲେ ତେଲେଙ୍ଗାନାମାନଙ୍କ ଉପରେ କୌଣସି କର୍ତ୍ତୃତ୍ୱ ନ ଥିଲା ତାଙ୍କର।

ମିର୍ଜା ମୋଗଲଙ୍କର ଏ ପରିସ୍ଥିତିର ଶାସନ ହୁଗୁଳା ଥିଲା। କିନ୍ତୁ ସିପାହୀଙ୍କୁ ହାତରେ ରଖିବାକୁ ଭାବି ଜଫର ତାଙ୍କୁ ଏକ ଟ୍ରମ୍ପ କାର୍ଡ ଭଳି ବ୍ୟବହାର କଲେ। ଥରେ ସେ ତାଙ୍କ ମୁନଲାଇଟ ବଗିଚା ଓ ମହତାବ ବାଗରୁ ସିପାହୀମାନଙ୍କୁ ବାହାରିଯିବାପାଇଁ ଆଦେଶ ଦେଲେ। ଆଦେଶ ଅମାନ୍ୟ ହେବାପରେ ସେ ନିଜକୁ ଗୋଟେ କୋଠରୀରେ ଆବଦ୍ଧ ରଖିଲେ। କାହା ସହିତ ଦେଖାଦେଲେ ନାହିଁ। ଶେଷରେ ସିପାହୀମାନେ ଅପସରି ଗଲେ। ଗୋଟେ ସପ୍ତାହ ପରେ ସିପାହୀମାନଙ୍କୁ ଲୁଣ୍ଠନ ବନ୍ଦ କରିବାକୁ କହିଲେ। ଅଧିକନ୍ତୁ ସେ ଦିଲ୍ଲୀ ବାହାରକୁ ଚାଲିଯାଇଁ ମକ୍କା ଚାଲିଯିବେ ବୋଲି ଧମକ ଦେଲା।

ପୂର୍ବରୁ ଫିରିଙ୍ଗିମାନେ ଆମ ପ୍ରଜାଙ୍କ ଉପରେ ଅତ୍ୟାଚାର କରି ଆସିଥିଲେ। ଇଂରେଜ ସୈନ୍ୟମାନେ ମଧ୍ୟ ଏ ଅତ୍ୟାଚାରରେଭାଗ ନେଇଥିଲେ। ଲୁଣ୍ଠନ ଘେରି ରହିଛି ଦେଶକୁ, ଜନସାଧାରଣଙ୍କୁ, ସିପାହୀ ଓ ରାଜଭକ୍ତ ସେଚାକାରୀଙ୍କୁ। ଆଉ ବର୍ତ୍ତମାନ ତେଲଙ୍ଗାନାମାନେ ଏଇ ସୁଯୋଗରେ ନିଷ୍ପେଷିତ କରୁଛନ୍ତି ଜନତାଙ୍କୁ। ଏପରି ଘଟିଲେ ଏଇଟାହିଁ ହେବ ଶେଷଦିନ– ଜଫର କହିଲେ, ''ମୋର ରାଜଗାଦୀ ବା ଅର୍ଥପାଇଁ ତିଳେମାତ୍ର ଲୋଭ ନାହିଁ। ମୁଁ ମେହୋରାଲିରେ ଖ୍ୱାଜାସାହେବଙ୍କ ସୁଫି ଧର୍ମସ୍ଥଳକୁ ଚାଲିଯିବି ଆଉ ସାଙ୍ଗରେନେଇଯିବି ସମସ୍ତ ପ୍ରଜାଙ୍କୁ। ପରେ ମକ୍କାରେ ଥିବା କା'ବାକୁ ଯାଇଁ ସାରାଜୀବନ ସର୍ବଶକ୍ତିମାନଙ୍କ ପୂଜାରେ କଟାଇବି।''

ଏ ଲେଖାପତ୍ର ଦରବାର ସାମନାରେ ପଢ଼ାହେଲା । ସବୁ ସଦସ୍ୟଙ୍କ ଚକ୍ଷୁ ଲୋତକପୂର୍ଣ୍ଣ । ସମସ୍ତେ ଏକଚିତ୍ତ ହୋଇ ସବୁ ଦିଗରୁ ସାହାଯ୍ୟ ଦେଇ ଦେଶକୁ ସ୍ଥିର କରିବାପାଇଁ ପ୍ରାର୍ଥନା କଲେ । ଏଇଟାହିଁ ଦେଶକୁ ଓ ସମ୍ରାଟଙ୍କୁ ମୁକ୍ତି ଦେଇ ଶାନ୍ତ କରିବ । ଯାହା ହେବାର ନଥାଏ, ତାହା ବୋଧେ ଘଟେ ନାହିଁ । ୧୯ ମେ'ରେ ମୁଲ୍ଲା-ମୌଲବୀ ମହମ୍ମଦ ସାୟିଦ, ଜାମା ମସଜିଦ ନିକଟରେ ଜିହାଦି ମାନଙ୍କର ଏକ ସମ୍ମିଳନୀ ଡକାଇଲେ । ଏ ସମ୍ମିଳନୀ ଏକ ମୁସଲିମ ଯୁଦ୍ଧର ଡାକରା ଦେଇପାରିଥାନ୍ତା । ଜଫର ସାଙ୍ଗେ ସାଙ୍ଗେ ଏହାକୁ ରଦ୍ଦ କରିବାକୁ ଆଦେଶ ଦେଲେ । ନ ହେଲେ ଦିଲ୍ଲୀର ହିନ୍ଦୁମାନେ ଏ ଧର୍ମଯୁଦ୍ଧରେ ପେଶି ହୋଇଯାଇଥାନ୍ତେ ।

୨୦ ମେ'ରେ ଦିଲ୍ଲୀ ଫିଲ୍ଡଫୋର୍ସ ଅମ୍ବଲାରେ ଏକାଠି ହେଲେ । ମୌଲବୀ ଜଫରଙ୍କ ସାମନାରେ ନିଜକୁ ପେଶ କଲେ । ଆଉ ଘୋଷଣା କଲେ କି ହିନ୍ଦୁମାନେ ଇଂରେଜଙ୍କୁ ସମର୍ଥନ କରୁଛନ୍ତି । ସେଥିପାଇଁ ଜିହାଦିମାନଙ୍କର ଏ ପରିସ୍ଥିତିକୁ ସମ୍ଭାଳିବାର ଉଚିତ ରାସ୍ତା । ସେତିକିବେଳକୁ ଦୁର୍ଗ ଭିତରେ ଦିଲ୍ଲୀର ହିନ୍ଦୁମାନେ ମଧ୍ୟ ଜଫରଙ୍କ ସହ ଦେଖାକଲେ । ମୌଲବିଙ୍କ ଅଭିଯୋଗକୁ ଖଣ୍ଡନ କଲେ । ଜଫର ବିଶ୍ୱାସ କଲେ ସେମାନଙ୍କର ବକ୍ତବ୍ୟକୁ । କହିଲେ ପୁରବିୟାମାନେ ସମସ୍ତେ ହିନ୍ଦୁ । ଜିହାଦିଙ୍କ ଅଭିଯୋଗ ଠିକ୍ ନୁହେଁ । ଏ ପ୍ରକାର ପରିସ୍ଥିତି ଗୃହଯୁଦ୍ଧରେ ପରିଣତ ହେବ ଆଉ ତାର ପରିଣାମ ହେବ ଭୟଙ୍କର । ଜିହାଦିମାନେ ଶାନ୍ତ ହେଲେ । କିନ୍ତୁ ଆଠସପ୍ତାହ ପରେ ଓ୍ୱାହିଦିମାନେ ଦିଲ୍ଲୀ ଛାତିରେ ଏକାଠି ହେଲେ ଉତ୍ତର ଭାରତର ପ୍ରତ୍ୟେକ କୋଣରୁ । ଏଇଟା ଦିଲ୍ଲୀ ପାଇଁ କ୍ଷତିକାରକ ଥିଲା ।

## ଗାଲିବଙ୍କ ବର୍ଣ୍ଣନା (ସିପାହୀ ବିଦ୍ରୋହ)–

ଦିଲ୍ଲୀ ଦୁର୍ଗ, ଶସ୍ତ୍ରାଗାର– ହଠାତ୍ କମ୍ପିଉଠିଲା– ଏ କମ୍ପନ ଭୂମିକମ୍ପ ଜନିତ ନୁହେଁ– ଦିଲ୍ଲୀ ସହର ଥରିଲା– ଚାରିଆଡ଼େ ପାଟି, ଗଣ୍ଡଗୋଳ- କେବଳ ବ୍ରିଟିଶ ରକ୍ତରେ ରଂଜିତ କରିବେ ନିଜର ଅସ୍ତ୍ର, ଶସ୍ତ୍ର ଦିଲ୍ଲୀ ସୈନ୍ୟବାହିନୀ । ରାସ୍ତା, ଛୋଟ ରାସ୍ତା, ଗଳି ରାସ୍ତା ସବୁ ଘୋଡା ଟାପୁର ଶବ୍ଦରେ ପ୍ରକମ୍ପିତ ହେଲା । ସୈନ୍ୟମାନଙ୍କ ପରେଡ଼– ଲହର ଉପରେ ଲହର ଦେଇ ଦିଲ୍ଲୀ ସହର ଶବ୍ଦ ମାଡରେ ପ୍ରତିଧ୍ୱନିତ ହେଲା । ଖାସ ବଜାର, ଉର୍ଦ୍ଦୁବଜାର, ବାଲାକୀ ବେଗମ ମହଲା, ଖାନାମର ବଜାର ସବୁ ଧୂଳିରେ ମିଶାଇ ଦିଆଗଲା । ଏକାକାର ହୋଇଗଲା ରାଜଘାଟରୁ ଜାମା ମସଜିଦ

ପର୍ଯ୍ୟନ୍ତ ଜାଗା। ଯୋଜନା ବି ଥିଲା ଜାମା ମସ୍‌ଜିଦକୁ ଭାଙ୍ଗିବାପାଇଁ। କିନ୍ତୁ ଜନ ଲରେନ୍ସ ବାଧା ଦେଲେ। ବ୍ରିଟିଶ ଦଖଲରେ ଆସିଲା ଜାମା ମସଜିଦ। ପାଞ୍ଚ ବର୍ଷ ପରେ ୨ ଲକ୍ଷ ଟଙ୍କା ବିନିମୟରେ ମୁସଲମାନମାନଙ୍କୁ ହସ୍ତାନ୍ତର କରାଯାଇଥିଲା।

ସୁନ୍ଦର ମାରବଲ କବରରେ ଶାନ୍ତିରେ ଶୋଇଯାଇଛନ୍ତି ବିଖ୍ୟାତ ଉର୍ଦ୍ଦୁକବି ଗାଲିବ (ମିର୍ଜା-ଆସଦ-ଉଲ-ଖାଁ) ନିଜାମୁଦ୍ଦିନର ଚୌଷଠ ଖମ୍ବ ପାଖରେ। ହାଇଦ୍ରାବାଦର ଜଣେ ଉଚ୍ଚକୋଟୀର ଶିଳ୍ପାକାର ନବାବ୍ ଜଙ୍ଗ ବାହାଦୂର ଏ କବରର ଡିଜାଇନ ପ୍ରସ୍ତୁତ କରିଥିଲେ। ୧୯୬୯ରେ ଗାଲିବଙ୍କ ସ୍ମୃତିରେ ଏଠାରେ ଗାଲିବ ଏକାଡେମି ଖୋଲାଗଲା। ଲାଇବ୍ରେରୀ, ମ୍ୟୁଜିୟମ ଓ ଆର୍ଟ ଗ୍ୟାଲେରୀ ମଧ୍ୟ ଏହା ସହିତ ସଂଲଗ୍ନ ଥିଲା। ଗାଲିବଙ୍କ ସାହିତ୍ୟ ଉପରେ ଆଲୋଚନା ହିଁ ଏ ଏକାଡ଼େମୀର ମୂଳ ଲକ୍ଷ୍ୟ ଥିଲା।

## ସିପାହୀ ବିଦ୍ରୋହ ପରେ

ବ୍ରିଗେଡ଼ିୟର ଜେନେରାଲ ଜନ୍ ନିକଲସନ ୧୪ ଅଗଷ୍ଟରେ ବ୍ରିଟିଶ କ୍ୟାମ୍ପରେ ପହଞ୍ଚିଲେ। ସଙ୍ଗରେ ଥିଲେ ୧୦୦୦ ବ୍ରିଟିଶ ଟ୍ରୁପ, ୬୦୦ ଘୋଡ଼ା ସବାର। ସମସ୍ତେ ପ୍ରାୟ ପଞ୍ଜାବ ମୁସଲିମ। ଆଉ ୧୬୦୦ ଶିଖ ସିପାହୀ। ବ୍ରିଟିଶ ଟ୍ରୁପ ଉଦାସ ଥିଲେ ସିପାହୀ ବିଦ୍ରୋହ ପରେ। ତାଙ୍କ ଭିତରେ ସାହସ ଖେଳାଇବାର ଇଚ୍ଛା ନିକଲସନଙ୍କ ଥିଲା। ଦକ୍ଷତା ମଧ୍ୟ ଥିଲା। କର୍ତ୍ତବ୍ୟ ପରାୟଣତା, ସାହସ, ଗାମ୍ଭୀର୍ଯ୍ୟ, ନିଷ୍ଠୁରତା, ହୃଦୟହୀନତା ମଧ୍ୟ ନିକଲସନଙ୍କ ଭିତରେ ଭରପୁର ଥିଲା। ତ୍ରିମୁର ଘାଟରେ ବିଜୟରେ ସେ ତାଙ୍କର ଗୁଣର ପରିଚୟ ଦେଇଥିଲେ। ସିପାହୀମାନଙ୍କୁ ମାର୍ଚ୍ଚ କରାଇ ରବି ନଦୀରେ ବୁଡ଼ାଇ ବୁଡ଼ାଇ ମାରୁଥିଲେ। ପ୍ରତିଶୋଧର ଅବତାର ଭାବରେ ନିକଲସନଙ୍କ ଆର୍ବିଭାବ ହୋଇଥିଲା ଦିଲ୍ଲୀ ଛାତିରେ। ୧୮୫୭ ବେଳକୁ ଦିଲ୍ଲୀ ଆୟତନରେ ବଡ଼, ଅତି ମନୋହର। ହିନ୍ଦୁସ୍ତାନର ସବୁଠୁ ପ୍ରୀୟ ସହର ଥିଲା। ସିପାହୀ ବିଦ୍ରୋହ ପରେ ଗୁର୍ଜରମାନେ ମଧ୍ୟ ଅନେକଙ୍କ ଧନସମ୍ପତ୍ତି ଛଡ଼ାଇ ନେଇଥିଲେ। ପରେ ପରେ ହଇଜାରେ ଆକ୍ରାନ୍ତ ହୋଇ ମଧ୍ୟ ଅନେକ ପ୍ରାଣ ତ୍ୟାଗ କରିଥିଲେ। ଶବ ସବୁ ରାସ୍ତାଘାଟରେ ଗଡୁଥିଲା।

ଅମାନୁଷିକତାର ରାଜ ଚାରିଆଡ଼େ। କର୍ଣ୍ଣେଲ ଏ: ଆର: ଡ଼ି: ମାକେନ୍‌ଜିଙ୍କ ଆଦେଶରେ ସିପାହୀଙ୍କୁ ଅତି ନିର୍ମମ ଭାବରେ ସାପକୁ ଗୋଡ଼ାଇ ଗୋଡ଼ାଇ ମାରିଲା

ପରି ମାରିଲେ। କାପ୍‌ଟେନ କେ: ଏମ୍: ୱାଡେଙ୍କ ଅନୁସାରେ କୌଣସି ସିପାହୀ ଓ ତାଙ୍କ ପରିବାର ସହ ଯେପରି ବଞ୍ଚି ନ ଯାନ୍ତି ତାର ନମୁନା ତାଙ୍କ ଆଖି ଆଗରେ ନାଚୁଥାଏ।

ଆଦର୍ଶର ଯୁଦ୍ଧ, ସତ୍ୟ ଓ ଅସତ୍ୟର ବିବାଦ, ଆଉ ଅନ୍ଧକାରକୁ କୋଳେଇ ନେଇଛନ୍ତି ଦିଲ୍ଲୀବାସୀ। ଅସହାୟ ଇଂରେଜ ମହିଳା ଓ ଶିଶୁମାନଙ୍କ ରକ୍ତରେ ରଞ୍ଜିତ ହୋଇଛି ଏ ସିପାହୀମାନଙ୍କ ହାତ। ସେଥିପାଇଁ ସେମାନଙ୍କର କୌଣସି ଅଧିକାର ନାହିଁ ବଞ୍ଚିବା ପାଇଁ। ଇଂରେଜମାନଙ୍କୁ ଭଗବାନ ପଠାଇଛନ୍ତି ଏହିପରି ଦେଶର ଅଧିବାସୀଙ୍କୁ ନଷ୍ଟ କରିବା ପାଇଁ।

ଆର ପାଖେ ଇଂରେଜ ସୈନିକମାନଙ୍କର ଅନ୍ୟ କିଛି କାମ ନ ଥାଏ। ସେମାନେ ମାତିଥିଲେ ଆନନ୍ଦ ମହୋତ୍ସବରେ। ମାଂସ ଭୋଜନ, ମଦିରା ପାନ – ଅଭିପ୍ରାୟ ଥାଏ ଏମାନଙ୍କର। ଅପର ପକ୍ଷରେ ଭୋକ ଉପାସରେ ହଇଜାରେ ମରିଯାଉଥିଲେ ଦିଲ୍ଲୀ ବାସି ଓ ସିପାହୀମାନେ। ଜୁନ ମାସ ବେଳକୁ ବ୍ରିଟିଶରମାନେ ଯମୁନା କେନାଲ ପାଣିଯିବା ରାସ୍ତା ବନ୍ଦ କରିଦେଲେ। ଫଳରେ ସହର ଭିତରେ ପାଣିର ଉତ୍କଟ ଅଭାବ। ଦିଲ୍ଲୀରେ ଖାଦ୍ୟ ଓ ପାଣି ପାଇଁ ରାସ୍ତା ଘାଟରେ ଘୁରି ବୁଲୁଥିଲେ ଦିଲ୍ଲୀବାସୀ।

ଜୁନ ମାସ ପ୍ରଥମ ଭାଗରେ ରାଜ ପରିବାରର ଲୋକ ମଧ୍ୟ ଖାଇବାର କୋଟା ପାଇନଥିଲେ। ହରିଯାନା ସିପାହୀମାନେ ଆସି ଦିଲ୍ଲୀରେ ପହଞ୍ଚିଥିଲେ। ହେଁ ଖାଦ୍ୟର କୌଣସି ସଂଧାନ ମିଳିଲା ନାହିଁ। - ଏ ଦୁଃଖ ପରିସ୍ଥିତି ସବୁ ନାଗରିକ ସିପାହୀ ଓ ଜିହାଦି ମାନଙ୍କୁ ଜଣା ଥିଲା।

ଜୁଲାଇ ଶେଷବେଳକୁ ଅବସ୍ଥା ଆହୁରି ଅସମ୍ଭାଳ। ଧାର ଦେବା ପାଇଁ ଦେଣାଦାର ମଧ୍ୟ କେହି ନ ଥିଲେ। ଛାରଖାର ହେଇଗଲେ ଦିଲ୍ଲୀବାସୀ। ଛାରଖାର ହୋଇଗଲା ଦିଲ୍ଲୀ ସୌନ୍ଦର୍ଯ୍ୟ। ଅଗଷ୍ଟ ପ୍ରଥମ ସପ୍ତାହ ବେଳକୁ ମିର୍ଜା ମୋଗଲ ମୁନ୍‌ସି ଜୀବନ ଲାଲଙ୍କ ଜ୍ଞାତସାରରେ ସବୁ ବଣିଆଙ୍କୁ ଦୁର୍ଗ ଭିତରକୁ ଅଣାଇଲେ। ସାରାଦିନ ସେମାନଙ୍କୁ ଗୋଟାଏ କୋଠରୀରେ ବନ୍ଦ କରି ରଖାଗଲା। କୁହାଗଲା କି ଯଦି ସେମାନେ ଧନସଂପତ୍ତିରୁ ରାଜପରିବାରକୁ ଭାଗ ନ ଦେବେ ତା'ହେଲେ ସେମାନଙ୍କୁ ଜୀବନରୁ ମାରି ଦିଆଯିବ। ମିର୍ଜା ଇଲାବକ୍ସ ମୋଗଲମାନଙ୍କୁ ମନ୍ତ୍ରଣା ଦେଲେ କି ଏଇ ବଣିଆମାନେ ଇଂରେଜମାନଙ୍କର ବନ୍ଧୁ। ସେମାନଙ୍କୁ ଅତ୍ୟାଚାର

କଲେ ଇଂରେଜମାନଙ୍କର ମଧ୍ୟ ଶତ୍ରୁ ହୋଇଯିବ। ସେଥିଲାଗି ଏ ଅତ୍ୟାଚାର ବନ୍ଦ କର।

ଅନୁରୋଧ କଲେ ବଣିଆମାନଙ୍କୁ କି ସେମାନେ ୫ ଲକ୍ଷ ଟଙ୍କା ସିପାହୀମାନଙ୍କୁ ଧାରସୂତ୍ରରେ ଦିଅନ୍ତୁ। କିନ୍ତୁ ବଣିଆମାନେ ଏ ସର୍ତ୍ତରେ ରାଜି ହେଲେନାହିଁ। କେତେକ ବଣିଆଙ୍କୁ ଜେଲରେ ରଖିଲେ। ଜଫର ଏ ଖବର ପାଇ ମିର୍ଜା ମୋଗଲଙ୍କୁ ରାଜ୍ୟର ପ୍ରଜାମାନଙ୍କୁ ଏ ପ୍ରକାର ବ୍ୟବହାର ନ କରିବା ପାଇଁ ପରାମର୍ଶ ଦେଲେ। ଆଉ କହିଲେ କି ଭଦ୍ର ଭାବରେ ଆଦାୟ କରିବାକୁ ଚେଷ୍ଟା କର।

ନେବେଲ ମାନଙ୍କ ପାଖରୁ ଚେଷ୍ଟାକରି ଟଙ୍କା କିଛି ପାଇଲେ। ଦିଲ୍ଲୀ ପାଖ ଅଞ୍ଚଳରେ ଛୋଟ ଛୋଟ ଜାଗା ଉପରେ ଅଧିକ ଟାକ୍ସ (ଯେଉଁ ଜାଗା ସବୁ ମୋଗଲଙ୍କର ନିଜସ୍ୱ ଥିଲା) କସାଇ ଟଙ୍କା ପାଇବାକୁ ଚେଷ୍ଟା କଲେ।

ସଲିମଗଡ଼ ପରି ଅନେକ ପୁରୁଣା ଗଡ଼ ସବୁ ଅନୁସନ୍ଧାନ କଲେ। ଆଶା ଥିଲା ଏଇ ସବୁ ଜାଗାରୁ କିଛି ପୋତାଧନ ମିଳିଯାଇପାରେ। ସେତିକିବେଳେ ଖବର ମିଳିଲା କି ପର୍ଶିୟାନ ସେନା ବିଦ୍ରୋହୀମାନଙ୍କୁ ରକ୍ଷା କରିବା ପାଇଁ ଆଫଗାନିସ୍ତାନ ଦେଇ ପେଶୱାର ବାଟେ ଭାରତରେ ପଶିବେ। ଆହୁରି ଖବର ମିଳିଲା କି ଇରାନିୟାନ ମାନେ ବମ୍ୱେ ବାଟ ମଧ୍ୟ ପହଞ୍ଚିବେ।

ଖାଦ୍ୟ ଓ ପଇସାର ଅଭାବ ଯେ କେବଳ ଥିଲା ତା' ନୁହେଁ, ଗନ ପାଉଡ଼ର ଓ ଗନକ୍ୟାପ୍‌ର ମଧ୍ୟ ଘୋର ଅଭାବ ଦେଖାଦେଲା। ଫଳରେ ଜୁଲାଇ ଶେଷବେଳକୁ ଆଲକହଲିକ ସ୍ପିରିଟରୁ ବିସ୍ଫୋରକ ପଦାର୍ଥ ତିଆରି କରିବାର ଯୋଜନା କରି ମଧ୍ୟ ବିଫଳ ହେଲେ ଅଗଷ୍ଟ ପ୍ରଥମ ସପ୍ତାହରେ ବିବାଦ ଘନେଇଲା। ବିଦ୍ରୋହିଙ୍କ ଗନ ପାଉଡ଼ର ଫ୍ୟାକ୍ଟରୀ ଉପରେ ଚଢ଼ଉ କରି କାମ କରୁଥିବା ୫୦୦ ଲୋକଙ୍କୁ ଜାଳିଦେଲେ। ଜଫରଙ୍କ ପ୍ରଧାନମନ୍ତ୍ରୀ ହାକିମ ଅସବୁଲା ଖାଁଙ୍କ ହାବେଲି ମଧ୍ୟ ଜାଳିଦେଲେ। ହାକିମ ଗାଲିବର ଘନିଷ୍ଠ ବନ୍ଧୁ। ଗାଲିବ ଲେଖିଲେ ବି ଏ ସୌନ୍ଦର୍ଯ୍ୟଭରା ହାବେଲୀ ଚାଇନାର ରଂଗୀଲା ପ୍ରାସାଦଠାରୁ ବି ଅଧିକ ସୁନ୍ଦର। ସେଇ ସମୟରେ ଖାଦ୍ୟ ଅଭାବରେ ଅନେକ ସିପାହୀ ଓ ଜିହାଦି ଦିଲ୍ଲୀ ଛାଡ଼ି ପଳାଇଗଲେ। ଜଫର ସେମାନଙ୍କୁ ନ ଯିବାକୁ ମଧ୍ୟ କହିପାରିଲେ ନାହିଁ। ଆଉ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲେ।

ଅନେକ କ୍ଷମତାଶୀଳ ସ୍ତ୍ରୀ ଲୋକ ମଧ୍ୟ ସିପାହୀଙ୍କ ବିରୁଦ୍ଧରେ ଗଲେ। ଏହି ସୁଯୋଗରେ ଅନେକ ପ୍ରେମୀଯୁଗଳ ମଧ୍ୟ ଦେଶଛାଡ଼ି ବାହାରକୁ ଚାଲିଗଲେ। ଆଉ ଅନେକ ସେମାନଙ୍କର ଗୁପ୍ତ ଆକାଂକ୍ଷା ପୂରଣ ପାଇଁ ସ୍ତ୍ରୀଲୋକ ମାନଙ୍କୁ ଅପହରଣ କରି ନେଲେ। ଅନେକ ଅନ୍ତରଂଗ ଲୋକ ମଧ୍ୟ ବ୍ରିଟିଶରମାନଙ୍କ ଆଗରେ ମିଛସାକ୍ଷୀ ଦେଲେ।

ସିପାହୀମାନଙ୍କ ତରଫରୁ ଓ୍ୱକ୍ତ ଖାଁ ନେତୃତ୍ୱ ନେଉଥିଲେ। ଜଫର ଭୟ କଲେ କି ଓ୍ୱାକ୍ତ ଖାଁ ବି ବିଦ୍ରୋହୀ ମାନଙ୍କ ନିକଟରୁ ଓହରିଯାଇଛନ୍ତି।

ଆହୁରି ଗୁଜବ ଶୁଣାଗଲା ଜିନତ୍‌ମହଲଙ୍କ ବିରୁଦ୍ଧରେ। ସତ ବି ହୋଇପାରିଥାଏ। ବ୍ରିଟିଶରଙ୍କ ସହିତ ତାଙ୍କର ଚିଠିପତ୍ରର ଆଦାନ ପ୍ରଦାନ ବି ଥିଲା। ବିଦ୍ରୋହବେଳେ ମିର୍ଜା ଜଓ୍ୱାନ ଓକ୍ତ ନିଜକୁ ଲୁଚାଇ ରଖିଥିଲେ। ଜିନତ୍ ମହଲଙ୍କ ବାପା ମିର୍ଜା କୁଲି ଖାଁଙ୍କୁ କେତେକ ସିପାହୀ ବନ୍ଦୀ କଲେ। କହିଲେ ୧୫ ଦିନ ଭିତରେ ସେମାନଙ୍କର ପାରିଶ୍ରମିକ ଯଦି ସେମାନଙ୍କୁ ନ ମିଳେ ତାହାଲେ ତାଙ୍କୁ ମୁକ୍ତି ମିଳିବ ନାହିଁ। କାରଣ ସିପାହୀମାନେ ବିଶ୍ୱାସ କରୁଥିଲେ କୁଲି ଖାଁ ଅନେକ ଟଙ୍କାର ଅଧିକାରୀ।

ଥରେ ଦିଓ୍ୱାନି ଖାସରେ ୫୦୦ ସିପାହୀ ଏକାଠି ହୋଇ ଅଭିଯୋଗ କଲେ କି ମିର୍ଜା ଆବୁବେକର ଓ ମିର୍ଜା ଖିଜିର ସୁଲତାନ ମିଶି ଲୋକଙ୍କ ପାଖରୁ ଲକ୍ଷ ଲକ୍ଷ ଟଙ୍କା ସଂଗ୍ରହ କରିଛନ୍ତି ଅଥଚ ସିପାହୀମାନଙ୍କୁ କିଛି ଟଙ୍କା ଦେଇନାହାନ୍ତି। ଜଫର ଏହି ସମୟରେ ଯେଉଁ ରୂପା ତାଙ୍କ ପାଖରେ ଥିଲା ସିପାହୀଙ୍କୁ ଦେଇ କହିଲେ; ଏ ସବୁ ବିକି ସେ ଧନ ନିଜ ନିଜ ମଧ୍ୟରେ ବାଣ୍ଟିନେବ।

ସେପ୍ଟେମ୍ବର ୧୪, ୧୮୫୭ରେ ବ୍ରିଟିଶରମାନେ ମୋଗଲ ସମ୍ରାଟକୁ ନିଜ ହାତକୁ ନେଲେ। ବ୍ରିଟିଶରମାନେ ଆଦେଶ ଦେଲେ ଇଂରେଜମାନଙ୍କୁ ଛାଡ଼ି ଦେଇ ଅନ୍ୟ ଯାହାକୁ ଦେଖୁଛ ଗୁଳି କର। ଏ ଆଦେଶ ବଳରେ ସରଳ, ନିରୀହ, ନିରସ୍ତ୍ର ନାଗରିକ ମାନଙ୍କୁ ହତ୍ୟା କରାଗଲା। ଯେଉଁମାନେ ବଞ୍ଚିଗଲେ ସେମାନେ ଦିଲ୍ଲୀ ଛାଡ଼ି ପଳାଇଲେ। ଦିଲ୍ଲୀ ପାଲଟିଲା ଏକ ଧ୍ୱଂସ କ୍ଷେତ୍ର। ରାଜପୁତ୍ରମାନଙ୍କୁ ମଧ୍ୟ ଅତି ନିର୍ମମ ଭାବରେ ହତ୍ୟା କରାଗଲା। ସମ୍ରାଟ ଜଫର ନିଜେ ପଞ୍ଜୁରୀବଦ୍ଧ ପକ୍ଷୀ ପରି ଏକ ଦର୍ଶନୀୟ ବସ୍ତୁ ପାଲଟିଲେ। ଅନ୍ୟାନ୍ୟ ସାମ୍ବାଦିକ ମାନଙ୍କ ଛାଡ଼ା Times ର ସମ୍ବାଦ ଦାତା ଉଇଲୟମ ହାଓ୍ୱାର୍ଡ଼ ରସେଲ ଅନ୍ୟତମ। ସେ ଲେଖିଥିଲେ – ସମ୍ରାଟଙ୍କ ମୁହଁରୁ ଗୋଟେ ଶବ୍ଦ ବି ବାହାରୁ ନ ଥିଲା। କେବଳ ତଳକୁ ମୁହଁ ପୋତି ଭୂଇଁକୁ

ଦେଖିବା ଛଡ଼ା ଅନ୍ୟ ଉପାୟ ତାଙ୍କର ନଥିଲା। ସେ ଦୁର୍ବଳ, ରୁକ୍ଷ ବୃଦ୍ଧ, ଏଥିରେ ସନ୍ଦେହ ନାହିଁ। ଅକୃତଳ ନୁହଁନ୍ତି। ଆଖି ଆଗରେ ତାଙ୍କ ପିତୃପୁରୁଷଙ୍କର ଅର୍ଜିତ ସାମ୍ରାଜ୍ୟ ଚୁରମାର ହୋଇଯାଉଛି। କିନ୍ତୁ ତାଙ୍କର ନାଁ ଅଛି କ୍ଷମତା ବା ଦକ୍ଷତା। ସେ କେବଳ ନାମକୁ ମାତ୍ର ସମ୍ରାଟ ହୋଇ ରହିଯାଇଛନ୍ତି। ରାଜପୁତ୍ର ମାନେ ପାଲଟିଛନ୍ତି କାଙ୍ଗାଳ। ଜଫରଙ୍କ ପ୍ରାସାଦର ଖଣ୍ଡହର ଉପରେ ତାଙ୍କର ବିଚାର କଲେ ବ୍ରିଟିଶରମାନେ। ସେ ଦୋଷୀ ସାବସ୍ତ୍ୟ ହେଲେ - ବିନାଦୋଷର ତାଙ୍କୁ କଲେ ଦେଶାନ୍ତର। ସେ ଗଲେ ବ୍ରିଟିଶର ରେଙ୍ଗୁନକୁ। ସେଠାରେ ନଭେମ୍ବର ୭ ତାରିଖ ଶୁକ୍ରବାର ୧୮୬୨ରେ ସତାଅଶି ବର୍ଷ ବୟସରେ ପ୍ରାଣତ୍ୟାଗ କଲେ।

ଜେମସ୍ ଫରଗୁସନ, ପ୍ରତ୍ନତତ୍ତ୍ୱବିଭାଗର ଜଣେ ଐତିହାସିକ History of Indian a Eastern Architecture ପୁସ୍ତକରେ ଲେଖିଛନ୍ତି; "ଯେଉଁମାନେ ଏପରି କଳା ଓ ସ୍ଥାପତ୍ୟକୁ ଏତେ ନିଷ୍ଠୁର ଭାବରେ ଚୁରମାର କରିଛନ୍ତି। ସେମାନେ ମୁହୂର୍ତ୍ତକ ପାଇଁ ମଧ ଭାବିଲେ ନାହିଁ କି ସେମାନେ ପୃଥିବୀର ସର୍ବୋତ୍ତମ ସୌନ୍ଦର୍ଯ୍ୟକୁ ନଷ୍ଟ କରି ଦେଇଛନ୍ତି। ସିପାହୀ ବିଦ୍ରୋହ ପରେ ଦିଲ୍ଲୀ ପତନର ମୂଳକାରଣ ହେଲା ବ୍ରିଟିଶ ସେନା ଦିଲ୍ଲୀର ସବୁ ସଂପତ୍ତି ଲୁଟିନେଲେ। ଗଣହତ୍ୟା କଲେ।

ମନେପଡ଼େ ପୂର୍ବ ଇତିହାସ। ବ୍ରିଟିଶରମାନେ ଇଦ ପର୍ବକୁ ଅପେକ୍ଷା କରିଥିଲେ। ଆଶା କରିଥିଲେ ଜଫର ଇଦ୍ ପର୍ବରେ ମୁସଲମାନଙ୍କୁ ଗୋରୁ କାଟିବାପାଇଁ ଆଦେଶ ଦେବେ। ତା' ହେଲେ ଦଙ୍ଗା ହାଙ୍ଗମା ହୋଇ ଅତି ସହଜରେ ଦିଲ୍ଲୀ ବ୍ରିଟିଶ ହାତକୁ ଚାଲିଯିବ। କିନ୍ତୁ ଏପରି କିଛି ଘଟିଲା ନାହିଁ।

ମୋଗଲ ବେଗ୍‌ଙ୍କୁ ଚାନ୍ଦନୀଚୌକରେ ଫାଶି ଦିଆଯାଇଥିଲା। ଫାଶି ପାଇଲା ପୂର୍ବରୁ ସେ କହିଥିଲେ କି ହିନ୍ଦୁ ଓ ମୁସଲମାନମାନେ ମୋର ଏ ଦଶାର ସାକ୍ଷୀ ହୋଇ ରହିଲେ। ମତେ ସେମାନେ କେବେ ଭୁଲି ପାରିବେ ନାହିଁ।

ନିଜର କ୍ଷମତାକୁ ବଜାୟ ରଖି ଦିଲ୍ଲୀ ସଂପତ୍ତି ଲୁଟ କରିବା ପାଇଁ ବ୍ରିଟିଶରମାନେ ରିଜରେ ଏକତ୍ରୀତ ହେଲେ। ସମସ୍ତଙ୍କର ଆଶା ଥିଲା ହୀରା, ନୀଳା ଇତ୍ୟାଦିର ମୂଲ୍ୟବାନ ପଥର ଖଣ୍ଡେ ଖଣ୍ଡେ ମିଳିଯାଇପାରେ।

ଦୋଷୀ, ନିର୍ଦ୍ଦୋଷୀ ନିର୍ବିଶେଷରେ ସମସ୍ତଙ୍କୁ ହତ୍ୟା କରାଗଲା। ପୃଥିବୀରେ ଏପରି ହୀନ, ବର୍ବର, ହେୟ, ହତ୍ୟା ସେ ପର୍ଯ୍ୟନ୍ତ କେବେ ହୋଇ ନଥିଲା। ଦିଲ୍ଲୀ ହେଲା ଲୋକଶୂନ୍ୟ। "ତାରକାଖାନା"ରେ ସୈନ୍ୟମାନେ ପଶିବା ବେଳକୁ କେବଳ

ଅକ୍ଷମ ଲୋକମାନେ ସେଠାରେ ଥିଲେ। ସେମାନଙ୍କୁ ମଧ୍ୟ ସହରରୁ ବାହାର କରିଦେଲେ। ଖାଇବା ପିଇବାର କୌଣସି ବନ୍ଦୋବସ୍ତ ନାହିଁ।

ଦିଲ୍ଲୀ ଛାଡ଼ି ଯିବା ବାଟରେ ଅନେକ ଲୋକ ଶେଷ ହୋଇଗଲେ। ସହର ଭିତରେ ଉପାସରେ ମରିବା ଲୋକଙ୍କ ସଂଖ୍ୟା ମଧ୍ୟ ବଢ଼ି ଚାଲିଲା। ଗାଲିବଙ୍କ ଭାଷାରେ କିଲାର ବେଗମମାନେ ରାସ୍ତାରେ ରାସ୍ତାରେ ଘୁରିଲେ। ସେମାନଙ୍କ ମୁଖମଣ୍ଡଳ ଚାନ୍ଦ ଭଳି କିନ୍ତୁ ପୋଷାକ ଛିଣ୍ଡା ଓ ମଇଳା। ଆଉ ଯୋତା ମଳିନ।

ଏହି ଅବସ୍ଥାରେ ବ୍ରିଟିଶରମାନେ ପରୱାନା ଜାରି କଲେ। ଆଦେଶ ଦେଲେ କି ଦିଲ୍ଲୀ ଫେରିବାକୁ ଯେଉଁମାନେ ଇଚ୍ଛା କରିବେ ସେମାନେ ଟିକଟ କରି ଫେରିବେ। ଫଳରେ ଯେଉଁମାନେ ଫେରିଲେ ତାଙ୍କ ଭିତରୁ ଅନେକ ଅକ୍ଷମ ମୁସଲମାନ ଓ ଜିପସି ଭଳି ମୋଗଲମାନେ ଥିଲେ।

ଲାଲା ଚୁନିଲାଲ ମଲଙ୍କ ନିବାସ ଥିଲା "କଦ୍ରାନୀଳ"ରେ ସେ ନିଜେ ବ୍ରିଟିଶରମାନଙ୍କୁ ସମର୍ଥନ ଓ ସାହାଯ୍ୟ କରିଥିଲେ। ତାଙ୍କ ନିବାସ ମଧ୍ୟ ଲୁଟି ହେଲା। ସେଇ ସମୟକୁ ମୁସଲମାନମାନଙ୍କ ଅପେକ୍ଷା ହିନ୍ଦୁମାନଙ୍କ ଅଧିକ ପରିମାଣରେ ଦିଲ୍ଲୀକୁ ଫେରିବା ପାଇଁ ଅନୁମତି ମିଳିଲା। ଜମିଜମା ସବୁ ବିକ୍ରି ହେଲା। ପ୍ରତ୍ୟେକ ବ୍ରିଟିଶ ଅଫିସରଙ୍କ ଆଶା ଥିଲା "ଦିଲ୍ଲୀ ପ୍ରାଇଜ"ର ଅଧିକାରୀ ହେବା ପାଇଁ, ମିର୍ଜା ମୋଗଲ ଏ ପରିସ୍ଥିତି ଦେଖି ଜଫରଙ୍କ ନାମରେ ଏକ ଆଦେଶନାମା ଜାରିକରି ଦେଶବାସୀଙ୍କୁ ଏକାଠି କରିବାପାଇଁ ରାସ୍ତାରେ ରାସ୍ତାରେ ଢୋଲ ବଜାଇ ଏ ସମ୍ବାଦ ପରିବେଷଣ କରାଇଲେ। ଦିନ ନାହିଁ ରାତି ନାହିଁ ବ୍ରିଟିଶ ତୋପ ଗର୍ଜନରେ ଥରି ଉଠିଲା ଦିଲ୍ଲୀର ରାସ୍ତାଘାଟ।

ସେଇ ସ୍ମୃତିର ଅନ୍ୟ ଏକ ଘଟଣା। କିନ୍ତୁ ବ୍ରିଟିଶମାନଙ୍କୁ ଜଣା ନଥିଲା। ପାଚେରୀ ଓ କ୍ୱିଦିସା ପାର୍କ ଭିତରେ ୫୦ ଫୁଟର ଜାଗା ଖାଲିଥିଲା। ଓ ପାଚେରୀ ସେ ପଟେ ୨୦ ଫୁଟ ଗଭୀର ଓ ୨୫ ଫୁଟ ଚଉଡ଼ାର କାଦୁଅର ନାଳ ଖୋଳା ହୋଇଥିଲା ସେମାନଙ୍କର ରାସ୍ତା ଅବରୋଧ ପାଇଁ, ଏଥିରେ ଜିହାଦୀମାନେ ମଧ୍ୟ ବେଶ୍ ବୀରତ୍ୱ ଦେଖାଇଥିତଲେ। ଇମାଦ୍-ଅଲି ଖାନ୍, ୱକ୍ତ ଖାଁଙ୍କ ଜିହାଦୀ ମୌଲବୀ ନୟାବିସ ଅଲିଙ୍କର ୨୦୦୦ ସୈନ୍ୟଙ୍କ ସହିତ ଲଢ଼ିବା ପାଇଁ ଆଗେଇ ଆସିଲେ। ଏ ପ୍ରକାର ଯୁଦ୍ଧରେ ଅନେକ ତାଙ୍କ ସହିତ ହାତ ମିଳାଇଲେ।

ଓ୍ବକ୍ତ ଖାଁ ମିର୍ଜା ମୋଗଲମାନଙ୍କ ଶତ୍ରୁ। ତଥାପି ସେ ତାଙ୍କ ଆହ୍ବାନ ଦେଲେ ଏ ପ୍ରତିରକ୍ଷା ଲଢ଼େଇରେ ସାମିଲ ହେବା ପାଇଁ। ରେଡ଼୍ ଫୋର୍ଟ ଭିତରେ ଥାଇଁ ତୋପର ଗର୍ଜନ ଶୁଣି, କାହାକୁ ନ ଜଣାଇଥିଲେ ମଧ ମନେ ମନେ ଭୟ ପାଉଥିଲେ ଜଫର। ସୟଦ ମୁବାରକ ସାହ କୋରାନ ବହି ଖୋଲିଲେ ଆଉ ଖୋଜିଲେ ସମାଧାନର ରାସ୍ତା।

ଜିନତ୍ ମହଲ ତାଙ୍କ ଲାଲକୁଆଁର ମହଲରେ ସହରରେ ଆସେପାଖେ ଥାଇଁ ବ୍ରିଟିଶର ହଡ଼୍‌ସନଙ୍କ ସହିତ ତାଙ୍କ ମୌଲବୀ ରାଜି ଅଲ୍ଲିଙ୍କ ଜରିଆରେ ପରାମର୍ଶ କରୁଥିଲେ। ଯୁଦ୍ଧ ଆରମ୍ଭରୁ ସେ ବ୍ରିଟିଶରଙ୍କ ସହ ହାତମିଶାଇ ଆଲୋଚନା କରି ଆସିଥିଲେ।

ହଡସନ ବିଶ୍ୱାସ ରଖିଥିଲେ ଜିନତ୍ ମହଲଙ୍କ କଥାରେ। ଏ ବିଷୟରେ ସେ ତାଙ୍କୁ ଉପରିସ୍ଥ କର୍ମଚାରୀମାନଙ୍କୁ କହିଥିଲେ। ବି ଜିନତଙ୍କ କଥା ଅନୁସାରେ କାମ କଲେ ଦିଲ୍ଲୀ ବ୍ରିଟିଶରଙ୍କ ଅକ୍ତିଆରକୁ ନିଶ୍ଚୟ ଆସିବ। ଜିନତ୍ ଉପଦେଶ ଦେଇଥିଲେ କି ବ୍ରିଜ ଅଫ ବୋଟକୁ ଉଡ଼ାଇ ଦେବା ପାଇଁ।

ଜିନତ୍ ବ୍ରିଟିଶରଙ୍କୁ ନିଜ ସାମ୍ରାଜ୍ୟ ବିରୁଦ୍ଧରେ ଉପଦେଶ ଦେବାରେ ଉଦ୍ଦେଶ୍ୟ ଥିଲା ସେ ଚାହିଁଥିତେଲ ନିଜର ପ୍ରତିରକ୍ଷା ଓ ସର୍ବୋପରି ଦଓ୍ବାନ ଓକ୍ତଙ୍କୁ ଭାବି ସମ୍ରାଟ କରାଇବାର ଚେଷ୍ଟା।

ଦିଲ୍ଲୀ ଉର୍ଦ୍ଦୁ ଆକବରୀରେ ମୌଲବୀ ମହମ୍ମଦ ବକର ଲେଖିଥିଲେ କି ଲାଲକୁଆଁରରେ ଏପରି ଆଲୋଚନା ସତ୍ତ୍ୱେ ଭଗବାନଙ୍କ ଦୟାରୁ ଆମ ସିପାହୀମାନେ କାଫରଙ୍କ ବିରୁଦ୍ଧରେ ବେଶ୍ ସାହସର ସହିତ ଯୁଦ୍ଧ କରୁଛନ୍ତି। ଦିଲ୍ଲୀର ଗରୀବ ଜନସାଧାରଣ ମଧ ଅନେକ ସାହାଯ୍ୟ ଓ ମନୋବଳ ଦେଇ ଦିଲ୍ଲୀକୁ ରକ୍ଷା କରିବାପାଇଁ ଚେଷ୍ଟା କରିଥିଲେ।

ରାତି ୩ଟା ବେଳେ ଚାରିକଲମ ଫୋର୍ସ ଫ୍ଲାଗଷ୍ଟାଫ ଅଞ୍ଚଳକୁ ପଶିଲେ। କୁଦିସା ବାଗର ମୋଗଲ ବଗିଚା ଯାଇଁ ଚଢ଼ଉ ଆରମ୍ଭ କଲେ। ରାତିର ଅନ୍ଧକାର ଆଲୋକିତ ହେଲା ଦିନପରି ତୋପର ନିଜ ନିଜ ଭିତରେ ସଂଘର୍ଷ ଫଳରେ। ଗୋଲାବର୍ଷଣ ଶବ୍ଦରେ ପବନ ହେଲା ଚଳଚଞ୍ଚଳ। ପାଚେରୀ ସେ ପଟୁ ସବୁଆଡୁ ହୋ ହଲ୍ଲା ପାଟି କରି ସିପାହୀଙ୍କ ତୋପର ଆବାଜ ମଧ ମାଡ଼ି ଆସିଲା। ଏପରି ଆନ୍ଦୋଳନ ଆରମ୍ଭ ହେଲା ସିପାହୀ ବିଦ୍ରୋହର ୩ ମାସ ପରେ। ପାଚେରୀ ଆଡ଼କୁ ତାଙ୍କ ସେନାବାହିନୀଙ୍କୁ ଆଗେଇ ଯିବା ପାଇଁ ନିର୍ଦ୍ଦେଶ ଦେଲେ।

ପାହାନ୍ତା ପହରକୁ ସବୁ ଗୋଲାବାରୁଦର ଶବ୍ଦ ଥମିଗଲା । ଗୋଳା ବାରୁଦର ଗନ୍ଧ ସତ୍ତ୍ୱେ ଜଫରଙ୍କ ବଗିଚାର ଗୋଲାପ ଫୁଲର ସୁଗନ୍ଧ ଖେଳି ଉଠିଲା । ବ୍ରିଟିଶ ଫୋର୍ସ ମଧ୍ୟରେ ଗୋଟେ ଦଳ କୃିଦିସା ବାଗରୁ ଗୁଳି ଚଳାଉ ଥିଲେ । ଦ୍ୱିତୀୟ ଦଳ ସାକେଲ ଓ ହଥ୍ରୋନଙ୍କ ନେତୃତ୍ୱରେ ପାଚେରୀ ଭିତରେ ଥିବା ସିପାହୀଙ୍କୁ ଆକ୍ରମଣ କଲେ । ସମୟ ଭୋର ୬.୩୦ ।

ସେମାନେ କୃିଦିସା ବାଗରେ ଶୋଇରହି ବ୍ୟୁଗୁଲର ଶବ୍ଦକୁ ଅପେକ୍ଷା କରିଥିଲେ । ହାଥ୍ରୋନଙ୍କର ଦୁଇଥର ବ୍ୟୁଗୁଲର ଶବ୍ଦ ସେମାନଙ୍କୁ ଶୁଣାଯାଇ ନ ଥିଲା । ପରେ ସବୁଠୁ ସଂଘାତିକ ଆକ୍ରମଣ ଆରମ୍ଭ ହେଲା ଜଣେ ଆଙ୍ଗୋ- ଆଇରିସ ପ୍ରୋଟେଷ୍ଟାଣ୍ଟ ଲେଫ୍ଟନାଣ୍ଟ କେଣ୍ଡାଲ କଗହିଲଙ୍କ ପାଖରୁ । ସେ ଜୋରରେ ବିକଟାଳ ଶବ୍ଦ କରି ଶତ୍ରୁଙ୍କ ଆଡ଼କୁ ଆଗେଇ ଗଲେ । ୧୦ ମିନିଟର ଆକ୍ରାନ୍ତ ଯୁଦ୍ଧପରେ ଗେଟ ବ୍ରିଟିଶରଙ୍କ ଅଧିନକୁ ଆସିଲା ଓ ସେଠି ବ୍ରିଟିଶ ପତାକା ଉଡ଼ିଲା ।

କିନ୍ତୁ ଷ୍କିନରଙ୍କ ହାଭେଲି ନିକଟସ୍ଥ ସେଣ୍ଟ ବର୍ଚ୍ଚ ଆଗରେ ସାଂଘାତିକ ଗୋଳା ବିନିମୟ ହେଲା । ବିଦ୍ରୋହୀ ଦଳର ନାସିରା ବାଦ ଟ୍ରୁପ ଏହିଠାରେ ଛାଉଣି ପକାଇଥିଲେ । ଅବଶେଷରେ ଏ ପ୍ରକାର ଗୋଳା ବିନିମୟ ପରେ ନାସିରବାଦ ଟ୍ରୁପ ହଟିଯିବାକୁ ବାଧ ହେଲେ । ଗୋଳମାଡ଼ର ଆଘାତରେ କାଶ୍ମିର ଗେଟ ଏହି ସମୟରେହିଁ ବହୁତ ବଡ଼ ଶବ୍ଦ କରି ଧୂଳିସାତ୍ ହେଲା । ନିକୋଲାସଙ୍କ ଇଛାଥିଲା, ଉଦ୍ଦେଶ୍ୟ ଥିଲା କାବୁଲ ଗେଟ ଓ ଲାହୋର ଗେଟକୁ ଯେତେଶୀଘ୍ର ପାରନ୍ତି ହାତକୁ ନେଇଯିବେ । ହିନ୍ଦୁ ରାଓ ହାଉସ ପାଖରେ ମେଜର ରେଡ଼ଙ୍କ ସହ ନିକଲାସଙ୍କର ଦେଖା ହେବାର ଯୋଜନା ଥିଲା । ଏ ପାଖେ ଗୁର୍ଖା ଦଳକୁ ନେଇ ଜମା ମସ୍‌ଜିଦ ପଛପଟୁ ଥିଓ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିଲେ ।

ସକାଳ ୭ଟା ପରେ ବ୍ରିଟିଶରମାନଙ୍କ ପାଇଁ କିଛି ଅସୁବିଧା ହେଲା । ପାଚେରୀ ଭିତରକୁ ପ୍ରବେଶ କରିବା ସବୁଠୁ କଷ୍ଟକର ବ୍ୟପାର ଥିଲା । ଧାର୍ଯ୍ୟ ସମୟ ସୀମା ପୂର୍ବର ଗେଟ ହାସଲ ହେଇଯାଇଥିଲେ ମଧ ରାସ୍ତାରେ ସେଠି ପହଞ୍ଚିବା କଷ୍ଟକର ଥିଲା । ଆଶଙ୍କା ଥିଲା ବ୍ରିଟିଶ ଫୋର୍ସଙ୍କ ରାସ୍ତାରେ ସାମନା ନ କରିପାରି ବିଦ୍ରୋହୀମାନେ ପଳାୟନ କରିବେ । ଏପରି କିଛି ଘଟିଲା ନାହିଁ । ବରଂ ବିଦ୍ରୋହୀମନେ ଆକ୍ରମଣ କରିବା ଆରମ୍ଭ କରିଦେଲେ । ଓ୍ୱକ୍ତ ଖାଁ ଓ ମିର୍ଜା ମୋଗଲ ସେମାନଙ୍କର ପ୍ରସ୍ତୁତି ଖୁବ୍ ଭଲ ଭାବରେ କରିଥିଲେ । ଫଳରେ ବ୍ରିଟିଶରମାନେ ଆଉ ଆଗେଇ ପାରିଲେ

ନାହିଁ। ଥିଓଙ୍କ ନେତୃତ୍ୱରେ ଥିବା ଦଳକୁ ଜିହାଦିମାନେ ପ୍ରତିରୋଧ କଲେ। ଏହି ସମୟରେ ଥିଓ ଅନୁଭବ କଲେ କି ତାଙ୍କ ପାଖରେ ପାଉଡ଼ର ଚାର୍ଜେସ ନାହିଁ। ଜିହାଦୀଙ୍କୁ ସାମନା କରିବା କଷ୍ଟକର ହୋଇପଡ଼ିଲା।

ଦି ପହର ବେଳକୁ ବ୍ରିଟିଶ ଫୋର୍ସ ଆସ୍ତେ ଆସ୍ତେ ଦୂର୍ବଳ ହେବାକୁ ଲାଗିଲା।

ପରେ ପରେ ଡାକ୍ତରଖାନାରେ ଭର୍ତ୍ତି ହୋଇଗଲେ ବ୍ରିଟିଶ ଆହତ ସୈନ୍ୟଗଣ। ପାଦ୍ରୀ ରୋଗୀମାନଙ୍କ ବିଛଣା ପାଖରେ ବୁଲି ବୁଲି ସାନ୍ତ୍ୱନା ଦେଉଥିଲେ। ଅଫିସରମାନେ ହତୋତ୍ସାହ ହୋଇପଡ଼ିଲେ। ଭୟଭୀତ ହେଲେ ହଡ଼ସନ। ବ୍ରିଟିଶ ସୈନ୍ୟଙ୍କର ମନୋବଳ ଭାଙ୍ଗିଗଲା। ମଧ୍ୟାହ୍ନ ବେଳକୁ ମେଜର ରଡ଼ ଲାହୋର ଗେଟ ଅଧିକାର ନ କରି ହିନ୍ଦୁରାଓ ହାଉସ ପର୍ଯ୍ୟନ୍ତ ଫେରି ଆସିଲେ। ଯୁଦ୍ଧ ଜାରି ରହିଲା।

ଜାହିର ଡେହଲାଭି ୧୪ ସେପ୍ଟେମ୍ବର ସକାଳେ ତାଙ୍କର ଦୈନନ୍ଦିନ କାର୍ଯ୍ୟକ୍ରମ ଜାରି ରଖିବା ଉଦ୍ଦେଶ୍ୟରେ ବାହାରିଲେ। ଯୁଦ୍ଧ ସଂକ୍ରାନ୍ତରେ ସେ ନିଜେ ମଧ ଜାଣି ନ ଥିଲେ। କେବଳ ଚାନ୍ଦନୀଚୌକ ରାସ୍ତା ଦେଇ ଗଲାବେଳେ ସେ ଜଣେ ଅଫିସରଙ୍କ ସହ ଦେଖାଗଲା। ସେ ଅଫିସର ଡେହଲାଭିଙ୍କୁ ଜଣାଇଲେ କି ରେଡ଼ ଫୋଟର ଦରଜା ବନ୍ଦ ହୋଇସାରିଛି। ସେଥିପାଇଁ ରେଡ଼ଫୋଟକୁ ଯିବା ଅମୂଳକ।

ଜାହରି ସେ ଖବର ପାଇଁ ଘରଲୋକଙ୍କୁ ଯୁଦ୍ଧ ସଂକ୍ରାନ୍ତରେ ଜଣାଇବା ପାଇଁ ବାଲିମାରଣ ଫେରିଗଲେ।

ରାତିରେ ଶୁଣିବାକୁ ପାଇଲେ କି ଇଂରେଜ ଟ୍ରୁପ ରାତାରାତି ଘରେ ଘରେ ପଶି, ସ୍ତ୍ରୀ ଲୋକଙ୍କୁ ହତ୍ୟା ଓ ଲୁଣ୍ଠନ କରିଛନ୍ତି। ସତ୍ୟାସତ୍ୟ ଜାଣିବାର ଉପାୟ ନ ଥିଲା। ୧୫/୧୬ ସେପ୍ଟେମ୍ବରରେ ସହର ଲୋକେ ରେଡ଼ଫୋଟର ବାହାରେ ଏକତ୍ରୀତ ହେଲେ। ସାଙ୍ଗରେ ଅନେକ ଜିହାଦି ମଧ ଥିଲେ।

ଏକତ୍ରୀତ ଜନତାଙ୍କ ମଧରୁ ପ୍ରତିନିଧିଯାଇଁ ଅନୁରୋଧ କଲେ କି ଜଫର ଏ ଯୁଦ୍ଧର ନେତୃତ୍ୱ ନିଅନ୍ତୁ। ଏ ଅବସ୍ଥାରେ ଜଫର ଯଦି ନେତୃତ୍ୱ ନେଇଥାନ୍ତେ ଅବସ୍ଥା ହୁଏତ ଅନ୍ୟ ପ୍ରକାରର ହୋଇପାରିଥାନ୍ତା।

ସେ ପଟେ ଦୁର୍ଗ ଭିତରେ ମିର୍ଜା ମୋଗଲ ଜଫରଙ୍କ ନିକଟକୁ ଖବର ପଠାଇଲେ କି ସେ କିଛି ଟଙ୍କା ଯୋଗାଡ଼ କରନ୍ତୁ ଯାହା ଫଳରେ କି ସୈନ୍ୟଙ୍କର ରକ୍ଷଣା ବେକ୍ଷଣ ଓ ଖାଦ୍ୟପେୟର ଯୋଗାଡ଼ ହୋଇପାରିବ।

ଉତ୍ତରରେ ଜଫର ଲେଖିଲେ, ଘୋଡ଼ାର ସାଜସଜ୍ଜା, ରୁପାର ହାଉଦା ଇତ୍ୟାଦିକୁ ବିକ୍ରିକରି ଲକ୍ଷ ଟଙ୍କାରେ ଆବଶ୍ୟକ ପୂରଣ କର। ମୋ' ପାଖରେ ଅନ୍ୟ କୌଣସି ରାସ୍ତା ଖୋଲା ନାହିଁ। ଯୁଦ୍ଧରେ ନତୃତ୍ୱ ନେବା ପାଇଁ ମଧ ସମ୍ରାଟ ରାଜି ହୋଇ ପାରିଲେ ନାହିଁ। ସୟଦ ସବ୍ଲାରକ ସାହା ପରେ ଲେଖିଲେ କି ନିଜ ଜୀବନ ରକ୍ଷା ପାଇଁ ସମ୍ରାଟ ନେତୃତ୍ୱ ନେବା ପାଇଁ ରାଜିନୁହନ୍ତି। "ରାସ୍ତାଯୁଦ୍ଧ" ପାଇଁ ସୈନ୍ୟମାନେ ପ୍ରସ୍ତୁତି ନ ଥିଲେ। ସେମାନେ ପଳାୟନ ପାଇଁ ରାଜି ଥିଲେ। କିନ୍ତୁ ଜଫରଙ୍କ ନେତୃତ୍ୱ ନ ପାଇ ଦୁଇତଳ ମୁହାଁମୁହିଁ ହେଲେ। କୌଣସି ରାସ୍ତା ନ ପାଇ ଦିଲ୍ଲୀର ସାଧାରଣ ଜନତା ଦିଲ୍ଲୀ ଛାଡ଼ ଆଜମୀର ଗେଟ ବାଟେ ବାହାରକୁ ବାହାରିଗଲେ। ସାଙ୍ଗରେ ଥିବା ନିଜର ଆସବାବ ପତ୍ର ଗାଈ ଗୋରୁ ଓ ଆଉ ସବୁ। ମଣିଷର ବନ୍ୟା ଛୁଟିଲା। ସୁଯୋଗ ନେଲେ ହଡ଼ସନ ଏ ଅବସ୍ଥାର। ୧୭ ସେପ୍ଟେମ୍ବର ରାତିରେ ମୋଗଲ ସମ୍ରାଟ ପାଇଁ ଶାହାଜାହାଁବାଦର ରେଡ଼ପୋର୍ଟର ଶେଷରାତ୍ରି ଥିଲା। ସେ ନିଜ ପ୍ରିୟ କନ୍ୟାକୁ ନେଇ ସେ ତାଷିକ ଖାନା (Oratory) ଚାଲିଗଲେ। ଭୋର ସମୟରେ ଜଫର ଓ୍ୱାଟର ଗେଟ ଦେଇ, ଜିନତ୍ ମହଲ ଓ ପ୍ରଧାନମନ୍ତ୍ରୀଙ୍କୁ ମଧ ନ ଜଣାଇ ରେଡ଼ପୋଟ ବାହାରକୁ ଚାଲିଆସିଲେ। ସାଙ୍ଗରେ କେତେକ ସେବାକାରୀ, କିଛି ଗହଣା, ମୂଲ୍ୟବାନ ଦ୍ରବ୍ୟ ଓ ପାଲିଙ୍ଗି ନେଇ ବାହାରକୁ ଚାଲି ଆସିଲେ। ଆଗରୁ ଯମୁନା କୂଳରେ ଡଙ୍ଗାର ବନ୍ଦୋବସ୍ତ ହୋଇଥିଲା। ଯମୁନା କୂଳେ କୂଳେ ପୁରୁଣା କିଲ୍ଲାକୁ ଗଲେ। ଯୋଜନା ଥିଲା ସେଠୁ ସୁଫି ନିଜାମୁଦ୍ଦିନ ଚାଲିଯିବେ।

ପରମ୍ପରା ଅନୁଯାୟୀ ନିଜାମୀ ପରିବାରକୁ ହସ୍ତାନ୍ତର କଲେ ଗୋଟେ ବାକ୍ସ। ସେ ବାକ୍ସଟିକୁ ଜଫର ରେଡ଼ଫୋଟରୁ ଅତି ଯତ୍ନର ସହିତ ଆଣିଥିଲେ। ସେ ବାକ୍ସରେ ପ୍ରୋଫେଟଙ୍କ ଦାଢ଼ିର ତିନୋଟି ଚୁଟି ଥିଲା। ଏହା ୧୪୦୦ ଶତାବ୍ଦୀରୁ ସେତେଦିନ ପର୍ଯ୍ୟନ୍ତ ଯତ୍ନର ସହ ସେଥିରେ ରଖା ଯାଇଥିଲା। ସବୁଦିନ ପରି ସେ ଦିନ ମଧ ସେ ଦ୍ରବ୍ୟକୁ ଗୋଲାପ ଜଳରେ ଗାଧୋଇ ଦେଇଥିଲେ। ଜଫର ନିଜେ। ଫିଜାଦାରଙ୍କଠାରୁ ଜଳଖିଆ ଖାଇ କାନ୍ଦି କାନ୍ଦି ମନେ ମନେ କିଛି ଜଣାଇଲେ।

କହିଲେ "ଦେଶ ଭଗବାନଙ୍କର। ତାଙ୍କ ଇଚ୍ଛା ଅନୁସାରେ ସେ ଯାହାକୁ ଦେଇପାରିବେ।"

ପରେ ସେ ବାକ୍ସଟିକୁ ଯତ୍ନର ସହିତ ରଖି ସୁଫି ରକ୍ଷକଙ୍କୁ ହସ୍ତାନ୍ତର କରି ପାଲିଙ୍କିର ମେହୋରୋଲିରେ ଥିବା କୁତୁବ ସାହିବଙ୍କ ସୁଫି ସ୍ରାଇନ ପାଖକୁ ଗଲେ। ଆଗ ଯୋଜନା ଅନୁସାରେ ସେଠି ସେ ଓ୍ୱକ୍ତ ଖାଁଙ୍କୁ ମଧ ଭେଟିବାର ଥିଲା। କିଛି ବାଟ ଗଲାପରେ ଇଲା ବକ୍ସ ଘୋଡ଼ା ଚପଟାଇ ଆସି ଜଣାଇଲେ କି ଗୁର୍ଜାର ଦଳ ସେଇ ରାସ୍ତାରେ ସମସ୍ତଙ୍କୁ ଲୁଣ୍ଠନ କରୁଛନ୍ତି। ସେମାନେ ଠିକ୍ ସେଇ ରାସ୍ତାରେ ବ୍ରିଟିଶମାନଙ୍କୁ ମଧ ଏହିପରି ଲୁଣ୍ଠନ କରିଥିଲେ। ଇଲା ବକ୍ସଙ୍କ କଥା ସତ। କିନ୍ତୁ ଜଫର ଜାଣି ନ ଥିଲେ କି ଇଲା ବକ୍ସ ହଡ଼ସନଙ୍କ ଦ୍ୱାରା ପ୍ରେରିତ। ସମ୍ରାଟ ଜଫର ରାସ୍ତା ବଦଳାଇ ନିଜାମୁଦ୍ଦିନକୁ ଫେରିଲେ। ସେଠି ପହଞ୍ଚି ସେ ଜିନତ୍ ମହଲଙ୍କୁ ଅପେକ୍ଷା କଲେ। ଜିନତ୍ ମହଲ ଓ ତାଙ୍କ ବାପା ମିର୍ଜା କ୍ୱାଲିଖାନ୍ ସେ ସମୟକୁ ଲାଲକନ୍ୱାଓ୍ୱାର କୋଠାରୀରେ ଜଫରଙ୍କ ବିରୁଦ୍ଧରେ ଯୋଜନା କରୁଥିଲେ। ଆଉ ହାତ ମିଳାଇଥିଲେ ହଡ଼ସନଙ୍କ ସହିତ।

୧୭ ସେପ୍ଟେମ୍ବର ସକାଳୁ ଏ ଖବର ସହର ସାରା ଖେଳିଗଲା କି ଜଫର ଦୁର୍ଗ ଛାଡ଼ି କୁତୁବ, ଅଞ୍ଚଳକୁ ଚାଲିଯାଇଛନ୍ତି। ଆଜମୀର ଗେଟ, ବ୍ରିଟିଶ ଅଧିକୃତ କାଶ୍ମୀର ଗେଟ ଦେଇ ସାଧାରଣ ଜନତା ଦିଲ୍ଲୀ ଛାଡ଼ି ଚାଲିଯିବାକୁ ଲାଗିଲେ। ହଜାର ହଜାର ସଂଖ୍ୟାରେ ନିଜ ନିଜ ଆସବାବପତ୍ର ଧରି ବାହାରି ଯାଉଥିତଲେ। ସେମାନଙ୍କୁ ଅଟକାଯାଇ ସବୁ ପୁରୁଷ ଓ ବୟସ ପ୍ରାପ୍ତ ପୁଅମାନଙ୍କୁ ହତ୍ୟା କରାଗଲା। ଶିଶୁ ଓ ସ୍ତ୍ରୀ ଲୋକଙ୍କୁ ଯିବା ପାଇଁ ଅନୁମତି ଦିଆହେଲା ସତ ହେଲେ ସବୁ ଧନସପତ୍ତି, ଗଣ୍ଠିଲକୁ ଛଡେଇ ରଖିଦେଲେ।

ହାରିଏଟ ଟାଇଟଲର ନିଜେ ଏ ସବୁ ଘଟଣାର ବର୍ଣ୍ଣନା କରିଥିଲେ। ୧୭ ତାରିଖରେ ନିଜେ କିଛି ଠିକଣା କରିପାରି ନଥିଲେ। ଜାହିର ଡାଏଲଭି ବି ଦିଲ୍ଲୀରେ ଥିଲେ। ନବାବ୍ ହିମଦ୍ ଅଲି ଖାଁ ତାଙ୍କୁ ବିନିତ ଅନୁରୋଧ କଲେ ଅଧିକ ଡେରି ହେଲା ପୂର୍ବରୁ ସେ ଦିଲ୍ଲୀ ଛାଡ଼ ଚାଲିଯାନ୍ତୁ।

"ରାସ୍ତାଯୁଦ୍ଧ" ପରେ ଦିଲ୍ଲୀ ରାସ୍ତା ସବୁର ଅବସ୍ଥା ଏତେ ଖରାପ ଅବସ୍ଥାରେ ଥିଲା ଯେ ରାସ୍ତା ସବୁ ଚିହ୍ନିବା କଷ୍ଟକର ଥିଲା। ଏହି ଅବସ୍ଥାରେ ଓ୍ୱକ୍ତ ଖାଁ କିଷନଗଞ୍ଜର ତାଙ୍କ ନିଜ ଛାଉଣୀ ଛାଡ଼ି, ତାଙ୍କ ଟ୍ରୁପକୁ ନେଇ ଚାଲିଗଲେ। ଏମାନେହିଁ ଉଇଲସନଙ୍କ ବିଜୟର କାରଣ ଥିଲା। ଦିଲ୍ଲୀର ଥିବା ସାଧାରଣ ଲୋକଙ୍କ ମଧରୁ କେତେକଙ୍କୁ ମାରି ଦଆଁଗଲା ଓ ଯାହାଙ୍କୁ ସବୁ ନ ମାରିଲେ, ସେମାନଙ୍କୁ ଘରୁ ବାହାର କରିଦେଲେ।

କବି ମହମ୍ମଦ ହୁସେନ ଆଜାଦଙ୍କୁ ହତ୍ୟା କରାଗଲାନି। ଆଜାଦ ଜକଙ୍କର ପ୍ରିୟ ଶିଷ୍ୟ। ୧୮୫୪ରେ ଜକ୍‌ଙ୍କ ମୃତ୍ୟୁପରେ ସେ ତାଙ୍କର ଗୁରୁଙ୍କର ଗଜଲ ସବୁ ବଞ୍ଚାଇ ରଖିବାର ଆପ୍ରାଣ ଚେଷ୍ଟା କରିଥିଲେ।

ଆଜାଦଙ୍କ ପରିବାର ଦିଲ୍ଲୀରୁ ଚାହାରକୁ ଯିବା ଅବସ୍ଥାରେ କେଉଁଠୁ ଏକ ବୁଲେଟ ଆସି ତାଙ୍କ ବର୍ଷକର ଝିଅ ଦେହରେ ବାଜିଲା। ଝିଅ କୋମା ଅବସ୍ଥାକୁ ଚାଲିଗଲା ଓ ପରେ ତା'ର ମୃତ୍ୟୁ ହେଲା ନାନାଦି ଅସୁବିଧାର ସମ୍ମୁଖୀନ ହେଲେ ଆଜାଦ। ତାଙ୍କୁ ମଧ ଲୁଣ୍ଠନ କରାହେଲା।

ପାଖରେ ରହିଯାଇଥିଲା କିଛି ଅଟା। ଭୋକ ଉପାସରେ କାଟିଲେ। ଶେଷରେ କାଠପତର ଜାଳି, ଏ ଭଙ୍ଗା ପତ୍ରରେ ରୁଟି ସେକି ଖାଇଲେ। କିନ୍ତୁ ପରିବାର ସହ ଅଧାଜଳା ରୁଟି ବି ବିରିୟାନୀଠୁ ବେଶି ସୁଆଦ ଲାଗିଲା।

ପରିବାରକୁ ସୁରକ୍ଷିତ ଜାଗାକୁ ପଠାଇବାର ବନ୍ଦୋବସ୍ତ କଲେ। ହେଲେ ନିଜେ ସାଙ୍ଗରେ ଗଲେ ନାହିଁ। କାରଣ ତାଙ୍କ ପିତା ରହିଯାଇଥିଲେ ଦିଲ୍ଲୀରେ। ତାଙ୍କୁ ସାଥିରେ ନେଇଯିବା ଉଦ୍ଦେଶ୍ୟରେ ସେ ଦିଲ୍ଲୀ ଫେରିଲେ। ଅନ୍ୟ ବନ୍ଦିମାନଙ୍କ ସହ ତାଙ୍କ ବାପାଙ୍କର ମଧ ଶୁଣାଣି ଚାଲିଥିଲା। ତାଙ୍କ ବାପାଙ୍କର ଜଣେ ସାଂଙ୍ଗ ଶିଖ ଜେନେରାଲଙ୍କ ଘରେ ଆଶ୍ରୟ ନେଲେ। ଶୁଣାଣି ଅବସ୍ଥାରେ ଦୂରରୁ ବାପାଙ୍କ ସହିତ ଦେଖାହେଲା। ଦୁଇ ଜଣଙ୍କର ଚକ୍ଷୁମିଳନ ହେଲା ଅନେକ ସମୟ ଧରି। ଅବଶେଷରେ ବାପାଙ୍କୁ ଫାଶି ଦିଆଗଲା। ଆଉ ଆଜାଦ ନିଜ ନାଁରେ ପରଓ୍ୱାନା ଜାରି ହୋଇଛି ଜାଣି ସେ ଜାଗାରୁ ଖସି ଆସିଲେ। ମାଡ୍ରାସ, ନୀଳଗିରି ପର୍ବତ ମାଳା, ଲକ୍ଷ୍ନୌରେ ଚାରିବର୍ଷ ଧରି ଦାରିଦ୍ର୍ୟର କଷାଘାତ ଭିତରେ ଘୁରି ବୁଲିଲେ। ଶେଷରେ ପହଞ୍ଚିଲେ ଲାହୋରରେ। ହାତରେ ଗୁରୁ ଜକଙ୍କର ଗଜଲ। ୧୮୬୧ ବେଳକୁ ସେ ଲାହୋରରେ ଗୋଟିଏ ଛୋଟ ଚାକିରୀ ପାଇଲେ। ସେତିକି ବେଳେ ଗୁରୁଜିଙ୍କର ଗଜଲସବୁ ଛପାଇବାର ଚେଷ୍ଟା କଲେ।

ସେପ୍ଟେମ୍ବର ୧୮ ତାରିଖ। ସକାଳେ ସହର ଅନ୍ଧକାର ହୋଇଗଲା। ଘୋଟିଗଲା ସୂର୍ଯ୍ୟପରାଗର ବଳୟ। ବ୍ରିଟିଶରମାନଙ୍କ ଉପରେ ଏ ପରାଗର କୌଣସି ପ୍ରଭାବ ପଡ଼ିଲା ନାହିଁ। ହିନ୍ଦୁମାନେ ବିଶ୍ୱାସ କରନ୍ତି କି ପରାଗ ସମୟରେ ବାହାରକୁ ଯିବା ଠିକ୍ ନୁହେଁ। ଅଧିକନ୍ତୁ ସଂଧ୍ୟାରେ ପ୍ରବଳବର୍ଷା ହେଲା। ସିପାହୀ ଓ ସାଧାରଣ ଜନତା ବେଶି ସଂଖ୍ୟାରେ ଦିଲ୍ଲୀ ଛାଡ଼ି ପଳାୟନ କରୁଥିଲେ। ଭାବିଥିଲେ କି

ଭଗବାନଙ୍କ ଅଭିଶାପ ଦିଲ୍ଲୀ ଉପରେ ପଡ଼ିସାରିଲାଣି । ୧୯ ସେପ୍ଟେମ୍ବର ସନ୍ଧ୍ୟାରେ ବ୍ରିଟିଶରମାନେ ଅବଶେଷର ଓ୍ବର୍ଣ ବାଷ୍ଟିୟାନ ଦଖଲ କଲେ । ଦିଲ୍ଲୀ ବ୍ୟାଙ୍କ କୋଠା ମଧ୍ଯ ସେଦିନ ଦଖଲ ହୋଇସାରିଥିଲା ।

ମେ ୧୮୫୭ର କରୁଣ ଦୃଶ୍ୟ, ଯାହା ଲୋକମୁଖରୁ ଶୁଣିଥିଲେ । ସେ ସବୁକୁ ଖ୍ୱାଜା ହାସାନ ବାଦାମି ଏକ ପୁସ୍ତକ ଆକାରରେ ଛପାଇଲେ ପ୍ରାୟ ୧୯୫୨ ବେଳକୁ । ନାଁ ଦେଇଥିଲେ, "ବେଗମକି ଆସୁ" । ମିର୍ଜା ସାହାଜୋରଙ୍କ କାହାଣୀ ଟିକିଏ ଭିନ୍ନ ଧରଣର । ସମ୍ରାଟ ତାଙ୍କ ଦରବାର ଛାଡ଼ିବା ପରେ ସାହାଜୋରରେ ତାଙ୍କ ଗର୍ଭବତୀ ସ୍ତ୍ରୀ, ମା ଓ ଭଉଣୀଙ୍କୁ ଧରି ଶଗଡ଼ ଗାଡ଼ିରେ କୁତୁବ ସାହିବାଙ୍କ ଅଭିମୂଖେ ଯାଇଁ ସେଠାରେ ରାତ୍ରୀଯାପନ କଲେ । ସକାଳୁ ପୁଣି ଥରେ ଯାତ୍ରା ଆରମ୍ଭ କରିବା ସମୟରେ ଛତ୍ରପୁର ପାଖରେ ଗୁର୍ଜରମାନଙ୍କ ଦ୍ୱାରା ଲୁଣ୍ଠିତ ହେଲେ । ସର୍ବହରା ହୋଇ ଜୀବନଧରି ସେମାନେ କିଛି ରାସ୍ତା ଗଲାପରେ ମୁସଲମାନଙ୍କ ମେଓ୍ୱାତ଼ିଙ୍କ ଗାଁରେ ଆଶ୍ରୟ ପାଇଲେ । କିଛି ମାସ କଟିଗଲା ପରେ ଦିଲ୍ଲୀକୁ ଫେରି ବ୍ରିଟିଶଙ୍କ ଦୟାରୁ ମାସିକ ଟ.୫ ପେନସନ ପାଇଁ ଜୀବନ ବିତାଇଲେ ।

ଜଫର ସୁଲତାନ, ମିର୍ଜା ବାବୁରଙ୍କ ପ୍ରିୟ ପୁତ୍ର ଓ ସମ୍ରାଟଙ୍କର ଜଣେ କୁଟୁମ୍ବର ଭାଇ । ସେ ବ୍ରିଟିଶରଙ୍କର ପରି ପୋଷାକ ପିନ୍ଧନ୍ତି । ରେଡ଼ଫୋଟ ଅଞ୍ଚଳରେ ଗୋଟେ ଇଂରାଜି ଢଙ୍ଗରେ ଘର ତୋଳାଇ ଥିଲେ । ୧୯ ତାରିଖ ସେପ୍ଟେମ୍ବର ମାସ । ସେ ତାଙ୍କ ଅନ୍ଧମାଙ୍କୁ ନେଇ ଅଜମୀର ଗେଟ ବାଟେ କରନାଲ ଯିବାପାଇଁ ବାହାରିଲେ । ପ୍ରଥମ ରାତିଟା ସେ ଗୁର୍ଜାର ଓ ବ୍ରିଟିଶର ମାନଙ୍କ ଉପଦ୍ରବ୍ୟରୁ ରକ୍ଷା ପାଇଗଲେ ।

ପରଦିନ ସକାଳେ ଶଗଡ଼ିଆ ବଳଦ ଦୁଇଟି ନେଇ ପଳାଇଗଲା । ଗୋଟେ ଜାଟ ଅଧିକୃତ ଗାଁରେ ରହିଥିଲେ । ଗାଁ ଲୋକେ ମୂଲ୍ୟବାନ ରତ୍ନ ଇତ୍ୟାଦି ଆଶାରେ ତାଙ୍କର ସବୁ କିଛି ଲୁଣ୍ଠନ କଲେ । ସେମାନଙ୍କୁ ନେଇ ଜଙ୍ଗଲରେ ପକାଇ ଦେଲେ । ରୋଗ ଯନ୍ତ୍ରଣାରେ ଛଟ ପଟ ହୋଇ ପ୍ରାଣତ୍ୟାଗ କଲେ । ସେ ମଲା ପୂର୍ବରୁ ତାଙ୍କ ମା କହିଲେ ମୁଁ ଭାରତ ସମ୍ରାଟର ଭାରଜା । କିନ୍ତୁ ଦଫନ ପାଇବାର ଆଶା ନାହିଁ । ଜଫର ସୁଲତାନ ମାଙ୍କ ମୃତ୍ୟୁପରେ ତାଙ୍କୁ କୌଣସି ପ୍ରକାରରେ କବର ଦେଇ ଫକୀରଙ୍କ ଭଳି ଶେଷରେ ମକ୍କାରେ ପହଞ୍ଚିଲେ । ଫେରିଲେ ଦିଲ୍ଲୀକୁ କାରଣ ଦିଲ୍ଲୀକୁ ଭୂଲି ପାରିଲେ ନାହିଁ । ଦିଲ୍ଲୀରେ ଦିନ ମଜୁରିଆ ହୋଇ କାମ କଲେ । ନିଜ ପାରିଶ୍ରମିକ

ଉପରେ ତାଙ୍କ ଆଗାଧ ବିଶ୍ୱାସ ଥିଲା। ସେଥିଲାଗି ବ୍ରିଟିଶ ପେନ୍‌ସନ ଆଗ୍ରାହ୍ୟ କରିଥିଲେ।

ବ୍ୟକ୍ତିଗତ ଜୀବନ ଉପରେ ଆଧାରିତ କେତେ କେତେ ବ୍ୟକ୍ତିଗତ କାହାଣୀ।

୨୦ ତାରିଖ ସେପ୍ଟେମ୍ବର। ବ୍ରିଟିଶରମାନେ ଧ୍ୱଂସ ରେଡ୍‌ଫୋର୍ଟକୁ ଆଗେଇ ଚାଲିଲେ। ପୂର୍ବଦିନ ରାତିରେ ଦୁର୍ଗ ଗେଟ ତଳେ ଗନ ପାହାଡ଼ର ଦେଇ ତୋପ ରଖା ହୋଇଥିଲେ। ୨୦ ତାରିଖ ସକାଳ ୧୦ଟା ବେଳକୁ ଭୀମଗର୍ଜନ କରି ସେଗୁଡ଼ିକ ଫୁଟିବାର ଲାଗିଲେ। ଭାଙ୍ଗି ପଡ଼ିଲା ଦୁର୍ଗ ଫାଟକ ହଡ଼ସନଙ୍କ ନିର୍ଦ୍ଦେଶ ଅନୁସାରେ ବଡ଼ ଖବରଟିଏ ଗୁପ୍ତ ରଖାଯାଇଥିଲା। ସମ୍ରାଟ ଯେ ଦୁର୍ଗ ଭିତରେ ନାହାନ୍ତି, ଏ ଖବର ସେମାନଙ୍କୁ ଜଣାଇ ଦିଆଯାଇ ନଥିଲା। ହଡସନ ଇଲା ବକ୍ସଙ୍କ ଜରିଆରେ ସବୁ ଖବର ରଖୁଥିଲେ ମଧ୍ୟ।

ଫାଟକ ଧ୍ୱଂସ ହେବା ପରେ ଦୁର୍ଗ ଭିତରେ ସମ୍ରାଟଙ୍କର ପରିବାରର କୌଣସି ସଦସ୍ୟ ମିଳିଲେ ନାହିଁ। ସଂପୂର୍ଣ୍ଣ ଭାବରେ ଦୁର୍ଗ ଦଖଲ କଲେ ବ୍ରିଟିଶରମାନେ।

ସେ ଦିନ ସଂଧ୍ୟାରେ ବ୍ରିଟିଶର ସୈନ୍ୟମାନେ ଜମା ସମଜିଦ୍ ଭିତରେ କିରାସ୍ (ଏକ ପ୍ରକାର ନାଚ) ନାଚିଲେ। ଶିଖମାନେ ବିଜୟର ଦୀପ ମସଜିଦର ପବିତ୍ର ସ୍ଥାନରେ ଜଳାଇଲେ। ଜେନେରାଲ ଉଇଲସନ ଓ ତାଙ୍କ ଷ୍ଟାଫ୍ ସେଣ୍ଟ ଜେମସ୍ ଚର୍ଚ୍ଚରୁ ବାହାରି ଦିୱାନି ଖାସ୍‌ରେ ରାତ୍ରି ଭୋଜନ କଲେ (ଆଣ୍ଡାଓହାମ)। ମନରେ ଚିନ୍ତାଧାରା ଥିଲା କି ରାଣୀଙ୍କୁ ଭଗବାନ ଆର୍ଶିବାଦ ଦିଅନ୍ତୁ। ଠିକ୍ ପରେ ପରେ ଲାହୋରକୁ ଟେଲିଗ୍ରାମ ପଠାଇଲେ। ଲେଖାଥିଲା ସଂଗ୍ରାମର ଶେଷ ହେଇଛି। ସଂପୂର୍ଣ୍ଣ ପରାଜୟ ଘଟିଛି। ବିଦ୍ରୋହୀଙ୍କର ଭିତରେ ଆମେ କ୍ଲାଇବ ଓ ଲେକଙ୍କ ପ୍ରଭାବ ଫେରି ପାଇଛୁ।

ନିକଲସନ ଶିଜରେ ମୃତୁ ସହ ସଂଗ୍ରାମ କରୁଥିଲେ। ଦିଲ୍ଲୀ ବିଜୟ ଗାଥା ତାଙ୍କୁ ଶୁଣାଇ ଦିଆଗଲା। କ୍ଷୀଣ ସ୍ୱରରେ କହିଲେ; "ମୋ ମୃତ୍ୟୁ ପୂର୍ବରୁ ଦିଲ୍ଲୀକୁ କବଜା କରାଯାଉ ଏହାହିଁ ମୋର ଶେଷ ଇଛା ଥିଲା। ଏ ଘଟଣାର ତିନିଦିନ ପରେ ସେ ମୃତ୍ୟୁ ବରଣ କଲେ। ମେହତାବ ବାଗରେ ଜଫରଙ୍କ ପ୍ରିୟ ଚନ୍ଦ୍ରାଲୋକ ବଗିଚା ଭିତରେ ତାଙ୍କୁ କବର ଦିଆଗଲା। ଏ ତ ହେଲା ଦୁର୍ଗ ଓ ସମ୍ରାଟଙ୍କ ଦୁର୍ଦ୍ଦଶାର ଦୁଃଖଦ କାହାଣୀ। ରାସ୍ତା ଘାଟରେ ମଧ୍ୟ ଏହିପରି ଘଟଣାମାନ

ଦେଖାଦେଲା। ବ୍ରିଟିଶରମାନେ ଲାହୋର ଓ ଅଜମୀର ଗେଟ ଅଧିକାର କଲେ। ସବୁ ସିପାହୀ ପଳାଇଲେ। ସବୁଠି ଖାଲି ବ୍ରିଟିଶ ସୈନ୍ୟ। ଖାଲି ରହିଯାଇଥିଲେ ରୋଗୀ ଓ ଆଘାତ ପ୍ରାପ୍ତ ବଳିତ୍ ଶକ୍ତିହୀନ ସିପାହୀ। ସେମାନଙ୍କୁ ମାରି ଦିଆଗଲା। ଶବ ସବୁରାସ୍ତାରେ ଗଡୁଥିଲା।

ନୃଶଂସ ଓ ନିର୍ମମ ହତ୍ୟାପରେ ଅବଶିଷ୍ଟ ଯେଉଁ ସୈନ୍ୟମାନେ ବଞ୍ଚିଗଲେ। ସେମାନଙ୍କୁ ଯମୁନା ନଦୀ ପର୍ଯ୍ୟନ୍ତ ନେଇଯାଇ ଧାଡ଼ିକରି ଠିଆ କରାହେଲା। ଦୁର୍ଗର ପାଚରୀ ତଳେ, ସମସ୍ତଙ୍କୁ ହତ୍ୟା କରାଗଲା। କୁବା କୋହୀନଙ୍କ ଭାଷା ସେମାନେ ଥିଲେ ଦିଲ୍ଲୀର ଗର୍ବ।

## ଜଫରଙ୍କ ବିଚାର

୨୭ ଜାନୁୟାରୀ ୧୮୫୮। ବିଚାର ହେଲା ଇଂରେଜ ଅଦାଲତରେ। ଜଫରଙ୍କ ଦୋଷସବୁର ଟିକିନିଖି ବିଚାର ହେଲା ଅଦାଲତରେ। ପ୍ରେସିଡେଣ୍ଟଙ୍କଠାରୁ ଆରମ୍ଭ କରି ତଳିଆ କର୍ମଚାରୀ ପର୍ଯ୍ୟନ୍ତ ସମସ୍ତେ ଇଂରେଜ। ଜଣେ କେବଳ ଭାଷାନ୍ତକାରୀ ଭାରତୀୟ ଲୋକ।

ଜଫର ତାଙ୍କ ପରିବାର ସହ ୨୬୨ ଜଣ ସଦସ୍ୟ ତମ୍ବୁରେ ରହିଥିଲେ ତମ୍ବୁ ଚାରିପଟେ ରେଜିମେଣ୍ଟର ପହରା ଚଳିଶ ଘଣ୍ଟା ଲାଗିଥିଲା। ତମ୍ବୁ ଚାରିପଟେ ମୂନିଆଁ କାଠ ଖୁଣ୍ଟର ବାଡ଼।

ବିଚାର ପରେ ବ୍ରିଟିଶ ରେଙ୍ଗୁନକୁ ପଠାଗଲା। ଯିବା ପୂର୍ବରୁ ରେଜିମେଣ୍ଟର ଜଣେ ଅଫିସର ତାକୁ ପଚାରିଲେ, (ଦିଲ୍ଲୀର ରେଜିମେଣ୍ଟର ଜଣେ ଅଫିସର)।

"ଦିଲ୍ଲୀର ସିପାହୀ ବିଦ୍ରୋହ ବେଳେ ଏ ଦଙ୍ଗାହାଙ୍ଗାମାର କାରଣ କ'ଣ ?"

ଉତ୍ତରରେ ଜଫର କହିଲେ; ଯଦିଓ ମୁଁ ପ୍ରକୃତ କାରଣ ଜାଣିନି ତେବେ ଅନୁମାନ କରୁଛି କି ମୋ ଲୋକମାନେ ଏ ସଇତାନ ମାନଙ୍କ ଆଗରେ ମୁଣ୍ଡ ନୋଇଁଯାଇଥିବେ।

ଜଫରଙ୍କୁ ବିଦ୍ରୋହୀ ଭାବରେ ଅଭିହିତ କରିବା ପାଇଁ ଦିଲ୍ଲୀରେ ଏକ ମିଲିଟାରୀ କମିଶନ ବସିଥିଲା। ପ୍ରେସିଡେଣ୍ଟ ଥିଲେ। ଲେଫନାଣ୍ଟ କର୍ଣ୍ଣେଲ ଡାଓସ୍। ଅନ୍ୟାନ୍ୟ ସଦସ୍ୟମାନେ ଥିଲେ ମେଜର ପାମର, ମେଜର ରେଡ଼ମଡ଼, ମେଜର ସୱାର ଓ କ୍ୟାପଟେନ ରୁଥନି। ଭାଷାନ୍ତରକାରୀ ଥିଲେ ମିଷ୍ଟର ଜେମ୍ସ୍ ମର୍ଫି। ସରକାରୀ ଓକିଲ ଥିଲେ ମେଜର ଏଫ୍,ଜେ, ହାରିଅଟ।

ବିଚାର ଅନେକ ଦିନ ଧରି ଚାଲିଲା। ଶେଷରେ ସବୁ ପ୍ରକାର ଅଭିଯୋଗରେ, ଯଥା ହତ୍ୟା ଲୁଣ୍ଠନ ବିଦ୍ରୋହ ଦୋଷରେ ଦୋଷୀ ବୋଲି ସାବ୍ୟସ୍ତ ହେଲେ। ଦଣ୍ଡିତ ହେଲେ ଜଫର, ସମସ୍ତ ପରିବାର ଜିବିତ ବଂଶଧର ଲଗାଏତ ୨୬ ଜଣଙ୍କୁ ଦୋଷୀ ପ୍ରମାଣ କରି ବ୍ରିଟିଶ ବର୍ମାର ରେଙ୍ଗୁନଙ୍କୁ ପଠାହେବେ। ହଜାର ହଜାର ଦୋଷୀଙ୍କୁ ବିଚାର କରିଥିବା ସମ୍ରାଟ ଆଜି ନିଜେ ଦୋଷୀ। ବିନା ପ୍ରତିବାଦରେ, ବିନା ପ୍ରତିରୋଧରେ ଦଣ୍ଡକୁ ମୁଣ୍ଡପାତି ସହିବାକୁ ବାଧ ହେଲେ ସମ୍ରାଟ ଜଫର। ପ୍ରଶ୍ନ ଉଠିଲା କମ୍ପାନୀ ଜଫରଙ୍କୁ ବିଚାର କରିବାକୁ ଯୋଗ୍ୟ କି ନା ? କମ୍ପାନୀଠାରୁ ମାସିକ ଭରା ପାଉଥିବା ସମ୍ରାଟ ତ କମ୍ପାନୀର ପ୍ରଜା, ଯଦିଓ ଏହା ସନ୍ଦେହ ଜନକ ଥିଲା। ୧୫୯୯ର ଚାଟ ଅନୁଯାୟୀ ପୂର୍ବର ବ୍ୟବସ୍ଥା ଆରମ୍ଭ କରିବାକୁ ଆଦେଶ ଦେଇଥିଲେ ମୋଗଲ ସମ୍ରାଟ। ବଙ୍ଗଳାରେ ରାଜସ୍ୱ ଆଦାୟ କରିବାପାଇଁ ମଧ ପଲାସି ଯୁଦ୍ଧ ପରେ (୨ ଅଗଷ୍ଟ ୧୭୬୫) କମ୍ପାନୀକୁ ଅଧିକାର ଦିଆ ଯାଇଥିଲା।

୧୮୩୨ରେ ଜଫରଙ୍କ ବୟସ ଥିଲେ ୫୮ ବର୍ଷ। ସାହା ଆଲାମଙ୍କ ଭକ୍ତିପୂତ ଆଶ୍ରୟୀ ଭାବରେ ମୁଦ୍ରାରେ ସମ୍ରାଟଙ୍କ ନାମ ଥିବା ସିଲରେ କମ୍ପାନୀ ନାଁ ମଧ ଗୃହିତ ହୋଇଥିଲା। ପରବର୍ଷ ସାରା ଚାର୍ଲ୍ସ ମେଟକାଫଙ୍କ ପ୍ରରଚୋନାରେ ସମ୍ରାଟଙ୍କ ନାମ (ସାହା ଆଲାମ, ଆକବର ସାହ, ଜଫର) ସେଥିରେ ଲେଖା ନ ଥିଲା। କମ୍ପାନୀ ମଧ ସମ୍ରାଟଙ୍କୁ ଭେଟି ଦେଇ ନ ଥିଲେ। ସେ ଦୃଷ୍ଟିରୁ ସମ୍ରାଟ ଜଣେ ପରାଜିତ ଶତ୍ରୁ ଭାବରେ ଗଣାହେବେ। ସେଥିଯୋଗୁଁ କମ୍ପାନୀର ବିଚାରର କ୍ଷମତା ଅଛି ବୋଲି ଘୋଷଣା କରାଗଲା।

"ଟାଇମ" ପତ୍ରିକାର ଉଇଲିୟମ ହୋଆର୍ଡ୍ ରସେଲ ଥିଲେ ସଂପାଦକ। ଯୁଦ୍ଧକାଳିନ ସାମ୍ବାଦିକତାର ପିତା। ଧ୍ୱଂସ ପ୍ରାୟ ଦିଲ୍ଲୀକୁ ସେଇ ସମୟରେ ଆସିଥିଲେ। ଲେଖିଥିଲେ; ଦିଲ୍ଲୀ ରାସ୍ତାରେ କଙ୍କାଳ ସବୁ ବିଛୁରି ହୋଇପଡ଼ିଥିଲେ। ଅଟ୍ଟାଳିକା ମିନାର ସବୁ ଚାଲୁଣି ପରି ଛିଦ୍ରଯୁକ୍ତ। ଏହା ସତ୍ତ୍ୱେ ଲାଲକିଲ୍ଲା ଥିଲା ସୌନ୍ଦର୍ଯ୍ୟ ପୂର୍ଣ୍ଣ। କାନ୍ଥ ସାରା ଅନେକ ପ୍ରକାରର ଭିତ୍ତିଚିତ୍ର। ଏପରି ଚିତ୍ର କେବଳ windsor palace ରେହି ସଂଭବ।

ଆହୁରି ଲେଖିଲେ କି ଲାଲକିଲ୍ଲାର ଅନ୍ଧାରିଆ ଗଳି ରାସ୍ତାରେ ଯାଇଁ ଯେଉଁ ଲୋକଟିଙ୍କୁ ବିଦ୍ରୋହର ମୂଳ ଧାରା ବୋଲି ଗଣାଯାଇଥିଲା, ସେ ହେଉଛନ୍ତି ଜଫର। ଜଫର- ଦୁର୍ବଳ ଶରୀର ବିଗଳିତ ଚକ୍ଷୁ, ସ୍ଖଳିତ ଓଷ୍ଠଧାର, ଦନ୍ତବିହୀନ ମୁଖମଣ୍ଡଳ।

ଏଇ ଲୋକ କ'ଣ ସତରେ ତା'ର ବିରାଟ ସାମ୍ରାଜ୍ୟ ରକ୍ଷିବାର ଯୋଜନା ଏତେ ବଡ଼ ବିଶ୍ୱପ୍ରସିଦ୍ଧ ରାଜ ବିଦ୍ରୋହର କଳ୍ପନା ଆଉ ତାଙ୍କ ରାଜପ୍ରସାଦରୁ ଇଂରେଜ ଭଳି ଶକ୍ତିକୁ ପ୍ରତିରୋଧ କରିପାରିଥିବେ ? ବିଶ୍ୱାସ ହୁଏ ନାହିଁ। ଏ ସବୁ ବିଚାର କରି ରସେଲ ନିଜେ ଜଫରଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ପାଇଁ ସନ୍ଦୀହାନ ଥିଲେ।

ଶେଷରେ ରସେଲ ଲେଖିଥିଲେ, ଯଦି ପ୍ରକୃତ ବିଚାର ଜଫରଙ୍କୁ କରାଯାଏ (ମିଲିଟାରୀ କମିଶନଙ୍କ ବ୍ୟତିତ) ତାଙ୍କ ବିରୁଦ୍ଧରେ ଥିବା ଅଭିଯୋଗ ସବୁକୁ ପ୍ରମାଣ କରିବା କଷ୍ଟକର ହେବ। ପୁଣି ଲେଖିଲେ ସେ ବୃଦ୍ଧ ଲୋକଙ୍କୁ ଦେଖିଲାପରେ ତାଙ୍କ ବିରୁଦ୍ଧରେ ଥିବା ଅଭିଯୋଗରେ ସେ ଅଭିଯୁକ୍ତ ହୋଇପାରନ୍ତି ବୋଲି ମନେ ହୁଏନା।

ହଜାର ବାର ମୃତ୍ୟୁ ବରଣକର ପଛେ। କିନ୍ତୁ ଏପରି ହୀନ, ଦୀନ, ଅମର୍ଯ୍ୟାଦାପୂର୍ଣ୍ଣ ବାତାବରଣକୁ କୋଳେଇ ନେବା ଉଚିତ୍ ନୁହେଁ। ସେ ବୃଦ୍ଧ ସମ୍ରାଟ ଓ ତାଙ୍କ ପୁଅମାନେ ଏପରି ନିରୀହ ଆମାୟିକ ରକ୍ତର ବଳି ଦେବା ଅପେକ୍ଷା କାନ୍ଧରେ ଜୁଆଳ ଦେଇ ଯଦି ଖଟି ଖଟି ମରିଯାଇଥାନ୍ତେ, ହୁଏତ ତାଙ୍କ ପ୍ରତି କିଛି ମହାନୁଭୂତି ମିଳିପାରିଥାନ୍ତା।

## ଜଫରଙ୍କ ରେଙ୍ଗୁନ ଯାତ୍ରା- ବନ୍ଦୀ ଭାବରେ

୧୩ ଅକ୍ଟୋବର ପୂର୍ବତନ ସମ୍ରାଟ ଓ ଅନ୍ୟାନ୍ୟ ବନ୍ଦୀଙ୍କୁ ନେଇ ଲେଫ୍ଟନାଣ୍ଟ ଓମ୍ମାନିଙ୍କ ନେତୃତ୍ୱରେ ରେଙ୍ଗୁ ଯାତ୍ରା କରିବା ପାଇଁ ନିଆଗଲା। ସବୁ ବନ୍ଦୀମାନେ ଖୁବ ଭଲମନରେ ଏ ପ୍ରକାର ଯାତ୍ରାକୁ ଆନନ୍ଦର ସହିତ ଉପଭୋଗ କରୁଥିଲେ।

ଯାହା ହେଲେ ବି ଯାତ୍ରାତ ? ଜଫର ନିଜେ ବାହାରକୁ ଯିବା, ଶିକାର, କରିବା, କୌଣସି ଦୁଃସାହସିକ କାମରେ ଲିପ୍ତ ରହିବାରେ ଖୁବ୍ ଆନନ୍ଦ ପାନ୍ତି। ସହଜେ ଗତ ୧୮ ମାସର ଏ ବିଦ୍ରୋହ ଅବରୋଧ, ବନ୍ଦୀ ଜୀବନ, ବିଚାରର ଶୁଣାଣିରେ ସେ ଅତିଶୟ ବ୍ୟତିବ୍ୟସ୍ତ ହେଇପଡ଼ିଥିଲେ। ଏ ଯାତ୍ରା ଉଦ୍ଦେଶ୍ୟ ଛୁଟିର ଆମୋଦ ପାଇଁ ନ ହେଲେ ମଧ ଏ ସବୁରୁ ମୁକ୍ତି ପାଇବା ପାଇଁ ସେ କାୟାମନୋ ବାକ୍ୟରେ ଚାହୁଁଥିଲେ। ତୃପ୍ତି ଦାୟକ ଥିଲା ଏ ଯାତ୍ରା- ଉଦ୍ଦେଶ୍ୟ ଯାହା ହେଉ ପଛେ।

ଯାତ୍ରା ପାଇଁ ବ୍ୟବସ୍ଥା ମଧ ଖୁବ୍ ସୁନ୍ଦର ଥିଲା। ସବୁ ବନ୍ଦୀଙ୍କ ପାଇଁ ଅଲଗା ଅଲଗା ଗାଡ଼ିର ବନ୍ଦୋବସ୍ତ ହୋଇଥିଲା। ପାଗ ଥିଲା ଅନୁକୁଳ- ରାତି ଓ ସକାଳ ଥିଲା ଥଣ୍ଡା। ଦିନଥିଲା ସବୁ ଉଜ୍ଜ୍ୱଳ ଓ ସରଖରମ।

ଆଗପଛ ହୋଇ ଗାଡ଼ିସବୁ ଧାଡ଼ିରେ ଚାଲିଛନ୍ତି। ଆଗରେ ଅଶ୍ୱାରୋହୀ ସେନା ପଛକୁ ଜଫର ଓ ତାଙ୍କ ଦୁଇପୁଅକୁ ଧରି ଚାରିପଟେ ଅଶ୍ୱାରୋହୀ ସୈନିକଗଣ। ପଛକୁ ପର୍ଦ୍ଦାସୀନ ଗାଡ଼ି। ଭିତରେ ଜିନତ ମହଲ, ମିର୍ଜା ଜୱାନ ୱାକ୍ତଙ୍କ ଯୁବସ୍ତ୍ରୀ ନବାବ ସାହା ଜମାନୀ ବେଗମ ଓ ତାଙ୍କ ମା ମୁବାରକ-ଉନ-ନିଶା।

ତୃତୀୟରେ ତାଜ ମହଲ ଓ ତାଙ୍କର ସେଚାକାରୀ ଦଳ। ସାଙ୍ଗରେ ତାଙ୍କ ହଞ୍ଜଡ଼ା। ଜଣେ ଶାନ୍ତ ନିର୍ଦ୍ଦୋଷ ଯୁବକ। ପଛକୁ ବଳଦ ଗାଡ଼ିରେ କିଛି ଜିନିଷ। ସ୍ତ୍ରୀ ଓ ପୁରୁଷ ସେବାକରୀ ଦଳ। ପ୍ରତ୍ୟେକ ଗାଡ଼ିରେ ୪ ଜଣ ଲେଖାଏଁ ବସି ଯାଉଥାନ୍ତି। ଦୁଇପଟେ ଅଶ୍ୱାରୋହୀ ସୈନିକ।

କାନପୁର ପହଞ୍ଚିଲା। ପ୍ରଥମ କରି ବାଷ୍ପ ଚାଳିତ ରେଳ ଦେଖି ମୋଗଲମାନେ ଆନନ୍ଦରେବିଭୋର ହୋଇଗଲେ। ସମ୍ରାଟ ୱମିନିଙ୍କୁ କହିଲେ ସେ ସମୁଦ୍ର ଦେଖିବା ପାଇଁ ଅତି ଆଗ୍ରହୀ ବୋଲି। ସେ ଜାହାଜରେ ବସିବାକୁ ଇଚ୍ଛୁକ ଥିଲେ। ଜୀବନରେ ସେ କେବେ ନଦୀରେ ଡଙ୍ଗା ଛଡ଼ା ଆଉ କେଉଁଥିରେ ବସି ନାହାନ୍ତି। ଯିବା ରାସ୍ତାରେ କେବଳ ନିକଟ ଅତୀତର ଯୁଦ୍ଧ, ଧ୍ୱଂସ ପ୍ରାୟ ବଙ୍ଗଳା ଦେଖି ସେମାନେ ପୂର୍ବ ସ୍ମୃତି ଭାବି ତାଙ୍କ ଯାତ୍ରାର ଉଦ୍ଦେଶ୍ୟ ମନେ ପକାଇ ଦେଉଥିଲେ। ଦିଲ୍ଲୀ ଗେଜେଟରେ ଜର୍ଜ ୱାଗଟ୍ରାୟବର ଲେଖିଥିଲେ କି;  ସ୍ତ୍ରୀ ଲୋକଙ୍କ କଥୋପକଥନ ଓ ହାସ୍ୟରୋଳ ପରଦା ଆଡୁଆଳରୁ ଶୁଭୁଥାଏ। ମୋଟ ଉପରେ ସେମାନେ ଦିଲ୍ଲୀର ବନ୍ଦୀ ଜୀବନରୁ ଏ ପ୍ରକାର ଯାତ୍ରାକୁ ଖୁବ୍ ଉତ୍ସାହର ସହିତ ଆମନ୍ତ୍ରଣ କରୁଥିଲେ। ଜିନତ ମହଲ ୱାକ୍ତଙ୍କୁ ଗାଳି ଦେବାର ଶୁଣିଥିଲେ କାରଣ ତାଙ୍କ ବାପାଙ୍କର ହାରେମର ସ୍ତ୍ରୀ ଲୋକଙ୍କ ସହିତ ସେ ପ୍ରେମରେ ପଡ଼ିଯାଇଥିଲେ।

ଜିନତ୍ ମହଲ ଯାତ୍ରା ପୂର୍ବରୁ ତାକମହଲଙ୍କ ସହିତ ବଡ଼ପାଟିରେ ଯୁକ୍ତି କରିବାର ମଧ ଶୁଣାଯାଇଥିଲା। ତାଜ ମହଲଙ୍କୁ ବିଦ୍ରୋହର ତିନି ବର୍ଷ ଆଗରୁ ବନ୍ଦୀ କରାଯାଇଥିଲା।

ତାଜମହଲର ନିଜର ଉଦ୍ଦେଶ୍ୟ ଓମିନିଙ୍କୁ ଜଣାଇଦେଲେ। କହିଲେ ମୁଁ ଜଫରଙ୍କ ପାଖକୁ ଯିବିନାହିଁ।

ୱମିନି କହିଲେ ମୁଁ ତୁମକୁ ଟାଣିଟାଣି ତାଙ୍କ ପାଖକୁ ନେଇଯିବି। ତାଜମହଲ କହିଲେ। ତୁମେ ମତେ ମାରିଦିଅ ପଛେ ମୁଁ ଯିବି ନାହିଁ। ଏପରି କୋଳାହଳ, ଆନନ୍ଦ, ନିରାନନ୍ଦ ଭିତରେ ଯାତ୍ରୀ ଦଳ ଆଲ୍ଲାବାଦରେ ପହଞ୍ଚିଲେ ୧୬

ନଭେମ୍ବରରେ। ୨ ଦିନ ପରେ ମିରଜାପୁରରୁ ଷ୍ଟିମରରେ ବସିଲେ। ଜଫର ବେଶ୍ ଖୁସିଥିଲେ କାରଣ ପ୍ରଥମ ଥର ପାଇଁ ଷ୍ଟିମରରେ ବସିଲେ।

ଗଙ୍ଗା ଧାରରେ ଭାସି ଭାସି ଯାଇଁ ବନାରସର ମନ୍ଦିରମାଳା ପାରିହେଲେ। ୧୭୬୪ରେ ସାହା ଆଲାମଙ୍କ ସମୟରେ ମୋଗଲ ଓ ବ୍ରିଟିଶଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା ଆଉ ଏହି ଜାଗାରୁ ଦିଲ୍ଲୀ ଆଡ଼କୁ ଅଗ୍ରସର ହୋଇଥିଲେ ଇଂରେଜ ଦଳ।

ରାମପୁର ପାଖରେ ଷ୍ଟିମର ବଦଳି କଲେ। ଏଇଠୁ ମାତୃଭୂମି ଛାଡ଼ିଲେ।- ଭାସିଗଲେ ସମୁଦ୍ରର ଲହରିରେ ଜୀବନ ସମୁଦ୍ରର ତାଳେ ତାଳେ ଜୀବନ ବିତେଇବା ପାଇଁ। ଏ ଯାତ୍ରା ୫ ଦିନ ନେଲ। ୮ ଡିସେମ୍ବରରେ ମାଗାରା (ଜଫର ଯାଇଥିବା ଜାହାଜର ନାଁ) ଖୋଲା ସମୁଦ୍ର ଛାଡ଼ି ଇରାୱାଡ଼ି ଡେଲ୍ଟା ଦେଇ ଗତିକଲା। ଉଦ୍ଦେଶ୍ୟ ରେଙ୍ଗୁନକୁ ଯାତ୍ରା। ରେଙ୍ଗୁନର ନଦୀରେ ପ୍ରବେଶ କଲା ଏ ଯାତ୍ରାବାହୀ ଜାହାଜ। ୨୦ ମାଇଲ ଦୂରରୁ ଦିଶିଲା ଡ୍ରାଗନ ପାଗୋଡ଼ା। ପହଞ୍ଚିଲେ ରେଙ୍ଗୁନର ବନ୍ଦରରେ।

ଲୋକଙ୍କ ଭିଡ଼ ଜମିଗଲା- ଆଖପାଖ ଲୋକ ଓ ଇଉରୋପୀୟାନ ମାନଙ୍କର ନିଜ ନିଜ ଜାଗାକୁ ବନ୍ଦୀମାନେ ଗଲେ। ଗୋଟାଏ ଅସୁବିଧା ପରିଲକ୍ଷିତ ହେଲା। ଖାଦ୍ୟ ଦରଦାମ୍ ଭାରତ ଅପେକ୍ଷା ଅନେକ ବେଶି। ସେମାନଙ୍କୁ ଦେଖାଚାହାଁ କରିବାର ଲୋକଙ୍କର ଦୌରାତ୍ମ୍ୟ ମଧ ବଢ଼ି ଚାଲିଲା।

କମିଶନର ମେଜର ପ୍ଲୋୟାର କୌଣସି ରହିବା ଜାଗାର ବନ୍ଦୋବସ୍ତ କରି ନ ଥିଲେ। କାରଣ ସେ ନିଜେ ଏମାନଙ୍କୁ ରଖିବାର ସଂକ୍ରାନ୍ତରେ ଜାଣି ନ ଥିଲେ।

ରେଙ୍ଗୁନ ପୋର୍ଟ ଅନେକ, ତାଳଗଛ ପରିବେଷ୍ଟିତ, ପାଦରେ ଚଳାଇଥିବା ଷ୍ଟିମର। କେତେକ ମାଛ ଧରା ଡଙ୍ଗାର ସମାବେଶ। ଆଗକୁ ଦିଶିଲା। ବର୍ମାର ସ୍ଥାପତ୍ୟକଳା। ତା'ପରେ ଆଖିରେ ନାଚିଲା ବୁଦ୍ଧଙ୍କର ମୋନଷ୍ଟ୍ରିରେ ବଡ଼ ବଡ଼ ଘଣ୍ଟି। ବେତ ଜାଲିକରା ବାଉଁଶର ପାର୍ଟିସନ। ବୁଦ୍ଧଙ୍କର ସ୍ତୁପ, ପର୍ଯ୍ୟଟକଙ୍କ ସ୍ଥାନ ସବୁ ଦେଖାଗଲା। ଆଉ ଦେଖଗଲା ବୌଦ୍ଧଭିକ୍ଷୁମାନେ ଲାଲ ହଳଦିଆ ପୋଷାକ ପରିଧାନ କରି ହାତରେ କାଠର ଭିକ୍ଷାପାତ୍ର ଧରି ବୁଲୁଥାନ୍ତି।

ଶଗଡ଼ ଗାଡ଼ିରେ ସୂକ୍ଷ୍ମ ବାଉଁଶ ପାତିଆ ଚାଳ, ଶାନ୍ତନୀଳ ହ୍ରଦ, ଶଗଡ଼ଗାଡ଼ିର ଦୁଇପାଖେ ଫୁଲସଜା (ଯେଉଁଟାକି ବର୍ମାର ରାଜାଙ୍କ ଅଧିନରେ ଥିଲା), ଏ ସବୁ ମୋଗଲମାନଙ୍କ ପାଇଁ ନୂଆ।

କିନ୍ତୁ ଏ ସବୁ ବର୍ମାର ରାଜନୈତିକ ବାତାବରଣ ଯେଉଁଟା ଦିଲ୍ଲୀର ବାତାବରଣ ସହିତ ଖାପ ଖାଉଥିଲା। ସେଇଟାହିଁ ଦୁଃଖଦାୟକ ଥିଲା।

୧୮୫୨ ଏପ୍ରିଲ ଯେଉଁଦିନ ବଖ୍ତାନ ଓ୍ୱକ୍ତ ଜମାନୀ ବେଗମଙ୍କ ବିଭାଘର ସେ ଦିନ କଂପାନିଟ୍ରୁପ କେତେକ ଶିଖ ରେଜିମେଣ୍ଟଙ୍କୁ ନେଇ ବର୍ମା ଆକ୍ରମଣ କରିଥିଲେ। ବର୍ମା ବନ୍ଦରର ଗଭର୍ଣ୍ଣର ଏହା ବିରୋଧ କରିଥିଲେ। ସେଠି ବି ଏମାନେ ଖୋଜୁଥିଲେ। ପବିତ୍ର ସ୍ମୃତି ମନ୍ଦିର ସବୁକୁ ମୂଲ୍ୟବାନ ପଥର ସଂଧାନରେ।

ଲୁଣ୍ଠନ, ଆକ୍ରମଣ ଦୃଷ୍ଟିରୁ ବର୍ମାର ରାଜନୈତିକ ବାତ୍ୟକରଣ ଦିଲ୍ଲୀ ସହ ତୁଳନୀୟ।

କେତେକ ଲୁଣ୍ଠନକାରୀ ସ୍ୱେ ଡ୍ରାଗନ ପାଗୋଡ଼ା ମୂର୍ତ୍ତି ତଳେ ଅନେକ ମୂଲ୍ୟବାନ ପଥର ଆଶାରେ ତାକୁ ଖୋଜାଖୋଜି କରିବାରେ ବ୍ୟସ୍ତ ଥିଲେ। ଶିଖ ରେଜିମେଣ୍ଟର ସେନା ମଧ ଏଥିରେ ବ୍ୟସ୍ତ ଥିଲେ। ମନେହେଉଥିଲା ସତେ ଯେପରି ଜମା ମସଜିଦ୍ ପାଖରେ ଲୁଣ୍ଠନ କାରୀ ବସିଥିଲେ। ମୋଗଲବନ୍ଦୀମାନେ ପହଞ୍ଚିବାର ଆଗରୁ ନଦୀ କୂଳରେ ଥିବା ମନ୍ ଗ୍ରାମରୁ ମାଛୁଆରୀ ବସତି ଉଠାଇ ଦେଇଥିଲେ। ତା' ସହିତ ଲୋପ କରିଦେଇଥିଲେ ବୁଦ୍ଧିଷ୍ଟ ତୀର୍ଥଯାତ୍ରୀଙ୍କ ସ୍ମୃତି ମନ୍ଦିର।

ଜଫର କୂଳରେ ପାଦ ଦେବା ସମୟରେ ଦେଖିଲେ ଅନେକ ବୁଦ୍ଧି ସ୍ମୃତି ମନ୍ଦିର ଧ୍ୱଂସ କରା ଯାଇଛି।

ଗାଲିବ ଲେଖିଲେ "ସମସ୍ତ ସହର ଧ୍ୱଂସମୁଖୀ, ଏପରିକି ଖାସ ବଜାର, ଉର୍ଦ୍ଦୁ ବଜାର ଓ ଖାନୁନ୍‌ଙ୍କ ବଜାର ସବୁ ଧ୍ୱଂସ ହୋଇ ସାରିଥିଲା। କିଛି ଚହ୍ଲଟବର୍ଣ୍ଣ ନ ରଖି। ଖାଦ୍ୟ ଅତି ମନୋହର ଆଉ ମୃତ୍ୟୁ ଅତି ଶସ୍ତା। ଖାଦ୍ୟ ଦାନା ଏତେ ମନୋହର ଯେ ପ୍ରତ୍ୟେକ ଦାନା ଗୋଟିଏ ଗୋଟିଏ ବଡ଼ଫଳ ପରି ଗଣା ହେଉଥିଲା। ଏ ପ୍ରକାର ଧ୍ୱଂସକୁ ବ୍ରିଟିଶରମାନେ ସମର୍ଥନ କରୁଥିଲେ।

ଜୁନ୍ ଲରେନ୍ସ ଆଉ ଜଣେ ବ୍ୟକ୍ତି ଯେ କି ଏପରି ଧ୍ୱଂସ ଲୀଳାକୁ ସମର୍ଥନ କରିଥିଲେ। ସେ ଥମାସ ମେଟକାଫଙ୍କ ତଳେ କାମ କରୁଥିଲେ ଦିଲ୍ଲୀରେ। ଥମାସ ପଞ୍ଜାବର ଚିଫ କମିଶନର ଥିଲେ। ୧୮୫୮ରେ ଦିଲ୍ଲୀରୁ ପଞ୍ଜାବ ସରକାରଙ୍କୁ ବଦଳି କରାଗଲା। ଥିଓ ମେଟକାଫଙ୍କୁ ଇଂଲଣ୍ଡ ପଠାଇଦିଆଗଲା। ସେ ଗଣହତ୍ୟା ପାଇଁ ଦାୟୀ ଥିଲେ। ଦିଲ୍ଲୀର ଅନେକ କ୍ଷତି କରୁଛନ୍ତି ବୋଲି ତାଙ୍କ ଉପରେ ଦୋଷ ଲଦି ଦିଆଗଲା।

୧ ନଭେମ୍ବର ୧୮୫୮ରେ ଅଫିସରଆଲ ନିୟମାବଳୀ ଅନୁଯାୟୀ ଇଂଲଣ୍ଡ ରାଣୀ କ୍ୱିନ ଭିକ୍ଟୋରିଆଙ୍କୁ ଭାରତୀୟ ସରକାରଙ୍କ ଉନ୍ନତି କଳ୍ପେ ଆତ୍ମପାଶ୍ କରି ବ୍ରିଟିଶ ସରକାର ସବୁ ସରକାରୀ ଦାୟିତ୍ୱ ହାତକୁ ନେଲେ।

୧୮୬୩ର ଶେଷଭାଗକୁ ସଣ୍ଡରସ୍ ଦିଲ୍ଲୀର କମିଶନର ହୋଇଆସିଲେ। ଆଇନ ବଳରେ କହିଲେ ଦିଲ୍ଲୀର ବିଦ୍ରୋହୀ ଜନତା, ଏକ ଦଳ ଭାବରେ ସୋମାନଙ୍କର ଘର ଉପରୁ ସମସ୍ତ ଅଧିକାର ହରାଇ ସାରିଛନ୍ତି।

ଲର୍ଡ଼ ଲରେନ୍ସ ମଧ ଏ ପ୍ରକାର ଗୁପ୍ତଷଡ଼ଯନ୍ତ୍ରରେ ଭାଗନେଇ କହିଥିଲେ କି ଦିଲ୍ଲୀବାସୀ ନିଜ ନିଜର ରାଜନୈତିକ କ୍ଷମତା ହରାଇଛନ୍ତି। କ୍ୟାନିଂ ଦିଲ୍ଲୀ ପାଚେରୀଙ୍କୁ ଅନେକ ଆଗରୁ ଆଦେଶ ଦେଇ ସାରିଥିଲେ। କିନ୍ତୁ ଲରେନ୍ସ ଏହାର ବିରୋଧ କଲେ। କହିଲେ; ଦିଲ୍ଲୀ ପାଚେରୀକୁ ଧ୍ୱଂସ କରିବା ପାଇଁ ଆମ ହାତରେ ଯଥେଷ୍ଟ ଗନ ପାଉଡ଼ର ନାହିଁ।

ଗାଲିବଙ୍କ ଅନ୍ୟ ଚିଠି ସବୁରୁ ଜଣାଯାଏ କି ଶାହାଜାହାନଙ୍କ ଝିଅର ମୋଗଲ ବଗିଚାକୁ ମଧ ନଷ୍ଟ କରି ଦିଆଯାଇଥିଲା। ଏଠି ଔରଙ୍ଗଜେବଙ୍କର ରାଜଗାଦି ଅଳଙ୍କୃତ କରିବାର ଉତ୍ସବ ଅନୁଷ୍ଠିତ ହୋଇଥିଲା। ତା' ସବୁ କୃଷିଦ୍ରବ୍ୟ ଜାତ କରିବା ଲପଲକ୍ଷେ ବିକ୍ରି କରି ଦିଆ ଯାଇଥିଲା। ଅନେକ ନାମକରଣ ଥିବା ଜାଗାର ଅନ୍ୟନାମ ଦିଆଯାଇଥିଲା। ଯଥା ବେଗମବାଗ ହୋଇଯାଇଥିଲା କ୍ୱିନ୍ସ ଗାର୍ଡ଼ନ।

ସବୁର ଧ୍ୱଂସ ଗୋଟାକ ପରେ ଗୋଟାଏ କରାଯାଇଥିଲ। ଶେଷକୁ ମୋଗଲଙ୍କ ରେର୍ଡ଼ଫୋଟ ବ୍ରିଟିଶ ବ୍ୟାରେକ ହୋଇସାରିଥିଲା ନକରଖାନା ବ୍ରିଟିଶ ଲୋକଙ୍କର ବାସଗୃହ ହୋଇଥିଲା ଓ ଦିୱାନି ଆମ ସେମାନଙ୍କର ଲାଉଞ୍ଜ ହୋଇଗଲା। ମମତାଜଙ୍କ ମହଲ ଜେଲରେ ପରିଣତ ହୋଇଥିଲା।

ଜଫର ମହଲ, ସୁନ୍ଦର ଲାଲ ସାଣ୍ଡଷ୍ଟୋନରେ ତିଆରି ଜଳାଶୟ ଅଫିସରମାନଙ୍କ ସ୍ୱିମିଂ ପୁଲ ହୋଇଯାଇଥିଲା। ଆସ୍ତେ ଆସ୍ତେ ହିନ୍ଦୁମାନଙ୍କୁ ସହର ଭିତରକୁ ଆସିବାକୁ ପାଇଲେ। କିନ୍ତୁ ମୁସଲମାନଙ୍କୁ ଭିତରକୁ ଆସିବାର ଅନୁମତି ମିଳି ନଥିଲା।

ଏହା ବର୍ଣ୍ଣନା କରିଥିଲେ ଗାଲିବ।

୧୮୫୯ରେ ଦିଲ୍ଲୀ ମୁସଲମାନମାନେ ସରକାରଙ୍କୁ ଆପତ୍ତି ଜଣାଇଲେ କି ସେମାନଙ୍କୁ ଦିଲ୍ଲୀ ଭିତରକୁ ଆସିବା ପାଇଁ ଅନୁମତି ଦିଆଯାଉ। ସେମାନେ କ୍ୱିନ ଭିକ୍ଟୋରିଆଙ୍କୁ ଲେଖି ଜଣାଇଲେ।

୧୮୬୦ ବେଳକୁ ଅନେକ ମୁସଲମାନ ବାହାରେ ରହିବା ଫଳରେ ତାଙ୍କ ନିଟସ୍ୱ ସଂପତ୍ତିକୁ ବ୍ୟାଜାପ୍ତି କରିନେଲେ। କ୍ଷମତା ବଦଳିଲା ହିନ୍ଦୁମାନଙ୍କ ଆଡ଼କୁ।

ଗାଲିବ; ଲେଖିଥିଲେ କି ଦିଲ୍ଲୀର ବେଗମମାନଙ୍କ ପାଇଁ ବେଶ୍ୟାଗିରୀ କରିବା ଓ ଗଣବଳାତ୍କାରର ଶିକାର ହେବା ଛଡ଼ା ଅନ୍ୟ କିଛି ରାସ୍ତା ନଥିଲା।

ଏ ଦରବାରର ଲାଇବ୍ରେରୀ ଲୁଣ୍ଠନ କଲେ। ମାଦାରସା ସବୁ ବନ୍ଦ ହୋଇଯାଇଥିଲା। ଅନେକ ପାଣ୍ଡୁଲିପି ହଜିଯାଇଥିଲା। ହିନ୍ଦୁ ଦେଣାଦାର ମାନଙ୍କ ଦ୍ୱାରା ଏ ଅଟ୍ଟାଳିକା ସବୁ ଧ୍ୱଂସ କରାଯାଇଥିଲା। ମଦାରସା – ଇ- ରାହିମିୟା ଅଟ୍ଟାଳିକା ରାମଜୀ ଦାସଙ୍କୁ ନିଲାମ କରାଯାଇଥିଲେ। ସେ ତାକୁ ନିଜର ଗୋଦାମ ଭାବରେ ବ୍ୟବହାର କରୁଥିଲେ।

ଏ ପୁସ୍ତକ ପୂର୍ଣ୍ଣ ସହରରେ ଗୋଟାଏ ବି ପୁସ୍ତକ, ପୁସ୍ତକ ବିକ୍ରେମ, ପୁସ୍ତକ ବନ୍ଧେଇବାଲା ବା ହସ୍ତଲିପି ଦେଖିବାକୁ ମିଳୁ ନ ଥିଲା। କୁଆଡ଼େ ଗଲେ ମାମୁନ, ଜୌକ୍, ମୋଶିନ ଖାନ୍? ମାତ୍ର ଦୁଇଟି କବି ଦେଖାଯାଉଥିଲେ ଜଣେ ହେଲେ ଆର୍ଜୁଦା (ଯେ କି ମୂକ ହୋଇଥିଲେ) ଆଉ ଜଣେ ସେ ନିଜେ ଗାଲିବ। ଏମାନଙ୍କର ମୂଲ୍ୟ ବିଚାର କରିବା ପାଇଁ ନ ଥିଲେ ଜଣେ ହେଲେ ସୁଦକ୍ଷ ସମ୍ରାଟ। ଆଉ ଗାଲିବ? ତାଙ୍କର ଅନେକ ମୂଲ୍ୟବାନ ଲେଖା ହଜିଯାଇଥିଲା। ଜଣେ କେହି ଫକୀର, ଗଳା ଅତି ସୁନ୍ଦର, ଗାଲିବଙ୍କ ଗଜଲ ଅଳିଆଗଦାରୁ ପାଇଁ ତାକୁ ଛପାଇଥିଲେ। ଏ ଛପା ବହିଟି ଦେଖି ଗାଲିବଙ୍କ ଆଖିରେ ଲୁହ ଭରିଯାଇଥିଲା।

ପୁରା ସହର ହୋଇଯାଇଛି ମରୁଭୂମି। ଉର୍ଦ୍ଦୁ ବଜାରର ଅସ୍ତିତ୍ୱ ନ ଥିଲା। ଦିଲ୍ଲୀ ସହର ଥିଲା ଏକ କ୍ୟାମ୍ପ ବା ଥିଲା ଏକ କାଣ୍ଟନ ମେଣ୍ଟ। ନା ଥିଲା ଦୁର୍ଗ, ନା ପାଣିର କୌଣସି ମୂଳଭିତ୍ତି।

ବୋଧହୁଏ ଦିଲ୍ଲୀ ଅତୀତର ଏକ ଖଣ୍ଡହର।

ଗାଲିବ ଲେଖିଲେ "ମଣିଷ ନିଜ ଆଖିର ଲୁହରେ ଶୋଷ ମେଣ୍ଟାଇ ପାରେନା। ଯେତେବେଳେ ନୈରାଶ୍ୟ ହୃଦୟର ନିମ୍ନତମ ପ୍ରଦେଶ ସ୍ପର୍ଶ କରେ ସେତେବେଳେ ମଣିଷ ଭଗବାନଙ୍କ ଇଚ୍ଛାତଳେ ନିଜକୁ ସମର୍ପଣ କରିଦିଏ।" ମୋ ଆତ୍ମା ମୋ ଶରୀର ଭିତରେ ନାଚୁଛି ଗୋଟେ ପକ୍ଷୀ ଭିତରେ ପିଞ୍ଜୁରି ପରି।

୧୮୫୯ ଏପ୍ରିଲ ପହିଲାରେ ଏଡ଼ୱାର୍ଡ଼ ଓମେନି ଜଫରଙ୍କଠାରୁ ବିଦାୟ ନେଲେ। ତାଙ୍କ ରେଜିମେଣ୍ଟ ନେଇ ଭାରତକୁ ଫେରିଗଲେ। ସାଙ୍ଗରେ କେତେକ

ବନ୍ଦୀ ମଧ୍ୟ ଫେରିଗଲେ। ସେମାନେ ବର୍ମାରେ ରହିବାକୁ ଇଚ୍ଛା କରୁ ନଥିଲେ। ତାଙ୍କର ନୂଆ ଜେଲର ଥିଲେ କାପଟେନ ନେଲସନ ଡିଭାସ।

ଡିଭାସ ରାଜପରିବାରର ରକ୍ଷଣବେକ୍ଷଣ ଦାୟିତ୍ୱ ପୁରାପୁରି ତାଙ୍କୁ ତୁଲାଉଥିଲେ। ପୋଲିସ ଦିନରେ ଦୁଇଜଣ ଓ ରାତିରେ ପ୍ରାୟ ୩ ଜଣ ଜଗି ତୁଲାଇଥିଲେ। ଦିନକୁ ଟ.୧୧ ଖାଇବା ପାଇଁ ଖର୍ଚ୍ଚ।

ଡାଭିସଙ୍କ ଦୟାରୁ ଆଉ ଅଧିକ ୨ଟଙ୍କା ଖର୍ଚ୍ଚ କରୁଥିଲେ। ଡାଭିସ ଚିଠିରେ ଲେଖିଥିଲେ କି ଜଫରଙ୍କ ନାତି ଦୁହିଁଙ୍କୁ ଇଂଲଣ୍ଡ ପଠାଇଦେଲେ ସେମାନେ ଆଙ୍ଗ୍ଲୋସାଇଜ୍ଡ୍ ଓ ଆଙ୍ଗ୍ଲୋଫାଇଲ ରାଜପୁତ୍ର ହୋଇପାରିବେ। ଏପରି ଯୋଜନାକୁ ଜଫର ଓ ଜିନତ ମହଲ ଦୁହେଁ ଅନୁମୋଦନ କରିସାରିଥିଲେ।

ଯେଉଁ ସେବାକାରୀମାନେ ଜଫରଙ୍କ ସହ ବନ୍ଦୀ ଜୀବନ କାଟୁଥିଲେ ତାଙ୍କ ସଂପର୍କରେ ମଧ୍ୟ ଡାଭିସ ଲେଖିଥିଲେ କି ଏପରି ଅନୁଗ୍ରାହୀ ଲୋକ ବିରଳ।

ଡାଭିସଙ୍କ ଅନୁରୋଧକୁ କଲିକତାରେ ତାଙ୍କ ଉପରିସ୍ଥ କର୍ମଚାରୀ ନାକଚ କରିଦେଲେ। ଆହୁରି କହିଲେ କି ଡାଭିସ ଆଉ କେବେ ବି ଏପରି। "ପୂର୍ବତନ ରାଜା, "ପୂର୍ବତନ ରାଜପରିବାର ଶବ୍ଦ ନ ଲେଖନ୍ତି। କେବଳ "ଦିଲ୍ଲୀର ବନ୍ଦୀ" ବୋଲି ଉଚ୍ଚାରଣ କରିପାରିବେ ବୋଲି ନିର୍ଦ୍ଦେଶ ଦେଲେ। ଦୁଇ ରାଜପୁତ୍ର ପାଖରେ ଡାଭିସଙ୍କ ଘରକୁ ସଦାସର୍ବଦା ଯିବା ଆସିବା କରିବା ବ୍ୟତିତ ଅନ୍ୟ କୌଣସି ଉପାୟ ନ ଥିଲା। ଯଦିଓ ସେମାନେ ଇଂରେଜିରେ ଶିକ୍ଷା ପାଇଁ ପାରଦର୍ଶିତା ଦେଖାଇ ପାରିଥିଲେ।

କିନ୍ତୁ ଡାଭିସ ତାଙ୍କ ଅବସ୍ଥାର କୌଣସି ଅନ୍ୟଥା ଉପଚାର କରି ପାରି ନଥିଲେ।

ଇସ୍ଲାନ ଓ୍ବକ୍ତଙ୍କର ଅଶାନ୍ତି ବୃଦ୍ଧି ପାଉଥିବାର ସେ ଲକ୍ଷ୍ୟ କରିଥିଲେ। ଜଫର ନୀରବ ଭାବରେ ଯିବା ଆସିବା କରୁଥିବା ଜାହାଜର ଗତିବିଧି ଲକ୍ଷ୍ୟ କରିଥିଲେ। ତାଙ୍କୁ କୌଣସି କାଗଜ କଲମ ଯୋଗାଇ ଦିଆଯାଉ ନଥିଲା। ଉଇଲିୟମ ହାଓ୍ବାର୍ଡ଼ ରସେଲ ଲେଖିଥିଲେ କି ସେ ଅନେକ ସମୟରେ କାନ୍ଥରେ କ'ଣ ସବୁ ଲେଖୁଥିଲେ।

୧୮୬୨ ବେଳକୁ ଜଫରଙ୍କ ବୟସ ୮୭ ହୋଇସାରିଥିଲା।

ଡାକ୍ତର ମତରେ ତାଙ୍କ ସ୍ୱାସ୍ଥ୍ୟର ଅବନତି ପରିଲକ୍ଷିତ ହେଉଥିଲେ ହେଁ ତାଙ୍କ ଜିଭରେ ପକ୍ଷାଘାତ ବେମାରୀ ବ୍ୟତିତ ଅନ୍ୟ କୌଣସି ଅଲକ୍ଷଣ ଦେଖା ଯାଉ ନଥିଲା।

ଅକ୍ଟୋବର ୧୮୬୨ ବେଳକୁ ସେ କୌଣସି ଜିନିଷ ଖାଇ ପାରୁ ନ ଥିଲେ। ଦିନକୁ ଦିନ ଅବସ୍ଥା ଖରାପ ଆଡ଼କୁ ଗତି କଲା।

୭ ନଭେମ୍ବର, ଶୁକ୍ରବାର ସକାଳ ୫ଟା ଜଫର ଶେଷ ନିଃଶ୍ୱାସ ତ୍ୟାଗ କଲେ। ଇଟା ଓ ଲୁଣର ବନ୍ଦୋବସ୍ତ ହୋଇଥିଲା।

ଶେଷ ମୋଗଲ ଅନାମଧେୟ ହୋଇ ଶେଷ ହେବା ପାଇଁ ଆୟୋଜନ କରିଥିଲେ ତାଭିସ। ସେଇ ଦିନ ୪ଟି ବେଳେ ଅତି ଅଳ୍ପ ଲୋକଙ୍କ ଉପସ୍ଥିତିରେ ଅତି ଚଞ୍ଚଳ ଗତିରେ ତାଙ୍କୁ ଦଫନ କରାଗଲା। ତାଙ୍କର ପ୍ରିୟ ସେବାକାରୀ ଓ ଦୁଇପୁଅଙ୍କ ଉପସ୍ଥିତିରେ ଏ ଦଫନରେ ଭାଗ ନେଲେ। ସ୍ତ୍ରୀ ଲୋକେ ମୁସଲମାନ ନିୟମ ଅନୁସାରେ ଏଥିରେ ଯୋଗ ଦେଇ ନଥିଲେ।

ବାଉଁଶ ବାଡ଼ା ଚାରିପେଟ ଦିଆଗଲା। ଅଙ୍କ ବାଟ ପାଇଁ।

ବାଉଁଶ ବାଡ଼ ଖତରା ହୋଇଗଲା ପରେ ଘାସ ତା' ଉପରେ ଘୋଡ଼ାଇ ହୋଇଥିବ। ଥରେ ଘାସ କବରକୁ ଘୋଡ଼ାଇଦେବା ପରେ କେହି ହୁଏତ ଜାଣିପାରିବେ ନାହିଁ କି ଭାରତର ସମ୍ରାଟ, ଭାରତର ମୋଗଲ ସମ୍ରାଟ କେଉଁ ଜାଗାରେ ଦଫାନ କରାଯାଉଥିଲେ।

ଏ ଘଟଣା ସେ ସହରର ମୁସଲିମ ଜନତା ଉପରେ କିଛି ପ୍ରଭାବ ପକାଇଲା ନାହିଁ, ବା କୌଣସି ସଂପର୍କୀୟ ମାନଙ୍କୁ ଉପରେ ମଧ ତିଳେମାତ୍ର ପ୍ରଭାବ ପଡ଼ିଲା ନାହିଁ।

୨୦ ନଭେମ୍ବରରେ ଜଫରଙ୍କ ମୃତ୍ୟୁ ଖବର ଦିଲ୍ଲୀରେ ପହଞ୍ଚିଲା। "ଅବଧ ଆକବର"ରେ ପ୍ରକାଶିତ ହେଲା। ଖବର ପହଞ୍ଚିବା ଦିନ ଦିଲ୍ଲୀରେ ଜମା ମସଜିଦ ମଧ ମୁସଲମାନଙ୍କୁ ହସ୍ତାନ୍ତର କରାଯାଉଥିଲା।

୭ ନଭେମ୍ବର ଶୁକ୍ରବାର, ଆବୁ ଜଫର ସିରାଜ ଉଦ୍ଦିନ ବାହାଦୂର ସାହ ନିଜେ ବିଦେଶୀ ବନ୍ଧନରୁ ମୁକ୍ତ ହେଲେ।

କୌଣସି ଖବର କାଗଜ- ଭାରତୀୟ, ବ୍ରିଟିଶ ଜଫରଙ୍କ ମୃତ୍ୟୁ ଖବରକୁ ପ୍ରାଞ୍ଜଳ ଭାବରେ ପ୍ରକାଶ କରି ନଥିଲେ।

ଜଫରଙ୍କ ଶାସନ ଭାଙ୍ଗିଗଲା। ଯେତେବେଳେ ଜଣାଗଲା କି ତାଙ୍କ ରାଜକୋଷ ଶୂନ୍ୟ। ଦିଲ୍ଲୀର ଆଖପାଖ ଅଞ୍ଚଳ ମଧ ଜଫରଙ୍କ ପାଇଁ ଉର୍ଦ୍ଦିଷ୍ଟ ନ ଥିଲା, ଦିଲ୍ଲୀ ପାଚେରୀ ଭିତରେ ଏକତ୍ରୀତ ଥିବା ସେନାକୁ ଖାଇବାକୁ ଦେବାକୁ ଅସଫଳ ହେଲେ ଜଫର। ସବୁ ବିପଦର ଏକତ୍ର ସମାବେଶ।

ସେପ୍ଟେମ୍ବର ୧୮୫୭ରେ ଦିଲ୍ଲୀ ଓ ଜଫରଙ୍କ ଦରବାର ଯେ କେବଳ ବ୍ରିଟିଶ ହାତକୁ ଗଲା ତା' ନୁହେଁ ଭାରତର ମେରୁଦଣ୍ଡ ତା'ରି ବିରାଟ ମୋଗଲ

ସମ୍ରାଜ୍ୟର ଆତ୍ମବିଶ୍ୱାସ ଓ ପ୍ରଭୁତ୍ୱ ଧୂଳିସାତ୍ ହୋଇଗଲା । ପରାଜୟ ଓ ବିଧ୍ୱଂସ, ଲାଞ୍ଛନାର ଗଭୀର ରେଖାପାତ ପରାଜିତ ମୋଗଲ ଉପରେ ଭାର ହୋଇଗଲା । ପୁରୁଣା ସଂଭ୍ରାନ୍ତ ବଂଶୀୟ ଧାରା ଯେ ନଷ୍ଟ ହେଲା ତା' ନୁହେଁ, ହିନ୍ଦୁ-ମୁସଲମାନ, ଇଣ୍ଡୋ- ଇସଲାମିକ ସଭ୍ୟତା, ଯାହାକୁ ଜଫରଙ୍କ ଦରବାର ଏକ ମାଇଲଖୁଣ୍ଟ ଭାବରେ ଜାବୁଡ଼ି ଧରିଥିଲେ, ଯାହାକୁ ଉର୍ଦ୍ଦୁକବି ଗାଲିବ ନିଜ କବିତା ଜରିଆରେ ବାନ୍ଧି ରଖିଥିଲେ ସବୁ ଭାଙ୍ଗି ପଡ଼ିଲା ।

୧୮୫୭ ପରେ ବ୍ରିଟିଶରଙ୍କ ଆଖିରେ ଭାରତୀୟ ମୁସଲିମମାନଙ୍କ ପଶୁଭଳି ଜୀବ ବୋଲି ଦେଖୁଥିଲେ । ୧୮୬୮ରେ ପ୍ରକାଶିତ ଏକ ପୁସ୍ତକରୁ ("The people of India") ଜଣାପଡ଼େ । ଏହି ପୁସ୍ତକରେ ସାଉଥ ଏସିଆର ଲୋକଙ୍କୁ (ତିବତ୍ରୁ ଆରମ୍ଭରୁ କରି ବିହାର ପର୍ଯ୍ୟନ୍ତ ଅତି ଦୀନ ହୀନ ଲଙ୍ଗଳା ଫଟୋଗ୍ରାଫ ଛପାଇ ସେମାନଙ୍କର ହୀନତା ପ୍ରକାଶ କରିଥିଲେ । ମୁସଲମାନମାନଙ୍କୁ ଆଲିଗଡ଼ ଶ୍ରମିକ ମାନଙ୍କ ସହିତ ତୁଳନା କରି ଫଟୋ ଛପାଇଥିଲେ । ଆହୁରି ଅନେକ ଦୁଃଶବ୍ଦ ମଧ ବ୍ୟବହାର କରିଥିଲେ ।

ଏହାର ପ୍ରଭାବ ତୁରନ୍ତ ହିନ୍ଦୁମାନଙ୍କ ଉପରେ ପଡ଼ିଲା ଓ ସେମାନେ ଯାହା କିଛି ମୁସଲିମ ଥିଲା ସବୁକୁ ଘୃଣା କରିବାକୁ ଲାଗିଲେ । ସାରା ସୟଦ ଅହମଦ ଖାନଙ୍କ ମତରେ ଭାରତୀୟ ମୁସଲିମମାନେ ଆଉ କେବେ ବି ଉନ୍ନତି ମାନରେ ପହଞ୍ଚି ପାରିବେ ନାହିଁ । ଲେଖିଥିଲେ ମୋ ଲୋକଙ୍କର ଏପରି ଦଶାଦେଖି ମୁଁ ମର୍ମାହତ ଆଉ ମୁଁ ବେଶି ବୁଢ଼ା ହୋଇଯିବା ଭଳି ଲାଗୁଛି ।

ଜଫରଙ୍କ "ମୁଶାୟାର"ର ମୂଲ୍ୟ ଭାରତୀୟ ୱାଡସୱାର୍ଥ ଓ ଟେନିସଙ୍କ ସନେଟ ଭିତରେ । ଏପରିକି ତାଙ୍କର ପୋଷାକ, ତାଙ୍କର ଚାଲି, ତାଙ୍କର କଥାବାର୍ତ୍ତା ସୁବ ଇଂରେଜ ଢଙ୍ଗରେ ହୋଇଗଲା । ସେମାନେ ଏ ସବୁ ଆପଣାଇ ନେବାରେ ଗର୍ବ ମଧ ଅନୁଭବ କରିଥିଲେ ।

୧୮୬୯ରେ ଗାଲିବ ମୃତ୍ୟୁବରଣ କଲେ ।

ଜଫରଙ୍କ ପରିବାର (ଜିନତ ମହଲ, ପୁତ୍ର ଜୱାନ ଓ୍ବକ୍ତ ଓ ତାଙ୍କ ସ୍ତ୍ରୀ, ତାଙ୍କ ମାଁ ଓ ଜେଜେମା)ଙ୍କୁ ୧୮୬୭ ବେଳକୁ ବନ୍ଦୀଶାଳା ବାହାରକୁ ନେଇଯାଇ ରେଙ୍ଗୁନ କାଣ୍ଟନମେଣ୍ଟ ରଖାଗଲା । କିନ୍ତୁ ସେମାନଙ୍କୁ ଏତେ ସ୍ୱଳ୍ପ ମାସିକ ଭତ୍ତା ଦିଆଯାଉଥିଲା

ଯେ ୧୮୭୦ ବେଳକୁ ଜଫରଙ୍କ ମରିବାର ଆଠବର୍ଷ ପରେ ସେମାନଙ୍କର ଅବସ୍ଥା ଅତି ସଂପାତିକ ହୋଇଗଲା।

ରେଙ୍ଗୁନର ମୁସଲିମ ଧର୍ମବିଶ୍ୱାସୀ ମାନେ ବିଦ୍ରୋହ କଲେ। କହିଲେ କେବଳ ଗୋଟେ ଗର୍ବିତ ମୋଗଲ ସାମ୍ରାଜ୍ୟର ଶେଷ ସମ୍ରାଟ ଭାବରେ ନୁହେଁ ବାହାଦୂର ସାହା ଜଫର କେବଳ ଯେ ପ୍ରଶଂସନୀୟ ତା' ନୁହେଁ ବରଂ ସେ ସ୍ମୃତିଧାରକ ଭାବେର ମନକୁ ଆସିବା ଉଚିତ। ସେଥିପାଇଁ ସେମାନେ ସରକାରଙ୍କୁ ଲେଖିଲେ ତାଙ୍କ କବର ପାଖରେ ଜମି ପାଇଁ ବନ୍ଦୋବସ୍ତ କରନ୍ତୁ। ଆଉ ତୋଳେଇ ଦିଅନ୍ତୁ ଏକ ସ୍ମୃତି ମନ୍ଦିର।

ଦରଖାସ୍ତକୁ କଲିକତା ପଠାଗଲା। ସେମାନେ ସିଧାସଳଖ ମନା କରିଦେଲେ। ଏହାକୁ ବିରୋଧ କରି କିଛି ଚିଦ୍ରୋହ ମଧ୍ୟ ହେଲା। ସେଥିପାଇଁ ୧୯୦୭ ବେଳକୁ ଗୋଟାଏ ଫଳକ ଟଙ୍ଗାଇ ଦିଆଗଲା। ଲେଖାଥିଲା। ବାହାଦୂର ସାହ, ଦିଲ୍ଲୀର ପୂର୍ବତନ ରାଜା, ରେଙ୍ଗୁନରେ ୭ ନଭେମ୍ବର ୧୮୬୨ରେ ଦେହତ୍ୟାଗ କରିଥିଲେ। ପରେ ୧୯୦୭ ବେଳକୁ ଜିନତ୍ ମହଲଙ୍କ ପାଇଁ ଏକ ସ୍ମୃତିପଥର ଏଥିଯୋଗ କରାହେଲା।

୧୯୯୧ ଫେବୃୟାରୀ ୧୬ରେ ଶ୍ରମିକମାନେ ଏକ ଡ୍ରେନ ପାଇଁ ରାସ୍ତା ଖୋଳୁଥିଲେ ଏ ପଥର ଫଳକର ପଛୁକୁ। କବର ଆବିଷ୍କାର କଲେ। ମାଟିଠୁ ୩ ଫୁଟ ତଳେ ଥିଲା। ସେ ଜାଗାର ମାତ୍ର ପଚିଶ ଫୁଟ ଦୂରତାରେ। କବର ଭିତରେ ଶେଷ ମୋଗଲ ରାଜାଙ୍କ କଙ୍କାଳ ସୁନ୍ଦର ଭାବରେ ଥିଲା।

ରେଙ୍ଗୁନର ମୁସଲମାନ ବାସିନ୍ଦା ଜଫରଙ୍କୁ ଏକ କ୍ଷମତାପୂର୍ଣ୍ଣ ସୁଫି ସାଧୁ ବୋଲି ଗ୍ରହଣ କରନ୍ତି। ଆଉ ତାଙ୍କ କବର ସ୍ଥଳକୁ ଆର୍ଶିବାଦ ନେବା ପାଇଁ ଆସନ୍ତି। ସୁଫି ଧର୍ମା ବଲମ୍ବୀମାନେ ସାଉଥ ଏସିଆର ରାଜନୈତିକ ନେତାମାନେ, ଓ ଭାରତୀୟ ବିଶିଷ୍ଟ ବ୍ୟକ୍ତିମାନେ ମଧ୍ୟ ଏଠିକୁ ବରାବର ଆସନ୍ତି।

ଏ ସବୁ ସତ୍ତ୍ୱେ ଆଧୁନିକ ଇତିହାସରେ ଜଫରଙ୍କ ନାମ ରହିଛି। ଏକ ବିରାଟ ସାମ୍ରାଜ୍ୟ, ଇଣ୍ଡୋ-ଇସଲାମିକ ସାମ୍ରାଜ୍ୟର ବିଧ୍ୱସ୍ତତା ଆଉ ୧୮୫୭ରେ ସିପାହୀ ବିଦ୍ରୋହର ମୂଳାଧାରା ରୂପେ ବିବେଚିତ ହୁଏ। ବିଚରା ଜଫର ୮୨ ବର୍ଷ ବୟସରେ କ'ଣ ବା ଅଧିକ ବିରୁଦ୍ଧୀ ଚରଣ ଦେଖାଇ ପାରିଥାନ୍ତେ। କିନ୍ତୁ ସିପାହୀ ବିଦ୍ରୋହର ଲିପିବଦ୍ଧ ଗାଥା ଜଫର ତାଙ୍କ ସାମ୍ରାଜ୍ୟ ଓ ଜନ ସାଧାରଣଙ୍କ ରକ୍ଷକ ଭାବରେ ତାଙ୍କ ଗୁଣ ଗାଉଛି।

## ଜିନତ୍ ମହଲ

୧୮୩୭ରେ ଜଫର ରାଜଗାଦି ଅଳଙ୍କୃତ କଲେ। ତାଜମହଲ ବେଗମ ଥିଲେ ପ୍ରଧାନ ସ୍ତ୍ରୀ। ସିଂହାସନ ଆରୋହରଣ ଉତ୍ସବରେ ସେ ଭାଗ ନେଇଥିଲେ। ବହୁତ ଦିନ ଧରି ତାଙ୍କର ପ୍ରାଧାନ୍ୟ ମଧ୍ୟ ଥିଲା ରାଜପରିବାରରେ। ହାରେମର ମଧ୍ୟ ମୁଖ୍ୟ ପରିଚାଳିକା। ଜିନତ ମହଲଙ୍କ ବୟସ ସେତେବେଳକୁ ୧୯ ବର୍ଷ। ସେ ବିବାହ କଲେ ୬୪ ବର୍ଷ ବର୍ଷୀୟ ସମ୍ରାଟ ଜଫରଙ୍କୁ। ତାଜମହଲ ବେଗମଙ୍କ ପ୍ରାଧାନ୍ୟ କମିଗଲା। ଜିନତ ମହଲଙ୍କର କର୍ତ୍ତୃତ୍ୱ ବଢ଼ିବାରେ ଲାଗିଲା। ସେ ଥିଲେ ହାରେମର ମୁଖ୍ୟ। ଯଦିଓ ପରେ ଜଫରଙ୍କ ଆଉ ଚାରୋଟି ବିଭାଘରକୁ ସେ ରୋକି ପାରି ନଥିଲେ। ଜଫରଙ୍କ ୮୦ ବର୍ଷ ବୟସରେ ମଧ୍ୟ ତାଙ୍କ ହାରେମ ବେଶ ଚଳଚଞ୍ଚଳ ଥିଲା। ଜଫରଙ୍କର ୧୬ ପୁତ୍ର ଓ ୩୧ଟି କନ୍ୟା। ଏପରିକି ୭୦ ବର୍ଷ ବୟସରେ ତାଙ୍କ ଶେଷପୁତ୍ର ମିର୍ଜା ସାହ ଆବାସ ୧୮୪୫ରେ ଜନ୍ମ ନେଇଥିଲେ। ଜିନତଙ୍କର ଏକମାତ୍ର ପୁତ୍ର ଜୱାନ ବକ୍ତ। ଜିନତ ଏକମାତ୍ର ଇଚ୍ଛା ତାଙ୍କୁ ଉତ୍ତରାଧିକାରୀ ସୁତ୍ରରେ ବ୍ରିଟିଶ ସରକାର ଗ୍ରହଣ କରନ୍ତୁ। ଜଫରଙ୍କ ମତରେ ସେହିଁ ଏକମାତ୍ର ଯୋଗ୍ୟ ସନ୍ତାନ। ଜିନତ୍ ମୋଗଲ ସମ୍ରାଟଙ୍କ ଜୀବନକୁ ଆସିବା ପୂର୍ବରୁ ନାଦିର ସାହା ସବୁ ଧନସଂପତ୍ତି ଲୁଟି ନେଇଯାଇଥିଲେ ୧୭୩୯ରେ। ୧୭୮୮ ବେଳକୁ ଜଫରଙ୍କୁ ଜେଜେବାପା ସାହା ଆଲମ-୨ୟଙ୍କୁ ଅନ୍ଧକରି ଗୁଲାମ କାଦିର ଖାଁ ମଧ୍ୟ ସବୁ ସଂପତ୍ତି ଲୁଟି ନେଇଥିଲେ। ଆକବର ସାହା-୨ୟଙ୍କ ବିରାଟ ଲାଇବ୍ରେରୀଙ୍କୁ ଅଓଧରର ନବାବଙ୍କୁ ବିକି ଦେଇଥିଲେ।

ବ୍ରିଟିଶ ସରକାରଙ୍କ ଦାନ ଗ୍ରହଣ କରି ଚଳୁଥିଲେ ମୋଗଲ ସମ୍ରାଟ। ଏକମାତ୍ର ଉଦ୍ଦେଶ୍ୟ ପୁତ୍ର ମିର୍ଜା ଜୱାନ ବକ୍ତଙ୍କୁ ଉତ୍ତରାଧିକାରୀ ସୁତ୍ରରେ ବ୍ରିଟିଶରମାନଙ୍କ ପାଖରେ ଉପସ୍ଥାପନ କରିବେ। ମିର୍ଜା ଫକ୍ରୁଙ୍କୁ ଉତ୍ତରାଧିକାରୀ ବୋଲି ମାନିନେବା ପାଇଁ ବ୍ରିଟିଶ ମନୋନୀତ କରିଥିଲେ। କିନ୍ତୁ ଜିନତ୍ ଏ ସର୍ତ୍ତ ମାନିବାକୁ ରାଜି ନଥିଲେ। ଫଳରେ ୧୮୫୨ରେ ତିନିଜଣ ବ୍ରିଟିଶ ଅଫିସରଙ୍କ ସହିତ ଏକ ଚୁକ୍ତିନାମା ସ୍ୱାକ୍ଷର କରାଇଥିଲେ କି ଜୱାନ ୱାକ୍ତ ଉତ୍ତରାଧିକାରୀ ହେବେ। କିନ୍ତୁ ୧୮୫୩ରେ ଏ ଅଫିସରମାନଙ୍କର ମୃତ୍ୟୁ ଘଟିବା ଫଳରେଏ ଚୁକ୍ତିନାମାର କିଛି ଅର୍ଥ ନଥିଲା। ଜୱାନ ୱାକ୍ତଙ୍କ ବିଭାଘର ପାଇଁ ସେ ବହୁତ ଚିନ୍ତିତ ଥିଲେ। ବାହାଘର ବହୁତ

ଆଡମ୍ବର ସହକାରେ କରିବାପାଇଁ ଆଗ୍ରହ ଦେଖାଇଲେ । ଫଳରେ ବ୍ରିଟିଶରମାନଙ୍କର ନଜରକୁ ଆସିବେ । କିନ୍ତୁ ଖର୍ଚ୍ଚ ପାଇଁ ପଇସା ? ଦେଣାଦାରମାନଙ୍କଠୁ ଟଙ୍କା କରଜ ଆଣିବା ଏକମାତ୍ର ରାସ୍ତା । ସହଜରେକରଜ ଦେବାପାଇଁ କେହି ରାଜି ନଥିଲେ । ସେମାନେ ଜାଣିଥିଲେ କି ରାଜପରିବାରରୁ କୌଣସି କରଜ ଫେରିବାର ନାହିଁ । କରଜ ଆଣିବାପାଇଁ ଭୟ ପ୍ରଦର୍ଶନ କରାଇଲେ । ହାରେମର ପ୍ରଧାନ ରକ୍ଷକ ମାହବୁବ୍ ଅଲି ଖାଁଙ୍କ ଜରିଆରେ ଆଦାୟ କଲେ । ପୁଅ ବାହାଘର ଧୂମ୍‌ଧାମ୍‌ରେ କରିବା ଥିଲା ଜଫର ଓ ଜିନତ୍‌ଙ୍କର ମୂଳ ଉଦ୍ଦେଶ୍ୟ ।

୧୮୫୨ ବେଳକୁ ମିର୍ଜାଫକ୍ରୁ ମେଟକାଫ ଓ ଅନ୍ୟ ସିନିୟର ଇଂରେଜ ଅଫିସରଙ୍କ ସହ ଦେଖା କରୁଥିଲେ । ବ୍ରିଟିଶରମାନଙ୍କ ପାଖରେ ଇଂରେଜୀ ଭାଷା ମଧ ସେ ଶିଖୁଥିଲେ ଏବଂ ତାଙ୍କୁ ଉତ୍ତରାଧିକାରୀ ରୂପରେ ମାନିନେବାକୁ ସବୁ ପ୍ରକାରର ଆୟୋଜନ କରୁଥିଲେ । ଚୁକ୍ତି କରିଥିଲେ ସେ ଉତ୍ତରାଧିକାରୀ ହେଲେ ଶାହାଜାହାଙ୍କ ପ୍ରାସାଦ ଇତ୍ୟାଦି ବ୍ରିଟିଶରଙ୍କୁ ଦେଇ ସେ ମେହେରୋଲୀରେ ନିଜ ପ୍ରାସାଦ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଜଫର ଏ ଚୁକ୍ତିନାମା ଖବର ଶୁଣି ରାଗି ନିଆଁ ହୋଇଗଲେ । ପରେପରେ ସେ ମିର୍ଜା ଫକ୍ରୁଙ୍କ ସବୁ କାମରେ ବିରୋଧ କଲେ । ଦରବାରରେ ତାଙ୍କର ଅଧିକାର କମିଗଲା । ତାଙ୍କୁ ଦିଆଯାଉଥିବା ଟଙ୍କା ମଧ କମେଇ ଦିଆଗଲା । ଏସବୁ ଖବର ପାଇଁ ଭାଙ୍ଗି ପଡ଼ିଲେ ମିର୍ଜା ଫ୍ରୁକ୍ରୁ । ଆଉ ଭାଙ୍ଗିପଡ଼ିଲେ ଜଫର । ଏହା ପୂର୍ବରୁ ସେଅନେକ ଚିଠି ଲଣ୍ଡନକୁ ଓ ଏଠିକାର ମେଟକାଫଙ୍କୁ ଲେଖିଥିଲେ । କୌଣସି ଉତ୍ତର ମଧ ପାଇ ନଥିଲେ । ସେ ମେଟକାଫଙ୍କୁ ପୁଣି ଚିଠି ଲେଖିଲେ କି ଯେହେତୁ ସରକାର ତାଙ୍କର କୌଣସି ଦାବି ରଖୁନାହାନ୍ତି ସେ ସରକାରଙ୍କୁ ଆଉ ହଇରାଣ କରିବାକୁ ଚାହୁଁନାହାଁନ୍ତି । ସେ ଠିକଣା କରିଛନ୍ତି କି ସବୁ ପରିତ୍ୟାଗ କରି ମକ୍କା ଯାଇ ସେଠି ଅବଶିଷ୍ଟ ଜୀବନ ବିତାଇବେ । ଏ ଜୀବନରେ ସେ କିଛି କରିପାରିଲେ ନାହିଁ ଅନ୍ତତଃ ପରଜନ୍ମ ପାଇଁ କିଛି ବ୍ୟବସ୍ଥା କରିପାରିବେ ।

ମେଟକାଫ ଜଫରଙ୍କ ଚିଠି ପାଇ ବିଚଳିତ ହେଲେ ସତ କିନ୍ତୁ କିଛି କରିବାର ଉପାୟ ନଥିଲେ । କଲିକତାକୁ ଚିଠି ଲେଖି ଜଣାଇଲେ । କିନ୍ତୁ କିଛି ଫଳ ନାହିଁ । ଜଫର ନିଜକୁ ପୁରାଭାବରେ ସମର୍ପଣ କରିଦେଇଥିଲେ ଜିନତ୍‌ଙ୍କ ପାଖରେ । ଜିନତ୍‌ଙ୍କ ସାଙ୍ଗେ ଥିଲେ ମେହବୁବ ଅଲି ଖାଁ । ଦୁଇଜଣ ମିଶି ଅନେକ ଅଦରକାରୀ

କାମ କରୁଥିଲେ ହେଁ ଜଫରଙ୍କ କୌଣସି ମନ୍ତବ୍ୟ ନଥିଲା । ସେଥିପାଇଁ ପୁତ୍ର ଜୱାନ ୱକ୍ତଙ୍କ ବାହାଘରର ଚାକ୍ୟଚକ୍ୟ ହିଁ ଏକମାତ୍ର ମାଧମ ଥିଲା ଯାହାଫଳରେ ସେ ନିଜର ଆଧିପତ୍ୟ ଦେଖାଇପାରିବେ ଆଉ ବ୍ରିଟିଶରମାନେ ଦିଓ୍ୱାନ ୱକ୍ତଙ୍କୁ ଉତରାଧିକାରୀ ସୁତ୍ରରେ ମାନିନେବେ । କିନ୍ତୁ ଦୁଃଖର ବିଷୟ ଏହି ଯେ ମେଟକାଫଙ୍କ ଉଦ୍ଦେଶ୍ୟରେ ୧୨ ଦିନର ଧୂମଧାମ ଉତ୍ସବ ମନାଇଲେ ସତ କିନ୍ତୁ ମେଟକାଫ ଥରେ ବି ଏସବୁ ଉତ୍ସବରେ ଯୋଗଦେଲେ ନାହିଁ । କିନ୍ତୁ ବାହାଘରର ଶୋଭାଯାତ୍ରା ଜନସାଧାରଣଙ୍କ ପାଇଁ ଓ ବ୍ରିଟିଶରଙ୍କ ପାଇଁ ନିଜର ଦକ୍ଷତା ଓ କ୍ଷମତାର ପ୍ରଦର୍ଶନ କରିବାର ତ ଏକମାତ୍ର ପରିଚୟ ।

କନ୍ୟା ପିତା ୱାଲିଦାଦ୍ ଖାଁ ଉଗଢ଼ୌକନ ଦେଲେ ୮୦ଟି ଟ୍ରେ ଭରା ଲୁଗାପଟା, ୨ଟି ଟ୍ରେ ଭରା ଗହଣା, ସୁନାର ଚଦର ଓ ଚାନ୍ଦୁଆ, ରୂପାର ବାସନ, ହାତୀ, ଘୋଡ଼ା, ଓଟ ଆଉ ସେମାନଙ୍କ ଉପରେ କାରୁଖଚିତ ଚାନ୍ଦୁଆ ସବୁ। ରାସ୍ତାରେ ପୁଅ ଯେଉଁ ହାତୀ ଉପରେ ବସିଥିଲେ ସେ ହାତୀକୁ କେହି ଜଣେ ବିସକୁଟ ଖାଇବାକୁ ପକାଇଲେ । ହାତୀ ସାମାନ୍ୟ ଚହଲିଗଲା । ବିଚରା ସେ ଲୋକଟିକୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଲା । ସମ୍ରାଟଙ୍କ ମହି-ମାରାଟିବ (ADC) ନିଜେ ସମସ୍ତଙ୍କ ଖାଇବା ପିଇବାର ତଦାରଖ କରୁଥିଲେ । ଖାଦ୍ୟର ଟ୍ରେ ସବୁ ଅଫିସରମାନଙ୍କୁ ପଠାଯାଉଥିଲା ।

ଜିନତ୍ ମହଲଙ୍କ ଲାଲକ୍ୱାୟାଁ ବାସଭବନରେ ଥାଇଁ କେତେକ ଘଟଣା ନିୟନ୍ତ୍ରଣ କରୁଥିଲେ । ହଡସନଙ୍କ ସହିତ ତାଙ୍କର ଯୋଗାଯୋଗ ଥିଲା । ହଡସନଙ୍କ ପ୍ରରୋଚନାରେସେ ଉଦ୍ୟମ କରିଥିଲେ କି ଜଫରଙ୍କୁ ଆତ୍ମସମର୍ପଣ ପାଇଁ ପ୍ରବର୍ତ୍ତାଇବେ । କିନ୍ତୁ ବଦଳରେ ପୁତ୍ର ଜୱାନ ବକ୍ତ, ପିତା କ୍ୱାତ ଅଲ୍ଲି ଖାଁ ଓ ନିଜର ପ୍ରତିରକ୍ଷା ହଡସନ ଯୋଗର ଦେବେ ।

୧୮ ସେପ୍ଟେମ୍ବରରେ ଜିନତ୍‌କୁ ହଡସନ ଚିଠି ଲେଖିଥିଲେ । ଲେଖିଲେ, ଯେତେକ ବିଦ୍ରୋହରେ ଭାଗ ନେଇଛନ୍ତି ସେମାନେ ଦଣ୍ଡର ଯୋଗ୍ୟ । କିନ୍ତୁ ଜିନତ୍ ନିଜେ ତାଙ୍କ ବାପା ଓ ପୁତ୍ରମାନଙ୍କର କୌଣସି ଭୟର କାରଣ ନାହିଁ । ସେମାନେ ଲାଲ କନଓ୍ୱାରାରେ ରହିପାରିବେ । କିନ୍ତୁ ତାଙ୍କ ତରଫରୁ ଜଣେ ବିଶ୍ୱସ୍ତ ଲୋକଙ୍କୁ ଜଫରଙ୍କ ନିକଟକୁ ପଠାନ୍ତୁ ଯେକି ଜଫରଙ୍କୁ ଆତ୍ମ ସମର୍ପଣ

ପାଇଁ ପ୍ରବର୍ତ୍ତାଇପାରିବ। ଜିନତ୍ ସମସ୍ତଙ୍କ ପାଇଁଦୟାଳୁ ଥିଲେ। ଏପରିକି ହାରେମର ଜଣେ ରକ୍ଷିତା ତାଙ୍କ କୋର୍ଟଗାୟକ ତନରାସ ଖାଁଙ୍କ ଜରିଆରେ ଗର୍ଭବତୀ ହୋଇଥିଲେ ମଧ୍ୟ ସେ ସ୍ତ୍ରୀଲୋକପାଇଁ ଦଣ୍ଡବିଧାନ କରିନଥିଲେ। କିନ୍ତୁ ତାଜମହଲ ପ୍ରତି ଅନାସ୍ଥା ଭାବ। ବର୍ମାକୁ ବନ୍ଦୀଜୀବନ କାଟିବାପାଇଁ ଆସିବା ପୂର୍ବରୁ ତାଜମହଲ ବେଗମ ସହିତ ବେଶ୍ ଗଣ୍ଡଗୋଳ ହୋଇଥିଲା। ସିପାହୀ ବିଦ୍ରୋହର ତିନିବର୍ଷ ପୂର୍ବରୁ ତାଙ୍କୁ ବନ୍ଦୀ କରାଯାଇଥିଲା। ଅଭିଯୋଗ ଥିଲାକି ଜଫରଙ୍କ ପୁତୁରା କାମାରନ ସହ ତାଙ୍କର ଅବୈଧ ସଂପର୍କ ଥିଲା।

ବର୍ମାରେ କେତେକ ବନ୍ଦୀ ମଧ୍ୟ ଭାରତକୁ ଫେରିଆସିଲେ ନିଜ ଇଚ୍ଛାନୁଯାୟୀ। ଜଫର ପ୍ରଭୃତି ବନ୍ଦୀଙ୍କୁ ଭିନ୍ନ ଭିନ୍ନ ବଖରା ଦିଆଯାଇଥିଲା। ସେଥିରୁ ଗୋଟିଏ ବଖରା ଜିନତ ମହଲଙ୍କର ଥିଲା। ଜଫରଙ୍କ ନୂଆ ଜେଲର ଥିଲେ କ୍ୟାପଟନ ନେଲସନ ଡାଭିସ। ସେ ଜିନତ ମହଲଙ୍କୁ କେବେ ସ୍ୱଚକ୍ଷୁରେ ଦେଖିନାହାନ୍ତି କାରଣସେ ସବୁବେଳେ ପରଦା ଆଢୁଆଳରେ ହିଁ ଥିଲେ। କିନ୍ତୁ ତାଙ୍କ ପତ୍ନୀଙ୍କୁ ଜିନତ୍ ଓ ତାଙ୍କ ବୋହୂଙ୍କ ପାଖକୁ ବରାବର ପଠାଉଥିଲେ। ସ୍ତ୍ରୀଙ୍କଠୁ ଶୁଣି ସେ ଯେଉଁ ରିପୋର୍ଟ ଦେଇଥିଲେ; ''ଜିନତ୍‌ଙ୍କ ଶରୀର ଭଲ ଥିଲା। ପରଦା ଆଢୁଆଳରୁ ତାଙ୍କ ସହିତ ଅନେକ କଥା ହେଉଥିଲା। ଅନେକ ସମୟରେ ସିପାହୀ ବିଦ୍ରୋହ ସମୟରେ ସେ ଯେଉଁ ଚିଠି ସବୁ ଉତ୍ତରପଶ୍ଚିମ ପ୍ରଦେଶର ଲେଫ୍‌ନାଣ୍ଟ ଗଭର୍ଣ୍ଣର କଲଭିନଙ୍କୁ ଲେଖୁଥିଲେ ସେ ବିଷୟରେ ଗପୁଥିଲେ। ଯେତେବେଳେ ରାଜପରିବାର ସରକାରଙ୍କ ଦୟାରେ ବଞ୍ଚୁଥିଲେ ସେ ନିଜକୁ ଓ ତାଙ୍କ ସହ ଇଉରୋପୀୟାନ ଝିଅମାନଙ୍କୁ ସିପାହୀଙ୍କ କବଳରୁ ରକ୍ଷା କରିବାପାଇଁ ଅନୁରୋଧ କରିଥିଲେ। ଅନେକ ଇଉରୋପୀୟାନ ଝିଅମାନେ ପ୍ରସାଦରେ ରହୁଥିଲେ। ହଡସନଙ୍କୁ ମଧ୍ୟ ସେ ଚିଠି ଲେଖିଥିଲେ କି ତାଙ୍କ ବ୍ୟକ୍ତିଗତ ସଂପତ୍ତି ଓ ଜୀବନର ସୁରକ୍ଷା କରିବେ। ଏ ପ୍ରକାର ସୁରକ୍ଷା ଦେବାପାଇଁ ହଡସନ ମଧ୍ୟ ଏକ ଲିଖିତ ଚୁକ୍ତିନାମା ପତ୍ର ତାଙ୍କଠାରୁ ନେଇଥିଲେ। ତାଙ୍କ ସଂପତ୍ତିର କୌଣସି ହିସାବ ମଧ୍ୟ ତାଙ୍କୁ ଜଣା ନଥିଲା। ଦୁର୍ଭାଗ୍ୟ ବଶତଃ ହଡସନଙ୍କର ମୃତ୍ୟୁ ହେଲା। ହଡସନଙ୍କ ପରେ ସଣ୍ଡର୍ସ ଦିଲ୍ଲୀର କମିଶନର ହୋଇ ଆସିଲେ। ସେ ସଣ୍ଡର୍ସଙ୍କୁ ଚୁକ୍ତିନାମାର ପତ୍ର ଫେରାଇବାକୁ ଅନୁରୋଧ କଲେ। କିନ୍ତୁ ତାଙ୍କ ହାତକୁ ଚୁକ୍ତିନାମା ବା ସଂପତ୍ତି କିଛି ବି ଫେରିଲା ନାହିଁ। ସଂପତ୍ତିର ମୂଲ୍ୟ

ପ୍ରାୟ ୨ ଲକ୍ଷ ଟଙ୍କାର ଥିଲା। ଜଫର ଓ ଜିନତମହଲ ଦୁହେଁ ତାଙ୍କର ବ୍ୟକ୍ତିଗତ ଡାକ୍ତର ଓ ପ୍ରଧାନମନ୍ତ୍ରୀ ହାକିମ ଅବଦୁଲ୍ଲା ଖାଁଙ୍କୁ ସେମାନଙ୍କର ଏପରି ବନ୍ଦୀ ଜୀବନପାଇଁ ଦୋଷ ଦିଅନ୍ତି।

ସିପାହୀ ବିଦ୍ରୋହ ସମୟରେ ଦୁର୍ଗ ଭିତରେ ଥିବା ଇଉରୋପିୟାନ ମାନଙ୍କୁ ହତ୍ୟା ନ କରିବାପାଇଁ ଜଫର ଉପଦେଶ ଦେଇଥିଲେହେଁ ହତ୍ୟା ବନ୍ଦ କରିବାର କୌଣସି ଉପାୟ ନଥିଲା। କିନ୍ତୁ ବନ୍ଦୀ ଭାବରେ ଜଫରଙ୍କ ବିଚାର ବେଳେ ହାକିମ ଜଫରଙ୍କୁ ଖୋଲାଖୋଲି ଭାବରେ ସାକ୍ଷୀ ଦେଲେ। ଏହାହିଁ ଥିଲା ହାକିମଙ୍କର ଭୂଲ। ଫଳରେ ହାକିମ ନିର୍ଦ୍ଦୋଷ ପ୍ରମାଣିତ ହେଲେ। କିନ୍ତୁ ବିଶ୍ୱସ୍ତ ସୁତ୍ରରୁ ଜଣାଯାଏ ଆଜାମ ଉଲ୍ଲା ଖାଁ ସମ୍ରାଟଙ୍କର ଗୁପ୍ତ ବ୍ୟକ୍ତିଗତ ସଂପତ୍ତି ବିଷୟରେ ଜଣାଇଥିଲେ ଓ ହାକିମ ଇଉରୋପୀୟାନମାନେ ଦୁର୍ଗରେ ଆଶ୍ରୟ ନେଇଥିବା ବିଷୟ ସିପାହୀଙ୍କୁ ଜଣାଇଥିଲେ। ହୁଏତ ଜଫରଙ୍କ ଅନୁରୋଧ ଓଲଟା ହୋଇପାରିଥାଏ। କିନ୍ତୁ ବିଚାର ବେଳକୁ ହାକିମ କେତେକ ଇଂରେଜ ଲୋକଙ୍କ ସହିତ ବନ୍ଧୁତା ସ୍ଥାପନ କରିସାରିଥିଲେ। ସେ ସମ୍ରାଟଙ୍କ ବିରୁଦ୍ଧରେ ସାକ୍ଷୀ ଦେବାପାଇଁ ସାହସ କରିପାରିଥାନ୍ତି।

ବର୍ମାରେ ଜଫରଙ୍କ ମୃତ୍ୟୁ ପରେ ଜିନତ ମହଲ କେତେକ ସ୍ତ୍ରୀ ଲୋକଙ୍କ ସହ ରହିଲେ। ଜୱାନ ୱକ୍ତ ତାଙ୍କ ପରିବାର ସହ ଅଲଗା ରହିଲେ। ସାହା ଆବାସ ମଧ୍ୟ ତାଙ୍କ ମା ଓ ଜେଜେମାଙ୍କ ସହ ଅଲଗା ରହିଲେ। ୧୮୬୭ ବେଳକୁ ସେମାନଙ୍କୁ ଜେଲଖାନା ଛାଡ଼ି ରେଙ୍ଗୁନ କାଣ୍ଟନମେଣ୍ଟରେ ରହିବାର ବନ୍ଦୋବସ୍ତ ସରକାର କଲେ। ଚଳିବାପାଇଁ ଯେଉଁ ଟଙ୍କା ମିଳୁଥିଲା 'ତା ବହୁତ ଅଳ୍ପ ଥିଲା। ଜୱାନ ୱକ୍ତ ଯେଉଁଠି ରହୁଥିଲେ ତାହା ଅତି କଦର୍ଯ୍ୟ ଥିଲା। ୧୮୭୦ ବେଳକୁ ଅବସ୍ଥା ଆହୁରି ଖରାପ। ଦଶବର୍ଷ ତଳେ ଚକାଚକ ଆବାହାୱାରେ ହାତୀ ପିଠିରେ ଦୋଳାୟମାନ ହୋଇ ବିରାଟ ଶୋଭାଯାତ୍ରାରେ 'ବଧୁ ବେଶରେ ମୋଗଲ ସାମ୍ରାଜ୍ୟର ବୋହୁ ହୋଇ ଆସିଥିଲେ ଜମାନୀ ବେଗମ। ହୁଲସ୍ଥୁଲ ହୋଇଯାଇଥିଲା ମୋଗଲ ସାମ୍ରାଜ୍ୟ। କିନ୍ତୁ ଏବେକାର ଏ ଅବସ୍ଥା ? ଦୁଃଖରେ, ଅନୁତାପରେ ଭାଙ୍ଗିପଡ଼ିଲେ ଜମାନୀ ବେଗମ। ସହି ନ ପାରି ବେମାର ପଡ଼ିଲେ। ମିର୍ଜା ସାହ ଆବାସ ରେଙ୍ଗୁନର ଜଣେ ମୁସଲମାନ ବ୍ୟବସାୟୀଙ୍କ କନ୍ୟାଙ୍କୁ ବିବାହ ହେଲେ। ଫଳରେ ଅସୁବିଧାର ସମ୍ମୁଖୀନ ହେଲେ ନାହିଁ।

ଜିନତ ମହଲ ଗୋଟିଏ କାଠଘରେ କିଛିଟା ଆତ୍ମଭିମାନ ନେଇ ବଞ୍ଚି ରହିଲେ। ସାଙ୍ଗରେ ଦୁଇ ତିନିଜଣ ସେବାକାରୀ ସ୍ତ୍ରୀ ଲୋକ। ଇଚ୍ଛା କଲେ ଭାରତ ଫେରିଯିବେ। ଦରଖାସ୍ତ ଦେଲେ। କାରଣ ସ୍ୱରୂପ ଜଣାଇଲେ କି ପୁତ୍ର ଜୱାନ ବକ୍ତଙ୍କ ଦ୍ୱାରା ପ୍ରପୀଡ଼ିତ ହେଉଛନ୍ତି। କିନ୍ତୁ ଦରଖାସ୍ତ ମଞ୍ଜୁର ହେଲାନି। ଜୀବନର ଅନ୍ତିମ ସମୟରେ ଅବସାଦର ଅନ୍ଧକାର ଘେରିଗଲା। ସାଙ୍ଗ କଲେ ଅଫିମ। ଅଫିମ ସେବନ ନିଶା ପାଲଟିଲା। ନିଜକୁ ବୁଡ଼ାଇ ଦେଲେ ଅଫିମ ନିଶାରେ। ୧୮୮୨ରେ ସେ ମୃତ୍ୟୁବରଣ କଲେ। ସେ ସମୟରେ ଜଫରଙ୍କ କବର ମଧ ଚିହ୍ନଟ କରିବା ମୁସ୍କିଲ ହୋଇଯାଇଥିଲା। ଜିନତ୍‌ଙ୍କ ମଧ ଏକ ଅନାମଧେୟ ଜାଗାରେ କବର ଦିଆଗଲା। ୨ ବର୍ଷ ପରେ ମିର୍ଜା ଜୱାନ ଓକ୍ତ ମଧ ୪୨ ବର୍ଷ ବୟସରେ ହୃଦଘାତରେ ମୃତ୍ୟୁବରଣ କଲେ।

## ପରିବର୍ତ୍ତିତ ସମାଜ

୧୮୪୦ରୁ ୧୮୫୦ ଭିତରେ ବ୍ରିଟିଶରମାନେ ଭାରତର ଧର୍ମାନ୍ତକରଣ, ଶାସନ ଓ ସର୍ବାଙ୍ଗୀନ ଉନ୍ନତି ଆଶା କରିଥିଲେ। ଏପରିକି କଲିକତାରେ ତାଙ୍କ ସାର ସାଥି ଏତମଣ୍ଡଙ୍କ ମତରେ ଆବଶ୍ୟକ ହେଲେ ଧର୍ମାନ୍ତକରଣ କରିବାକୁ ପଡ଼ିବ। କହିଲେ, ମାନବଜାତି ଗୋଟିଏ ଧର୍ମ ଅନୁକରଣ କରିବା ଉଚିତ। ସେତେବେଳକୁ ଭାରତରେ ରେଳପଥ, ଷ୍ଟିମ ଚାଳିତ ଯାନ ଓ ଇଲେକ୍‌ଟ୍ରିକ୍ ଟେଲିଗ୍ରାଫ ଜରିଆରେ ପ୍ରତ୍ୟେକ ଦେଶ ସହିତ ସଂପର୍କ ସ୍ଥାପିତ ହୋଇସାରିଥିଲା। କହିଲେ, ହିନ୍ଦୁଧର୍ମ ସବୁଠାରେ ନିନ୍ଦିତ, ଭଗବାନଙ୍କ ଦୟା ଥିଲେ ଏପରି ଏକ ଦିନ ଆସିବ ଏ ଧର୍ମ ପୂର୍ଣ୍ଣଭାବରେ ଲୁପ୍ତ ହୋଇଯିବ।

କଲିକତାରେ କମ୍ପାନୀର ଡ଼ାଇରେକଟର ଚାର୍ଲ୍ସ ଗ୍ରାଣ୍ଟ ମିଶନାରୀଙ୍କୁ ସମର୍ଥନ କରି କହିଥିଲେ କି ହିନ୍ଦୁଧର୍ମ ସବୋର ଭାବେ ଭ୍ରଷ୍ଟ ଓ ଦୂଷିତ। ଏହି ଅବସ୍ଥାରେ (ଏ ଚିନ୍ତାଧାରା) ନେଇ ବ୍ରିଟିଶରମାନେ ଦେଶର ଜନତାଙ୍କୁ ଉଦ୍ଧାର କରିବାକୁ ଆସିଛନ୍ତି।

ଫାଦର ଆନ୍‌ଜେଲୋ ଦି କାରାଭାଗିଓ, ଯେ ବେଗମ ସୁମ୍ରୁଙ୍କ ଦରବାରକୁ ଯାଇଥିଲେ, ଭିନ୍ନ ଅବସ୍ଥାର ସମ୍ମୁଖୀନ ହୋଇଥିଲେ। ସାରାଧାନାରୁ ସେ ଚିଠି ଲେଖିଲେ ରୋମକୁ। 'ଏଠି ଯେଉଁପରି ଭାବରେ ଚର୍ଚ୍ଚ ତୋଳା କାମ ଚାଲୁଛି ଦେଖିଲେ ଅତି ଖୁସି ଲାଗୁଛି। କିନ୍ତୁ ମୁଁ ମୁସଲମାନମାନଙ୍କ ଯାହା ଧର୍ମନୀତି ଅନୁଧାନ କରୁଛି

ସେଥିରେ ଧର୍ମାନ୍ତରର ଉନ୍ନତି ଦେଖିପାରୁନି। ସେଥିପାଇଁ ମୋ' ପିଲାଙ୍କ ଶିକ୍ଷା ଦୀକ୍ଷାର ଉନ୍ନତିକୁ ଆଖିଆଗରେ ରଖି ମୁଁ ଆଗ୍ରା ଫେରିଯାଇଛି।'

ଜେନିଂସ୍‌ଙ୍କ କଥା ଅଲଗା। ୧୮୫୨ ବେଳକୁ ସେ ଦିଲ୍ଲୀ ଆସିଲେ। ଇଓ୍ୱାନ ଓକ୍ତଙ୍କ ବାହାଘରର ୨/୩ ମାସ ଆଗରୁ। ତାଙ୍କର ମଧ ଯୋଜନା ଥିଲା କି ଆବଶ୍ୟକ ହେଲେ ଜୋରଜବରଦସ୍ତି ଧର୍ମାନ୍ତକରଣ କରାଯାଇପାରିବ। ତାଙ୍କ ମତରେ ଇଂରେଜ ମୁକୁଟ କୋହିନୁରର ଅଧିକାରୀ। ଯୁଗ ଯୁଗ ଧରି ଏକ ଧର୍ମଧାରାରେ ପରିଚାଳିତ ଭାରତୀୟ ଅଧିବାସୀଙ୍କର ରକ୍ତରେ ପ୍ରବାହିତ। ଆଉ ଏତେ ସହଜରେ ତାଙ୍କୁ ଭାଙ୍ଗିଦେଇ ପାରିବ ନାହିଁ। ଯଦି ଭାରତୀୟମାନେ ଧର୍ମାନ୍ତକରଣ ପାଇଁ ରାଜି ହୋଇଗଲେ ସେମାନଙ୍କ ପାଇଁ କୋହିନୁର (ପର୍ଲ ଫ ଗ୍ରେଟ ପ୍ରାଇସ ଅର୍ଥାତ ଖ୍ରୀଷ୍ଟିୟାନ ଧର୍ମ) ଫେରି ପାଇଲା ଭଳି ହେବ। ଜେନିଂସ୍ କୁମ୍ଭ ମେଳାକୁ ସେଠାରେ ସମବେତ ସାଧୁମାନଙ୍କୁ ଚିତ୍କାର କରି କହିଲେ କି 'ତୁମେ ସବୁ ଧର୍ମୋନ୍ମତ୍ତ ସୈତାନ ମୂର୍ତ୍ତିପୂଜକ।'

ଥିଓ ମେଟକାଫଙ୍କ ମତରେ ଡ଼ଗଲାସ ଜଣେ ଧର୍ମାନ୍ଧବ୍ୟକ୍ତି। ଉର୍ଦ୍ଦୁ ଓ ଇଂରେଜ ଭାଷା ତାଙ୍କର କରାଗତ। ଫଳରେ ବ୍ରିଟିଶଙ୍କର 'ଦିଲ୍ଲୀ ଗେଜେଟ' ଓ ମୋଗଲଙ୍କ 'ଉର୍ଦ୍ଦୁ ଆକବର'ଙ୍କ ଭାଷା ବୁଝିବାରେ ସେ ସକ୍ଷମ। କଲିକତାର ବିଶପ୍ ହବର ଜଣେ ଖ୍ରୀଷ୍ଟିୟାନ ଧର୍ମଯାଜକ। ତାଙ୍କ ମତରେ ବ୍ରିଟିଶ ଅଧିନସ୍ଥ ରାଜ୍ୟଗୁଡ଼ିକରେ ପୂର୍ଣ୍ଣ ଭାବରେ ଧର୍ମାନ୍ତକରଣ କରାଇବା ଉଚିତ। 'କମିଟି ଅଫ ଦି ପ୍ରୋଟେଷ୍ଟାଣ୍ଟ ସୋସାଇଟି' ଲଣ୍ଡନଠାରେ ୧୮୧୩ରେ ଅନେକ ଦରଖାସ୍ତ ପାର୍ଲିଆମେଣ୍ଟରେ ଦେଇ ପୂର୍ବ ଦେଶମାନଙ୍କରେ ଖ୍ରୀଷ୍ଟିୟାନ ଧର୍ମ ପ୍ରଚାର କରିବାପାଇଁ ଆଇନ ପ୍ରଣୟନ କଲେ। ଏ ସଂକ୍ରାନ୍ତରେ ସେ କେତେକ କବିତା ମଧ ଆବୃତ୍ତି କରିଥିଲେ।

ଅକ୍ଟୋରଲୋନିଙ୍କର ୧୩ ଜଣ ସ୍ତ୍ରୀ ଥିଲେ। ସେମାନଙ୍କ ମଧ୍ୟରୁ ପୁନେର ଜଣେ ବ୍ରାହ୍ମଣ ନାଚକାଲି ଇସଲାମ ଧର୍ମ ଗ୍ରହଣ କରିଥିଲେ। ତାଙ୍କର ଟାଇଟଲ୍ ସ୍ୱରୂପ ଲେଖାଯାଇଥିଲା କି 'ବିବି ମାହାରୁତୁନ ମୁବାରକ-ମୂଲ-ନିଶାବେଗମ ଓ ବେଗମ ଅକ୍ଟୋରଲୋନି। ଏପରି ମିଶ୍ରିତ ଘରସଂସାର ଭିତରେ ମୁସଲିମ ସଂସ୍କୃତିର ମଧ ଆଦର ଥିଲା। ଉଦାହରଣ ସ୍ୱରୂପ ବେଗମ ଅକ୍ଟରଲୋନି ମକ୍କାତୀର୍ଥରେ ଯିବାପାଇଁ ଦରଖାସ୍ତ ମଧ କରିଥିଲେ। ତାଙ୍କ ଜନ୍ମିତ (ଅକ୍ଟରଲୋନିଙ୍କ ଓ୍ୟାରସରୁଜାତ) ପିଲାମାନେ ମୁସଲମାନ ଢଙ୍ଗରେ ବଢ଼ିଥିଲେ।

ଲାହୋର ନବାବଙ୍କର ଜଣେ ଝିଅକୁ ଅକ୍ଟରଲୋନି ପୋଷ୍ୟ-କନ୍ୟା ରୂପେ ଗ୍ରହଣ କରିଥିଲେ। ପରେ ସେଇ ଝିଅ ଗାଲିବଙ୍କ ପୁତୁରାଙ୍କୁ ବିବାହ କରିଥିଲେ। ଏପ୍ରକାର ମିଶ୍ରିତ ବିଭାଘର ଫଳରେ (ଆଙ୍ଗ୍ଲୋ-ମୋଗଲ, ଇସଲାମ-ଖ୍ରୀଷ୍ଟିୟାନ) କେତେକ ପରିମାଣରେ ସମାଜରେ ଗୋଳମାଳିଆ ପରିସ୍ଥିତି ମଧ୍ୟ ସୃଷ୍ଟି ହୋଇଥିଲା। ଆମେରିକାଜାତ ଗାର୍ଡନର ବିବାହ କଲେ ବେଗମ୍ କାମବେଙ୍କୁ। ତାଙ୍କ ପୁଅ ଜେମସ୍ ବିବାହ କଲେ ମୁକ୍ତାର ବେଗମଙ୍କୁ ଜଫରଙ୍କ ଜଣେ ନିକଟତମ ଆତ୍ମିୟାଙ୍କୁ।

ଏପ୍ରକାର ବିବାହକୁ ଧରି ରଖି ସମାଜ ଗତି କଲା। ଜେନିଂସ୍ ଦିଲ୍ଲୀରେ ପହଞ୍ଚିଲାବେଳକୁ ମୁସଲିମ ଓ ହିନ୍ଦୁମାନେ ବ୍ରିଟିଶରଙ୍କର ଧର୍ମାନ୍ତକରଣରେ ଅତିଷ୍ଠ ହୋଇ ପଡ଼ିଥିଲେ। ୧୮୨୯ରେ ସତୀଦାହ ପ୍ରଥା ଆଇନ ଅନୁସାରେ ବନ୍ଦ ହେଲା। ୧୮୩୨ରେ ଧର୍ମନ୍ତକରଣ କରିଥିବା ବ୍ୟକ୍ତି ଉତରାଧିକାରୀ ସୁତ୍ରରେ ପୈତୃକ ସଂପତ୍ତିରେ ଭାଗୀଦାର ହୋଇପାରିବେ ବୋଲି ଆଇନ ପ୍ରଣୟନ ହେଲା। ସବୁଠୁ ଖରାପ ପ୍ରଭାବ ପଡ଼ିଲା ଜମିଜମା ସଂକ୍ରାନ୍ତୀୟ ଆଇନ। ଦେବୋତ୍ତର ସଂପତ୍ତିକୁ ବ୍ୟାଜାପ୍ତ କରି ଦିଆଗଲା। ଶହ ଶହ ମନ୍ଦିର, ମସଜିଦ, ଶିକ୍ଷାନୁଷ୍ଠାନ ଓ ସୁଫି ସ୍ମୃତିମନ୍ଦିର ସବୁର ଭୂସଂପତ୍ତିକୁ ବ୍ୟାଜାପ୍ତ କରି କମ୍ପାନି ସାହେବ ନିଜ ହାତକୁ ନେଇଗଲେ। କେତେକ କ୍ଷେତ୍ରରେ ମିଶନାରୀ ମାନଙ୍କୁ ବାଣ୍ଟି ଦିଆଗଲା।

ହସପିଟାଲ ତିଆରି ହେଲା ସତ ସ୍ତ୍ରୀ ଲୋକମାନେ ହସପିଟାଲ ଯାଇଁ ଚିକିତ୍ସିତ ହେବା ନିୟମ କରାହେଲା। ଫଳରେ ସ୍ତ୍ରୀଲୋକଙ୍କର ପରଦାସୀନ ବ୍ୟବସ୍ଥା ହ୍ରାସ ହେଲା। ସ୍କୁଲ ଓ କଲେଜରେ ମଧ୍ୟ ଧର୍ମପ୍ରଚାର ଓ ଧର୍ମାନ୍ତକରଣ ଚେଷ୍ଟା ହେଲା। ମୁସଲମାନମାନେ ନିଜ ଧର୍ମପୁସ୍ତକ ବା ଧର୍ମପ୍ରଚାରକଙ୍କ ବ୍ୟବହାର କରିପାରିବେ ନାହିଁ।

୧୮୪୯ ବେଳକୁ ଶିଖମାନଙ୍କୁ ଦବେଇ ଦିଆଗଲା। ବଙ୍ଗଳାରେ ୧୭୫୭, ଫ୍ରାନ୍ସ ୧୭୬୧ରେ, ୧୭୯୯ରେ ମହୀଶୂରର ଟିପୁ ସୁଲତାନ ଓ ୧୮୦୩ ଓ ୧୮୧୯ ମରହଟ୍ଟାମାନଙ୍କୁ ଜିଣି ପ୍ରଥମ ଥର ପାଇଁ ଉପଲବ୍ଧ ହେଲା କି ପ୍ରଯୁକ୍ତି ବିଦ୍ୟା (Technology) ରାଜନୀତି, ଅର୍ଥନୀତି ଓ ସଂସ୍କୃତି ଦୃଷ୍ଟିରୁ ଭାରତୀୟଙ୍କଠାରୁ ଇଂରେଜମାନଙ୍କର କିଛି ଶିଖିବାର ନାହିଁ। କିନ୍ତୁ ଭାରତୀୟଙ୍କୁ ଅନେକ କିଛି

ଶିଖେଇବାର ଅଛି । ଇଂରେଜମାନଙ୍କର ଗର୍ବ ଓ ଧର୍ମାନ୍ତକରଣ ଫଳରେ ବ୍ରିଟିଶ ଓ ଭାରତୀୟଙ୍କ ଭିତରେ ସବୁକ୍ଷେତ୍ରରେ ମତଭେଦ ଘଟିଲା ।

ଇଂରେଜି ଶିକ୍ଷା କଲେଜରେ କମିଟି ସିଦ୍ଧାନ୍ତ ନେଲେ କି ଅଶିକ୍ଷିତ, ଅସଭ୍ୟ ଭାରତବାସୀଙ୍କୁ ଉନ୍ନତ କରାଇବାକୁ ହେବ । ମାକ୍‌ଲେ ଯେଉଁ ଶିକ୍ଷାପଦ୍ଧତି କରେଇଥିଲେ ତାକୁ ସମର୍ଥନ କରି ଟ୍ରେଭେଲିୟାନ କହିଲେ ସାରା ଭାରତ ଓ ଆରବରେ ଯେତେ ଲାଇବ୍ରେରୀ ବହି ଅଛି ତାହା ଇଂଲଣ୍ଡର ଗୋଟିଏ ଲାଇବ୍ରେରୀର ଗୋଟିଏ ଥାକର ବହିସମୂହ ସହ ସମାନ । ଏହାର ମାନ ବଢ଼ାଇବା ଆବଶ୍ୟକ । ସେ ଦୃଷ୍ଟିରୁ ୧୮୩୭ରେ ବ୍ରିଟିଶରମାନେ ପର୍ଶିୟାନକୁ ସରକାରୀ ଭାଷା ରୂପେ ବ୍ୟବହାର ନ କରି ଇଂରେଜ ଭାଷା ପ୍ରଚଳନ କରିବାର ଠିକଣା କଲେ । ସେହିଦିନଠୁ ଏକଥା ସ୍ପଷ୍ଟ ହେଲା ଯେ ବ୍ରିଟିଶରମାନେ ଯେଉଁ ଯୋଜନା ଭାରତପାଇଁ ପ୍ରସ୍ତୁତ କରୁଛନ୍ତି ସେ ଅନୁସାରେ ଭାରତର ଚାହିଦା, ପରମ୍ପରା ଓ ସିଦ୍ଧାନ୍ତକୁ ଅମାନ୍ୟ ହେଉଥିଲେ ମଧ୍ୟ ସେଇ ସମୟରେ ସେ ଯୋଜନାକୁ ଅଗ୍ରାଧିକାର ଦେବା ଉଚିତ ।

ମୋହନ ଲାଲ କାଶ୍ମୀରୀ, ଦିଲ୍ଲୀ ଇଂରେଜ କଲେଜର ପ୍ରଥମ ବ୍ୟାଚର ଛାତ୍ର କହିଲେ, ତୁମେ ଭାରତୀୟ ଜନତାଙ୍କୁ ତୁମ ଶାସନତଳେ ରଖିପାର ହେଲେ ଯେ ପର୍ଯ୍ୟନ୍ତ ଭାରତୀୟମାନଙ୍କର ସ୍ନେହ, ଶ୍ରଦ୍ଧା ଓ ହୃଦୟ ନ କିଣିପାରିଛ, ସେମାନଙ୍କ ପାଇଁ ତୁମେ ବାହାରର ଅଧିବାସୀ ହୋଇ ରହିବ ।

୧୭୮୦ ବେଳକୁ କମ୍ପାନୀର ଉଇଲ ଅନୁସାରେ white ମୋଗଲମାନଙ୍କ ବିବିମାନଙ୍କର ଆଇନଗତ ଅଧିକାର କମିବାରେ ଲାଗି ପ୍ରାୟ ୧୮୫୦ ବେଳକୁ ପ୍ରାୟ ଶେଷ ହୋଇସାରିଥିଲା । ୧୮୫୭ ବେଳକୁ ଇଂରେଜ ସ୍ତ୍ରୀ ଲୋକମାନେ ମଧ୍ୟ ଭାରତର ଭୂଖଣ୍ଡରେ ପ୍ରଦାର୍ପଣ କରିସାରିଥିଲେ ।

## କୋହିନୂର କାହାଣୀ–

ଲୋଦି ରାଜଧାନୀ ଥିଲା ଆଗ୍ରାରେ । ହୁମାୟୁନ ଆଗ୍ରାକୁ ଆଗରୁ ଯାଇଥିଲେ । ସେଥିପାଇଁ ବାବର ଆଗ୍ରାରେ ପହଞ୍ଚିବାବେଳକୁ ସେ ତାଙ୍କୁ ଏକ ବିରାଟ ଉଜ୍ଜ୍ୱଳ ହୀରାଖଣ୍ଡ ଉପହାର ଦେଲେ । ବାବର ସେ ହୀରାଖଣ୍ଡକୁ ହୁମାୟୁନଙ୍କୁ ଫେରାଇଦେଲେ । କହିଲେ– ସାରା ବିଶ୍ୱପାଇଁ ଏ ଅମୂଲ୍ୟ ହୀରାଖଣ୍ଡ ଅଢ଼େଇଦିନର ଖାଦ୍ୟ

ଯୋଗାଇପାରିବ। ଏ ହୀରାଖଣ୍ଡ ସହ ଟ୍ରେ ଭରି ମୂଲ୍ୟବାନ ପଥର ଗୋୟାଲିୟର ରାଜପୁତ ପରିବାର ହୁମାୟୁନଙ୍କୁ ଦେଇଥିଲେ। କାରଣ ପାନିପଥ ଯୁଦ୍ଧପରେ ସେମାନେ ଯେତେବେଳେ ଆଗ୍ରାରେ ଅଟକ ଥିଲେ, ଆଉ ଇବ୍ରାହିମ ଲୋଦି ହତ୍ୟାର ଶିକାର ହୋଇଥିଲେ।

ଏ ମଣି ଥିଲା ସମନ୍ତିକ ମଣି। ମହାଭାରତ ଯୁଦ୍ଧବେଳେ ଅର୍ଜୁନଙ୍କ ହାତରେ ଶୋଭା ପାଉଥିଲା। କୁହାଯାଏ ଦାକ୍ଷିଣାତ୍ୟର କ୍ରିଷ୍ଣାନଦୀ କୂଳର କୋଲୁରୁ ହୀରାଖଣିରୁ ଅଣାଯାଉଥିଲା। ଜଣାଯାଏ ଏ ହୀରାଖଣ୍ଡ ମାଲୱାର ପରିବାରର ଅକ୍ତିଆରରେ ଅନେକ ଦିନଧରି ଥିଲା। ଆଲ୍ଲାଉଦ୍ଦିନ ଖିଲିଜୀଙ୍କ ଦ୍ୱାରା ଅପହୃତ ହୋଇଥିଲା। ବୋଧେ ୧୪ ଶହ ଶତାବ୍ଦୀରେ। ଏହାର ସଠିକ୍ ପ୍ରମାଣ ନାହିଁ।

ହୁମାୟୁନ ପର୍ଶିୟାରେ ଆଶ୍ରୟନେବାକୁ ଗଲାବେଳେ ପର୍ଶିୟା ନେଇ ଯାଇଥିଲେ। ଯିବା ବାଟରେ ଅନ୍ୟାନ୍ୟ ଅନେକ ରତ୍ନ ସହିତ ଏହାକୁ ହଜାଇ ଦେଇଥିଲେ। ହୁମାୟୁନଙ୍କ ପ୍ରକୋଷ୍ଠ ସେବାକାରୀ ତାକୁ ପାଇ ହୁମାୟୁନଙ୍କୁ ଫେରାଇ ଦେଇଥିଲା। ବୋଧହୁଏ ଅହମଦାବାଦର ନିଜାମ ସାହି ସୁଲତାନଙ୍କୁ ସାହା ଥମାସ ଉପହାର ସ୍ୱରୂପ ଭାରତ ପଠାଇଥିଲେ। ହୀରା ବ୍ୟବସାୟୀଙ୍କ ମାଧମରେ ମଧ ଏହା ଭାରତକୁ ଆସିଥାଇପାରେ ପରେ ମିର ଜୁମଲାଙ୍କ ପାଖରେ ମହଜୁଦ ଥିଲା ଗୋଲକୋଣ୍ଡାରେ। ୧୬୫୬ରେ ଶାହାଜାହାଁଙ୍କୁ ମିର ଜୁମଲା ଦେଇପାରିଥାନ୍ତି। ଏ ପର୍ଯ୍ୟନ୍ତ କାହାଣୀର କୌଣସି ପ୍ରମାଣ ନାହିଁ। ଶାହାଜାହାଁଙ୍କ ଦରବାରରେ ଏହାର ଓଜନ କରାଯାଇଥିଲା। ଓଜନ ଥିଲା ୭୫୬ କ୍ୟାରେଟ।

୧୭୩୯ରେ ପର୍ଶିୟାର ନାଦିରସାହ ଯେତେବେଳେ ଭାରତ ଲୁଣ୍ଠନ କଲେ ସେ ଏହାକୁ ପର୍ଶିୟା ନେଇଯାଇଥିଲେ। ସେତେବେଳେ ସେ ଏହାର ନାମ ଦେଇଥିଲେ କୋହିନୂର– ପର୍ବତର ଆଲୋକ। ୮ବର୍ଷ ପରେ ନାଦିର ସାହାଙ୍କୁ ହତ୍ୟା କରାଗଲା। ଏ ହୀରା ଅହମ୍ମଦ ସାହା ଆବଦାଲୀ, ଜଣେ ପର୍ଶିୟାନ ଜେନେରାଲଙ୍କ ଦ୍ୱାରା ଅଧିକୃତ ହେଲା। ସେ ପରେ ଆଫଗାନିସ୍ଥାନର ସାହା ବୋଲି ନିଜକୁ ଘୋଷଣା କଲେ। ସାହା ସୁଜା, ଅହମ୍ମଦ ସାହାଙ୍କ ବଂଧଧର ଯେତେବେଳେ ପଞ୍ଜାବର ପଳାତକ ହିସାବରେ ପହଞ୍ଚିଲେ ଓ ରଣଜିତ ସିଂ, ଶିଖ ଶାସକ ୧୮୧୫ରେ ତାଙ୍କଠାରୁ ନେଇଗଲେ ଓ ଅଫିସିଆଲ କାର୍ଯ୍ୟକ୍ରମ ବେଳେ ବ୍ରେସଲେଟରେ ଲଗାଇ ପିନ୍ଧିଲେ।

ବ୍ରିଟିଶରମାନେ ୧୮୪୮ରେ ଯେତେବେଳେ ପଞ୍ଜାବକୁ ତାଙ୍କ ଅଧିନକୁ ନେଇଆସିଲେ, ଏ ହୀରାଖଣ୍ଡକୁ ସେମାନେ ନେଇଗଲେ। ଜନ ଲରେନ୍ସ, ପଞ୍ଜାବର ଚିଫ୍ କମିଶନର ନିଜ ପକେଟରେ ଏ ହିରା ଖଣ୍ଡଟି ଭୂଲରେ ରଖି ଦେଇଥିଲେ। ଏ କଥା ସତ ନ ହୋଇପାରେ। ଡେଲହାଉସୀ, ଭାରତର ଗଭର୍ଣ୍ଣର ଜେନେରାଲ, ରାଣୀ ଭିକ୍ଟୋରିୟାଙ୍କୁ ଉପହାର ସ୍ୱରୂପ ଦେଇଥିଲେ ବୋଲି କୁହାଯାଏ। ଫଳରେ ଏହା ବ୍ରିଟିଶ ସରକାରଙ୍କର ମୁକୁଟର ରତ୍ନ ବୋଲି ଖଣାହେଲା। ୧୮୫୨ରେ ଏହା କଟାହେଲା। ସେ ହୀରାଖଣ୍ଡ କାଟିବାର ପ୍ରଣାଳୀ ପ୍ରାୟ ୩୮ ଦିନ ଧରି ଚାଲିଲା। ଖର୍ଚ୍ଚ ହେଲା ୮୦୦୦ ପାଉଣ୍ଡ। ସେତେବେଳେ ଓଜନ ଥିଲା ୧୦୮.୯୩ କ୍ୟାରେଟ। କୋହିନୂର କେବେହେଲେ ବ୍ରିଟିଶ ମୁକୁଟରେ ଲାଗି ନଥିଲା। କୋହିନୂରର ଇତିହାସ ଥିଲା କି ମୁଣ୍ଡରେ ଲଗାଇବା ମାତ୍ରେ ମୁଣ୍ଡରେ ଲଗାଇଥିବା ଲୋକର ଭାଗ୍ୟ ଖରାପ ହୋଇଥାଏ। କିନ୍ତୁ ଅନେକଦିନ ଧରି ବ୍ରିଟିଶ ରାଣୀଙ୍କ ମୁକୁଟରେ ଶୋଭା ପାଉଥିଲା ବୋଲି କୁହାଯାଏ।

୧୯୪୭ରେ ଭାରତ ସ୍ୱାଧୀନ ହେଲା ପରେ କୋହିନୂର ଭାରତକୁ ଫେରାଇବାପାଇଁ ଦାବି ହେଲା। ପ୍ରମାଣ ହେଲା କି ଏହା ଅଧିକାରୀ ପ୍ରଭୂ ଜଗନ୍ନାଥ। ରଣଜିତ ସିଂ ଜଗନ୍ନାଥଙ୍କୁ ଉପହାର ଦେଇଥିଲେ। ଏ ଦାବି ୧୯୫୩ ଓ ୧୯୭୬ରେ କରାଯାଇଥିଲା। ବର୍ତ୍ତମାନ ସୁଦ୍ଧା ତାହା ଲଣ୍ଡନ ଟାୱାରର 'ହିରା ଘରେ' ଶୋଭା ପାଉଛି।

## ଗାଲିବ

ଗାଲିବ ଟର୍କିର ସୈନ୍ୟ ପରିବାର ସମ୍ଭୂତ। ବର୍ତ୍ତମାନର ସୋଭିଏତ ରୁଷର ବାସିନ୍ଦା। ତାଙ୍କ ପରମ୍ପରା ଅନୁସାରେ ବାପ ମୃତ୍ୟୁପରେ ପୁଅ କେବଳ ଖଣ୍ଡାର ଅଧିକାରୀ। ଅନ୍ୟ ସଂପତ୍ତି– ସ୍ଥାବର ବା ଅସ୍ଥାବର ଏପରିକି ବାସ ସ୍ଥାନ ମଧ୍ୟ ଝିଅ ପାଖକୁ ଚାଲିଯାଏ। 'ଖଣ୍ଡା'ର ଅଧିକାରୀ ହେବାର ଅର୍ଥ ପୁଅ ଖଣ୍ଡ ବଳରେ ନିଜର ସାମ୍ରାଜ୍ୟ ପାତିବ। ଗାଲିବ ଏ ପରମ୍ପରାରୁ ବାହାରି ଆସିଥିଲେ। ତାଙ୍କ ଜେଜେବାପା ସାହ ଆଲମଙ୍କ ଦରବାରରେ ଥିଲେ– ସୈନ୍ୟ ବିଭାଗରେ। ବାପା ମଧ୍ୟ ଯୁଦ୍ଧକ୍ଷେତ୍ରରେ ହିଁ ମୃତ୍ୟୁବରଣ କରିଥିଲେ।

ଗାଲିବ ଭାବିଲେ, ''ଆଇନକୁ ସଫାକରି ଦୁନିଆ ଆଗରେ ଏକ ମୂଲ୍ୟ ଦେଖାଇବା ମଧ୍ୟ ଏକ ବଳବୀର୍ଯ୍ୟର କାହାଣୀ। ସେଥିପାଇଁ କବିତାକୁ ଆପଣାର ଧରିନେଲି। ମୋ' ଜୀବନତରୀକୁ କବିତାର ଏକ ଭେଳିକି ଦୁନିଆକୁ ଠେଲିଦେଲି। ମୋ' କଲମ ମୋର ଖଣ୍ଡା, ଆଉ ମୋ' ପୂର୍ବଜମାନଙ୍କର ଭଙ୍ଗା ତୀର ବି ମୋ କଲମ।''

ଗାଲିବ ଜଣେ ଖୋଲାହୃଦୟର ଲୋକ। ସେ ନିଜ ଧର୍ମର କୌଣସି ଉପଦେଶ ପାଳି ନାହାନ୍ତି। କେବେ ରମଜାନ ଉପାସ କରିନାହାନ୍ତି। ପ୍ରତ୍ୟେକ ଦିନର ଧର୍ମ ଅନୁଯାୟୀ ୫ଥର ପ୍ରାର୍ଥନା କରିନାହାନ୍ତି। ମକ୍କା ଯାଇଁ ନିଜ ତୀର୍ଥଯାତ୍ରାର ପ୍ରୟାସ ମଧ୍ୟ କରିନାହାନ୍ତି। ଜଣେ ପ୍ରିୟଜନଙ୍କ ମୃତ୍ୟୁରେ ସେ ଲେଖିଥିଲେ– ''ବିଚ୍ଛେଦର ଦୁଃଖ ହୃଦୟ ବିଦାରକ, ଦୁଃଖରେ ଆତ୍ମା ଦ୍ୱିଖଣ୍ଡିତ। ତଥାପି ପ୍ରକୃତ ମଣିଷକୁ ଦୁଃଖ ଛୁଇଁ ପାରେନା। ଏ ଆନ୍ଦୋଳିତ, ବିଖଣ୍ଡିତ ହୃଦୟକୁ ବିବେଚନା କରିବା ଉଚିତ। ଯେଉଁ ଘଟଣା ମନକୁ ଆନ୍ଦୋଳିତ କରେ– ତାରି ମଧ୍ୟସ୍ଥଳିରୁ ଆମେ ଏକ ମାନସିକ ଦମ୍ଭ ଆପଣାଇ ନେବା ଉଚିତ। କୋଇଲିର ସୁମଧୁର କଣ୍ଠ ଶୁଣି ଗୋଲାପ ଫୁଲର ପାଖୁଡା ମେଲେ, ପ୍ରଜାପତି ତାର ସୁନ୍ଦର ଡେଣା ସାହାଯ୍ୟରେ ଡେଇଁ ଡେଇଁ ନିଆଁରେ ଝାସଦିଏ। 'ପ୍ରଜାପତି ତାର ଆଲୋକ ସହିତ ସଂସ୍ପର୍ଶରେ ମୃତ୍ୟୁପାଇଁ କାହିଁକି ଦୁଃଖ କରିବ ? ଗୋଲାପ ଫୁଲର ପାଖୁଡ଼ା ଝଡ଼ିଗଲେ ମନଦୁଃଖ କାହିଁକି କରିବ ? ନିଜର ରଙ୍ଗ ଓ ସୁଗନ୍ଧ ଦେଇ ମଣିଷର ହୃଦୟ ଯେ ଜିଣେ, ତାକୁ ଭଲପାଇବାର ରଜ୍ଜୁରେ କାହିଁକି ବାନ୍ଧିବ ? ନିଜର ବାସନା ଦେଇ ଆନନ୍ଦର ଢେଉ ଯେ ଅନ୍ୟ ହୃଦୟରେ ଖେଳାଏ, ହୃଦୟକୁ ନିଜ ଭିତରେ ଥାପେ, କିନ୍ତୁ ସେଇ ହୃଦୟକୁ ନିଜ ଭିତରୁ ଚୋରାଇ କାହିଁକି ନେବା।'

ଏ ହେଉଛି ବିରାଟ ହୃଦୟବାନ ଗାଲିବଙ୍କର ଭାଷା। ସେ ତିରିଶବର୍ଷ ଧରି ଦିଲ୍ଲୀରେ ଥିଲେ। ପରେ କଲିକତା ଗଲେ। ରହିଲେ ତିନିବରଷ। କଲିକତାର ଜଳବାୟୁ, ସେଠିକାର ବାସିନ୍ଦା ସେଠାର ଆବହାଓ୍ୱା ସବୁ ଭଲ ଲାଗିବା ସତ୍ତ୍ୱେ ସେ କଲିକତାକୁ ଭଲ ପାଇପାରିଲେ ନାହିଁ। ଗାଲିବଙ୍କର ଅନେକ କବି ଓ ସାଥିଙ୍କୁ ମାରିଦିଆଯାଇଥିଲା। ଅଥବା ଦେଶରୁ ବାହାର କରି ଦିଆଯାଇଥିଲା। ପଟିଆଲାର ମହାରାଜା ସେନା ଓ ଖାଦ୍ୟ ବ୍ରିଟିଶରମାନଙ୍କୁ ପରିବେଷଣ କରିଥିଲେ।

ଫଳରେ ଆଉ ରାସ୍ତାଘାଟରେ ଲୁଟତରାଜ ବ୍ରିଟିଶରମାନେ କଲେ ନାହିଁ। ସେଥିପାଇଁ ବଞ୍ଚିଗଲେ ଗାଲିବ। ହୁଏତ ଦରବାରର ଏକମାତ୍ର ବ୍ୟକ୍ତି। ଦିଲ୍ଲୀ ସହରରେ ବ୍ୟବସାୟୀ ନଥିଲେ– ନ ଥିଲେ ବିଗ୍ରାହକ। ସେ ବାହାରର ବ୍ଲଇପିଲାଙ୍କୁ ଆପଣାଇ ନେଇଥିଲେ। ମାତ୍ର ସେମାନଙ୍କ ପାଇଁ ଖାଦ୍ୟ ଯୋଗାଇବା ମଧ୍ୟ ତାଙ୍କ ଅକ୍ତିଆରରେ ନଥିଲା। ଗାଲିବ ନିଜର ରୋଗାଣା ଭାଇଙ୍କ ପାଇଁ ମଧ୍ୟ ଚିନ୍ତା କରୁଥିଲେ। ଖବର ପାଇଲେ ଭାଇଙ୍କ ଘର ମଧ୍ୟ ଲୁଣ୍ଠନ ହେଇସାରିଛି। ଘର ବାହାରକୁ ଚାଲିଯାଇ ଭାଇ ମଧ୍ୟ ବ୍ରିଟିଶ ଗୁଳିର ଶୀକାର ହୋଇସାରିଛନ୍ତି। ତାଙ୍କୁ ଦଫନ ଦେବାପାଇଁ ମଧ୍ୟ ସେ ପଦାକୁ ଯାଇପାରିବେନି। ଏ ଅବସ୍ଥା ଭିତରେ ଗାଲିବଙ୍କୁ ଧରି କର୍ଣ୍ଣେଲ ବର୍ଣ୍ଣଙ୍କୁ ହସ୍ତାନ୍ତରକଲେ। ବର୍ଣ୍ଣ ପଚାରିଲେ ତୁମେ ମୁସଲିମ? ଉତ୍ତରରେ ଗାଲିବ କହିଲେ 'ଅଧା'। ତା' ମାନେ? ମୁଁ ମଦ ପିଏ କିନ୍ତୁ ପୋର୍କ ଖାଏନି। ହସିଲେ କର୍ଣ୍ଣେଲ। ଇଂଲଣ୍ଡର ରାଣୀଙ୍କ ପାଖକୁ ଯେଉଁ କବିତା ପଠାଇଥିଲେ, ଚିଠି ପାଇ ସେଠୁ ଭାରତକୁ ଯେଉଁ ଚିଠି ମିନିଷ୍ଟ୍ରିକୁ ଆସିଥିଲା, ତାର ଏକ ନକଲ କର୍ଣ୍ଣେଲ ସାହେବଙ୍କୁ ଦେଖାଇଲେ। କର୍ଣ୍ଣେଲ ପଚାରିଲେ ବିଜୟ ପାଇବାପରେ ତମେ ରିଜରେ ଅନୁଷ୍ଠିତ ହୋଇଥିବା ଉତ୍ସବକୁ କାହିଁକି ଆସିଲ ନାହିଁ? ଗାଲିବ ଉତ୍ତରଦେଲେ 'ମୋର ଯେଉଁ ସମ୍ମାନ ଥିଲା, ସେଥିରେ ପାଲିଙ୍କିରେ ଯିବାପାଇଁ ମୋର ଚାରିଜଣ ଲୋକ ଦରକାର। କିନ୍ତୁ ମୋର ଲୋକମାନସେ ସେତେବେଳକୁ ମତେ ଛାଡ଼ି ଚାଲିଯାଇଥିଲେ। ସବୁବେଳେ ସେ ତାଙ୍କ ପାରିଶ୍ରମିକଠୁ ଉର୍ଦ୍ଧ୍ୱରେରହି ନିଜର ଜୀବନ ନିର୍ବାହ କରିଥିଲେ। ଫଳରେ କରଜ ତାଙ୍କ ପଛରେ ଲାଗିଥାଏ। ସବୁବେଳେ ଦୁଃଖ କରନ୍ତି କିନ୍ତୁ ପ୍ରତିକାରପାଇଁ ତତ୍‌ପର ହୁଅନ୍ତି ନାହିଁ। ତାଙ୍କୁ ସେତେବେଳେ ପଚାଶ ବର୍ଷ। ଗୋଟାଏ ଜୁଆ ଆଡ୍ଡା ଚଳେଇଥିବାର ଦୋଷରେ ଦଣ୍ଡିତହେଲେ। ଜେଲରେ ତିନିମାସ ରହିଲେ। ଏଇ ସମୟଟାହିଁ ତାଙ୍କପାଇଁ ଦୁଃଖଦ ସମୟ। ସାଙ୍ଗ ସାଥି ଛାଡ଼ି ଚାଲିଗଲେ। କେବଳ ତାଙ୍କ ସ୍ତ୍ରୀଙ୍କର ଜଣେ ସଂପର୍କୀୟ ମୁସ୍ତାଫା ଖାନ୍ ସେଫତା ତାଙ୍କ ପାଖରେ ଠିଆ ହେଲେ। କାରଣ ସେ ଗାଲିବଙ୍କ କବିତାର ଜଣେ ଭକ୍ତ। ଜେଲରୁ ମୁକ୍ତିପାଇବା ପରେ ତାଙ୍କ ଭାଗ୍ୟର ଉନ୍ନତି ହେଲା। ସେ ମୋଗଲ ସମ୍ରାଟ ବାହାଦୂର ସାହଙ୍କ ଦରବାରରେ ସାମିଲ ହେଲେ।

୧୮୫୦ ବେଳକୁ ମୋଗଲସାମ୍ରାଜ୍ୟ ସଂକ୍ରାନ୍ତରେ ଇତିହାସ ଲେଖିପାଇଁ ଅନୁମତି ପାଇଲେ। ଭୂଷିତ ହେଲେ ଓସ୍ତାଦ ଉପାଧିରେ। ଅବଧର ରାଜାମଧ ତାଙ୍କୁ କିଛି ମାସିକ ଭତାଦେଉଥିଲେ। ସତରା-୧୮୪୮ରେ, ଝାନ୍ସି-୧୮୫୩ରେ ନାଗପୁର ୧୮୫୪ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ନିଜ ହାତକୁ ନେଇ ସାରିଥିଲେ। 'ଡକ୍ଟ୍ରିନ ଅଫ ଲ୍ୟାପସ' ନିୟମ ଅନୁସାରେ ଡେଲହାଉସିଙ୍କ ତତ୍ତ୍ୱାବଧାନରେ ୨୩ ଫେବୃୟାରୀ ୧୮୫୬ରେ ଅବଧକୁ କମ୍ପାନୀ ନିଜ ହାତକୁ ନେଇଗଲେ। ସମ୍ରାଟଙ୍କୁ ଉତରାଧିକାରୀ ସୂତ୍ରରେ କୌଣସି କ୍ଷତିପୂରଣ ଦିଆଗଲା ନାହିଁ। ମିର୍ଜା ଫ଼ୁକୁରୁ ଅବଧର ରାଜା ଥିଲେ। ତାଙ୍କ ମୃତ୍ୟୁପରେ ଅବଧ ପାଇଁ କୌଣସି ଭତା ମୋଗଲ ଦରବାରକୁ ଦିଆଗଲା ନାହିଁ। ଆଉ ଗାଲିବ ମଧ କୌଣସି ମାସିକ ଭତା ପାଇଲେ ନାହିଁ। ମିର୍ଜା ଫକରୁ ତାଙ୍କ କବିତାର ଭକ୍ତ ଥାଇଁ ମାସିକ ଦଶଟଙ୍କା ଭତା ଦେଉଥିଲେ। ଫଳରେ ସେ ତାଙ୍କର ଦୁଇ ପୋଷ୍ୟପୁତ୍ରଙ୍କ ଗୁଜୁରାଣ ମେଣ୍ଟାଇଥିଲେ। ଜଫର ମଧ ତାଙ୍କୁ ଦରବାରରେ ଅଧିକ ସମ୍ମାନ ଦେଇ ନଥିଲେ। କବି ଜକ୍‌ଙ୍କୁ ସେ ଅଧିକ ସମ୍ମାନ ଦେଉଥିଲେ। ଏଥିରେ ମର୍ମାହତ ହୋଇ ଗାଲିବ ଜଫରଙ୍କୁ ଲେଖିଲେ; ବହୁ ଭାଗ୍ୟରେ ଆପଣ ଗାଲିବ ଭଳି ଏକ ଦାସ ପାଇଛନ୍ତି। ଯାହାଙ୍କ ଗୀତରେ ଅଗ୍ନିର ଶକ୍ତି ଅଛି। ମୋ ନିଜର ଶକ୍ତିକୁ ଉପଲବ୍ଧି କରି ମତେ ଅଧିକ ନଜର ଦିଅନ୍ତୁ। ଆଖିର ତାରା ବୋଲି ଅନୁଭବ କରନ୍ତୁ। ମୋର ପାରଦର୍ଶିତା, ଦକ୍ଷତାକୁ ଆଗରେ ରଖି ମୋ ପାଇଁ ଆପଣଙ୍କ ହୃଦୟ ଖୋଲା ରଖନ୍ତୁ। ଆକବରଙ୍କ ଦରବାରଠୁ ମୋ ଉପସ୍ଥିତିରେ ଆପଣଙ୍କ ଦରବାର କେତେ ଉଚ୍ଚରେ ତାହା ଅନୁଭବ କରନ୍ତୁ। ୧୮୫୪ରେ କବି ଜକ୍‌ଙ୍କର ମୃତ୍ୟୁ ହେଲା। ସମ୍ରାଟ ଗାଲିବଙ୍କୁ 'ଓସ୍ତାଦ' ପଦବୀରେ ସମ୍ମାନିତ କଲେ। ଗାଲିବ ନିଶ୍ୱାସ ମାରିଲେ। ନ ହେଲେ ସମ୍ରାଟଙ୍କ ପ୍ରାସାଦ କାନ୍ଥକୁ ଆଉଜିଥିବା ବ୍ୟକ୍ତିଟିର କି ଦଶା ହୋଇଥାନ୍ତା ? ଥରକର ଘଟଣା। ଅଭାବ ଲାଗି ରହିଥାଏ ଗାଲିବଙ୍କୁ। ସେତେବେଳକୁ ଦିଲ୍ଲୀ କଲେଜରେ ପର୍ଶିୟାନ ଭାଷାର ପ୍ରଫେସର ପଦପାଇଁ ଦରଖାସ୍ତ ଦେଲେ। ଯେଉଁଦିନ ସାକ୍ଷାତକାର ହେବା କଥା ସେ ପାଲିଙ୍କିରେ ବଢ଼ି ସାକ୍ଷାତକାର ପାଇଁ ଗଲେ। ଅଫିସର ଥାନ୍ତି ମିଷ୍ଟର ଥମ୍ପସନ। ନିଜେ ଥମ୍ପସନ ଆସି ଗାଲିବଙ୍କୁ ସ୍ୱାଗତ ନ କଲା ପର୍ଯ୍ୟନ୍ତ ସେ ପାଲିଙ୍କିରୁ ଓହ୍ଲାଇଲେ ନାହିଁ। ଅବଶେଷରେ ଥମ୍ପସନ ଆସି ତାଙ୍କୁ ବୁଝାଇଲେ କି ଯେହେତୁ ଗାଲିବ ସାକ୍ଷାତକାର

କରିବାର ଜଣେ ସଦସ୍ୟ, କୌଣସି ଉଚ୍ଚପଦସ୍ଥ କର୍ମଚାରୀ ତୁମକୁ ପାଛୋଟି ନେବାକୁ ଆସିବେ ନାହିଁ। ଥମସନ କହିଲେ 'ମୁଁ ଆଇନରେ ବନ୍ଧା'। ଗାଲିବ ଉତ୍ତର ଦେଲେ 'ମୁଁ ମୋ ବର୍ତ୍ତମାନର ସମ୍ମାନ ଅପେକ୍ଷା ଆଉ ଅଧିକ ସମ୍ମାନ ପାଇବି ବୋଲି ଆଶା କରି ଏଠିକୁ ଆସିଥିଲି। କିନ୍ତୁ ସାକ୍ଷାତକାରର ଯଦି ଏପରି ଆଦବକାଇଦା ଥାଏ, ମତେ କ୍ଷମା କରନ୍ତୁ ମୋର ଏ ଚାକିରୀ ଲୋଡ଼ା ନାହିଁ।' ଏତକ କହି ସେ ସାକ୍ଷାତକାର ନଦେଇ ଫେରିଆସିଲେ। ଇଫର ଗାଲିବଙ୍କୁ ଦରବାରରେ ନିଯୁକ୍ତି ଦେବାର ଅନ୍ୟ କାରଣ ମଧ୍ୟ ଥିଲା। ପଶ୍ଚିମ ଜଗତର ବୈଜ୍ଞାନିକ ଉଦ୍ଭାବନ ସଂକ୍ରାନ୍ତରେ ଗାଲିବ ଜାଣିଥିଲେ। ଗାଲିବ ଲେଖିଥିଲେ 'ପାଶ୍ଚାତ୍ୟ ଦେଶର ଜାହାଜ (ଅଗ୍ରଗତି) ଆଉ ପବନ ସମୁଦ୍ରର ଲହରୀ ଉପରେ ନିର୍ଭର କରୁନାହିଁ। ସେଠି ମିଜ୍ରାବ ଯନ୍ତ୍ର ବିନା ଗୀତ ବାଜେ। ସେମାନେ ତାଙ୍କ ମ୍ୟାଜିକ ବଳରେ ଶବ୍ଦ ପକ୍ଷୀମାନଙ୍କ ଭଳି ଆକାଶରେ ଉଡ଼ିଯାଏ। ତେଲ ବିନା ରାସ୍ତାର ଆଲୁଅ ଜଳେ। ତୁମ ପାଦତଳେ ମୂଲ୍ୟବାନ ପଥର ପଡ଼େ, ତୁମେ କାହିଁକି ଛୁଆଣି ବାଳର ନଡାବିଡାକପାଇଁ ହାତ ବଢ଼େଇଛ ? ଗାଲିବଙ୍କୁ ଇଂରେଜ ଭାଷା, ଆଦବ କାଇଦା କିଛି ଜଣା ନଥିଲା। ଏହି ପରିପ୍ରେକ୍ଷୀରେ ସେ ଏକ ପର୍ଶିୟାନ ଗୀତ ଲେଖି ରାଣୀ ଭିକ୍ଟୋରିଆଙ୍କ ପାଖକୁ ପଠାଇଥିଲେ କ୍ୟାନିଙ୍ଗଙ୍କ ଜରିଆରେ। ସେଥିରେ ରାଣୀଙ୍କୁ ଆକାଶର ତାରା ସହିତ ତୁଳନା ଓ ତାଙ୍କ ଗଭର୍ଣ୍ଣର ଜେନେରାଲଙ୍କୁ ଆଲେକଜାଣ୍ଡରଙ୍କ ପରି ବୀର ଓ ଫେରିଡ଼ନଙ୍କ ପରି ସମୃଦ୍ଧିସଂପନ୍ନ ବୋଲି ଲେଖିଥିଲେ। ଏସବୁ ଲେଖିବାର ମୂଳ କାରଣ ଥବଲା କି ରାଜୋବଂଶଭବ ବ୍ୟକ୍ତିଗଣ କାବ୍ୟ ଜଗତରେ କବିମାନଙ୍କୁ ସମର୍ଥନ ଦେଇ ନିଜକୁ ଅମର କରିଛନ୍ତି। ଆହୁରି ଲେଖିଥିଲେ କି ଇତିହାସର ବଡ଼ ଶାସକମାନେ କବିମାନଙ୍କ ମୁହଁରେ ଅମୂଲ୍ୟ ରତ୍ନର ଭଣ୍ଡାର ତାଙ୍କୁ ସୁନା ସହିତ ଓଜନ କରି, ଗ୍ରାମ ସବୁ ତାଙ୍କ ନାଁରେ ଲେଖାଇ କବିମାନଙ୍କର ଦାରିଦ୍ର୍ୟ ଲୋପ କରୁଥିଲେ। ସେହିଭଳି ରାଣୀଙ୍କର ମଧ୍ୟ କର୍ତ୍ତବ୍ୟ କି ପତ୍ରଲେଖକ ଗାଲିବଙ୍କୁ ମୀର-ଖାନ ପଦବୀ, ପଦବୀପାଇଁ ପୋଷାକ ଓ ଯାହାକୁ ଇଂରେଜୀରେ କହନ୍ତି 'ପେନ୍‌ସନ' ଦିଅନ୍ତୁ। ଅନେକ ଦିନ ଅପେକ୍ଷା ପରେ ମଧ୍ୟ ଗାଲିବଙ୍କ ଜୀବନ ରକ୍ଷା କୌଣସି ଉତ୍ତର ଆସିଲା ନାହିଁ।

ଗାଲିବଙ୍କ ଜନ୍ମ ୧୭୯୭ ଆଗ୍ରାରେ। ବାଲ୍ୟାବସ୍ଥା ଥାଇଁ ୧୩ ବର୍ଷ ବୟସରେ ସେ ବିବାହ କଲେ ୧୧ ବର୍ଷର ଝିଅକୁ। ତା'ପରେ ଦିଲ୍ଲୀ ବାସିନ୍ଦା ହୋଇଗଲେ।

ଜିଆ-ଉ-ଦ୍ଦିନ ଅହମ୍ମଦ ତାଙ୍କ ସ୍ତ୍ରୀଙ୍କର ସଂପର୍କୀୟ। ଥରେ ଅହମ୍ମଦ ଆଗ୍ରା ଯାଇଥିଲେ। ଗାଲିବ ତାଙ୍କୁ ଚିଠି ଲେଖିଥିଲେ। ଚିଠିର ମର୍ମହେଲା–

> ''ହୃଦୟ ମୋର ଦୁଇଭାଗହୋଇ ଗୋଟେ ଭାଗ ଆଗ୍ରାରେ। ଆଶାକରୁଛି ସେଠିକାର ପାଣିପବନ ଗାଲିବଙ୍କର ଦୀର୍ଘଶ୍ୱାସ ଓ ଲୁହରେ ଛାଣି ହୋଇଯାଇ ତୁମକୁ ଆନନ୍ଦ ଦେଉଥିବ। ତୁମେ ବହୁତ ଦୂରରେ– କିନ୍ତୁ ମୋର ବିସ୍ତୀର୍ଣ୍ଣ ଭାବନାହିଁ ତୁମକୁ ମୋ ପାଖକୁ ନେଇ ଆସିଛି।''

ଗାଲିବ ଜଣେ ଉଚ୍ଚକୋଟୀର ଲୋକ। ତାଙ୍କ ନିର୍ଭିକତା, ସ୍ପଷ୍ଟବାଦିତା, ତାଙ୍କ ବନ୍ଧୁତ୍ୱ, ରସିକତା, ବାଗ୍‌ବୁଦ୍ଧି ତୀକ୍ଷ୍ଣ। ଏ ସବୁର ଅନେକ ପ୍ରମାଣ ଅଛି। ସିପାହୀ ବିଦ୍ରୋହ ବିଷୟ ଗାଲିବ ଜାଣିଥାନ୍ତୁ ବା ନ ଜାଣିଥାନ୍ତୁ, କିନ୍ତୁ ବ୍ରିଟିଶରମାନେ ମୋଗଲମାନଙ୍କୁ ଭାରତରୁ ହଟାଇବା ଯୋଜନାରେ ଅଛନ୍ତି ସେ କଥା ଗାଲିବ ମୋଟେ ଜାଣି ନଥିଲେ। ସାଥିହୀନ, କବିତାର ମୂଲ୍ୟ ବୁଝିବା ଲୋକଙ୍କ ବିନା ମୋର ଦୁଃଖ ଅବର୍ଣ୍ଣନୀୟ, ମୋ ଘା' କେଭେ ଶୁଖିପାରିବ ନାହିଁ। ମୁଁ ଅନୁଭବ କରୁଛି ମୁଁ ମରିଯାଇଛି।

ରାମପୁରର ଜଣେ ସାଙ୍ଗଙ୍କ ପାଖକୁ ଲେଖିଥିଲେ–

> ''ପ୍ରତ୍ୟେକ ଶସ୍ତ୍ରଧାରୀ ବ୍ରିଟିଶ ସୈନିକ ଯାହା ତାଙ୍କ ଇଚ୍ଛା, ସେ କରିପାରନ୍ତି। ଘରୁ ବଜାରକୁ ଯିବା ରାସ୍ତାରେ ଜଣକର ହୃଦୟ ପାଣି ଫୋଟକା ପରି ହୋଇଯାଏ। ଚୌକ ସାଜିଛି ଗୋଟାଏ ମାଂସ କଟାଳିର ଦୋକାନ। ଘରସବୁ ବନ୍ଦୀଶାଳା। ଦିଲ୍ଲୀର ପ୍ରତ୍ୟେକ ଧୂଳିକଣା ମୁସଲମାନ ରକ୍ତ ଶୋଷିବାପାଇଁ ବ୍ୟଗ୍ର ଆମେ ଏକତ୍ର ଥାଇଁ ବି ଆମେ ଆମ ନିଜ ଜୀବନପାଇଁ କାନ୍ଦୁଛୁ।''

ଭାରତରୁ ଆଲୋକ ଅସ୍ତମିତ। ଏ ଭୂଖଣ୍ଡ ଆଲୋକବତୀହୀନ। ଲକ୍ଷ ଲକ୍ଷ ଧରାଶାୟୀ ଆଉ ଜୀବିତମାନେ ଜେଲରେ। ଅଧିକ ଦୁଃଖରେ ଲୋକେ ପାଗଳ। ଆଉ ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ଯଦି ମୋର ଦୁଃଖର ଯାତନାରେ ମୋ' ମୁଣ୍ଡ ହଜିଯାଏଁ।



# ଦିଲ୍ଲୀ ଦରବାର

ଜାନୁୟାରୀ ୧, ୧୮୭୭– ପ୍ରଥମ ଦରବାର ରାଣୀ ଭିକ୍ଟୋରିଆ, ଲର୍ଡ ଲିଟନ ସମୟର କଥା– ରାଣୀ ଭିକ୍ଟୋରିୟାଙ୍କୁ ଭାରତର ସାମ୍ରାଜ୍ଞୀ ଭାବରେ ଗ୍ରହଣ କରିବାପାଇଁ ଏକ ଉତ୍ସବର ଆୟୋଜନ କରିଥିଲେ। ରିଜରେ ଅନୁଷ୍ଠିତ ହୋଇଥିଲା ସେ ଉତ୍ସବ। କାରଣ ଏହି ଜାଗାରେ ବ୍ରିଟିଶ ଓ ଭାରତ ମଧ୍ୟରେ ଭୟଙ୍କର ଯୁଦ୍ଧ ଅନୁଷ୍ଠିତ ହୋଇଥିଲା। ୬୮,୦୦୦ ଲୋକଙ୍କର ସମାବେଶ। ଏଥିରେ ୭୯ଜଣ ରାଜପୁତ୍ର, ୧୨୦୦ ଅନୁଶାସକ, ୧୪୦୦୦ ବ୍ରିଟିଶ ଓ ଭାରତୀୟ ସେନାବାହିନୀ ଯୋଗ ଦେଇଥିଲେ। ୭ ଦିନ ବ୍ୟାପି ଏ ଉତ୍ସବ ଅନୁଷ୍ଠିତ ହୋଇଥିଲା। ଭାଇସରାୟଙ୍କ ଶୋଭାଯାତ୍ରା ରେଲୱେ ଷ୍ଟେସନରୁ ବାହାରି, ଫ୍ଲାଗଷ୍ଟାଫ ଟାୱାର ଦେଇ, କ୍ୱିଇନ୍ସ ରୋଡ, ଜାମା ମସଜିଦ୍, ଚାନ୍ଦନୀଚୌକ, ଲାହୋର ଗେଟ, କାବୁଲ ଗେଟ ଦେଇ ରିଜରେ ପହଞ୍ଚିଥିଲା। ଭାଇସରାୟ ନିଜେ ତାଙ୍କ ସ୍ତ୍ରୀଙ୍କ ସହିତ ଗୋଟାଏ ସଜ୍ଜିତ ହାତୀ ଉପରେ ବସିଥିଲେ। ଅନ୍ୟ ଅଫିସରମାନେ ମଧ୍ୟ ହାତୀ ଉପରେ ବସିଥିଲେ। ଲର୍ଡ ଲିଟନ– ସବୁ ରାଜାମାନଙ୍କ ମଝିରେ ବସିଥିଲେ ଏକ ସୁସଜ୍ଜିତ ମଞ୍ଚ ଉପରେ।

ଦ୍ୱିତୀୟ ଦରବାର– ଜାନୁୟାରୀ ୧, ୧୯୦୩ରେ ଏଡୱାର୍ଡ ୭ମଙ୍କୁ ଭାରତର ସମ୍ରାଟ ଭାବରେ ମାନିନେବାକୁ ଭାଇସରାୟ ଲର୍ଡ କର୍ଜନ ଏ ଦରବାର ବସିଥିଲା। ପୂର୍ବ ଦରବାରର ଶୋଭାଯାତ୍ରା ପରି ସଜ୍ଜିତ ହୋଇଥିଲା। ଏହା ୧୪ ଦିନ ଧରି ଲାଗି ରହିଥିଲା। ଏ ଶୋଭାଯାତ୍ରା ଫତେପୁର ସିକ୍ରିଠାରୁ ଚର୍ଚ୍ଚ ରୋଡ, କ୍ୱିଇନ୍ସ ରୋଡ୍ ରାଜପୁର ରୋଡ୍, ଫ୍ଲାଟ ଷ୍ଟାଫ ଟାୱାରରେ ପହଞ୍ଚିଥିଲା। ଏହା ଥିଲା ଅଭିଷେକ ଉତ୍ସବ। ରେଡଫୋର୍ଟର ଦିୱାନି-ଆମରେ ଏ ଉତ୍ସବ ଅନୁଷ୍ଠିତ ହୋଇଥିଲା। ଦିୱାନି-ଖାସକୁ ସୁନ୍ଦର ଭାବରେ ସଜା ହୋଇଥିଲା। ଷ୍ଟେଟ ତରଫରୁ ବଲଡାନ୍ସର ଆୟୋଜନ ମଧ୍ୟ ସେଠାରେ ହେଲା। ଏଥିରେ ୩୦,୦୦୦ରୁ ୪୦,୦୦୦ ଭାରତୀୟ ଓ ବ୍ରିଟିଶ ଟ୍ରୁପ ଯୋଗଦେଇଥିଲେ। କାଶ୍ମୀର ଗେଟ ବାହାରେ କୁଦସିଆ ବାଗରେ ଏକ ଭାରତୀୟ କଳା ପ୍ରଦର୍ଶନୀର ଆୟୋଜନ ମଧ୍ୟ ହୋଇଥିଲା। ଏ ଦରବାରରେ

ଅନେକ ପରିମାଣରେ ଟଙ୍କା ଖର୍ଚ୍ଚ ହୋଇଥିଲା । ସେଥିପାଇଁ ଅନେକ ଖବରକାଗଜ ଲର୍ଡ କର୍ଜନଙ୍କୁ ତର୍ଜମା କରିଥିଲେ ।

ତୃତୀୟ ଦରବାର– ଫେବୃୟାରୀ ୬, ୧୯୧୧ରେ ପଞ୍ଚମ ଜର୍ଜ ଭାରତ ଆସିବାକୁ ଇଚ୍ଛା କଲେ । ତୃତୀୟ ଦରବାରର ଆୟୋନ ହେଲା । ଲର୍ଡ ହାଡସିଂ ଥାନ୍ତି ଗଭର୍ଣ୍ଣର । ପଞ୍ଚମ ଜର୍ଜ ହାତିରେ ଯିବାପାଇଁ ବାରଣ କଲେ– ଗଲେ ଘୋଡ଼ାରେ । ଏ ଶୋଭାଯାତ୍ରା ଆରମ୍ଭ ହେଲା ରେଡ୍ ଫୋର୍ଟରୁ । ବର୍ଷକ ପୂର୍ବରୁ ଏହାର ଆୟୋଜନ କରାଯାଇଥିଲା । ପଞ୍ଚମ ଜର୍ଜଙ୍କର ପୋଷାକରେ ୬୦,୦୦୦ ପାଉଣ୍ଡ ଖର୍ଚ୍ଚ ହୋଇଥିଲା ବୋଲି ଅଟକଳ କରାଯାଇଥିଲା । ଏ ପୋଷାକ ଲଣ୍ଡନ ଟାୱାରକୁ ଫେରିଯିବାର ଥିଲା । ଗ୍ୟାଲେରୀରେ ବସିଥିଲେ ପ୍ରାୟ ଲକ୍ଷେ ଲୋକ । ସମସ୍ତଙ୍କର ପୋଷାକ ଥିଲା ଧଳା । ୧୮୫୭ର ସିପାହୀ ବିଦ୍ରୋହ ବେଳର ପ୍ରାୟ ୧୦୦ ଜଣ ଲୋକ ବଞ୍ଚିଥିଲେ । ସେମାନେ ବସିଥିଲେ ସବା ଆଗରେ । ପଢ଼ାହେଲା ଏକ ଇସ୍ତାହାର । ଏ ଇସ୍ତାହାରରେ ଲେଖାଥିଲା କି ପଞ୍ଚମଜର୍ଜ ବର୍ତ୍ତମାନ ଭାରତର ସମ୍ରାଟ । ଏ ଖବର ଜଣାଇ ଦିଆଗଲା ତାଙ୍କ ପ୍ରୀୟ ଭାରତୀୟ ପ୍ରଜାଙ୍କୁ । ହଠାତ୍ ରାଜା-ସମ୍ରାଟ ଭାଇସରାୟଙ୍କ ହାତରୁ କାଗଜଖଣ୍ଡେ ଟାଣି ଆଣି ଘୋଷଣା କଲେ କି ବର୍ତ୍ତମାନ ଭାରତର ରାଜଧାନୀ କଲିକତାରୁ ଉଠାଇଆଣି ଦିଲ୍ଲୀରେ ଅବସ୍ଥାପନା କରିଗଲା । ସେ ଦିନରୁ ଦିଲ୍ଲୀ ହେଲା ରାଜଧାନୀ । ଦିଲ୍ଲୀକୁ ରୋମାନ ସାମ୍ରାଜ୍ୟ ସହିତ ତୁଳନା କରାଯାଏ । କାରଣ ବର୍ତ୍ତମାନର ଦିଲ୍ଲୀବାସିନ୍ଦାଙ୍କ ପାଇଁ ଏ ସାମ୍ରାଜ୍ୟ ଏକ ପୁରାତନ ଇତିହାସ । ଅସମ୍ଭବ ଏହାର ଅତିତର କାହାଣୀ କରୋନେସନ ପାର୍କକୁ ଦେଖିଲେ ଏହାର ପ୍ରଭାବ ସ୍ପଷ୍ଟ ଜଣାପଡ଼େ ଏହାରି ଉପରେ ବୋହିଯାଇଛି ଦିଲ୍ଲୀ ଦରବାରର ଉତ୍ସବ ମୁଖରିତ ଘଟଣା । ଏ ସ୍ଥାନ ବର୍ତ୍ତମାନ ପୁରୁଣା ଦିଲ୍ଲୀର ଉତ୍ତର କୋଣରେ ଦୂର ଜଙ୍ଗଲିଆ ଅଞ୍ଚଳରେ ଦୃଶ୍ୟମାନହୁଏ । ଘଞ୍ଚ ବଣୁଆ ଜଙ୍ଗଲ । ଦୂର ଦିଗବଳୟର ଗୋଟାଏ ପାଖକୁ ହଠାତ୍ ଦେଖିହୁଏ ଏକ ମାର୍ବଲ ନିର୍ମିତ ମୂର୍ତ୍ତି– ଭାରତୀୟ ଶିଳ୍ପକଳାର ଏକ୍ ନିଦର୍ଶନ । ଏହାର ଉଚ୍ଚତା ୬୦ ଫୁଟ । ଏକ ଗୋଲାକାର ରାଜଦଣ୍ଡ ନେଇ ସିଂହାସନ ଉପରେ ଦଣ୍ଡାୟମାନ ହେବାର ଭଙ୍ଗି । ମୂର୍ତ୍ତି ତଳକୁ ପଥର ଖଣ୍ଡମାନ ମୂର୍ତ୍ତିକୁ ଟେକି ଧରିଛନ୍ତି । ହଠାତ୍ ଦେଖିଲେ ଜଣାପଡ଼େ କି ଏକ ବିତାଡ଼ିତ ଇଜିପ୍ସିୟାନ ଫାରୋହା ବା ଏକ ହୃତ ରୋମାନ ସମ୍ରାଟ । କିନ୍ତୁ ନିରୀକ୍ଷଣ କରି ଦେଖିଲେ

ଜଣାପଡ଼େ ସେ ହେଉଛନ୍ତି ସମ୍ରାଟ ପଞ୍ଚମ ଜର୍ମ। ଚାରିପଟେ ତାଙ୍କ ଭାଇସରାୟ ଗଣ। ଏ ମୂର୍ତ୍ତି ଏକଦା ବର୍ତ୍ତମାନର ରାଜପଥର ମଧ୍ୟଭାଗରେ ଅବସ୍ଥିତ ଥିଲା। ଭାରତ ସ୍ୱାଧୀନତା ପରେ ହୁଏତ ଏହାର ଅବସର ଗ୍ରହଣ ସମୟ ହୋଇଯାଇଥିଲା। ଆଉ ବର୍ତ୍ତମାନ ଏହା ସ୍ମୃତିର ଅତୀତ। ମାତ୍ର ଏଇ କେତେବର୍ଷର ମୂର୍ତ୍ତି ହେଲେ ମଧ୍ୟ ଏହାକୁ ମନେ ପକାଇବାର କେଉଁ ଭାରତୀୟଙ୍କର ଆଗ୍ରହ ନାହିଁ।

କଲିକତାରୁ ଆରମ୍ଭ ବ୍ରିଟିଶ ଶାସନ– ସୁତାନଟି- ହୁଗୁଳି ନଦୀଠାରୁ କିଛି ଦୂରରେ ୧୬୯୦ରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଜବ ଚାରନୋକଙ୍କ ନେତୃତ୍ୱରେ କଲିକତାରେ ପହଞ୍ଚି ତାଙ୍କର ଅଫିସ ଖୋଲିଲେ। ଗଭୀର ପାଣିରେ ଜାହାଜ ରଖିବାର ସୁବିଧା– ଦୁଇଟି ଗାଁ ଦୁଇପାଖରେ- ଗୋବିନ୍ଦପୁର ଓ କଲିକତା। ବାଣିଜ୍ୟର ପ୍ରସାର ପାଇଁ ଅନେକ ସୁବିଧା। ସେଥିପାଇଁ ୧୭୧୦ରେ କଲିକତା ପରି ଏକ ନୂଆ ସହର ବସାଇ ଫୋର୍ଟ ଉଇଲିୟମ ତିଆରି କଲେ। ପଶ୍ଚିମ ଭାରତ ସେମାନଙ୍କର ଅକ୍ତିଆରର ବାହାରେ ଥିଲା। ସେଥିପାଇଁ ଏହିଠାରୁ ହିଁ ବ୍ରିଟିଶ କମ୍ପାନୀ କାର୍ଯ୍ୟ ଆରମ୍ଭ କଲେ। ପଲାସି ଯୁଦ୍ଧପରେ ଏ ସହରର ଉନ୍ନତି ଅଧିକ ହେଲା। ୧୭୫୭ରେ ରବର୍ଟ କ୍ଲାଇବଙ୍କ ନେତୃତ୍ୱରେ ମୋଗଲ ନବାବ ସିରାଜୁଦ୍ଦିନଙ୍କ ବିରୁଦ୍ଧରେ ହେଲା ବିଜୟୀ ହେଲେ ବ୍ରିଟିଶ। ସେଇଦିନଠୁ ସେଠାରେ ନିଜ ଶାସନ ଜାରି ରଖିଲେ। ଉତ୍ତର ଭାରତର ଶାସନ ଦାୟିତ୍ୱ କଲିକତାରୁହିଁ କରାଯାଇଥିଲା। ଖାଇବର ପାଶର ଆରମ୍ଭ କରି ବେଙ୍ଗଲ ପ୍ରେସିଡେନ୍ସି ଉତ୍ତର ଭାରତ ପର୍ଯ୍ୟନ୍ତ ବ୍ୟାପିଥିଲା। ଦିଲ୍ଲୀରେ ପ୍ରେସିଡେନ୍ସି ନ ହେବାର ଏଇଟାହିଁ ଏକମାତ୍ର କାରଣ ଥିଲା। ପଶ୍ଚିମ ଶିକ୍ଷାରେ ଅନୁପ୍ରାଣିତ ହୋଇ କଲିକତାର କେତେକ ବୁଦ୍ଧିଜିବୀ ବ୍ରିଟିଶ ଶାସନର ଆନୁଗତ୍ୟ ସ୍ୱୀକାର କଲେ। ସେଥିଲାଗି ୧୮୫୭ରେ ଉତ୍ତର ଭାରତର ବ୍ରିଟିଶ ରାଜତ୍ୱର ଶାସନଭାର କଲିକତାରେ ହିଁ ଥିଲା। ଶିକ୍ଷିତ ସଂପ୍ରଦାୟ କେତେକ ସାମାଜିକ ପରିବର୍ତ୍ତନ ଆଣିବାପାଇଁ ଆଗ୍ରହ ପ୍ରକାଶ କଲେ। ସେମାନେ ସ୍ୱାଧୀନତାର ମୂଲ୍ୟ, ସଭ୍ୟତାର ଅର୍ଥ ବୁଝିଥିଲେ। ବ୍ରିଟିଶ ଶାସନ ଫଳରେ ନିଜର ସମ୍ମାନ କ୍ଷୁର୍ଣ୍ଣ ହୋଇଯାଇଛି ବୋଲି ଅନୁଭବ କଲେ। ଜାତିଗତ ସଭ୍ୟତା ମଧ୍ୟ ମୁଣ୍ଡ ଟେକୁଛି ବୋଲି ଭାବିଲେ। ଏହି ସବୁ ଧାରଣା ଦେଇ ଦେଶରେ ବ୍ରିଟିଶ ଶାସନବିରୁଦ୍ଧ ମନୋବୃତ୍ତି ଗଢ଼ିଉଠିଲା। ୧୮୮୫ରେ ଜନ୍ମନେଲା ନ୍ୟାସନାଲ କଂଗ୍ରେସ। ପ୍ରଥମରେ ଯେଉଁ ସମ୍ମିଳନୀର

ଆୟୋଜନ ହେଲା ତାହାକେବଳ ବିଦେଶାଗତ ଶିକ୍ଷିତ ଯୁବକମାନଙ୍କର ଏକ 'ଆଲୋଚନା ଚକ୍ର' ଭାବରେ କାମ କଲା। କିନ୍ତୁ ପରିବର୍ତ୍ତନ ହେଲା ୧୯୦୩ରେ। ଲର୍ଡ କର୍ଜନ ଘୋଷଣା କଲେ କି ବଙ୍ଗଳା ଭାଗ ଭାଗହେବ। ଡିସେମ୍ବର ମାସରେ ଏଘୋଷଣା କଲେ। ସେତେବେଳକୁ ଆଶ୍ରମ, ବିହାର, ଓଡ଼ିଶା ଏଥିସହିତ ଅନ୍ତର୍ଭୁକ୍ତ ହୋଇସାରିଥିଲେ। ଏହି ଯୋଜନାର ଫଳ ହୁଏତ ବିପରୀତ ହେଲା। ବ୍ରିଟିଶ ଶାସନ ବିରୁଦ୍ଧରେ ଏକ ବିଧିବଦ୍ଧ ସଙ୍ଗଠନ ଗଢ଼ିଉଠିଲା।

ଜନ୍ମନେଲା ସ୍ୱଦେଶୀ ଭାବନା। ଅରବିନ୍ଦ ଘୋଷ ନେଲେ ନେତୃତ୍ୱ। ରାସ୍ତାଘାଟ, ସ୍କୁଲ କଲେଜରେ ଏ ସବୁର କ୍ରମାଗତ ଧାରଣାର ଚିତ୍ର ଦେଖାଦେଲା। କର୍ଜନ ୧୯୦୫ ବେଳକୁ ଏସବୁକୁ ଲଣ୍ଡନ ପଠାଇଲେ। କିଛି ମାସ ପରେ Eastern Bengal ନାଁରେ ଏକ ନୂଆ ପ୍ରଦେଶ ଗଠନ କରାଗଲା। ୧୬ ଅକ୍ଟୋବର ୧୯୦୫ରେ ଏ ପ୍ରଦେଶର ରାଜଧାନୀ ହେଲା ଢାକା। ୧୯୦୫ରେ ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହେଲା। ଅନ୍ୟାନ୍ୟ ଅନେକ କାରଣରୁ ୧୯୦୯ ବେଳକୁ ଏ ଆନ୍ଦୋଳନ ଦବିଗଲା। ରାଜା ଜର୍ଜ୍ଜ ପଞ୍ଚମ ମଧ ଅନୁଭବ କଲେ କି ଏ ପ୍ରକାର ବିଭାଜନ ଠିକ୍ ହୋଇନାହିଁ।



ଏ ହେଉଛି ଦିଲ୍ଲୀ ଐଶ୍ୱର୍ଯ୍ୟର ନାଲିଆ ଛୁଇଁ। ଏହାତ କେବଳ ଆରମ୍ଭ ମାତ୍ର। ହୁଏତ କିଛି ଶେଷ ବି। କିଛି ଆସେ ଏ ଇତିହାସକୁ, ଏ ମଣିଷକୁ। ଏ ଦେଶର ମହାଘଟଣା ପରି ଅଲକ୍ଷ। ମହାଯନ୍ତଣା ପରି ନିସ୍ତବ୍ଧ। ଏଇ ମର୍ମରେ ମନକୁ ଆସେ ଜଫରଙ୍କର ନିଜ ଲେଖା, ତାଙ୍କ ବନ୍ଦୀ ହୋଇଯିବାର ଶେଷ ଯାତ୍ରାରେ।

"ସିଲ୍କ ପୋଷକରେ ମତେ ଝଲସାଇ ଦେଲ
ବସନ୍ତ ସୌନ୍ଦର୍ଯ୍ୟରେ ମୁଗ୍ଧକଲ
ଆଣିଦେଲ ଏକ ଫୁଲ ତା'ର ପରିପୂର୍ଣ୍ଣତା ପାଇଁ
ମୋ' ଭିତରର ଭଲପାଇବାକୁ ଉତ୍‌ଫୁଲିତ କଲ। ॥ ୧ ॥

ମୋ ସହିତ ନିଶ୍ୱାସରେ ନିଶ୍ୱାସ ମିଶାଇ ମୋ ପାଖେ ରହିଲ
ନିଜକୁ ମୋ' ସହିତ ମିଳାଇ ମୋତେ ଦୂରେଇ ନ ଦେଇ
କିନ୍ତୁ ବର୍ତ୍ତମାନ ସମୟର ଚକ୍ର ଘୁରିଛି
ଆନନ୍ଦର ଲହରି ଡେଇଁ ତୁମେ ଦୂରେଇ ଗଲ। ॥୨ ॥

ମୋ' ଓଠରେ ଓଠ ମିଶାଇ
ହୃଦୟର ସ୍ପନ୍ଦନରେ ତୁମେ ତୁମ ହୃଦୟ ଥାପିଲ
ପୁଣି ଥରେ ଭଲ ପାଇବାର ଫାଶରେ ପଡ଼ିବା ପାଇଁ
କିଛି ବି ଆଗ୍ରହ ନାହିଁ
ପ୍ରେମର ଔଷଧ ବିକୁଥିବା ଲୋକେ
ଦୋକାନ ବନ୍ଦ କରି ଦେଇଛନ୍ତି
ବୃଥାରେ ଖୋଜୁଛି ତାଙ୍କୁ, ଆଉ ମୋ'ର ନାହିଁ ବେଳକାଳ। ॥ ୩ ॥

ମୋ' ଜୀବନ ମତେ ଆଉ ଆଲୋକର ରଶ୍ମି ବିକିରଣ କରୁନି
ମୋ' ହୃଦୟକୁ ବା ଚକ୍ଷୁକୁ ଶାନ୍ତି ଦେବାପାଇଁ
ଧୂଳିରୁ ଧୂଳି ହୋଇ ଚାଲିଛି।
ନାହିଁ କାହାରି ଆବଶ୍ୟକ ମୋର ସ୍ଥିତ, ଅସୁରକ୍ଷିତ ମୋ' ଜୀବନ କାଳ। ॥ ୪ ॥

ଏ ଦିଲ୍ଲୀ ଥିଲା ଦିନେ ସ୍ୱର୍ଗ
ଯେଉଁଠି ଥିଲା ପ୍ରେମର ରାଜୁତି ଓ ଶାସନ
ତା'ର ସୌନ୍ଦର୍ଯ୍ୟ ଆଜି ଧର୍ଷିତ
ଖଣ୍ଡହର ବିଦ୍ୟମାନ କେବଳ। ॥ ୫ ॥

ସେମାନେ ମୃତାହତ, ସେମାନଙ୍କ ପାଇଁ ଲୁହବି ଝରୁନି
ଶୋଇ ଯାଇଛନ୍ତି ସାଧାରଣ କବରରେ
ସ୍ତୁତିଗାନ ନ ହୋଇଛି କୌଣସି ଉଚ୍ଚକୁଳ ସମ୍ଭୁତ ଲୋକର
ଅବା ନାହିଁ ବିହ୍ନବର୍ଣ୍ଣ, ଏହି କବରର ଅଳନ୍ଦି ଭିତର। ॥ ୬ ॥
ହୃଦୟ ନିଃସହାୟ, ମାଂସପେଶି କ୍ଷତବିକ୍ଷତ
ମନ ଉତ୍ତେଜିତ ଏ ଦଶାର ବିଚ୍ଛୁରିତ ସ୍ମୃତିରେ
ଟୋପାଏ ରକ୍ତ, ଭାଂଗା ହୃଦୟର-
ଆଖି ପତା କୋଣରେ ଲୁହ ଢଳଢଳ। ॥ ୭ ॥

ହେ ଜଫର କିଛି ନୁହେଁ ଚିରସ୍ଥାୟୀ
କିଏ ବା ପାରିବ ବଖାଣି।
ଦୈବଜ୍ଞ ପୁରୁଷ ଓ ଭଗବାନଙ୍କ ଦୟାରୁ
ହୋଇପାରେ ଅବା ସବୁ କିଛି ସହଜ ସବଳ। ॥ ୮ ॥



# ଶ୍ରଦ୍ଧାଞ୍ଜଳି

ଦିଲ୍ଲୀର ବା ଭାରତର ଇତିହାସ ପୃଷ୍ଠା ଓଲଟେଇବାର ଧୃଷ୍ଟତା ନାହିଁ କିନ୍ତୁ ଭାଗ୍ୟର ବିଡ଼ମ୍ବନା ୧୯୬୮ରୁ ୨୦୦୨ ମସିହା ପର୍ଯ୍ୟନ୍ତ ଦିଲ୍ଲୀରେ ରହିବାର ସୌଭାଗ୍ୟ ମିଳିଥିଲା। ସ୍ୱାମୀ ଗୋବିନ୍ଦ ଦାସଙ୍କର ବ୍ୟକ୍ତିତ୍ୱର ଛତ୍ରଛାୟା ତଳେ। ଦୀର୍ଘ ତିରିଶ ବର୍ଷ। ଦିଲ୍ଲୀର ଚାକଚକ୍ୟ ସଭ୍ୟତାର ଅନ୍ତରାଳେ କେତେ ରାଜ୍ୟ, ସମ୍ରାଟ, ସାମ୍ରାଜ୍ୟର ସଭ୍ୟତା ଲୁଚିଛପି ରହିଛି। ଏ ଲୁପ୍ତ ସମୃଦ୍ଧିର ପରିପ୍ରକାଶ ମାତ୍ର କିଛି ସ୍ମୃତିଚିହ୍ନରେ। ସବୁ ସ୍ମୃତିର ଘଟଣାରୁ କେବଳ ହୃଦୟକୁ ଛୁଇଁଲା ପରି ଘଟଣାସମୂହକୁ ସମ୍ମୁଖକୁ ଆଣିବାର ଶେଷ ଇଚ୍ଛା।

ଦିଲ୍ଲୀର ହୃଦୟ ଚିରି ଦେଖ। ନୈଶୋତ୍ସବ, ପାନୋତ୍ସବ ଓ ରାତିର ମାଧୂର୍ଯ୍ୟତା ଭିତରେ ନିଜକୁ ହଜାଇ ଦିଏ ଏ ଦିଲ୍ଲୀ। ହତ୍ୟା, ଲୁଣ୍ଠନ, ଯୁଦ୍ଧ ବିଭୀଷିକା, ଛନ୍ଦ କପଟ ସବୁ ସହ୍ୟ କରିଛି। ବହୁ ସମ୍ରାଟଙ୍କର ରାଜଧାନୀ, ମହଲ, ପ୍ରାସାଦ ସବୁକୁ ନିଜର ଅବଗୁଣ୍ଠନ ତଳେ ସଜାଇଛି। ଅନେକ ବିଜୟୀ ଶାସକଙ୍କୁ କୋଳେଇ ନେଇଛି। ଦିଲ୍ଲୀର ଉଚ୍ଚାଙ୍ଗ ସଭ୍ୟତାକୁ ଅନ୍ତର୍ଦୃଷ୍ଟି ଦେଇ ଲକ୍ଷ୍ୟ କଲେ ଗୋବିନ୍ଦବାବୁ। ତାହାରି ସଂଘର୍ଷ ଭିତରେ ନିଜକୁ ମିଶାଇ ଦେବାକୁ ଚାହିଁଲେ।

ଦିଲ୍ଲୀ ସାମ୍ରାଜ୍ୟବାଦର ଉନ୍ମାଦନା– ଗତି, ଶକ୍ତି ଓ ସାମର୍ଥ୍ୟର କୀର୍ତ୍ତିସ୍ତମ୍ଭ। ଅନେକ ଶତାବ୍ଦୀ ଆଗେ ସଂସ୍କୃତିର ଏକ ପ୍ରାଣକେନ୍ଦ୍ର ଥିଲା। ବର୍ତ୍ତମାନ ଏଥିରେ ରୋମାଞ୍ଚ ନାହିଁ, ନାହିଁ ମାଦକତା। କେବଳ ନିଜକୁ ଚଳେଇ ନେବାର ସଂଗ୍ରାମ ଅଛି। ମୂଲ୍ୟନାହିଁ ସୃଜନଶୀଳତାର। ମୋଗଲ, ମୁସଲମାନମାନେ କେବଳ ଶାସକ ଭାବରେ ପରିଗଣିତ ହୋଇଛନ୍ତି। ସେମାନଙ୍କର କଳା, ସଂସ୍କୃତି, ଦକ୍ଷତା, ସୃଜନଶକ୍ତି ସବୁ ତଳେଇଯାଇଛି।

ବଂଚି ରହିଛି କେବଳ କ୍ଷମତା ଲୋଭର କଳଙ୍କ ଇତିହାସ। ଚାରିଆଡ଼େ ଏକ ବିଷର୍ଣ୍ଣତା, ଏକ ବିରାଟ ଶୂନ୍ୟତା। କିନ୍ତୁ ଖଣ୍ଡହରର ସଭ୍ୟତା, ସଂସ୍କୃତି ଏବେ ବି ତା'ର ବିଜୟ ଡିଣ୍ଡିମ ବଜାଉଛି।

ଏଣେ ଉତ୍‌ଥାନ ପତନର ଇତିହାସ ନେଇ ଦିଲ୍ଲୀ ଆଜି ବି ଏକ ସୁସଜ୍ଜିତ ନଗରୀ। ନିମ୍ବଗଛ, ଓଲିଆନ୍ଦର ଆଉ ମେରିଡିୟାନ ପ୍ରଭୃତି ଗଛର ହିଲ୍ଲୋଳିତ ପବନ ଏ ସହରକୁ ସୁନ୍ଦର ରୂପ ଦେଇଛି। ରାଜରାସ୍ତାର ଦୁଇପାଖେ ଫୁଲଗଛର ଧାଡ଼ି। ହଜାର ହଜାର ସଂଖ୍ୟାରେ ପାରା, ଶୁଆ, ଘରଚଟିଆଙ୍କ ଧାଁଦଉଡ଼ ଖେଳ। ଦିଲ୍ଲୀ ସେମାନଙ୍କର ଲୀଳାକ୍ଷେତ୍ର। ଖୋଲା ବଗିଚାରେ ସବୁ ମୟୂର ବି ଦେଖାଦିଅନ୍ତି। ରୋମାଞ୍ଚିତ ହୋଇଉଠେ ସହର। ଖିଚିରି ମିଚିରି ଶବ୍ଦରେ ମୁଖରିତ ହୋଇଉଠେ ଦିଲ୍ଲୀ ପରିବେଶ। ସାଥି ହୋଇ ଘୁରି ବୁଲନ୍ତି। ଏଇ ସହର ଛାତିରେ ପ୍ରକୃତିର ଏ ମନୋହର ଖେଳ। ତଥାପି ବି ଶୁଭେ ଅତୀତର ରଣଦୁନ୍ଦୁଭି। ଶୁଭେ ଅର୍ଜୁନଙ୍କର ଧନୁ ଟଂକାର। ପୁରୁଣା କିଲା ତଳେ ଶିବମନ୍ଦିରରେ କୁନ୍ତିଙ୍କର ଆକୁଳ ପ୍ରାର୍ଥନା। ଅଭିଶାପ ଜ୍ୱାଳାରେ ଥରିଉଠେ ତୋଗଲକାବାଦ୍। ବାନ୍ଦିଚୌକର ରାସ୍ତାରେ ରାସ୍ତାରେ ମୁଣ୍ଡହୀନ ଶରୀରର ଶବ। ଯମୁନାର ପାଣି ଏବେ ବି ରକ୍ତରଂଜିତ। ଆଖି ଆଗରେ ନାଚି ଯାଉଛି ନିରୀହ, ନିର୍ଦ୍ଦୋଷ ବାହାଦୂର ସାହଙ୍କର ନିଜ ରାଜଧାନୀକୁ ବଂଚେଇବାର ଦୁର୍ବଳ ଆକାଂକ୍ଷା। ବ୍ରିଟିଶ ହାତରେ ନିଜକୁ ସମର୍ପଣ କରିବାର ସେ ନିଷ୍ଠୁର କାହାଣୀ।

ସବୁ ପ୍ରତିଧ୍ୱନିତ ହେଉଛି ଦିଲ୍ଲୀର ଆକାଶ ପବନରେ। ମୋର ମନେ ହେଲା ଏ ଖଣ୍ଡହର ଭିତରେ ଘୁରୁବୁଲିଛି ଗୋବିନ୍ଦବାବୁଙ୍କର ଅତୃପ୍ତ ଆତ୍ମା। ଖେଳେଇ ହୋଇଯାଇଛି ତାଙ୍କର ଆଶା, ଆକାଂକ୍ଷା, ଆଉ ଇତିହାସକୁ ଖିନଭିନ କରିବାର ପ୍ରବୃତ୍ତି। ଆମ ଦିଲ୍ଲୀ ରହଣୀର ଅଭୂଲା ସ୍ମୃତିର ମାଳିକା– ''ଏଇ ମୋ'ର ଦିଲ୍ଲୀ'' ଏହାହିଁ ତାଙ୍କ ପାଇଁ ମୋର ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି।





**ଶାନ୍ତି ଦାସ**

ବି.ଏ.ଏଲ.ଏଲ.ବି.

ବାରିଷ୍ଟର ଗୋବିନ୍ଦ ଦାସଙ୍କ ସ୍ତ୍ରୀ

**ଅନ୍ୟ ପୁସ୍ତକ**

'ଅକୁହା ମନର ଅବ୍ୟକ୍ତ କଥା'

इन्द्रप्रस्थ--हिन्दुओं की पहली दिल्ली

2. सूरजकुंड--हिन्दुओं की दूसरी दिल्ली

3. किला रायपिथौरा--हिन्दुओं की तीसरी

4. पुरानी दिल्ली--(किला रायपिथौरा) --पठानो की पहली दिल्ली

5. किलोखड़ी या नयाशहर--पठानों की दूसरी दिल्ली

6. सीरी--पठानों की तीसरी दिल्ली

7. तुग़लकाबाद--पठानों की चौथी दिल्ली

8. जहांपनाह--पठानों की पांचवीं दिल्ली

9. फ़ीरोज़ाबाद—पठानों की छठी दिल्ली

10. खिज़राबाद—पठानों की सातवीं दिल्ली

11. मुबारकपुर--पठानों की आठवी दिल्ली

12. दीनपनाह--मुग़लों की पहली दिल्ली

13. शेरगढ़--पठानों की नवीं दिल्ली

14. सलीमगढ़--पठानों की दसवी दिल्ली

15. शाहजहांबाद--मुग़लों की दूसरी दिल्ली

16. सिविल लाइन्स--अंग्रेजों की पहली दिल्ली

सफदरजंग का मकबरा

मकबरा

मकबरा